# ଗ୍ରୀକ୍ ଦର୍ଶନର ଇତିହାସ

ଧନେଶ୍ୱର ସାହୁ





ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା
ପୁସ୍ତକ ଭବନ, ଭୁବନେଶ୍ୱର

# ଗ୍ରୀକ୍ ଦର୍ଶନର ଇତିହାସ

ଧନେଶ୍ୱର ସାହୁ

ପ୍ରକାଶକ

ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା

ପୁସ୍ତକ ଭବନ, ଭୁବନେଶ୍ୱର

# GREEK DARSANARA ITIHAS

Published under the centrally sponsored scheme of Production of books and literature in Regional Language at the university level by the commission for scientific and Technical Terminology, Ministry of Education (Department of Higher Education) Govt. of India, New Delhi.

Written by : Sri Dhaneswar Sahoo

Reviewed by : Dr. Basant Kumar Dash

**First Edition** - 2021

**Publication No. :** 596

**ISBN :** 978-81-8005-426-6



**Type Setting & Printing :** Jagannath Process Pvt. Ltd., Cuttack-2

Price : ₹ **340/-** (Rupees Three Hundred Forty) only.

# ଅଗ୍ରଲେଖ

ଶ୍ରୀ ଧନେଶ୍ୱର ସାହୁଙ୍କ ଦ୍ୱାରା ଲିଖିତ "ଗ୍ରୀକ ଦର୍ଶନର ଇତିହାସ" ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଦ୍ୱାରା ପ୍ରକାଶିତ ହେବାକୁ ଯାଉଛି । ସାମଗ୍ରିକ ଗ୍ରୀକ୍ ଦର୍ଶନ ଉପରେ ସମ୍ଭବତଃ କୌଣସି ପୁସ୍ତକ ଓଡ଼ିଆରେ ରଚିତ ହୋଇନାହିଁ । ଦର୍ଶନ ଚର୍ଚ୍ଚା କ୍ଷେତ୍ରରେ ଗ୍ରୀକ୍‌ମାନେ ପାଶ୍ଚାତ୍ୟ ସଭ୍ୟତାରେ ପଥ ପ୍ରଦର୍ଶକ । ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରୁ ଗ୍ରୀକ୍‌ମାନେ ଦର୍ଶନ ପ୍ରସଙ୍ଗରେ ଗମ୍ଭୀର ଚର୍ଚ୍ଚା ଆରମ୍ଭ କରିଥିଲେ ଓ ଦର୍ଶନ ଇତିହାସକୁ ସେମାନଙ୍କର ଅବଦାନ ଅତୁଳନୀୟ । ସେହି ଦର୍ଶନ ସଂପର୍କରେ ଏହି ପୁସ୍ତକଟି ଓଡ଼ିଆରେ ଏକ ଅଭିନବ ପ୍ରୟାସ ।

ବି.ଏ. ଓ ଏମ୍.ଏ. ଶ୍ରେଣୀରେ ଗ୍ରୀକ୍ ଦର୍ଶନ ପରମ୍ପରାର ବିଭିନ୍ନ ଦାର୍ଶନିକମାନଙ୍କ ବିଷୟ ପଢ଼ାଯାଏ । ଦର୍ଶନ ଛାତ୍ରଛାତ୍ରୀ ହୁଅନ୍ତୁ କିମ୍ବା ସାଧାରଣ ପାଠକ ହୁଅନ୍ତୁ ଏହି ପୁସ୍ତକଟିରୁ ଗ୍ରୀକ୍ ଦର୍ଶନ ଉପରେ ଏକ ସ୍ୱଚ୍ଛ ଚିତ୍ର ପାଇପାରିବେ । ଗ୍ରୀକ୍ ଦର୍ଶନ, ସମାଜ ଓ ସଂସ୍କୃତି ଉପରେ ଛାତ୍ରଛାତ୍ରୀ, ଅଧ୍ୟାପକ ଅଧ୍ୟାପିକା ଓ ସାଧାରଣ ପାଠକମାନଙ୍କୁ ଅନେକ ବିଷୟ ଏହି ପୁସ୍ତକଟିରୁ ଜାଣିବାର ସୁଯୋଗ ମିଳିପାରିବ ।

ସ୍ନାତକ ଓ ସ୍ନାତକୋତ୍ତର ବିଦ୍ୟାର୍ଥୀମାନଙ୍କ ପାଇଁ ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଉଚ୍ଚମାନର ପୁସ୍ତକମାନ ଓଡ଼ିଆରେ ପ୍ରକାଶ କରିଆସୁଛି । ଓଡ଼ିଆ ଭାଷାକୁ ଜ୍ଞାନ-ବିଜ୍ଞାନର ଭାଷା କରିଆସୁଛି । ଓଡ଼ିଆ ଭାଷାକୁ ଜ୍ଞାନ-ବିଜ୍ଞାନର ଭାଷା କରିବା ପାଇଁ ଯେଉଁ ଲକ୍ଷ୍ୟ ରଖାଯାଇଛି, ସେ କ୍ଷେତ୍ରରେ ଏହିପରି ପୁସ୍ତକ ପ୍ରକାଶ ଆମ ଭାଷାକୁ ସମୃଦ୍ଧ କରିପାରିବ । ସେହି ଲକ୍ଷ୍ୟ ପୂରଣ ଦିଗରେ ଏହିପରି ପୁସ୍ତକମାନ ସହାୟକ ହେବ । ଏହି ଅବସରରେ ମୁଁ ଲେଖକଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଛି ଓ ଓଡ଼ିଶାର ସାରସ୍ୱତ ସମ୍ଭାର ଏହାଦ୍ୱାରା ଋଦ୍ଧିମନ୍ତ ହେବ ବୋଲି ଏହା ଆଶା କରୁଛି ।

**ସିଦ୍ଧାର୍ଥ ଧଳ**
ନିର୍ଦ୍ଦେଶକ
ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା
ଭୁବନେଶ୍ୱର

# ମୁଖବନ୍ଧ

"ଗ୍ରୀକ୍ ଦର୍ଶନର ଇତିହାସ" ବହିଟି ପ୍ରକାଶ ପାଇବାକୁ ଯାଉଛି, ଏହା ମୋ ପାଇଁ ଆନନ୍ଦର ବିଷୟ । ଏପରି ଏକ ପୁସ୍ତକ ଲେଖିବାର ଇଚ୍ଛା ଆକସ୍ମିକ । ତେବେ ଏହି ପରିପ୍ରେକ୍ଷୀରେ ଦୁଇଟି କଥା ସ୍ମୃତିକୁ ଆସୁଛି । ପ୍ରାୟ ୧୯୯୭ ମସିହାର ଘଟଣା, ମୁଁ ସେତେବେଳେ ରାଜେନ୍ଦ୍ର କଲେଜ, ବଲାଙ୍ଗିରରେ ଅଧ୍ୟାପକ ଥାଏ । ପ୍ର. ହୃଦାନନ୍ଦ ରାୟ ବଲାଙ୍ଗିର ଆସିଥିବା ଖବର ପାଇଲେ ମୁଁ ଯାଇ ତାଙ୍କୁ ସାକ୍ଷାତ କରେ ଓ ଆମ ଦୂଆରେ ପାଦ ପକାଇବାକୁ ତାଙ୍କୁ ଅନୁରୋଧ କରେ । ସେ ବି ମୋ ଅନୁରୋଧ ରକ୍ଷାକରନ୍ତି । ଥରେ କଥାବାର୍ତ୍ତା ଭିତରେ ମୁଁ ତାଙ୍କୁ କହିଲି ଯେ ତାଙ୍କଦ୍ୱାରା ଓ ପ୍ର.ଗଣେଶ୍ୱର ଦାସଙ୍କ ଦ୍ୱାରା ଲିଖିତ "ପାଶ୍ଚାତ୍ୟ ଦର୍ଶନର ଇତିହାସ-ଆଧୁନିକ ଯୁଗ" ବହିଟି ବହୁତ ଭଲ ହୋଇଛି । ସେହିପରି ସମଗ୍ର ପାଶ୍ଚାତ୍ୟ ଦର୍ଶନର ଇତିହାସ ଓଡିଆରେ ଲେଖାଗଲେ ତାହା ଆମ ଭାଷାକୁ ଦର୍ଶନ ସାହିତ୍ୟରେ ସମୃଦ୍ଧ କରିପାରନ୍ତା । ବିଶେଷକରି ଗ୍ରୀକ୍ ଦର୍ଶନ ଓ କାଣ୍ଟଙ୍କ ପରବର୍ତ୍ତୀ କାଳର ଦାର୍ଶନିକମାନଙ୍କ ଉପରେ ଓଡିଆରେ ବହି ନ ଥିବା ମୁଁ ସାର୍‌ଙ୍କର ଦୃଷ୍ଟିକୁ ଆଣିଲି । ସେ ମୋତେ କହିଲେ ଯେ ସେ ବ୍ୟସ୍ତ ରହିଛନ୍ତି, ଏହା କରିପାରିବେ ନାହିଁ । ଏହା ମଧ୍ୟ କହିଲେ- "ଆପଣ କରୁନାହାନ୍ତି" ? ଦ୍ୱିତୀୟ ଘଟଣାଟି ହେଉଛି ମୁଁ ୧୯୭୩ ରେ ଏମ.ଏ. ପରୀକ୍ଷା ଦେଇ ମୋ ଗ୍ରାମରେ ଯାଇ ରହୁଥାଏ । ସେହି ସମୟରେ ଅନ୍ୟାନ୍ୟ ବହି ପଢ଼ିବା ଭିତରେ ଦୁଇଟି ବହି ମୋତେ ବହୁତ ଭଲ ଲାଗିଥିଲା । ବହି ଦୁଇଟି ହେଉଛି ପ୍ର. ଶରତ କୁମାର ମହାନ୍ତିଙ୍କ ଲିଖିତ "ସକ୍ରେଟିସ୍ ଓ ପ୍ଲେଟୋ" ଓ ପ୍ର.ଗଣେଶ୍ୱର ମିଶ୍ରଙ୍କ ଅନୁବାଦ ପୁସ୍ତକ ପ୍ଲେଟୋଙ୍କ "ରିପବ୍ଲିକ" । ଗ୍ରୀକ୍ ସଭ୍ୟତା, ଗ୍ରୀସ୍‌ର ସାଂସ୍କୃତିକ ଓ ବୌଦ୍ଧିକ ପରିବେଶ ଓ ଦର୍ଶନ ଚର୍ଚ୍ଚାର ପରଂପରା ବିଷୟ ଉପରେ ଏହି ଦୁଇଟି ମୋତେ ଅନେକ ପ୍ରେରଣା ଦେଇଥିଲା । ବି.ଏ.ଓ ଏମ.ଏ. ସ୍ତରରେ ସକ୍ରେଟିସ୍, ପ୍ଲେଟୋ ଓ ଆରିଷ୍ଟୋଟଲଙ୍କ ଦର୍ଶନ ପ୍ରାୟତଃ ପଢ଼ାଯାଏ । କିନ୍ତୁ ସକ୍ରେଟିସ୍‌ଙ୍କ ପୂର୍ବରୁ ଓ ଆରିଷ୍ଟୋଟଲଙ୍କ ପରେ ଗ୍ରୀକ୍ ଦର୍ଶନ ସମ୍ବନ୍ଧରେ ପଢ଼ାଯାଏ ନାହିଁ । ଶରତ କୁମାର ମହାନ୍ତି ତାଙ୍କ କୃତି ସକ୍ରେଟିସ୍ ଓ ପ୍ଲେଟୋ ପୁସ୍ତକରେ ପ୍ଲେଟୋଙ୍କ ଅନବଦ୍ୟ କୃତି "ଡାଏଲଗ୍" ମାନଙ୍କୁ ଓଡିଆରେ ସୁନ୍ଦର ଭାବରେ ସଂକ୍ଷିପ୍ତକରି ବୁଝାଇଛନ୍ତି । ପ୍ଲେଟୋଙ୍କ ଡାଏଲଗ୍‌ମାନ ବିଶ୍ୱ ସାହିତ୍ୟର ଅମୂଲ୍ୟ କୀର୍ତ୍ତି । ସଂସ୍କୃତ ସାହିତ୍ୟରେ ବ୍ୟାସ, ବାଲ୍ମୀକି ଓ କାଳିଦାସ ଯେଉଁ ଗୌରବର ଅଧିକାରୀ, ପାଶ୍ଚାତ୍ୟ ସାହିତ୍ୟରେ ହୋମର, ପ୍ଲେଟୋ ଓ ସେକ୍‌ସପିୟର ସେହି ଗୌରବର ଅଧିକାରୀ ବୋଲି ମୁଁ ବିଶ୍ୱାସ କରେ । ଶରତ କୁମାର ମହାନ୍ତି ପ୍ଲେଟୋଙ୍କ କେତେକ ଡାଏଲଗ୍‌ର କାହାଣୀକୁ ଓଡିଆରେ ଲେଖି ପ୍ଲେଟୋଙ୍କୁ ଓ ସକ୍ରେଟିସ୍‌ଙ୍କୁ ଓଡିଆ ପାଠକମାନଙ୍କ ପାଖରେ ପରିଚିତ କରାଇଛନ୍ତି । ପ୍ଲେଟୋଙ୍କ ବିଭିନ୍ନ ଡାଏଲଗ୍ ମାନଙ୍କ ମଧ୍ୟରେ "ରିପବ୍ଲିକ୍" ହେଉଛି ଶ୍ରେଷ୍ଠ କୃତି । ଗଣେଶ୍ୱର ମିଶ୍ର ପ୍ଲେଟୋଙ୍କ ରିପବ୍ଲିକ୍‌କୁ ଓଡିଆରେ ଅନୁବାଦ କରି ମଧ୍ୟ ଏକ ବଡ କାର୍ଯ୍ୟ କରିଛନ୍ତି । ଓଡିଶାର ଏହି ଦୁଇ ପ୍ରଣମ୍ୟ ବ୍ୟକ୍ତିଙ୍କୁ ମୁଁ ପ୍ରଣାମ ଜଣାଉଛି । ଏହି ଦୁଇଟି ବହିରୁ ସକ୍ରେଟିସ୍ ଓ ପ୍ଲେଟୋଙ୍କ ଜୀବନ କାହାଣୀ, ସେମାନଙ୍କ ଦର୍ଶନ ସଂପର୍କୀୟ ସୂଚନା ଓ ମହାନ ଆଦର୍ଶ ସଂପର୍କରେ ଅନେକ ବିଷୟ ଜଣେ ପାଠକ ଜାଣିପାରିବ ।

ଖ୍ରୀଷ୍ଟପୂର୍ବ ପଞ୍ଚମ, ଷଷ୍ଠ ଶତାବ୍ଦୀଠାରୁ ପ୍ରାୟ ତିନି ଶହ ବର୍ଷ ମଧ୍ୟରେ ଗ୍ରୀସ୍ ଭୂମିରୁ ଏତେ ପ୍ରତିଭାବାନ ଦାର୍ଶନିକମାନଙ୍କର ଯେ ଆବିର୍ଭାବ ହୋଇଥିଲା ତାହା ଇତିହାସର ଏକ ବିସ୍ମୟ । ପାଶ୍ଚାତ୍ୟ ଦର୍ଶନ ଇତିହାସକୁ ଗ୍ରୀକ୍ ଦାର୍ଶନିକ ମାନଙ୍କର ଅବଦାନ ଅତୁଳନୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଦର୍ଶନ ଇତିହାସରେ ସ୍ଥାନ ପାଇଥିବା ସମସ୍ତ ଗ୍ରୀକ୍ ଦାର୍ଶନିକ ମାନଙ୍କ ସଂପର୍କରେ ଏହି ପୁସ୍ତକରେ ସଂକ୍ଷିପ୍ତ ଆଲୋଚନା ରହିଛି । ମୋର ବିଶ୍ୱାସ ସମଗ୍ର ଗ୍ରୀକ୍ ଦର୍ଶନ ସଂପର୍କରେ କୌଣସି ପୁସ୍ତକ ଓଡିଆରେ ନାହିଁ । ସୁତରାଂ ଗ୍ରୀକ୍ ଦର୍ଶନ ସଂପର୍କରେ ଜାଣିବାକୁ ଆଗ୍ରହୀ ଥିବା ଓଡିଆ ପାଠକ, ଛାତ୍ର ଓ ଅଧ୍ୟାପକ ମାନଙ୍କ ପାଇଁ ଏହି ପୁସ୍ତକଟି ସାହାଯ୍ୟ କରିପାରିବ ବୋଲି ବିଶ୍ୱାସ କରୁଛି ।

ଏହି ପୁସ୍ତକଟି ରଚନା କରିବାରେ ମୁଁ ମାତ୍ର ଚାରି ଖଣ୍ଡ ବହିର ସାହାଯ୍ୟ ନେଇଛି । ସେହି ପୁସ୍ତକମାନ ହେଲା ଫ୍ରାଙ୍କ ଥିଲିଙ୍କର ହିଷ୍ଟ୍ରି ଅଫ୍ ଫିଲୋସଫି, ବର୍ଟ୍ରାଣ୍ଡ ରସେଲଙ୍କର ହିଷ୍ଟ୍ରି ଅଫ୍ ଓ୍ୱେଷ୍ଟର୍ଣ୍ଣ ଫିଲୋସଫି, ଫ୍ରେଡେରିକ କୋପ୍ଲେଷ୍ଟୋନଙ୍କର ଏ ହିଷ୍ଟ୍ରି ଅଫ୍ ଫିଲୋସଫି, ପ୍ରଥମ ଭାଗ ଓ ଡବ୍ଲୁ.ଟି.ଷ୍ଟେସ୍‌ଙ୍କର ଏ କ୍ରିଟିକାଲ ହିଷ୍ଟ୍ରି ଅଫ୍ ଗ୍ରୀକ୍ ଫିଲୋସଫି । ଯାହା କିଛି ଇଂରାଜୀର ଉଦ୍ଧୃତ ପୁସ୍ତକଟିରେ ରହିଛି ତାହା ଏହି ଚାରି ଖଣ୍ଡ ବହିରୁ ହିଁ ରହିଛି । ବହି ଶେଷରେ ଏହି ବହିମାନଙ୍କର ବିସ୍ତୃତ ବିବରଣୀ "ସହାୟକ ପୁସ୍ତକ" ରେ ଦିଆଯାଇଛି । ତେଣୁ କୌଣସି ଉଦ୍ଧୃତି ସମୟରେ ଲେଖକଙ୍କର ନାମ ଓ ତାଙ୍କ ବହିର ପୃଷ୍ଠାକୁ ଉଲ୍ଲେଖ କରିଛି । ବେଳେ ବେଳେ କେତେକ ଇଂରାଜୀ ଶବ୍ଦମାନଙ୍କର ଓଡିଆ ପରିଭାଷା ପାଇବାରେ ମୁଁ କଷ୍ଟ ଅନୁଭବ କରିଛି । ସେହି ସ୍ଥିତିରେ ଗୋଟିଏ ପ୍ରତ୍ୟୟ ସହ ସାମଂଜସ୍ୟ ଥିବା ଓଡିଆ ଶବ୍ଦ ଲେଖିବା ସହିତ ପାଠକ ମାନଙ୍କର ଅବବୋଧ ନିମନ୍ତେ ଇଂରାଜୀ ଶବ୍ଦଟିକୁ ତା ସହିତ ଦେଇଛି । ଦର୍ଶନରେ କେତେକ ଶବ୍ଦ ବୈଷୟିକ ଅର୍ଥରେ ବ୍ୟବହୃତ ହୋଇଥାଏ । ଏକ ବୈଷୟିକ ଅର୍ଥ ବହନ କରୁଥିବା ଇଂରାଜୀ ଶବ୍ଦର ଓଡିଆ ପ୍ରତିଶବ୍ଦ କାଳେ ଅସ୍ୱଷ୍ଟତା ସୃଷ୍ଟି କରିବ ସେଥିପାଇଁ ସ୍ଥଳ ବିଶେଷରେ ଇଂରାଜୀ ଶବ୍ଦଟିକୁ ମୁଁ ବ୍ରାକେଟରେ ଉଲ୍ଲେଖ କରିଛି ।

ଏହି ପୁସ୍ତକଟି ରଚନା କରିବା ପାଇଁ ଯେଉଁ ସାଥିମାନେ ପ୍ରେରଣା ଦେଇଛନ୍ତି ସେମାନଙ୍କୁ ଏହି ଅବସରରେ କୃତଜ୍ଞତା ଜଣାଉଛି । ବିଶେଷକରି ପ୍ର. ବନବିହାରୀ ଚୌଧୁରୀ, ଡକ୍ଟର ଭରତ ଚନ୍ଦ୍ର ନାଥ, ଡକ୍ଟର କୈଳାସ ଚନ୍ଦ୍ର ଦାଶ, ଅଧ୍ୟାପକ ଡମ୍ବରୁଧର ବେହେରା ଓ ଡ. ରତିକାନ୍ତ ପଣ୍ଡାଙ୍କୁ ମୁଁ ଧନ୍ୟବାଦ ଦେଉଛି । ପ୍ର. ହୃଦାନନ୍ଦ ରାୟ ବହୁ ଦିନରୁ ସଂସାରରୁ ବିଦାୟ ନେଲେଣି । ସେ ଯେଉଁ କଥା ପଦକ ମୋତେ କହିଥିଲେ ସେଥିପାଇଁ ତାଙ୍କୁ ହୃଦୟରୁ ଶ୍ରଦ୍ଧାଂଜଳି ଜଣାଉଛି । ଓଡିଆ ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ପୁସ୍ତକଟିର ପ୍ରକାଶ କରୁଥିବାରୁ ମୁଁ ସଂସ୍ଥାର ଅଧିକାରୀ ମାନଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଛି ।

ଧନେଶ୍ୱର ସାହୁ
ଏ-୧୨, ଭାଗୀରଥି ବିହାର
ଢେଙ୍କାନାଳ

# ବିଷୟ ସୂଚୀ

●●●

# ପ୍ରଥମ ପରିଚ୍ଛେଦ
# ଗ୍ରୀକ୍ ଦର୍ଶନ : ପ୍ରାକ୍‌କଥନ

## ୧.୧ ଦର୍ଶନ କ'ଣ ?

ଦର୍ଶନ ଏକ ବୌଦ୍ଧିକ ଜିଜ୍ଞାସା । ମନୁଷ୍ୟ ପାଖରେ ବିଚାର ବୁଦ୍ଧିର ବିକାଶ ପରଠାରୁ କିଛି ଚିନ୍ତାଶୀଳ ବ୍ୟକ୍ତି ବିଶାଳ ବିଶ୍ୱର କାରଣ, ଜୀବନର ମହତ୍ତ୍ୱ, ଜ୍ଞାନର ଆଧାର, ସୌନ୍ଦର୍ଯ୍ୟର ସ୍ୱରୂପ ଇତ୍ୟାଦି ନାନା ପ୍ରସଙ୍ଗ ଉପରେ କେତେକ ମୌଳିକ ଜିଜ୍ଞାସା ବ୍ୟକ୍ତକରି ଆସିଛନ୍ତି । ଏହିପରି ବୌଦ୍ଧିକ କୌତୂହଳତା ମଧ୍ୟଦେଇ ଦାର୍ଶନିକ ପ୍ରଶ୍ନମାନଙ୍କର ଅବତାରଣା ହୋଇଛି । ବିଭିନ୍ନ ସଭ୍ୟତାରେ ଦାର୍ଶନିକମାନେ ଚିନ୍ତାଶୀଳ ବ୍ୟକ୍ତି, ଯେଉଁମାନେ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗମାନଙ୍କ ଉପରେ ମୌଳିକ ପ୍ରଶ୍ନ ଉଠାଇଥାନ୍ତି । ଜଣେ ଦାର୍ଶନିକ ଯେଉଁ ସିଦ୍ଧାନ୍ତ ବ୍ୟକ୍ତ କରିଥାନ୍ତି ତାହା ଯେତେ ମହତ୍ତ୍ୱପୂର୍ଣ୍ଣ ନୁହେଁ, ସେ ଯେଉଁ ଜିଜ୍ଞାସାର ଅବତାରଣା କରିଥାନ୍ତି ତାହା ଗୁରୁତ୍ୱପୂର୍ଣ୍ଣ ମନେହୁଏ । ବିଶେଷକରି ବିଭିନ୍ନ ପ୍ରସଙ୍ଗ ଉପରେ ସେମାନେ ପ୍ରତ୍ୟୟଗତ ବିଷୟ ବିଚାର ସ୍ତରକୁ ଆଣିଥାନ୍ତି । ସତ୍ୟ, ଜ୍ଞାନ, ନ୍ୟାୟ, ସୌନ୍ଦର୍ଯ୍ୟ, ପରମ ସତ୍ତା ଇତ୍ୟାଦି ବିଷୟମାନଙ୍କର ସଂଜ୍ଞା କିପରି ଦିଆଯିବ ତାହା ଦାର୍ଶନିକମାନଙ୍କ ପାଇଁ ଚିନ୍ତାର ବିଷୟ ହୋଇଥାଏ । ସେମାନଙ୍କର ଅନୁଶୀଳନ ପ୍ରତ୍ୟୟାତ୍ମକ ଓ ପ୍ରାୟତଃ ଅମୂର୍ତ୍ତୀୟ (abstract).

ଦର୍ଶନ ବିଷୟରେ ଆଲୋଚନା ପୂର୍ବରୁ ଦର୍ଶନ କ'ଣ, ଏହାର ବିଷୟ ପରିସରରେ କ'ଣ ସବୁ ପ୍ରସଙ୍ଗ ଆସିଥାଏ, ଦର୍ଶନର ସଂଜ୍ଞା କ'ଣ ହୋଇପାରେ ଏହି ସବୁ ବିଷୟରେ ସଂକ୍ଷିପ୍ତ ସୂଚନା ପ୍ରାସଙ୍ଗିକ ମନେହୁଏ । ଗୋଟିଏ ସମୟରେ ଜ୍ଞାନ-ବିଜ୍ଞାନ କ୍ଷେତ୍ରରେ ଏତେ ବିଶେଷତା ପ୍ରକାଶ ପାଇନଥିଲା । କୌଣସି ବିଷୟରେ ମୌଳିକ ଅନୁଶୀଳନ ଦର୍ଶନର ପରିସରଭୁକ୍ତ ଥିଲା । ତେବେ ସଭ୍ୟତାର କ୍ରମବିକାଶ ଓ ଚିନ୍ତା ଚେତନାର ଅଗ୍ରଗତି ସହ ଜ୍ଞାନରାଜ୍ୟରେ ବହୁ ବିଶେଷତା (Specialization) ପ୍ରକାଶ ପାଇଲା । ଗଣିତ, ପ୍ରାକୃତିକ ବିଜ୍ଞାନ, ସମାଜ ବିଜ୍ଞାନ, ଇତିହାସ, ସାହିତ୍ୟ ଇତ୍ୟାଦି କେତେ କେତେ ବୌଦ୍ଧିକ ଦିଗନ୍ତର ସୂଚନା ଦେଲା । ପ୍ରାକୃତିକ ବିଜ୍ଞାନ ଓ ସମାଜ ବିଜ୍ଞାନ ଅସଂଖ୍ୟ ଧାରାରେ ବିକଶିତ ହେଲେ । ପୁନଶ୍ଚ ପ୍ରାକୃତିକ ବିଜ୍ଞାନର ପ୍ରତ୍ୟେକ ଧାରା କେତେ କେତେ ଉପଧାରାରେ ପ୍ରକୃତିର ରହସ୍ୟକୁ ଉନ୍ମୋଚିତ କରିଚାଲିଲା । ସଭ୍ୟତାର ଐତିହାସିକ ଅନୁଶୀଳନ ବହୁ ଦିଗନ୍ତରେ ବିସ୍ତାରିତ ହେଲା । ଗାଣିତିକ ଅନୁଶୀଳନ ଭିତରୁ କେତେ କେତେ ବିଶେଷତା ଧୀରେ ଧୀରେ ଚିନ୍ତାରାଜ୍ୟରେ ଆଲୋଡନ ଆଣିଲା । ସୃଜନଶୀଳ ସାହିତ୍ୟ ବହୁ ବିଭାଗରେ ରୂପାନ୍ତରିତ ହେଲା । ସଭ୍ୟତାର ଅଗ୍ରଗତି ସହ ମାନବୀୟ ଅନୁଶୀଳନ, ଅନୁସନ୍ଧିତ୍ସା, ବିଚାରବୋଧ ଓ ସର୍ଜନଶୀଳତା କେତେ କେତେ ଦିଗନ୍ତକୁ ସ୍ପର୍ଶକରିବା ଏକ ଐତିହାସିକ ଉପଲବ୍ଧ ।

ଜ୍ଞାନ ବିଜ୍ଞାନରେ ଯେତେ ଯେତେ ଦିଗନ୍ତ ରହିଛି ପ୍ରତ୍ୟେକ ବିଭାଗର ବୌଦ୍ଧିକ ପରିସରଟି ପ୍ରାୟ ସୁନିର୍ଦ୍ଦିଷ୍ଟ । କୌଣସି ବିଷୟରେ ଅଧ୍ୟୟନ ପୂର୍ବରୁ ସେ ବିଷୟଟି କ'ଣ ଓ ତାର ପରିସରରେ କ'ଣ ଚର୍ଚ୍ଚା ହୁଏ ଏହା ଜାଣିବାକୁ ହୋଇଥାଏ । ରାଜନୀତି ବିଜ୍ଞାନ କ୍ଷେତ୍ରରେ ବିଭିନ୍ନ ରାଜନୈତିକ ଆଦର୍ଶ, ଶାସନ ପଦ୍ଧତି, ପ୍ରଶାସନିକ ଓ ବିଚାର ବ୍ୟବସ୍ଥା ଇତ୍ୟାଦି ଉପରେ ଆଲୋଚନା କରାଯାଏ । ପଦାର୍ଥ ବିଜ୍ଞାନ ପଦାର୍ଥ ବା ବସ୍ତୁ ଓ ଶକ୍ତିର ସ୍ୱରୂପ ଓ ସେମାନଙ୍କ ମଧ୍ୟରେ ରହିଥିବା ସଂପର୍କ ଓ ସିଦ୍ଧାନ୍ତକୁ ବ୍ୟାଖ୍ୟା କରିଥାଏ । ଜ୍ୟୋତିର୍ବିଜ୍ଞାନ ଅନ୍ତରୀକ୍ଷରେ ଥିବା ବିଭିନ୍ନ ଗ୍ରହ, ଉପଗ୍ରହ, ନକ୍ଷତ୍ର ଇତ୍ୟାଦିମାନଙ୍କର ସ୍ୱରୂପ, ସ୍ଥିତି, ଗତିପଥ ଇତ୍ୟାଦି ସଂପର୍କରେ ଅନୁଧ୍ୟାନ କରିଥାଏ । ମନୋବିଜ୍ଞାନ ମାନବିକ ବ୍ୟବହାର, ମାନସିକ ଅବସ୍ଥା, ଅସୁସ୍ଥତା ଇତ୍ୟାଦି ବିଷୟ ବିଚାର ପରିସରକୁ ଆଣିଥାଏ । ରସାୟନ ବିଜ୍ଞାନ ବିଭିନ୍ନ ବସ୍ତୁ ଓ ମୌଳିକ ପଦାର୍ଥ ମାନଙ୍କର ସ୍ଥିତି, ସ୍ୱରୂପ, ଗଠନ ଓ ପରସ୍ପର ପ୍ରତି କ୍ରିୟା, ପ୍ରତିକ୍ରିୟା ବିଷୟରେ ଜ୍ଞାନ ଦେଇଥାଏ । ଏହିପରି ସମାଜ-ବିଜ୍ଞାନ ହେଉ କିମ୍ବା ପ୍ରକୃତି-ବିଜ୍ଞାନ ହେଉ ପ୍ରତ୍ୟେକ ନିଜର ଅଧ୍ୟୟନ, ପରିସର, ବିଷୟବସ୍ତୁ ବିଷୟରେ ସୁବ୍ୟବସ୍ଥିତ ଭାବେ ଯଥାର୍ଥ ଜ୍ଞାନ ପ୍ରଦାନ କରିଥାଏ ।

ଏହି ପୃଷ୍ଠଭୂମିରେ ସ୍ୱାଭାବିକ ଭାବରେ ପ୍ରଶ୍ନ ଆସିଥାଏ- ଦର୍ଶନ କେଉଁ ବିଷୟରେ ଜ୍ଞାନ ଦେବାକୁ ଉଦ୍ଦିଷ୍ଟ ? ଦର୍ଶନଶାସ୍ତ୍ରର କିଛି ସାର୍ବଜନୀନ ସଂଜ୍ଞା ରହିଛିକି ? ଅନ୍ୟ ବୌଦ୍ଧିକ ପ୍ରସଙ୍ଗ କ୍ଷେତ୍ରରେ ଯେପରି ଗୋଟିଏ ବିଷୟର ବିଷୟବସ୍ତୁ, ପରିସର ଓ ସଂଜ୍ଞା ବିଷୟରେ ସ୍ପଷ୍ଟ ସୂଚନା ଦିଆଯାଇ ପାରୁଛି, ଦର୍ଶନ କ୍ଷେତ୍ରରେ ସେପରି କରିବା ସମ୍ଭବ ନୁହେଁ । ଏହାର ମୁଖ୍ୟ କାରଣ ହେଉଛି ଦର୍ଶନର ସଂଜ୍ଞା ଓ ସ୍ୱରୂପ ସମୟକୁ ସମୟ ପରିବର୍ତ୍ତିତ ହେବାରେ ଲାଗିଛି । ପ୍ରାଚୀନ ଯୁଗର ଦାର୍ଶନିକ ବିଚାରରେ ଯେଉଁ ପ୍ରସଙ୍ଗମାନଙ୍କର ଚର୍ଚ୍ଚା ହେଉଥିଲା, ମଧ୍ୟଯୁଗୀୟ ବୌଦ୍ଧିକ ଧାରାରେ ତାହାର ପରିବର୍ତ୍ତନ ହୋଇଯିବା ଦେଖାଯାଏ । ମଧ୍ୟଯୁଗୀୟ ଦାର୍ଶନିକ ଅନ୍ୱେଷାରେ ଯେଉଁ ସବୁ ବିଷୟ ଉପରେ ଗମ୍ଭୀର ଚର୍ଚ୍ଚା ହେଉଥିଲା, ଆଧୁନିକ ଯୁଗରେ ଅର୍ଥାତ୍ ଇଉରୋପୀୟ ନବଜାଗରଣ ଯୁଗରେ ସେସବୁର ପରିବର୍ତ୍ତନ ହୋଇ ଦର୍ଶନ ପରିସରରେ ଅନ୍ୟାନ୍ୟ ବିଷୟ ପ୍ରାଧାନ୍ୟ ନେଲା । ବିଂଶଶତାବ୍ଦୀ ଆରମ୍ଭରୁ ଦର୍ଶନରେ ଅନ୍ୟ ଏକ ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତ ହେଲା । ଏହିପରି ଦେଖିଲେ ଦର୍ଶନର ସଂଜ୍ଞା, ବିଷୟବସ୍ତୁ, ପରିସର ଇତ୍ୟାଦି କ୍ଷେତ୍ରରେ ସର୍ବଦା ପରିବର୍ତ୍ତନର ଧାରା ଅବ୍ୟାହତ ରହିଛି । ସେହି ଧାରାରେ ଦର୍ଶନର ସଂଜ୍ଞା ଓ ସ୍ୱରୂପ ମଧ୍ୟ ବଦଳିବାରେ ଲାଗିଛି ।

ତେବେ କେଉଁ ପ୍ରକାରର ଜ୍ଞାନ ବା ଅନ୍ୱେଷା ଦର୍ଶନର ପରିସରଭୁକ୍ତ ନୁହେଁ ସେ ବିଷୟରେ ସଂପ୍ରତି ଦାର୍ଶନିକମାନେ ବେଶ୍ ସଚେତନ । ଯେଉଁ ଜ୍ଞାନ ତଥ୍ୟାଧାରିତ ଓ ଯାହାର ଭିତ୍ତି ପର୍ଯ୍ୟବେକ୍ଷଣ-ପରୀକ୍ଷଣ ଉପରେ ନିର୍ଭର କରେ ତାହା ଦର୍ଶନର ପରିସରଭୁକ୍ତ ନୁହେଁ । ସାଧାରଣତଃ ବୈଜ୍ଞାନିକ ଜ୍ଞାନ ତଥ୍ୟଭିତ୍ତିକ ଓ ଏହା ପର୍ଯ୍ୟବେକ୍ଷଣ-ପରୀକ୍ଷଣ ଆଧାର ଉପରେ ଗଢ଼ି ଉଠିଥାଏ, ସୁତରାଂ ଏହା ଦର୍ଶନର ଅନ୍ତର୍ଭୁକ୍ତ ନୁହେଁ । ଏହା ବ୍ୟତୀତ ବୈଜ୍ଞାନିକ ଜ୍ଞାନ ପ୍ରଗତିଶୀଳ, ନୂତନ ସିଦ୍ଧାନ୍ତ ଆଧାରରେ ପରିବର୍ତ୍ତନଶୀଳ ଓ ପ୍ରଣାଳୀବଦ୍ଧ । ପଦାର୍ଥବିଜ୍ଞାନ, ରସାୟନବିଜ୍ଞାନ, ଚିକିତ୍ସାବିଜ୍ଞାନ, କୃଷିବିଜ୍ଞାନ ଇତ୍ୟାଦି କ୍ଷେତ୍ରମାନ ପ୍ରାକୃତିକ ବିଜ୍ଞାନର ପରିସରଭୁକ୍ତ । ସେହିପରି ରାଜନୀତିବିଜ୍ଞାନ, ନୃତତ୍ତ୍ୱ, ସମାଜଶାସ୍ତ୍ର, ଅର୍ଥଶାସ୍ତ୍ର ଇତ୍ୟାଦି ବିଷୟମାନ ସାମାଜିକ ବିଜ୍ଞାନର ଅନ୍ତର୍ଭୁକ୍ତ । ପ୍ରାକୃତିକ ବିଜ୍ଞାନ ଓ ସାମାଜିକ

ବିଜ୍ଞାନର ପ୍ରତ୍ୟେକ ବିଭାଗ ଏକ ପ୍ରଣାଳୀ ଅବଲମ୍ବନ  କରି ସେମାନଙ୍କର ତତ୍ତ୍ୱ ଓ ସିଦ୍ଧାନ୍ତମାନଙ୍କୁ ନିର୍ମାଣ କରିଥାନ୍ତି । ଅର୍ଥାତ୍ ବୈଜ୍ଞାନିକ ଜ୍ଞାନ ପ୍ରଣାଳୀବଦ୍ଧ ଯାହା ପ୍ରାୟତଃ ଆରୋହଣ ପଦ୍ଧତି ମାଧ୍ୟମରେ ନିଜର ସିଦ୍ଧାନ୍ତମାନଙ୍କୁ ନିର୍ମାଣ କରିବା ଦେଖାଯାଏ । ମୋଟଉପରେ କହିଲେ ବୈଜ୍ଞାନିକ ଜ୍ଞାନ ପ୍ରଣାଳୀବଦ୍ଧ ଓ ତଥ୍ୟାଧାରିତ । ସୁତରାଂ ଦର୍ଶନ ଏହି ଦୃଷ୍ଟିରୁ ବିଜ୍ଞାନଠାରୁ ପୃଥକ୍ କାରଣ ଦର୍ଶନ କୌଣସି ତଥ୍ୟଭିତ୍ତିକ ଜ୍ଞାନ ଦେବାକୁ ଲକ୍ଷ୍ୟପୋଷଣ କରେ ନାହିଁ ।

ଦର୍ଶନ ଓ ଗଣିତର ପରିସର ମଧ୍ୟ ପରସ୍ପରଠାରୁ ପୃଥକ୍ । ଗଣିତ ସ୍ତରରେ ବିଭିନ୍ନ ବିଭାଗ ରହିଛି । ଯେକୌଣସି ଏକ ଗାଣିତିକ ବିଷୟରେ କେତେକ ସ୍ୱତଃସିଦ୍ଧ ସିଦ୍ଧାନ୍ତ (axiom) କୁ ପ୍ରଥମରୁ ସ୍ୱୀକାର କରାଯାଏ । ସିଦ୍ଧାନ୍ତରୁ ବିଭିନ୍ନ ଉପପାଦ୍ୟ ଓ ଅନ୍ୟାନ୍ୟ ସିଦ୍ଧାନ୍ତମାନଙ୍କୁ ଅବତରଣ ପ୍ରଣାଳୀରେ ନିଷ୍ପନ୍ନ କରାଯାଏ । ଏକ ଉଚ୍ଚତର ସିଦ୍ଧାନ୍ତରୁ ଅନ୍ୟାନ୍ୟ ସିଦ୍ଧାନ୍ତମାନ ନିଶ୍ଚିତ ଭାବରେ ଅପରିହାର୍ଯ୍ୟ ଭାବେ ନିଷ୍ପନ୍ନ ହେଉଥାଏ । ହେତୁବାକ୍ୟ ଓ ସିଦ୍ଧାନ୍ତ ଭିତରେ ଅପରିହାର୍ଯ୍ୟତା କିମ୍ବା ଅବଶ୍ୟମ୍ଭାବୀ ସମ୍ବନ୍ଧ ରହିଥାଏ, ଯାହା ଗାଣିତିକ ଜ୍ଞାନର ଆଧାର । ବସ୍ତୁତଃ ଗଣିତ ସମ୍ବନ୍ଧୀୟ ଅନୁଶୀଳନ ଯେପରି ବୀଜଗଣିତ, କଳନଗଣିତ, ଜ୍ୟାମିତି, ତ୍ରିକୋଣମିତି ଇତ୍ୟାଦି ଦର୍ଶନର ପରିସରଭୁକ୍ତ ନୁହେଁ ।

ସେହିପରି ଐତିହାସିକ ପ୍ରସଙ୍ଗମାନ ଦର୍ଶନର ପରିସରଭୁକ୍ତ ନୁହେଁ । ଯେଉଁସବୁ ଘଟଣାମାନ ଅତୀତରେ ଘଟିଛି ଓ ଯେଉଁସବୁ ବିଚାର ପ୍ରତ୍ନତାତ୍ତ୍ୱିକ ତଥ୍ୟ ବା ବୈଜ୍ଞାନିକ ଆଧାରରେ ବ୍ୟାଖ୍ୟା କରାଯାଏ ସେସବୁ ଇତିହାସର ପ୍ରସଙ୍ଗ । କଳିଙ୍ଗ ଯୁଦ୍ଧ କେବେ, କାହିଁକି ଓ କିପରି ହୋଇଥିଲା, ଦଶହଜାର ବର୍ଷ ତଳେ ଭାରତବର୍ଷରେ କେତେ ଲୋକ ବାସକରୁଥିଲେ ଓ ସେମାନଙ୍କର ଜୀବନଧାରା କିପରି ଥିଲା, ନାଳନ୍ଦା ବିଶ୍ୱବିଦ୍ୟାଳୟର ପତନ କିପରି ହେଲା ଇତ୍ୟାଦି ପ୍ରସଙ୍ଗମାନ ଇତିହାସର ଅନ୍ତର୍ଭୁକ୍ତ । ଅତୀତର ଘଟଣାବଳୀକୁ ଉପଯୁକ୍ତ ତଥ୍ୟ ବା ଅନୁମାନ ଆଧାରରେ ପରିକଳ୍ପନା କରିବା ଇତିହାସର ବିଷୟବସ୍ତୁ ।

ବସ୍ତୁନିଷ୍ଠ ଜ୍ଞାନ ହେଉ (ଯେପରି ବିଜ୍ଞାନ) କିମ୍ବା ଆକାରନିଷ୍ଠ ଜ୍ଞାନ ହେଉ (ଯେପରି ଗଣିତ) ସେମାନଙ୍କ ସହ ଯେଉଁ ପ୍ରତ୍ୟୟମାନଙ୍କର ମୌଳିକ ସଂପର୍କ ରହିଛି, ସେହି ପ୍ରତ୍ୟୟମାନଙ୍କର ବିଶ୍ଳେଷଣ ଦର୍ଶନ ପରିସରରେ କରାଯାଏ । ଜ୍ଞାନର ଯେକୌଣସି କ୍ଷେତ୍ରରେ କେତେକ ମୌଳିକ ପ୍ରସଙ୍ଗ ଆସିଥାଏ । କୌଣସି ଘଟଣାର ବୈଜ୍ଞାନିକ ଅନୁଶୀଳନ କ୍ଷେତ୍ରରେ ଆମେ ତାହାର କାରଣ କ'ଣ ଜାଣିବାକୁ ଚାହିଁଥାଉ । ତେବେ କାର୍ଯ୍ୟ-କାରଣ ନିୟମ କାହାକୁ କୁହାଯାଏ, କାରଣର ସଂଜ୍ଞା କିପରି ନିରୂପଣ କରାଯିବ ତାହା ଏକ ଭିନ୍ନ ସ୍ତରର ବିଶ୍ଳେଷଣ । ଆମେ ବିଭିନ୍ନ ସ୍ତରରେ ନାନା ଯୁକ୍ତିର ଆଶ୍ରୟ ନେଇ ସିଦ୍ଧାନ୍ତରେ ଉପନୀତ ହେଉ । କେତେକ ତଥ୍ୟ ବା ହେତୁବଚନକୁ ଆଧାର ଭାବରେ ଗ୍ରହଣ କରି ଆମେ ସେଥିରୁ କେତେକ ନିଷ୍କର୍ଷ ବାହାର କରିଥାଉ । ହେତୁବଚନରୁ ସିଦ୍ଧାନ୍ତକୁ ଆସିବା କ୍ଷେତ୍ରରେ ଯୁକ୍ତି ବା ଅନୁମାନର ଅବତାରଣା ହୋଇଥାଏ । ଏକ ଯୁକ୍ତି କେଉଁ ଲକ୍ଷଣ ଯୋଗୁ ବୈଧ ହୁଏ କିମ୍ବା ଅବୈଧ ହୁଏ ତାହାର ବିଶ୍ଳେଷଣ ଏକ ଭିନ୍ନ ସ୍ତରରେ ହୋଇଥାଏ । ବୈଧତାର ମାନଦଣ୍ଡ କ'ଣ ତାହାର ବ୍ୟାଖ୍ୟାନ ଅମୂର୍ତ୍ତୀୟ ପ୍ରସଙ୍ଗ । ଦର୍ଶନ ଏହିଦୃଷ୍ଟିରୁ ଏକ ଅନୁଶୀଳନାତ୍ମକ ଅଧ୍ୟୟନ । ଜଗତର ଘଟଣାମାନଙ୍କର ବ୍ୟାଖ୍ୟାନ ପ୍ରଥମ ଶ୍ରେଣୀୟ ଅନୁଶୀଳନ । ମୌଳିକ ପ୍ରତ୍ୟୟମାନଙ୍କର ବିଶ୍ଳେଷଣ ଏକ ଦ୍ୱିତୀୟ ଶ୍ରେଣୀୟ ଅନୁଶୀଳନ । ଏହି

ଜ୍ଞାନ ଅମୂର୍ତ୍ତୀୟ (abstract), ବିଶ୍ଳେଷଣାତ୍ମକ ଓ ପ୍ରତ୍ୟୟାତ୍ମକ । ସେହିପରି କୌଣସି ବସ୍ତୁକୁ ଆମେ ସୁନ୍ଦର ବା ଅସୁନ୍ଦର କହୁ । ତେବେ ସୌନ୍ଦର୍ଯ୍ୟର ସଂଜ୍ଞା ଓ ସ୍ୱରୂପ କ'ଣ ତାହା ଏକ ବିଶ୍ଳେଷଣାତ୍ମକ ବ୍ୟାଖ୍ୟାନ । କେତେକ କାର୍ଯ୍ୟକୁ ଆମେ ଭଲ କହୁ, କେତେକ ଆଚରଣକୁ ମନ୍ଦ କହୁ । ତେବେ ଭଲ-ମନ୍ଦ ଭିତରେ ପାର୍ଥକ୍ୟ କରିବାର ମାନଦଣ୍ଡ କ'ଣ ଦାର୍ଶନିକ ଅନୁଶୀଳନ ଭିତରେ ଆସିଥାଏ । ସମାଜର କେତେକ ବ୍ୟବସ୍ଥାକୁ ନୀତିପୂର୍ଣ୍ଣ ବା ନ୍ୟାୟପୂର୍ଣ୍ଣ ଓ ଅନ୍ୟ କେତେକ ବ୍ୟବସ୍ଥାକୁ ଅନୈତିକ ବୋଲି ସାଧାରଣତଃ ବିଚାର କରିଥାଉ । ତେବେ ନ୍ୟାୟ କାହାକୁ କହନ୍ତି, ନୀତି, ନ୍ୟାୟ, ଉତ୍ତମ ଇତ୍ୟାଦି ପ୍ରତ୍ୟୟମାନଙ୍କର ସଂଜ୍ଞା କିପରି ଦିଆଯିବ ଏହାର ବ୍ୟାଖ୍ୟାନ ଅମୂର୍ତ୍ତୀୟ ମନେହୁଏ । ଏହି ଦୃଷ୍ଟିରୁ ବିଚାରକଲେ ଯେଉଁ ଜ୍ଞାନ ତଥ୍ୟାଧାରିତ ବା ବସ୍ତୁନିଷ୍ଠ ତାହା ବିଜ୍ଞାନର ପରିସରଭୁକ୍ତ, ପରନ୍ତୁ ଯେଉଁ ଜ୍ଞାନ ବିଶ୍ଳେଷଣାତ୍ମକ, ସଂଜ୍ଞାତ୍ମକ ଓ ଅନୁଶୀଳନଭିତ୍ତିକ ତାହା ଦର୍ଶନର ପରିସରରେ ଆସିଥାଏ । ତେଣୁ ଦର୍ଶନ ଏକ ଦ୍ୱିତୀୟ ଶ୍ରେଣୀୟ ଅମୂର୍ତ୍ତୀୟ ଅଧ୍ୟୟନ ।

ଦର୍ଶନ ପରିସରରେ ଯେଉଁ ସବୁ ବିଷୟମାନ ଆଲୋଚିତ ହୁଏ ତାହାକୁ କେତେକ ମୁଖ୍ୟ ଭାଗରେ ବିଭାଜନ କରାଯାଏ । ତତ୍ତ୍ୱମୀମାଂସା, ଜ୍ଞାନମୀମାଂସା, ତର୍କଶାସ୍ତ୍ର, ନୀତିଶାସ୍ତ୍ର, ସୌନ୍ଦର୍ଯ୍ୟଶାସ୍ତ୍ର ଇତ୍ୟାଦି ଦର୍ଶନଶାସ୍ତ୍ରର କେତେକ ମୌଳିକ କ୍ଷେତ୍ର ଭାବେ ସ୍ୱୀକୃତ ହେବା ଦେଖାଯାଏ । ବିଶ୍ୱରେ କିଛି ମୌଳିକ ସତ୍ତା ରହିଛିକି, ଯଦି ଅଛି ତା'ର ସ୍ୱରୂପ କ'ଣ, ତାହା ବସ୍ତୁଭିତ୍ତିକ ବା ଚେତନାଭିତ୍ତିକ ପ୍ରଶ୍ନମାନ ଯେଉଁ ସ୍ତରରେ ଆଲୋଚିତ ହୁଏ ତାହାକୁ ତତ୍ତ୍ୱମୀମାଂସା କୁହାଯାଏ । କୌଣସି ମହାଜାଗତିକ ସତ୍ତା ରହିଛିକି, ଯଦି ଅଛି ତାହା ଏକ ନା ଏକାଧିକ, ତାହାର ସ୍ୱରୂପ କ'ଣ ଏ ପ୍ରସଙ୍ଗ ତତ୍ତ୍ୱମୀମାଂସା ସ୍ତରରେ ଆସିଥାଏ । ମୌଳିକ ବା ମୂଳସତ୍ତାର ସଂଜ୍ଞା କ'ଣ, ତାହାର ସ୍ୱରୂପକୁ ଶୁଦ୍ଧବୁଦ୍ଧିଦ୍ୱାରା ନିରୂପଣ କରାଯାଇପାରିବ କି ଇତ୍ୟାଦି ବହୁ ପ୍ରଶ୍ନ ତତ୍ତ୍ୱମୀମାଂସା ପରିସରରେ ଦର୍ଶନରେ ଆଲୋଚିତ ହେବା ଦେଖାଯାଏ । ସେହିପରି ଜ୍ଞାନ କାହାକୁ କୁହାଯିବ, ଜ୍ଞାନର ସ୍ୱରୂପ ବା ଆଧାର କିପରି ନିରୂପିତ ହୁଏ ପ୍ରସଙ୍ଗମାନ ଜ୍ଞାନମୀମାଂସା କ୍ଷେତ୍ରରେ ଆଲୋଚନାର ପରିସରକୁ ଆସିଥାଏ । ଜ୍ଞାନର ସୀମା ରହିଛିକି, ବୈଧଜ୍ଞାନର ମାନଦଣ୍ଡ କ'ଣ, କେଉଁ ପ୍ରଣାଳୀ ଅବଲମ୍ବନଦ୍ୱାରା ବୈଜ୍ଞାନିକ ଜ୍ଞାନ ଓ ଗାଣିତିକ ଜ୍ଞାନ ଉପଲବ୍ଧ ହୋଇଥାଏ ଇତ୍ୟାଦି ଅମୂର୍ତ୍ତୀୟ ପ୍ରସଙ୍ଗମାନ ଜ୍ଞାନମୀମାଂସା ସ୍ତରରେ ଆଲୋଚ୍ୟ ହୋଇଥାଏ । ତର୍କଶାସ୍ତ୍ର କ୍ଷେତ୍ରରେ ବଚନମାନଙ୍କର ପ୍ରକାରଭେଦ, ବୈଧଯୁକ୍ତିର ନିୟମ, ଅନୁମାନର ଶ୍ରେଣୀବିଭାଗ ଇତ୍ୟାଦି କରାଯାଏ । ସେହିପରି ବିଜ୍ଞାନ ପରିସରରେ କରାଯାଉଥିବା ସାମାନ୍ୟୀକରଣର ଯଥାର୍ଥତା ମଧ୍ୟ ତର୍କଶାସ୍ତ୍ର ପରିସରରେ ବ୍ୟାଖ୍ୟା ହୋଇଥାଏ । ଆରୋହାନୁମାନ ଓ ଅବରୋହାନୁମାନ ଭିତରେ କ'ଣ ମୌଳିକ ପାର୍ଥକ୍ୟ ରହିଛି ଓ କେଉଁ ପ୍ରକ୍ରିୟାକୁ ଜ୍ଞାନର କେଉଁ ସ୍ତରରେ ପ୍ରୟୋଗ କରାଯିବା ବିଧେୟ ଇତ୍ୟାଦି ପ୍ରଶ୍ନମାନ ତର୍କଶାସ୍ତ୍ର ପରିସରରେ ଆସିଥାଏ । ମାନବୀୟ ଆଚରଣକୁ କିପରି ଭଲ-ମନ୍ଦ, ଉଚିତ-ଅନୁଚିତ ଭାବେ ବିଶ୍ଳେଷଣ କରାଯିବ, କେତେ ପ୍ରକାରର ମାନଦଣ୍ଡ ରହିଛି ଯାହାକୁ ଆଧାରକରି ଏକ କାର୍ଯ୍ୟକୁ ଉଚିତ କୁହାଯିବ ପ୍ରସଙ୍ଗମାନ ନୀତିଶାସ୍ତ୍ରରେ ବିଚାର୍ଯ୍ୟ ହୋଇଯାଏ । ପୁନଶ୍ଚ ପ୍ରୟୋଗାତ୍ମକ ନୀତିଶାସ୍ତ୍ର ଓ ସୈଦ୍ଧାନ୍ତିକ ନୀତିଶାସ୍ତ୍ର ଭିତରେ କ'ଣ ପାର୍ଥକ୍ୟ ବା ସାମଂଜସ୍ୟ ରହିଛି, ନୈତିକ ମାନକ କ୍ଷେତ୍ରରେ ବ୍ୟତିକ୍ରମକୁ ଗ୍ରହଣ କରାଯିବ ବା ଏକ ମାନକକୁ ସାର୍ବଜନୀନ ଭାବେ ଗ୍ରହଣ କରାଯିବ ନୀତିଶାସ୍ତ୍ର କ୍ଷେତ୍ରରେ ଆଲୋଚ୍ୟ ହେବା ଦେଖାଯାଏ । ପ୍ରକୃତିକୁ ଆମେ ସୁନ୍ଦର ବୋଲି କହୁ, ସଂସାରରେ କେତେ କେତେ ବସ୍ତୁକୁ ଆମେ ସୁନ୍ଦର ବୋଲି

ବିବେଚନା କରୁ, ତେବେ ସୌନ୍ଦର୍ଯ୍ୟର କିଛି ସାର୍ବଜନୀନ ସଂଜ୍ଞା ଦେବା ସମ୍ଭବ କି ? ସୌନ୍ଦର୍ଯ୍ୟର ଉପାଦାନ କେଉଁଥିରେ ନିହିତ, ଏହା ବସ୍ତୁନିଷ୍ଠ ବା ବ୍ୟକ୍ତିନିଷ୍ଠ ଇତ୍ୟାଦି ପ୍ରଶ୍ନମାନ ବେଶ୍ ଅମୂର୍ତ୍ତୀୟ । ଅମୂର୍ତ୍ତୀୟ ପ୍ରସଙ୍ଗ ଉପରେ ଗମ୍ଭୀର ଚର୍ଚ୍ଚା, ମୌଳିକ ପ୍ରତ୍ୟୟମାନଙ୍କର ବ୍ୟାଖ୍ୟାନ ଓ ସେମାନଙ୍କୁ ନେଇ ସିଦ୍ଧାନ୍ତ ନିର୍ମାଣ ଇତ୍ୟାଦି ପ୍ରାୟତଃ ଦର୍ଶନ ପରିସରରେ କରାଯାଏ । ତେବେ ଦର୍ଶନର ବିଶ୍ଳେଷଣ, ଆଲୋଚନା ଓ ମୌଳିକ ପ୍ରତ୍ୟୟମାନଙ୍କର ବ୍ୟାଖ୍ୟାନ, ସମୟକୁ ସମୟ ପରିବର୍ତ୍ତିତ ହୋଇଚାଲିଛି । ଦାର୍ଶନିକ ଜିଜ୍ଞାସା, ବିଶ୍ଳେଷଣ, ବିଷୟବସ୍ତୁ ଓ ଅନୁଶୀଳନ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ହୋଇଆସିଛି । ସାଂପ୍ରତିକ ବିଚାରବୋଧରେ ଦର୍ଶନକୁ ପ୍ରତ୍ୟୟାତ୍ମକ ଅନୁଶୀଳନ, ବୈଚାରିକ ସ୍ୱଷ୍ଟତା ଓ ଅମୂର୍ତ୍ତୀୟ ବ୍ୟାଖ୍ୟାନ ଭାବରେ ଗ୍ରହଣ କରାଯାଉଛି । ବିଂଶଶତାବ୍ଦୀ ଆରମ୍ଭରୁ ଦର୍ଶନ କ୍ଷେତ୍ରରେ ଯେଉଁ ବୈଚାରିକ ଆଲୋଡନ ସୃଷ୍ଟି ହେଲା, ତାର ପରିଣାମରୁ ଦର୍ଶନ ପରିସରରେ ତତ୍ତ୍ୱମୀମାଂସା ଧୀରେ ଧୀରେ ଅପାଂକ୍ତେୟ ଭାବେ ଗୃହୀତ ହେଲା ଓ ଦର୍ଶନର ଦିଗନ୍ତ ବିଶ୍ଳେଷଣାତ୍ମକ ଆଭିମୁଖ୍ୟ ନେଇ ବହୁ ସ୍ତରକୁ ପ୍ରସାରିତ ହେଲା । ଜ୍ଞାନର ଯେତେ ଯେତେ ଦିଗନ୍ତ ରହିଛି, ପ୍ରତ୍ୟେକ ସ୍ତରର ପ୍ରଣାଳୀ, ମୌଳିକ ପ୍ରତ୍ୟୟମାନଙ୍କର ବିଶ୍ଳେଷଣ, ସିଦ୍ଧାନ୍ତମାନଙ୍କର ଯୌକ୍ତିକ ଆଧାରର ବ୍ୟାଖ୍ୟାନ ଦର୍ଶନର ପରିସରକୁ ଆସିଲା । ଅନେକ ତାତ୍ତ୍ୱିକ ସିଦ୍ଧାନ୍ତମାନ କିପରି ଭାଷାଗତ ଜଟିଳତା, ପ୍ରତ୍ୟୟଗତ ଅସ୍ୱଷ୍ଟତା, ଶାବ୍ଦିକ ଭିନ୍ନତା ତଥା ନାନା ଛବିଳ କଳ୍ପନାରୁ ଉଦ୍‌ଭବ ହେଉଛି ତାହା ବିଂଶ ଶତାବ୍ଦୀୟ ଦାର୍ଶନିକ ଅନ୍ୱେଷାରେ ସ୍ୱଷ୍ଟ ହେବାକୁ ଲାଗିଲା । ଚିନ୍ତାରାଜ୍ୟରୁ ଅନେକ ଆବର୍ଜନାକୁ ଦୂର କରିବାରେ ଦର୍ଶନ ମୁଖ୍ୟ ଭୂମିକା ନେଇଥିବା ମନେହୁଏ ।

## ୧.୨ ଗ୍ରୀକ୍ ସଭ୍ୟତାର ଉନ୍ମେଷ

ପୃଥିବୀର ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ଯେଉଁ ପ୍ରାଚୀନ ସଭ୍ୟତାମାନ ଗଢ଼ିଉଠିଥିଲା, ସେ ମଧ୍ୟରେ ଗ୍ରୀକ୍ ସଭ୍ୟତାର ଅନେକ ମହତ୍ତ୍ୱ ଥିବା ମନେହୁଏ । ସାଂପ୍ରତିକ ଇଉରୋପ ମହାଦେଶର ଦକ୍ଷିଣ ଭାଗରେ ଗ୍ରୀସ୍ ଅବସ୍ଥିତ । ଐତିହାସିକମାନଙ୍କ ମତରେ ଖ୍ରୀ.ପୂ. ଦୁଇ ହଜାର ବେଳକୁ ମଧ୍ୟ ଇଉରୋପରୁ ଯେଉଁ ଜନଶାଖାଟି ବାହାରି ଗ୍ରୀସ୍ ଅଭିମୁଖେ ଯାଇଥିଲେ, ସେମାନେ ପରବର୍ତ୍ତୀ ସମୟରେ ଗ୍ରୀକ୍ ଭାବରେ ପରିଚିତ ହେଲେ । ଗ୍ରୀକ୍ ସଭ୍ୟତା ସମୁଦ୍ର ଉପକୂଳରେ ଗଢ଼ି ଉଠିଥିଲା । ରୋମାନ ଭାଷାରେ "ଗ୍ରୀକ୍" ଶବ୍ଦର ଅର୍ଥ ଯାଯାବର ଗୋଷ୍ଠୀ, ତେବେ ସେମାନେ ପଶୁପାଳନ ବି କରୁଥିଲେ । ଏହି ଗୋଷ୍ଠୀମାନ ଯେଉଁ ଭୂଖଣ୍ଡରେ ସ୍ଥାୟୀ ଭାବେ ପରେ ବସବାସ କଲେ ସେହି ଅଞ୍ଚଳ ଗ୍ରୀସ୍ ଭାବରେ ପରିଚିତ ହେଲା । ଭୂମଧ୍ୟସାଗର କୂଳରେ ବିଭିନ୍ନ ଦ୍ୱୀପପୁଂଜରେ ନଗରରାଷ୍ଟ୍ରମାନ ଗଢ଼ି ଉଠିଥିଲା । ପ୍ରାକୃତିକ କାରଣରୁ ବିଭିନ୍ନ ଅଞ୍ଚଳରେ କ୍ଷୁଦ୍ର କ୍ଷୁଦ୍ର ଜନଗୋଷ୍ଠୀମାନ ରହିଥିଲେ ଓ କୌଣସି ଦଳପତିଙ୍କ ଦ୍ୱାରା ଶାସିତ ହେଉଥିଲେ । ପ୍ରକୃତି ନଦୀ, ପର୍ବତମାଳା ଓ ସମୁଦ୍ରଦ୍ୱାରା ଗ୍ରୀସ୍‌କୁ ବହୁ କ୍ଷୁଦ୍ର କ୍ଷୁଦ୍ର ଖଣ୍ଡରେ ବିଭାଜିତ କରିଥିବା କାରଣରୁ ସମୁଦାୟ ଗ୍ରୀସ୍ ଏକ ଦେଶ ହୋଇପାରିଲା ନାହିଁ । ତେବେ ଗ୍ରୀସ୍‌ର ଅଧିବାସୀମାନେ ପ୍ରାକୃତିକ ପ୍ରାଚୀର ଦ୍ୱାରା ବହୁ ଭାଗରେ ବିଭକ୍ତ ହୋଇଥିଲେ ମଧ୍ୟ ସେମାନେ ଶ୍ୱେତାଙ୍ଗ ଇଣ୍ଡୋ ଇଉରୋପୀୟାନ" ଜାତି ଭାବରେ ପରିଚିତ ହୋଇ ଆସିଛନ୍ତି । ପରିଣାମତଃ ଗ୍ରୀକ୍ ସଭ୍ୟତା ଗ୍ରୀସ୍‌ର ବିଭିନ୍ନ ଭୂଖଣ୍ଡରେ ବିକଶିତ ହୋଇଥିବା ନଗର-ରାଷ୍ଟ୍ର ମାନଙ୍କୁ ନେଇ ବିକଶିତ ହୋଇଥିଲା ।

ଗ୍ରୀସ୍‌ରେ ବିଭିନ୍ନ ନଗର-ରାଷ୍ଟ୍ର ବା ସିଟି-ଷ୍ଟେଟ୍‌ସ ରହିଥିଲେ ମଧ୍ୟ କେତେକ କାରଣ ଯୋଗୁଁ ଗ୍ରୀକ୍‌ମାନଙ୍କ ଭିତରେ ଏକ ବନ୍ଧନ-ଐକ୍ୟ ରହିଥିଲା । ଏହି ପୃଷ୍ଠଭୂମିରେ ସବୁଠାରୁ ଉଲ୍ଲେଖନୀୟ କାରଣ ହେଉଛି ଗୋଟିଏ ସାଧାରଣ ଭାଷା ଓ ଗ୍ରୀସ୍‌ର ମହାକବି ହୋମରଙ୍କ ମହାକାବ୍ୟ । ଏକ ଗ୍ରୀକ୍ ନଗର ରାଜ୍ୟ ଆୟୋନୀୟ ଅଧିବାସୀ ହୋମର ଖ୍ରୀ.ପୂ. ନବମ ବା ଅଷ୍ଟମ ଶତାବ୍ଦୀର କବି ବୋଲି ଅନୁମାନ କରାଯାଏ । ପୁନଶ୍ଚ ସେ ଦୃଷ୍ଟିହୀନ ଥିବା ମଧ୍ୟ ପରଂପରାରେ ବିଶ୍ୱାସ ରହିଛି । ତେବେ ତାଙ୍କ ରଚିତ ଦୁଇଟି ମହାକାବ୍ୟ ଇଲିଆଡ ଓ ଅଡ଼ିଶି ଗ୍ରୀକ୍‌ମାନଙ୍କର ଭାବରାଜ୍ୟରେ ସଂହତି ସୃଷ୍ଟି କରିଥିଲା । ଭାରତବର୍ଷରେ ରାମାୟଣ ଓ ମହାଭାରତ ଯେପରି ଜାତୀୟ ଭାବାଦର୍ଶକୁ ରୂପ ଦେଇଛି, ସେହିପରି ହୋମରଙ୍କ ମହାକାବ୍ୟ ଗ୍ରୀକ୍ ମାନଙ୍କର ଜାତୀୟ ଜୀବନଚର୍ଯ୍ୟାକୁ ସର୍ବଦା ପ୍ରଭାବିତ କରିଆସିଛି । ଏହି ମହାକାବ୍ୟର କାହାଣୀ ଓ ମିଥ୍‌ମାନଙ୍କୁ ନେଇ ଗ୍ରୀକ୍ କବି, ସାହିତ୍ୟିକ ଓ ନାଟ୍ୟକାରମାନେ ଅନେକ କିଛି ସୃଷ୍ଟି କରିଛନ୍ତି ।

ଇଲିଆଡ ମହାକାବ୍ୟର ବିଷୟବସ୍ତୁ ଏକ ଯୁଦ୍ଧର କାହାଣୀକୁ ନେଇ ରଚିତ । ଏହି ଯୁଦ୍ଧ ଆକିଆନ ଓ ଟ୍ରୟ ମଧ୍ୟରେ ହୋଇଥିଲା । ଆକିଆନମାନେ ଟ୍ରୟ ସୀମାକୁ ଯାଇ କରିଥିବା ଯୁଦ୍ଧକୁ ଟ୍ରୋଜାନ ଯୁଦ୍ଧ କୁହାଯାଏ । ସ୍ପାରଟାର ରାଣୀ ହେଲେନଙ୍କୁ କେନ୍ଦ୍ର କରି ଏହି ଯୁଦ୍ଧ ହୋଇଥିଲା ଓ ଇଲିଆଡ ମହାକାବ୍ୟର କାହାଣୀ ଏହି ଯୁଦ୍ଧର ବୀରତ୍ୱପୂର୍ଣ୍ଣ ଗାଥା । ତେବେ ହୋମରଙ୍କ ରଚିତ କାବ୍ୟ ଇତିହାସ ନୁହେଁ । ଟ୍ରୋଜାନ ଯୁଦ୍ଧର ସମୟକାଳର ତିନି ଚାରି ଶତାବ୍ଦୀ ପରେ ହୋମରଙ୍କ କାବ୍ୟ ରଚିତ ହୋଇଥିଲା, ତେଣୁ ତାହା ଘଟଣାବଳୀ ପ୍ରତି କେତେ ବିଶ୍ୱସ୍ତ ତାହା ନେଇ ସନ୍ଦେହ ରହିଛି । ପୁନଶ୍ଚ ହୋମରଙ୍କ ବର୍ଣ୍ଣନାନୁଯାୟୀ ସ୍ୱର୍ଗର ଦେବରାଜ ଜିଅସ୍ ମହାବୀରମାନଙ୍କର ଯୁଦ୍ଧକୁ ଉପଭୋଗ କରିବାକୁ ଏହି ଯୁଦ୍ଧ ସୃଷ୍ଟି କରିଥିଲେ । ଗ୍ରୀସ୍‌ର ବିଭିନ୍ନ ନଗର. ରାଷ୍ଟ୍ରମାନ ଜଣେ ଜଣେ ମହାବୀରଙ୍କ ଯୋଗୁ ପ୍ରତିଷ୍ଠିତ ହୋଇଥିବା ବିଶ୍ୱାସ ରହିଛି । ଯୁଦ୍ଧର ବର୍ଣ୍ଣନା ଭିତରେ ମହାବୀରମାନଙ୍କର ବିପୁଳ ଶକ୍ତି ଓ ଯୁଦ୍ଧକୌଶଳକୁ ହୋମର ଚମତ୍କାର କାବ୍ୟିକ ରୂପ ଦେଇଛନ୍ତି । ତେଣୁ ଟ୍ରୋଜାନ ଯୁଦ୍ଧ କାହାଣୀ ଇତିହାସ ନୁହେଁ, ପୁରାଣ । ଏହି ମହାବୀରମାନଙ୍କୁ ନେଇ ଅନେକ କାଳ୍ପନିକ କାହାଣୀ ସୃଷ୍ଟି କରାଯାଇଛି । ତେବେ ଇତିହାସ ଓ ପୁରାଣର ଦ୍ୱନ୍ଦ୍ୱ ଭିତରେ ଗ୍ରୀକ୍‌ମାନଙ୍କ ପାଇଁ ଏହି କାଳ୍ପନିକ କାହାଣୀ ସତ୍ୟ ଓ ବାସ୍ତବ ବୋଲି ଲୋକବିଶ୍ୱାସ ଭାବରେ ଗୃହୀତ ହୋଇଥିଲା । ହୋମରଙ୍କ ଇଲିଆଡ ଓ ଓଡଶି ଭିତରେ ନାନା ମିଥ୍‌ମାନ ରହିଛି । ମଣିଷର ସ୍ୱପ୍ନ, ଭାଗ୍ୟ, ଦୁଃଖ, ଯନ୍ତ୍ରଣା, ଦ୍ୱନ୍ଦ୍ୱ, ସଙ୍କଟ ଇତ୍ୟାଦି ବିଭିନ୍ନ ମିଥ୍‌ମାନଙ୍କରେ ଏପରି ସୁନ୍ଦର ଭାବେ ବ୍ୟକ୍ତ ହୋଇଛି ଯାହାର ନାନା ଆବେଦନ ଶହ ଶହ ବର୍ଷ ଧରି ଇଉରୋପୀୟ ଚିନ୍ତାମାନସକୁ ପ୍ରଭାବିତ କରିଆସିଛି । ଏକ ମିଥ୍ ଏକ ପ୍ରତୀକ ଭାବରେ ଚିନ୍ତାଚେତନାକୁ ପ୍ରେରଣା ଓ ଚିରନ୍ତନ ଭାବେ ପ୍ରଭାବିତ କରିଥାଏ । ସୁତରାଂ ହୋମରଙ୍କ ମହାକାବ୍ୟ ଦୁଇଟି ଗ୍ରୀକ୍ ସଭ୍ୟତାର ଭାବମଣ୍ଡଳକୁ ଓ ଜୀବନବୋଧକୁ ଯେ ଗଭୀର ଭାବେ ପ୍ରଭାବିତ କରିଛି ତାହା ନିଃସନ୍ଦେହ ମନେହୁଏ ।

ଗ୍ରୀକ୍‌ମାନେ ଟ୍ରୟ (ଏହା ସଂପ୍ରତି ତୁର୍କୀର ପଶ୍ଚିମ ଭାଗରେ ଅବସ୍ଥିତ) ପର୍ଯ୍ୟନ୍ତ ଯାଇ ଯୁଦ୍ଧ କରିଥିବା ଘଟଣାକୁ ନେଇ ଐତିହାସିକମାନେ ବିଶେଷ ତଥ୍ୟ ଦେଇପାରି ନାହାନ୍ତି । ତେବେ ଏହି ପ୍ରକାର ଏକ ଯୁଦ୍ଧରେ

ସଂପୃକ୍ତ ଉଭୟ ପକ୍ଷ ଯେ ଉନ୍ନତ ସଭ୍ୟତାର ଅଧିକାରୀ ଥିଲେ ଏହା କୁହାଯାଇପାରେ । ବିଂଶଶତାବ୍ଦୀ ଆରମ୍ଭରେ ପ୍ରତ୍ନତତ୍ତ୍ୱବିଜ୍ଞାନର ବିକାଶ ପରେ ଟ୍ରୟଠାରେ ହୋଇଥିବା ଯୁଦ୍ଧକୁ କଳ୍ପନାକରି ସେହି ସ୍ଥାନକୁ ନିରୂପଣ କରାଗଲା । ଏହାପରେ ସେଠାରେ ପ୍ରତ୍ନତାତ୍ତ୍ୱିକ ଖନନ କରି କେତେକ ସଫଳତା ଐତିହାସିକମାନେ ପାଇଲେ । ଏହି ପ୍ରକ୍ରିୟାରେ ମିନିଆନ ଓ ମାଇସିଆନ ସଭ୍ୟତାର ପରିଚୟ ମିଳିଲା । କ୍ରିଟ ନଗର-ରାଷ୍ଟ୍ରରେ ଯେଉଁ ସଭ୍ୟତାର ବିକାଶ ହୋଇଥିଲା ତାହା ମିନୋଆନ ସଭ୍ୟତା ଭାବେ ପରିଚିତ । ପ୍ରାଚୀନ କ୍ରିଟର ନୋସସ ସ୍ଥାନକୁ ଖୋଳାଇ ସେଠାରୁ ଖ୍ରୀ.ପୂ. ତିନି ହଜାର ବର୍ଷର ଏକ ସଭ୍ୟତାର ଭଗ୍ନବିଶେଷ ପାଇଲେ । ସେହିପରି ମାଇସନର ପ୍ରତ୍ନତାତ୍ତ୍ୱିକ ଖନନରୁ ମଧ୍ୟ ପ୍ରାଚୀନ ସଭ୍ୟତାର କେତେକ ପ୍ରମାଣ ମିଳିଥିବା କୁହାଯାଉଛି । ସୁତରାଂ କ୍ରିଟର ମିନିଆନ ଓ ମାଇସନର ମାଇସିନିଆନ ସଭ୍ୟତା ପ୍ରାଚୀନ ଗ୍ରୀକ୍ ସଭ୍ୟତାର ଅଙ୍ଗ ବୋଲି ଧରା ଯାଉଛି ।

ଏହା ସୁବିଦିତ ଯେ ଗ୍ରୀସ୍‌ର ଭୌଗୋଳିକ ପରିବେଶ ଏହାକୁ ଏକ ଦେଶ ବା ରାଷ୍ଟ୍ରରେ ବିକଶିତ ହେବାରେ ପ୍ରତିବନ୍ଧକ ହୋଇଥିଲା । ପରିଣାମ ସ୍ୱରୂପ ଛୋଟ ଛୋଟ ନଗର-ରାଷ୍ଟ୍ରମାନ ଗ୍ରୀସ୍‌ରେ ଗଢ଼ି ଉଠିଥିଲା । ଗ୍ରୀସ୍ ପ୍ରାକୃତିକ ପ୍ରାଚୀର ଦ୍ୱାରା ବହୁ ଖଣ୍ଡରେ ବିଭାଜିତ ହୋଇ ରହିଥିଲା ଓ ପ୍ରତ୍ୟେକ ନଗର ରାଜ୍ୟ ସ୍ୱତନ୍ତ୍ର ଓ ସ୍ୱାଧୀନ ଭାବରେ ଶାସନାଧୀନ ଥିଲା । ପ୍ରତ୍ୟେକ ନଗରରାଜ୍ୟର କିଛି ସ୍ୱତନ୍ତ୍ରତା ରହିଥିଲା । ତେବେ ଗ୍ରୀକ୍ ସଭ୍ୟତାକୁ ଯେଉଁ ସବୁ ନଗର-ରାଜ୍ୟମାନ ନିଜର ସ୍ୱକୀୟ ଅବଦାନ ଦ୍ୱାରା ପରିପୁଷ୍ଟ କରିଛନ୍ତି ସେଥିରେ ଡୋରିଆନ, ଆକିଆନ, କ୍ରିଟିଆନ, ମାଇସିନିଆନଙ୍କର ଯଥେଷ୍ଟ ମହତ୍ତ୍ୱ ଥିବା କୁହାଯାଏ । ଯେକୌଣସି ଦୁଇଟି ଭୂଖଣ୍ଡ ଭିତରେ କିଛି ସାଂସ୍କୃତିକ ଅବଦାନର ସମନ୍ୱୟ ଗ୍ରୀସ୍‌ରେ ହୋଇଥିଲା । ଡୋରିଆନମାନେ ଯୁଦ୍ଧ କ୍ଷେତ୍ରରେ ନୂତନ କଳାକୌଶଳର ବିକାଶ କରିଥିଲେ । ଆକିଆନ ମାନେ ସାମାଜିକ ଜୀବନକୁ ଅଧିକ ସୁସଂହତ ଓ ଶୃଂଖଳିତ କରିବାକୁ ଉଦ୍ୟମ କରିଥିବା ଜଣାଯାଏ । ମାଇସିନିଆନମାନେ ଅଧିକ ସୃଜନକ୍ଷମ ଓ ସୌନ୍ଦର୍ଯ୍ୟଭରା ଗୋଷ୍ଠୀ ଭାବେ ପରିଚିତ ଥିବା ବେଳେ କ୍ରିଟିଆନମାନେ ବି ବେଶ୍ ସୃଜନଶୀଳ ଜାତି ଥିଲେ । ସ୍ପାରଟାରେ ସଂଗୀତ ଓ ନୃତ୍ୟର ବିକାଶ ହୋଇଥିଲା ଓ ଏଥେନ୍‌ସରେ ଦାର୍ଶନିକ ବିଚାର ଉତ୍କର୍ଷ ଲାଭ କରିଥିଲା । ଏହିପରି ଦେଖିଲେ ନଗରରାଷ୍ଟ୍ର ମାନଙ୍କରେ ବିଭକ୍ତ ଗ୍ରୀସ୍ ଏକ ସମନ୍ୱିତ ସଂସ୍କୃତିର ବିକାଶରେ ପରିପୁଷ୍ଟ ହୋଇଥିଲା ।

ତେବେ ଏକ ଐତିହାସିକ ଘଟଣା ଗ୍ରୀକ୍‌ମାନଙ୍କ ମଧ୍ୟରେ ଐକ୍ୟ ପ୍ରତିଷ୍ଠା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଯେତେବେଳେ ପାରସ୍ୟ ଗ୍ରୀସ୍‌କୁ କବଳିତ କରିବାକୁ ଆକ୍ରମଣ କଲା, ସେତେବେଳେ ଗ୍ରୀକ୍‌ମାନଙ୍କ ମଧ୍ୟରେ ଜାତୀୟ ଚେତନା ପ୍ରକାଶ ପାଇଲା । ପାରସ୍ୟ ବିରୁଦ୍ଧରେ ଲଢ଼ିବା ପାଇଁ ନଗରର ରାଷ୍ଟ୍ରମାନେ ଏକତାବଦ୍ଧ ହେଲେ । ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀ ବେଳକୁ ପାରସ୍ୟ ଏକ ଶକ୍ତିଶାଳୀ ଦେଶ ଭାବରେ ବିକାଶଲାଭ କରିଥିଲା । ପାର୍ଶୀମାନେ ଗ୍ରୀକ୍ ନଗରରାଜ୍ୟ ଆୟୋନିୟାକୁ ଆକ୍ରମଣ କରି କରାୟତ କଲା ପରେ ଏଥେନ୍‌ସ ଉପରେ ଆକ୍ରମଣ କଲେ । ତେବେ ଏଥେନୀୟମାନେ ଅତ୍ୟନ୍ତ ବୀରତ୍ୱର ସହ ପାର୍ଶୀମାନଙ୍କ ବିରୁଦ୍ଧରେ ଲଢ଼ି ବିଜୟଲାଭ କଲେ । ଏକ ପରାକ୍ରମୀ ଶକ୍ତିକୁ ପରାସ୍ତ କରିବାପରେ ଏଥେନ୍‌ସବାସୀଙ୍କର ଆତ୍ମବିଶ୍ୱାସ ଯଥେଷ୍ଟ ବୃଦ୍ଧି ପାଇଥିଲା । ପାରସ୍ୟ ଯୁଦ୍ଧରେ ଏଥେନ୍‌ସରେ ଧ୍ୱଂସର ଲୀଳା ସୃଷ୍ଟି ହୋଇଥିଲା । ସେହି ଧ୍ୱଂସଲୀଳା ଭିତରୁ ଏଥେନ୍‌ସବାସୀ ପୁଣି ନିଜର

ନଗର-ରାଷ୍ଟ୍ରକୁ ନିର୍ମାଣ କରିବାର ସଂକଳ୍ପ କଲେ । ଏହି ସମୟରେ ଏଥେନ୍ସରେ ଏକ ସ୍ୱର୍ଣ୍ଣଯୁଗର ଆରମ୍ଭ ହେଲା । ଏହି ସ୍ୱର୍ଣ୍ଣଯୁଗର ପ୍ରଧାନ ରୂପକାର ଥିଲେ ପେରିକ୍ଲିସ । ପେରିକ୍ଲିସ (ଖ୍ରୀ.ପୂ.୪୯୫-୪୨୯)ଙ୍କଠାରୁ ଆରିଷ୍ଟୋଟଲଙ୍କ ମୃତ୍ୟୁ (ଖ୍ରୀ.ପୂ. ୩୨୨) ପର୍ଯ୍ୟନ୍ତ ପ୍ରାୟ ଦେଢ଼ଶହ ବର୍ଷ ଗ୍ରୀସ୍‌ର ଇତିହାସର ସୁବର୍ଣ୍ଣଯୁଗ ବୋଲି ଧରାଯାଏ । କଳା, ସାହିତ୍ୟ, ଦର୍ଶନ, ଭାସ୍କର୍ଯ୍ୟ, ଶିକ୍ଷା ଇତ୍ୟାଦି ସବୁ କ୍ଷେତ୍ରରେ ଗ୍ରୀସ୍ ଯେଉଁ ପ୍ରଗତି ହାସଲ କରିଥିଲା ତାହା ମାନବ ସଭ୍ୟତାର ଇତିହାସରେ ବିରଳ କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରାୟ ଅଢ଼େଇ ହଜାର ବର୍ଷ ତଳେ ଗ୍ରୀସ୍‌ରେ ଯେଉଁ ସାଂସ୍କୃତିକ ଉତ୍‌ଥାନ ହୋଇଥିଲା ତାର ମହକ ଇଉରୋପୀୟ ସଭ୍ୟତା, ସଂସ୍କୃତି ଓ ବୌଦ୍ଧିକ ବିକାଶରେ ବଡ ଅବଦାନ ଦେଇଥିବା ମନେହୁଏ । ପେରିକ୍ଲିସଙ୍କଠାରୁ ଗ୍ରୀସ୍ ଭୂମିରେ ଯେଉଁ ମହାନ ଚିନ୍ତା ନାୟକମାନଙ୍କର ଆବିର୍ଭାବ ଘଟିଥିଲା ସେମାନେ ମାନବ ସଭ୍ୟତା ଇତିହାସରେ ଜ୍ୟୋତିଷ୍କ ଭାବରେ ରହିଛନ୍ତି । ସେହି ଦୀପ୍ତିମାନ ବ୍ୟକ୍ତିତ୍ୱମାନଙ୍କର ବୌଦ୍ଧିକ ଅବଦାନ ଏବେ ବି ଚିନ୍ତାରାଜ୍ୟରେ ସ୍ମରଣୀୟ ହୋଇରହିଛି ।

ବୌଦ୍ଧିକ ଅବଦାନ ସହିତ ବିଭିନ୍ନ ପ୍ରକାର ଖେଳ, କସରତକୁ ଗ୍ରୀକ୍‌ମାନେ ବହୁ ପ୍ରାଧାନ୍ୟ ଦେଉଥିଲେ । ଖ୍ରୀ.ପୂ. ଅଷ୍ଟମ ଶତାବ୍ଦୀରେ ସେମାନେ ପ୍ରଥମେ ଅଲଂପିକ କ୍ରୀଡା ଆରମ୍ଭ କରିଥିବା ଜଣାଯାଏ । ସମଗ୍ର ଗ୍ରୀସ୍‌ର ନଗର ରାଜ୍ୟମାନଙ୍କରୁ ଖେଳାଳି ମାନେ ପ୍ରତିଯୋଗିତାରେ ଭାଗ ନେଉଥିଲେ । ପ୍ରତି ଚାରିବର୍ଷରେ ଥରେ ଏହି ଅଲଂପିକ ପ୍ରତିଯୋଗିତା ଅନୁଷ୍ଠିତ ହେଉଥିଲା । ଏହି ଦୃଷ୍ଟିରୁ ବିଚାର କଲେ ଗ୍ରୀକ୍‌ମାନେ ଅନେକ ଖେଳର ଉଦ୍‌ଭାବକ ଥିଲେ । ଜାଭେଲିନ୍ ଥ୍ରୋ, ଡିସ୍କସ୍ ଥ୍ରୋ, ଲଙ୍ଗଜଂପ, ବକ୍ସିଂ, ମଲ୍ଲଯୁଦ୍ଧ, ଘୋଡା ଦୌଡ ଇତ୍ୟାଦି ପ୍ରତିଯୋଗିତା ଗ୍ରୀସ୍‌ରେ ହେଉଥିଲା । ଗ୍ରୀସ୍ ରୋମଦ୍ୱାରା ଅଧିକୃତ ହେବା ପର୍ଯ୍ୟନ୍ତ ପ୍ରାୟ ଏକ ହଜାର ବର୍ଷ ଧରି ଗ୍ରୀସ୍‌ରେ ଏହି ପ୍ରତିଯୋଗିତା ଚାଲୁଥିଲା । ଆନ୍ତର୍ଜାତିକ ସ୍ତରରେ ୧୮୯୬ ରୁ ଅଲଂପିକ ପ୍ରତିଯୋଗିତା ପ୍ରତି ଚାରିବର୍ଷରେ ଥରେ ଅନୁଷ୍ଠିତ ହେଉଛି । ତେବେ ଏହା ଖ୍ରୀ.ପୂ. ଅଷ୍ଟମ ଶତାବ୍ଦୀରେ ଗ୍ରୀକ୍ ମାନଙ୍କ ଦ୍ୱାରା ଆରମ୍ଭ ହେବା ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା । ପ୍ରାଚୀନ ଗ୍ରୀସ୍‌ରେ ଏହା ପାଞ୍ଚଦିନ ଧରି ଅନୁଷ୍ଠିତ ହେଉଥିଲା ଓ ବିଜୟୀ ଖେଳାଳିମାନଙ୍କୁ ଅଲିଭ ପତ୍ରର ମୁକୁଟ ସେସମୟରେ ପିନ୍ଧାଇ ଦିଆଯାଉଥିଲା । ଗ୍ରୀସ୍‌ରେ ଖେଳ, କସରତର ଲୋକପ୍ରିୟତା ଗ୍ରୀକ୍ ନଗରରାଜ୍ୟମାନଙ୍କ ଭିତରେ ମଧ୍ୟ ବନ୍ଧନର ଆଧାର ଥିଲା ।

ସବୁ ପ୍ରାଚୀନ ସଭ୍ୟତାରେ ପ୍ରାୟତଃ ରାଜତନ୍ତ୍ର ଥିଲା, ଗ୍ରୀସ୍‌ର କେତେକ ନଗରରାଷ୍ଟ୍ରରେ ମଧ୍ୟ ଏହା ଥିଲା । ତେବେ ଗ୍ରୀସ୍‌ର କେତେକ ମୁଖ୍ୟ ନଗରରାଷ୍ଟ୍ରରେ ଗଣତନ୍ତ୍ରର ବିକାଶ ହୋଇଥିଲା । ରାଜତନ୍ତ୍ରରେ ରାଜା ସମସ୍ତ ଶକ୍ତିର ଅଧିକାରୀ, ଓ ସାଧାରଣ ଲୋକମାନେ ପ୍ରଜା, କିନ୍ତୁ ଗ୍ରୀସ୍‌ରେ ଯେଉଁ ନଗରରାଷ୍ଟ୍ରମାନ ଗଢ଼ି ଉଠିଥିଲା, ସେଥିରେ ସାଧାରଣ ଲୋକମାନଙ୍କୁ ନାଗରିକ ବୋଲି ଗ୍ରହଣ କରାଯାଉଥିଲା । ପ୍ରତ୍ୟେକ ନଗର ରାଜ୍ୟ ଏକ ବଡ ଗ୍ରାମ ବା କେତୋଟି ଗ୍ରାମ ମିଶି ଗଢ଼ି ଉଠିଥିଲା । ଗୋଟିଏ ନଗରରାଷ୍ଟ୍ରର ଲୋକମାନେ ପରସ୍ପରକୁ ବ୍ୟକ୍ତିଗତ ଭାବରେ ଜାଣିବା ସମ୍ଭବ ଥିଲା ଓ ନଗର ରାଜ୍ୟର ଭଲ ମନ୍ଦରେ ପ୍ରତ୍ୟେକ ସାବାଳକ ବ୍ୟକ୍ତିର ସଂପୃକ୍ତି ରହିଥିଲା । ଅଳ୍ପ ଜନସଂଖ୍ୟା ବିଶିଷ୍ଟ ଏକ ନଗରରାଷ୍ଟ୍ରରେ ପ୍ରତ୍ୟକ୍ଷ ଗଣତନ୍ତ୍ର ସ୍ଥାପିତ ହୋଇଥିଲା ଓ ଜଣେ ନାଗରିକର କୌଣସି କୃତିତ୍ୱ ବା ପ୍ରତିଭା ନଗରବାସୀଙ୍କ ପ୍ରଶଂସାର ବିଷୟ ଥିଲା । ଏକ ମୁକ୍ତ ପରିବେଶରେ ବଞ୍ଚିଥିବା ଲୋକମାନେ

ନିଜର ଅନ୍ତର୍ନିହିତ ସାମର୍ଥ୍ୟର ବିକାଶ କ୍ଷେତ୍ରରେ ସୁଯୋଗ ଲାଭ କରୁଥିଲେ । ଏହି ଦୃଷ୍ଟିରୁ ଦେଖିଲେ ଗଣତନ୍ତ୍ର, ବ୍ୟକ୍ତି ସ୍ୱାଧୀନତା, ବୌଦ୍ଧିକ ଚର୍ଚ୍ଚା ଓ ଜ୍ଞାନପିପାସା ଗ୍ରୀକ୍ ସଭ୍ୟତାର ସର୍ବଶ୍ରେଷ୍ଠ ଅବଦାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ସାର୍ବଜନୀନ ମୂଲ୍ୟବୋଧମାନ ପ୍ରାଚୀନ ଗ୍ରୀସ୍‌ରେ ଯେ ଭିତ୍ତି ନେଇଥିଲା ଏହା ଗ୍ରୀକ୍ ସଂସ୍କୃତିର ମାନବ ସଭ୍ୟତାକୁ ବଡ ଅବଦାନ ମନେହୁଏ ।

ତେବେ ଗ୍ରୀକ୍ ସଂସ୍କୃତିର ମନ୍ଦ ଦିଗଟି ଥିଲା ଯେ ଦାସତ୍ୱପ୍ରଥାକୁ ଗ୍ରୀସ୍‌ରେ ଗ୍ରହଣ କରାଯାଉଥିଲା । ଚାଷବାସଠାରୁ ଆରମ୍ଭ କରି ବିଭିନ୍ନ ଶରୀର ଶ୍ରମ ଦାସମାନେ ସମାହିତ କରୁଥିଲେ । ଏକ ନଗରରାଷ୍ଟ୍ରରେ ତିନି ଶ୍ରେଣୀର ଲୋକ ରହୁଥିଲେ ଯଥା ନାଗରିକ, ଦାସ ଓ ବାଣିଜ୍ୟ ବେପାର କିମ୍ବା ଅନ୍ୟ ସ୍ଥାନରୁ ଆସିଥିବା ବିଦେଶୀ । ନାଗରିକ ମାନଙ୍କର କେବଳ ରାଜନୈତିକ ଅଧିକାର ଥିଲା ଓ ବିଦେଶୀମାନେ ନାଗରିକମାନଙ୍କ ପରି ସ୍ୱାଧୀନ ଥିଲେ । କେବଳ ଦାସମାନେ ସ୍ୱାଧୀନତା ଉପଭୋଗ କରୁନଥିଲେ । ତେବେ ଦାସମାନଙ୍କର ଆର୍ଥିକ ସ୍ଥିତି ଗରିବ ନାଗରିକମାନଙ୍କର ଅବସ୍ଥା ଠାରୁ ଯେ ଉନ୍ନତ ଥିଲା ଏହା ଜଣାଯାଏ । ପୋଷାକ ପରିଚ୍ଛଦରୁ ଜଣଙ୍କୁ ଦାସ ବୋଲି ଜାଣିବା ସମ୍ଭବ ନଥିଲା । ବିଭିନ୍ନ ପ୍ରାଚୀନ ସଭ୍ୟତାରେ ଦାସତ୍ୱ ପ୍ରଥା ଥିଲା ଓ କେତେକ ସମାଜରେ ଦାସମାନଙ୍କୁ ପଶୁଭଳି ବ୍ୟବହାର କରାଯାଉଥିଲା । ଏପରିକି ସପ୍ତଦଶ ଶତାବ୍ଦୀରେ ଆମେରିକାରେ କ୍ରୀତଦାସ ପ୍ରଥା, ଭାରତୀୟ ସମାଜରେ ଅସ୍ପୃଶ୍ୟତା, ଆଫ୍ରିକାରେ ବର୍ଣ୍ଣବୈଷମ୍ୟ ମାନବ ସଭ୍ୟତାର ଅନ୍ଧକାରର କାହାଣୀ । ତେବେ ଗ୍ରୀସ୍‌ରେ ଦାସତ୍ୱ ପ୍ରଥା ଥିଲେ ମଧ୍ୟ ଏହା ଅତ୍ୟନ୍ତ ଅମାନବିକ ନ ଥିଲା ।

ଗ୍ରୀସ୍‌ରେ ଯେତେ ଯେତେ ନଗରରାଷ୍ଟ୍ର ଥିଲେ ସେ ମଧ୍ୟରେ ଯେଉଁ ଗୁଡିକ ସବୁ କ୍ଷେତ୍ରରେ ଅଧିକ ବିକଶିତ ଥିଲେ ସେମାନଙ୍କ ମଧ୍ୟରେ ଏଥେନ୍ସ ଓ ସ୍ପାର୍ଟାର ନାମ ଆଗକୁ ଆସେ । ସାହିତ୍ୟ, ଚିତ୍ରକଳା, ଭାସ୍କର୍ଯ୍ୟ, ଦର୍ଶନ ଚର୍ଚ୍ଚା, ନାଟକ ଇତ୍ୟାଦି ବିଭିନ୍ନ କ୍ଷେତ୍ରରେ ସେମାନେ ବେଶ୍ ଉନ୍ନତ ଥିଲେ । ସ୍ପାରଟାର ନାଗରିକ ମାନଙ୍କୁ ଡୋରିଆନ ଓ ଏଥେନ୍ସର ନାଗରିକମାନଙ୍କୁ ଆୟୋନିଆନ୍ କୁହାଯାଉଥିଲା । ତେବେ ସ୍ପାରଟା ଓ ଏଥେନ୍ସ ମଧ୍ୟରେ ଅନ୍ତର୍ଯୁଦ୍ଧ ଗ୍ରୀକ୍ ସଭ୍ୟତାକୁ ବିପଥଗାମୀ କରିଥିଲା । ବିଶେଷକରି ପିଲୋପୋନେସିଆନ ଯୁଦ୍ଧର ବିଭୀଷିକା ଗ୍ରୀସ୍‌ର ପତନର କାରଣ ହୋଇଥିଲା । ଏହି ଯୁଦ୍ଧରେ ସମସ୍ତ ନଗରରାଷ୍ଟ୍ର ସ୍ପାରଟା ବା ଏଥେନ୍ସକୁ ସମର୍ଥନ କଲେ । ଦଶବର୍ଷ ଧରି ଚାଲିଥିବା ଏହି ଯୁଦ୍ଧ ସମଗ୍ର ଗ୍ରୀସ୍‌କୁ ବ୍ୟାପି ଯାଇଥିଲା । ପାରସ୍ୟ ଯୁଦ୍ଧ ପରେ ଏଥେନ୍ସରେ ସ୍ୱର୍ଣ୍ଣ ଯୁଗ ଆରମ୍ଭ ହୋଇଥିଲା, ପରନ୍ତୁ ପିଲୋପୋନେସିଆନ ଯୁଦ୍ଧର ପରିଣତି ବିଭିନ୍ନ ନଗରରାଷ୍ଟ୍ରର ମେରୁଦଣ୍ଡକୁ ଭାଙ୍ଗିଦେଲା । ଏହାସହିତ ସେହି ସମୟରେ କେତେକ ମହାମାରୀ ସୃଷ୍ଟି ହୋଇ ନଗରର ଏକ ଚତୁର୍ଥାଂଶ ଲୋକ ମୃତ୍ୟୁ ମୁଖରେ ପଡିଲେ । ଏହି ବିପଦ ସମୟରେ ଦାସସମାଜ ମାନଙ୍କର ବିଦ୍ରୋହ ଆରମ୍ଭ ହେଲା । ଏହିପରି ବିଭିନ୍ନ କାରଣରୁ ଗ୍ରୀସ୍‌ର ସଭ୍ୟତା ଗୋଟିଏ ସମୟରେ କେତେକ ସଙ୍କଟର ସମ୍ମୁଖୀନ ହୋଇଥିଲା । ଧୀରେ ଧୀରେ ସମଗ୍ର ଗ୍ରୀସ୍‌ରୁ ଗଣତାନ୍ତ୍ରିକ ବ୍ୟବସ୍ଥାର ବିଲୋପ ହେଲା । ସ୍ପାର୍ଟାରେ ଯେଉଁ ସଂଭ୍ରାନ୍ତବାଦ ଥିଲା, ତାହାକୁ ଅଧିକାଂଶ ନଗରରାଷ୍ଟ୍ର ଗ୍ରହଣ କଲେ । ସ୍ପାର୍ଟା ଯେଉଁ ସମୟରେ ଅଧିକ ଶକ୍ତିଶାଳୀ ହେଲା, ବିଭିନ୍ନ ନଗରରାଷ୍ଟ୍ରରେ ସ୍ପାର୍ଟାର ଧନୀ ସଂଭ୍ରାନ୍ତମାନେ ଶାସନମୁଖ୍ୟ ହେଲେ । ନାନା କାରଣରୁ ବହୁ ଉତ୍‌ଥାନ ପତନ ଦେଇ ଏଥେନ୍ସ ଓ ସ୍ପାର୍ଟା

ଗତି କରିଥିଲେ ମଧ୍ୟ ଏଥେନ୍‌ସରେ ଯେଉଁ ଗଣତାନ୍ତ୍ରିକ ପରଂପରା, ଇଉରୋପର ପ୍ରଥମ ବିଶ୍ୱବିଦ୍ୟାଳୟ ଓ ବିଭିନ୍ନ ବୌଦ୍ଧିକ ତଥା କଳାତ୍ମକ ସିଦ୍ଧି ଘଟିଥିଲା ତାହାର ବହୁ ସୁଫଳ ପାଶ୍ଚାତ୍ୟ ସଭ୍ୟତା ଲାଭ କରିଛି ।

ଗ୍ରୀସ୍‌ର ଉତ୍ତର ଭାଗରେ ମାସେଡନିଆ ଏକ ପାହାଡିଆ ରାଜ୍ୟ । ଏହି ରାଜ୍ୟରେ ସେପରି କିଛି ବୌଦ୍ଧିକ ବିକାଶ ହୋଇନଥିଲା, ଲୋକମାନେ ନିରକ୍ଷର ଓ ପାହାଡରେ ପଶୁଚରାଇ ସାମାନ୍ୟ କିଛି ଚାଷକରି ଜୀବନ ବଞ୍ଚୁଥିଲେ । ତାହାର ରାଜା ଫିଲିପ୍ ନିଜ ରାଜ୍ୟର ବିଭିନ୍ନ ଉପଜାତିର ଲୋକମାନଙ୍କୁ ଏକାଠି କରି ଜାତୀୟତାବୋଧରେ ପ୍ରଭାବିତ କରିଥିଲେ । ମାସେଡନିଆର ଭାଷା ଥିଲା ଗ୍ରୀକ୍, ତେବେ ଲୋକମାନେ ଅର୍ଦ୍ଧ ଗ୍ରୀକ୍ ବୋଲି ବିବେଚିତ ହେଉଥିଲେ । ଫିଲିପ୍ ମାସେଡନିଆର ଲୋକମାନଙ୍କୁ ସଂଗଠିତ କରି କୌଶଳକ୍ରମେ ସମଗ୍ର ଗ୍ରୀସ୍‌କୁ କରାୟତ୍ତ କଲେ । ଫିଲିପ୍‌ଙ୍କର ପୁତ୍ର ହେଉଛନ୍ତି ଅଦ୍ୱିତୀୟ ବୀର ଆଲେକଜାଣ୍ଡର (ଖ୍ରୀ.ପୂ. ୩୫୬-[illegible]) । ଆଲେକ୍‌ଜାଣ୍ଡରଙ୍କର ଶିକ୍ଷକ ଥିଲେ ଆରିଷ୍ଟୋଟଲ । ଆଲେକ୍‌ଜାଣ୍ଡର ଗ୍ରୀକ୍‌ର [illegible] ହେବା ସହ ସେ ଦିଗ୍‌ବିଜୟରେ ଯାଇ ଭାରତ ଭୂଖଣ୍ଡ ପର୍ଯ୍ୟନ୍ତ ଅଞ୍ଚଳକୁ ଜୟ କରି ପାରିଥିଲେ । ଗ୍ରୀକ୍ ମାନଙ୍କ [illegible] ଦର୍ଶନ, ସାହିତ୍ୟ, ସଂସ୍କୃତି ଇତ୍ୟାଦି ସେ ତାଙ୍କର କେତେକ ଗୁରୁ ଓ ଆରିଷ୍ଟୋଟଲଙ୍କଠାରୁ ଶିକ୍ଷା କରିଥିଲେ । [illegible] ଯେଉଁ ଏସୀୟ ରାଜ୍ୟ ଅଧିକାର କରୁଥିଲେ ସେ ସେଠାରେ ଗ୍ରୀକ୍ ସଂସ୍କୃତିର ପ୍ରସାର ପାଇଁ ପ୍ରୟାସ କରୁଥିଲେ । ଆଲେକ୍‌ଜାଣ୍ଡରଙ୍କ ବିଜୟ ପରିପ୍ରେକ୍ଷୀରେ ଗ୍ରୀକ୍ ସଂସ୍କୃତି ଓ ଦର୍ଶନ ଏକ ବିସ୍ତୃତ ଅଞ୍ଚଳରେ ପ୍ରସାରିତ ହୋଇଥିଲା । ଆଲେକ୍‌ଜାଣ୍ଡରଙ୍କ ଦିଗ୍‌ବିଜୟ କାରଣରୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ସଂପର୍କ ଓ ଆଦାନ ପ୍ରଦାନର ପରିବେଶ ସୃଷ୍ଟି ହୋଇଥିଲା ।

ଆଲେକ୍‌ଜାଣ୍ଡରଙ୍କ ଆବିର୍ଭାବ କାରଣରୁ ଗ୍ରୀସ୍ ଏକ ରାଷ୍ଟ୍ର ହେବା ସହ ସେଠାରେ ଗଢ଼ିଉଠିଥିବା ନଗରରାଷ୍ଟ୍ରର ମୃତ୍ୟୁ ଘଣ୍ଟି ବାଜିଲା । ନଗରରାଷ୍ଟ୍ର ମାନଙ୍କରେ ଗ୍ରୀକ୍‌ମାନେ ଯେଉଁ ଗଣତନ୍ତ୍ରର ବିକାଶ କରିଥିଲେ ତାହାର ପତନ ଘଟିଲା । ଆଲେକ୍‌ଜାଣ୍ଡର ଇତିହାସର ମୋଡ ବଦଳାଇବାରେ ଏକ ପ୍ରଭାବଶାଳୀ ବ୍ୟକ୍ତିତ୍ୱ । ବିଭିନ୍ନ ଭୂଖଣ୍ଡ ଓ ଜାତିର ଲୋକଙ୍କୁ ଏକତ୍ର କରିବା ଓ ଏକ ରାଷ୍ଟ୍ରୀୟ ଚେତନାର ବିକାଶ କରାଇବାରେ ତାଙ୍କର କିଛି ଐତିହାସିକ ଭୂମିକା ରହିଛି । ତେବେ ଆଲେକ୍‌ଜାଣ୍ଡରଙ୍କ ପରଠାରୁ ରାଜତନ୍ତ୍ରର ବିକାଶ ଅନ୍ୟ ଏକ ଐତିହାସିକ ଉପଲବ୍ଧି । ଗ୍ରୀସ୍‌ରେ ଛୋଟ ଛୋଟ ନଗର ରାଷ୍ଟ୍ରରେ ଗଣତନ୍ତ୍ରର ଯେଉଁ ପ୍ରୟୋଗ ଆରମ୍ଭ ହୋଇଥିଲା ତାହାର ମଧ୍ୟ ପରିସମାପ୍ତି ଘଟିଲା । ଦୁଇହଜାର ବର୍ଷ ପାଖାପାଖି ପୃଥିବୀରେ ରାଜତନ୍ତ୍ର ଚାଲିଲା । ଫରାସୀ ରାଷ୍ଟ୍ରବିପ୍ଳବ ଇତିହାସର ଅନ୍ୟ ଏକ ନିର୍ଣ୍ଣାୟକ ଘଟଣା ଯାହା ପରଠାରୁ ଗଣତାନ୍ତ୍ରିକ ରାଜନୈତିକ ବ୍ୟବସ୍ଥାର ବିକାଶ ହେଲା ।

ଏକ ଐତିହାସିକ ପୃଷ୍ଠଭୂମିରୁ ବିଚାରକଲେ ଆଲେକ୍‌ଜାଣ୍ଡରଙ୍କ ପରଠାରୁ ଗ୍ରୀସ୍ ଏକ ରାଷ୍ଟ୍ର ହେଲା । ନଗରରାଷ୍ଟ୍ରମାନେ ସାମାନ୍ୟ କାରଣରୁ ଯେପରି ଯୁଦ୍ଧରେ ସଂପୃକ୍ତ ହେଉଥିଲେ ଓ ସେମାନଙ୍କ ମଧ୍ୟରେ ଯେଉଁ ଅନ୍ତର୍ବିବାଦ ଲାଗି ରହୁଥିଲା ତାହାର ମଧ୍ୟ ପରିସମାପ୍ତି ହେଲା । ସ୍ୱାଧୀନତା ଉପଭୋଗ ପାଇଁ ଆବଶ୍ୟକ ଯେଉଁ ଶୃଂଖଳା ଓ ନାଗରିକ କର୍ତ୍ତବ୍ୟବୋଧ ତାହାର ଅଭାବରେ ସ୍ୱାଧୀନତା ବା ଗଣତନ୍ତ୍ର ବିଶେଷ ମୂଲ୍ୟ ରଖେ ନାହିଁ । ସେ ଦୃଷ୍ଟିରୁ ଗ୍ରୀସ୍‌ର ନଗର ରାଷ୍ଟ୍ରମାନଙ୍କ ମଧ୍ୟରେ ଯେଉଁ ଗଣତନ୍ତ୍ର ରହିଥିଲା ତାହା ଆଲେକ୍‌ଜାଣ୍ଡରଙ୍କ ଯୋଗୁଁ ନଷ୍ଟ ହେବା ପରିପ୍ରେକ୍ଷୀରେ ତାଙ୍କୁ କେବଳ ଏକ ନିମିତ୍ତ ମାତ୍ର ଭାବେ ଐତିହାସିକମାନେ ଚିତ୍ରଣ କରିଛନ୍ତି । ବରଂ

ଗ୍ରୀସ୍‌ର କଳା, ସଂସ୍କୃତି, ଦର୍ଶନକୁ ଗ୍ରୀସ୍ ବାହାରକୁ ନେବାରେ ଆଲେକ୍‌ଜାଣ୍ଡରଙ୍କର ବଡ ଭୂମିକା ରହିଥିଲା । ସଂସ୍କୃତି ସଂସ୍କୃତି ଭିତରେ ଆଦାନ ପ୍ରଦାନ କ୍ଷେତ୍ରରେ ଆଲେକ୍‌ଜାଣ୍ଡରଙ୍କର ଦିଗ୍‌ବିଜୟର ଯାତ୍ରା ବହୁ ମହତ୍ତ୍ୱ ରଖେ ବୋଲି ଗ୍ରହଣ କରାଯାଏ ।

ଗ୍ରୀକ୍ ସଭ୍ୟତା ମାନବ ସଭ୍ୟତାକୁ ଯେ ବହୁ ମହତ୍ତ୍ୱପୂର୍ଣ୍ଣ ଅବଦାନ ଦେଇଛି ଏହା ଅନସ୍ୱୀକାର୍ଯ୍ୟ । ପାଶ୍ଚାତ୍ୟ ଜଗତର ଅନେକ ମୂଲ୍ୟବୋଧର ବିକାଶରେ ଗ୍ରୀକ୍ ସଭ୍ୟତାର ପ୍ରଭାବ ରହିଛି । ବ୍ୟକ୍ତି ସ୍ୱାଧୀନତା, ବିଚାରଶୀଳତାର ବିକାଶ, ଜ୍ଞାନ ପାଇଁ ଅନୁସନ୍ଧିତ୍ସା, ସତ୍ୟନିଷ୍ଠତା ଓ ଜୀବନର ଗୁଣାତ୍ମକ ଉତ୍ତରଣରେ ନୈତିକ ଶୃଂଖଳାବୋଧ ମୂ[illegible]ମାନ ଗ୍ରୀକ୍ ସଭ୍ୟତାରେ ସୃଷ୍ଟି ହୋଇଥିଲା । ଧାର୍ମିକ ରକ୍ଷଣଶୀଳତା ଓ ଧର୍ମକୈନ୍ଦ୍ରିକ ଶାସନ ବ୍ୟବସ୍ଥା ବା ଥିଓକ୍ରାଟିକ୍ ସଭ୍ୟତାର ବିକାଶ ହୁଏ ନାହିଁ ଯାହା ପ୍ରାୟତଃ ଅନ୍ୟ ସଭ୍ୟତାରେ ଦେଖାଯାଏ । ବରଂ ଏସବୁ ଅଜ୍ଞତା ଓ ସାମନ୍ତବାଦର ବିକାଶରେ ସହାୟକ ହୋଇଥାଏ । ଏ ଦୃଷ୍ଟିରୁ ଗ୍ରୀକ୍ ସଭ୍ୟତା ନାନା ପ୍ରଗତିଶୀଳ ବିଚାର ଓ ମାନବବାଦୀ ଜୀବନ ଦୃଷ୍ଟିର ବିକାଶ ପାଇଁ ମାନବଜାତିର ଏକ୍ତୁଡିଶାଳ ଥିଲା । ଏହି ପୃଷ୍ଠଭୂମିରେ ଗ୍ରୀକ୍ ଦର୍ଶନ ଯେଉଁ ବୌଦ୍ଧିକ ଆଲୋଡନ ଓ ଦିଗନ୍ତ ସୃଷ୍ଟି କରିଥିଲା ତାହା ଅନନ୍ୟ ମନେହୁଏ । ଏଠାରେ ଗ୍ରୀକ୍ ଦର୍ଶନର ଦିଗନ୍ତ ଉପରେ ଆମେ ସଂକ୍ଷିପ୍ତ ଆଲୋଚନା କରିବା ।

## ୧.୩ ଗ୍ରୀକ୍ ଦର୍ଶନର ସ୍ୱରୂପ

ଦର୍ଶନ ଚର୍ଚ୍ଚା ବୌଦ୍ଧିକ ଉତ୍କର୍ଷର ସୂଚନା ଦିଏ । ବିଭିନ୍ନ ପ୍ରାଚୀନ ସଭ୍ୟତାରେ ଦର୍ଶନ ସଂପର୍କୀୟ ଅନୁଶୀଳନ କ୍ଷେତ୍ରରେ ଗ୍ରୀକ୍‌ମାନେ ବହୁ ମହତ୍ତ୍ୱପୂର୍ଣ୍ଣ ଅବଦାନ ରଖିଛନ୍ତି । ବିଭିନ୍ନ ବୌଦ୍ଧିକ କ୍ଷେତ୍ର ଉପରେ ଗ୍ରୀକ୍‌ମାନେ ମୌଳିକ ଚର୍ଚ୍ଚାର ସୂତ୍ରପାତ କରିଥିବା ମନେହୁଏ । ଗ୍ରୀକ୍‌ମାନେ ଥିଲେ ଏକ ପ୍ରାଣ ପ୍ରାଚୁର୍ଯ୍ୟଭରା ଜାତି । ଗ୍ରୀସ୍‌ର ବିଭିନ୍ନ ନଗରରାଜ୍ୟରେ ଜ୍ଞାନ, କଳା, ସାହିତ୍ୟ, ଦର୍ଶନ ଇତ୍ୟାଦି ବୌଦ୍ଧିକ ସ୍ତରରେ ଗମ୍ଭୀର ଚର୍ଚ୍ଚା ହେବାର ଏକ ମୁକ୍ତ ପରିବେଶ ସୃଷ୍ଟି ହୋଇଥିଲା । କୁସଂସ୍କାର, ଅହେତୁକ ବିଶ୍ୱାସ ଓ ପରଂପରା ପ୍ରତି ବିଚାରହୀନ ଅନୁରାଗ ସ୍ୱାଧୀନ ଚିନ୍ତାର ବିକାଶ କ୍ଷେତ୍ରରେ ବଡ ପ୍ରତିବନ୍ଧକ ହୋଇଥାଏ । ପରନ୍ତୁ ବୁଦ୍ଧିବାଦ ଓ ତର୍କଶୀଳତାର ପ୍ରଭାବ ସ୍ୱାଧୀନ ଚିନ୍ତା ପାଇଁ ପରିବେଶ ଯୋଗାଇଥାଏ । ଗ୍ରୀସ୍‌ରେ ବିଚାରଶୀଳତା ଓ ତର୍କଶୀଳତାର ବିସ୍ତାରଦ୍ୱାରା ଦାର୍ଶନିକ ଅନୁଶୀଳନ ନେଇ ଏକ ବାତାବରଣ ସୃଷ୍ଟି ହୋଇଥିଲା । ଗ୍ରୀସ୍‌ରେ ଯେଉଁ ବୌଦ୍ଧିକ ସ୍ୱାଧୀନତାର ବାୟୁମଣ୍ଡଳ ରହିଥିଲା ତାହା ଜ୍ଞାନାର୍ଜନ ପାଇଁ ଅନୁକୂଳ ଥିଲା, ଫଳରେ ସମାଜ ଅନେକାଂଶରେ ଧାର୍ମିକ ରୂଢ଼ିବାଦ ଓ ଧର୍ମାନ୍ଧତାଠାରୁ ମୁକ୍ତ ରହିଥିଲା । ବୌଦ୍ଧିକ ସ୍ୱାଧୀନତା ଏକ ଉନ୍ନତ ସଂସ୍କୃତିର ବିକାଶ ପାଇଁ କିପରି ଅବଶ୍ୟମ୍ଭାବୀ ତାହାର ବହୁ ଉଦାହରଣ ଇତିହାସରୁ ଦେଖିବାକୁ ମିଳେ । ଏହିପରି ଏକ ବାତାବରଣ ପ୍ରାଚୀନ ଗ୍ରୀସ୍‌ରେ ସୃଷ୍ଟି ହେବା ଗୌରବାବହ ଥିଲା । ପୁନଶ୍ଚ ଗ୍ରୀକ୍‌ମାନେ ଏହି ଜୀବନକୁ ତଥା ସମାଜକୁ ଉନ୍ନତ ଓ ସୁନ୍ଦର କରିବାକୁ ନିଜର ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରିଥିଲେ । ସେତେବେଳେ ସେମାନଙ୍କ ଭିତରେ ଏହି ଭାବନା ଆସିଥିଲା ଯେ ମାନବିକ ପ୍ରୟାସରେ ହିଁ ଜୀବନ ସୁଖମୟ ହେବା ସହ ସମାଜ ଉନ୍ନତ ହୋଇପାରିବ । ଜୀବନର ଆନନ୍ଦ ଓ ସୌନ୍ଦର୍ଯ୍ୟ ପ୍ରତି ସେମାନେ ବେଶ୍ ସଚେତନ ଥିବା ମନେହୁଏ । ଏହା ସହିତ ଆଇନ୍ ପ୍ରତି ସମ୍ମାନ ଗ୍ରୀକ୍‌ମାନଙ୍କ ଭିତରେ ବ୍ୟାପକ ଥିଲା । ଆଇନ୍ ପ୍ରତି

ସଚେତନ ରହିବା ଓ ଆଇନ୍ ମାନି ଚଳିବା ପାଇଁ ଗ୍ରୀକ୍‌ମାନଙ୍କୁ ଶିକ୍ଷା ଦିଆଯାଉଥିଲା । ଗ୍ରୀକ୍‌ମାନେ ରାସ୍ତା, ଘାଟ, ହାଟ ବଜାରରେ ଦର୍ଶନ ଓ ତାତ୍ତ୍ୱିକ ପ୍ରସଙ୍ଗର ଆଲୋଚନା କରିବା ସେମାନଙ୍କର ଅଭିରୁଚିରେ ପରିଣତ ହୋଇଥିଲା । ଏହିପରି ଦେଖିବାକୁ ଗଲେ ଗ୍ରୀକ୍‌ମାନେ ଏକ ପ୍ରାଣପ୍ରାଚୁର୍ଯ୍ୟ ଭରା ଜାତିଭାବେ ଜୀବନର ଶ୍ରେୟ ନେଇ ବୌଦ୍ଧିକ ଚର୍ଚ୍ଚାରେ ସଂପୃକ୍ତ ରହିବାଦ୍ୱାରା ଏକ ସମୃଦ୍ଧ ସଭ୍ୟତା ନିର୍ମାଣରେ ସେମାନେ ସଫଳକାମୀ ହୋଇପାରିଥିଲେ । କଳା, ସଂସ୍କୃତି, ସାହିତ୍ୟ, ଦର୍ଶନ ଇତ୍ୟାଦି ମଧ୍ୟଦେଇ ଜୀବନ ପ୍ରତି ଏକ ଐକ୍ୟବଦ୍ଧ ଓ ସକାରାତ୍ମକ ଦୃଷ୍ଟି ନିର୍ମାଣ କରିବାରେ ଗ୍ରୀକ୍‌ମାନେ ଅଗ୍ରଗାମୀ ରହିଥିଲେ । ପୃଥିବୀର ବିଭିନ୍ନ ଭୂଖଣ୍ଡରେ ସଭ୍ୟତାମାନ ଖ୍ରୀଷ୍ଟାବ୍ଦ ପୂର୍ବରୁ ସୃଷ୍ଟି ହୋଇଥିଲେ ମଧ ଗ୍ରୀକ୍‌ସଭ୍ୟତା ଯେଉଁ ସବୁ କ୍ଷେତ୍ରରେ ବୌଦ୍ଧିକ ଦିଗନ୍ତର ଅୟମାରମ୍ଭ କରିଥିଲା ତାହା ସଭ୍ୟତାର ବିକାଶ ପାଇଁ ଅନେକ ପ୍ରେରଣା ସୃଷ୍ଟି କରିଛି । ଗୋଟିଏ ଜାତିର ସ୍ୱପ୍ନ, ମୂଲ୍ୟବୋଧ, ଜୀବନଦର୍ଶନ ଓ ମାନବିକ ଅନୁରାଗକୁ ଜାଣିବାକୁ ପ୍ରୟାସ କଲାବେଳେ ସେଠାରେ କେଉଁ ପ୍ରକାରର ଦାର୍ଶନିକ ବିଚାରର ସୂତ୍ରପାତ ହୋଇଥିଲା ଓ ଜନମାନସର ବୌଦ୍ଧିକ ସ୍ତର କ'ଣ ଥିଲା ତାହା ଜାଣିବା ଆବଶ୍ୟକ ମନେହୋଇଥାଏ । କେଉଁ ପ୍ରକାରର ଜୀବନ ଉତ୍ତମ ଜୀବନ ? ଜୀବନର ଶ୍ରେୟ କେଉଁଥିରେ ନିହିତ ? ପାର୍ଥିବ ଜୀବନରେ ସଂପତ୍ତି ଓ କ୍ଷମତାର ଅଧିକାରୀ ହେବା ଉପରେ ମଣିଷର ସୁଖ ଶାନ୍ତି ନିର୍ଭର କରେ କି ? ଆମେ କ'ଣ ପାଇଁ ଜ୍ଞାନ ଚାହୁଁ ? ଆଦର୍ଶ ସମାଜ କାହାକୁ କୁହାଯିବ ? ସାମାଜିକ ନ୍ୟାୟର ସ୍ୱରୂପ କ'ଣ ? ଏହିପରି କେତେ କେତେ ମୌଳିକ ପ୍ରଶ୍ନ ଉପରେ ଗ୍ରୀକ୍‌ମାନେ ଚର୍ଚ୍ଚା କରିବାର ଯେଉଁ ବାତାବରଣ ସୃଷ୍ଟି କରିଥିଲେ ସେଥିରୁ ସେମାନଙ୍କ ବୌଦ୍ଧିକ ଅନୁସନ୍ଧିତ୍ସାର ସ୍ୱରୂପ ବିଷୟରେ ଆକଳନ କରାଯାଏ । ଗ୍ରୀକ୍ ସଭ୍ୟତାରେ ଏତେ ପ୍ରତିଭାବାନ ମନୁଷ୍ୟ ବା ଜିନିୟସ ସୃଷ୍ଟି ହୋଇଥିଲେ ଯେଉଁମାନଙ୍କର ଚିନ୍ତା ଚେତନା ମାନବ ସଭ୍ୟତା ପାଇଁ ବହୁ ବୌଦ୍ଧିକ ଓ ନୈତିକ ପ୍ରେରଣା ସୃଷ୍ଟି କରିଆସିଛି । ଦାର୍ଶନିକମାନେ ବା ସମାଜର ସବୁଠାରୁ ପ୍ରଜ୍ଞାବାନ ବ୍ୟକ୍ତିମାନେ ଶାସନ ଦାୟିତ୍ୱରେ ରହିଲେ ଆଦର୍ଶ ରାଷ୍ଟ୍ର ବା ରିପବ୍ଲିକ୍ ଯେ ଉଦ୍‌ଭବ ହେବ ଏହା ଏତେ ଅତୀତରେ ଗ୍ରୀକ୍‌ମାନେ ଚିନ୍ତା କରିଥିଲେ । ରାଷ୍ଟ୍ର ଓ ମାନବ ସମୁଦାୟ ପାଇଁ କ'ଣ କଲ୍ୟାଣକର ତାହାର ବାସ୍ତବ ପରିକଳ୍ପନା ଓ ପ୍ରୟୋଗ ଦାର୍ଶନିକମାନେ ହିଁ କରିପାରିବେ । ଏହି ସବୁ ବିଚାରର ଅଙ୍କୁରୋଦଗମ ଗ୍ରୀକ୍ ଜୀବନଧାରା ଓ ସଭ୍ୟତାରେ ହୋଇଥବା ମନେହୁଏ । ବସ୍ତୁତଃ ମାନବ ସଭ୍ୟତାର ବୌଦ୍ଧିକ କ୍ରମ ବିକାଶରେ ଗ୍ରୀକ୍‌ମାନଙ୍କର ଯେ ଅମୂଲ୍ୟ ଅବଦାନ ରହିଛି ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଗୋଟିଏ ସମୟରେ ସକଳ ବୌଦ୍ଧିକ ଅନୁସନ୍ଧିତ୍ସାକୁ ଦାର୍ଶନିକ ଜିଜ୍ଞାସା କୁହାଯାଉଥିଲା, ବସ୍ତୁତଃ ଦର୍ଶନର ସଂଜ୍ଞା ଦେବା ସମ୍ଭବ ନ ଥିଲା । ପ୍ଲେଟୋଙ୍କ ସମୟରେ ପଦାର୍ଥବିଜ୍ଞାନ, ଜ୍ୟୋତିର୍ବିଜ୍ଞାନ ଦର୍ଶନର ଅଂଶବିଶେଷ ଥିଲା । ଏପରିକି ବିଜ୍ଞାନର ଆରମ୍ଭ ପର୍ବ ପର୍ଯ୍ୟନ୍ତ ବିଜ୍ଞାନକୁ "ପ୍ରାକୃତିକ ଦର୍ଶନ" କୁହାଯାଉଥିଲା । ଯେତେବେଳେ ସପ୍ତଦଶ ଶତାବ୍ଦୀ ଆରମ୍ଭରୁ ପ୍ରାକୃତିକ ବିଜ୍ଞାନର ବିକାଶ ପର୍ବ ଆରମ୍ଭ ହେଲା, ସେତେବେଳେ ଏହି ଅନୁଶୀଳନକୁ ପ୍ରାକୃତିକ ଦର୍ଶନ ଆଖ୍ୟା ଦିଆଯାଉଥିଲା । ସେସମୟର ବିଚାରରେ ଦାର୍ଶନିକ ମାନେ ବିଶ୍ୱର ଆଦିସତ୍ତା ବିଷୟରେ ଚର୍ଚ୍ଚା କରିବେ, ଯେଉଁମାନେ ପ୍ରକୃତିର ନିୟମ, ଶୃଂଖଳା ବିଷୟରେ ଆଲୋଚନା କରିବେ ସେମାନଙ୍କ ପ୍ରଦତ୍ତ ଜ୍ଞାନ ହେବ ପ୍ରାକୃତିକ ଦର୍ଶନ । ଧୀରେ ଧୀରେ ସଭ୍ୟତାର ବିକାଶ ସହ ଜ୍ଞାନ ବିଜ୍ଞାନର ଯେଉଁ ବିସ୍ଫୋରଣ ଘଟିଲା, ତାହା

ଦ୍ୱାରା ବିଭିନ୍ନ ବିଶେଷତା ବା ସ୍ପେଶାଲାଇଜେସନ ପ୍ରକାଶ ପାଇଲା । ପ୍ରାକୃତିକ ବିଜ୍ଞାନ କ୍ଷେତ୍ରରେ ବହୁ ଧାରା ସୃଷ୍ଟି ହେଲା । ସମାଜବିଜ୍ଞାନର ବିକାଶ ସହ ସେ କ୍ଷେତ୍ରରେ ମଧ୍ୟ ନାନା ବିଭାଗ ବା ବିଶେଷତା ପ୍ରକାଶ ପାଇଲା । ପ୍ରତ୍ୟେକ ପ୍ରାକୃତିକ ବିଜ୍ଞାନ ବା ସାମାଜିକ ବିଜ୍ଞାନର ଆଲୋଚନାର ପରିସର, ବିଷୟବସ୍ତୁ ଓ ଅଧ୍ୟୟନର କ୍ଷେତ୍ର ଉପରେ ନିର୍ଦ୍ଦିଷ୍ଟ ଭାବେ ସୂଚାଇବା ସମ୍ଭବ । ପଦାର୍ଥବିଜ୍ଞାନ ହେଉ ବା ପ୍ରାଣୀ ବିଜ୍ଞାନ ହେଉ, ଅର୍ଥନୀତି ବିଜ୍ଞାନ ହେଉ ବା ମନୋବିଜ୍ଞାନ ହେଉ ପ୍ରତ୍ୟେକ ବିଜ୍ଞାନର ସଂଜ୍ଞା, ସ୍ୱରୂପ ଓ ଅଧ୍ୟୟନ ପରିସର ନେଇ କୌଣସି ମତଦ୍ୱୈଧ ରହିବ ନାହିଁ । ପ୍ରତ୍ୟେକ ବିଜ୍ଞାନ କ୍ଷେତ୍ରରେ ନାନା ବିଶେଷତା ପ୍ରକାଶ ପାଇବା ସହ ତାର ଦିଗନ୍ତ କେତେ ସ୍ତରକୁ ବିସ୍ତାରିତ ହୋଇଥିଲେ ବି ପ୍ରତ୍ୟେକର ବିଷୟବସ୍ତୁ, ପରିସୀମା ଓ ସଂଜ୍ଞା କ୍ଷେତ୍ରରେ ମତପାର୍ଥକ୍ୟ ନାହିଁ । ପରନ୍ତୁ ଦର୍ଶନର ସଂଜ୍ଞା ଓ ସ୍ୱରୂପ ନେଇ ନାନା ମତପାର୍ଥକ୍ୟ ରହିବା ଏକ ସାଧାରଣ ଉପଲବ୍ଧି । ପ୍ଲେଟୋଙ୍କ ସମୟରେ ଦର୍ଶନର ସଂଜ୍ଞା ଯାହା ଥିଲା ସ୍ପିନୋଜା, ଡାଭିଡ ହ୍ୟୁମ୍, ହେଗେଲ ବା ଉଇଟଗେନ୍‌ଷ୍ଟାଇନ୍ ପ୍ରତ୍ୟେକ ନିଜସ୍ୱ ଧାରାରେ ଦର୍ଶନର ସଂଜ୍ଞା ଓ ସ୍ୱରୂପ ନିର୍ମାଣ କରିଛନ୍ତି । ବସ୍ତୁତଃ ଦର୍ଶନର ସଂଜ୍ଞା ଓ ସ୍ୱରୂପ ଦର୍ଶନକୁ ମୌଳିକ ଅବଦାନ ଦେଇଥିବା ଦାର୍ଶନିକ ଭାବଧାରାରେ ଭିନ୍ନ ଭିନ୍ନ ହେବା ଦେଖାଯାଏ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦର୍ଶନ ପରଂପରାରେ ଏକ ସମୟରେ "ପରମ ସତ୍ତା ବା ବ୍ରହ୍ମ" ଜ୍ଞାନ ହିଁ ଦର୍ଶନର ବିଷୟ ବୋଲି ଧାରଣା କେତେକ ଦାର୍ଶନିକ ଦେଇଥିଲେ । ଏହି ସଂଜ୍ଞା ସେମାନଙ୍କ ଦାର୍ଶନିକ ଜିଜ୍ଞାସା ସହ ସୁସଂଗତ ଥିଲା । ତେବେ ଦାର୍ଶନିକ ଅନୁଶୀଳନରେ ପରମ ସତ୍ତା ବୋଲି ଯେ କିଛି ଅଛି ଏହା ସଂପୂର୍ଣ୍ଣ ଯୁକ୍ତିହୀନ ବା କାଳ୍ପନିକ ବୋଲି ଅନ୍ୟ ଦାର୍ଶନିକ ମାନେ ବ୍ୟକ୍ତ କଲେ । ପୁନଶ୍ଚ ଅନ୍ୟ ଦାର୍ଶନିକମାନେ ବିଚାର ବ୍ୟକ୍ତ କଲେ ଯେ ଯଦିବି ପରମ ସତ୍ତା ବୋଲି କିଛି ଥାଏ ତାହା କେବଳ ଅଜ୍ଞାତ ନୁହେଁ ତାହା ଅଜ୍ଞେୟ ମଧ୍ୟ । ସୁତରାଂ ଦର୍ଶନର ସଂଜ୍ଞା ପରମ ସତ୍ତା ସମ୍ବନ୍ଧୀୟ ହେବା ସମ୍ଭବ ନୁହେଁ ।

ଆମେ ପୂର୍ବରୁ ଦର୍ଶାଇଛେ ବିଜ୍ଞାନ ସଂବଂଧୀୟ ଜ୍ଞାନ ତଥ୍ୟାଧାରିତ, ପ୍ରଗତିଶୀଳ, କାର୍ଯ୍ୟକାରଣ ଭିତ୍ତିକ ଓ ପ୍ରଣାଳୀବଦ୍ଧ । ତେବେ ସମସ୍ତ ପ୍ରାକୃତିକ ବିଜ୍ଞାନ କ୍ଷେତ୍ରରେ ସାମାନ୍ୟୀକରଣ କରାଯାଏ । ବହୁବିଧ ବିଶେଷ ଘଟଣାମାନଙ୍କୁ ଏକ ନିୟମ ବା ସାମାନ୍ୟୀକରଣ ମାଧ୍ୟମରେ ବ୍ୟକ୍ତ କରିବା ବିଜ୍ଞାନର ଆଭିମୁଖ୍ୟ । ବିଜ୍ଞାନ ଯଦିବା ତଥ୍ୟଭିତ୍ତିକ ଜ୍ଞାନ ଦେବା ପାଇଁ ଉଦ୍ଦିଷ୍ଟ, ତେବେ ବିଜ୍ଞାନ ପରିସରରେ କେତେକ ନିୟମ, ସିଦ୍ଧାନ୍ତକୁ ସ୍ୱୀକାର କରିନିଆଯାଏ । ପ୍ରାକୃତିକ ଏକରୂପତା, କାର୍ଯ୍ୟକାରଣ ଶୃଂଖଳା ପରି ନିୟମମାନଙ୍କୁ ବିଜ୍ଞାନରେ ସ୍ୱୀକାର କରି ତାହାରି ଭିତ୍ତି ଉପରେ ବୈଜ୍ଞାନିକ ବ୍ୟାଖ୍ୟାନ କରାଯାଏ । ତେବେ ଦାର୍ଶନିକମାନେ ବିଜ୍ଞାନ ପରିସରରେ ପରମ ବୋଲି ଗୃହୀତ ହେଉଥିବା ନିୟମମାନଙ୍କର ବିଶ୍ଳେଷଣ କରିବାକୁ ଲକ୍ଷ୍ୟ ରଖିଥାନ୍ତି । ସେହିପରି ଜ୍ୟାମିତି କ୍ଷେତ୍ରରେ ସ୍ଥାନ ବା ସ୍ପେସର ନିୟମ ବିଷୟରେ ବିଶ୍ଳେଷଣ କରାଯାଏ । ଗଣିତର ପ୍ରତ୍ୟେକ କ୍ଷେତ୍ରରେ କେତେକ ନିୟମକୁ ସ୍ୱତଃସିଦ୍ଧ ବୋଲି ସ୍ୱୀକାର କରାଯାଏ । ଜ୍ୟାମିତି କ୍ଷେତ୍ରରେ ସ୍ଥାନ ବା ସ୍ପେଶକୁ ସ୍ୱତଃସିଦ୍ଧ ଭାବରେ ଗ୍ରହଣ କରି ବିଭିନ୍ନ ଜ୍ୟାମିତିକ ଉପପାଦ୍ୟ ଓ ସିଦ୍ଧାନ୍ତର ନିର୍ମାଣ କରାଯାଏ । ତେବେ ସ୍ୱତଃସିଦ୍ଧତା କହିଲେ କ'ଣ ବୁଝାଯାଏ, ସ୍ଥାନର ସଂଜ୍ଞା ଓ ସ୍ୱରୂପ କିପରି ବର୍ଣ୍ଣନା କରାଯିବ, ସ୍ଥାନର ସୀମା ରହିଛି ବା ଏହା ଅସୀମ, ଏକ ବସ୍ତୁହୀନ

ପରିବେଶରେ ସ୍ଥାନର କିଛି ଅର୍ଥ ରହିଛି କି ଇତ୍ୟାଦି ପ୍ରଶ୍ନସକଳ ଦାର୍ଶନିକମାନେ ଅବତାରଣା କରିଥାନ୍ତି । ସେହିପରି ସମସ୍ତ ଭୌତିକ ବିଜ୍ଞାନରେ ବସ୍ତୁକୁ ସ୍ୱୀକାର କରି ନିଆଯାଏ । କିନ୍ତୁ ଦାର୍ଶନିକମାନେ ପ୍ରଶ୍ନ କରନ୍ତି 'ବସ୍ତୁ' କ'ଣ ? ବୈଜ୍ଞାନିକମାନେ ମୌଳିକ ବସ୍ତୁ, ବସ୍ତୁ ମାନଙ୍କର ଗଠନ ପ୍ରଣାଳୀ, ମୌଳିକ ବସ୍ତୁମାନଙ୍କର ସଂଖ୍ୟା, ବସ୍ତୁ ଓ ଶକ୍ତି କିପରି ରୂପାନ୍ତରଣ ହୋଇପାରନ୍ତି ଇତ୍ୟାଦି ବିଷୟରେ ବ୍ୟାଖ୍ୟା ଦେଇଛନ୍ତି । ତେବେ ଏସବୁ ବୈଜ୍ଞାନିକ ଅନୁଶୀଳନ । କିନ୍ତୁ ଦର୍ଶନ ପରିସରରେ ବସ୍ତୁ ସଂକ୍ରାନ୍ତରେ ଯେଉଁ ପ୍ରଶ୍ନ ଉଠିଥାଏ ତାହା ବୈଜ୍ଞାନିକ ବା ବସ୍ତୁନିଷ୍ଠ ପ୍ରଶ୍ନ ନୁହେଁ, ତାହା ଏକ ପ୍ରତ୍ୟୟାତ୍ମକ ଓ ସଂଜ୍ଞାତ୍ମକ ପ୍ରସଙ୍ଗ ।

ସକଳ ବୈଜ୍ଞାନିକ ଜ୍ଞାନ ହେଉ ବା ଗାଣିତିକ ଜ୍ଞାନ ହେଉ ପ୍ରତ୍ୟେକ କ୍ଷେତ୍ରରେ କେତେକ ସିଦ୍ଧାନ୍ତକୁ ସ୍ୱୀକାର କରିନିଆଯାଏ । ପ୍ରକୃତିର ଏକରୂପତା, କାର୍ଯ୍ୟ-କାରଣ ନିୟମ, ସ୍ଥାନ, କାଳର ସ୍ଥିତି ଇତ୍ୟାଦିକୁ ଗ୍ରହଣ କରିନିଆଯାଇ ବିଜ୍ଞାନରେ ବିଭିନ୍ନ ନିୟମ ବା ସିଦ୍ଧାନ୍ତର ନିର୍ମାଣ କରାଯାଏ । ପ୍ରତ୍ୟେକ ପ୍ରାକୃତିକ ବିଜ୍ଞାନ କେତେକ ବିଷୟକୁ ସ୍ୱୀକାର କରିନେଇ ପ୍ରକୃତିର ଏକ ଦିଗ ବା କ୍ଷେତ୍ରକୁ ବୈଜ୍ଞାନିକ ପଦ୍ଧତିରେ ବ୍ୟାଖ୍ୟା କରିଥାଏ । କିନ୍ତୁ ଦର୍ଶନ କୌଣସି ବିଷୟକୁ ସ୍ୱୀକାର ନକରି ପ୍ରତ୍ୟେକ ବିଷୟର ପ୍ରତ୍ୟୟଗତ ବ୍ୟାଖ୍ୟାନ କରିବାକୁ ପ୍ରୟାସ ରଖେ । ବୈଜ୍ଞାନିକ ଜ୍ଞାନ ପର୍ଯ୍ୟବେକ୍ଷଣ-ପରୀକ୍ଷଣ ଆଧାରିତ, କିନ୍ତୁ ଦାର୍ଶନିକ ଜ୍ଞାନ ପ୍ରତ୍ୟକ୍ଷଜନିତ ଜ୍ଞାନ ନୁହେଁ, ଏହା ବିଶ୍ଳେଷଣାତ୍ମକ ଓ ପ୍ରତ୍ୟୟାତ୍ମକ ।

ଏକ ସମୟରେ ନାନା ଅଭୌତିକ ସତ୍ତା ଯେପରି ଈଶ୍ୱର, ଆତ୍ମା ଇତ୍ୟାଦି ବିଷୟରେ ଦର୍ଶନରେ ଗମ୍ଭୀର ଚର୍ଚ୍ଚା ହେଉଥିଲା । ଈଶ୍ୱରଙ୍କ ସଂପର୍କରେ କେତେ କେତେ ରହସ୍ୟବାଦ, ପ୍ରତୀକବାଦର ଅବତାରଣା ଧର୍ମ ଓ ସାଧାରଣ ଜନବିଶ୍ୱାସ ପରିସରରେ ହେବା ଦେଖାଯାଏ ଓ ସେସବୁକୁ ଦାର୍ଶନିକ ପୁଟ ଦିଆଯାଏ । ତେବେ ଏକ ଭାବନାର ନାନା ବିଶ୍ଳେଷଣ ମଧ୍ୟରେ ସେହି ବିଚାରର ଉତ୍ପତ୍ତି, ବିକାଶ, ତାତ୍ତ୍ୱିକ ସଂଗତି ବା ଅସଂଗତି ସଂପର୍କରେ ଦର୍ଶନ ପରିସରରେ ଆଲୋଚନା ମାନ ହୁଏ । ତର୍କଶୀଳତା ଓ ବିଶ୍ଳେଷଣାତ୍ମକ ପର୍ଯ୍ୟାଲୋଚନା ମାଧ୍ୟମରେ ବିଭିନ୍ନ ତାତ୍ତ୍ୱିକ ପ୍ରସଙ୍ଗମାନଙ୍କର ବ୍ୟାଖ୍ୟା କରିବା ଦର୍ଶନର ଆଭିମୁଖ୍ୟ ଅଟେ । ପ୍ରତ୍ୟୟଗତ ଅନୁଶୀଳନ ଓ ତର୍କସମ୍ମତ ବିଶ୍ଳେଷଣ ଦର୍ଶନ ପରିସରରେ ପ୍ରାଧାନ୍ୟ ପାଇଥାଏ ।

ଆଧୁନିକ ସମୟରେ ଦର୍ଶନକୁ କେତେକ ଧାରାରେ ବିଭାଜନ କରାଯାଏ । ଯେପରି ତତ୍ତ୍ୱମୀମାଂସା ଯାହା ମୌଳିକ ସତ୍ତାର ସଂଜ୍ଞା, ସ୍ୱରୂପ ଇତ୍ୟାଦି ପ୍ରସଙ୍ଗରେ ଅନୁଶୀଳନ କରିଥାଏ; ଜ୍ଞାନମୀମାଂସା ଯାହା ଜ୍ଞାନର ସଂଜ୍ଞା, ସ୍ୱରୂପ, ପ୍ରଣାଳୀ, ସୀମା ଇତ୍ୟାଦି ସଂପର୍କରେ ଗଂଭୀର ଚର୍ଚ୍ଚା କରିବାକୁ ପ୍ରୟତ୍ନ କରେ; ତର୍କଶାସ୍ତ୍ର ଯାହା ଶୁଦ୍ଧ ଓ ବୈଧ ତର୍କର ସ୍ୱରୂପ, ପ୍ରକାରଭେଦ, ସଂଜ୍ଞା, ବିଷୟବସ୍ତୁ ଉପରେ ଗମ୍ଭୀର ଚର୍ଚ୍ଚା କରିଥାଏ; ଆଚାର ମୀମାଂସା, ଯାହା ନୀତି-ନୈତିକତା, ଭଲ-ମନ୍ଦ, କରଣୀୟ-ଅକରଣୀୟ, ନୈତିକ ମାନକ ଇତ୍ୟାଦି ପ୍ରସଙ୍ଗକୁ ବିଶ୍ଳେଷଣ କରିଥାଏ । ଏସବୁକୁ ଦର୍ଶନ ପରିସରରେ ନିଆଯାଏ । ଆଧୁନିକ ସମୟରେ ଦର୍ଶନର ଏହି ବିଭାଜନମାନ ହୁଏତ ଗ୍ରୀକ୍ ଦର୍ଶନରେ କରାଯାଇନାହିଁ ତେବେ ଏସବୁ ପ୍ରସଙ୍ଗମାନ ଦର୍ଶନ କ୍ଷେତ୍ରରେ ଗ୍ରୀକ୍‌ମାନଙ୍କ ସମୟରୁ ଆଲୋଚ୍ୟ ବିଷୟ ହୋଇଆସିଛି । ସମ୍ଭବତଃ ସଭ୍ୟତାର ଇତିହାସରେ ଗ୍ରୀକ୍ ମାନେ ଏହି ସବୁ ବିଷୟରେ ଗମ୍ଭୀର

କରିଛନ୍ତି । ଶୁଦ୍ଧଚିନ୍ତନ ଓ ତର୍କଶୀଳ ଆଧାରରେ ସେମାନେ ବିଭିନ୍ନ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତ ସବୁ ଯାହା ନିର୍ମାଣ କରିଥିଲେ ତାହା ପରବର୍ତ୍ତୀ ସମୟରେ ଦାର୍ଶନିକ ଅନୁଶୀଳନ ପାଇଁ ଗମ୍ଭୀର ପ୍ରେରଣା ଯୋଗାଇଛି । କେତେକ ମୌଳିକ ପ୍ରଶ୍ନର ଦାର୍ଶନିକୀକରଣ କରିବାରେ ଇତିହାସରେ ଗ୍ରୀକ୍‌ମାନେ ପ୍ରାୟତଃ ପ୍ରଥମ ବ୍ୟକ୍ତି ।

ଖ୍ରୀଷ୍ଟାବ୍ଦ ଆରମ୍ଭର ଛ' ଶତାବ୍ଦୀ ପୂର୍ବରୁ ଦାର୍ଶନିକ ଅନୁଶୀଳନ ଗ୍ରୀସ୍‌ରେ ରୂପ ନେଇଥିଲା । ଗ୍ରୀସ୍‌ର ବିଭିନ୍ନ ଭୂଖଣ୍ଡରେ ଓ ବିଶେଷକରି ଏଥେନ୍‌ସ ପରି କେତେକ ନଗରରାଷ୍ଟ୍ରରେ ଦର୍ଶନ ଚର୍ଚ୍ଚାର ଭିତ୍ତି ପଡ଼ିଥିଲା । ଦାର୍ଶନିକ ଚର୍ଚ୍ଚା ଆରମ୍ଭ ପୂର୍ବରୁ ସାହିତ୍ୟ, କିମ୍ବଦନ୍ତୀ, ନାନା ମିଥ୍ ସୃଷ୍ଟି ହୋଇଥିଲା । ଗ୍ରୀକ୍‌ମାନେ ପ୍ରଥମେ ବିଶ୍ୱର ବ୍ୟାଖ୍ୟା କିପରି ଦିଆଯିବ ଏହି ପ୍ରଶ୍ନ ଉଠାଇଥିଲେ । ଆଲୋଚନା ପ୍ରସଙ୍ଗରେ ସେମାନେ ଯେଉଁ ସବୁ ବ୍ୟାଖ୍ୟାନର ଅବତାରଣା କରିଛନ୍ତି ତାହା ସାଂପ୍ରତିକ ବିଚାରରେ ଅସଙ୍ଗତ ମନେ ହେଲେ ବି ସେମାନେ ଯେ ଏହିପରି ଦାର୍ଶନିକ ପ୍ରଶ୍ନର ଅବତାରଣା କରିଥିଲେ ତାହା ଗୁରୁତ୍ୱପୂର୍ଣ୍ଣ ମନେହୁଏ । ବିଜ୍ଞାନ ହେଉ ବା ଦର୍ଶନ ହେଉ ବୌଦ୍ଧିକ ଅନୁସନ୍ଧିତ୍ସା ହିଁ ଜ୍ଞାନ ବିଜ୍ଞାନ ଚର୍ଚ୍ଚାର ଚାବିକାଠି ମନେହୁଏ । ଅନୁସନ୍ଧିତ୍ସୁ ହେବା, ତର୍କଶୀଳତାକୁ ପ୍ରାଧାନ୍ୟ ଦେବା ଓ ବିଚାରଶୀଳ ଭାବରେ ସିଦ୍ଧାନ୍ତର ଅବତାରଣା କରିବା ଦାର୍ଶନିକ ଜିଜ୍ଞାସାର ମୂଳଭିତ୍ତି । ଗ୍ରୀକ୍ ଦାର୍ଶନିକମାନେ ଏହି କାରଣରୁ ଦର୍ଶନ କ୍ଷେତ୍ରକୁ ବହୁ ଅମୂଲ୍ୟ ଅବଦାନ ଦେଇଛନ୍ତି । ଜ୍ଞାନର ଚର୍ଚ୍ଚା ସହ ସେମାନେ ଜୀବନର ଶ୍ରେୟ ସନ୍ଧାନରେ ଓ ମହତ୍ତର ଜୀବନବୋଧ ବିଷୟରେ ଗମ୍ଭୀର ବିଚାରମାନ ଅବତାରଣା କରିଛନ୍ତି । ସେହି ବିଚାରକୁ ଆଧାରକରି ବିଭିନ୍ନ ନୈତିକ ସିଦ୍ଧାନ୍ତ ସବୁ ସୃଷ୍ଟି ହୋଇଛି । ଏହା ସହିତ ଜ୍ଞାନର ଚର୍ଚ୍ଚାଦ୍ୱାରା ଜୀବନର ଉତ୍କର୍ଷ ସାଧନ ଯେ ସମ୍ଭବ ଏହିପରି ଭାବନା ଗ୍ରୀକ୍ ଜୀବନଧାରାରେ ପ୍ରତିଫଳିତ ହୋଇଥିଲା । ପ୍ରାଚୀନ ଗ୍ରୀକ୍ ଦର୍ଶନ ମାନବ ସଭ୍ୟତାର ଇତିହାସରେ ବଡ ବୌଦ୍ଧିକ ବିଭବ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଗ୍ରୀକ୍ ଦର୍ଶନକୁ ଆଲୋଚନା କଲାବେଳେ ଐତିହାସିକମାନେ ଏହାକୁ ତିନି କାଳଖଣ୍ଡରେ ପ୍ରକାଶ କରିଥାନ୍ତି । ପ୍ରଥମ ଭାଗରେ ସେମାନେ ସକ୍ରେଟିସ୍‌ଙ୍କ ପୂର୍ବବର୍ତ୍ତୀ ଦାର୍ଶନିକ ବିଚାରକୁ ଆଲୋଚନା କରିଥାନ୍ତି । ସକ୍ରେଟିସ୍‌ଙ୍କ ଆବିର୍ଭାବ ପୂର୍ବରୁ ଯେଉଁ ଦାର୍ଶନିକ ଧାରା ଓ ବିଚାରର ସୂତ୍ରପାତ ହୋଇଥିଲା ତାହା ବି ବେଶ୍ ମହତ୍ତ୍ୱ ରଖେ । ବିଶେଷ କରି ସଫିଷ୍ଟମାନେ ସକ୍ରେଟିସ୍‌ଙ୍କ ପୂର୍ବରୁ ନାନା କ୍ଷେତ୍ରରେ ବିଭିନ୍ନ ଯୁକ୍ତିର ଆଶ୍ରୟ ନେଉଥିଲେ । ସେମାନେ ବି ସକ୍ରେଟିସ୍‌ଙ୍କ ସମୟରେ ରହିଥିଲେ ଓ ପ୍ରତ୍ୟକ ବିଷୟରେ ଯୁକ୍ତି କିମ୍ବା କେତେକ ବିତଣ୍ଡା ଯୁକ୍ତିର ଅବତାରଣା କରୁଥିଲେ । ତେବେ ସେହି ସମୟରୁ ଗ୍ରୀକ୍ ଦର୍ଶନର ଅୟମାରମ୍ଭ ହୋଇଥିଲା । ଦ୍ୱିତୀୟ ଭାଗରେ ଗ୍ରୀକ୍ ଦର୍ଶନର ତିନି ଜ୍ୟୋତିଷ୍କ ରହିଛନ୍ତି ଯେଉଁମାନେ ଦର୍ଶନ ଇତିହାସର ଅମ୍ଳାନ ପ୍ରତିଭା । ସେମାନେ ହେଲେ ସକ୍ରେଟିସ୍, ପ୍ଲେଟୋ ଓ ଆରିଷ୍ଟୋଟଲ । ଦର୍ଶନ ଇତିହାସ ଓ ଜ୍ଞାନରାଜ୍ୟକୁ ଏମାନଙ୍କର ଅବଦାନ ଅତୁଳନୀୟ । ତୃତୀୟ କାଳଖଣ୍ଡରେ ଆସନ୍ତି ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ଦାର୍ଶନିକଗଣ । ତେବେ ଆରିଷ୍ଟୋଟଲ ଯେପରି ଦାର୍ଶନିକ ବିଚାରକୁ ଏକ ଉତ୍ତୁଙ୍ଗ ଶିଖରକୁ ନେଇ ପାରିଥିଲେ, ତାଙ୍କ ପରେ ଯଦିବା ଦାର୍ଶନିକ ଚର୍ଚ୍ଚା କିଛି ବର୍ଷ ପାଇଁ ଅବ୍ୟାହତ ରହିଲା, ହେଲେ ସେଥିରେ କାଳକ୍ରମେ ଅବକ୍ଷୟର ସୂତ୍ରପାତ ହେଲା । ତେବେ ପ୍ରତ୍ୟେକ କାଳଖଣ୍ଡର ନିଜସ୍ୱ ମହତ୍ତ୍ୱ ରହିଥିଲା ଓ ପ୍ରତ୍ୟେକ ଯୁଗରେ କେତେକ ସ୍ୱତନ୍ତ୍ର ଧାରା ସୃଷ୍ଟି ହୋଇଥିଲା । ଆମର ଆଲୋଚନା ପୃଷ୍ଠଭୂମିରେ

ଆମେ ପ୍ରତ୍ୟେକ କାଳଖଣ୍ଡର ଦାର୍ଶନିକ ଓ ସେମାନଙ୍କ ବିଚାରବୋଧ ସଂପର୍କରେ ଆଗାମୀ ଅଧ୍ୟାୟମାନଙ୍କରେ କିଛି ବ୍ୟାଖ୍ୟାନ ଦେବା । ସକ୍ରେଟିସ୍‌ଙ୍କ ପୂର୍ବବର୍ତ୍ତୀ ଦାର୍ଶନିକଙ୍କର ସମସ୍ତ କୃତି ସମ୍ଭବତଃ ଉପଲବ୍ଧ ନୁହେଁ ବୋଲି ଐତିହାସିକମାନେ ମତ ଦେଇଥାନ୍ତି । ତଥାପି ଯେତିକି ଉପଲବ୍ଧ ସେଥିରୁ ସେମାନଙ୍କ ବିଚାରର ଏକ ସ୍ୱଷ୍ଟ ଚିତ୍ର ମିଳିଥାଏ । ଦ୍ୱିତୀୟରେ ପ୍ଲେଟୋ ଓ ଆରିଷ୍ଟୋଟଲଙ୍କ ରଚନାରେ ସକ୍ରେଟିସ୍ ଓ ତାଙ୍କ ପୂର୍ବବର୍ତ୍ତୀ ଚିନ୍ତକମାନଙ୍କ ବିଷୟରେ ଅନେକ ଉଲ୍ଲେଖ ରହିଛି । ସେଥିରୁ ମଧ୍ୟ ସେମାନଙ୍କ ଦାର୍ଶନିକ ସିଦ୍ଧାନ୍ତ ବିଷୟରେ ଅବଧାରଣା କରିହୁଏ । ତେବେ ଆରିଷ୍ଟୋଟଲ "ମେଟାଫିଜିକସ" ନାମରେ ଯେଉଁ ଗ୍ରନ୍ଥ ରଚନା କରିଛନ୍ତି ସେଥିରେ ତାଙ୍କ ପର୍ଯ୍ୟନ୍ତ ଦାର୍ଶନିକ ଭାବନାମାନଙ୍କର ଏକ ଧାରାବାହିକ ବିକାଶର ଚିତ୍ର ପ୍ରଦାନ କରିଛନ୍ତି । ଦର୍ଶନର ଇତିହାସ ରଚନା କରିବାରେ ଏହା ସମ୍ଭବତଃ ପ୍ରଥମ ପ୍ରୟାସ ଓ ଏହି ପୁସ୍ତକରୁ ପ୍ରାକ୍-ସକ୍ରେଟିସ୍ ଦାର୍ଶନିକମାନଙ୍କ ବିଷୟରେ କିଛି ସ୍ୱଷ୍ଟ ସୂଚନା ମିଳିଥାଏ । ଏତଦ୍‌ବ୍ୟତୀତ ସେହି ସମୟର ଅନ୍ୟମାନଙ୍କ ଅନ୍ୟାନ୍ୟ କୃତିରେ ପ୍ରାକ୍ ସକ୍ରେଟିସ୍ ଯୁଗର ବୁଦ୍ଧିଜୀବୀଙ୍କ ବିଷୟରେ କିଛି ବିଷୟ ଉଲ୍ଲେଖ ଥିବା ଦେଖାଯାଏ । ଏହିପରି ବିଭିନ୍ନ ସୂତ୍ରରୁ ସକ୍ରେଟିସ୍‌ଙ୍କ ପୂର୍ବବର୍ତ୍ତୀ ଚିନ୍ତକମାନଙ୍କ ବିଷୟରେ କିଛି ତଥ୍ୟ ଦୃଷ୍ଟିକୁ ଆସେ ଯାହାକୁ ଆଧାରକରି ଦର୍ଶନ ଐତିହାସିକମାନେ ବିଚାର ଆଲୋଚନା କରିଛନ୍ତି ।

ଦର୍ଶନ କେବଳ ତର୍କ ଓ ବୌଦ୍ଧିକ ଜିଜ୍ଞାସା ଭିତରେ ସୀମାବଦ୍ଧ ନୁହେଁ, ଏହା ମଧ୍ୟ ଜୀବନ, ସମାଜ ଓ ମାନବ ସମୁଦାୟ ବିଷୟରେ ଗମ୍ଭୀର ଚିନ୍ତା ପ୍ରକଟ କରିଥାଏ । ଜୀବନକୁ ଉନ୍ନତ, ସୁନ୍ଦର, ଉତ୍କୃଷ୍ଟ ଓ ମଙ୍ଗଳମୟ କରିବା ପାଇଁ ଦାର୍ଶନିକମାନେ ସର୍ବଦା ନିଜର ବିଚାର ବ୍ୟକ୍ତ କରିଆସିଛନ୍ତି । ଜୀବନକୁ ମହତ୍ତ୍ୱପୂର୍ଣ୍ଣ କରି ଗଢ଼ିବାର ଉପାୟ ଗ୍ରୀକ୍ ଦାର୍ଶନିକମାନେ ଚିନ୍ତାକରି ଏହି ପରିପ୍ରେକ୍ଷୀରେ କେତେ କେତେ ମୂଲ୍ୟବୋଧ ଓ ମହତ୍ତର ଜୀବନବୋଧର ବାର୍ତ୍ତା ସେମାନେ ଅବଧାରଣା କରିଛନ୍ତି । ଏତଦ୍‌ବ୍ୟତୀତ ଗ୍ରୀସ୍‌ରେ ଯେଉଁ ବୈଚାରିକ ଆଲୋଡ଼ନର ସୂତ୍ରପାତ ହୋଇଥିଲା, ତାହା ବହୁ ଶତାବ୍ଦୀ ପରେ ଇଉରୋପୀୟ ରେନାସାଁରେ ପ୍ରତିଫଳିତ ହେଲା । ତର୍କ ବୁଦ୍ଧିବାଦର ବିକାଶ କ୍ଷେତ୍ରରେ ଗ୍ରୀସ୍‌ରେ ଯେଉଁ ବୀଜବପନ ହୋଇଥିଲା ତାହାର ଚାରା ଇଉରୋପୀୟ ନବଜାଗରଣ ଓ ଜ୍ଞାନଦୀପ୍ତିର ଯୁଗରେ ଦ୍ରୁମରେ ପରିଣତ ହେଲା । ବୁଦ୍ଧି ଓ ବିଚାରଶୀଳତାର ମହତ୍ତ୍ୱ ଉପରେ ଯେଉଁ ଭାବନା ଗ୍ରୀସ୍‌ରେ ସୃଷ୍ଟି ହୋଇଥିଲା ତାହା ବହୁ ବର୍ଷ ପରେ ସଭ୍ୟତାର ବିକାଶ ପାଇଁ ଆଲୋକବର୍ତ୍ତିକା ହେଲା । ସେହିପରି ରୋଗ ଓ ପ୍ରାକୃତିକ ଘଟଣାର କାରଣ ଜାଣିବାକୁ ବିଶାଳ ପ୍ରକୃତିକୁ ଅନୁଶୀଳନ କରିବାକୁ ହେବ, ଏଥିପାଇଁ ଦିଅଁ ଦେବତାଙ୍କୁ ଆରାଧନା କରିବା ଯେ ନିର୍ବୋଧତା ଏହି ଭାବନା ଗ୍ରୀସ୍‌ରେ କେତେକ ଦାର୍ଶନିକ ସିଦ୍ଧାନ୍ତ ଭିତରେ ସୃଷ୍ଟି ହୋଇଥିଲା । ଏହି ବୈଜ୍ଞାନିକ ଭାବଧାରା କିମ୍ବା ପ୍ରକୃତିବାଦ ଆଧୁନିକ ବିଜ୍ଞାନର ବିକାଶ ପାଇଁ ପ୍ରେରଣାଦାୟୀ ହେଲା । ଜୀବନର ଉନ୍ନତି, ବିକାଶ ଓ ସୁଖକର ସ୍ଥିତି ମାନବିକ ପ୍ରୟାସର ପରିଣାମ, ଏହା କୌଣସି ଦୈବୀ କରୁଣାର ଫଳ ନୁହେଁ । ଏହି ଭାବନା ମାନବକୈନ୍ଦ୍ରିକ ବିଚାରର ବିକାଶ ଓ ସଭ୍ୟତାର କ୍ରମୋନ୍ନତି ପାଇଁ ପ୍ରେରଣା ଯୋଗାଇଲା । ଜୀବନକୁ ଉନ୍ନତତର ସ୍ଥିତିକୁ ନେବାର ଆଧାର ହେଲା ନୈତିକ ଶୃଂଖଳା ପ୍ରତି ପ୍ରତିବଦ୍ଧତା । ନୈତିକ ମୂଲ୍ୟଚୟକୁ ଧର୍ମଶାସ୍ତ୍ର ବା ପାରଲୌକିକ ବିଶ୍ୱାସ ଭିତରେ ନ ଖୋଜି ଆମର ବାସ୍ତବ ଅନୁଭୂତି ଓ ବିଚାରଶୀଳତାର ଆଧାର ଉପରେ

ନିରୂପଣ କରିବାକୁ ହେବ । ନୈତିକତା ଏକ ସାମାଜିକ କର୍ତ୍ତବ୍ୟ ଓ ଏକ ଗୁଣାତ୍ମକ ଜୀବନର ମାନଦଣ୍ଡ ଏହି ବିଚାର ନୈତିକ ଉତ୍କର୍ଷ ପାଇଁ ନାନା ଅଭିନିବେଶ ଯୋଗାଇଲା । ଗ୍ରୀକ୍‌ମାନଙ୍କ ଭିତରେ ଏକ ମିଥ୍ ରହିଛି ଯେ ଗ୍ରୀକ୍‌ମାନେ ମାନବ ଜୀବନକୁ ଓ ସେମାନଙ୍କର ସମାଜକୁ ଏତେ ସୁନ୍ଦର କରିବାକୁ ଆଶା କରୁଥିଲେ ଯେ ଦେବତାମାନେ ଏହାକୁ ପ୍ରତ୍ୟକ୍ଷ କରିବାକୁ ସ୍ୱର୍ଗରାଜ୍ୟରୁ ମର୍ତ୍ତ୍ୟକୁ ଆସୁଥିଲେ । ଏହି ମିଥ୍ ପଶ୍ଚାତରେ ନିଗୂଢ଼ ରହସ୍ୟ ରହିଥିଲା ଯେ ମଣିଷ ହିଁ ତାର ସଂସାରକୁ ସୁନ୍ଦର, ପ୍ରୀତିମୟ ଓ ମହନୀୟ କରି ଗଢ଼ିପାରିବ । ଗ୍ରୀସ୍ ଭୂମିରୁ ଜଣେ ପର୍ଯ୍ୟଟକ ବିଭିନ୍ନ ଭୂଖଣ୍ଡକୁ ବୁଲି ଯାଇ ଫେରିବା ପରେ ସେଠାରେ ଯାହା ସବୁ ଦେଖିଲେ ଓ ଅନୁଭୂତିରେ ଆଣିଲେ ତାକୁ ପରେ ଗ୍ରୀକ୍ ଭାଷାରେ ଲିପିବଦ୍ଧ କଲେ । ତାହା ପରବର୍ତ୍ତୀ ସମୟରେ ଇତିହାସକୁ ଲିପିବଦ୍ଧ କରି ରଖିବାକୁ ପ୍ରେରଣା ଯୋଗାଇଥିଲା । ସଂପ୍ରତି ବିଶ୍ୱବିଦ୍ୟାଳୟମାନଙ୍କରେ ଯେତେ ସବୁ ବିଷୟ ଅନୁଶୀଳନ ଓ ଅଧ୍ୟୟନ କରାଯାଉଛି ସେସବୁର ଅଧିକାଂଶ ବିଷୟ ଗ୍ରୀସ୍‌ରେ ଚର୍ଚ୍ଚା ହେଉଥିଲା । ପ୍ଲେଟୋଙ୍କ ଏକାଡେମୀ ଥିଲା ଇଉରୋପୀୟ ଜ୍ଞାନଚର୍ଚ୍ଚାର ପ୍ରଥମ ବିଶ୍ୱବିଦ୍ୟାଳୟ । ଏହିପରି କହିବାକୁ ଗଲେ ଗ୍ରୀସ୍ ଥିଲା ପାଶ୍ଚାତ୍ୟ ସଭ୍ୟତା, ସଂସ୍କୃତି, ମୂଲ୍ୟବୋଧର ଏକ୍ସୁଡିଶାଳ । ଗ୍ରୀକ୍‌ମାନେ ଚିନ୍ତାରାଜ୍ୟର ବିଭିନ୍ନ ସ୍ତରରେ ଯେଉଁ ସ୍ପନ୍ଦନ ସୃଷ୍ଟି କରିଥିଲେ ତାହାର ବିକାଶ ମାନବ ସଭ୍ୟତାକୁ ଉନ୍ନତ କରିବାରେ ପଥପ୍ରଦର୍ଶକ ହୋଇଛି ।

ଏଠାରେ ଗ୍ରୀକ୍ ଜୀବନଦର୍ଶନ ସମ୍ବନ୍ଧରେ ସାମାନ୍ୟ ସୂଚନା ଦିଆଯାଇପାରେ । ଗ୍ରୀକ୍ ଜୀବନଦର୍ଶନ ଗୋଟିଏ ଦିଗରେ ବିକଶିତ ହୋଇନଥିଲା ବରଂ ବିଭିନ୍ନ ଧାରାରେ ବିଭବଯୁକ୍ତ ହୋଇଥିଲା । ସକ୍ରେଟିସ୍‌ଙ୍କ ସଂପର୍କରେ ତ ଆମେ ଆଗକୁ ଆଲୋଚନା କରିବା, ତେବେ ସେ ଯେ ଚିନ୍ତାରାଜ୍ୟର ଜଣେ ଜ୍ୟୋତିଷ୍କ ଓ ମହାନ ଜୀବନର ଜଣେ ପଥପ୍ରଦର୍ଶକ ତାହା ଅନସ୍ୱୀକାର୍ଯ୍ୟ । ସେ ଥିଲେ ମୁକ୍ତ ଚିନ୍ତକ ଓ ସତ୍ୟାନ୍ୱେଷୀ ଜଣେ ପ୍ରତିଭାବାନ ବ୍ୟକ୍ତି ବା ଜିନିୟସ୍ । ତେବେ ଅସାଧାରଣ ପ୍ରତିଭାସହ ପବିତ୍ର ଜୀବନ ବଞ୍ଚିବାର କଳା ତାଙ୍କ ବ୍ୟକ୍ତିତ୍ୱରେ ସମନ୍ୱିତ ହୋଇଥିଲା । ନିଜର କଥା ଓ କାର୍ଯ୍ୟରେ ସର୍ବୋତ୍ତମ ଐକ୍ୟ ସ୍ଥାପନ କରିବା ସହ ସେ ଯେଉଁ ଆଦର୍ଶର ପରାକାଷ୍ଠା ଦେଖାଇଛନ୍ତି ତାହା ମାନବଜାତିର ଇତିହାସରେ ଅତୁଳନୀୟ । ତେବେ କୌତୂହଳର ବିଷୟ ଏହି ପ୍ରତଭାବାନ ବ୍ୟକ୍ତି ସର୍ବଦା ନିଜକୁ ଅଜ୍ଞ ବୋଲି ପ୍ରକାଶ କରୁଥିଲେ । ମଣିଷ ଯେତେବେଳେ ନିଜର ଅଜ୍ଞତାକୁ ଅନୁଭବ କରିବ, ସେତେବେଳେ ଯାଇ ସେ ଜ୍ଞାନର ସନ୍ଧାନୀ ହେବ । ଏହିପରି ଜୀବନବୋଧର ବାସ୍ତବ ଓ ପ୍ରତୀକ ଭାବେ ସକ୍ରେଟିସ୍‌ଙ୍କୁ ଗ୍ରହଣ କରାଯାଏ ।

ସକ୍ରେଟିସ୍‌ଙ୍କ ଅନୁଗାମୀ ପ୍ଲେଟୋ ଥିଲେ ଜଣେ ପ୍ରଜ୍ଞାଦୀପ୍ତ ବ୍ୟକ୍ତି ଯାହାଙ୍କୁ ଯଥାର୍ଥରେ ଜଣେ ଜିନିୟସ କୁହାଯାଇପାରିବ । ତାଙ୍କ ରଚିତ 'ରିପବ୍ଲିକ' ଓ 'ଡାଏଲଗ' ଚିନ୍ତା ରାଜ୍ୟର ଅମୂଲ୍ୟ କୃତି । ସକ୍ରେଟିସ୍ ତ ନିଜେ କିଛି ଲେଖି ନାହାନ୍ତି, ତେବେ ତାଙ୍କ ଭାବନା ଓ ବିଚାର ସକଳକୁ ପ୍ଲେଟୋ ଲିପିବଦ୍ଧ କରିଛନ୍ତି । ତେବେ ପ୍ଲେଟୋ ଯେଉଁ ଏକଡେମୀ ପ୍ରତିଷ୍ଠା କରିଥିଲେ ସେଥିରେ ଗ୍ରୀସ୍‌ର ବିଭିନ୍ନ ଭାଗରୁ ବିଦ୍ୟାର୍ଥୀମାନେ ଆସି ଅଧ୍ୟୟନ କରୁଥିଲେ ଓ ଜ୍ଞାନଚର୍ଚ୍ଚାରେ ବ୍ରତୀ ହେଉଥିଲେ । ପ୍ଲେଟୋଙ୍କ ଦର୍ଶନ ବହୁମୁଖୀ ଥିଲା । ପ୍ଲେଟୋଙ୍କର ଦର୍ଶନ ପ୍ରତି ଅବଦାନ ସହିତ ସେ ଏକ ଆଦର୍ଶ ଜନରାଜ୍ୟର ପରିକଳ୍ପନା କରିଥିଲେ । ଏକ ନ୍ୟାୟଭିତ୍ତିକ ଓ ମୂଲ୍ୟବୋଧ ଆଧାରିତ

ସମାଜକୁ ସେ ଆଦର୍ଶ ସମାଜ ଭାବେ ବିଚାର କରୁଥିଲେ । ତାଙ୍କ ଆଦର୍ଶ ସମାଜ କିପରି ଶିକ୍ଷାନୀତି ଉପରେ ବିକଶିତ ହେବ ତାହାର ଏକ ସବିଶେଷ ଯୋଜନା ସେ ପ୍ରସ୍ତୁତ କରିଥିଲେ । ଜ୍ଞାନର ବିକାଶ କିପରି ତ୍ୱରାନ୍ୱିତ ହୋଇପାରିବ, ପ୍ରତିଭାବାନ ବ୍ୟକ୍ତିମାନେ ରାଷ୍ଟ୍ରର ଶାସନ ଭାର ପରିଚାଳନା କରିବେ ଓ ସାମାଜିକ ଜୀବନକୁ ଏକ ମଙ୍ଗଳ ଦାୟକ ସ୍ଥିତିକୁ ନେବେ ଏସବୁ ଉପରେ ପ୍ଲେଟୋ ଯେଉଁ ବିଚାର ମାନଙ୍କର ଅବତାରଣା କରିଛନ୍ତି ତାହା ହୁଏତ ୟୁଟୋପିୟା ବା କାଳ୍ପନିକ ମନେହୋଇପାରେ, ତେବେ ତାଙ୍କର ଚିନ୍ତା ଓ ବିଚାର ମାନବ ସଭ୍ୟତା ପାଇଁ ପ୍ରେରଣାଦାୟକ ହୋଇ ରହିଛି । ସେହିପରି ମାନବ ପ୍ରକୃତି ଉପରେ ସେ ଯେଉଁ ବିଚାର ଦେଇ ଉନ୍ନତ ଜୀବନ ଓ ଆଦର୍ଶ ସମାଜର ଚିତ୍ର ଆଙ୍କିଛନ୍ତି ତାହା ଯଥାର୍ଥରେ ଗମ୍ଭୀର ଚର୍ଚ୍ଚା ପାଇଁ ଅବକାଶ ରଖେ । ଏଥିପାଇଁ ବିଂଶ ଶତାବ୍ଦୀର ବିଶିଷ୍ଟ ବ୍ରିଟିଶ ଦାର୍ଶନିକ ଏ.ନ. ହ୍ୱାଇଟହେଡ ମନ୍ତବ୍ୟ ଦେଇଥିଲେ ଯେ 'ସମୁଦାୟ ଇଉରୋପୀୟ ଦର୍ଶନ ପରଂପରା ପ୍ଲେଟୋଙ୍କ ଲେଖାର ପାଦଟୀକା ମାତ୍ର' ।

ଗ୍ରୀସ୍‌ର ଆଉ ଜଣେ ମହାନ୍ ଦାର୍ଶନିକ ଓ ଜିନିୟସ ହେଉଛନ୍ତି ଆରିଷ୍ଟୋଟଲ । ଆରିଷ୍ଟୋଟଲ ଥିଲେ ପ୍ଲେଟୋଙ୍କ ଏକାଡେମୀର ଛାତ୍ର ଓ ଗୁରୁଙ୍କର ସମାଲୋଚକ । ଜ୍ଞାନର କେତେକ କ୍ଷେତ୍ରକୁ ତାଙ୍କର ଅବଦାନ ଅବିସ୍ମରଣୀୟ । ସେ ଥିଲେ ଅବରୋହ ତର୍କଶାସ୍ତ୍ରର ଜନକ । ତାଙ୍କଠାରୁ ବିଭିନ୍ନ ବୌଦ୍ଧିକ ବିଷୟର ଅୟମାରମ୍ଭ ହେଲା । ସେ ଥିଲେ ରାଜନୀତିଜ୍ଞ, ନୀତିଜ୍ଞ, ଦାର୍ଶନିକ ଓ ମନୋବୈଜ୍ଞାନିକ । ତାଙ୍କ ରଚିତ ଏଥିକ୍‌ସ (ନୀତିଶାସ୍ତ୍ର), ପଲିଟିକ୍‌ସ (ରାଜନୀତିଶାସ୍ତ୍ର) ଓ ପୋଏଟିକସ୍ (କାବ୍ୟତତ୍ତ୍ୱ) ଚିନ୍ତାରାଜ୍ୟର ଅମୂଲ୍ୟ ସଂପଦ । ତାଙ୍କ ଦର୍ଶନ ବାସ୍ତବଧର୍ମୀ ଓ ବିଚାରଧାରା ବିଜ୍ଞାନସମ୍ମତ । ତାଙ୍କର ମୌଳିକତା ସର୍ବଜନସ୍ୱୀକୃତ ଓ ତାଙ୍କ ରଚିତ ଅର୍ଗାନନ ତର୍କଶାସ୍ତ୍ରର ମୂଳଗ୍ରନ୍ଥ । ବିଶ୍ୱ ଚିନ୍ତାମାନସରେ ସେ ଏକ ଅଲିଭା ଜ୍ୟୋତିଷ୍କ ।

ସକ୍ରେଟିସ୍, ପ୍ଲେଟୋ ଓ ଆରିଷ୍ଟୋଟଲଙ୍କୁ ବାଦ୍ ଦେଇ ଆହୁରି ଅନେକ ପ୍ରତିଭାବାନ ଦାର୍ଶନିକ ଗ୍ରୀସ୍‌ରେ ଜନ୍ମ ନେଇ ଚିନ୍ତାରାଜ୍ୟରେ ନୂଆ ନୂଆ ଆଲୋଡନ ସୃଷ୍ଟି କରିଛନ୍ତି ଓ କେବଳ ଗ୍ରୀକ୍ ଦର୍ଶନ ନୁହଁ, ଦର୍ଶନ ଇତିହାସକୁ ବିଭିନ୍ନ କ୍ଷେତ୍ରରେ ଋଦ୍ଧିମନ୍ତ କରିଛନ୍ତି । ସେମାନଙ୍କର ଅବଦାନକୁ ଆମେ ଉପଯୁକ୍ତ ସ୍ଥାନରେ ଆଲୋଚନା କରିବା । ତେବେ ଏହି ପରିପ୍ରେକ୍ଷୀରେ ଗ୍ରୀକ୍ ଦର୍ଶନ ଧାରାରୁ ଗ୍ରୀକ୍ ଜୀବନଦର୍ଶନ ସଂପର୍କରେ ସାମାନ୍ୟ ସୂଚନା ଦିଆଯାଇପାରେ । ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ସମୟର ଦାର୍ଶନିକ ଏପିକୁରସ ଏକ ସୁଖମୟ ଜୀବନକୁ ଜୀବନର ଶ୍ରେୟଭାବେ ଗ୍ରହଣ କରୁଥିଲେ । ହେତୁବାଦୀ ଜୀବନବୋଧର ଏକ ବାର୍ତ୍ତା ତାଙ୍କ ଦର୍ଶନରେ ପ୍ରତିଫଳିତ ହେବା ଦେଖାଯାଏ । ସେ ନିରୀଶ୍ୱରବାଦୀ ନଥିଲେ, ବରଂ ସେ ଯୁଗର ବିଶ୍ୱାସ ବହୁଈଶ୍ୱରବାଦକୁ ସେ ଗ୍ରହଣ କରୁଥିଲେ ମଧ୍ୟ ଅନ୍ତରୀକ୍ଷରେ ରହୁଥିବା ଏହି ଦେବତାମନେ ମାନବିକ ସମସ୍ୟା ସହିତ ସଂପୃକ୍ତ ନୁହନ୍ତି ବୋଲି କହିଥିଲେ । ଅତୀନ୍ଦ୍ରିୟ ଜଗତ ବିଷୟ, ଯଦି ବି ସେସବୁ ଥାଏ, ତାହା ଇନ୍ଦ୍ରିୟାତୀତ ଓ ବିଚାର-ବହିର୍ଭୂତ । ଆମର ଆତ୍ମା ବା ମାନସ ହେଉଛି ବସ୍ତୁ ଓ ଏହି ସୂକ୍ଷ୍ମ ବସ୍ତୁର ଶରୀର ମୃତ୍ୟୁ ସହିତ ମୃତ୍ୟୁ ଘଟିଥାଏ । ଆର୍ଥିକ ଦାରିଦ୍ର୍ୟ, ରୋଗ, ମାନସିକ ଉତ୍ତେଜନା ଓ ଯନ୍ତଣାରୁ ମୁକ୍ତ ହେଲେ ବ୍ୟକ୍ତି ସୁଖରେ ରହିପାରିବ । ତେବେ କୌଣସି ପ୍ରକାର ବିଳାସ ବା ପ୍ରାଚୁର୍ଯ୍ୟକୁ ସେ ସମର୍ଥନ କରନ୍ତି ନାହିଁ । ବରଂ ସେ ଏହି ଭାବନା ଦେଇଛନ୍ତି ଯେ " ସୁଖରେ ରହିବା ପାଇଁ ସଂପତ୍ତି

ବୃଦ୍ଧି କର ନାହିଁ ବରଂ ନିଜର କାମନା ବାସନାକୁ ହ୍ରାସ କର" । ଯଥେଚ୍ଛା ଇନ୍ଦ୍ରିୟ ଲାଳସା କିମ୍ବା ପ୍ରାଚୁର୍ଯ୍ୟକୁ ସେ ସୁଖ ଶାନ୍ତିର କାରଣ ଭାବରେ ଗ୍ରହଣ କରନ୍ତି ନାହିଁ, ବରଂ ନିଜ ଆବଶ୍ୟକତାର ସୁନିର୍ବାଚନ ଉପରେ ଜୀବନର ସୁଖ ଶାନ୍ତି ନିର୍ଭର କରେ ବୋଲି କହିଛନ୍ତି । ସଂପଦ ନୁହେଁ ବରଂ ସହୃଦୟ ବନ୍ଧୁତା ଜୀବନକୁ ଅଧିକ ସୁଖମୟ କରିଥାଏ । ଏକ ଅତୀନ୍ଦ୍ରିୟ ଜଗତ, ପାରଲୌକିକ ସ୍ଥିତି ନେଇ ଚିନ୍ତାରେ ନିମଗ୍ନ ହେବା ଅପେକ୍ଷା ଏହି ଜୀବନକୁ ସୁଖମୟ କରିବା ପାଇଁ ପ୍ରୟାସ କରିବା ଆବଶ୍ୟକ । ଏହି ଜୀବନର ଆନନ୍ଦଗୀତି ଭିତରେ ଜୀବନର ମୂଲ୍ୟକୁ ଉପଲବ୍ଧି କରିବା ଦରକାର । ଜୀବନରେ ସୁଖର ମୁହୂର୍ତ୍ତ ରହିବ, ଦୁଃଖର ଅନୁଭବ ମଧ ରହିବ । ତେବେ ସୁଖର ମୁହୂର୍ତ୍ତକୁ ଅନୁଭବ କରିବା ଉଚିତ । ଜୀବନକୁ ଦୁଃଖ ଓ ହତାଶାର ଅଭିବ୍ୟକ୍ତି ଭାବେ ନେଇ ମ୍ରିୟମାଣ ହେବା ଏକ ଯଥାର୍ଥ ଜୀବନଦର୍ଶନ ନୁହେଁ । ଜୀବନକୁ କିପରି ସୁଖମୟ, ପ୍ରୀତିମୟ ଓ ମଙ୍ଗଳମୟ କରିହେବ ତାହାହିଁ ଆମର ଧ୍ୟେୟ ହେବା ଉଚିତ । ଏପିକୁରସଙ୍କର ଏହି ଜୀବନଦର୍ଶନ ବହୁ କବି ଓ ବିଭିନ୍ନ ସମୟର ଦାର୍ଶନିକ ମାନଙ୍କୁ ଗଭୀର ଭାବରେ ପ୍ରଭାବିତ କରିଆସିଛି । ତାଙ୍କର ଏହି ଭାବଧାରାକୁ "ସୁଖବାଦ"ର ଆଖ୍ୟାଦିଆଯାଏ ।

ଏପିକୁରସଙ୍କର ସୁଖବାଦକୁ ବିରୋଧ କରି ଗ୍ରୀସ୍‌ର ଜଣେ ଦାର୍ଶନିକ ଜିନୋ ଅନ୍ୟ ଏକ ଜୀବନଦର୍ଶନ ଷ୍ଟୋଇକବାଦ ବା ସମବୁଦ୍ଧିବାଦର ଅବତାରଣା କରିଥିଲେ । ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ଦାର୍ଶନିକ ଜିନୋଙ୍କ ବିଚାରରେ ଜୀବନରେ କିଛି ହାସଲ କରିବା ବା ନ କରିବା ଉପରେ ଆମର ସୁଖ, ଦୁଃଖ ନିର୍ଭର କରେ ନାହିଁ । ଆମର ସୁଖ, ଦୁଃଖ ଆମର ମାନସିକ ଅବସ୍ଥା ଉପରେ ନିର୍ଭର କରେ । ଏପିକୁରସଙ୍କ ଚିନ୍ତାରେ ମାନବିକ ପ୍ରୟାସକୁ ପ୍ରାଧାନ୍ୟ ଦିଆଯିବା ବେଳେ ଷ୍ଟୋଇକବାଦ ଜୀବନ ପ୍ରତି ଏକ ଅନାସକ୍ତ ବା ସହନଶୀଳ ଦୃଷ୍ଟିଭଙ୍ଗୀକୁ ପ୍ରାଧାନ୍ୟ ଦେଇଥାଏ । ସବୁକିଛି ପ୍ରତି ଏକ ଅନାସକ୍ତ ବା ସହନଶୀଳ ଦୃଷ୍ଟିଭଙ୍ଗୀକୁ ପ୍ରାଧାନ୍ୟ ଦେଇଥାଏ । ସବୁକିଛି ପ୍ରତି ନିରପେକ୍ଷ ଓ ଉଦାସୀନ ରହିବା ଏହାର ଆଭିମୁଖ୍ୟ । ସୁଖରେ ଅଧୀର ହେବା ଓ ଦୁଃଖରେ ମ୍ରିୟମାଣ ହେବା ଯଥାର୍ଥ ନୁହେଁ । ତାଙ୍କର ବାର୍ତ୍ତା ହେଉଛି "ଯେତେ ଦୂର ସମ୍ଭବ ନିଜର ଆବଶ୍ୟକତାକୁ ନିମ୍ନ ସ୍ତରକୁ ନିଅ, ତୁମର ଯେତିକି ଅଛି ସେଥିରେ ଆତ୍ମତୃପ୍ତି ଲାଭ କର । ଏକ ଅନାସକ୍ତ ଦୃଷ୍ଟିଭଙ୍ଗୀ ନେଇ ସବୁ କିଛିକୁ ଗ୍ରହଣ କର" ଜୀବନ ଓ ସଂସାର ଉଭୟ ପାର୍ଥିବ ଓ ସ୍ୱର୍ଗୀୟ । ଷ୍ଟୋଇକବାଦ ଓ ସିନିକବାଦ ମଧରେ ସମ୍ବନ୍ଧ ରହିଛି । ସବୁ ପ୍ରତି ଏକ ଅନାସକ୍ତ ଦୃଷ୍ଟି ରଖିବା ଓ ଦୁଃଖ, ବିପତ୍ତି ବା ପ୍ରତିକୂଳ ସ୍ଥିତିରେ ଧୈର୍ଯ୍ୟ ନ ହରାଇ ପରିସ୍ଥିତିକୁ ସମ୍ମୁଖୀନ ହେବା ଆବଶ୍ୟକ । ସୁଖ ଓ ଦୁଃଖକୁ ସମଭାବରେ ଗ୍ରହଣ କରିବା ଷ୍ଟୋଇକବାଦର ମହତ୍ତ୍ୱ । ତେବେ ଏକ ଅନାସକ୍ତ ଦୃଷ୍ଟି ଷ୍ଟୋଇକବାଦର ସବୁକିଛି ନୁହେଁ । ଷ୍ଟୋଇକବାଦରେ ବୈରାଗ୍ୟ ଭାବନାର ଯେଉଁ ଚିତ୍ର ରହିଛି ତାହା ଧାର୍ମିକ ଜୀବନବୋଧ ଜନିତ । ଷ୍ଟୋଇକମାନେ ବରଂ ଏକ ନୀତିନିଷ୍ଠ ଓ ନୈଷ୍ଠିକ ଜୀବନ ପ୍ରତି ଆଗ୍ରହୀ । ସୁଖ-ଦୁଃଖ, ଆଶା-ନିରାଶା, ସଂପଦ-ବିପଦ ଏସବୁ ବାହ୍ୟ ଓ ଏହା ଆମ ଦୃଷ୍ଟିଭଙ୍ଗୀ ଉପରେ ନିର୍ଭରକରେ । ସାଧୁତା, କର୍ତ୍ତବ୍ୟ ନିଷ୍ଠା, ସମଭାବ ଇତ୍ୟାଦି ଗୁଣମାନ ଜୀବନର ପ୍ରକୃତ ସଂପଦ । ପ୍ରକୃତିର ଘଟଣା ପ୍ରବାହ ଈଶ୍ୱରୀୟ ବିଧାନର ପରିଣାମ । ବସ୍ତୁତଃ ଷ୍ଟୋଇକମାନେ [illegible] ବାଦୀ । ଯେକୌଣସି ପ୍ରାକୃତିକ ଦୁର୍ବିପାକ କିମ୍ବା ବ୍ୟକ୍ତିଗତ ଦୁର୍ଯୋଗ ପଶ୍ଚାତରେ କିଛି ମହତ୍ତର [illegible] । ତେବେ ମାନବିକତାକୁ ଷ୍ଟୋଇକବାଦରେ ପ୍ରାଧାନ୍ୟ ଦିଆଯାଏ । ଗ୍ରୀସ୍‌ରେ ଯେଉଁ ଷ୍ଟୋଇକ

ଜୀବନଦର୍ଶନ ବିକାଶ ହୋଇଥିଲା ତାହା ପରବର୍ତ୍ତୀ ସମୟରେ କେତେ କେତେ ତାତ୍ତ୍ୱିକ ରଙ୍ଗ ନେଇ ପ୍ରକାଶିତ ହେଲା । ପାର୍ଥିବ ପ୍ରାଚୁର୍ଯ୍ୟ ପ୍ରତି ଅନାସକ୍ତ ରହିବା ଓ ମଣିଷର ଦୁଃଖ ଯନ୍ତ୍ରଣା ପ୍ରତି ଅନାସକ୍ତ ରହିବା ଭିତରେ ମୌଳିକ ପାର୍ଥକ୍ୟ ରହିଛି । ତେବେ ଷ୍ଟୋଇକବାଦ ପରବର୍ତ୍ତୀ ପର୍ଯ୍ୟାୟରେ କେତେ କେତେ ଧାରାରେ ବ୍ୟକ୍ତ ହୋଇଥିଲେ ମଧ୍ୟ ଏହି ଭାବଧାରା ଗ୍ରୀକ୍ ଦର୍ଶନ ପୃଷ୍ଠଭୂମିରେ ପ୍ରଥମେ ରୂପରେଖ ନେଇଥିଲା ।

ଅନେକ ଗ୍ରୀକ୍ ଦାର୍ଶନିକ ବିଭିନ୍ନ ପୃଷ୍ଠଭୂମିରେ ଜୀବନକୁ କିପରି ଉନ୍ନତ, ମହାନ୍ ଓ ମଙ୍ଗଳମୟ କରିହେବ ଏହି ପ୍ରସଙ୍ଗ ଉଠାଇଛନ୍ତି । ସୁଖ, ଦୁଃଖ ତ ଜୀବନ ସହ ଅଙ୍ଗାଙ୍ଗୀ ଭାବେ ଜଡିତ, ତା ଭିତରେ ଜୀବନ କିପରି ମହାନୀୟ ହୋଇପାରିବ ଓ ସମାଜ କିପରି ନ୍ୟାୟପୂର୍ଣ୍ଣ ହେବ ଏହାକୁ ଗମ୍ଭୀରତାର ସହ ଆଲୋଚନା କରିଛନ୍ତି । ପ୍ଲେଟୋଙ୍କ ରିପବ୍ଲିକ୍‌ରେ ସେ ସକ୍ରେଟିସ୍‌ଙ୍କ ମୁହଁରେ ଏହି ପ୍ରଶ୍ନ ଉଠାଇଛନ୍ତି । ଏକ ବୃହତ୍ତର ସମାଜରେ ନ୍ୟାୟ ପ୍ରତିଷ୍ଠା ହୋଇପାରିଲେ ବ୍ୟକ୍ତିର ଜୀବନ ମହତ୍ତର ହୋଇ ପାରିବ । ଏକଥା ସତ୍ୟ ଯେ ଏକ ଆଦର୍ଶ ସମାଜର ଚିତ୍ର ଭିତରେ ଏକ ଆଦର୍ଶ ବ୍ୟକ୍ତିର ସ୍ୱରୂପକୁ ଦେଖିହେବ । ଏକ ଆଦର୍ଶ ସମାଜରେ ସାମୂହିକ କଲ୍ୟାଣକୁ ପ୍ରାଧାନ୍ୟ ଦିଆଯାଏ । ଏହାଦ୍ୱାରା ବ୍ୟକ୍ତି ଜୀବନରେ ଉତ୍କୃଷ୍ଟତା ଲାଭ କରିଥାଏ । ଏହି ତତ୍ତ୍ୱ ଭିତରେ ମାନବବାଦୀ ଜୀବନବୋଧର ବାର୍ତ୍ତାଟି ରହିଥିବା ମନେହୁଏ । ଆରିଷ୍ଟୋଟଲ ମଧ୍ୟ ଯେଉଁ ଜୀବନଦର୍ଶନର ଅବତାରଣା କରିଥିଲେ ସେଥିରେ ମଣିଷର ସାମାଜିକ ଚରିତ୍ର ଉପରେ ଯଥେଷ୍ଟ ପ୍ରାଧାନ୍ୟ ଦେଇଥିଲେ । ତାଙ୍କ ମତରେ ଯେଉଁ ବ୍ୟକ୍ତିର ଲକ୍ଷ୍ୟ ଯେତେ ଉନ୍ନତ ଓ ଉଚ୍ଚାଦର୍ଶ ସହ ସଂପୃକ୍ତ ସେ ବୌଦ୍ଧିକ ଓ ନୈତିକ ସ୍ତରରେ ସେତେ ବିକଶିତ । ବ୍ୟକ୍ତି ସର୍ବଦା ସମାଜ ପାଖରେ ଉତ୍ତରଦାୟୀ ଯେହେତୁ ତା ବ୍ୟକ୍ତିତ୍ୱର ବିକାଶ ସାମାଜିକ ଜୀବନର ଭିତ୍ତିଭୂମି ଉପରେ ବିକଶିତ ହୋଇଛି । ଯେଉଁ ବ୍ୟକ୍ତି ସଂପୂର୍ଣ୍ଣ ଭାବରେ ଆତ୍ମକୈନ୍ଦ୍ରିକ, ତା ନିଜର ସ୍ୱାର୍ଥ ବାହାରେ ସେ କିଛି ବି ଚିନ୍ତା କରିପାରେ ନାହିଁ ଓ ସେ କେବଳ ନିଜସ୍ୱ ସ୍ୱାର୍ଥ ଓ ସମସ୍ୟା ଭିତରେ ଆବଦ୍ଧ ଆରିଷ୍ଟୋଟଲ ତାହାକୁ ଅସାମାଜିକ କହିବେ । ଅପରପକ୍ଷରେ ବ୍ୟକ୍ତିର ଲକ୍ଷ୍ୟ ଯେତିକି ଉନ୍ନତ, ସାର୍ବଜନୀନ ଓ ସଂପର୍କମାନ ଯେତେ ଗଭୀର ତଥା ମାନବିକ ତାର ଜୀବନ ସେତିକି ମହତ୍ତର । ପୁନଶ୍ଚ ଜୀବନର କିଛି ଲକ୍ଷ୍ୟ ରହିବା ଆବଶ୍ୟକ । ଲକ୍ଷ୍ୟର ମହନୀୟତା ଉପରେ ଜୀବନର ମହନୀୟତା ନିର୍ଭରକରେ । ଅର୍ଥାତ୍ ଜୀବନର ଲକ୍ଷ୍ୟ ଯେତିକି ମହନୀୟ, ଉନ୍ନତ ଓ ସାର୍ବଜନୀନ ହେବ ଜୀବନର ଗୁଣାତ୍ମକ ମାନ ସେତିକି ଉନ୍ନତ ହୋଇ ପାରିବ । ନ୍ୟାୟ, ସଂଯମତା, ପ୍ରଜ୍ଞା ଓ ବନ୍ଧୁତ୍ୱ ମୂଲ୍ୟଚୟକୁ ଅଧିକାଂଶ ଦାର୍ଶନିକ ସାମାଜିକ ଜୀବନର ଉତ୍କର୍ଷ ଭାବରେ ଗ୍ରହଣ କରିବା ଦେଖାଯାଏ । ଏହିପରି ବହୁ ବିଷୟ ଓ ସାମାଜିକ ଗୁରୁତ୍ୱ ଥିବା ପ୍ରସଙ୍ଗ ଉପରେ ଗ୍ରୀସ୍‌ରେ ଦାର୍ଶନିକ ମାନେ ଆଲୋଚନା କରିଛନ୍ତି । ଗ୍ରୀକ୍ ଦର୍ଶନ ବହୁ ଦିଗରେ ବିସ୍ତାରିତ ହୋଇଥିଲା । ସେହି ପ୍ରାଚୀନ ଯୁଗରେ ଅନେକ ଦାର୍ଶନିକଙ୍କ ବିଚାରବୋଧରେ ଏହି ଭାବନା ଆସିଥିଲା ଯେ ଜ୍ଞାନର ଆଧାର ଉପରେ ପ୍ରତିଷ୍ଠିତ ଜୀବନ ଓ ସମାଜ ହିଁ ସର୍ବୋତ୍କୃଷ୍ଟ ।

## ଦ୍ୱିତୀୟ ପରିଚ୍ଛେଦ

### ଆଓନିଆର ତିନି ପ୍ରତିଭା

ଗ୍ରୀକ୍ ଦର୍ଶନର ମହତ ତ୍ରୟୀ ଭାବେ ସକ୍ରେଟିସ୍, ପ୍ଲେଟୋ ଓ ଆରିଷ୍ଟୋଟଲଙ୍କୁ ଗ୍ରହଣ କରାଯାଏ । ତେବେ ସକ୍ରେଟିସ୍‌ଙ୍କ ବହୁ ପୂର୍ବରୁ ଦର୍ଶନର ଏକ ପରଂପରା ଗ୍ରୀସ୍‌ର ବିଭିନ୍ନ ଭୂଖଣ୍ଡରେ ଗଢ଼ି ଉଠିଥିଲା । ଅର୍ଥାତ୍ ବିଭିନ୍ନ ଭୂଖଣ୍ଡରେ ଦର୍ଶନ ସଂପର୍କରେ ଗମ୍ଭୀର ଚର୍ଚ୍ଚା ହେବାର ପରିବେଶ ସୃଷ୍ଟି ହୋଇଥିଲା । ଦର୍ଶନ କ୍ଷେତ୍ରରେ ଯେଉଁସବୁ ବୌଦ୍ଧିକ ବିଚାରର ଧାରା ଉଦ୍‌ଭବ ହୋଇଥିଲା ତାହା ସକ୍ରେଟିସ୍, ପ୍ଲେଟୋ ଓ ଆରିଷ୍ଟୋଟଲଙ୍କୁ ବହୁଭାବରେ ପ୍ରଭାବିତ କରିଥିଲା ଓ ସେମାନଙ୍କର ଦାର୍ଶନିକ ସିଦ୍ଧାନ୍ତର ବିକାଶରେ ପ୍ରେରଣା ଯୋଗାଇଥିଲା । ଗ୍ରୀକ୍ ଦର୍ଶନର ଇତିହାସ ଲେଖିଥିବା ବିଭିନ୍ନ ଲେଖକମାନେ ଗ୍ରୀସର ନଗରରାଜ୍ୟ ମାନଙ୍କରେ ଯେଉଁ ଦାର୍ଶନିକ ଭାବଧାରା ମାନ ସୃଷ୍ଟି ହୋଇଥିଲା, ତାହାକୁ ବିଭିନ୍ନ ଭୂଖଣ୍ଡ ଆଧାରରେ ଶ୍ରେଣୀକରଣ କରିଛନ୍ତି କିମ୍ବା ଗ୍ରୀସ୍‌ର ଦାର୍ଶନିକମାନଙ୍କର ଆବିର୍ଭାବର କାଳଖଣ୍ଡ ଅନୁଯାୟୀ ସେମାନଙ୍କୁ ଆଲୋଚନା କରିଛନ୍ତି । କେତେକ ନଗରରାଜ୍ୟରେ ଦାର୍ଶନିକ ଭାବନାର ଯେଉଁ ଅଭ୍ୟୁଦୟ ହୋଇଥିଲା ସେହି ଦୃଷ୍ଟିରୁ କାଳାନୁକ୍ରମେ ଆମେ ସେମାନଙ୍କୁ ଆଲୋଚନା କରିବା ।

ଗ୍ରୀସ୍‌ର ଆଓନିଆ ଭୂଖଣ୍ଡରେ ପ୍ରଥମେ ଦାର୍ଶନିକ ଭାବନାର ଅୟମାରମ୍ଭ ହୋଇଥିଲା । ଆଓନିଆରେ ଯେଉଁ ତିନି ଜଣ ପ୍ରତିଭାବାନ ଦାର୍ଶନିକ ଦର୍ଶନ ଚର୍ଚ୍ଚାର ଭିତ୍ତି ପକାଇଥିଲେ ସେମାନଙ୍କୁ କେତେକ ମିଲେସୀୟ ଦାର୍ଶନିକ ମଧ୍ୟ କହିଥାନ୍ତି । କାରଣ ସେମାନେ ଆଓନିଆର ମିଲେଟସ ସହରରେ ଜନ୍ମଗ୍ରହଣ କରିଥିଲେ । ଏହି ତିନି ଦାର୍ଶନିକ ହେଲେ ଥେଲିସ୍, ଆନେକ୍ସିମେଣ୍ଡର ଓ ଆନେକ୍ସିମେନିସ୍ । ଏହି ପରିଚ୍ଛେଦରେ ଆମେ ଏହି ଦାର୍ଶନିକମାନଙ୍କର ବିଚାରକୁ ଆଲୋଚନା କରିବା ।

### ୨.୧ ଥେଲିସ୍ (Thales)

ଥେଲିସ୍‌ଙ୍କ ଜୀବନକାଳକୁ ଐତିହାସିକମାନେ ଖ୍ରୀ.ପୂ. ୬୨୪ରୁ ଖ୍ରୀ.ପୂ. ୫୫୦ ବୋଲି ଗ୍ରହଣ କରିଛନ୍ତି । ତେବେ କେତେକ ଅପ୍ରମାଣିତ ତଥ୍ୟକୁ ଆଧାର କରି ଏହି ସମୟକାଳକୁ କେବଳ ଅନୁମାନ କରାଯାଇଛି ଯାହା ପ୍ରାୟତଃ ସ୍ୱୀକୃତ ହୋଇଛି । ହୁଏତ ତାଙ୍କ ଜନ୍ମ ବା ମୃତ୍ୟୁ ନେଇ ସାମାନ୍ୟ କିଛି ବର୍ଷର ପାର୍ଥକ୍ୟ ରହିପାରେ, ତେବେ ସେ ଯେ ଖ୍ରୀ.ପୂ. ସପ୍ତମ ଶତାବ୍ଦୀର ବ୍ୟକ୍ତି ଏହା ଇତିହାସରେ ଗ୍ରହଣ ଯୋଗ୍ୟ ।

ଇତିହାସରେ ଥେଲିସ୍ ଜଣେ ବହୁମୁଖୀ ପ୍ରତିଭା ଭାବେ ସ୍ୱୀକୃତ । ସେ ଗଣିତଜ୍ଞ, ଜ୍ୟୋତିର୍ବିଜ୍ଞାନୀ, ଦାର୍ଶନିକ ଓ ଜଣେ ବିଜ୍ଞ ବ୍ୟକ୍ତି ଭାବେ ତାଙ୍କ ସମୟରେ ପରିଚିତ ଥିଲେ । ତାଙ୍କ ବିଷୟରେ କୁହାଯାଏ ଯେ ଖ୍ରୀ.ପୂ. ୫୮୫ରେ ସୂର୍ଯ୍ୟପରାଗ ଘଟିବ ବୋଲି ସେ ଗଣନାକରି କହିଥିଲେ, ଯାହା ସତ୍ୟ ହୋଇଥିଲା । ପୁନଶ୍ଚ ତାଙ୍କ

ବିଷୟରେ କୁହାଯାଏ ଯେ କ୍ରୋସସ ଓ ତାଙ୍କ ସୈନ୍ୟମାନେ ଏକ ନଦୀ ହାଲ୍ୟାକୁ ଅତିକ୍ରମ କରିବାକୁ ଅସୁବିଧାର ସମ୍ମୁଖୀନ ହେଉଥିବାରୁ ସେ ନଦୀର ଗତିପଥ ପରିବର୍ତ୍ତନର ଉପାୟ ଓ ନକ୍ସା ପ୍ରଦାନ କରିଥିଲେ । ତାଙ୍କର ଅର୍ଥଶାସ୍ତ୍ର, ଭୂଗୋଳ, ବାଣିଜ୍ୟ ଓ ରାଜନୀତିଶାସ୍ତ୍ର ଉପରେ ମଧ୍ୟ ପାଣ୍ଡିତ୍ୟ ରହିଥିଲା । ସମ୍ରାଟ କ୍ରୋସସଙ୍କର ପଟିରିୟା ଯୁଦ୍ଧ ସମୟରେ ସେ ରାଜାଙ୍କର ଯୁଦ୍ଧକାଳୀନ ଇଂଜିନିୟର ଥିଲେ । କୁହାଯାଏ ଯେ ସେ ରାତ୍ର ସମୟରେ ଘଣ୍ଟା ଘଣ୍ଟା ଧରି ଆକାଶକୁ ଚାହିଁ ତାରା, ନକ୍ଷତ୍ର ଓ ଗ୍ରହମାନଙ୍କର ଗତି ବିଧିକୁ ଲକ୍ଷ୍ୟ କରୁଥିଲେ । ତାଙ୍କ ଦେହାନ୍ତ ସମ୍ପର୍କରେ କୁହାଯାଏ ଯେ ସେ ଏକଦା ବାର୍ଦ୍ଧକ୍ୟରେ ଏକ ଖେଳ ପ୍ରତିଯୋଗିତା ଦେଖିବା ସମୟରେ ଅତ୍ୟଧିକ ଉତ୍ତାପ, ଶୋଷ ଓ ଭିଡ ଯୋଗୁ ସେଠାରେ ଟଳି ପଡିଥିଲେ ।

ଥେଲିସ୍ କ'ଣ ପୁସ୍ତକ ରଚନା କରିଛନ୍ତି କି ନାହିଁ ଏହା ଅଜ୍ଞାତ । ତେବେ କେତେକ ଗ୍ରହଣ କରନ୍ତି ଯେ ସେ କିଛି ପୁସ୍ତକ ରଚନା କରିଥିଲେ, ହେଲେ ସେସବୁ ନଷ୍ଟ ହୋଇଯାଇଛି । ଆରିଷ୍ଟୋଟଲ ତାଙ୍କ ପୁସ୍ତକ "ମେଟାଫିଜିକସ୍"ରେ ଥେଲିସ୍‌ଙ୍କ ବିଷୟରେ ଆଲୋଚନା କରିଥିଲେ ମଧ୍ୟ ତାଙ୍କର କୌଣସି ପୁସ୍ତକର ନାମ ଉଲ୍ଲେଖ କରିନାହାନ୍ତି । ଏଣୁ ଯଦି ସେ କିଛି ପୁସ୍ତକ ରଚନା କରିଥିବେ ସେସବୁ ଲୁପ୍ତ ହୋଇଯାଇଛି ।

ଥେଲିସ୍‌ଙ୍କର ଦର୍ଶନ ବିଷୟରେ ଏହା କୁହାଯାଏ ଯେ ସେ ପ୍ରଥମେ ଏହି ପ୍ରଶ୍ନର ଅବତାରଣା କରିଥିଲେ- ଏ ବିଶାଳ ବିଶ୍ୱର ମୂଳ ବସ୍ତୁ କ'ଣ ? କେଉଁ ମୌଳିକ ସତ୍ତାରୁ ସବୁ କିଛିର ଉତ୍ପତ୍ତି ହୋଇଛି ? ତାଙ୍କ ସିଦ୍ଧାନ୍ତରେ ବସ୍ତୁ ଜଗତର ସବୁ କିଛି ଜଳରୁ ଉଦ୍ଭବ ହୋଇଛି ଓ ଶେଷରେ ସବୁ କିଛି ଜଳରେ ବିଲୀନ ହେବ । ବିଶ୍ୱ ବ୍ରହ୍ମାଣ୍ଡର ମୂଳ ସତ୍ତା ହେଉଛି ଜଳ । ଦ୍ୱିତୀୟରେ ପୃଥିବୀ ହେଉଛି ଏକ ଆନୁଭୂମିକ ପାତ୍ର ସଦୃଶ ଯାହା ଜଳ ଉପରେ ଭାସମାନ ରହିଛି । ଏକ ଜାହାଜ ଯେପରି ଜଳ ଉପରେ ଭାସମାନ ସ୍ଥିତିରେ ରହେ, ସେହିପରି ପୃଥିବୀ ଜଳ ଉପରେ ଭାସମାନ ରହିଛି । ସମୟେ ସମୟେ ଭୂକଂପ ଆସିଲେ ଜଳରେ ଯେଉଁ ଗତିଶୀଳତା ସୃଷ୍ଟି ହୁଏ ତାହାଦ୍ୱାରା ପୃଥିବୀ ପ୍ରକଂପିତ ହୋଇଥାଏ ।

ଏଠାରେ ପ୍ରଶ୍ନ ହୁଏ ଥେଲିସ୍ ପୃଥିବୀର ମୂଳ ସତ୍ତା ଭାବରେ କାହିଁକି ଜଳକୁ ଗ୍ରହଣ କରିଛନ୍ତି ? ସବୁ ବସ୍ତୁ ଜଳରୁ କିପରି ସୃଷ୍ଟି ହୋଇଛି ? ଆରିଷ୍ଟୋଟଲଙ୍କ ମତରେ ସେ ଏପରି ଏକ ସିଦ୍ଧାନ୍ତକୁ ଆସିବାର ସମ୍ଭାବ୍ୟ କାରଣ ହେଉଛି ଯେ ପ୍ରତ୍ୟେକ ପୃଷ୍ଟିକର ଖାଦ୍ୟ ଭିତରେ କିଛି ଆର୍ଦ୍ରତା ରହିଛି । ପ୍ରତ୍ୟେକ ପ୍ରାଣୀର ଜୀବନ ଜଳ ଉପରେ ତିଷ୍ଠି ରହିଛି । ଏହା ସହିତ ଜଳରୁ ଉତ୍ତାପ ଉଦ୍‌ଭବ ହେଉଛି । ପ୍ରତ୍ୟେକ ବସ୍ତୁର ଉତ୍ପତ୍ତି, ପୋଷଣ ଓ ସଂରକ୍ଷଣ ପାଇଁ ଜଳର ଆବଶ୍ୟକତା ରହିଛି । ଏହା ସହିତ ଗ୍ରୀସ୍‌ରେ "ଜଳ ଦେବତା" ବିଷୟରେ କିଛି ମିଥ୍ ପ୍ରଚଳିତ ରହିଛି । ଏହିପରି ନାନା କାରଣରୁ ହୁଏତ ଥେଲିସ୍ ଜଳକୁ ବିଶ୍ୱର ମୂଳ ସତ୍ତା ଭାବରେ ଗ୍ରହଣ କରିଛନ୍ତି ।

ଜଳକୁ ପୃଥିବୀର ଆଦି ସତ୍ତା ଭାବରେ ଗ୍ରହଣ କରିବା ଏତେ ମହତ୍ତ୍ୱପୂର୍ଣ୍ଣ ମନେ ନ ହେଲେବି ବିଶ୍ୱକୁ କୌଣସି ପ୍ରାକୃତିକ ବସ୍ତୁ ସାହାଯ୍ୟରେ ବ୍ୟାଖ୍ୟା କରିବା କ୍ଷେତ୍ରରେ ଏହା ଥିଲା ପ୍ରଥମ ପ୍ରୟାସ । କୌଣସି କାଳ୍ପନିକ ଅତିପ୍ରାକୃତିକ ଶକ୍ତି ବା ସତ୍ତାର ପରିକଳ୍ପନା ନ କରି ବିଶ୍ୱକୁ ପ୍ରାକୃତିକ ଉପାଦାନ ମାଧ୍ୟମରେ ବ୍ୟାଖ୍ୟା କରିବା ଏକ

ଯୁଗାନ୍ତକାରୀ ବିଚାରଥିଲା । ସେ ଯୁଗର ମାନସିକତାରେ ଅତିପ୍ରାକୃତିକ ସତ୍ତା କିମ୍ବା ମାନବଷ୍ଟାରୂପୀ ଈଶ୍ୱରର ପରିକଳ୍ପନା ବ୍ୟାପକ ଭାବେ ରହିଥିଲା ଓ ସେହି ସବୁ ଆଧାରରେ ସବୁ କିଛିକୁ ବ୍ୟାଖ୍ୟା କରାଯାଉଥିଲା । ଥେଲିସ୍ ପ୍ରଥମ କରି ଏହି ଧାରାରେ ପରିବର୍ତ୍ତନ ଆଣି ଏକ ପ୍ରାକୃତିକ ବସ୍ତୁ ସାହାଯ୍ୟରେ ବିଶ୍ୱକୁ ବ୍ୟାଖ୍ୟା କରିବାରେ ଉଦ୍ୟମ କଲେ । ଦ୍ୱିତୀୟରେ ଏକ ବିବିଧତା ଭରା ବିଶ୍ୱକୁ ଏକ ମୌଳିକ ସତ୍ତା ମାଧ୍ୟମରେ ବ୍ୟାଖ୍ୟା କରିବାର ପରିକଳ୍ପନା କ୍ଷେତ୍ରରେ ଥେଲିସ୍ ପଥପ୍ରଦର୍ଶକ ଥିଲେ । ଏହି ବିବିଧତା ଭରା ବିଶ୍ୱକୁ ଯେ ଏକ ଏକକ-ପରମସତ୍ତା, ଯାହା ପ୍ରାକୃତିକ, ମାଧ୍ୟମରେ ବ୍ୟାଖ୍ୟା କରାଯାଇ ପାରିବ ତାହା ଏକ ଯୁଗାନ୍ତକାରୀ ଭାବନା ଥିଲା । ସୃଷ୍ଟିର ଏକକ ମୂଳକାରଣ ଜାଣିବାର ଭାବନା ଥେଲିସ୍‌ଙ୍କଠାରୁ ଆରମ୍ଭ ହେଲା । ସେ ଯେଉଁ ଉତ୍ତରର ଅବତାରଣା କଲେ ତାହା ଗୁରୁତ୍ୱପୂର୍ଣ୍ଣ ନଥିଲା, ପରନ୍ତୁ ସେ ଯେଉଁ ପ୍ରଶ୍ନ ଉଠାଇଲେ – "ବିଶ୍ୱର ମୂଳସତ୍ତା କ'ଣ" ତାହା ହିଁ ବହୁ ଗୁରୁତ୍ୱପୂର୍ଣ୍ଣ ଥିଲା । ଏତଦ୍‌ବ୍ୟତୀତ ଅତିପ୍ରାକୃତିକ ସତ୍ତା ବା ବିଶ୍ୱାସରୁ ଏକ ପ୍ରାକୃତିକ ସତ୍ତାଦ୍ୱାରା ଜଗତର ବ୍ୟାଖ୍ୟାନ ଏକ ବୈଜ୍ଞାନିକ ଭାବଧାରାର ସୂତ୍ରପାତ କରିଥିଲା । ସମ୍ଭବତଃ ଏହି କାରଣରୁ ଥେଲିସ୍‌ଙ୍କୁ ଗ୍ରୀକ୍ ବା ପାଶ୍ଚାତ୍ୟ ଦର୍ଶନର ଜନକ ଭାବେ ଗ୍ରହଣ କରାଯାଏ ।

ବହୁ ପରେ ପ୍ରାୟତଃ ଊନବିଂଶ-ବିଂଶ ଶତାବ୍ଦୀରେ ପାଶ୍ଚାତ୍ୟ ଦର୍ଶନର ଇତିହାସ ଲେଖିଥିବା ବହୁ ପଣ୍ଡିତ ଥେଲିସ୍ ଜଳକୁ ଜଗତର ମୂଳ ସ୍ରୋତ ବା ଆଧାର ଭାବରେ ଗ୍ରହଣ କରିବାର ବିଭିନ୍ନ କାରଣମାନ ଅବତାରଣା କରିଛନ୍ତି । ଥେଲିସ୍ ସମୁଦ୍ରର ବିଶାଳତା ଓ ଅନନ୍ତତା ତଥା ନୀଳନଦୀର ଭୟଙ୍କର ବନ୍ୟାର ଦୃଶ୍ୟ ଦେଖି ଜଳର ମୌଳିକ ଓ କରାଳ ରୂପ ବିଷୟରେ ଅନୁମାନ କରିଛନ୍ତି । ଜଳରେ ହେଉଥିବା ଅପରିମିତ ପରିବର୍ତ୍ତନକୁ ଦେଖି ସେ ପ୍ରାୟତଃ ଜଳର ଶକ୍ତି ବିଷୟ ବିଚାରକୁ ଆଣିଛନ୍ତି । ସେହିପରି ଜଳ କଠିନ ଅବସ୍ଥାରେ ବରଫ, ବାଷ୍ପ ଆକାରରେ ବାୟୁ ଓ ତରଳ ଅବସ୍ଥାରେ ଜଳ ବା ଆର୍ଦ୍ର ରୂପ ଧାରଣ କରିଥାଏ ଓ ବାୟୁ ରୂପରେ ଆମର ଶ୍ୱାସ-ପ୍ରଶ୍ୱାସ କ୍ରିୟା ସଂପାଦନ କରିଥାଏ । ଏହିପରି ନାନା କାରଣରୁ ଥେଲିସ୍ ଜଳକୁ ବିଶ୍ୱର ଆଦିସତ୍ତା ଭାବରେ ଗ୍ରହଣ କରିଥିଲେ ।

ଥେଲିସ୍ ଚେତନ ସତ୍ତା ବା ଆତ୍ମାର ଅସ୍ତିତ୍ୱ ଉପରେ ଆସ୍ଥା ରଖିଥିଲେ କି ନାହିଁ ତାହା ବିବାଦୀୟ ମନେହୁଏ । ତେବେ ବସ୍ତୁର ଗତିଶୀଳତାକୁ ବୁଝାଇବାକୁ ସେ ନିମିତ୍ତ କାରଣର କଳ୍ପନା କରିଥିବା ଜଣାଯାଏ । ବସ୍ତୁର ସଞ୍ଚାଳନ ବା ଗତି ପାଇଁ ବସ୍ତୁଭିତରେ ରହିଥିବା ନିମିତ୍ତ କାରଣକୁ ସେ 'ଆତ୍ମା' ମନେକରୁଥିଲେ । ଚୁମ୍ବକ ଲୁହାକୁ ସ୍ପନ୍ଦିତ ବା ଆକର୍ଷିତ କରୁଥିବା ଯୋଗୁ ଚୁମ୍ବକ ଭିତରେ ଆତ୍ମା ରହିଥିବା ସେ ପରିକଳ୍ପନା କରିଛନ୍ତି । ଏହି ଦୃଷ୍ଟିରୁ ଥେଲିସ୍ ପ୍ରଥମେ ଆତ୍ମାର ଭାବନା ଦେଇଥିବା କେତେକ ମନେକରନ୍ତି । ଅନ୍ୟ କେତେକ ଲେଖକଙ୍କ ମତ୍‌ରେ ଥେଲିସ୍ ଆତ୍ମାର ଅସ୍ତିତ୍ୱ ନୁହେଁ ବରଂ ବିଶ୍ୱାତ୍ମା ଉପରେ ଆସ୍ଥା ସ୍ଥାପନ କରିଥିଲେ । ବିଶ୍ୱର ପ୍ରତ୍ୟେକ ବସ୍ତୁରେ ଦେବତ୍ୱର ପ୍ରତିଫଳନ ରହିଛି । ସମଗ୍ର ବିଶ୍ୱରେ ବିଶ୍ୱାତ୍ମା ପରିବ୍ୟାପ୍ତ ହୋଇରହିଛି, ଏହା ସେସମୟର ଲୋକବିଶ୍ୱାସ ରହିଥିଲା ବୋଲି ଆରିଷ୍ଟୋଟଲ୍ ସୂଚନା ଦେଇଛନ୍ତି । ଅନ୍ୟ କେତେକ ଲେଖକଙ୍କ ମତରେ ବିଶ୍ୱାତ୍ମା ଏକ ଓ ସେ ଜଳରୁ ସବୁ ବସ୍ତୁ ନିର୍ମାଣ କରିଛନ୍ତି । ଅର୍ଥାତ୍ ଜଳ ହେଉଛି ଜଗତର ଏକମାତ୍ର ବସ୍ତୁଗତ କାରଣ ଓ ବିଶ୍ୱାତ୍ମା ଜଗତର ନିମିତ୍ତ

କାରଣ । ଏହିପରି ଦେଖିଲେ ଥେଲିସ୍‌ଙ୍କ ଭାବନା ଉପରେ ତିନୋଟି ମତ ରହିଛି । ସେ କେତେକ ବସ୍ତୁରେ ଆତ୍ମାର ଅସ୍ତିତ୍ୱ ଥିବା ଗ୍ରହଣ କରୁଥିଲେ । ଦ୍ୱିତୀୟ ମତରେ ସେ ସର୍ବେଶ୍ୱରବାଦ ବା ସର୍ବାତ୍ମାବାଦରେ ଆସ୍ଥା ରଖିଥିଲେ ଓ ତୃତୀୟ ମତରେ ସେ ଏକେଶ୍ୱରବାଦୀ ଥିଲେ । ତେବେ ଏକେଶ୍ୱରବାଦ, ସର୍ବେଶ୍ୱରବାଦ, ଜଡପ୍ରାଣବାଦ ବ୍ୟତୀତ କେତେକ ତାଙ୍କୁ ନିରୀଶ୍ୱରବାଦୀ ବା ପ୍ରକୃତିବାଦୀ ବୋଲି ଚିତ୍ରଣ ମଧ୍ୟ କରିଛନ୍ତି । ଯେହେତୁ ବିଶ୍ୱର ସକଳ ବସ୍ତୁ ଜଳରୁ ଉଦ୍‌ଭବ ହେଉଛି ଓ ଜଳହିଁ ବିଶ୍ୱର ମୂଳସତ୍ତା ସେ ଦୃଷ୍ଟିରୁ ସେ ଥିଲେ ପ୍ରକୃତିବାଦୀ । ପ୍ରକୃତିବାଦୀମାନେ ପ୍ରାୟତଃ ନିରୀଶ୍ୱରବାଦୀ । ଏହିପରି ଦେଖିଲେ ଦର୍ଶନ-ଐତିହାସିକ ମାନେ ଥେଲିସ୍‌ଙ୍କୁ ନାନା ଭାବରେ ପ୍ରକାଶ କରିଛନ୍ତି ଓ ନିଜ ନିଜ ଦୃଷ୍ଟିରୁ ତାଙ୍କ ଭାବନାକୁ ବ୍ୟାଖ୍ୟା କରିଛନ୍ତି ।

କେତେକ ତଥ୍ୟରୁ ଜଣାଯାଏ ଯେ ଥେଲିସ୍ ମାନବବାଦୀ ଓ ନୀତିବାଦୀ ବ୍ୟକ୍ତି ଥିଲେ । ନିଜକୁ, ନିଜ ପଡୋଶୀଙ୍କୁ ଓ ନିଜର ବନ୍ଧୁଙ୍କୁ ପ୍ରେମ କରିବାକୁ ସେ ପ୍ରେରଣା ଦେଉଥିଲେ । ଅତୀତରୁ ଶିକ୍ଷାକର ଓ ସେହି ଅନୁସାରେ ଭବିଷ୍ୟତକୁ ନିର୍ମାଣ କରିବାକୁ ପ୍ରୟାସ କର । କାହାକୁ ନିନ୍ଦା କି ତିରସ୍କାର କର ନାହିଁ । ତୁମର ବନ୍ଧୁ ଯେ ତୁମର ମଙ୍ଗଳ ପାଇଁ କାର୍ଯ୍ୟ କରନ୍ତି ଏହା ବିଶ୍ୱାସ କର, ତେବେ ତୁମର ଶତ୍ରୁ ଯେ ତୁମର ମଙ୍ଗଳ କରିବେ ନାହିଁ ଏହା ମଧ୍ୟ ମନେରଖ । ବବେକଶୀଳ ହୁଅ ଓ ମନେରଖ ଯେ ବାଚାଳତା ଓ ବିବେକଶୀଳତା ପରସ୍ପରର ପରିପନ୍ଥୀ । । ଏହିସବୁ ଭାବନା ଥେଲିସ୍‌ଙ୍କର ଥିଲା ବୋଲି ଐତିହାସିକମାନେ ଉଲ୍ଲେଖ କରିଛନ୍ତି । ଏହି ସବୁ ବିଶ୍ୱାସ ଓ ଭାବନାରୁ ଥେଲିସ୍‌ଙ୍କ ବ୍ୟକ୍ତିଗତ ଜୀବନ ଯେ ଆଦର୍ଶସ୍ଥାନୀୟ ଥିଲା ତାହା ମନେହୁଏ ।

ଥେଲିସ୍ ମଧ୍ୟ ଜଣେ ଗଣିତଜ୍ଞ, ଜ୍ୟୋତିର୍ବିଜ୍ଞାନୀ ରହିଥିବା କେତେକ ତଥ୍ୟରୁ ଜଣାଯାଏ । ପିରାମିଡମାନଙ୍କର ଉଚ୍ଚତା ଜାଣିବା ପାଇଁ ସେ ପିରାମିଡର ଛାଇକୁ ମାପି ଏହାର ଉଚତା ବିଷୟରେ କହିପାରୁଥିଲେ । ଜ୍ୟାମିତି ବିଷୟରେ ସେ ପ୍ରଥମେ କେତେକ ଭାବନାର ସୂତ୍ରପାତ କରିଥିଲେ ବୋଲି ଇଉକ୍ଲିଡୀୟ ଜ୍ୟାମିତିରେ ଉଲ୍ଲେଖ ରହିଛି । ସେହିପରି ପାଶ୍ଚାତ୍ୟ ଭୂଖଣ୍ଡରେ ତାଙ୍କୁ ଜ୍ୟୋତିର୍ବିଜ୍ଞାନର ଜନକ ଭାବେ ସ୍ୱୀକାର କରାଯାଏ । ସପ୍ତର୍ଷୀ ମଣ୍ଡଳର ଗତିବିଧିକୁ ସେ ପ୍ରଥମେ ଲକ୍ଷ୍ୟକରି ତାର ଗତିପଥ ବିଷୟରେ ଓ ସୂର୍ଯ୍ୟପରାଗ ବିଷୟରେ ସୂଚନା ଦେଇଥିଲେ । ୨୮ ମେ ୫୮୫ ଖ୍ରୀ.ପୂ. ଦିନ ସୂର୍ଯ୍ୟପରାଗ ହେବାର ସେ ଯେଉଁ ପୂର୍ବ ସୂଚନା ଦେଇଥିଲେ ତାହା ସତ୍ୟ ହୋଇଥିଲା ।

ମୋଟଉପରେ କହିଲେ ଥେଲିସ୍ ତାଙ୍କ ସମସାମୟିକ ଆଓନିଆ ରାଜ୍ୟରେ ଜଣେ ପ୍ରବୀଣ ଦାର୍ଶନିକ, ଗଣିତଜ୍ଞ ଓ ବୈଜ୍ଞାନିକ ଭାବେ ସ୍ୱୀକୃତି ପାଇଥିଲେ । ସେ ଥିଲେ ତାଙ୍କ ସମୟର ଜଣେ ଜିନିୟସ ଯେ ବହୁ ବୌଦ୍ଧିକ କ୍ଷେତ୍ରଉପରେ ମୌଳିକ ଚିନ୍ତାର ଅବତାରଣା କରିଥିଲେ । ଯେଉଁ ଯୁଗରେ ଜ୍ଞାନ ବିଜ୍ଞାନର ବିଶେଷ ବିକାଶ ହୋଇନଥିଲା, ସେହି ସମୟରେ ସେ ବିଭିନ୍ନ କ୍ଷେତ୍ର ଉପରେ ଗମ୍ଭୀର ଭାବନା ଦେଇଥିଲେ । ପରବର୍ତ୍ତୀ ସମୟରେ ଏହି ସବୁ ଭାବନା ଉପରେ ବହୁ ଆଲୋଚନାର ପରିବେଶ ସୃଷ୍ଟି ହୋଇଥିଲା । ଏହି ଦୃଷ୍ଟିରୁ ଥେଲିସ୍‌ଙ୍କୁ ପାଶ୍ଚାତ୍ୟ ଦର୍ଶନର ଜନକ କୁହାଯାଇଛି । ଏତଦ୍‌ବ୍ୟତୀତ ଗ୍ରୀସ୍‌ର ସାତଜଣ ବ୍ୟକ୍ତିଙ୍କୁ "ପ୍ରଜ୍ଞାବାନ" ଭାବରେ ଗ୍ରହଣ

କରାଯାଏ ଓ ସେ ମଧ୍ୟରେ ଇତିହାସରେ ଥେଲିସ୍ ଅନ୍ତର୍ଭୁକ୍ତ ହୋଇଥିବା ଜଣାଯାଏ ।

**୨.୨ ଆନେକ୍ସିମେଣ୍ଡର (Anaximander):** ଆଓନୀୟ ଦାର୍ଶନିକ ଧାରାର ପରବର୍ତ୍ତୀ ପ୍ରବୀଣ ଦାର୍ଶନିକ ହେଲେ ଆନେକ୍ସିମେଣ୍ଡର । ତାଙ୍କ ଜନ୍ମ ସମ୍ଭବତଃ ଖ୍ରୀ.ପୂ. ୬୧୧ ରେ ଓ ଦେହାନ୍ତ ଖ୍ରୀ.ପୂ. ୫୪୭ରେ ହୋଇଥିବା ଅନୁମାନ କରାଯାଏ । ସେ ଆଓନିଆସ୍ଥିତ ମିଲେଟସରେ ଜନ୍ମ ହୋଇଥିବା ଜଣାଯାଏ । ସେ ମଧ୍ୟ ଥେଲିସ୍‌ଙ୍କର ଶିଷ୍ୟ, ସହଗାମୀ ଓ ବୟସରେ ସାନ ହେଲେ ବି ସମସାମୟିକ ଥିଲେ । ସେ ଗ୍ରୀସ୍‌ର ପ୍ରଥମ ବ୍ୟକ୍ତି ଯେ କି ଦର୍ଶନ ଶାସ୍ତ୍ର ଉପରେ କେତେକ ଗ୍ରନ୍ଥ ରଚନା କରିଥିଲେ । ତେବେ ପରବର୍ତ୍ତୀ ସମୟରେ ତାଙ୍କ ଗ୍ରନ୍ଥ ବିଲୁପ୍ତ ହୋଇଯାଇଥିଲା । ତାଙ୍କର ଜ୍ୟୋତିର୍ବିଜ୍ଞାନ ଓ ଭୂଗୋଳ ବିଷୟରେ ଜ୍ଞାନ ରହିଥିଲା । ସେ ପ୍ରଥମ ବ୍ୟକ୍ତି ଭାବରେ ବିଭିନ୍ନ ସ୍ଥାନର ମାନଚିତ୍ର ପ୍ରସ୍ତୁତ କରିଥିଲେ । ଅନେକ୍ସିମେଣ୍ଡରଙ୍କ ମତରେ ପୃଥିବୀ ହେଉଛି ଜଗତର କେନ୍ଦ୍ର । ସେହିପରି ସେ ଜ୍ୟାମିତିର ରୂପରେଖ ସମ୍ବନ୍ଧରେ ମଧ୍ୟ ପ୍ରଥମେ ନିଜେ କେତେକ ବିଷୟ ଲେଖିଥିଲେ । ତାଙ୍କ ରଚିତ ପୁସ୍ତକମାନଙ୍କର ନାମ କେତେକ ଐତିହାସିକ ସୂଚନା ଦେଇଥିଲେ ମଧ୍ୟ ସେ ସବୁ କିଛି ଉପଲବ୍ଧ ନୁହେଁ ।

ଥେଲିସ୍ ଯେପରି ଜଳକୁ ପୃଥିବୀର ପ୍ରଥମ ସତ୍ତା ଭାବରେ ନେଇ ସେଥିରୁ ସବୁ କିଛି ଉଦ୍‌ଭବ ହୋଇଥିବା ପରିକଳ୍ପନା କରିଥିଲେ, ଆନେକ୍ସିମେଣ୍ଡର ଏହି ସିଦ୍ଧାନ୍ତକୁ ଗ୍ରହଣ କରୁନଥିଲେ । ଜଗତର ମୂଳ ସତ୍ତା ଯେ ଜଳ ଏହା ତାଙ୍କ ଦ୍ୱାରା ଗ୍ରହଣଯୋଗ୍ୟ ହୋଇନଥିଲା । ସେ ବରଂ ଜଗତର ମୂଳ ବସ୍ତୁ କ'ଣ ଯେଉଁଥିରୁ ସବୁ କିଛି ଉତ୍ପନ୍ନ ହୋଇଛି ତା ବିଷୟରେ ଗମ୍ଭୀର ଭାବରେ ଅନୁଶୀଳନ କରିଥିଲେ । ଜଗତର ମୂଳ ସତ୍ତା ବସ୍ତୁ, କିନ୍ତୁ ସେହି ବସ୍ତୁ ଜଳ ହୋଇନପାରେ । ଆନେକ୍ସିମେଣ୍ଡରଙ୍କ ମତରେ ଜଗତରେ ଅନେକ ବିରୋଧୀ ଶକ୍ତି କାର୍ଯ୍ୟ କରୁଛି । ଏହି ବିରୋଧୀ ଶକ୍ତି ମାନଙ୍କର ସଂଘାତ ଓ ସଂଘର୍ଷର ପରିଣାମରୁ ଜଗତର ଉତ୍ପତ୍ତି ହୋଇଛି । ଉତ୍ତପ୍ତ ଅଗ୍ନି ଓ ଶୀତଳ ବାୟୁ, ଶୁଷ୍କ ଭୂଭାଗ ଓ ଆର୍ଦ୍ର ସମୁଦ୍ର, ରାତ୍ରୀର ଘନ ଅନ୍ଧକାର ଓ ଦିନର ଉତ୍ତପ୍ତ ସୂର୍ଯ୍ୟ ଇତ୍ୟାଦି ମଧ୍ୟରେ ବିରୋଧ ଓ ସଂଘାତ ରହିଛି । ପରସ୍ପର ବିରୋଧୀ ତତ୍ତ୍ୱର ମୂଳ କ'ଣ ହୋଇପାରେ ? ତାହାର ମୂଳ ଯାହା ହେଲେ ବି ଯେଉଁ କ୍ଷେତ୍ରରେ ବିରୋଧତା ରହେ, ତାହା ବିଶ୍ୱର ମୂଳକାରଣ ହୋଇପାରିବ ନାହିଁ । ଯଦି ଥେଲିସ୍‌ଙ୍କ ମତରେ ଜଳକୁ ପୃଥିବୀର ମୂଳସତ୍ତା ଭାବେ ନିଆଯିବ, ତେବେ ଅଗ୍ନି, ବାୟୁ, ଉଷ୍ମ ତଥା ଶୁଷ୍କର ପ୍ରଥମେ ସମାପ୍ତ ହେବା ଦରକାର, କାରଣ ଏସବୁ ଜଳର ବିପରୀତ ତତ୍ତ୍ୱ । ଯେଉଁ ତତ୍ତ୍ୱ ବା ସତ୍ତାରୁ ଜଗତର ଉତ୍ପତ୍ତି ହୋଇଛି ତାହା ଉତ୍ପନ୍ନ ବସ୍ତୁଠାରୁ ମୌଳିକ ଓ ସ୍ଥାୟୀ ହେବା ଆବଶ୍ୟକ । ଯେତେ ଯେତେ ବସ୍ତୁ ପୃଥିବୀରେ ରହିଛି ସେସବୁ ପରସ୍ପରଠାରୁ ଭିନ୍ନ । ବସ୍ତୁମାନଙ୍କ ଭିତରେ ଗୁଣାତ୍ମକ ପାର୍ଥକ୍ୟ ବିଦ୍ୟମାନ । ଜଳର ଗୁଣ, ବାୟୁର ଗୁଣଠାରୁ ପୃଥକ୍, ସେହିପରି ଜଳ ବା ବାୟୁର ଗୁଣଠାରୁ ଅଗ୍ନିର ଗୁଣ ଭିନ୍ନ । ସୁତରାଂ ଆନେକ୍ସିମେଣ୍ଡରଙ୍କ ମତରେ ଜଗତର ମୂଳ ସତ୍ତା ହେଉଛି ସେହି ତତ୍ତ୍ୱ ଯାହା ଗୁଣ ରହିତ ଓ ଅସୀମ । ଏହି ମୂଳତତ୍ତ୍ୱ ଅସୀମ, ନିତ୍ୟ, ଅବିନାଶୀ, କାଳାତୀତ ଓ ଗୁଣାତୀତ । ଏହା ଅସୀମ ଭାବରେ ବିସ୍ତାରିତ । ଜଗତରେ ଥିବା ପ୍ରତ୍ୟେକ ବସ୍ତୁ ଗୁଣଯୁକ୍ତ । କିନ୍ତୁ ଯେଉଁ ମୂଳ ସତ୍ତାରୁ ବସ୍ତୁଜଗତ ସୃଷ୍ଟି ହୋଇଛି ତାହା ଗୁଣରହିତ ଓ ଅସୀମ ।

ଏହି ପରିପ୍ରେକ୍ଷୀରେ ଦୁଇଟି ପ୍ରଶ୍ନ ଉଠିଥାଏ – (୧) ଅସୀମ ସତ୍ତାରୁ ଜଗତର ଉତ୍ପତ୍ତି କିପରି ହୋଇଛି ? (୨) ସୀମିତ ତତ୍ତ୍ୱ ବା ସତ୍ତା ଭିତରୁ ଜଗତର ଉତ୍ପତ୍ତି କାହିଁକି ସମ୍ଭବ ନୁହେଁ ? ଆନେକ୍ସିମେଣ୍ଡରଙ୍କ ମତରେ ଯଦି ସୀମିତ ସତ୍ତାରୁ ଜଗତ ମାନଙ୍କର ଉତ୍ପତ୍ତି ହୋଇଥାନ୍ତା, ତେବେ ଜଗତର ଧ୍ୱଂସ କେବେଠାରୁ ହୋଇ ସାରିଥାନ୍ତା । ବରଂ ତାଙ୍କ ମତରେ ଅସଂଖ୍ୟା ଜଗତ ରହିଛି । ସୃଷ୍ଟି ଆରମ୍ଭଠାରୁ ଅଦ୍ୟାବଧି ଅସଂଖ୍ୟ ଜଗତର ଉତ୍ପତ୍ତି ହୋଇଛି । ଅସଂଖ୍ୟ ପୃଥିବୀର ମୂଳ ଦ୍ରବ୍ୟ ସୀମିତ ନ ହୋଇ ଅସୀମ ହେବା ସମ୍ଭବ ।

ଆନେକ୍ସିମେଣ୍ଡରଙ୍କ ମତରେ ଜଗତମାନଙ୍କର ଉତ୍ପତ୍ତିର କାରଣ ହେଉଛି ଅସୀମ ସତ୍ତା ବା ତତ୍ତ୍ୱ । ତେବେ ଏହି ଅସୀମ ତତ୍ତ୍ୱର ସ୍ୱରୂପ କ'ଣ ? ତାଙ୍କ ମତାନୁସାରେ ଏହି ସତ୍ତାର ସ୍ୱରୂପ ଭୌତିକ । ଅର୍ଥାତ୍ ଆନେକ୍ସିମେଣ୍ଡର ଏକ ଭୌତିକବାଦୀ ଦର୍ଶନର ବିକାଶ କରିଥିଲେ । ଅନ୍ୟ ମତରେ ଆନେକ୍ସିମେଣ୍ଡରଙ୍କ ମତ ଯଥାର୍ଥ ନୁହେଁ । କାରଣ ସେ ସମୟରେ ଦ୍ରବ୍ୟ ଓ ଆକାର ମଧ୍ୟରେ ପାର୍ଥକ୍ୟର ଭାବନା ଆସିନଥିଲା । ଅସୀମ ବସ୍ତୁର ଭାବନା ସହିତ ଆକାରର ଭାବନା ସଂଯୁକ୍ତ ହୋଇ ରହିବା ସେ ଯୁଗର ବିଚାର ଥିଲା । ସୁତରାଂ ଏହା ଏକ ଭୌତିକବାଦୀ ଦର୍ଶନ ନଥିଲା, ବରଂ ସେ ଯୁଗର ଚିନ୍ତାଚେତନାରେ ବସ୍ତୁ ଭିତରେ ଦୈବୀ ଭାବନା ଅନ୍ତର୍ନିହିତ ହୋଇ ରହିଥିଲା । ଏଣୁ ବସ୍ତୁ ସକଳର ଅସୀମତା ନେଇ ସନ୍ଦେହ ରହିବା ସ୍ୱାଭାବିକ ମନେହୁଏ । ଆନେକ୍ସିମେଣ୍ଡର ଯେଉଁ ଅସୀମ ସତ୍ତାର ଭାବନା ବ୍ୟକ୍ତ କରିଛନ୍ତି ସେହି 'ଅସୀମତା' ଈଶ୍ୱରୀୟ ଭାବନାର ସଙ୍କେତ ବହନ କରେ ବୋଲି କେତେକ ମତଦିଅନ୍ତି । ତେବେ ଆନେକ୍ସିମେଣ୍ଡରଙ୍କ ଦର୍ଶନ ଭୌତିକବାଦୀ ଦର୍ଶନ ନା ଅଭୌତିକବାଦୀ ଦର୍ଶନ ତାହା ବିବାଦୀୟ ମନେହୁଏ ।

'ଅସୀମ' ସତ୍ତାରୁ ଜଗତର ଉତ୍ପତ୍ତି କିପରି ହୋଇଛି ? ଏକ ଅସୀମ, ନିରାକାର, ନିର୍ବିଶେଷ ପରମ ସତ୍ତାରୁ ସାକାର ପୃଥିବୀର ଉତ୍ପତ୍ତି କିପରି ହୋଇଛି ? ଆନେକ୍ସିମେଣ୍ଡରଙ୍କ ମତରେ ଅସଂଖ୍ୟ ପୃଥିବୀ ଅସୀମ ସତ୍ତାରୁ ଉଦ୍‌ଭବ ହୋଇଛି । ଗୋଟିଏ ପରେ ଗୋଟିଏ ପୃଥିବୀ ଉଦ୍‌ଭବ ହୋଇ କ୍ରମରେ ସୃଷ୍ଟି ହୋଇଛି । ପ୍ରଥମେ ଏକ ପୃଥିବୀ ସୃଷ୍ଟି ହୋଇଛି, ବିକଶିତ ହୋଇଛି ଓ ଶେଷରେ ଧ୍ୱଂସ ପାଇଛି; ତାପରେ ଆଉ ଏକ ପୃଥିବୀ ଉଦ୍‌ଭବ ହୋଇଛି, ବିକାଶଲାଭ କରିଛି ଓ ଶେଷରେ ବିଲୁପ୍ତ ହୋଇଛି । ଏହି ପ୍ରକ୍ରିୟାର ଧାରା ନିରନ୍ତର ଭାବରେ ଚାଲୁରହିଛି । ଏହା ଏକ ନିରନ୍ତର ପ୍ରକ୍ରିୟା ଓ ଏହାର ପରସମାପ୍ତି ନାହିଁ । ଅନ୍ୟ ଏକ ମତରେ ଆନେକ୍ସିମେଣ୍ଡରଙ୍କ ଅସଂଖ୍ୟ ପୃଥିବୀ ଗୋଟିଏ ପରେ ଗୋଟିଏ ଚିତ୍ରପଟକୁ ଆସୁନାହିଁ, ବରଂ ସେସବୁର ସ୍ଥିତି ଏକାସମୟରେ ତିଷ୍ଠି ରହିଛି । ତେବେ ଏହି ଅସଂଖ୍ୟ ଜଗତ ଏକାଠି ଓ ଏକ କାଳଖଣ୍ଡରେ ରହିଥିଲେ ମଧ୍ୟ ସେଗୁଡିକ ଚିରନ୍ତନ ନୁହେଁ । ପ୍ରତ୍ୟେକ ଜଗତର ଉତ୍ପତ୍ତି, ବିକାଶ ଓ ବିଲୟ ରହିଛି ଓ ଏହି ପ୍ରକ୍ରିୟାରେ ନୂତନ ଜଗତ ମଧ୍ୟ ସୃଷ୍ଟି ହେଉଛି ।

ଅସୀମ ଦ୍ରବ୍ୟ ଏହାର ନିତ୍ୟ ଗତିଦ୍ୱାରା ପୃଥକ୍ ପୃଥକ୍ ବସ୍ତୁରାଜିକୁ ସୃଷ୍ଟି କରିଛି । ଏହି ପୃଥକୀକରଣ ପ୍ରକ୍ରିୟା ଏକ ନିରନ୍ତର ଧାରା । ପ୍ରଥମେ ଅନିର୍ଦ୍ଧାରିତ ଦ୍ରବ୍ୟରେ ଶୀତଳତା ଓ ଉଷ୍ଣତା ପ୍ରକାଶ ପାଇ ଏହାକୁ ଦୁଇ ପୃଥକ୍ ସତ୍ତାରେ ରୂପାନ୍ତରିତ କଲା । ଶୀତଳତାରେ ଆର୍ଦ୍ରତା ଓ ତରଳତା ପ୍ରକାଶ ପାଇଲା । ଦ୍ରବ୍ୟରେ ଶୀତଳତା ଓ

ଆର୍ଦ୍ରତା ପ୍ରକାଶ ପାଇବା ପରେ ଏହା ପୃଥିବୀରେ ରୂପାନ୍ତରିତ ହେଲା ଯାହା ବିଶ୍ୱର ମଧ୍ୟଭାଗରେ ସ୍ଥାନିତ ହେଲା । ଯେଉଁ ଦ୍ରବ୍ୟ-ସତ୍ତାରେ ଉଷ୍ଣତା ପ୍ରକାଶ ପାଇଲା ତାହା ଅଗ୍ନିର ରୂପ ନେଇ ପୃଥିବୀ ଚତୁଃପାର୍ଶ୍ୱରେ ରହିଲା । ସେହି ଉତ୍ତାପରୁ ଜଳ ଓ ଜଳରୁ ଉତ୍ତାପଦ୍ୱାରା ବାୟୁମଣ୍ଡଳ ସୃଷ୍ଟି ହେଲା ଯାହା ପୃଥିବୀକୁ ବ୍ୟାପିକରି ରହିଲା । ପୃଥିବୀ ମୂଳ ରୂପରେ ତରଳ ଥିଲା, କିନ୍ତୁ ଅଗ୍ନିର ଉତ୍ତାପଦ୍ୱାରା ଧୀରେ ଧୀରେ ବାୟୁରେ ରୂପାନ୍ତରିତ ହୋଇ ପୃଥିବୀକୁ ଆବୃତ କରି ରଖିଲା । ଉତ୍ତାପ ଓ ଅଗ୍ନିର ଜ୍ୱଳନ ପ୍ରକ୍ରିୟା ମଧ୍ୟ ଦେଇ ସୂର୍ଯ୍ୟ, ଚନ୍ଦ୍ର, ତାରା ମାନଙ୍କର ସୃଷ୍ଟି ସମ୍ଭବ ହେଲା । ଏହି ଭାବଧାରାରେ ଚନ୍ଦ୍ର ଏକ ଉତ୍ତପ୍ତ ବସ୍ତୁ ଓ ସକଳ ଆକାଶୀୟ ପିଣ୍ଡ ମଧ୍ୟ ଉତ୍ତପ୍ତ ବସ୍ତୁ । ଦୂରତା କ୍ରମରେ ପୃଥିବୀଠାରୁ ସବୁଠାରୁ ଦୂରରେ ସୂର୍ଯ୍ୟମଣ୍ଡଳ, ତାଠାରୁ କମ୍ ଦୂରରେ ଚନ୍ଦ୍ର ମଣ୍ଡଳ ଓ ତାଠାରୁ କମ୍ ଦୂରରେ ନକ୍ଷତ୍ର ମଣ୍ଡଳ ସ୍ଥାନିତ ହୋଇରହିଛି । ଆନେକ୍ସିମେଣ୍ଡରଙ୍କ ମତରେ ପୃଥିବୀ ବିଶ୍ୱର ମଧ୍ୟଭାଗରେ ଅବସ୍ଥିତ ଓ ପୃଥିବୀ ଏକ ବେଲୁନ ସଦୃଶ ଯାହା ଗୋଲାକର ନୁହେଁ ।

ଜୀବଜଗତର ଉତ୍ପତ୍ତି ବା ବିବର୍ତ୍ତନ କ୍ଷେତ୍ରରେ ଆନେକ୍ସିମେଣ୍ଡର କିଛି ମୌଳିକ ଓ ମହତ୍ତ୍ୱପୂର୍ଣ୍ଣ ସିଦ୍ଧାନ୍ତର ଅବତାରଣା କରିବା ଦେଖାଯାଏ । ତାଙ୍କ ସିଦ୍ଧାନ୍ତ ଅନୁଯାୟୀ ଆରମ୍ଭରେ ପୃଥିବୀ ତରଳ ବସ୍ତୁଦ୍ୱାରା ଆଚ୍ଛାଦିତ ହୋଇ ରହିଥିଲା । ସୂର୍ଯ୍ୟଙ୍କ କିରଣ ଓ ଉତ୍ତାପ ଦ୍ୱାରା ଜଳର ଆର୍ଦ୍ରତା ଧୀରେ ଧୀରେ ଶୁଷ୍କ ହେଲା । ଉତ୍ତାପ ଓ ଜଳୀୟ ବାଷ୍ପର ସମନ୍ୱୟରୁ ଜୀବନର ଅୟମାରମ୍ଭ ହେଲା । ପ୍ରଥମେ ନିମ୍ନ ଶ୍ରେଣୀର ଜୀବମାନଙ୍କର ଜଳଭାଗରେ ଉତ୍ପତ୍ତି ହେଲା । ପରେ ପରେ ପୃଥିବୀର ବାତାବରଣ ଭିତରେ ଉଚ୍ଚ ଶ୍ରେଣୀର ପ୍ରାଣୀଙ୍କର ଉତ୍ପତ୍ତି ବା ବିବର୍ତ୍ତନ ହେଲା । ପରିବେଶ ସହିତ ଖାପଖାଇଲା ପରି ଧୀରେ ଧୀରେ ଜୀବମାନଙ୍କର ଉତ୍ପତ୍ତି ହୋଇଛି । ମନୁଷ୍ୟ ପ୍ରାଥମିକ ଅବସ୍ଥାରେ ଜଳରେ ମାଛ ସଦୃଶ ସୃଷ୍ଟି ହୋଇଥିଲା । ଧୀରେ ଧୀରେ ପୃଥିବୀର ଅଂଶମାନ ଶୁଷ୍କ ଓ ସ୍ଥଳଭାଗରେ ପରିବର୍ତ୍ତିତ ହେଲା । ଜଳଚର ପ୍ରାଣୀମାନେ ସ୍ଥଳଭାଗକୁ ଆସିଲେ ଓ ନୂତନ ପରିବେଶରେ ବାସକରି ଗତିଶୀଳତା ଲାଭ କଲେ । ସ୍ଥଳଭାଗକୁ ଆସିବାପରେ ସେମାନଙ୍କ ପାଖରେ ନୂତନ ଗୁଣ ପ୍ରକାଶ ପାଇଲା । ଜୀବଜଗତରୁ ଯେ ବିବର୍ତ୍ତନ ହୋଇଛି ଓ ପ୍ରଥମେ ଜଳରେ ପ୍ରାଣୀଙ୍କଠାରୁ ଏହି ପ୍ରକ୍ରିୟାର ଆରମ୍ଭ ହୋଇଥିଲା ଏହିପରି ଏକ ସିଦ୍ଧାନ୍ତ ସେ ପରିକଳ୍ପନା କରିଥିଲେ ।

ଆଧୁନିକ ବିବର୍ତ୍ତନବାଦ ସହ ଏହି ପ୍ରାଚୀନ ଭାବଧାରାର କିଛି ସାମଂଜସ୍ୟକୁ ଲକ୍ଷ୍ୟ କରାଯାଇପାରେ । ପ୍ରକୃତି ସହ ପ୍ରୟୋଜନ ଅନୁସାରେ ବଞ୍ଚିବା ଓ ପାରିପାର୍ଶ୍ୱିକ ଅବସ୍ଥା ଅନୁଯାୟୀ ନିଜକୁ ଖାପ ଖୁଆଇ ଚଳିବା ଏକ ଆଧୁନିକ ମତ । ଆନେକ୍ସିମେଣ୍ଡର ତାଙ୍କର ସ୍ଥୁଳ ଭାବନା ଭିତରେ ଏହି ଭାବଧାରାର କିଛି ଅବତାରଣା କରିଥିବା ଦେଖାଯାଏ । ତେବେ ଜୀବଜଗତର ଯେ କ୍ରମବିବର୍ତ୍ତନ ଘଟିଛି ଓ ଏହାକୁ କେହି ସୃଷ୍ଟି କରି ନାହିଁ ଏହି ବିଚାର ପ୍ରାଚୀନ କାଳରେ ଅନେକ ନୂତନତ୍ୱ ବହନ କରିବା ମନେହୁଏ ।

ଥେଲିସ୍‌ଙ୍କ ଦର୍ଶନ ଠାରୁ ଆନେକ୍ସିମେଣ୍ଡରଙ୍କ ଦାର୍ଶନିକ ଭାବଧାରାରେ କିଛି ଉତ୍କୃଷ୍ଟତା ଲକ୍ଷ୍ୟ କରାଯାଏ । ଥେଲିସ୍‌ଙ୍କ ମତରେ ଜଳ ହିଁ ମୂଳ ଦ୍ରବ୍ୟ । ତେବେ ଆନେକ୍ସିମେଣ୍ଡର ମୂଳ ଦ୍ରବ୍ୟକୁ ଅସୀମ ଓ ନିର୍ବିଶେଷ ଭାବେ

ଗ୍ରହଣ କରି ଏକ ସ୍ଥୁଳ ବସ୍ତୁରୁ ଏକ ସୂକ୍ଷ୍ମ ଭାବନାର ଅବତାରଣା କରିଥିଲେ । ସେ ଜଳର ସ୍ଥିତିକୁ ସ୍ୱୀକାର କରିଥିଲେ ମଧ୍ୟ ଏକ ସୂକ୍ଷ୍ମ ମୂଳବସ୍ତୁର ଅବତାରଣା କରିବା ଦାର୍ଶନିକ ବିଚାର ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ ମନେହୁଏ । ବିଚାର ସ୍ତରରେ ଏହା ଯେ ଅଧିକ ବିକଶିତ ଏହା ପ୍ରତୀୟମାନ ହୁଏ । ସେ ନିଜ ସିଦ୍ଧାନ୍ତକୁ ପ୍ରତିପାଦନ କରିନଥିଲେ ମଧ୍ୟ ଜଗତର ଅସ୍ତିତ୍ୱକୁ ବ୍ୟାଖ୍ୟା କରିବାରେ କିଛି ପ୍ରୟାସ କରିଛନ୍ତି । ପରମସତ୍ତା, ବିଶ୍ୱର ଉତ୍ପତ୍ତି ଓ ଜୀବଜଗତର ଅସ୍ତିତ୍ୱ ନେଇ ସେ ଯେଉଁ ସବୁ ଭାବନା ମାନଙ୍କର ଅବତାରଣା କଲେ ତାହା ଦାର୍ଶନିକ ସିଦ୍ଧାନ୍ତ ନିର୍ମାଣ କରିବାରେ ଭବିଷ୍ୟତ ପାଇଁ ଆଧାର ଯୋଗାଇଲା । ଆଜକୁ ପ୍ରାୟ ଅଢ଼େଇ ହଜାର ବର୍ଷ ତଳେ ସେ ଚିନ୍ତାରାଜ୍ୟରେ ଯେଉଁ ସ୍ପନ୍ଦନ ସୃଷ୍ଟି କରିଥିଲେ ତାହା ସଭ୍ୟତାର କ୍ରମବିକାଶ ଧାରାରେ ଦାର୍ଶନିକ ଜିଜ୍ଞାସା କ୍ଷେତ୍ରରେ ପ୍ରେରଣାଦାୟୀ ଥିଲା । ସେ ଯେଉଁ ସବୁ ପ୍ରସଙ୍ଗମାନଙ୍କର ଅବତାରଣା କଲେ ତାହା ଦାର୍ଶନିକ ଚିନ୍ତା ଚେତନାର ବିକାଶରେ ସହାୟକ ହୋଇଥିଲା ।

## ୨.୩ ଆନେକ୍ସିମେନିସ୍ (Anaximenes)

ଆଓନିଆସ୍ଥିତ ମିଲେଟସର ତୃତୀୟ ବିଶିଷ୍ଟ ଦାର୍ଶନିକ ହେଲେ ଆନେକ୍ସିମେନିସ୍ । ତାଙ୍କର ଜନ୍ମ ଖ୍ରୀ.ପୂ. ୫୮୮ ରେ ଓ ଦେହାନ୍ତ ଖ୍ରୀ.ପୂ.୫୨୪ରେ ହୋଇଥିବା ଅନୁମାନ କରାଯାଏ । ସେ ଏକ ବୈଜ୍ଞାନିକ ଭାବଧାରାର ବ୍ୟକ୍ତି ଥିଲେ । ଜଗତର ଉତ୍ପତ୍ତି ସଂପର୍କରେ ସେ ଏକ ସିଦ୍ଧାନ୍ତର ଅବତାରଣା କରିଥିଲେ । ସେ ଏକ ଗ୍ରନ୍ଥ ରଚନା କରିଥିଲେ, କିନ୍ତୁ ସେ ଗ୍ରନ୍ଥଟି ଉପଲବ୍ଧ ନୁହେଁ । ତେବେ ତାଙ୍କ ଗ୍ରନ୍ଥରୁ କିଛି ଉଦ୍ଧୃତି ଅନ୍ୟମାନଙ୍କ ଲେଖାରେ ଦେଖିବାକୁ ମିଳେ ।

ଥେଲିସ୍‌ଙ୍କ ପଦାଙ୍କ ଅନୁସରଣ କରି ବିଶ୍ୱର ମୂଳକାରଣ ଯେ ଭୌତିକ ବସ୍ତୁ ସେ ଏହା ପ୍ରତିପାଦନ କରିଥିଲେ । ଥେଲିସ୍, ଆନେକ୍ସିମେଣ୍ଡର ଓ ଆନେକ୍ସିମେନିସ୍ ଜଗତର ମୂଳ ସତ୍ତା କ'ଣ ଏ ବିଷୟରେ ପ୍ରଶ୍ନ ଉଠାଇଥିଲେ ଓ ସେମାନେ ଭିନ୍ନ ଭିନ୍ନ ଧାରଣାର ଅବତାରଣା କରିଥିବା ଜଣାଯାଏ । ତେବେ ସେମାନଙ୍କ ମଧ୍ୟରେ ସାମଂଜସ୍ୟ ଥିଲା ଯେ ସେହି ମୂଳ ତତ୍ତ୍ୱକୁ ବସ୍ତୁଗତ ସତ୍ତା ବୋଲି ସେମାନେ ସ୍ୱୀକାର କରିଛନ୍ତି । ଥେଲିସ୍ ଏହାକୁ ଜଳ, ଆନେକ୍ସିମେଣ୍ଡର ଏହାକୁ ଅନିର୍ଦ୍ଧାରିତ ଦ୍ରବ୍ୟ ଓ ଆନେକ୍ସିମେନିସ୍ ଏହାକୁ ବାୟୁ ବୋଲି ନେଇଛନ୍ତି । ଆନେକ୍ସିମେନିସଙ୍କ ମତରେ ବାୟୁ ହେଉଛି ବିଶ୍ୱର ପ୍ରଥମ ମୂଳ ତତ୍ତ୍ୱ ଯେଉଁଥିରୁ ଅନ୍ୟ ସବୁ କିଛିର ଉତ୍ପତ୍ତି ହୋଇଛି । ବାୟୁ ଏକ ଦ୍ରବ୍ୟ ଭାବରେ ଅନନ୍ତ ଓ ଗତିଶୀଳ । ଗତିଶୀଳତା ଏହାର ସ୍ୱରୂପ, ଗତି ବ୍ୟତୀତ ଏଥିରେ ପରିବର୍ତ୍ତନ ସମ୍ଭବ ହୋଇପାରନ୍ତା ନାହିଁ । ଜଗତରେ ଯାହା କିଛି ଥିଲା କିମ୍ବା ଅଛି ଏସବୁର ମୂଳ ଉତ୍ସ ବା ତତ୍ତ୍ୱ ହେଉଛି ବାୟୁ । ବାୟୁ ମଧ୍ୟ ସମସ୍ତ ପ୍ରାଣୀଙ୍କ ଜୀବନର ଆଧାର ସ୍ରୋତ ଅଟେ । ବାୟୁ ବ୍ୟତୀତ କୌଣସି ପ୍ରାଣୀଙ୍କର ଜୀବନ ଧାରଣ ସମ୍ଭବ ନୁହେଁ । ଆନେକ୍ସିମେନିସ୍‌ଙ୍କ ମତରେ ବାୟୁ ହେଉଛି ବିଶ୍ୱର ମୂଳ ଦ୍ରବ୍ୟ ଓ ଏହି ତତ୍ତ୍ୱରୁ ସବୁକିଛିର ଉତ୍ପତ୍ତି ସମ୍ଭବ ହୋଇଛି ।

ତେବେ ପ୍ରଶ୍ନ ହେଉଛି– ବାୟୁରୁ ଜଗତର ସୃଷ୍ଟି କିପରି ସମ୍ଭବ ହୋଇଛି ? ଏହି ସୃଷ୍ଟି ପ୍ରକ୍ରିୟାକୁ ବୁଝାଇବାକୁ ଆନେକ୍ସିମେନିସ୍ ଦୁଇଟି ଭାବନାର ଅବତାରଣା କରିଛନ୍ତି ଯଥା ବିରଳୀକରଣ (rarefication) ଓ ଘନୀକରଣ (Condensation) । ପ୍ରତ୍ୟେକ ବସ୍ତୁର ମୂଳ ଉତ୍ସ ଯଦି ସମାନ, ତେବେ ବସ୍ତୁ ବସ୍ତୁ ଭିତରେ ପାର୍ଥକ୍ୟକୁ କିପରି ବ୍ୟାଖ୍ୟା କରିହେବ ? ଟେବୁଲ, ବହି, କଲମ, ସୁନାହାର, ଗଛ, ପାହାଡ ଇତ୍ୟାଦି ବହୁ ବସ୍ତୁ ଆମ ଚତୁଃପାର୍ଶ୍ୱରେ ଆମେ ଦେଖିବାକୁ ପାଉ । ଏହି ବସ୍ତୁମାନଙ୍କର ମୂଳ ଉତ୍ସ ଯଦି ଏକ ଦ୍ରବ୍ୟ ତେବେ ବସ୍ତୁମାନଙ୍କ ଭିତରେ ପରିଲକ୍ଷିତ ହେଉଥିବା ଗୁଣମାନଙ୍କର ପାର୍ଥକ୍ୟକୁ କିପରି ବ୍ୟାଖ୍ୟା କରାଯିବ ? ଏକ ଟେବୁଲର ରଙ୍ଗ, କଠିନତା, ଆକାର ଇତ୍ୟାଦି ଲକ୍ଷଣମାନ ଏକ କଲମଠାରୁ ଭିନ୍ନ । ବିଭିନ୍ନ ବସ୍ତୁର ଗୁଣ, ଲକ୍ଷଣ, ଆକାର, କଠିନତା, ରଙ୍ଗ, ରୂପ ଇତ୍ୟାଦି ପରସ୍ପରଠାରୁ ଭିନ୍ନ । ଯେହେତୁ ବସ୍ତୁମାନଙ୍କ ଭିତରେ ଏହି ଭିନ୍ନତା ଦେଖାଯାଏ, ତେବେ ସେହି ଗୁଣମାନ ମୂଳ ଦ୍ରବ୍ୟରେ ରହିଛି ବୋଲି କୁହାଯିବ କି ? ଯଦି ମୂଳ ଦ୍ରବ୍ୟରେ ଏହିପରି ନାନା ଗୁଣ ବିଦ୍ୟମାନ ଥିବ, ତେବେ ତାହା ତ ବିଭିନ୍ନ ଗୁଣ ମାନଙ୍କର ଏକ ସମଷ୍ଟିଗତ ବସ୍ତୁ ହେବ, ତାହାର ମୌଳିକତା କିପରି ରହିପାରିବ ? ଯଦି ଗ୍ରହଣ କରାଯିବ ଯେ ଆଦି ସତ୍ତା ବା ମୂଳ ଦ୍ରବ୍ୟରେ ଏହି ଗୁଣମାନ ନାହିଁ, ତେବେ ପ୍ରଶ୍ନ ହେବ ମୂଳ ଦ୍ରବ୍ୟରୁ ଉତ୍ପନ୍ନ ବସ୍ତୁମାନଙ୍କ ମଧ୍ୟରେ ଏହି ଗୁଣମାନ କିପରି ଉଦ୍‌ଭବ ହୋଇଛି ? ମୂଳ ଦ୍ରବ୍ୟରେ ଯାହା ନାହିଁ ତାହା ସେଥିରୁ ଉତ୍ପନ୍ନ ବସ୍ତୁରେ କିପରି ପ୍ରକାଶିତ ହେଉଛି ? ଏହି ସମସ୍ୟାକୁ ବ୍ୟାଖ୍ୟା କରିବାକୁ ଆନେକ୍ସିମେନିସ୍ ଦୁଇଟି ଭାବନାର ଅବତାରଣା କରିଛନ୍ତି ଯଥା ବିରଳୀକରଣ ଓ ଘନୀକରଣ । ଏହି ଭାବନାର ପଶ୍ଚାତରେ ପରିମାଣ ଓ ଗୁଣ ମଧ୍ୟରେ ପାର୍ଥକ୍ୟ କରାଯାଇ ଗୁଣକୁ ପରିମାଣ ଉପରେ ପ୍ରତିଷ୍ଠା କରାଯାଇଛି । ଅର୍ଥାତ୍ ବସ୍ତୁ ମାନଙ୍କର ଗୁଣକୁ ସେମାନଙ୍କର ପରିମାଣ ଆଧାରରେ ବ୍ୟାଖ୍ୟା କରିବାକୁ ପ୍ରୟାସ ହୋଇଛି ।

ବିରଳୀକରଣ ପ୍ରକ୍ରିୟା ମାଧ୍ୟମରେ ବାୟୁ ଅତ୍ୟଧିକ ଉତ୍ତପ୍ତ ହୋଇଥାଏ ଓ ଅଗ୍ନିର ରୂପ ନେଇଥାଏ । ବାୟୁ ଅଗ୍ନିର ରୂପେ ନେବାପରେ ଏହା ଉର୍ଦ୍ଧ୍ୱଗାମୀ ହୁଏ । ଏହା ଉର୍ଦ୍ଧ୍ୱଗାମୀ ହେବାର ପରିଣାମ ସ୍ୱରୂପ ଏଥିରୁ ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର ଇତ୍ୟାଦି ମହାକାଶୀୟ ପିଣ୍ଡ ସୃଷ୍ଟି ହୋଇଥାଏ । ବିରଳୀକରଣ ପ୍ରକ୍ରିୟାର ବିପରୀତ ପ୍ରକ୍ରିୟା ହେଉଛି ଘନୀକରଣ । ଘନୀକରଣ ପ୍ରକ୍ରିୟାରେ ବାୟୁ ଶୀତଳ ହୋଇ ଏଥିରୁ ଜଳ, ପୃଥିବୀ, ପଥର ଇତ୍ୟାଦି ରୂପ ଧାରଣ କରିଥାଏ । ଆନେକ୍ସିମେନିସ୍ ତାଙ୍କର ସୃଷ୍ଟି ପ୍ରକ୍ରିୟାକୁ ବ୍ୟାଖ୍ୟା କରିବାକୁ ଏହି ଦୁଇ ପ୍ରକ୍ରିୟା ଯଥା ବିରଳୀକରଣ ଓ ଘନୀକରଣର ସୂତ୍ରପାତ କରିଛନ୍ତି ।

ଆନେକ୍ସିମେନିସ୍ କେବଳ ମାତ୍ର ଗୋଟିଏ ସଂସାରର ଅସ୍ତିତ୍ୱରେ ବିଶ୍ୱାସ କରୁନଥିଲେ, ବରଂ ବହୁବିଧ ସଂସାରର ଅସ୍ତିତ୍ୱରେ ବିଶ୍ୱାସ ରଖିଥିଲେ । ସଂସାରମାନଙ୍କର ନିରନ୍ତର ସୃଜନ ଓ ବିକାଶ ଏକ ଅବାରିତ ଧାରା । ସୃଷ୍ଟି ଓ ବିନାଶ ଏକ ଶାଶ୍ୱତ ଧାରା ଯାହାର ପରିସମାପ୍ତି ନାହିଁ । ତେବେ ଏହି ସଂସାରମାନ ଗୋଟିଏ ପରେ ଗୋଟିଏ ବିକଶିତ ହୋଇ ବିଲୁପ୍ତ ହେଉଛି କିମ୍ବା ସେସବୁ ଏକକାଳୀନ ପ୍ରକ୍ରିୟାରେ ହେଉଛି ଏହା ନେଇ ଦାର୍ଶନିକମାନଙ୍କ ମଧ୍ୟରେ ମତପାର୍ଥକ୍ୟ ରହିଛି । ଏହା କ୍ରମିକ ଧାରାରେ ଓ ଯୁଗପତ୍ ଅର୍ଥାତ୍ ଏକକାଳୀନ ପ୍ରକ୍ରିୟାରେ

ହେବା ମଧ୍ୟ କେତେକ ମତପ୍ରକାଶ କରିଥାନ୍ତି । ଆନେକ୍ସିମେନିସ୍‌ଙ୍କର ଏହି ବିଚାର ଆନେକ୍ସିମେଣ୍ଡରଙ୍କ ଭାବଧାରାଦ୍ୱାରା ପ୍ରଭାବିତ ହୋଇଥିବା ଅନୁମାନ କରାଯାଏ ।

ଥେଲିସ୍ ଯେପରି ଜଳକୁ ଜଗତର ମୂଳ ସତ୍ତା ଭାବରେ ଗ୍ରହଣ କରିଥିଲେ, ଆନେକ୍ସିମେନିସ୍ ସେହିପରି ଅନ୍ୟ ଏକ ଭୌତିକ ବସ୍ତୁ ବାୟୁକୁ ଜଗତର ମୂଳ ତତ୍ତ୍ୱ ଭାବରେ ନେଇ ସୃଷ୍ଟି ପ୍ରକ୍ରିୟାକୁ ବ୍ୟାଖ୍ୟା କରିବାକୁ ପ୍ରୟାସ କରିଥିଲେ । ଆନେକ୍ସିମେଣ୍ଡର ଯେପରି ଏକ ଅମୂର୍ତ୍ତୀୟ ଧାରାରେ ବିଶ୍ୱକୁ ବ୍ୟାଖ୍ୟା କରିବାକୁ ଉଦ୍ୟମ କରିଥିଲେ ଆନେକ୍ସିମେନିସ୍ ତାହା ନକରି ପଶ୍ଚାତ୍‌ଗତି କରିଥିବା ମନେହୁଏ । ତେବେ ଏହି ତିନି ଆଓନୀୟ ଦାର୍ଶନିକ ଜଗତର ବ୍ୟାଖ୍ୟାନ କ୍ଷେତ୍ରରେ କେବଳ ପ୍ରାକୃତିକ ସତ୍ତାର ପରିକଳ୍ପନା କରିଛନ୍ତି, କୌଣସି ଅତିପ୍ରାକୃତିକ ତତ୍ତ୍ୱର ଅବତାରଣା କରିନାହାନ୍ତି । ଆନେକ୍ସିମେନିସ୍ ଏକ ସରଳ, ଅବିଭକ୍ତ ଏବଂ ଅମାପ ତତ୍ତ୍ୱ ବାୟୁ ସାହାଯ୍ୟରେ ବିଶ୍ୱର ବ୍ୟାଖ୍ୟା କରିବା ଦ୍ୱାରା ସୃଷ୍ଟି ସମ୍ବନ୍ଧରେ ମାନବୀୟ ଜିଜ୍ଞାସାକୁ କୌତୂହଳୀ କରାଇଛନ୍ତି । ତାଙ୍କର ବ୍ୟାଖ୍ୟା ମାଧ୍ୟମରେ ଏକ ବୈଜ୍ଞାନିକ ମନୋଭାବର ମଧ୍ୟ ସୂଚନା ଦେଖିବାକୁ ମିଳେ । ବିବିଧତା ଭରା ବିଶ୍ୱ ଓ ଏହି ଜଟିଳ ପ୍ରକୃତିର ଉତ୍ପତ୍ତି କିପରି ହୋଇଛି ତାହା ନେଇ ଜିଜ୍ଞାସା ସୃଷ୍ଟି ହେବା ମାନବୀୟ ଅନୁସନ୍ଧିତ୍ସା ଓ ବୌଦ୍ଧିକ କୌତୂହଳତାର ସୂଚନା ପ୍ରଦାନକରେ । ଏତଦ୍‌ବ୍ୟତୀତ ତାଙ୍କର ଦୁଇ ସିଦ୍ଧାନ୍ତ ବିରଳୀକରଣ ଓ ଘନୀକରଣ ବିଚାର କ୍ଷେତ୍ରରେ ଏକ ବୌଦ୍ଧିକ ନୂତନତ୍ୱର ଆଭାସ ମଧ୍ୟ ମିଳେ । ଏହି ଦାର୍ଶନିକମାନେ ଦାର୍ଶନିକ ଚିନ୍ତନ କ୍ଷେତ୍ରରେ ଯେଉଁ ଭିତ୍ତି ପକାଇଥିଲେ ତାହା ପରବର୍ତ୍ତୀ ସମୟରେ ଦାର୍ଶନିକ ଓ ବୈଜ୍ଞାନିକ ଅନୁଶୀଳନ କ୍ଷେତ୍ରକୁ ଯଥେଷ୍ଟ ପ୍ରେରଣା ଯୋଗାଇଥିଲା । ମୋଟ ଉପରେ କହିଲେ ଦାର୍ଶନିକ ଚିନ୍ତନର ଏହି ଆଦ୍ୟ ପର୍ବରେ ଆଓନିଆର ଏହି ତିନି ଦାର୍ଶନିକ ଯେଉଁ ବୌଦ୍ଧିକ ଭାବଧାରାର ସୂତ୍ରପାତ କରିଥିଲେ ତାହା ଗ୍ରୀକ୍ ସଭ୍ୟତାରେ ଦାର୍ଶନିକ ଜିଜ୍ଞାସାକୁ ବହୁ ସମ୍ଭାବନାମୟ କରିବା ଏକ ଐତିହାସିକ ଉପଲବ୍ଧି ।

## ତୃତୀୟ ପରିଚ୍ଛେଦ

### ଇଲିୟାର ଦାର୍ଶନିକ

ଇଲିୟା ସହରରେ ଯେଉଁ ଦାର୍ଶନିକମାନଙ୍କର ଆବିର୍ଭାବ ହୋଇଥିଲା ସେମାନେ ବି ଗ୍ରୀକ୍ ଦର୍ଶନକୁ ସେମାନଙ୍କର ବିଚାରଦ୍ୱାରା ଋଦ୍ଧିମନ୍ତ କରିଛନ୍ତି । ଏମାନଙ୍କ ଦାର୍ଶନିକ ଭାବଧାରାକୁ 'ଇଲୀୟ ସଂପ୍ରଦାୟ' କୁହାଯାଏ । ଏହି ଇଲୀୟ ଦାର୍ଶନିକ ଧାରାର ପ୍ରଥମ ଚିନ୍ତକ ଥିଲେ ଜେନୋଫେନିସ୍ । ତେବେ ଇଲୀୟ ଦାର୍ଶନିକ ପରଂପରାର ଦୁଇ ପ୍ରବୀଣ ଦାର୍ଶନିକ ହେଲେ ପାର୍ମେନିଡୀସ୍ ଓ ଜେନୋ । ପାର୍ମେନିଡୀସ୍ ଓ ଜେନୋଙ୍କଠାରୁ ଦାର୍ଶନିକ ଚିନ୍ତନ ଏକ ନିର୍ଦ୍ଦିଷ୍ଟ ତର୍କଶୀଳ ଭିତ୍ତି ନେଇଥିବା ମନେହୁଏ । ଦାର୍ଶନିକ ବିଚାରଧାରା ଏକ ବିବର୍ତ୍ତନ ମଧ୍ୟ ଦେଇ ବିକଶିତ ହୋଇଥିବା ଏକ ଐତିହାସିକ ସତ୍ୟ । ଚିନ୍ତାଧାରାର କ୍ରମବିକାଶର ଚିତ୍ର ଦାର୍ଶନିକ ଭାବଧାରାର ବିକାଶରୁ ହିଁ ଦେଖାଯାଏ । ଦାର୍ଶନିକ ଚିନ୍ତନର କ୍ରମବିକାଶ ଭିତରେ ମାନବୀୟ ବୌଦ୍ଧିକ ଅନୁଶୀଳନର ଚିତ୍ର ଦେଖିବାକୁ ମିଳେ । ଗ୍ରୀକ୍ ଦର୍ଶନଧାରାରେ ଯେଉଁ ପ୍ରମୁଖ ଭାବନାମାନ ଚିନ୍ତାରାଜ୍ୟରେ ଆଲୋଡନ ସୃଷ୍ଟି କରିଛି ତାର ଅଙ୍କୁରୋଦ୍‌ଗମ ଇଲୀୟ ଦାର୍ଶନିକମାନଙ୍କ ଅବଦାନରେ ଅନୁଭୂତ ହୁଏ । ସୁତରାଂ ଇଲୀୟ ଭୂଖଣ୍ଡର ତିନି ପ୍ରବୀଣ ଚିନ୍ତକଙ୍କୁ ଆମେ ଏହି ପରିଚ୍ଛେଦରେ ଆଲୋଚନା କରିବା ।

### ୩.୧ ଜେନୋଫେନିସ୍ (Xenophanes)

ଜେନୋଫେନିସ୍‌ଙ୍କ ଜୀବନ ବୃତ୍ତାନ୍ତ ବିଷୟରେ ବିଶେଷ ତଥ୍ୟ ଉପଲବ୍ଧ ନାହିଁ । ତେବେ ଯେତିକି ତଥ୍ୟ ମିଳିଛି ସେଥିରୁ ଅନୁମାନ କରାଯାଏ ଯେ ତାଙ୍କର ଜନ୍ମ ଖ୍ରୀ.ପୂ. ୫୭୬ ରେ ହୋଇଥିଲା । ତାଙ୍କର ଜନ୍ମ ଆଓନିଆସ୍ଥିତ କୋଲୋଫୋନଠାରେ ହୋଇଥିବା କୁହାଯାଏ । ସେ ଥିଲେ ଜଣେ ସନ୍ଥ, କବି ଓ ଭ୍ରମଣକାରୀ । ଗ୍ରାମକୁ ଗ୍ରାମ ବୁଲି ସେ ସଂଗୀତ ପରିବେଷଣ କରୁଥିଲେ । ସେ ଦୀର୍ଘ ଜୀବନ ବଞ୍ଚିଥିବା ଜଣାଯାଏ । ବିଭିନ୍ନ ଉତ୍ସବ ମାନଙ୍କରେ ଓ ଭୋଜି ସମୟରେ ସେ ସଂଗୀତ ଗାଉଥିଲେ । ଏପରିକି ବୟାନବେ ବର୍ଷ ବେଳେ ମଧ୍ୟ ଗ୍ରୀସ୍‌ର ବିଭିନ୍ନ ସ୍ଥାନକୁ ଯାଉଥିବାର କେତେକ ସୂଚନା ରହିଛି । ତାଙ୍କର ଶେଷ ଜୀବନ ଇଲିୟାରେ କଟିଥିବା ଅନୁମାନ କରାଯାଏ । ସେ ଆନେକ୍ସିମେଣ୍ଡରଙ୍କର ଶିଷ୍ୟ ଥିବାର ଜନଶ୍ରୁତି ରହିଛି । ପୁନଶ୍ଚ ତାଙ୍କ କବିତାରେ ସେ ଏନେକ୍ସିମେଣ୍ଡରଙ୍କ ସୃଷ୍ଟିତତ୍ତ୍ୱର ବର୍ଣ୍ଣନା କରିଥିବାର ଚିତ୍ର ମିଳେ । ପୁନଶ୍ଚ ସେ କବି ଓ ବ୍ୟଙ୍ଗକାର ଥିବା ଜଣାଯାଏ । ଜଣେ ନୀତିବାଦୀ, ସମାଜ ସଂସ୍କାରକ, ବିଶିଷ୍ଟ କବି ଓ ଦାର୍ଶନିକ ଭାବେ ମଧ୍ୟ ସେ ଗ୍ରୀସ୍‌ର ବିଭିନ୍ନ ଭାଗରେ ପରିଚିତ ଥିବା କୁହାଯାଏ । ରାଜ୍ୟରେ ସୁଶାସନ, ଜ୍ଞାନର ଆଦର, ନୀତିପୂର୍ଣ୍ଣ ଜୀବନ କ୍ଷେତ୍ରରେ ଶ୍ରଦ୍ଧା ପାଇଁ ସେ ତାଙ୍କ କବିତାରେ ବାର୍ତ୍ତା ଦେବାକୁ ପ୍ରୟାସ କରୁଥିଲେ । ଏକ ବିଦ୍ୱାନ ଓ ବିନୀତ ବ୍ୟକ୍ତି ଥିବା ତାଙ୍କର ଶ୍ରେଷ୍ଠ ପରିଚୟ ଥିଲା ।

ଦର୍ଶନ ଅପେକ୍ଷା ଧର୍ମ କ୍ଷେତ୍ରକୁ ତାଙ୍କର ଅବଦାନ ଅଧିକ ସ୍ୱୀକୃତ । ଧର୍ମ ଓ ଦର୍ଶନ ମଧ୍ୟରେ ପାର୍ଥକ୍ୟ କରି ପ୍ରତ୍ୟେକର ସ୍ୱତନ୍ତ୍ର ସ୍ଥିତି ଦର୍ଶାଇବାରେ ସେ ପ୍ରଥମ ପ୍ରୟାସ କରିଥିଲେ । ତତ୍କାଳୀନ ଗ୍ରୀକ୍ ସମାଜରେ ବହୁଈଶ୍ୱରବାଦର ପରଂପରା ରହିଥିଲା । ପ୍ରାଚୀନ ଧର୍ମବିଶ୍ୱାସରେ ବିଭିନ୍ନ ଦେବୀ ଦେବତାର ପରିକଳ୍ପନା ସହ ସେହି ଦେବୀ ଦେବତାଙ୍କୁ ମାନବୀୟ ରୂପରେ ଆରାଧନା କରାଯାଉଥିଲା । ପ୍ରତ୍ୟେକ ଦେବୀ ଓ ଦେବତାଙ୍କର ଜନ୍ମବୃତ୍ତାନ୍ତ ସଂପର୍କରେ କେତେ କେତେ ଲୋକବିଶ୍ୱାସମାନ ରହିଥିଲା । ହୋମର ଓ ତାଙ୍କ ପରେ କେତେକ କବି ପୌରାଣିକ କାହାଣୀମାନଙ୍କ ମାଧ୍ୟମରେ ବିଭିନ୍ନ ଦେବ ଦେବୀଙ୍କର ଚିତ୍ର ବର୍ଣ୍ଣନା କରିଥିଲେ । ବହୁଦେବବାଦ, ଅର୍ଥହୀନ ପରଂପରା, କର୍ମକାଣ୍ଡ ସମାଜକୁ ଯେ କଳୁଷିତ କରିବାର ମୁଖ୍ୟ କାରଣ ଏହା ଜେନୋଫେନିସ୍‌ଙ୍କର ବିଚାର ଥିଲା । ଏହା ସହିତ ଦେବୀ ଦେବତାଙ୍କ ଚରିତ୍ର ଭିତରେ ମିଥ୍ୟାଚାର, ବ୍ୟଭିଚାର, ବିଶ୍ୱାସଘାତକତା ଇତ୍ୟାଦିର ବର୍ଣ୍ଣନା ସାମାଜିକ ଅବକ୍ଷୟର ଆଧାର ଥିଲା । ଏହି ସବୁ କାଳ୍ପନିକ କାହାଣୀ, ଅନ୍ଧବିଶ୍ୱାସ ଓ ଅହେତୁକ ବିଚାର ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରିଥିଲେ । ସୁତରାଂ ତାଙ୍କ ସମୟରେ ସେ ଥିଲେ ଜଣେ ବିପ୍ଳବୀ ସଂସ୍କାରବାଦୀ ବ୍ୟକ୍ତିତ୍ୱ ।

ଜେନୋଫେନିସ୍ ଏକେଶ୍ୱରବାଦୀ ଥିଲେ । ସେ ଯେହେତୁ ବିଭିନ୍ନ ସ୍ଥାନ ପରିଭ୍ରମଣ କରିଥିଲେ, ବିଭିନ୍ନ ସ୍ଥାନରେ ଲୋକଙ୍କର ଦେବଦେବୀର ବିଶ୍ୱାସ କିପରି ପୃଥକ୍ ଥିଲା ତାହା ମଧ୍ୟ ସୂଚାଇଛନ୍ତି । ଏସବୁ ଯେ କେବଳ ମାନବିକ କଳ୍ପନା ଓ ବିଶ୍ୱାସ ମାତ୍ର ତାହା ସେ କବିତା ମାଧ୍ୟମରେ ଦର୍ଶାଇଛନ୍ତି । ମନୁଷ୍ୟର ବୁଦ୍ଧି ଓ ସ୍ୱରୂପ ସହ ଈଶ୍ୱରଙ୍କୁ ତୁଳନା କରାଯାଇ ପାରିବ ନାହିଁ । ଈଶ୍ୱର ଏକ ଏବଂ ସର୍ବଶକ୍ତିମାନ । ସେ ହେଉଛନ୍ତି ଜଗତର ନିୟନ୍ତା ଯେ ସବୁ କିଛିକୁ ନିଜ ମନରୁ ଶାସନ ଓ ନିୟନ୍ତ୍ରଣ କରିପାରନ୍ତି । ତେବେ ଜଣେ ସେନାପତି ସୈନିକମାନଙ୍କ ବାହାରେ ରହି ସୈନ୍ୟମାନଙ୍କୁ ପରିଚାଳନା କଲାପରି ଈଶ୍ୱର ଜଗତକୁ ସେପରି ପରିଚାଳନା କରନ୍ତି ନାହିଁ । ଈଶ୍ୱର ଜଗତର ବହିର୍ବର୍ତ୍ତୀ ନୁହନ୍ତି । ପରନ୍ତୁ ସେ ଜଗତର ଅନ୍ତର୍ବର୍ତ୍ତୀ । ଅର୍ଥାତ୍ ଈଶ୍ୱରଙ୍କୁ ଜଗତ ସହିତ ସମାନ କରାଯାଏ । ଦାର୍ଶନିକ ପରିଭାଷାରେ ଜେନୋଫେନିସ୍ ଥିଲେ ସର୍ବେଶ୍ୱରବାଦୀ (pantheist) ଓ ତାଙ୍କ ଦର୍ଶନକୁ ସର୍ବେଶ୍ୱରବାଦ କୁହାଯାଇ ପାରିବ । ଜଗତ ଓ ଈଶ୍ୱର ଅଭିନ୍ନ । ସେହି ଈଶ୍ୱର ଅନ୍ତର୍ଯ୍ୟାମୀ, ନିର୍ବିକାର, ଅବିଭକ୍ତ, ଅପରିବର୍ତ୍ତିତ ଓ ଉଦ୍ଦେଶ୍ୟରହିତ । ଜେନୋଫେନିସ୍‌ଙ୍କୁ ଏକେଶ୍ୱରବାଦୀ କହିବା ପରିବର୍ତ୍ତେ ସର୍ବେଶ୍ୱରବାଦୀ କହିବା ଅଧିକ ପ୍ରାସଙ୍ଗିକ ମନେହୁଏ । ଯଦିବି ତାଙ୍କୁ ଏକେଶ୍ୱରବାଦୀ ଭାବେ ଗ୍ରହଣ କରାଯିବ, ତାଙ୍କ ଈଶ୍ୱର ପ୍ରତୀତି ସହିତ ଜଗତ ସମାହିତ ହୋଇ ରହିଛି । ମୋଟ ଉପରେ ସେ ବହୁଦେବବାଦକୁ ପ୍ରତ୍ୟାଖ୍ୟାନ କରି ଏକେଶ୍ୱରବାଦ ବିଚାର ମଧ୍ୟରେ ସର୍ବେଶ୍ୱରବାଦ ଅବତାରଣା କରିଛନ୍ତି ।

ଜେନୋଫେନିସ୍‌ଙ୍କର ଅନ୍ୟ କେତେକ ମତ ସଂରକ୍ଷିତ ରହିଛି । ସେ ବିଭିନ୍ନ ଜୀବାଶ୍ମମାନଙ୍କୁ ନାନା ସ୍ଥାନରେ ନିରୀକ୍ଷଣ କରିଛନ୍ତି । ସେ କେତେକ ସାମୁଦ୍ରିକ ଜୀବଙ୍କର ଖୋଳପା ସମୁଦ୍ର ତଟରେ ତଥା ବିଭିନ୍ନ ସ୍ଥାନରେ ପଥରମାନଙ୍କରେ କେତେକ ପ୍ରାଣୀଙ୍କର ଜୀବାଶ୍ମକୁ ଲକ୍ଷ୍ୟ କରିଛନ୍ତି । ଏହି ପର୍ଯ୍ୟବେକ୍ଷଣରୁ ସେ ଭାବିଛନ୍ତି ଯେ ପୃଥିବୀ ସମୁଦ୍ରରୁ ଉଦ୍ଭବ ହୋଇଛି ଓ ଶେଷରେ ଏହାର ଅନେକ ଭାଗ ସମୁଦ୍ର ଭିତରେ ବିଲୁପ୍ତ ହେବ । ଏପରି

ହେଲେ ମାନବଜାତି ଧ୍ୱଂସ ପାଇବ । ଧ୍ୱଂସପରେ ପୁଣି ସମୁଦ୍ର ଗର୍ଭରୁ ପୃଥିବୀ ବିକଶିତ ହେବ ଓ ମାନବଜାତିର କ୍ରମବିକାଶ ଘଟିବ । ପୁନଶ୍ଚ ତାଙ୍କର ବିଶ୍ୱାସ ଥିଲା ଯେ ଜଳୀୟ ବାଷ୍ପର ଜ୍ୱଳନରୁ ସୂର୍ଯ୍ୟ, ତାରକାମାନଙ୍କର ଉତ୍ପତ୍ତି ହୋଇଛି । ସୂର୍ଯ୍ୟ ଯେ ପୃଥିବୀ ଚତୁଃପାର୍ଶ୍ୱରେ ଘୂରୁଛି ସେ ଏଥିରେ ବିଶ୍ୱାସ କରୁନଥିଲେ । ସୂର୍ଯ୍ୟ ସରଳରେଖାରେ ଯା'ନ୍ତି ଓ ସଂଧ୍ୟାରେ ନଭମଣ୍ଡଳରେ ଅଦୃଶ୍ୟ ହୋଇଯାନ୍ତି । ପରଦିନ ପ୍ରଭାତରେ ସେହି ଏକା ସୂର୍ଯ୍ୟଙ୍କର ଉଦୟ ହୁଏ ନାହିଁ । ବରଂ ପ୍ରତ୍ୟେକ ଦିନ ସାଗରର ବାଷ୍ପରୁ ଏକ ନୂତନ ସୂର୍ଯ୍ୟଙ୍କର ଆବିର୍ଭାବ ହୁଏ । ତାଙ୍କ ସମସାମୟିକ ସମାଜରେ ବିଶ୍ୱାସ ଥିଲା ଯେ ସୂର୍ଯ୍ୟ ଓ ନକ୍ଷତ୍ରମାନ ଦୈବୀସତ୍ତା । ସେ ଏହି ବିଶ୍ୱାସକୁ ପରିହାର କରି ଏହି ଭାବନା ସୃଷ୍ଟି କରିଥିଲେ ଯେ ସେ ସବୁ କ୍ଷଣସ୍ଥାୟୀ । ଏକ ଦୈବୀସତ୍ତା ଚିରସ୍ଥାୟୀ ବୋଲି ଯେଉଁ ଲୋକବିଶ୍ୱାସ ଥିଲା ସେ ତାକୁ ବିରୋଧ କରି ସୂର୍ଯ୍ୟ ଓ ନକ୍ଷତ୍ରମାନଙ୍କୁ ପ୍ରାକୃତିକ ବସ୍ତୁ ବୋଲି ଭାବିଥିଲେ ଓ ଏହି ଦୃଷ୍ଟିରୁ ସେସବୁ ଯେ ସ୍ଥାୟୀ ନୁହଁ ଏହି ବିଚାର ବ୍ୟକ୍ତ କରିଥିଲେ ।

ଜେନୋଫେନିସ୍ ମୁଖ୍ୟତଃ ଥିଲେ ଜଣେ ଧାର୍ମିକ ସଂସ୍କାରକ । ବିଶେଷକରି ନିଜ ସମସାମୟିକ ସମାଜର ପ୍ରଚଳିତ ଅନେକ ଅପବିଶ୍ୱାସର ପରିବର୍ତ୍ତନ ପାଇଁ ସେ ପ୍ରୟାସ କରିଥିଲେ । ମାନବାକାର ଦେବବାଦ କିମ୍ବା ବହୁଦେବବାଦର ସମାଲୋଚକ ଥିଲେ । ପୌତ୍ତଳିକତା ଓ ବଳିପ୍ରଥା ପରି କର୍ମକାଣ୍ଡକୁ ସେ ବିରୋଧ କରୁଥିଲେ । କବିତା ଗାନକରି ସେ ଲୋକମାନଙ୍କ ମଧ୍ୟରେ ସମାଜ ସଂସ୍କାରର ବାର୍ତ୍ତା ପ୍ରସାର କରିବା ପାଇଁ ପ୍ରୟାସୀ ଥିଲେ । ତେବେ ନୀତି, ନୈତିକତାର ସେ ବଡ ପ୍ରବକ୍ତା ଥିଲେ । ତାଙ୍କର ଦାର୍ଶନିକ ଅବଦାନ ନେଇ ସେ ଗ୍ରୀକ୍ ଦର୍ଶନରେ ଯେତେ ଚର୍ଚ୍ଚିତ ହୁଅନ୍ତି ନାହିଁ ଜଣେ ସଂସ୍କାରକ ଓ କବିଭାବରେ ଅଧିକ ଚର୍ଚ୍ଚାର ପରିସରକୁ ଆସିଥାନ୍ତି ।

### ୩.୨ ପାର୍ମେନିଡୀସ୍ (Parmenides)

ପାର୍ମେନିଡୀସ୍‌ଙ୍କର ଜନ୍ମ ଇଲିୟା ସହରରେ । ତାଙ୍କ ଜନ୍ମ ଓ ମୃତ୍ୟୁ ବିଷୟରେ ସଠିକ୍ ତଥ୍ୟ ଜଣାନଥିଲେ ମଧ୍ୟ ତାଙ୍କର ଜନ୍ମ ଖ୍ରୀ.ପୂ.୫୧୪ ବା ୫୧୫ ରେ ହୋଇଥିବା ଐତିହାସିକମାନେ ସ୍ଥିର କରିଛନ୍ତି, ତାଙ୍କ ମୃତ୍ୟୁ କେବେ ହେଲା ଏବେବି ରହସ୍ୟାବୃତ୍ତ ହୋଇ ରହିଛି । ଗ୍ରୀକ୍ ଦର୍ଶନରେ ପାର୍ମେନିଡୀସ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ଦର୍ଶନରେ ତତ୍ତ୍ୱମୀମାଂସା ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନେଇଥିବା ଏକ ସାଧାରଣ ଉପଲବ୍ଧି । ପାର୍ମେନିଡୀସ୍ ଏକ ତତ୍ତ୍ୱମୀମାଂସାର ଆଧାର ଉପରେ ତାଙ୍କ ଦର୍ଶନର ମୂଳଭିତ୍ତି ପକାଇଥିବା ମନେହୁଏ । ତାଙ୍କର ପ୍ରଜ୍ଞା ଓ ଚାରିତ୍ରିକ ମହାନତା ପାଇଁ ଇତିହାସରେ ସେ ଅମର ସ୍ଥାନର ଅଧିକାରୀ ହୋଇଛନ୍ତି । ତାଙ୍କ ବିଷୟରେ କୁହାଯାଏ ଯେ ସେ ଜଣେ ଦାର୍ଶନିକ ଥିବା ସହ ଜଣେ ରାଜନୈତିକ ବ୍ୟକ୍ତିତ୍ୱ ମଧ୍ୟ ଥିଲେ । ଇଲିୟା ସହରର ସୁଶାସନ ପାଇଁ ସେ ଧ୍ୟାନ ଦେଇଥିଲେ ଓ ଏକ ସମ୍ବିଧାନ ମଧ୍ୟ ପ୍ରସ୍ତୁତ କରିଥିଲେ । ପ୍ରତ୍ୟେକ ନାଗରିକ ସହରର ଉନ୍ନତି ପାଇଁ ନିଷ୍ଠାବାନ ରହିବାକୁ ବର୍ଷକୁ ଥରେ ଶପଥ ନେବାକୁ ସମ୍ବିଧାନରେ ବ୍ୟବସ୍ଥା କରିଥିଲେ । ଗ୍ରୀସ୍‌ର ଦୁଇ ବିଶିଷ୍ଟ ଦାର୍ଶନିକ ପ୍ଲେଟୋ ଓ ଆରିଷ୍ଟୋଟଲ ପାର୍ମେନିଡୀସ୍‌ଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିଥିବା ଜଣାଯାଏ । ପ୍ଲେଟୋ ତାଙ୍କର ଏକ ଡାଏଲଗରେ ପାର୍ମେନିଡୀସଙ୍କ ବିଷୟରେ ଉଲ୍ଲେଖ କରି ତାଙ୍କର ଗୁରୁ ସକ୍ରେଟିସ୍‌ଙ୍କୁ ପାର୍ମେନିଡୀସ୍‌ଙ୍କର ଶିଷ୍ୟ

ଭାବେ ଚିତ୍ରଣ କରିଛନ୍ତି । ପାର୍ମେନିଡୀସ୍‌ଙ୍କ ଚରିତ୍ର, ସାଧୁତା ଓ ପ୍ରଜ୍ଞା ସକ୍ରେଟ୍ରିସ୍‌ଙ୍କୁ ପ୍ରଭାବିତ କରିଥିବା ଦର୍ଶାଇଛନ୍ତି । ସେହିପରି ଆରିଷ୍ଟୋଟଲ ଇଲିୟ ଦର୍ଶନଧାରାର ସମାଲୋଚକ ଥିଲେ ମଧ୍ୟ ପାର୍ମେନିଡୀସ୍‌ଙ୍କ ଏକେଶ୍ୱରବାଦକୁ ସମର୍ଥନ କରି ତାଙ୍କୁ ପ୍ରଶଂସା କରିଛନ୍ତି ।

ପାର୍ମେନିଡୀସ୍ "ଦାର୍ଶନିକ କବିତା" ଶିରୋନାମାରେ ଏକ ସୁଦୀର୍ଘ କାବ୍ୟ ଲେଖିଥିବା ଇତିହାସରୁ ଜଣାଯାଏ । ଏଥିରେ ପ୍ରଥମେ ଭ୍ରାନ୍ତ ଓ ତ୍ରୁଟିପୂର୍ଣ୍ଣ ବିଶ୍ୱାସମାନଙ୍କୁ ପରିହାର କରିବାକୁ ନିର୍ଦ୍ଦେଶ ଦିଆଯାଇଛି ଓ ପରବର୍ତ୍ତୀ ଭାଗରେ ସତ୍ୟ ଦର୍ଶନର ସ୍ୱରୂପ ବିଷୟରେ ବିଚାର ବ୍ୟକ୍ତହୋଇଛି । ଏହି ପରିପ୍ରେକ୍ଷୀରେ ସେ ଇନ୍ଦ୍ରିୟ ଜନିତ ଜ୍ଞାନ ପରିବର୍ତ୍ତେ ତର୍କ ସଂଗତ ବୁଦ୍ଧିର ଜ୍ଞାନକୁ ପ୍ରାଧାନ୍ୟ ଦେଇଛନ୍ତି । ସତ୍ୟାସତ୍ୟ ଜ୍ଞାନ ନିରୂପଣ କ୍ଷେତ୍ରରେ ବୁଦ୍ଧିର ପ୍ରାଧାନ୍ୟକୁ ସ୍ୱୀକାର କରିଛନ୍ତି । ସେହିପରି ସେ ସତ୍ (Being) ଓ ଅସତ୍ (Non-being) ମଧ୍ୟରେ ପାର୍ଥକ୍ୟ କରିଛନ୍ତି । ସତ୍‌ର ସ୍ୱରୂପ ଓ ସ୍ଥିତି ନେଇ ସେ ଉପଯୁକ୍ତ ଯୁକ୍ତିର ଉପାସ୍ଥାପନ କରିଛନ୍ତି ଓ ଅସତ୍‌କୁ ପରିହାର କରିଛନ୍ତି । ଏସବୁ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ଦାର୍ଶନିକ ପ୍ରସଙ୍ଗ ଉପରେ ପାର୍ମେନିଡୀସ୍ ପ୍ରଥମେ ଗମ୍ଭୀର ପ୍ରଶ୍ନମାନଙ୍କର ଅବତାରଣା କରିଥିବା ଇତିହାସରୁ ଜଣାଯାଏ ।

ପାର୍ମେନିଡୀସ୍ ଦର୍ଶନରେ ପ୍ରଥମେ ତର୍କସଂଗତ ଭାବରେ ତାଙ୍କର ବିଚାର ଉପସ୍ଥାପନ କରିବାକୁ ଉଦ୍ୟମ କରିଛନ୍ତି । ତାଙ୍କର ଯୁକ୍ତି କେତେ ଯଥାର୍ଥ, ତାହା ଏକ ଭିନ୍ନ ପ୍ରଶ୍ନ । ତେବେ ଯୁକ୍ତିଶୀଳ ଆଧାରରେ ଦାର୍ଶନିକ ସିଦ୍ଧାନ୍ତର ଅବତାରଣା କରିବାର ବିଚାର କ୍ଷେତ୍ରରେ ସେ ପଥପ୍ରଦର୍ଶକ ଥିବା ମନେହୁଏ । ଦର୍ଶନଶାସ୍ତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ହେଉଛି ଏକ ସିଦ୍ଧାନ୍ତକୁ ତର୍କ ସଂଗତ ଭାବରେ ବ୍ୟକ୍ତ କରିବା । ହୁଏତ ପରବର୍ତ୍ତୀ ସୋପାନରେ ସେହି ଯୁକ୍ତିର ଅସାରତା ଜଣା ପଡିପାରେ କିମ୍ବା ଏକ ଭିନ୍ନ ଯୌକ୍ତିକ ଆଧାରରେ ଏକ ପୃଥକ୍ ସିଦ୍ଧାନ୍ତର ଅବତାରଣା କରାଯାଇପାରେ । ବିଶେଷକରି ତତ୍ତ୍ୱମୀମାଂସା ପରିସରରେ ନାନା ଯୁକ୍ତି, ପ୍ରତିଯୁକ୍ତିର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଦାର୍ଶନିକମାନେ ଯେହେତୁ ନାନା ଅମୂର୍ତ୍ତ ପ୍ରସଙ୍ଗ ଉପରେ ଚର୍ଚ୍ଚା କରନ୍ତି ସେହି ଦୃଷ୍ଟିରୁ ସେମାନେ ନାନା ଯୁକ୍ତିର ଆଶ୍ରୟ ନେଇଥାନ୍ତି । ବୈଧ ଯୁକ୍ତି ଆଧାରରେ ପ୍ରତିଷ୍ଠିତ ଏକ ସିଦ୍ଧାନ୍ତ ଗ୍ରହଣଯୋଗ୍ୟ ହେବା ବେଳେ ତ୍ରୁଟିପୂର୍ଣ୍ଣ ଯୁକ୍ତିଦ୍ୱାରା ସ୍ଥାପିତ ସିଦ୍ଧାନ୍ତ ଗୃହୀତ ହୋଇନଥାଏ । ଏହି ଧାରା ଦର୍ଶନରେ କିନ୍ତୁ ବ୍ୟକ୍ତ ହୋଇ ରହିବା ଇତିହାସରେ ଦେଖାଯାଏ । ଏହି ପୃଷ୍ଠଭୂମିରେ ପାର୍ମେନିଡୀସ୍ କେତେକ ସିଦ୍ଧାନ୍ତ ନିର୍ମାଣ କରିବାରେ ଯୁକ୍ତିର ଆଶ୍ରୟ ନେଇଥିବା ପରିଲକ୍ଷିତ ହୁଏ ।

ପାର୍ମେନିଡୀସ୍ ଏହା ଅନୁଭବରେ ଦେଖିଛନ୍ତି ଯେ ପୃଥିବୀ ପରିବର୍ତ୍ତନଶୀଳ । ବିଭିନ୍ନ ବସ୍ତୁ ନିରନ୍ତର ଭାବେ ପରିବର୍ତ୍ତିତ ହୋଇଚାଲିଛି । କେତେ କେତେ ଜିନିଷର ଉତ୍ପତ୍ତି ହୁଏ, ବୃଦ୍ଧି ହୁଏ ଓ ପୁଣି ବିଲୟ ହୁଏ । କୌଣସି କିଛି ଅପରିବର୍ତ୍ତିତ ଓ ସ୍ଥାୟୀ ହୋଇ ରହେ ନାହିଁ । ଆଜି ଯାହା ଅଛି, କାଲି ତାହା ସେହି ସ୍ଥିତିରେ ନଥିବ । ଜଗତରେ ସବୁକିଛି ପରିବର୍ତ୍ତନଶୀଳ । ସବୁ କିଛି ଯେହେତୁ ବଦଳି ଯାଉଛି ବା ପରିବର୍ତ୍ତିତ ହେଉଛି ତେଣୁ କୌଣସି ବିଷୟରେ ଜ୍ଞାନ ସ୍ଥାୟୀ ହୋଇପାରିବ ନାହିଁ । ଆଜି ଏକ ବସ୍ତୁ ସଂପର୍କରେ ଯାହା ଜଣାଯାଇଛି, ପରବର୍ତ୍ତୀ ସମୟରେ ସେହି

ଜ୍ଞାନ ଯଥାର୍ଥ ହେବ ନାହିଁ, କାରଣ ଏକ ବସ୍ତୁ ସର୍ବଦା ଏକ ସ୍ଥିତିରେ ରହେ ନାହିଁ । ଏହି ପୃଷ୍ଠଭୂମିରେ ପାର୍ମେନିଡୀସ୍ ପ୍ରଶ୍ନ ଉଠାଇଲେ   ପରିବର୍ତ୍ତନଶୀଳ ସଂସାରରେ କ'ଣ ଅପରିବର୍ତ୍ତିତ ? ଯାହା ଅପରିବର୍ତ୍ତିତ ତାହା ସ୍ଥାୟୀ ଓ ଶାଶ୍ୱତ । ଯାହା ପରିବର୍ତ୍ତନଶୀଳ ତାହା ଅସ୍ଥାୟୀ ଓ ତାହା କେବେ ଚିରନ୍ତନ ହୋଇପାରିବ ନାହିଁ । ଯାହା ଅପରିବର୍ତ୍ତିତ ଅର୍ଥାତ୍ ଯାହା କ୍ଷେତ୍ରରେ ପରିବର୍ତ୍ତନ ହୁଏ ନାହିଁ ତାହା ହିଁ ସ୍ଥାୟୀ ଓ ତାହା ହିଁ ଚିରନ୍ତନ । ଏହି ପୃଷ୍ଠଭୂମିରେ ସେ ସତ୍ ବା ବିଙ୍ଗ୍ ଓ ଅସତ୍ ବା ନନ୍-ବିଙ୍ଗ୍ ମଧ୍ୟରେ ପାର୍ଥକ୍ୟ କରିଛନ୍ତି । ସତ୍ ଓ ଅସତ୍ ଭିତରେ ବିରୋଧାଭାସ ରହିଛି । ଯାହା ଅସତ୍ ତାହା ଅବାସ୍ତବ ଓ ଅନିତ୍ୟ । ଯାହା ସତ୍ ତାହା ବାସ୍ତବ ଓ ନିତ୍ୟ । ଅସତ୍‌କୁ ସେ ସଂଭବନ ବା ସଂଭୂତ (becoming) ଭାବେ ଗ୍ରହଣ କରିଛନ୍ତି । ଥେଲିସ୍ ଯେପରି ଜଳକୁ, ଆନେକ୍ସିମେନସ୍ ବାୟୁକୁ ଜଗତର ମୂଳ ତତ୍ତ୍ୱ ଭାବରେ ଗ୍ରହଣ କରିଛନ୍ତି, ପାର୍ମେନିଡୀସ୍ ସେପରି ସତ୍‌କୁ ମୂଳ ତତ୍ତ୍ୱ ବା ମୌଳିକ ସତ୍ତା ଭାବରେ ନେଇଛନ୍ତି । ଯାହା ସତ୍ ତାହା ଅସତ୍ ବା ସଂଭୂତ ସହିତ ସମ୍ବନ୍ଧିତ ନୁହେଁ । ଏହା ସଂଭବନଠାରୁ ବହିର୍ଭୂତ । ସତ୍‌ର ଆରମ୍ଭ ନାହିଁ ବା ପରିସମାପ୍ତି ନାହିଁ, ଏହାର ଉଦୟ ନାହିଁ କି ବିଲୟ ନାହିଁ । ସତ୍‌ର ଯଦି ଆରମ୍ଭ ଅଛି ବୋଲି ଧରାଯିବ, ତେବେ ତାହାର ଆରମ୍ଭ କେଉଁଥିରୁ ହେବ ସତ୍‌ରୁ ନା ଅସତ୍‌ରୁ ? ଯଦି ସତ୍‌ର ସତ୍‌ରୁ ଉଦ୍ଭବ ହୁଏ, ତେବେ ସତ୍ ତ ପୂର୍ବରୁ ଅଛି, ସୁତରାଂ ଏହାର ଆରମ୍ଭ କିପରି ହେବ ? ଅସତ୍‌ରୁ ସତ୍ ସମ୍ଭବ ନୁହେଁ କାରଣ ଶୂନ୍ୟରୁ କୌଣସି ବାସ୍ତବ ସ୍ଥିତିର ଉତ୍ପତ୍ତି ସମ୍ଭବ ହୋଇପାରିବ ନାହିଁ । ଯାହା ସତ୍, ତାହାର ଅର୍ଥ ନୁହେଁ ଯେ ଏହା ଥିଲା, ଅଛି ଓ ରହିବ । ସତ୍ ପାଇଁ ଅତୀତ, ବର୍ତ୍ତମାନ ବା ଭବିଷ୍ୟତ ଅର୍ଥାତ୍ କାଳର ଧାରଣା ନିରର୍ଥକ । ସତ୍ ହେଉଛି କାଳାତୀତ ଓ ଶାଶ୍ୱତ । ଏହା ଅବିଭକ୍ତ ଓ ଅବିଭାଜ୍ୟ । ବିଭାଜନ, ପରିଣାମ, ପରିବର୍ତ୍ତନ, ବିକାର ଅସତ୍‌ର ଲକ୍ଷଣ, ଏସବୁ ସତ୍‌ର ନୁହେଁ । ଯାହା ସତ୍ ତାହା ସ୍ୱପ୍ରତିଷ୍ଠ ଓ ସ୍ୱସ୍ଥିତ । ଏହା ସ୍ୱୟଂଭୂ, ଯେହେତୁ ଏହା କୌଣସିଥିରୁ ଉଦ୍ଭବ ହୁଏ ନାହିଁ କିମ୍ବା ଏହାର ଅସ୍ତିତ୍ୱ କାହା ଉପରେ ନିର୍ଭର କରେ ନାହିଁ । ଯାହା ସତ୍, ତାହା ସତ୍ ବ୍ୟତୀତ ଅନ୍ୟ କିଛି ବି ନୁହେଁ । ସତ୍ ସତ୍ ବ୍ୟତୀତ ଅନ୍ୟ କିଛିକୁ ରୂପାନ୍ତରିତ ହୁଏ ନାହିଁ । ଏହା ଗୁଣାତୀତ, ସ୍ଥାନାତୀତ ଓ କାଳାତୀତ । ସତ୍‌ର ଏକମାତ୍ର ଲକ୍ଷଣ ହେଉଛି ସତ୍ତା (isness) । ଏହି ପରିପ୍ରେକ୍ଷୀରେ କୁହାଯାଇପାରେ ଯେ ଏହା ପରମ ସତ୍ତା । ସତ୍ ଓ ପରମ ସତ୍ତା ଏଠାରେ ସମାର୍ଥବୋଧକ ମନେ ହୁଏ । ପାର୍ମେନିଡୀସ୍  ସତ୍‌ର ଏହିପରି ବ୍ୟାଖ୍ୟାନ ଦେଇଛନ୍ତି ।

ଦର୍ଶନଶାସ୍ତ୍ର ଇତିହାସରେ ପାର୍ମେନିଡୀସ୍ ଇନ୍ଦ୍ରିୟ ଓ ବୁଦ୍ଧି ଭିତରେ ଏକ ପାର୍ଥକ୍ୟ କରି ଏକ ମୌଳିକ ପ୍ରସଙ୍ଗର ଅବତାରଣା କରିଛନ୍ତି । ଇନ୍ଦ୍ରିୟ ଜନିତ ଅବବୋଧ ଗ୍ରହଣଯୋଗ୍ୟ ନୁହେଁ ଅର୍ଥାତ୍ ଆମେ ଯାହା ଇନ୍ଦ୍ରିୟ ସାହାଯ୍ୟରେ ଜାଣୁ ତାହା ଭ୍ରମାତ୍ମକ, ଅସତ୍ୟ ଓ ମିଥ୍ୟା ହେବା ସମ୍ଭବ । ଇନ୍ଦ୍ରିୟ ଲବ୍ଧ ଜ୍ଞାନକୁ ଯଥାର୍ଥ କୁହାଯାଇ ପାରିବ ନାହିଁ, କରଣ ଏହା ଆଭାସ ମାତ୍ର । ଯାହା ଆଭାସ, ତାହା ଅସତ୍ୟ କାରଣ ତାହା ପରିବର୍ତ୍ତନ ସାପେକ୍ଷ । ଅପରପକ୍ଷରେ ଯେଉଁ ଜ୍ଞାନ ବୁଦ୍ଧିଦ୍ୱାରା (reason) ଉପଲବ୍ଧ ତାହା ହିଁ ସତ୍ୟ ଓ ନିର୍ଭରଶୀଳ । ବୁଦ୍ଧି ଜ୍ଞାନର ଅନ୍ତିମ ନିର୍ଣ୍ଣାୟକ ମାନଦଣ୍ଡ । ଯାହା ସତ୍ ତାହା କେବଳ ବୁଦ୍ଧିଦ୍ୱାରା ଜ୍ଞେୟ, ଇନ୍ଦ୍ରିୟ ଦ୍ୱାରା ନୁହେଁ । ବୁଦ୍ଧି, ତର୍କଶୀଳତା ଓ ଯୁକ୍ତିଦ୍ୱାରା ଯାହା ଜ୍ଞେୟ ବା ଉପଲବ୍ଧ ତାହା ହିଁ ନିର୍ଭରଯୋଗ୍ୟ । ସୁତରାଂ ଇନ୍ଦ୍ରିୟ ମାଧ୍ୟମରେ ଯାହା ଜ୍ଞେୟ ତାହା ଭ୍ରମାତ୍ମକ ଓ ଭ୍ରାନ୍ତିମୂଳକ ହେବା ସମ୍ଭବ । ପରନ୍ତୁ ଯାହା ବୁଦ୍ଧିଦ୍ୱାରା ଜ୍ଞେୟ ତାହା ସତ୍ୟ । ସତ୍ୟଜ୍ଞାନର ଆଧାର ହେଉଛି ବୁଦ୍ଧି ବା ବୋଧି; ଏହା ଇନ୍ଦ୍ରିୟଜନ୍ୟ ହୋଇପାରିବ ନାହିଁ ।

ପାର୍ମେନିଡୀସ୍ ଯେଉଁ କବିତା ମାଧ୍ୟମରେ ତାଙ୍କ ଦାର୍ଶନିକ ସିଦ୍ଧାନ୍ତର ଅବତାରଣ କରିଥିଲେ ତାହାର ପ୍ରଥମ ଭାଗରେ ସତ୍‌ର ସ୍ୱରୂପ ବିଷୟରେ ଆଲୋଚନା କରିଛନ୍ତି । ଦ୍ୱିତୀୟ ଭାଗରେ ମିଥ୍ୟା ବା ଭ୍ରମାତ୍ମକ ଧାରଣା ବିଷୟରେ ସୂଚନା ଦେଇଛନ୍ତି । ତେବେ ପାର୍ମେନିଡୀସ୍ ତାଙ୍କ ସମୟର ପ୍ରଚଳିତ ଭ୍ରମାତ୍ମକ ଦାର୍ଶନିକ ଭାବନା ମାନଙ୍କୁ ସମାଲୋଚନା କରିବାକୁ ପ୍ରୟାସ କରିଛନ୍ତି କିମ୍ବା ସତ୍‌ର ବର୍ଣ୍ଣନା ଆଧାରରେ ଏକ ସୃଷ୍ଟିତତ୍ତ୍ୱର ଅବତାରଣା କରିଛନ୍ତି ତାହା ସ୍ପଷ୍ଟ ନୁହେଁ । ସେ ଯେଉଁ ଇନ୍ଦ୍ରିୟଜନ୍ୟ ଜ୍ଞାନକୁ ଅସତ୍ୟ କହିଛନ୍ତି ସେ କ୍ଷେତ୍ରରେ ସେ ଏଥିରେ କେତେକ ବିରୋଧାଭାସର ସୂଚନା ମାତ୍ର ଦେଇଛନ୍ତି । ଇନ୍ଦ୍ରିୟ-ଆଧାରିତ ପୃଥିବୀରେ ଉଷ୍ମ-ଶୀତଳ, ଆଲୋକ-ଅନ୍ଧକାରର ବର୍ଣ୍ଣନା କରିଛନ୍ତି । ଉଷ୍ମତାରେ ଅଧିକ ଜୀବନର ସୂଚନା ବେଳେ ଶୀତଳତା ଭିତରେ ମୃତ୍ୟୁର ସୂଚନା ରହିଛି । ଷ୍ଟେସ୍ ପାର୍ମେନିଡୀସଙ୍କ ବିଷୟକୁ ଉଲ୍ଲେଖ କରି ଲେଖିଛନ୍ତି-

> the sense-world is more composed of the two opposites, the hot and the cold, or light and darkness. The more hot there is, the more life, the more reality ; the more cold, the more unreality and death" (ପୃଷ୍ଠା -୪୬)

ଏହା ମଧ୍ୟ ହୋଇପାରେ ଯେ ପାର୍ମେନିଡୀସ୍ ତାଙ୍କ କବିତା ମାଧ୍ୟମରେ ଏକ ସୃଷ୍ଟି ସିଦ୍ଧାନ୍ତର ବିଚାର ବ୍ୟକ୍ତ କରିଛନ୍ତି । ପୃଥିବୀ ଆଭାସିକ ମାତ୍ର, ଏହା ସତ୍ ନୁହେଁ । ଦୃଶ୍ୟମାନ ଜଗତ ଏକ ଆଭାସ ମାତ୍ର, ଏହା ବାସ୍ତବ ନୁହେଁ । ଏହିପରି ଏକ ତତ୍ତ୍ୱମୀମାଂସାର ସେ ଅବତାରଣା କରିଥିବା କେତେକ ଦର୍ଶାଇଛନ୍ତି ।

ପାର୍ମେନିଡୀସ୍‌ଙ୍କ ଦର୍ଶନରେ କେତେକ ବିରୋଧାଭାସର ଚିତ୍ର ମଧ୍ୟ ରହିଛି । ସେ ସତ୍‌ର ବର୍ଣ୍ଣନା କରିବା ପରିପ୍ରେକ୍ଷୀରେ ସତ୍ ବିଷୟରେ କହିଛନ୍ତି ଏହା ସ୍ଥାନିକ ବା ଦୈଶିକ (spatial), ପରିମିତ (finite) ଓ ଗୋଲାକାର । ତାଙ୍କ ବର୍ଣ୍ଣନା ଭିତରେ ସତ୍‌କୁ ସିଏ ଦେଶାତୀତ, କାଳାତୀତ ଓ ଗୁଣାତୀତ କହିଛନ୍ତି । ପୁନଶ୍ଚ ପରମ ସତ୍ତାକୁ ସ୍ଥାନିକ, ପରିମିତ ଓ ଗୋଲାକାର ମଧ୍ୟ କହିଛନ୍ତି । ଏହିପରି ବିରୋଧାତ୍ମକ ବର୍ଣ୍ଣନା ଯୋଗୁ ତାଙ୍କ ଦର୍ଶନକୁ ନେଇ ଏକ ବିବାଦୀୟ ବିଚାର ରହିଛି । କେତେକ ଦାର୍ଶନିକ ତାଙ୍କୁ ଜଣେ ବିଶିଷ୍ଟ ଭାବବାଦୀ ଦାର୍ଶନିକ ଭାବେ ଇତିହାସରେ ଚିତ୍ରଣ କରିଛନ୍ତି । ହେଗେଲ, ଏଡ୍‌ମାନ୍ ଓ ସ୍ୱେଗଲର ତାଙ୍କୁ ଭାବବାଦୀ ବୋଲି ବ୍ୟାଖ୍ୟା କରିଛନ୍ତି । ସେ ସତ୍‌ର ସ୍ୱରୂପକୁ କବିତାର ପ୍ରଥମ ଭାଗରେ ଯେପରି ଚିତ୍ରଣ କରିଛନ୍ତି ଓ ଇନ୍ଦ୍ରିୟଜନ୍ୟ ଜ୍ଞାନକୁ ଅସତ୍ୟ ବୋଲି ନେଇଛନ୍ତି ସେଥିରୁ ସେ ଯେ ଭାବବାଦର ପ୍ରବକ୍ତା ଏହା ସ୍ପଷ୍ଟ ମନେହୁଏ । ଅପରପକ୍ଷରେ ପାର୍ମେନିଡୀସଙ୍କ ମତରେ ପରମ ସତ୍ତା ହେଉଛି ସତ୍ ଯାହା ଦୈଶିକ, ପରିମିତ ଓ ଗୋଲାକାର । ଯାହା ଦୈଶିକ, ଯାହା ଆକାରଯୁକ୍ତ ତାହା ବସ୍ତୁ । ସୁତରାଂ ପରମ ସତ୍ତାର ସ୍ୱରୂପ ହେଉଛି ଭୌତିକ । ପରମ ସତ୍ତାକୁ ଭୌତିକ ବୋଲି ବିଚାର ବ୍ୟକ୍ତ କରୁଥିବା ଦାର୍ଶନିକ ଭାବଧାରା ହେଉଛି ବସ୍ତୁବାଦ ବା ଭୌତିକବାଦ । ପ୍ର. ବର୍ଣ୍ଣେଟ୍ ପାର୍ମେନିଡୀସଙ୍କୁ ବସ୍ତୁବାଦର ପ୍ରବକ୍ତା ବୋଲି ଚିତ୍ରଣ କରିଛନ୍ତି । ପୁନଶ୍ଚ ସତ୍ ପରିମିତ ବା ଅସୀମ ଏହା ନେଇ ମଧ୍ୟ ପାର୍ମେନିଡୀସଙ୍କ ମତ କ୍ଷେତ୍ରରେ ଭିନ୍ନ ଭିନ୍ନ ବ୍ୟାଖ୍ୟା ରହିଛି । ତାଙ୍କ ମତରେ ସତ୍ ହେଉଛି ଗୋଲାକାର ସୁତରାଂ ପରିମିତ । ପୁନଶ୍ଚ ପାର୍ମେନିଡୀସଙ୍କ ମତ କ୍ଷେତ୍ରରେ ଭିନ୍ନ ଭିନ୍ନ ବ୍ୟାଖ୍ୟା ରହିଛି । ତାଙ୍କ ମତରେ ସତ୍ ହେଉଛି ଗୋଲାକାର ସୁତରାଂ ପରିମିତ । ପୁନଶ୍ଚ

ପାର୍ମେନିଡୀସ୍‌ଙ୍କ ମତରେ ଶୂନ୍ୟ-ସ୍ଥାନ ହେଉଛି ଅସ୍ତିତ୍ୱହୀନ (Empty space is non-existent) । ଶୂନ୍ୟ ସ୍ଥାନ ହେଉଛି ସ୍ଥିତିଯୁକ୍ତ-ଅସ୍ଥିତ୍ୱହୀନ । ଏହାର ତାତ୍ପର୍ଯ୍ୟ ହେଉଛି ଶୂନ୍ୟସ୍ଥାନ ବା ଦେଶ ଅସତ୍ । ଯାହା ସତ୍ ତାହା "ପରିପୂର୍ଣ୍ଣ", ଏହା ପରିପୂର୍ଣ୍ଣ ହୋଇଥିବାରୁ ଏଥିରେ ଶୂନ୍ୟ ଦେଶ ରହିବା ସମ୍ଭବ ନୁହେଁ । ଯାହା ଗୋଲାକାର, ତାର ବହିର୍ଭାଗ ଶୂନ୍ୟ, ସୁତରାଂ ସତ୍ତା ଯେହେତୁ ଗୋଲାକାର, ତାର ବାହ୍ୟ ଭାଗ ଶୂନ୍ୟତାରେ ପରିପୂର୍ଣ୍ଣ । ଏହା ଯେହେତୁ ସମ୍ଭବ ନୁହେଁ, ତେଣୁ ସତ୍‌କୁ ଗୋଲାକାର ବା ପରିମିତ କହିବା ଯଥାର୍ଥ ନୁହେଁ । ଏଣୁ ପାର୍ମେନିଡୀସ୍‌ଙ୍କ ବିଚାରରେ ସତ୍ ସୀମାତୀତ ଭାବରେ ବିସ୍ତୃତ । ପରିଣାମତଃ ସତ୍ ଯେ ଭୌତିକ ଏହା ପାର୍ମେନିଡୀସ୍ ଓ ଇଲୀୟ ଦାର୍ଶନିକମାନଙ୍କର ବିଚାର ବୋଲି କେତେକ ବ୍ୟାଖ୍ୟାକର ମତପୋଷଣ କରିଥାନ୍ତି । ପାର୍ମେନିଡୀସ୍‌ଙ୍କ ଦର୍ଶନରୁ ଭୌତିକବାଦର ଚିତ୍ର ମିଳୁଥିବା କେତେକ ବ୍ୟାଖ୍ୟାକର ମତପୋଷଣ କରିଥାନ୍ତି ।

ଅପରପକ୍ଷରେ ପାର୍ମେନିଡୀସ୍‌ଙ୍କ ମତ ଭାବବାଦର ଚିତ୍ର ଦିଏ ବୋଲି ଅନ୍ୟ କେତେକ ଭାଷ୍ୟକାର ଦର୍ଶାଇଛନ୍ତି । ସେ ଯେଉଁ ପରମ ସତ୍ତା ବା ତତ୍ତ୍ୱର ପରିକଳ୍ପନା କରିଛନ୍ତି ତାହା କୌଣସି ବସ୍ତୁର ସୂଚନା ଦିଏ ନାହିଁ । ଏହା ଏକ ଅମୂର୍ତ୍ତୀୟ ଭାବନା ଓ ଏକ ପ୍ରତ୍ୟୟ । ଯାହାକୁ ସେ ସତ୍ କହୁଛନ୍ତି ତାହା ସ୍ଥିତି ଥିବା ଏକ ବସ୍ତୁ ନୁହେଁ । ଏହା ସ୍ଥାନ ବା କାଳଦ୍ୱାରା ସର୍ତ୍ତଯୁକ୍ତ ନୁହେଁ । ଏହାକୁ ଇନ୍ଦ୍ରିୟ ସାହାଯ୍ୟରେ ଜାଣିବା ସମ୍ଭବ ନୁହେଁ । ଏହା କେବଳ ବୁଦ୍ଧିଦ୍ୱାରା ଜ୍ଞେୟ । ଏକ ଅମୂର୍ତ୍ତୀୟ ଭାବଧାରା ମାଧ୍ୟମରେ ଆମେ ସତ୍‌ର ପରିକଳ୍ପନା କରିଥାଏ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ଯେକୌଣସି ଏକ ବସ୍ତୁକୁ ଆମେ ତାର ବିଭିନ୍ନ ଗୁଣ ମାଧ୍ୟମରେ ଜାଣିଥାଉ । ମୁଁ ଯେଉଁ ଟେବୁଲ ଉପରେ ଏବେ ଲେଖୁଛି ତାହା ଆୟତାକାର, କଠିନ, ଚାରିଗୋଡ ବିଶିଷ୍ଟ, ବାଦାମୀ ରଙ୍ଗ ଯୁକ୍ତ ଇତ୍ୟାଦି । ଆମେ ଯଦି ଆମ ଭାବନା କ୍ଷେତ୍ରରେ ଏହାର ଗୁଣମାନଙ୍କୁ ଅନ୍ତର୍ହିତ କରିଚାଲିବା ଏହାର ଆକାର, ରଙ୍ଗ, ଆକୃତିମାନଙ୍କୁ ବାଦ୍ ଦେବା ତେବେ ଶେଷରେ କେବଳ ଏହାର ସତ୍ତାଟି ରହିବ । ଯେକୌଣସି ବସ୍ତୁକୁ ତାର ଗୁଣ ମାଧ୍ୟମରେ ଆମେ ଜାଣିଥାଉ । ଗୁଣମାନଙ୍କୁ ବାଦ୍‌ଦେବାଦ୍ୱାରା ଏହାର ଯେଉଁ ଅସ୍ତିତ୍ୱ ରହେ ତାହା କେବଳ ଏହାର ସତ୍ତା (isness) । ଯେତେବେଳେ ଏହା ଆୟତାକାର, ବାଦାମୀ ରଙ୍ଗଯୁକ୍ତ, କଠିନ ଇତ୍ୟାଦି ଗୁଣମାନଙ୍କୁ ଟେବୁଲ ଭାବନାରୁ ଅନ୍ତର୍ହିତ କରିବା, ତାଦ୍ୱାରା କେବଳ ଟେବୁଲର ସତ୍ତା ହିଁ ରହିବ । ପାର୍ମେନିଡୀସ୍ ସତ୍ ଅବିଭାଜିତ, ଅଚଳ, ସ୍ଥାନାତୀତ ଇତ୍ୟାଦି କହିଛନ୍ତି, ଏହାର ତାତ୍ପର୍ଯ୍ୟ ହେଉଛି ଏହାର କେବଳ ସତ୍ତା ହିଁ ରହିଛି । ଏହି ସତ୍ ଏକ ଅମୂର୍ତ୍ତୀୟ ଭାବନା ବା ଏକ ଶୁଦ୍ଧ ପ୍ରତ୍ୟୟ । ଏକ ଅମୂର୍ତ୍ତୀୟ ଭାବନାର ଏକ ବ୍ୟାଖ୍ୟାନ ଦିଆଯାଇପାରେ । ଆମେ କହୁ ଯେ କେତେକ ଫୁଲ ଧଳା, (ଯେପରି ଟଗର, ମଲ୍ଲୀ ଇତ୍ୟାଦି), କେତେକ ପୋଷାକ ଧଳା, କେତେକ ବସ୍ତୁ ଧଳା ଇତ୍ୟାଦି । ଧଳା ରଙ୍ଗର ବିଭିନ୍ନ ବସ୍ତୁ ରହିଛି, କିନ୍ତୁ ଧବଳତ୍ୱ ଏକ ବସ୍ତୁକୁ ସୂଚାଉ ନାହିଁ । ଧବଳତ୍ୱ ଧଳା ବସ୍ତୁମାନଙ୍କ ମଧ୍ୟରେ ରହିଥିବା ସାଧାରଣ ଲକ୍ଷଣ, ତେଣୁ ଏହା ଏକ ପ୍ରତ୍ୟୟ ବା ଅମୂର୍ତ୍ତୀୟ ଭାବନା । ପୃଥିବୀରେ ଧଳା ରଙ୍ଗର ପଦାର୍ଥମାନ ରହିଛି, କିନ୍ତୁ ପଦାର୍ଥମାନଙ୍କୁ ଛାଡି ଧବଳତ୍ୱ କେଉଁଠି ହେଲେ ନାହିଁ । ସୁତରାଂ ଧବଳତ୍ୱ ଏକ ପ୍ରତ୍ୟୟ । ଭିନ୍ନ ଭିନ୍ନ ବସ୍ତୁ ଧଳା ହୋଇପାରନ୍ତି ଯେପରି ବରଫ, ମଲ୍ଲୀଫୁଲ, ବଗ ପକ୍ଷୀ ଇତ୍ୟାଦି, ତେବେ ଧବଳତ୍ୱ ସେମାନଙ୍କ ମଧ୍ୟରେ ସାଧାରଣ ଗୁଣ । ସେହିପରି ପୃଥିବୀରେ ବିଭିନ୍ନ ପ୍ରକାର ବସ୍ତୁ ରହିଥିଲେ ବି ସେମାନଙ୍କ

ମଧ୍ୟରେ ଯେଉଁ ସାଧାରଣ ଲକ୍ଷଣ ରହିଛି ତାହା ହେଉଛି ସେମାନଙ୍କର ସତ୍ତା । ପାର୍ମେନିଡୀସ୍ ଯାହାକୁ ସତ୍ କହୁଛନ୍ତି ତାହା ସକଳ ବସ୍ତୁମାନଙ୍କ ମଧ୍ୟରେ ରହିଥିବା ସାଧାରଣ ଗୁଣ ବା ସତ୍ତା । ବସ୍ତୁମାନେ ବିବିଧ, ତେବେ ସେମାନଙ୍କ ମଧ୍ୟରେ ଯାହା ସାଧାରଣ ତାହା ହେଲା ସତ୍ତା । ସୁତରାଂ ସତ୍ତା ହେଉଛି ଏକ ପ୍ରତ୍ୟୟ, ଏକ ସାର୍ବିକ ଭାବନା ଯାହା ଅମୂର୍ତ୍ତୀୟ । ଯେପରି ଧବଳତ୍ୱର ଭାବନା ଧଳାରଙ୍ଗର ବସ୍ତୁମାନଙ୍କୁ ଦେଖି ଅବବୋଧ କରାଯାଏ, ଠିକ୍ ସେହିପରି ସତ୍‌ର ଭାବନା ଇନ୍ଦ୍ରିୟଜନ୍ୟ ଅନୁଭୂତି ଆଧାରରେ କରାଯାଏ । ପାର୍ମେନିଡୀସ୍ ପରମ ସତ୍ତାକୁ ଏକ ଅମୂର୍ତ୍ତୀୟ ଭାବନା ଭାବେ ଗ୍ରହଣ କରିଛନ୍ତି ଯାହା ଏକ ପ୍ରତ୍ୟୟ । ଭାବବାଦର ମୌଳିକ ବିଚାର ହେଉଛି ପରମ ସତ୍ତା (absolute reality) ଏକ ଶୁଦ୍ଧ ପ୍ରତ୍ୟୟ, ଏକ ଅମୂର୍ତ୍ତୀୟ ଭାବନା । ପୃଥିବୀ ଓ ପୃଥିବୀର ବସ୍ତୁରାଜି ସେହି ପରମ ସତ୍ତାର ଅଭିବ୍ୟକ୍ତି ମାତ୍ର । ବସ୍ତୁଜଗତ ପରିବର୍ତ୍ତନଶୀଳ, କିନ୍ତୁ ପରମ ସତ୍ତା ଅପରିବର୍ତ୍ତନୀୟ । ସୁତରାଂ ପାର୍ମେନିଡୀସ୍ ହେଉଛନ୍ତି ଏକ ଭାବବାଦୀ ଦାର୍ଶନିକ ।

ପାର୍ମେନିଡୀସ୍ ଇନ୍ଦ୍ରିୟ ଓ ବୁଦ୍ଧି ମଧ୍ୟରେ ପାର୍ଥକ୍ୟ ଦେଖାଇଛନ୍ତି । ପରମ ସତ୍ତା ବା ସତ୍ ଆମକୁ ଇନ୍ଦ୍ରିୟଦ୍ୱାରା ଜ୍ଞାତ ହୁଏ ନାହିଁ, ଏହା କେବଳ ବୁଦ୍ଧିଦ୍ୱାରା ଜ୍ଞାତ ହୋଇଥାଏ । ଏହି ଭାବନା ଭାବବାଦର ଏକ ପ୍ରଧାନ ନିଷ୍କର୍ଷ । ବସ୍ତୁବାଦ ଅନୁଯାୟୀ ବସ୍ତୁଜଗତ ଇନ୍ଦ୍ରିୟଦ୍ୱାରା ଜ୍ଞାତ ହୋଇଥାଏ, କିନ୍ତୁ ପାର୍ମେନିଡୀସ୍‌ଙ୍କ ମତରେ ସତ୍ତା ବୁଦ୍ଧିଦ୍ୱାରା ହିଁ ଅବବୋଧ ହୋଇପାରେ । ଆଧୁନିକ ଦର୍ଶନ ଧାରାରେ ଅବଭାସ (appearance) ଓ ସତ୍ତା (reality) ମଧ୍ୟରେ ପାର୍ଥକ୍ୟ କରାଯାଏ । ପାର୍ମେନିଡୀସ୍‌ଙ୍କ ଦର୍ଶନରେ ଅବଭାସ ଓ ସତ୍ତା ପରି ପଦ ବ୍ୟବହୃତ ହୋଇନଥିଲେ ମଧ୍ୟ ତାଙ୍କ ଦର୍ଶନର ଅନ୍ତର୍ନିହିତ ଭାବଧାରା ମଧ୍ୟରେ ଏହି ଭାବନା ସ୍ପଷ୍ଟ ଭାବରେ ପ୍ରତିଫଳିତ ହୋଇଥିବା ଜଣାଯାଏ । ବାହ୍ୟ ଦୃଶ୍ୟମାନ ଜଗତ ଯାହାକୁ ଆମେ ଇନ୍ଦ୍ରିୟ ମାଧ୍ୟମରେ ଜାଣୁ ତାହା ଭ୍ରମାତ୍ମକ, ମାୟା ଓ ଅସତ୍ୟ ବୋଲି ସେ ଦର୍ଶାଇଛନ୍ତି । ଯାହା ସତ୍ ତାହା ଇନ୍ଦ୍ରିୟଦ୍ୱାରା ଗ୍ରାହ୍ୟ ନୁହେଁ । ଭୌତିକବାଦ ଓ ଭାବବାଦ ଦୁଇଟି ପୃଥକ୍ ଦାର୍ଶନିକ ସିଦ୍ଧାନ୍ତ । ଭୌତିକବାଦ ଅନୁଯାୟୀ ଇନ୍ଦ୍ରିୟ ଗ୍ରାହ୍ୟ ଜଗତ ହିଁ ବାସ୍ତବ, ଆମେ ଯାହା ଇନ୍ଦ୍ରିୟ ମାଧ୍ୟମରେ ଜାଣୁ ତାହା ସତ୍ୟ ବା ସତ୍ୟର ନିକଟବର୍ତ୍ତୀ । ଭାବବାଦ ଅନୁଯାୟୀ ଇନ୍ଦ୍ରିୟଗ୍ରାହ୍ୟ ଜଗତ ଏକ ଆଭାସ ମାତ୍ର ଓ ଏହା ଅସତ୍ୟ । ଏହି ସବୁ ପାର୍ଥକ୍ୟ ଆଧାରରେ ପାର୍ମେନିଡୀସ୍‌ଙ୍କୁ ବିଭିନ୍ନ ବ୍ୟାଖ୍ୟାକାର ଭାବବାଦୀ ଦାର୍ଶନିକ ବୋଲି ଦର୍ଶାଇଛନ୍ତି ।

ବସ୍ତୁତଃ ପାର୍ମେନିଡୀସଙ୍କୁ ବିଭିନ୍ନ ବ୍ୟାଖ୍ୟାକାର ମାନେ ଭିନ୍ନ ଭିନ୍ନ ଭାବରେ ଉପସ୍ଥାପନ କରିଛନ୍ତି । କେତେକ ତାଙ୍କୁ ବସ୍ତୁବାଦୀ ବା ଭୌତିକବାଦୀ ବୋଲି କହିବା ବେଳେ ଅନ୍ୟମାନେ ତାଙ୍କୁ ଭାବବାଦୀ ବା ପ୍ରତ୍ୟୟବାଦୀ ବୋଲି ଚିତ୍ରଣ କରିଛନ୍ତି । ତେବେ ପାର୍ମେନିଡୀସ୍‌ଙ୍କ ଦର୍ଶନ ସେ ସମୟରେ କବିତା ମାଧ୍ୟମରେ ବ୍ୟକ୍ତ ହୋଇଥିଲା ଓ ତାଙ୍କ ଭାବଧାରାରେ ଉଭୟ ଭୌତିକବାଦ ଓ ଭାବବାଦର ଉପାଦାନ ରହିଛି । ସମ୍ଭବତଃ ପାର୍ମେନିଡୀସ୍ ଭୌତିକବାଦ ଓ ଭାବବାଦ ମଧ୍ୟରେ ରହିଥିବା ବିରୋଧାଭାସ ବିଷୟରେ ଅବଗତ ହୋଇନାହାନ୍ତି । ସୁତରାଂ ତାଙ୍କ ଚିନ୍ତାଧାରାର କେତେକ କ୍ଷେତ୍ରକୁ ପ୍ରାଧାନ୍ୟ ଦେଇ କେତେକ ତାଙ୍କୁ ଭୌତିକବାଦୀ ବୋଲି ଦର୍ଶାଇଛନ୍ତି, ଅନ୍ୟ ବ୍ୟାଖ୍ୟାକାରମାନେ ଅନ୍ୟ କ୍ଷେତ୍ରକୁ ଗୁରୁତ୍ୱ ଦେଇ ତାଙ୍କୁ ଭାବବାଦୀ ବୋଲି ଚିତ୍ରଣ କରିଛନ୍ତି । ତେବେ ଗ୍ରୀକ୍ ଦର୍ଶନ ଉପରେ ପାଣ୍ଡିତ୍ୟପୂର୍ଣ୍ଣ ଗ୍ରନ୍ଥ ଲେଖିଥିବା କେତେକ ଲେଖକ ଏ ଦୁଇଟି ଭାବଧାରା ଅର୍ଥାତ୍ ଭୌତିକବାଦ ଓ ଭାବବାଦର ଜନକ ବୋଲି

ତାଙ୍କୁ ଦର୍ଶାଇଛନ୍ତି । ପାର୍ମେନିଡୀସ୍‌ଙ୍କ ବିଚାରରେ ଉଭୟ ଭୌତିକବାଦ ଓ ଭାବବାଦର ଚିତ୍ର ରହିଛି ଓ ପରବର୍ତ୍ତୀ ଗ୍ରୀକ୍ ଦାର୍ଶନିକମାନେ ଏହି ଦୁଇ ବିଚାରକୁ ପୃଥକ୍ ଭାବରେ ବିକଶିତ କରାଇଛନ୍ତି । ତାହାର ସାମାନ୍ୟ ସୂଚନା ଏଠାରେ ଦିଆଯାଇପାରେ ।

ପାର୍ମେନିଡୀସ୍‌ଙ୍କ ମତରେ ସତ୍ ଅସତ୍‌ରୁ ଉଦ୍‌ଭବ ହୋଇପାରିବ ନାହିଁ । ଯାହା ସତ୍ ତାହାର ମଧ୍ୟ ବିଲୟ ଘଟିବା ସମ୍ଭବ ନୁହେଁ । ସତ୍ ସତ୍ତାଯୁକ୍ତ ଓ ଅସତ୍ ସତ୍ତା ଅନ୍ତର୍ହିତ । ଆମେ ଯେତେବେଳେ ଏହି ଭାବଧାରା ବସ୍ତୁମାନଙ୍କ କ୍ଷେତ୍ରରେ ପ୍ରୟୋଗ କରିଥାଏ, ଏହା ସୂଚାଏ ଯେ ବସ୍ତୁ ଶୂନ୍ୟରୁ ସୃଷ୍ଟି ହୋଇପାରିବ ନାହିଁ କିମ୍ୱା ବସ୍ତୁର ପୂର୍ଣ୍ଣ ବିଲୟ ସମ୍ଭବ ନୁହେଁ । ଆଧୁନିକ ଭାବଧାରାରେ ବସ୍ତୁ ଅବିଧ୍ୱଂସୀ, ଯେହେତୁ ଏହା ଧ୍ୱଂସ ହୋଇପାରିବ ନାହିଁ ବା ଏହାର ଆଦି ନାହିଁ ବା ଧ୍ୱଂସ ନାହିଁ । ବସ୍ତୁର ନିର୍ମାଣ କୌଣସି ଉପାଦାନରୁ ହିଁ ସମ୍ଭବ ଓ ବସ୍ତୁର ବିଲୟ ଏକ ଆକାରରୁ ଅନ୍ୟ ଆକାରକୁ ପରିବର୍ତ୍ତନ ମାତ୍ର । ଅଣୁର ଉତ୍ପତ୍ତି ନାହିଁ ବା ବିଲୟ ନାହିଁ । ଅଣୁର ରୂପ ଓ ଆକୃତିରେ ଯାହା ପରିବର୍ତ୍ତନ ଘଟେ ଯାହାକୁ ଆମେ ବସ୍ତୁଜଗତ କହୁଛୁ । ପାର୍ମେନିଡୀସ୍‌ଙ୍କ ପରବର୍ତ୍ତୀ ଗ୍ରୀକ୍ ଦାର୍ଶନିକ ଏଂପେଡୋକ୍ଲିସ୍ ଓ ଡେମୋକ୍ରିଟସ୍ ବସ୍ତୁବାଦର ପ୍ରସାର କରିଛନ୍ତି । ବସ୍ତୁ ହେଉଛି ଅଣୁମାନଙ୍କର ସମାହାର ବା ସେମାନଙ୍କର ପୃଥକୀକରଣ । ଅଣୁମାନେ ସ୍ୱରୂପରେ ଅବିଧ୍ୱଂସୀ । ବିଶିଷ୍ଟ ଗ୍ରୀକ୍ ଦାର୍ଶନିକ ଡେମୋକ୍ରିଟସ୍ ମଧ୍ୟ ଯେଉଁ ଅଣୁବାଦର ବିଚାର ଦେଇଥିଲେ ତାହା ଭୌତିକବାଦ ଓ ତାହାର ମୂଳ ଭିତ୍ତି ପାର୍ମେନିଡୀସ୍‌ଙ୍କ ଦର୍ଶନରେ ନିହିତ ବୋଲି ଧରାଯାଏ ।

ପାର୍ମେନିଡୀସ୍‌ଙ୍କ ବିଚାରରେ ଥିବା ଭାବବାଦୀ ଦର୍ଶନ ପ୍ଲେଟୋଙ୍କ ସିଦ୍ଧାନ୍ତ ମାଧ୍ୟମରେ ଅଭିବ୍ୟକ୍ତ ହେବା ମନେହୁଏ । ପ୍ଲେଟୋ ପାର୍ମେନିଡୀସ୍‌ଙ୍କ ଭାବଧାରାଦ୍ୱାରା ଗଭୀର ଭାବରେ ପ୍ରଭାବିତ ହୋଇ ଏକ ଭାବବାଦୀ ଦର୍ଶନର ଭିତ୍ତି ପକାଇଥିଲେ । ପ୍ଲେଟୋଙ୍କ ବିଚାରରେ ବସ୍ତୁଜଗତ ପରିବର୍ତ୍ତନଶୀଳ, ତେବେ ପ୍ରତ୍ୟୟଗତ ଜଗତ ହିଁ ବାସ୍ତବ ଓ ଚିରନ୍ତନ । ପ୍ଲେଟୋଙ୍କ ଦର୍ଶନର ବିକାଶ ପର୍ଯ୍ୟନ୍ତ ଭାବବାଦ ବା ପ୍ରତ୍ୟୟବାଦ ସେପରି କିଛି ଦୃଢ଼ ଭିତ୍ତି ଗ୍ରୀକ୍ ଦର୍ଶନରେ ନେଇନଥିଲା । ପ୍ଲେଟୋଙ୍କ ଦର୍ଶନରେ ପ୍ରତ୍ୟୟବାଦ ଏକ ଦାର୍ଶନିକ ସିଦ୍ଧାନ୍ତ ଭାବେ ବିକଶିତ ହୋଇ ଦର୍ଶନ ଇତିହାସରେ ଗମ୍ଭୀର ଚର୍ଚ୍ଚାର ପରିସରକୁ ଆସିଲା । ତେବେ ପ୍ଲେଟୋଙ୍କ ଦର୍ଶନ ଯେପରି ଭାବେ ଭାବବାଦ ବା ପ୍ରତ୍ୟୟବାଦକୁ ପ୍ରାଧାନ୍ୟ ଦେଲା, ତାହାର ଝଲକ ଯେ ପାର୍ମେନିଡୀସ୍‌ଙ୍କ ବିଚାରରେ ଅନ୍ତର୍ନିହିତ ଥିଲା ତାହା ମନେହୁଏ । ଆମେ ପ୍ଲେଟୋଙ୍କ ଦର୍ଶନକୁ ଆଲୋଚନା କଲାବେଳେ ଏହାର ବିସ୍ତୃତ ଦିଗକୁ ବ୍ୟାଖ୍ୟା କରିବା ।

ପାର୍ମେନିଡୀସ୍ ପ୍ରଥମେ ଏହି ବିଚାରର ଅବତାରଣା କରିଥିଲେ ଯେ ସତ୍ ହେଉଛି ପରମ ସତ୍ତା ଓ ସତ୍ ହେଉଛି ଏକ ପ୍ରତ୍ୟୟ । ତେବେ ଏହି ଭାବଧାରାକୁ ସେ ଇନ୍ଦ୍ରିୟ ଲବ୍ଧ ଅନୁଭୂତିରୁ ଏକ ଅ-ଇନ୍ଦ୍ରିୟ ଭିତ୍ତିକ ବୁଦ୍ଧିବାଦ ଆଡକୁ ନେଇଥିଲେ । କେବଳ ବୁଦ୍ଧି ସତ୍‌କୁ ଜାଣିବାର ମାଧ୍ୟମ କହିବା ପଶ୍ଚାତରେ ପ୍ରତ୍ୟୟବାଦର ପରିକଳ୍ପନା ଅନ୍ତର୍ନିହିତ ରହିଥିଲା । ତେବେ ଏହି ଅନ୍ତର୍ନିହିତ ଭାବଧାରା ପ୍ଲେଟୋଙ୍କ ବିଚାରରେ ଏକ ଦୃଢ଼ ଦାର୍ଶନିକ ସିଦ୍ଧାନ୍ତର ରୂପ ନେଲା । ଏଣୁ କହିବାକୁ ଗଲେ ପାର୍ମେନିଡୀସ୍‌ଙ୍କ ଦର୍ଶନ ଭିତରେ ନିହିତ ଥିବା ବିଚାର ଏକ ଦାର୍ଶନିକ ସିଦ୍ଧାନ୍ତ ଭାବେ ପରବର୍ତ୍ତୀ ସ୍ତରରେ ଦର୍ଶନ ଇତିହାସରେ ପ୍ରମୁଖ ଭୂମିକା ନେଲା ।

ପାର୍ମେନିଡୀସ୍ ସତ୍‌କୁ ବୃତ୍ତାକାର ଓ ଦୈଶିକ କହିବା ପଶ୍ଚାତରେ ତାଙ୍କ ଦର୍ଶନର ଏକ ସ୍ପଷ୍ଟ ରୂପ ମିଳେ ନାହିଁ । ବରଂ ତାଙ୍କ ସିଦ୍ଧାନ୍ତର ଯଥାର୍ଥ ସ୍ୱରୂପକୁ ସେ ଅବବୋଧ କରି ନଥିବା ମନେହୁଏ । ତାଙ୍କ ପରେ ପରେ ଆସିଥିବା ଦୁଇ ଗ୍ରୀକ୍ ଦାର୍ଶନିକ ଏଂପିଡୋକ୍ଲେସ୍ ଓ ଡେମୋକ୍ରିଟସ୍ ତାଙ୍କ ସିଦ୍ଧାନ୍ତର ଏହି ଦିଗଟିକୁ ନେଇ ସେମାନଙ୍କର ଦାର୍ଶନିକ ଭାବଧାରାର ବିକାଶ କରାଇଥିଲେ । ତେବେ ଏହା କରିବା କ୍ଷେତ୍ରରେ ସେମାନେ ପାର୍ମେନିଡୀସ୍‌ଙ୍କ ଦର୍ଶନର ତ୍ରୁଟିପୂର୍ଣ୍ଣ ବା ଦୁର୍ବଳ ଦିଗଟିକୁ ଅଧିକ ପ୍ରାଧାନ୍ୟ ଦେଇଛନ୍ତି । ପରନ୍ତୁ ପ୍ଲେଟୋ ପାର୍ମେନିଡୀସ୍‌ଙ୍କ ଦର୍ଶନର ମହତ୍ତର ବା ଗୁରୁତ୍ୱପୂର୍ଣ୍ଣ ଦିଗଟିରୁ ପ୍ରେରଣାନେଇ ଏକ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତ ନିର୍ମାଣ କରିଛନ୍ତି । ବସ୍ତୁତଃ ପାର୍ମେନିଡୀସ୍‌ଙ୍କ ଭାବଧାରା ପୃଥକ୍ ପୃଥକ୍ ଧାରାରେ ତାଙ୍କ ପରବର୍ତ୍ତୀ ଦାର୍ଶନିକମାନଙ୍କୁ ପ୍ରଭାବିତ କରିବା ତାଙ୍କ ଚିନ୍ତନର ମହତ୍ତ୍ୱ ଦର୍ଶାଇଥାଏ । କେତେକ ଦର୍ଶନ-ଐତିହାସିକ ପାର୍ମେନିଡୀସ୍‌ଙ୍କୁ ଭୌତିକବାଦର ଜନକ ବୋଲି ବିଚାର କରିବା ବେଳେ ଅନ୍ୟ କେତେକ ଦର୍ଶନଐତିହାସିକ ତାଙ୍କୁ ପ୍ରତ୍ୟୟବାଦର ଜନକ ବୋଲି ବିଚାର କରିଛନ୍ତି । ଭୌତିକବାଦ ଓ ପ୍ରତ୍ୟୟବାଦ ଯେ ଦୁଇ ଭିନ୍ନ ଦାର୍ଶନିକ ସିଦ୍ଧାନ୍ତ ଏହା ସ୍ୱୀକୃତ । ଦାର୍ଶନିକ ଚିନ୍ତନର ଏହି ପ୍ରାରମ୍ଭିକ ସମୟରେ ସତ୍ ବା ମୌଳିକ ସତ୍ତାର ସ୍ୱରୂପ ବିଷୟରେ ସେ ଯେଉଁ ବିଚାର ବ୍ୟକ୍ତ କରିଥିଲେ ତାହା ଏହିପରି ଦୁଇଟି ପୃଥକ୍ ଧାରାକୁ ଗ୍ରୀକ୍ ଦର୍ଶନର ଇତିହାସରେ ବିକଶିତ କରାଇଥିଲା ।

### ୩.୩. ଜେନୋ (Zeno)

ଇଲିୟାର ତୃତୀୟ ଓ ଶେଷ ଗୌରବାନ୍ୱିତ ଦାର୍ଶନିକ ହେଲେ ଜେନୋ । ତାଙ୍କର ଜନ୍ମ ଇଲିୟାଠାରେ ଖ୍ରୀ.ପୂ. ୪୮୯ ରେ ହୋଇଥିବା ଅନୁମାନ କରାଯାଏ । ତାଙ୍କର ଦାର୍ଶନିକ ବିଚାରକୁ ସେ ଗଦ୍ୟ ମାଧ୍ୟମରେ ବ୍ୟକ୍ତ କରିଥିଲେ । ସେ ପ୍ରାୟ ଚାଳିଶ ବର୍ଷ ବେଳକୁ ପାର୍ମେନିଡୀସ୍‌ଙ୍କ ସଂପର୍କରେ ଆସିବା ଓ ତାଙ୍କ ବିଚାରଦ୍ୱାରା ପ୍ରଭାବିତ ହୋଇଥିବା ଜଣାଯାଏ । ଏପରିକି ସେ ପାର୍ମେନିଡୀସ୍‌ଙ୍କର ଅନୁଗାମୀ ହେବା ଓ ତାଙ୍କ ଦର୍ଶନକୁ ଏକ ତର୍କ ସଂଗତ ଭିତ୍ତି ଦେବାକୁ ପ୍ରୟାସ କରିଥିଲେ । ପାର୍ମେନିଡୀସ୍‌ଙ୍କ ସହ ଖ୍ରୀ.ପୂ. ୪୫୦ ବେଳକୁ ସେ ଏଥେନ୍ସ ଆସିଥିଲେ ଓ ନିଜର ଭାବନାଦ୍ୱାରା କେତେକ ଏଥନୀୟଙ୍କୁ ପ୍ରଭାବିତ କରିଥିବା ଉଲ୍ଲେଖ ରହିଛି । ଯେଉଁମାନଙ୍କର ନାମ ସେ ଉଲ୍ଲେଖ କରିଛନ୍ତି ସେମାନଙ୍କ ମଧ୍ୟରେ ସକ୍ରେଟିସ୍ ବି ରହିଛନ୍ତି ।

ଇଲୀୟ ଦାର୍ଶନିକ ପରଂପରାକୁ ଜେନୋଙ୍କ ଅବଦାନ କିଛିଟା ନକାରାତ୍ମକ ମନେହୁଏ । ସେ ପାର୍ମେନିଡୀସ୍‌ଙ୍କ ଦାର୍ଶନିକ ଭାବଧାରାଦ୍ୱାରା ପ୍ରଭାବିତ ହୋଇଥିଲେ ମଧ୍ୟ, ସେ ସେପରି କିଛି ସକାରାତ୍ମକ ଅବଦାନ ଦେଇନାହାନ୍ତି । ପାର୍ମେନିଡୀସ୍‌ଙ୍କ ଦାର୍ଶନିକ ସିଦ୍ଧାନ୍ତର ମୂଳ ତତ୍ତ୍ୱ ବା ସତ୍ତାକୁ ସେ ସମର୍ଥନ କରିଛନ୍ତି । ଏହି କ୍ଷେତ୍ରରେ ଜେନୋ କେତେକ ନୂତନ ଯୁକ୍ତିର ଅବତାରଣା କରି ପାର୍ମେନିଡୀସ୍‌ଙ୍କର ଦାର୍ଶନିକ ସିଦ୍ଧାନ୍ତକୁ ଭିତ୍ତି ଦେଇଛନ୍ତି । ଏହି ପରିପ୍ରେକ୍ଷୀରେ ସ୍ଥାନ ବା ଦେଶ ଓ କାଳ ବା ସମୟ (space and time) ର ଯେଉଁ ବ୍ୟାଖ୍ୟାନ ଦେଇଛନ୍ତି ତାହା ଦର୍ଶନ ଇତିହାସରେ ଗୁରୁତ୍ୱ ବହନ କରିଆସିଛି ।

ଜ୍ଞାନର ସ୍ୱରୂପ ଓ ସତ୍ତାର ସ୍ଥିତି ସଂପର୍କରେ ଜେନୋ ଆଲୋଚନା କରିବା ସହ ରାଜନୀତି କ୍ଷେତ୍ରରେ ବେଶ୍ ଆଗ୍ରହ ଦେଖାଇଛନ୍ତି । ସେ ତାଙ୍କ ସମସାମୟିକ ସମାଜରେ ଜଣେ ନିର୍ଭିକ ଓ ବିଦ୍ରୋହୀ ରାଜନେତା ଥିବା କୁହାଯାଏ । ଇଲିୟାରେ ସୁଶାସନ ପ୍ରତିଷ୍ଠା ପାଇଁ ତାଙ୍କର ଭୂମିକା ରହିଥିବା ଓ ସେଠାରୁ ଅତ୍ୟାଚାରୀ ଶାସନର ବିଲୋପ ପାଇଁ ସେ ପ୍ରୟାସ କରିଥିବା ଜଣାଯାଏ ।

ଜେନୋ ତାଙ୍କ ପୂର୍ବବର୍ତ୍ତୀ ଦାର୍ଶନିକ ପାର୍ମେନିଡୀସ୍‌ଙ୍କ ଭାବଧାରାଦ୍ୱାରା ପ୍ରଭାବିତ ହୋଇଥିବା ସୁବିଦିତ ଅଟେ । ପାର୍ମେନିଡୀସ୍‌ଙ୍କ ମତରେ ଇନ୍ଦ୍ରିୟ ସାହାଯ୍ୟରେ ଆମେ ଯେଉଁ ଜଗତର ପରିକଳ୍ପନା କରୁ ତାହା କେବଳ ଆଭାସ ମାତ୍ର ଓ ମିଥ୍ୟା । ଆମକୁ ଇନ୍ଦ୍ରିୟ ମାଧ୍ୟମରେ ପ୍ରତିଭାତ ହେଉଥିବା ଜଗତର ଦୁଇଟି ଲକ୍ଷଣ ହେଲା ବିବିଧତା ଓ ପରିବର୍ତ୍ତନ । ପରନ୍ତୁ ସତ୍ତା ବା ତତ୍ତ୍ୱ ସ୍ୱରୂପରେ ଏକ ଓ ଏହା ବିବିଧ ହୋଇନପାରେ । ସେହି ପରମ ସତ୍ତା ଅଚଳ ଓ ଅପରିବର୍ତ୍ତନୀୟ ଅଟେ । ଏହା ଗତିଶୀଳ ନୁହେଁ । ବିବିଧତା ଓ ଗତିଶୀଳତା ଯାହା ଇନ୍ଦ୍ରିୟଜନିତ ଜ୍ଞାନ ମନେହୁଏ, ତାହା ଅସତ୍ୟ ଓ ମିଥ୍ୟା । ପାର୍ମେନିଡୀସ୍‌ଙ୍କର ଏହି ସିଦ୍ଧାନ୍ତକୁ କିଛି ଯୁକ୍ତିଶୀଳ ଆଧାର ଦେବାରେ ଜେନୋ ପ୍ରୟାସ କରିଛନ୍ତି । ଜେନୋ ଯୁକ୍ତିଦ୍ୱାରା ଦର୍ଶାଇଛନ୍ତି ଯେ ବିବିଧତା ଓ ଗତିଶୀଳତା ଯାହା ଇନ୍ଦ୍ରିୟଜନିତ ଜ୍ଞାନ ମନେହୁଏ, ତାହା ଅସତ୍ୟ ଓ ମିଥ୍ୟା । ପାର୍ମେନିଡୀସ୍‌ଙ୍କର ଏହି ସିଦ୍ଧାନ୍ତକୁ କିଛି ଯୁକ୍ତିଶୀଳ ଆଧାର ଦେବାରେ ଜେନୋ ପ୍ରୟାସ କରିଛନ୍ତି । ଜେନୋ ଯୁକ୍ତିଦ୍ୱାରା ଦର୍ଶାଇଛନ୍ତି ଯେ ବିବିଧତା ଓ ଗତିଶୀଳତା ବାସ୍ତବ ହୋଇନପାରେ । ସେମାନଙ୍କର ବାସ୍ତବତାକୁ ସ୍ୱୀକାର କଲେ ସେଥିରୁ ପରସ୍ପରବିରୋଧୀ ସିଦ୍ଧାନ୍ତ ଉତ୍ପନ୍ନ ହେବ । ସୁତରାଂ ଜେନୋ ବିବିଧତା ଓ ଗତିଶୀଳତାକୁ ଖଣ୍ଡନ କରିବାକୁ ପ୍ରୟାସ କରିଛନ୍ତି । କାରଣ ପରସ୍ପରବିରୋଧୀ ସିଦ୍ଧାନ୍ତ ଚିନ୍ତାସ୍ତରରେ ଗୃହୀତ ହେବା ସମ୍ଭବ ନୁହେଁ । ଜେନୋଙ୍କ ଦାର୍ଶନିକ ସିଦ୍ଧାନ୍ତର ଏକ ବଡ ଅବଦାନ ହେଉଛି ଯେ ସେ ପ୍ରଥମ କରି ଦ୍ୱନ୍ଦ୍ୱନ୍ୟାୟ ବା ଡାଇଲେକ୍ଟିକ୍‌ର ଅବତାରଣା କରିଛନ୍ତି । ସାଧାରଣ ପରିଭାଷାରେ ଡାଇଲେକ୍ଟିକ୍‌ର ଅର୍ଥ ହେଉଛି ଆଲୋଚନା ବା କୌଣସି ବିଷୟର ବିବେଚନା । ପରନ୍ତୁ ଦର୍ଶନଶାସ୍ତ୍ରରେ ଡାଇଲେକ୍ଟିକ୍‌ର ଏକ ବୈଷୟିକ ଅର୍ଥ ରହିଛି ଯାହାକୁ 'ଦ୍ୱନ୍ଦ୍ୱନ୍ୟାୟ' କୁହାଯାଏ । ଦ୍ୱନ୍ଦ୍ୱନ୍ୟାୟର ତାତ୍ପର୍ଯ୍ୟ ହେଉଛି ଏକ ଭ୍ରମାତ୍ମକ ଭାବନା ବା ବିଚାର କିପରି ବିରୋଧାତ୍ମକ ସିଦ୍ଧାନ୍ତ ସୃଷ୍ଟି କରିଥାଏ ତାହା ଦର୍ଶାଇ ଏକ ସତ୍ୟ ସିଦ୍ଧାନ୍ତର ଅବତାରଣା କରିବା । ଦର୍ଶନ ଇତିହାସରେ ସକ୍ରେଟିସ୍, ପ୍ଲେଟୋ, କାଣ୍ଟ, ହେଗେଲ ପ୍ରଭୃତି ଦାର୍ଶନିକମାନେ ଦ୍ୱନ୍ଦ୍ୱନ୍ୟାୟ କ୍ଷେତ୍ରରେ ଗମ୍ଭୀର ବିଚାର ବ୍ୟକ୍ତ କରିଛନ୍ତି । ତେବେ ଏହି ଦ୍ୱନ୍ଦ୍ୱନ୍ୟାୟର ଅୟମାରମ୍ଭ ଜେନୋଙ୍କ ଦାର୍ଶନିକ ମୀମାଂସା କ୍ଷେତ୍ରରେ ଦେଖିବାକୁ ମିଳେ । ଅର୍ଥାତ୍ ଦ୍ୱନ୍ଦ୍ୱନ୍ୟାୟର ଅବତାରଣା କରି ଦାର୍ଶନିକ ସିଦ୍ଧାନ୍ତ ପ୍ରତିଷ୍ଠା କରିବା କ୍ଷେତ୍ରରେ ଜେନୋ ପଥପ୍ରଦର୍ଶକ ଥିବା ମନେହୁଏ ।

ପାର୍ମେନିଡୀସ୍‌ଙ୍କ ମୂଳ ତତ୍ତ୍ୱ ବା ସତ୍ତା ଏକ ଓ ସ୍ଥିର । ବିବିଧତା ଓ ଗତିଶୀଳତା ଇନ୍ଦ୍ରିୟଜନ୍ୟ ଅନୁଭୂତି ଯାହା ଆଭାସିକ ଓ ଅସତ୍ୟ । ଜେନୋ ପାର୍ମେନିଡୀସ୍‌ଙ୍କ ଏହି ଭାବଧାରାକୁ ଯୁକ୍ତିନିଷ୍ଠ ଆଧାରଦ୍ୱାରା ପ୍ରତିପାଦନ କରିବାକୁ ପ୍ରୟାସ କରିଛନ୍ତି ଯାହାକୁ ଆମେ ଏଠାରେ ଆଲୋଚନା କରିବା ।

## ବିବିଧତାର ଖଣ୍ଡନ

ଜେନୋଙ୍କ ମତରେ ଯଦି ସତ୍ତାକୁ ବିବିଧ ବୋଲି ଗ୍ରହଣ କରାଯିବ ତେବେ ଏହା ଉଭୟ ସସୀମ (finite) ଓ ଅନନ୍ତ (infinite) ପ୍ରତୀତ ହେବ । ବିବିଧତା ଅନନ୍ତ ରୂପରେ ସସୀମ ହେବ ବା ଅସୀମ ହେବ । ବିବିଧତାକୁ ଗ୍ରହଣ କଲେ ସସୀମ ଅବସ୍ଥାରେ ଏହା ନାନା ଏକକ (unit) ଦ୍ୱାରା ପରିପୁଷ୍ଟ ବୋଲି ସ୍ୱୀକାର କରିବାକୁ ହେବ । ପ୍ରତ୍ୟେକ ଏକକକୁ ଅବିଭାଜ୍ୟ ନେବାକୁ ହେବ । ପ୍ରତ୍ୟେକ ଅବିଭାଜ୍ୟ ଏକକ ବସ୍ତୁ ବିସ୍ତାରହୀନ ହେବ, କାରଣ ଯାହାର ବିସ୍ତାର ରହିବ ତାହା ବିଭାଜ୍ୟ ହେବ । ଯେହେତୁ ଏକକ ବସ୍ତୁ ଅବିଭାଜ୍ୟ ତାହାର ବିସ୍ତାର ରହିବ ନାହିଁ । ଯଦି ବିବିଧତାର ଏକକମାନଙ୍କର ବିସ୍ତାର ରହିବ ନାହିଁ, ତେବେ ବିବିଧତାର ମଧ୍ୟ ବିସ୍ତାର (magnitude) ରହିପାରିବ ନାହିଁ । ବସ୍ତୁତଃ ବିବିଧର ସ୍ୱରୂପ ସୀମାହୀନ ଭାବେ ସମୀମ ହେବ ।

ସେହିପରି ବିବିଧତାର ସ୍ୱରୂପ ସୀମାହୀନ ଭାବରେ ଅସୀମ ବା ବିଶାଳ ହେବ । ଯାହା ବିବିଧ, ତାହା ନାନା ଏକକରେ ବିଭାଜିତ ହୋଇପାରିବ । କାରଣ ବିବିଧତା କ୍ଷେତ୍ରରେ ବିସ୍ତାର ରହିବ ଓ ଯାହାର ବିସ୍ତାର ରହିବ, ତାହା ବିଭାଜ୍ୟ ହେବ । ଯାହା ବିଭାଜ୍ୟ, ତାହା ଅଂଶଯୁକ୍ତ । ଏକ ଅଂଶଯୁକ୍ତ ବସ୍ତୁ ବିଭାଜ୍ୟ, ଯାହାକୁ ଏହା ବିଭାଜିତ, ପ୍ରତ୍ୟେକ ବିଭାଜିତ ଅଂଶ ବିସ୍ତାରଯୁକ୍ତ । ପ୍ରତ୍ୟେକ ବିସ୍ତାରଯୁକ୍ତ ଅଂଶ ପୁନଶ୍ଚ ବିଭାଜ୍ୟ ଓ ଏହି ପ୍ରକ୍ରିୟା ସୀମାହୀନ ଅର୍ଥାତ୍ ଅସୀମ । ଏହାର ତାତ୍ପର୍ଯ୍ୟ ହେବ ଏହା ଅସୀମ ଅଂଶର ସମାହାର ଯାହାର ବିସ୍ତୃତି ମଧ୍ୟ ଅସୀମ । ଏକ କ୍ଷୁଦ୍ରତମ ବସ୍ତୁ ମଧ୍ୟ ବିସ୍ତାରଯୁକ୍ତ ଓ ଏହାର ବିଭାଜନ ବି ସୀମାହୀନ । ସୁତରାଂ ଯାହା ଅସୀମ ଭାବରେ ବିଭାଜିତ, ତାହା ଅସୀମ ଭାବରେ ବିସ୍ତୃତ । ଏଣୁ ବିବିଧତା ସୀମାହୀନ ଭାବରେ ବିଶାଳ ।

ବିବିଧତାକୁ ସ୍ୱୀକାର କଲେ ଏହାକୁ ସୀମିତ ବୋଲି ଗ୍ରହଣ କରାଯାଇପାରିବ, ଅସୀମ ବୋଲି ମଧ୍ୟ ଗ୍ରହଣ କରାଯାଇପାରିବ । ବିବିଧତା ଅନନ୍ତରୂପରେ ସସୀମ ହେବ କିମ୍ବା ଅନନ୍ତ ରୂପରେ ସୀମାହୀନ ହେବ । ବିବିଧତାକୁ ସ୍ୱୀକାର କରିବା ଦ୍ୱାରା ଏହିପରି ପରସ୍ପରବିରୋଧୀ ସିଦ୍ଧାନ୍ତ ନିର୍ଗତ ହେବ । ଏକ ଏକକ ବସ୍ତୁ ଏକ ସମୟରେ ସବୁଠାରୁ କ୍ଷୁଦ୍ରତମ ଅଂଶ ହେବ ବା ବୃହତ୍ତମ ଅଂଶ ହେବ । ଏକ ପରିକଳ୍ପନାରୁ ଯଦି ଦୁଇ ବିପରୀତ ସିଦ୍ଧାନ୍ତ ନିର୍ଗତ ହୁଏ ତେବେ ପରିକଳ୍ପନାଟି ଯେ ନିରର୍ଥକ ଏହା ମନେହୁଏ । କାରଣ ଏକ ପରିକଳ୍ପନାରୁ ଦୁଇଟି ପରସ୍ପରବିରୋଧୀ ନିଷ୍କର୍ଷ ନିର୍ଗତ ହେଉଥିବାରୁ ମୂଳ ଭାବନାଟି ଯେ ଯଥାର୍ଥ ନୁହେଁ ତାହା ସ୍ୱୀକାର କରିବାକୁ ହେବ । ବସ୍ତୁତଃ ବିବିଧତାକୁ ସ୍ୱୀକାର କଲେ ଆମକୁ ଏହିପରି ବିରୋଧାଭାସରେ ଯେ ପହଞ୍ଚିବାକୁ ହେବ ତାହା ଜେନୋ ବିଚାର କରିଛନ୍ତି । ସୁତରାଂ ବିବିଧତା କେବଳ ଏକ ଆଭାସିକ ପରିକଳ୍ପନା, ଏହାର ଅସ୍ତିତ୍ୱ ସତ୍ୟାଧାରିତ ନୁହେଁ ।

ଏହି ଯୁକ୍ତିକୁ ସଂଖ୍ୟା ମାଧ୍ୟମରେ ମଧ୍ୟ ବ୍ୟକ୍ତ କରାଯାଇପାରେ । ଯଦି ବିବିଧତାକୁ ସ୍ୱୀକାର କରାଯିବ, ତେବେ ତାହା ଉଭୟ ସୀମିତ ଓ ଅସୀମିତ (unlimited) ମଧ୍ୟ ହେବ । ବିବିଧତା ପୂର୍ଣ୍ଣ ଜଗତରେ ବିବିଧ ବସ୍ତୁ ଯେତିକି ରହିଛି ତାହାର ପରିମାଣ ସେତିକିରେ ସୀମିତ । ଏହାଠାରୁ ଏହାର ସଂଖ୍ୟା ଅଧିକ ନୁହେଁ କିମ୍ବା କମ୍ ମଧ୍ୟ ନୁହେଁ । ଏହାର ସଂଖ୍ୟା ନିଶ୍ଚିତ ଓ ଏକ ନିଶ୍ଚିତ ସଂଖ୍ୟା ସାଧାରଣତଃ ସୀମିତ । ପୁନଶ୍ଚ ଏହା ଏହି ଦୃଷ୍ଟିରୁ ଅସୀମିତ

ଯେ ଏହାର ବିଭାଜନ ସୀମାହୀନ । ଯାହା ସୀମାହୀନ ଭାବ୍‌ରେ ବିଭାଜ୍ୟ, ତାହାର ସଂଖ୍ୟା ସୀମିତ ହୋଇପାରିବ ନାହିଁ, ତାହାର ସଂଖ୍ୟା ଅସୀମିତ ବା ଅନନ୍ତ ହେବ ।

ମୋଟଉପରେ କହିବାକୁ ଗଲେ ବିବିଧତା କ୍ଷେତ୍ରରେ ଏହି ସବୁ ଅସଂଗତି ବା ବିରୋଧାଭାସ ରହିଛି ବୋଲି ଜେନୋ ବିଚାର କରିଛନ୍ତି ।

**ଗତିଶୀଳତାର ଖଣ୍ଡନ**

ଗତି ବା ମୋସନ ଯେ ସମ୍ଭବ ନୁହେଁ ଏହା ମଧ୍ୟ କେତେକ ଯୁକ୍ତି ମାଧ୍ୟମରେ ଜେନୋ ଦର୍ଶାଇଛନ୍ତି । ଗୋଟିଏ ସ୍ଥାନରୁ ଅନ୍ୟ ଏକ ସ୍ଥାନକୁ ଗତି କରିବା ପାଇଁ ପ୍ରଥମେ ଏହାର ଅଧା ଅଂଶକୁ ଅତିକ୍ରମ କରିବାକୁ ହେବ, ଫଳରେ ଏହାର ଅଧା ଅଂଶ ରହିଯିବ । ସେହି ଅଧା ଅଂଶକୁ ଅତିକ୍ରମ କରିବାକୁ ତାହାର ଅଧା ଅଂଶକୁ ଅତିକ୍ରମ କରିବାକୁ ହେବ ଓ ତାହାର ଅଧା ଅଂଶ ରହିଯିବ । ଯେଉଁ ଅଂଶ ରହିଲା ତାହାକୁ ଅତିକ୍ରମ କରିବା ବେଳେ ତାହାର ଅଧା ଅଂଶ କରିବାକୁ ପଡିବ ଓ ସେଥିର ଅଧା ଅଂଶ ରହିଯିବ । ଆମେ ଯେତେଥର ଯାତ୍ରା ବା ଗତି କରେ, ପ୍ରତ୍ୟେକ ଥରରେ ଅଧା ଅଂଶ ଶେଷରେ ରହିଯାଏ । ସୁତରାଂ ଗୋଟିଏ ବିନ୍ଦୁରୁ ଅନ୍ୟ ବିନ୍ଦୁକୁ ଯାତ୍ରା କରିବା ସମ୍ଭବ ହୋଇ ନପାରେ । ଏଣୁ  ଗତି ସମ୍ଭବ ନୁହେଁ ଓ ଗତିଶୀଳତା ଏକ ଭ୍ରମାତ୍ମକ ଭାବନା । ଏକ ଦ୍ୱିତୀୟ ଯୁକ୍ତିରେ ଜେନୋ ଏକ କଇଁଛ ଓ ହୋମରଙ୍କ ମହାକାବ୍ୟ ଓଡଶୀର ଏକ ଚରିତ୍ର ଏକିଲିସ୍‌ଙ୍କ କଥା କହିଛନ୍ତି । ଏକିଲିସ୍ ଏକ ଯୋଦ୍ଧା ଓ ଜଣେ ବଡ ଧାବକ । ଜେନୋଙ୍କ ମତରେ ଏକ କଚ୍ଛପ ଯଦି ପ୍ରଥମେ ତାର ଯାତ୍ରା ଆରମ୍ଭ କରେ ଓ ତାର କିଛି ସମୟ ପରେ ଏକିଲିସ୍ ଯାତ୍ରା ଆରମ୍ଭ କରନ୍ତି ସେ କେବେହେଲେ କଚ୍ଛପକୁ ଅତିକ୍ରମ କରିପାରିବେ ନାହିଁ । ଯେଉଁ ସ୍ଥାନରୁ କଇଁଛ ତାହାର ଯାତ୍ରା ଆରମ୍ଭ କରିଥିଲା, ଏକିଲିସ୍ ସେହି ବିନ୍ଦୁରେ ପହଞ୍ଚିବା ସମୟକୁ କଚ୍ଛପ ଅନ୍ୟ ବିନ୍ଦୁରେ ଉପନୀତ ହୋଇ ସାରିଥିବ । ଏକିଲିସ୍ ସେହି ବିନ୍ଦୁକୁ ସ୍ପର୍ଶ କଲା ବେଳକୁ କଚ୍ଛପ ଅନ୍ୟ ବିନ୍ଦୁରେ ପହଞ୍ଚିଥିବ । ଏକିଲିସ୍ ସେହି ବିନ୍ଦୁକୁ ସ୍ପର୍ଶ କଲା ବେଳକୁ କଚ୍ଛପ ଅନ୍ୟ ବିନ୍ଦୁରେ ପହଞ୍ଚିଥିବ । ତେଣୁ କଚ୍ଛପ ନିରନ୍ତର ଭାବେ ଆଗରେ ରହିବ ଓ ଏକିଲିସ୍ କଚ୍ଛପକୁ ସ୍ପର୍ଶ କରିପାରିବେ ନାହିଁ ।  କଚ୍ଛପ ଓ ଏକିଲିସ୍‌ଙ୍କ ମଧ୍ୟରେ ରହିଥିବା ବ୍ୟବଧାନ ନିରନ୍ତର ଭାବରେ ରହିବ ଓ ସେହି ବ୍ୟବଧାନର ପରିସମାପ୍ତି ହେବ ନାହିଁ । ଅନ୍ୟ ଏକ ଯୁକ୍ତିରେ ଜେନୋ କହିଛନ୍ତି ଯେ ଏକ ସମୟରେ ଏକ ବସ୍ତୁ ଦୁଇ ସ୍ଥାନରେ ରହିବା ସମ୍ଭବ ନୁହେଁ । ଏକ ତୀରକୁ ଏକ ସ୍ଥାନରୁ ନିକ୍ଷେପ କରାଗଲେ ଏହା ଏକ ସମୟରେ ଏକ ବିନ୍ଦୁରେ ରହିବ, ଦୁଇଟି ବିନ୍ଦୁରେ ରହିପାରିବ ନାହିଁ । ତେବେ ଗୋଟିଏ ବିନ୍ଦୁରେ ଏକ ସମୟରେ ରହିବା ବେଳେ ଏହା ସ୍ଥିର ରହିଥାଏ । ପ୍ରତ୍ୟେକ ମୁହୂର୍ତ୍ତରେ ଏହା ନିର୍ଦ୍ଦିଷ୍ଟ ବିନ୍ଦୁରେ ସ୍ଥିର ରହିବାକୁ ପଡିଥାଏ । ଆରମ୍ଭଠାରୁ ଶେଷ ପର୍ଯ୍ୟନ୍ତ ଏହା ପ୍ରତ୍ୟେକ ବିନ୍ଦୁରେ ସ୍ଥିର ରହୁଥିବାରୁ ଏହାର ଗତିଶୀଳତା ସମ୍ଭବ ନୁହେଁ । ଏହାର ତାତ୍ପର୍ଯ୍ୟ ହେଉଛି ଯେ ଏହାର ଗତି ନାହିଁ ଓ ଗତିଶୀଳତା ସମ୍ଭବ ନୁହେଁ । ଏହିପରି ଯୁକ୍ତିର ଆଶ୍ରୟ ନେଇ ଜେନୋ ଗତିଶୀଳତାକୁ ଅସ୍ୱୀକାର କରିଛନ୍ତି ।

ଏହି ପ୍ରକାର ଯୁକ୍ତିକୁ ଆଧୁନିକ ସମୟରେ ବିପ୍ରତିଷେଧ ବା ବିରୁଦ୍ଧାର୍ଥ (antinomy) ବୋଲି କୁହାଯାଉଛି ।

ଏକ ବିପ୍ରତିଷେଧ ଯୁକ୍ତିରେ ଏକ ନିର୍ଦ୍ଦିଷ୍ଟ ଭାବନା କିମ୍ବା ପରିକଳ୍ପନାରୁ ଦୁଇଟି ବିପରୀତ ନିଷ୍କର୍ଷ ଉତ୍ପନ୍ନ ହୋଇଥାଏ । ଯେତେବେଳେ ଏକ ବିଚାର ବା ଭାବନାରୁ ପୃଥକ୍ ଯୁକ୍ତି ମାଧ୍ୟମରେ ବିପରୀତ ସିଦ୍ଧାନ୍ତ ମାନଙ୍କର ଅବତାରଣା କରାଯାଏ ତାହାକୁ ବିରୁଦ୍ଧାର୍ଥ ବୋଲି ଗ୍ରହଣ କରାଯାଏ । ସେହି କ୍ଷେତ୍ରରେ ପରିକଳ୍ପନାଟି ଭ୍ରମାତ୍ମକ ହୋଇପାରେ କିମ୍ବା ପ୍ରଦତ୍ତ ଯୁକ୍ତି ତ୍ରୁଟିପୂର୍ଣ୍ଣ ମନେ ହୁଏ । ଦର୍ଶନଶାସ୍ତ୍ରରେ ଦ୍ୱନ୍ଦ୍ୱନ୍ୟାୟ କ୍ଷେତ୍ରରେ ଏପରି ଅନେକ ବିପ୍ରତିଷେଧ ଯୁକ୍ତି ଥିବା ଜଣାଯାଏ । ବିଶେଷକରି ପ୍ଲେଟୋ, କାଣ୍ଟ ଓ ହେଗେଲଙ୍କ ଦର୍ଶନରେ ବିରୁଦ୍ଧାର୍ଥର ବ୍ୟାଖ୍ୟାନ ଦେଖିବାକୁ ମିଳେ ।

ବିବିଧତା ଓ ଗତିଶୀଳତାର ଖଣ୍ଡନ ପାଇଁ ଜେନୋ ଯେଉଁ ସବୁ ଯୁକ୍ତିର ଅବତାରଣା କରିଛନ୍ତି ସେସବୁ ବିତଣ୍ଡା ମନେ ହୋଇପାରେ । ତେବେ ସେସବୁ ଯୁକ୍ତି ଏକ ମୂଳ ଯୁକ୍ତିର ରୂପାନ୍ତର ବା ବିବର୍ତ୍ତିତ ରୂପ ମନେହୁଏ । ଏହି ଯୁକ୍ତି ସ୍ଥାନ ବା ଦେଶ (space), କାଳ (time) କିମ୍ବା ଯାହାକୁ ପରିମାଣ ଦୃଷ୍ଟିରୁ ନିର୍ଣ୍ଣୟ କରାଯାଏ ତାହା ପ୍ରତି ପ୍ରୟୋଗ ହୋଇପାରିବ । ଯୁକ୍ତିର ସରଳତା ପାଇଁ ସ୍ଥାନ କ୍ଷେତ୍ରରେ ଏହାର ପ୍ରୟୋଗକୁ ବିଚାର କରାଯାଉ । ଏକ ବୃତ୍ତ ଯେତିକି ସ୍ଥାନକୁ ଆବରଣ କରିଥାଏ ତାହା କେତେକ ଅନ୍ତିମ ଅବିଚ୍ଛିନ୍ନ ଏକକକୁ (ultimate indivisible units) ନେଇ ଗଠିତ କିମ୍ବା ଏହା ଅନନ୍ତ ବିଭାଜନର (divisible ad infinitum) ସୂଚନା ଦିଏ । ଯଦି ଏହା ଅବିଭାଜ୍ୟ ଏକକ ମାନଙ୍କୁ ନେଇ ଗଠିତ, ସେମାନଙ୍କର ବ୍ୟାପକତା ରହିବ । ବ୍ୟାପକତା ରହିବ ଅଥଚ ଅବିଭାଜ୍ୟ ହେବ ଏକ ବିରୋଧାଭାସର ଚିତ୍ର ଦେଇଥାଏ । ଏକ ସ୍ଥାନ ଅବିଭାଜ୍ୟ ଅର୍ଥାତ୍ ଏହା ବିଭାଜ୍ୟ ନୁହେଁ, ପୁନଶ୍ଚ ଏହାର ବ୍ୟାପକତା (magnitude) ରହିଛି ଏକ ବିରୋଧାଭାସ । ଯଦି ଅନ୍ୟ ସମ୍ଭାବନାଟି ଅର୍ଥାତ୍ ଏକ ଅନନ୍ତ ବିଭାଜନକୁ ଏହା ସହିତ ସଂଶ୍ଳିଷ୍ଟ କରାଯିବ, ତେବେ ଅସୀମ ଅଂଶର ସମଷ୍ଟିକୁ ନେଇ ଏକ ସୀମିତ ସ୍ଥାନର ପରିକଳ୍ପନା ଆସିବ । ଅସୀମ ଅଂଶ ମିଶି ଏକ ସସୀମ ସ୍ଥାନ କରିବେ ତାହା ମଧ୍ୟ ଅନ୍ୟ ବିରୋଧାଭାସ ସୃଷ୍ଟି କରିବ । ସୁତରାଂ ଯେଉଁ ଭାବନାକୁ ଆଧାର ଭାବରେ ନେଇ ଜେନୋ ତାଙ୍କ ଯୁକ୍ତିର ଅବତାରଣା କରିଛନ୍ତି ତାହା ଏକ ଦ୍ୱନ୍ଦ୍ୱନ୍ୟାୟ ଭିତରେ ବିରୁଦ୍ଧାର୍ଥର ସିଦ୍ଧାନ୍ତ ସୃଷ୍ଟିକରୁଛି । ଜେନୋଙ୍କ ଯୁକ୍ତିକୁ କେବଳ ବିତଣ୍ଡା କହି କିମ୍ବା ଏକ ବାଳସୁଲଭ ଗୋଲକଧନ୍ଦା କହି ପ୍ରତ୍ୟାଖ୍ୟାନ କରିବା ଯଥାର୍ଥ ନୁହେଁ । ଏକିଲିସ୍ ଓ କଇଁଛର ଗତି ଉଦାହରଣରେ ହେଉ କିମ୍ବା ଚଳମାନ ତୀର କ୍ଷେତ୍ରରେ ହେଉ ଦେଶ ଓ କାଳର ଅବବୋଧ କ୍ଷେତ୍ରରେ କିପରି ବିରୋଧାଭାସ ରହିପାରେ ତାଙ୍କ ଦର୍ଶନରୁ ଏହି ଚିତ୍ର ଆସୁଛି । ପରବର୍ତ୍ତୀ ସମୟର ଦାର୍ଶନିକ ଚର୍ଚ୍ଚାରେ ଦେଶ ଓ କାଳ ପରିପ୍ରେକ୍ଷୀରେ ଏହାର ଉପଯୁକ୍ତ ବ୍ୟାଖ୍ୟା ନେଇ ସଚେତନତା ଆସିଥିବା ମନେହୁଏ ।

ଜେନୋଙ୍କର ଏହି ଯୁକ୍ତିର ଆଧାର ହେଉଛି ଅବିଚ୍ଛିନ୍ନ ବିଭାଜନ ଜନିତ ବିରୁଦ୍ଧାର୍ଥ । ସେ ଯୁକ୍ତି ଦେଇଛନ୍ତି ଯେ ଏକ ତୀର ପ୍ରତ୍ୟେକ ମୁହୂର୍ତ୍ତରେ ଏକ ବିନ୍ଦୁରେ ସ୍ଥିର ରହିଛି । ନିକ୍ଷେପ ହୋଇଥିବା ଏକ ତୀର ଏକ ସମୟରେ ଦୁଇ ବିନ୍ଦୁରେ ରହିପାରିବ ନାହିଁ । ପ୍ରତ୍ୟେକ ମୁହୂର୍ତ୍ତରେ ଏହା ଏକ ବିନ୍ଦୁରେ ସ୍ଥିର ରହୁଥିବାରୁ ଏହାର ଗତି ନାହିଁ । ଏହି ଯୁକ୍ତିର ଆଧାର ଅସୀମ ବା ଅନନ୍ତ ମୁହୂର୍ତ୍ତରେ ବିଭାଜ୍ୟ ଯାହାର କୌଣସି ଅବଧି ନାହିଁ । ସେହି ଅସୀମ

ଅବଧିର ମୁହୂର୍ତ୍ତମାନଙ୍କରେ ତୀରଟି ସ୍ଥିର ରହିଛି ବୋଲି ଜେନୋ ଭାବିଛନ୍ତି । ସମୟ ବା କାଳ ଓ ସ୍ଥାନକୁ ନେଇ ଏହି ଅବବୋଧ କ୍ଷେତ୍ରରେ ଏହି ବିରୁଦ୍ଧାର୍ଥର ଭାବନା ସୃଷ୍ଟି ହେଉଛି । ଏପରିକି ଗଣିତ ଶାସ୍ତ୍ରରେ ଯେତେବେଳେ 'ଅସୀମ'ର ପରିକଳ୍ପନା କରାଯାଉଛି ସେ କ୍ଷେତ୍ରରେ ମଧ୍ୟ ବିରୁଦ୍ଧାର୍ଥର ଚିତ୍ର ଆସୁଛି । ଯେତେବେଳେ ଗଣିତଶାସ୍ତ୍ରର ଜ୍ୟାମିତିରେ କୁହାଯାଏ ଯେ ଦୁଇଟି ସରଳରେଖା କେବଳ ଅସୀମରେ ମିଳିତ ହେବେ ସେତେବେଳେ ଏହିପ୍ରକାର ବିରୋଧାଭାସର ଚିତ୍ର ଆସିଥାଏ । ଅସୀମର ସମଷ୍ଟି ଏକ ସସୀମର ଚିତ୍ର ଦେଇଥାଏ । ଯେପରି ସଂଖ୍ୟାର କ୍ରମରେ $\frac{1}{10}+\frac{1}{100}+\frac{1}{1000}+\frac{1}{10000}+\ldots\ldots$ର ଯୋଗଫଳ $\frac{1}{9}$ ଠାରୁ ଅଧିକ ହୋଇପାରିବ ନାହିଁ । ଏକ ଅସୀମ ଭଗ୍ନାଂଶ ବା ସଂଖ୍ୟାର ଯୋଗଫଳ ସର୍ବଦା ଏକ ସସୀମ ସଂଖ୍ୟା ହୋଇ ରହିବ । ସେହପିରି ଅସୀମମାନଙ୍କର ସମଷ୍ଟି ସସୀମ ହେବାର ଭାବନା ଭିତରେ ବିରୋଧାଭାସ ରହିପାରେ । ଅସୀମ ସ୍ଥାନର ଭାବନା ଭିତରେ ବିରୋଧାଭାସର ଚିତ୍ର ଅନ୍ତର୍ନିହିତ ହୋଇ ରହିଛି । ଏହି ସାଦୃଶ୍ୟକୁ ନେଇ ଜେନୋ ବିବିଧତା କ୍ଷେତ୍ରରେ ପ୍ରୟୋଗ କରିଛନ୍ତି । ସ୍ଥାନ ଯେତିକି ରହିବା କଥା, ସେତିକି ରହିଛି ଅଧିକ ନାହିଁ । ଜେନୋଙ୍କର ଏହି ଭାବନାରୁ ଏହି ଧାରଣା ଆସୁଛି ଯେ ସ୍ଥାନ ସୀମିତ ଓ ସ୍ଥିରୀକୃତ । ଅପରପକ୍ଷରେ ସ୍ଥାନର ସୀମାକୁ ପରିକଳ୍ପନା କରିବା ଅସମ୍ଭବ ମନେହୁଏ । ସୁତରାଂ ସ୍ଥାନ ଅନନ୍ତ ଓ ଅସୀମ । ଏହିପରି ଭାବନା ମାନ ଆଣି ଜେନୋ ବିରୁଦ୍ଧାର୍ଥ ଭିତରେ ପ୍ରବେଶ କରିଛନ୍ତି । ଏହି ଯୁକ୍ତିର ଅନ୍ୟ ଏକ ତାତ୍ପର୍ଯ୍ୟ ହେବ ଯେ ଯାହାର ସ୍ଥିତି ରହିଛି ତାହା ସ୍ଥାନରେ ରହିଛି । ସ୍ଥାନର ବି ସ୍ଥିତି ରହିଛି । ତେଣୁ ସ୍ଥାନ ସ୍ଥାନ ଭିତରେ ରହିଛି । ଯେଉଁ ସ୍ଥାନ ସ୍ଥାନ ଭିତରେ ରହିଛି ତାହା ବି ସ୍ଥାନ ଭିତରେ ରହିଛି । ଏହି ଧାରା ଅସୀମ ଭାବରେ ବ୍ୟାପ୍ତ ହୋଇ ପାରିବ । ସ୍ଥାନକୁ ଏପରି ସୀମା ଭିତରେ ପରିକଳ୍ପନା କରିବା ଏକ ଅବାନ୍ତର ଭାବନା ହେବ ।

ଜେନୋଙ୍କର ଯୁକ୍ତିର ଆଧାର ହେଉଛି ଅନନ୍ତ ବିଭାଜନ ଜନିତ ବିରୁଦ୍ଧାର୍ଥ (antinomy of infinite divisibility) । ତେବେ ଜେନୋ ବିବିଧତା ଓ ଗତିଶୀଳତାର ଖଣ୍ଡନ କରିବାକୁ ଯେଉଁ ଯୁକ୍ତିର ଆଶ୍ରୟ ନେଇ ସେସବୁର ବିରୁଦ୍ଧାର୍ଥ ଦର୍ଶାଇଛନ୍ତି ତାହାର ଆଭିମୁଖ୍ୟ ହେଉଛି ପାର୍ମେନିଡୀସ୍‌ଙ୍କର ସିଦ୍ଧାନ୍ତକୁ ସମର୍ଥନ କରିବା । ବିବିଧତା ଓ ଗତିଶୀଳତା କ୍ଷେତ୍ରରେ ଯେଉଁ ବିରୁଦ୍ଧାର୍ଥ ପ୍ରକାଶ ପାଉଛି ସେଥିରୁ ସେ ଏହି ସିଦ୍ଧାନ୍ତ ଆଣିବାକୁ ଚାହୁଁଛନ୍ତି ଯେ ଯେହେତୁ ସେସବୁ କ୍ଷେତ୍ରରେ ବିରୋଧାଭାସ ରହିଛି ସେମାନେ ବାସ୍ତବ ହୋଇପାରିବେ ନାହିଁ । ସୁତରାଂ ପରମ ତତ୍ତ୍ୱ କେବଳ ଏକ ହିଁ ସତ୍ତା ହୋଇପାରିବ । ସେହି ପରମ ସତ୍ତା ଗତିଶୀଳତା, ସମ୍ଭବନ (becoming) ଓ ବିବିଧତାଠାରୁ ମୁକ୍ତ ରହିବ । ବସ୍ତୁତଃ ପାର୍ମେନିଡୀସ୍‌ଙ୍କ ତାତ୍ତ୍ୱିକ ସିଦ୍ଧାନ୍ତକୁ ଏକ ଯୁକ୍ତିଶୀଳ ଆଧାର ଦେବା ପାଇଁ ଜେନୋ ସ୍ଥାନ ଓ କାଳ ବିଷୟରେ ଯୁକ୍ତିମାନଙ୍କର ଅବତାରଣା କରିଛନ୍ତି । ସେହି ଯୁକ୍ତିମାନଙ୍କ କ୍ଷେତ୍ରରେ କିପରି ବିରୁଦ୍ଧାର୍ଥ ରହିଛି ତାହା ପରବର୍ତ୍ତୀ ଦାର୍ଶନିକ ଅନୁଶୀଳନ ମଧ୍ୟ ଦେଇ ସ୍ପଷ୍ଟ ହୋଇଛି ।

ଜେନୋ ଯେତେବେଳେ ଗତି ଓ ବିବିଧତାକୁ ଅସ୍ୱୀକାର କରୁଛନ୍ତି ଅର୍ଥାତ୍ ସେମାନେ ବାସ୍ତବ ନୁହନ୍ତି ବୋଲି କହୁଛନ୍ତି ସେ ପ୍ରକୃତରେ କ'ଣ ବୁଝୁଛନ୍ତି ? ଗତିଶୀଳତା ନାହିଁ କିମ୍ବା ବିବିଧତା ନାହିଁ କହିବାଦ୍ୱାରା ପ୍ରକୃତରେ

କ'ଣ ବୁଝାଯାଉଛି ? ଯେତେବେଳେ ଇଲୀୟା ସହରର ରାସ୍ତା ଉପରେ ଜେନୋ ଚାଲିକରି ଯାଉଥିଲେ ବା ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଉଥିଲେ, ସେ କ'ଣ ପ୍ରକୃତରେ ଚାଲିକରି ଯାଉନଥିଲେ ? ସେ ଯେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଉଛନ୍ତି ଏହା କ'ଣ ବାସ୍ତବ ନଥିଲା ? ସେ ଯେତେବେଳେ ତାଙ୍କର ହାତ ବା ବାହୁକୁ ପ୍ରସାର କରି କୌଣସି କିଛି କାର୍ଯ୍ୟ କରୁଛନ୍ତି, ତାଙ୍କର ବାହୁ କ'ଣ ସଂଚାଳିତ ହେଉ ନାହିଁ, ଏହା କ'ଣ ସର୍ବଦା ସ୍ଥିର ଓ ନିଶ୍ଚଳ ରହିଛି ? ସବୁ ସମୟରେ ତାଙ୍କର ହାତ ଓ ଗୋଡ ସ୍ଥିର ରହିଛି ବୋଲି ଜେନୋ ଭାବୁଛନ୍ତି କି ? ସେପରି ହେଲେ ତାଙ୍କ ଦର୍ଶନକୁ ଏକ ଅବାନ୍ତର କଳ୍ପନା ଛଡା ଆଉ କ'ଣ କହି ହେବ ? କେହି ଗତି କରୁନାହାନ୍ତି, ସମସ୍ତେ ସବୁ ସ୍ଥାନରେ ସ୍ଥିର ଓ ନିଶ୍ଚଳ ରହିଛନ୍ତି ବୋଲି କହିବା ଏକ ପାଗଳାମୀ ଛଡା କ'ଣ ହୋଇପାରେ ? ଏହା ଏକ ଅବାନ୍ତର କଳ୍ପନା, ପାଗଳାମୀ ନା ହାସ୍ୟକର ବିଚାର ? ପ୍ରକୃତରେ ଜେନୋ ଏପରି ଉଦ୍‌ଭଟ କଥାର ଅବତାରଣା କରୁଛନ୍ତି କି ?

ଇଲୀୟ ଦାର୍ଶନିକ ଭାବଧାରାରେ ଏକ ଅନ୍ତର୍ନିହିତ ତାତ୍ପର୍ଯ୍ୟ ଥିବା ମନେହୁଏ । ଆମେ ଇନ୍ଦ୍ରିୟ ସାହାଯ୍ୟରେ ଯେଉଁ ଜଗତକୁ ଦେଖୁଛୁ ସେଥିରେ କେତେ ବିବିଧତା ରହିଛି ଓ ବିଭିନ୍ନ ପ୍ରାଣୀମାନେ ଗତିଶୀଳ ରହିଛନ୍ତି । ବିବିଧତା ଓ ଗତିଶୀଳତା ବ୍ୟତୀତ ଏକ ଜଗତର ପରିକଳ୍ପନା କରିହେବ ନାହିଁ । ତେବେ ଦାର୍ଶନିକ ଜିଜ୍ଞାସାରେ ପ୍ରଶ୍ନ ହେଉଛି ଏହି ବିବିଧତା ପୂର୍ଣ୍ଣ ଜଗତ ବାସ୍ତବ କି ? ବିଭିନ୍ନ ବସ୍ତୁ ଜଗତରେ ରହିଛି, ବିଭିନ୍ନ ସ୍ତରରେ ଗତି ମଧ୍ୟ ରହିଛି । ତେବେ ଜେନୋ ପ୍ରଶ୍ନ ଉଠାଉଛନ୍ତି, ଯେ ଯାହା ବାହ୍ୟ ଜଗତରେ ରହିଛି ତାହାର ଚିରନ୍ତନତା ରହିଛି କି ? ଯାହାର ଚିରନ୍ତନତା ନାହିଁ ବା ଯାହାର ପରିବର୍ତ୍ତନ ନିରନ୍ତର ଭାବରେ ହେଉଛି ତାହାକୁ ଚିରନ୍ତନ ସତ୍ତା କୁହାଯାଇ ପାରିବ କି ? ଜଗତ ରହିଛି, ବସ୍ତୁରାଜି ରହିଛନ୍ତି, ଗତି ରହିଛି, କୌଣସି ବୁଦ୍ଧିସଂପନ୍ନ ବ୍ୟକ୍ତି ଏସବୁକୁ ଅସ୍ୱୀକାର କରିପାରିବ ନାହିଁ । ଏହା ସବୁତ ଆମେ ଇନ୍ଦ୍ରିୟ ସାହାଯ୍ୟରେ ପ୍ରତ୍ୟକ୍ଷ କରୁଛେ । କିନ୍ତୁ ଏହି ଦୃଶ୍ୟମାନ ଜଗତ ଓ ଇନ୍ଦ୍ରିୟ ଉପଲବ୍ଧ ଅନୁଭୂତି ବାସ୍ତବ ନୁହେଁ, ଯେହେତୁ ଏସବୁର ଚିରନ୍ତନତା ନାହିଁ । ଯାହାର ଚିରନ୍ତନତା ନାହିଁ ତାହାର ସତ୍ତା (Being) କୁ ସ୍ୱୀକାର କରାଯାଇ ପାରିବ ନାହିଁ । ଏହି ଜଗତ, ଯାହାକୁ ଆମେ ଇନ୍ଦ୍ରିୟ ସାହାଯ୍ୟରେ ଦେଖୁଛେ କେବଳ ଆଭାସ ମାତ୍ର, ମାୟା ବା ମିଥ୍ୟା । ଏସବୁ କେବଳ କୃତ୍ରିମ ଓ ଏକ ଛଳନାପୂର୍ଣ୍ଣ ଆଭାସ । ଏହାର ଅସଲ ସ୍ୱରୂପ ଏହାର ଆଭାସରେ ବ୍ୟକ୍ତ ହେଉ ନାହିଁ । ଯାହା ଆଭାସିକ ତାହା ବାସ୍ତବ ବା ସତ୍ ନୁହେଁ । ତେବେ ଆଭାସ ଓ ସତ୍ ଭିତରେ କ'ଣ ପାର୍ଥକ୍ୟ ରହିଛି ? ଯାହାର ସ୍ଥିତି ଥିବା ଆମେ ଦେଖୁଛେ ତାହା କାହିଁକି ସତ୍ ବା ବାସ୍ତବ ନୁହେଁ ? ଆମେ ଯାହାର ସ୍ଥିତି ଥିବା ଦେଖୁଛେ ତାକୁ କାହିଁକି ସତ୍ ବୋଲି ଗ୍ରହଣ କରିବା ନାହିଁ ? ଏକ ଭ୍ରାନ୍ତି ବା ମରୀଚିକାର ବି ଅସ୍ତିତ୍ୱ ରହିଛି, ତେବେ ତାକୁ ଆମେ ବାସ୍ତବ ବୋଲି ଗ୍ରହଣ କରିବା କି ? ଯେଉଁ ସବୁର ସ୍ଥିତି ଅଛି, ତାହାକୁ କାହିଁକି ବାସ୍ତବ ବୋଲି ଗ୍ରହଣ କରାଯିବ ନାହିଁ– ଏହା ହିଁ ଏଠାରେ ମୂଳ ପ୍ରଶ୍ନ । ଯାହା ଭ୍ରାନ୍ତିପୂର୍ଣ୍ଣ ବା ମରୀଚିକା ସଦୃଶ ନୁହେଁ ବରଂ ବାସ୍ତବରେ ସ୍ଥିତ, ସେ ସବୁକୁ ସତ୍ ବୋଲି ଗ୍ରହଣ କରିବାରେ କ'ଣ ଅସୁବିଧା ରହିଛି ? ଏହି ପରିପ୍ରେକ୍ଷୀରେ ଇଲୀୟ ସଂପ୍ରଦାୟର ଦାର୍ଶନିକ ମତ ହେଉଛି ଯେ ସ୍ଥିତି ରହିବା ଓ ସ୍ୱସ୍ଥିତି ରହିବା ଭିତରେ ମୌଳିକ ପାର୍ଥକ୍ୟ ରହିଛି । ଆମ ଚତୁଃପାର୍ଶ୍ୱରେ ଅନେକ ବସ୍ତୁ ରହିଛି, କିନ୍ତୁ ସେସବୁ ସ୍ୱସ୍ଥିତ ନୁହେଁ ଓ

ସେମାନଙ୍କର ଦ୍ରବ୍ୟତ୍ୱ (self-substantiality) ନାହିଁ । ଯାହାର ଅସ୍ତିତ୍ୱ ଅଛି ଅଥଚ ତାହାର ଅସ୍ତିତ୍ୱ ନିଜ ଉପରେ ନିର୍ଭର ନକରି ଅନ୍ୟ ଉପରେ ନିର୍ଭରଶୀଳ ତାହାର ଦ୍ରବ୍ୟତ୍ୱ ନାହିଁ । ଯାହା ସ୍ୱସ୍ଥିତ ଓ ଯାହାର ସ୍ଥିତି ଅନ୍ୟ ଉପରେ ନିର୍ଭର କରେ ନାହିଁ ତାହାର ଦ୍ରବ୍ୟତ୍ୱ ରହିଛି । ଯାହାର ଦ୍ରବ୍ୟତ୍ୱ ନାହିଁ, ତାହାର ସ୍ଥିତି ଥିଲେ ମଧ୍ୟ ତାହା ସତ୍ ହୋଇପାରିବ ନାହିଁ । ଯାହା ସତ୍ ତାହା ସ୍ୱସ୍ଥିତ । ଯେଉଁ ବସ୍ତୁ ସ୍ଥିତ ଅର୍ଥାତ୍ ଯାହା ଅଛି, କିନ୍ତୁ ତାହାର ଅସ୍ତିତ୍ୱ ଅନ୍ୟ ଉପରେ ନିର୍ଭରଶୀଳ ତାହା ସତ୍ ନୁହେଁ । ଯାହା ସତ୍, ତାହା ସ୍ୱସ୍ଥିତ, ଓ ଦ୍ରବ୍ୟତ୍ୱ ଲକ୍ଷଣଯୁକ୍ତ । ବରଂ ସ୍ୱସ୍ଥିତ ଓ ଦ୍ରବ୍ୟତ୍ୱ ଥିବା ସତ୍ତାରୁ ଅନ୍ୟ ସବୁର ଉଦ୍‌ଗମ ହେବା ମନେହୁଏ । ଯାହା ସ୍ୱସ୍ଥିତ ନୁହେଁ ଓ ଯାହାର ସ୍ଥିତି ଅନ୍ୟ ଉପରେ ନିର୍ଭରଶୀଳ ତାହା ଆଭାସ ମାତ୍ର । ସୁତରାଂ ସତ୍ ଓ ଆଭାସ ମଧ୍ୟରେ ପାର୍ଥକ୍ୟ ରହିଛି । ଅବଶ୍ୟ ଇଲୀୟ ଦାର୍ଶନିକମାନେ ଆଭାସ ଓ ସତ୍ ପରିଭାଷା ପ୍ରୟୋଗ କରିନାହାନ୍ତି, କିନ୍ତୁ ସେମାନଙ୍କ ଭାବଧାରାରେ ଏହି ବିଚାରର ପ୍ରଚ୍ଛନ୍ନ ଭାବରେ ପରିପ୍ରକାଶ ଘଟିଛି । ଦର୍ଶନ ପରିସରରେ ଯେଉଁ ତତ୍ତ୍ୱମୀମାଂସାର ବିକାଶ ହୋଇଛି ସେଥିରେ ସତ୍ ଓ ଅସତ୍ ଏବଂ ଦ୍ରବ୍ୟତ୍ୱ ଓ ଆଭାସିକ ମଧ୍ୟରେ ପାର୍ଥକ୍ୟ ନେଇ ବିଭିନ୍ନ ବିଚାରଧାରାର ପରିପ୍ରକାଶ ଘଟିଛି । ତେବେ ଏସବୁ ଭାବଧାରାର ସ୍ଫୁଲିଙ୍ଗ ଗ୍ରୀକ୍ ଦର୍ଶନରୁ ଯେ ଆରମ୍ଭ ହୋଇଛି ଏହା କୁହାଯାଇପାରେ ।

ଦାର୍ଶନିକ ଅନୁଶୀଳନ ଆରମ୍ଭ ହେବା ପରଠାରୁ କେତେକ ଦାର୍ଶନିକ ଏ ବିଶ୍ୱର ମୌଳିକ ସତ୍ତା ବା ତତ୍ତ୍ୱ କ'ଣ ଏହି ପ୍ରଶ୍ନ ଉଠାଇଛନ୍ତି । ଆଓନୀୟମାନେ ଏହି ପ୍ରଶ୍ନର ଅବତାରଣା କରିଛନ୍ତି- ବିଶ୍ୱର ମୌଳିକ ତତ୍ତ୍ୱର ସ୍ୱରୂପ କ'ଣ ଓ ସେମାନେ ବସ୍ତୁକୁ ବିଶ୍ୱର ଆଦିତତ୍ତ୍ୱ ବୋଲି ଗ୍ରହଣ କରିଛନ୍ତି । ଯେପରି ଥେଲିସ୍ ଜଳକୁ, ଆନେକ୍ସିମେନିସ ବାୟୁକୁ ବିଶ୍ୱର ମୌଳିକ ସତ୍ତା ବୋଲି ନେଇ ବିଶ୍ୱର ବ୍ୟାଖ୍ୟା ଦେଇଛନ୍ତି । ସେହିପରି ପରବର୍ତ୍ତୀ ଦାର୍ଶନିକ ପିଥାଗୋରାସ ସଂଖ୍ୟାକୁ ମୂଳ ତତ୍ତ୍ୱ ବୋଲି ସ୍ୱୀକାର କରିଛନ୍ତି । (ପରବର୍ତ୍ତୀ ପରିଚ୍ଛେଦରେ ପିଥାଗୋରାସଙ୍କ ଦର୍ଶନ ସଂପର୍କରେ ଆଲୋଚନା କରାଯିବ) । ସେହି ପ୍ରଶ୍ନ ମଧ୍ୟ ଇଲୀୟ ଦାର୍ଶନିକ ମାନେ ଅବତାରଣା କରିଛନ୍ତି – ବିଶ୍ୱର ମୂଳ ତତ୍ତ୍ୱ ବା ସତ୍ତା କ'ଣ ?

ଆମେ ଯେଉଁ ବିଶ୍ୱକୁ ଜାଣୁଛୁ ତାହା ଗୁଣଯୁକ୍ତ ଏବଂ ପରିମାଣ ଯୁକ୍ତ । ପ୍ରତ୍ୟେକ ଇନ୍ଦ୍ରିୟଗ୍ରାହ୍ୟ ପଦାର୍ଥର ସ୍ୱରୂପକୁ ଗୁଣ ଓ ପରିମାଣଦ୍ୱାରା ଆମେ ଜାଣିଥାଉ । ଗୁଣ ଓ ପରିମାଣ ପୃଥିବୀର ଯେ ସବୁ କିଛି ଲକ୍ଷଣ ତାହା ନ ହୋଇପାରେ । ତେବେ ଗୁଣ ଓ ପରିମାଣ ଆମ ଅବବୋଧରେ ବର୍ତ୍ତମାନ ସୁଦ୍ଧା ପ୍ରତିଭାତ ହୋଇଛି । ଆଓନୀୟ ଦାର୍ଶନିକ ମାନେ ଯେତେବେଳେ ବସ୍ତୁସତ୍ତାକୁ ବିଶ୍ୱର ମୂଳ ତତ୍ତ୍ୱ ଭାବରେ ଗ୍ରହଣ କରିଛନ୍ତି ସେମାନେ ଗୁଣ ଓ ପରିମାଣକୁ ମଧ୍ୟ ସ୍ୱୀକାର କରିଛନ୍ତି । କାରଣ ବସ୍ତୁର ଗୁଣ ଓ ପରିମାଣ ରହିଛି । ଗୁଣ ଓ ପରିମାଣ ବ୍ୟତୀତ ବସ୍ତୁର ପରିକଳ୍ପନା ସମ୍ଭବ ନୁହେଁ । ପିଥାଗୋରାସ୍ ଯେତେବେଳେ ସଂଖ୍ୟାକୁ ମୂଳ ତତ୍ତ୍ୱ ଭାବରେ ଗ୍ରହଣ କରିଛନ୍ତି, ସେ ପରିମାଣକୁ ପ୍ରାଧାନ୍ୟ ଦେଇଛନ୍ତି, ଗୁଣକୁ ନୁହେଁ । ସଂଖ୍ୟାକୁ ମୂଳତତ୍ତ୍ୱ ଭାବରେ ନେବାଦ୍ୱାରା ସେଥିରୁ ପରିମାଣର ଭାବନା ଆସୁଛି, ଗୁଣର ନୁହେଁ । ତେବେ ଇଲୀୟ ଦାର୍ଶନିକ ଧାରାରେ ମୂଳ ତତ୍ତ୍ୱ ଭାବରେ ଉଭୟ ଗୁଣ ଓ ପରିମାଣକୁ ଅସ୍ୱୀକାର କରାଯାଇଛି । ଜେନୋ ବିବିଧତାକୁ ଖଣ୍ଡନ କରିବାଦ୍ୱାରା ଉଭୟ ଗୁଣ ଓ ପରିମାଣକୁ ବିଶ୍ୱର

ମୂଳ ସତ୍ତା ଭାବେ ଅସ୍ୱୀକାର କରିଛନ୍ତି । ଆଓନୀୟମାନେ ବସ୍ତୁକୁ ମୂଳ ସତ୍ତା ବୋଲି ସ୍ୱୀକାର କରିବାଦ୍ୱାରା ଇନ୍ଦ୍ରିୟଗ୍ରାହ୍ୟତା ଉପରେ ପ୍ରାଧାନ୍ୟ ଦେଇଥିଲେ । ପାର୍ମେନୀଡିସ୍ ଓ ଜେନୋ ଅମୂର୍ତ୍ତ ଭାବନାକୁ ମୂଳ ତତ୍ତ୍ୱ ଭାବରେ ଗ୍ରହଣ କରିଛନ୍ତି । ଏହି ଧାରାରେ ଇନ୍ଦ୍ରିୟଗ୍ରାହ୍ୟତାରୁ ବିଶୁଦ୍ଧ ଚିନ୍ତା (pure thinking) ଦ୍ୱାରା ବିଶ୍ୱର ମୂଳ ତତ୍ତ୍ୱକୁ ବିବେଚନା କରିଛନ୍ତି ।

ଇଲୀୟ ବିଚାରଧାରାରେ ଏକତତ୍ତ୍ୱବାଦର ମଧ୍ୟ ପରିପ୍ରକାଶ ଘଟିଛି । ବିଶ୍ୱର ବ୍ୟାଖ୍ୟାନ କ୍ଷେତ୍ରରେ ଏକ ମୌଳିକ ତତ୍ତ୍ୱକୁ ବିଶୁଦ୍ଧ ଚିନ୍ତା ମାଧ୍ୟମରେ ପରିକଳ୍ପନା ଇଲୀୟ ଦାର୍ଶନିକ ଧାରାରେ ପ୍ରକାଶ ପାଇଛି । ମାନବୀୟ ଅବବୋଧରେ ଏକକ ତତ୍ତ୍ୱ ମାଧ୍ୟମରେ ବିଶ୍ୱର ବ୍ୟାଖ୍ୟାନ ଚିନ୍ତାରାଜ୍ୟର ନାନା କ୍ଷେତ୍ରରେ ଅଭିବ୍ୟକ୍ତ ହୋଇଛି । ଇଲୀୟ ଦାର୍ଶନିକ ଧାରାରେ ଦ୍ୱନ୍ଦ୍ୱନ୍ୟାୟ, ବିଶୁଦ୍ଧ ଚିନ୍ତା ଓ ଏକତତ୍ତ୍ୱବାଦର ଯେଉଁ ଝଲକ ରହିଛି ତାହା ଦର୍ଶନର ଐତିହାସିକ ବିକାଶ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ମନେହୁଏ ।

# ଚତୁର୍ଥ ପରିଚ୍ଛେଦ

## ସକ୍ରେଟିସ୍‌ଙ୍କ ପୂର୍ବବର୍ତ୍ତୀ ଦାର୍ଶନିକ

ସକ୍ରେଟିସ୍, ପ୍ଲେଟୋ ଓ ଆରିଷ୍ଟୋଟଲଙ୍କୁ ଗ୍ରୀକ୍‌ଦର୍ଶନର ମହତ୍ ତ୍ରୟୀ ବୋଲି କୁହାଯାଏ । ଇଉରୋପୀୟ ବୌଦ୍ଧିକ ନୈତିକ ଜୀବନଧାରାକୁ ଏମାନେ ଗଭୀର ଭାବରେ ପ୍ରଭାବିତ କରିଛନ୍ତି । ଏତଦ୍‌ବ୍ୟତୀତ ଦର୍ଶନ ଜଗତକୁ ଏମାନଙ୍କର ଅବଦାନ ମଧ୍ୟ ଅତୁଳନୀୟ ମନେହୁଏ । ପାଶ୍ଚାତ୍ୟ ସଭ୍ୟତାରେ ଯେଉଁ ଦାର୍ଶନିକ ଚେତନାର ବିକାଶ ହୋଇଥିଲା, ସେଥିରେ ଗ୍ରୀକ୍ ଦର୍ଶନର ଏକ ମୁଖ୍ୟ ଭୂମିକା ରହିଥିଲା । ସେହି ଦର୍ଶନଧାରାରେ ପ୍ରବୀଣ ବ୍ୟକ୍ତିତ୍ୱ ହେଲେ ସକ୍ରେଟିସ୍, ପ୍ଲେଟୋ ଓ ଆରିଷ୍ଟୋଟଲ । ପ୍ଲେଟୋ ଥିଲେ ସକ୍ରେଟିସ୍‌ଙ୍କର ଅନୁଗାମୀ ଓ ଆରିଷ୍ଟୋଟଲଙ୍କର ଶିକ୍ଷକ । ପ୍ଲେଟୋଙ୍କ ସ୍ଥାପିତ ' ଏକାଡେମୀ' ଥିଲା ବୌଦ୍ଧିକ ଜ୍ଞାନଚର୍ଚ୍ଚାର ଏକ ପ୍ରମୁଖ ବିଦ୍ୟାକେନ୍ଦ୍ର, ଯେଉଁଠାରେ ଆରିଷ୍ଟୋଟଲ ଅଧ୍ୟୟନ କରିଥିଲେ, ସକ୍ରେଟିସ୍‌ଙ୍କଠାରୁ ଗ୍ରୀକ୍ ଦର୍ଶନର ଏକ ସ୍ୱର୍ଣ୍ଣଯୁଗ ଆରମ୍ଭ ହୋଇଥିଲେ ବି ସକ୍ରେଟିସ୍‌ଙ୍କ ପୂର୍ବରୁ କେତେକ ଦାର୍ଶନିକ ସିଦ୍ଧାନ୍ତର ଗମ୍ଭୀର ଚର୍ଚ୍ଚା ଗ୍ରୀସ୍‌ରେ ହୋଇଥିବା ମନେହୁଏ । ଏହି ପରିଚ୍ଛେଦରେ ସକ୍ରେଟିସ୍‌ଙ୍କ ଆବିର୍ଭାବ ପୂର୍ବରୁ ଯେଉଁ କତିପୟ ଦାର୍ଶନିକ ଦର୍ଶନ ଚର୍ଚ୍ଚା ନେଇ ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରିଥିଲେ ସେହିପରି କେତେକ ଯୁଗାନ୍ତକାରୀ ଦାର୍ଶନିକଙ୍କ ସମ୍ବନ୍ଧରେ ଆମେ ଏଠାରେ ସଂକ୍ଷିପ୍ତ ଆଲୋଚନା କରିବା ।

### ୪.୧. ପିଥାଗୋରାସ (Pythagoras)

ପିଥାଗୋରାସଙ୍କ ଜୀବନୀ ସଂପର୍କରେ ବିଶେଷ ତଥ୍ୟ ଇତିହାସରେ ଲିପିବଦ୍ଧ ହୋଇନାହିଁ । ତାଙ୍କ ଦେହାନ୍ତର ବହୁବର୍ଷ ପରେ ତାଙ୍କର ଜୀବନୀ କେତେକ ରଚନା କରିଛନ୍ତି । ତେବେ ସେହି ସବୁ ରଚନାରେ ତାଙ୍କ ନାମରେ ବହୁ କପୋଳକଳ୍ପିତ ଓ ରହସ୍ୟମୟ ଘଟଣାର ଅବତାରଣା ହୋଇଛି । ଏହାଦ୍ୱାରା ତାଙ୍କ ଜୀବନର ବାସ୍ତବ ଘଟଣା ସମୂହ ଲୁକାୟିତ ହୋଇଯାଇଛି । ତାଙ୍କର ଜନ୍ମ ଖ୍ରୀ.ପୂ. ୫୮୦ ରୁ ଖ୍ରୀ.ପୂ. ୫୭୦ ମଧ୍ୟରେ ହୋଇଥିବା ଅନୁମାନ କରାଯାଏ । ତାଙ୍କର ଜନ୍ମ ଗ୍ରୀସ୍‌ର ସେମୋସଠାରେ ହେବା ଜଣାଯାଏ । ତେବେ ମଧ୍ୟମ ବୟସରେ ସେ କେତେକ ଅଞ୍ଚଳ ପରିଭ୍ରମଣକରି ଦକ୍ଷିଣ ଇଟାଲୀର କ୍ରୋଟୋନାରେ ସ୍ଥାୟୀ ଭାବରେ ରହିଥିବା ନେଇ କେତେକ ତଥ୍ୟ ରହିଛି । କ୍ରୋଟୋନାଠାରେ "ପିଥାଗୋରୀୟ ସମାଜ ବା ସଂପ୍ରଦାୟ" ନାମରେ ଏକ ସଂଗଠନ ସ୍ଥାପନ କରି ଏହାର ମୁଖ୍ୟ ଥିବା କୁହାଯାଏ । ତାଙ୍କର ପରବର୍ତ୍ତୀ ଜୀବନର ଘଟଣା ପ୍ରବାହ କିମ୍ବା ମୃତ୍ୟୁ ସଂପର୍କରେ ସେପରି କିଛି ନିର୍ଭରଯୋଗ୍ୟ ତଥ୍ୟ ନାହିଁ । ତେବେ ତାଙ୍କ ଜୀବନୀକାରମାନେ ତାଙ୍କର ଜ୍ଞାନ ପିପସା ଓ ବୈରାଗ୍ୟପୂର୍ଣ୍ଣ ଜୀବନଦୃଷ୍ଟି ବିଷୟରେ ଉଲ୍ଲେଖ କରିଛନ୍ତି । ଜ୍ଞାନ ଆହରଣ ଉଦ୍ଦେଶ୍ୟ ରଖି ସେ ବିଭିନ୍ନ ସ୍ଥାନ ପରିଭ୍ରମଣ କରିଛନ୍ତି ଓ ଏହା

ମାଧ୍ୟମରେ ଅନେକ ଅନୁଭୂତି ଲାଭ କରିଛନ୍ତି । ଶେଷରେ ସେ କ୍ରୋଟୋନାଠାରେ ସପରିବାର ଅବସ୍ଥାନ କରିଛନ୍ତି । କିଛି ଜୀବନୀକାରଙ୍କ ମତରେ ସେ ସମୃଦ୍ଧ ଓ କୁଳୀନ ପରିବାରର ବ୍ୟକ୍ତି ଥିଲେ । ତାଙ୍କର ସହଧର୍ମିଣୀ ଥିଆନୋ ଜଣେ ବିଦୂଷୀ ମହିଳା ଥିଲେ । ତାଙ୍କ ଜନ୍ମିତ ନଗରରାଜ୍ୟ ସେମୋସର ଶାସକଙ୍କର ଅତ୍ୟାଚାର ଓ ତାଙ୍କ ପ୍ରତି ବଦ୍ୱେଷ ମନୋଭାବ ଯୋଗୁଁ ସେ ନିଜ ଭିଟାମାଟି ଛାଡି ଚାଲି ଯାଇଥିଲେ ।

ସେ ଯେଉଁ ପିଥାଗୋରୀୟ ସମାଜ ବା ସଂପ୍ରଦାୟ ପ୍ରତିଷ୍ଠା କରିଥିଲେ ତାହା କୌଣସି ଦାର୍ଶନିକ ଆଭିମୁଖ୍ୟ ନେଇ କାର୍ଯ୍ୟ କରିବାର ଲକ୍ଷ୍ୟ ନଥିଲା ବରଂ ସେ ଅଧିକ ରହସ୍ୟବାଦ ଓ ଧାର୍ମିକ ସଂସ୍କାରର ଆଭିମୁଖ୍ୟ ରଖିଥିଲେ । ତାଙ୍କର ସାମାଜିକ ଦୃଷ୍ଟିଭଙ୍ଗୀ ମଧ୍ୟ ଅନେକଟା ଶୁଦ୍ଧବାଦୀ ରହିଥିଲା । ପିଥାଗୋରୀୟ ସମାଜ କ୍ରୋଟୋନାଠାରେ ଶାସନଭାର ଅଧିକାର କରିବାର ଯୋଜନା କରି ସେଠାରେ ଅଳ୍ପଦିନ ପାଇଁ ସରକାର ସ୍ଥାପନ କରିଥିଲେ । ତେବେ ତାଙ୍କ ସଂପ୍ରଦାୟ ଉପରେ ବାରମ୍ବାର ଆକ୍ରମଣ ହୋଇଥିଲା । ଗୁଡାଏ ବିଷୟରେ କଟକଣା, ରହସ୍ୟବାଦ, କର୍ମକାଣ୍ଡ ଇତ୍ୟାଦି ଯୋଗୁ ପ୍ରବଳ ଜନ ଅସନ୍ତୋଷ ସୃଷ୍ଟି ହୋଇଥିଲା । ପିଥାଗୋରୀୟ ସଂପ୍ରଦାୟର ଲୋକମାନଙ୍କୁ ଆକ୍ରମଣ କରିବା, ହତ୍ୟାକରିବା ଇତ୍ୟାଦି କାରଣରୁ ସେମାନେ ସରକାରରେ ରହିବା ସମ୍ଭବ ହେଲା ନାହିଁ । ଖ୍ରୀ.ପୂ. ୪୪୦ ରୁ ୪୩୦ ଭିତରେ ଏହି ଅସନ୍ତୋଷ ସୃଷ୍ଟି ହୋଇଥିବା ଜଣାଯାଏ । ପରେ ବିକ୍ଷିପ୍ତ ଭାବରେ ଥିବା ଏହି ସଂପ୍ରଦାୟ କିଛିଟା ସଂଗଠିତ ହୋଇଥିଲେ ମଧ୍ୟ ଖ୍ରୀ.ପୂ. ଚତୁର୍ଥ ଶତାବ୍ଦୀ ପରେ ପିଥାଗୋରୀୟ ସଂପ୍ରଦାୟ ବିଷୟରେ ବିଶେଷ କିଛି ଜଣାଯାଏ ନାହିଁ ।

ପିଥାଗୋରାସଙ୍କର ଦାର୍ଶନିକ ଅବଦାନ ସଂପର୍କରେ ମଧ୍ୟ କେତେକ ଅସ୍ପଷ୍ଟତା ରହିଛି । କେଉଁ ଭାବନାମାନ ପିଥାଗୋରାସଙ୍କର ଅବଦାନ ଓ କେଉଁ ବିଚାରମାନ ତାଙ୍କ ଅନୁଗାମୀ ମାନଙ୍କର ଭାବଧାରା ତାହା ସ୍ପଷ୍ଟ କରିବା ସମ୍ଭବ ନୁହେଁ । ତେଣୁ ତାହାକୁ ପିଥାଗୋରୀୟ ଦାର୍ଶନିକ ଭାବଧାରା ବୋଲି କେତେକ ଐତିହାସିକ ମତ ଦେଇଛନ୍ତି । ତେବେ ପିଥାଗୋରାସ ବା ତାଙ୍କ ପରବର୍ତ୍ତୀ ସମର୍ଥକ ମାନଙ୍କର କ'ଣ ବିଚାର ଥିଲା ତାହା ଆମେ ଆଲୋଚନାର ପରିସରକୁ ଆଣିବା । ଏହା ପିଥାଗୋରାସଙ୍କର ନିଜସ୍ୱ ମତ ହେଉ ବା ତାଙ୍କ ସମର୍ଥକମାନଙ୍କର ଭାବଧାରା ହେଉ ସେସବୁର ବିବାଦ ଭିତରକୁ ନ ଯାଇ ପିଥାଗୋରାସଙ୍କ ସହିତ ଯେଉଁ କିଛି ଦାର୍ଶନିକ ସିଦ୍ଧାନ୍ତ ସଂଶ୍ଳିଷ୍ଟ ହୋଇ ରହିଛି ତାହାର ସମ୍ୟକ୍ ସୂଚନା ଏଠାରେ ଦିଆଯାଇପାରେ ।

ପିଥାଗୋରାସ୍ ଲକ୍ଷ୍ୟ କରିଛନ୍ତି ଯେ ଆଓନୀୟ ଦାର୍ଶନିକ ମାନେ ଜଗତର ମୂଳ ସତ୍ତା ବା ତତ୍ତ୍ୱ ନେଇ ବିଚାର ବ୍ୟକ୍ତ କରିଛନ୍ତି । ଥେଲିସ୍ ଜଳକୁ ଓ ଆନେକ୍ସିମେନିସ୍ ବାୟୁ ପରି ପ୍ରାକୃତିକ ବସ୍ତୁମାନଙ୍କୁ ବିଶ୍ୱର ମୂଳ ତତ୍ତ୍ୱ ଭାବରେ ନେବା ସହ ସେଥିରୁ ସବୁ କିଛିର ଉତ୍ପତ୍ତି ବୋଲି ମତ ଦେଇଛନ୍ତି । ପିଥାଗୋରାସ ଏହି ସିଦ୍ଧାନ୍ତ ସହ ସହମତ ହୋଇନାହାନ୍ତି । ତାଙ୍କ ମତରେ ବିଶ୍ୱର ମୂଳ ତତ୍ତ୍ୱ ହେଉଛି ସଂଖ୍ୟା । ସଂସାରର ସମସ୍ତ ଭୌତିକ ଓ ଅଭୌତିକ ବସ୍ତୁ ସଂଖ୍ୟାରୁ ଉଦ୍‌ଭବ ହୋଇଛନ୍ତି । ସଂସାରରେ ରହିଥିବା ନୈତିକ ମୂଲ୍ୟ, ରାଜନୈତିକ ଓ ସାମାଜିକ

ବ୍ୟବସ୍ଥାର ମୂଳ ହେଉଛି ସଂଖ୍ୟା । ସଂସାରରେ ଯାହା ସବୁ ଅଛି, ସେସବୁର ଅଭାବ ବା ଅନୁପସ୍ଥିତିକୁ କଳ୍ପନା କରାଯାଇପାରେ, କିନ୍ତୁ ସଂଖ୍ୟାର ଅନସ୍ତିତ୍ୱର ପରିକଳ୍ପନା କରାଯାଇ ପାରିବ ନାହିଁ । ସଂସାରରେ ଯାହା କିଛି ବ୍ୟବସ୍ଥା, ନିଶ୍ଚିତତା ଆମେ ଦେଖେ ତାକୁ ବାଦ୍ ଦେଇ ଆମେ ଜଗତର ପରିକଳ୍ପନା କରିପାରିବା, କିନ୍ତୁ ସଂଖ୍ୟାକୁ ବାଦ୍ ଦେଇ ପାରିବା ନାହିଁ ।  ଆମେ ପ୍ରତ୍ୟେକ ବସ୍ତୁକୁ ତାର ଗୁଣ ମାଧ୍ୟମରେ ଅବବୋଧ କରିଥାଏ । ତେବେ ଅଧିକାଂଶ ଗୁଣର କୌଣସି ସାର୍ବଜନୀନତା ନଥାଏ । କେତେକ ବସ୍ତୁରେ ଯେଉଁ ଗୁଣ ଥାଏ, ସେହି ଗୁଣ ଅନ୍ୟ ବସ୍ତୁରେ ଦେଖାଯାଏ ନାହିଁ । ଏକ ପତ୍ର ଆମକୁ ସବୁଜ ଦେଖାଯାଏ, କିନ୍ତୁ ପ୍ରତ୍ୟେକ ବସ୍ତୁ ସବୁଜ ରଙ୍ଗର ନୁହେଁ, ଏପରିକି କେତେକ ଜିନିଷ ରଙ୍ଗଶୂନ୍ୟ ହେବା  ସମ୍ଭବ । ଯାହା ରଙ୍ଗ ବିଷୟରେ କୁହାଗଲା ତାହା ସ୍ୱାଦ ଓ ଘ୍ରାଣ ବିଷୟରେ ମଧ୍ୟ କୁହାଯାଇପାରେ । ଆଖୁ ମିଠା ଲାଗେ, ତେବେ ପ୍ରତ୍ୟେକ ଖାଦ୍ୟ ମିଠା ଲାଗେ ନାହିଁ । ଏପରିକି କେତେକ ଖାଦ୍ୟ ସ୍ୱାଦବିହୀନ ହୋଇପାରେ । ସୁତରାଂ ଗୁଣମାନ ସାର୍ବଜନୀନ ନୁହନ୍ତି । କିନ୍ତୁ ପ୍ରତ୍ୟେକ ବସ୍ତୁରେ ଏପରି ଏକ ଗୁଣ ରହିଛି ଯାହା ସାର୍ବଜନୀନ ଭାବେ ବିଦ୍ୟମାନ । ଭୌତିକ ବସ୍ତୁ ହେଉ କିମ୍ୱା ଅଭୌତିକ ହେଉ ସବୁକିଛିକୁ ସଂଖ୍ୟା ପ୍ରୟୋଗ ହୋଇପାରିବ । ସକଳ ବସ୍ତୁକୁ ଗଣନାଦ୍ୱାରା ବ୍ୟକ୍ତ କରାଯିବା ସମ୍ଭବ । ସଂଖ୍ୟା ନ ଥିବା ଏକ ବିଶ୍ୱର ପରିକଳ୍ପନା କରାଯିବା ସମ୍ଭବ ନୁହେଁ । ଆମେ ଏକ ବିଶ୍ୱର କଳ୍ପନା କରିପାରିବା ଯେଉଁଠି ରଙ୍ଗ ବା ସ୍ୱାଦ ବା କୌଣସି ଓଜନ ନଥିବ । କିନ୍ତୁ ଏହା ସଂଖ୍ୟା କ୍ଷେତ୍ରରେ କୁହାଯାଇ ପାରିବ ନାହିଁ । ସଂଖ୍ୟା ବିହୀନ ଏକ ବିଶ୍ୱର ଭାବନା ବୋଧଗମ୍ୟ ହେବ ନାହିଁ । ସଂସାରରେ ସବୁ କିଛିର ଅଭାବ ରହିପାରେ ଅର୍ଥାତ୍ କୌଣସି ବସ୍ତୁବିହୀନ ଏକ ସଂସାରର ଅନୁମାନ ଅସମ୍ଭବ ନୁହେଁ । କିନ୍ତୁ ଏକ ସଂଖ୍ୟା ବିହୀନ ସଂସାର ଆମ ପରିକଳ୍ପନାରେ ଆସିପାରିବ ନାହିଁ । ଏହି ଦୃଷ୍ଟିରୁ ପିଥାଗୋରାସ ସଂଖ୍ୟାକୁ ଜଗତର ମୂଳ ବା ମୌଳିକ ତତ୍ତ୍ୱ ଭାବରେ ଗ୍ରହଣ କରିଛନ୍ତି ।

ସଂସାରରେ ଯେକୌଣସି ବ୍ୟବସ୍ଥା, ସମ୍ବାଦ, ବସ୍ତୁ କିମ୍ବା ନିଶ୍ଚିତତା ଦେଖାଯାଏ, ଏହାର ମୂଳ କାରଣ ସଂଖ୍ୟା ବୋଲି ପିଥାଗୋରାସ ପରିକଳ୍ପନା କରିଛନ୍ତି । ଏହାକୁ ବୁଝାଇବାକୁ ଯାଇ ବିଭିନ୍ନ ଉଦାହରଣ ଦେଇଛନ୍ତି । ଯେତେବେଳେ କୌଣସି ଅନୁପାତର ଧାରଣା ପ୍ରକାଶ ପାଏ ସେତେବେଳେ ଦୁଇଟି ସଂଖ୍ୟାର ସଂବଂଧକୁ ଦର୍ଶାଯାଇଥାଏ । ସେହିପରି ଶୃଂଖଳାର ଭାବନା ସଂଖ୍ୟା ସହ ସଂପୃକ୍ତ ହେବା ଦେଖାଯାଏ । ଏକ ସୈନ୍ୟ ଦଳରେ ରହିଥିବା ବ୍ୟବସ୍ଥା ବା ସେମାନେ ଗୋଟିଏ ଗ୍ରୁପ୍‌ରେ ରହିଥିବା ସମୟରେ ସେମାନେ ପରସ୍ପର ସହ ସମ୍ବନ୍ଧିତ ରହିଥାନ୍ତି । ଜଣେ ସୈନିକଙ୍କ ଠାରୁ ଅନ୍ୟ ଜଣେ ସୈନିକଙ୍କର ଦୂରତାକୁ ଗଜ,ଫୁଟ, ଇଞ୍ଚ ଇତ୍ୟାଦି ମାଧ୍ୟମରେ ବ୍ୟକ୍ତ କରାଯାଏ । ଗଜ, ଫୁଟ ଇତ୍ୟାଦିର ଭାବନା ସଂଖ୍ୟା ବ୍ୟତୀତ ପ୍ରକାଶ କରିବା ସମ୍ଭବ ନୁହେଁ । ସଂଗୀତ ବା ବାଦ୍ୟ କ୍ଷେତ୍ରରେ କିଛି ସଂହତି ବା ଶୃଂଖଳା ପରିଲକ୍ଷିତ ହୁଏ । ଗୋଟିଏ ହାର୍ମୋନିୟମ ବା ସିତାର ବାଦନ କଲା ବେଳେ ସ୍ୱର ମଧ୍ୟରେ ଏକ ସଂହତି ବା ଶୃଂଖଳା ପରିଲକ୍ଷିତ ହୋଇଥାଏ । ସଂଗୀତ, ବାଦ୍ୟ କ୍ଷେତ୍ରରେ ଯେଉଁ ସଂହତି ଓ ଶୃଂଖଳା ପରିଲକ୍ଷିତ ହୁଏ, ସେହି ଶୃଂଖଳାକୁ ପିଥାଗୋରାସ ସମଗ୍ର ବିଶ୍ୱ ପ୍ରତି ପ୍ରସାରିତ କରିଛନ୍ତି । ସଂଗୀତ, ବାଦ୍ୟ କ୍ଷେତ୍ରରେ ସ୍ୱର ବା ଧ୍ୱନି ଭିତରେ ଯେଉଁ ପାର୍ଥକ୍ୟ ଦେଖାଯାଏ, ତାହାର କାରଣ ସଂଖ୍ୟାମାନଙ୍କ

ମଧ୍ୟରେ ରହିଥିବା ଆନୁପାତିକ ପାର୍ଥକ୍ୟ ସହ ସମାନ ମନେହୁଏ । ସେହିପରି ବିଶ୍ୱରେ ଯାହା ସବୁ ପାର୍ଥକ୍ୟ ବା ବିବିଧତା ପରିଦୃଶ୍ୟ ହୁଏ ତାହାର ମୂଳ କାରଣ ସଂଖ୍ୟାଗତ ଆନୁପାତିକ ଭିନ୍ନତା ଯୋଗୁ ହୋଇଥାଏ । ମୋଟ ଉପରେ ସଂଗୀତ କ୍ଷେତ୍ରରେ ଯେଉଁ ସଂହତି ଓ ଶୃଙ୍ଖଳା ବିଦ୍ୟମାନ, ସେହି ସାଦୃଶ୍ୟରେ ସେ ବିଶ୍ୱର ସଂହତି ଓ ଶୃଂଖଳାକୁ ବ୍ୟକ୍ତ କରିବାକୁ ପ୍ରୟାସ କରିଛନ୍ତି । ତେବେ ଏହି ସଂହତିର ଆଧାର ହେଉଛି ସଂଖ୍ୟା । ତେଣୁ ବିଶ୍ୱର ମୂଳ ତତ୍ତ୍ୱ ହେଉଛି ସଂଖ୍ୟା ବୋଲି ପିଥାଗୋରାସ ମନେକରନ୍ତି ।

ଗଣିତ ବିଦ୍ୟାର ମୂଳ ଭିତ୍ତି ହେଉଛି ସଂଖ୍ୟା । ଗଣିତଶାସ୍ତ୍ର ଭିତରେ ଯେତେ ସବୁ ଶାଖା ବା କ୍ଷେତ୍ରମାନ ଅଧ୍ୟୟନ ପରିସରକୁ ଆସିଥାଏ, ସେସବୁର ମୂଳ ଆଧାର ମଧ୍ୟ ହେଉଛି ସଂଖ୍ୟା । ଗଣିତ ବିଦ୍ୟାର ମୂଳକୁ ଆସିଲେ ସଂଖ୍ୟାରେ ଉପନୀତ ହେବାକୁ ହେବ । ଗାଣିତିକ ସିଦ୍ଧାନ୍ତ କ୍ଷେତ୍ରରେ କୌଣସି ଅନିୟମିତତା ବା ବ୍ୟତିକ୍ରମ ପରିଦୃଶ୍ୟ ହୁଏ ନାହିଁ, ଏହାର ମୁଖ୍ୟ କାରଣ ଏହା ସ୍ୱରୂପରେ ସଂଖ୍ୟା ତତ୍ତ୍ୱ ଉପରେ ଆଧାରିତ ।

ପିଥାଗୋରାସଙ୍କ ଦର୍ଶନରେ ସଂଖ୍ୟା ହେଉଛି ମୂଳ ତତ୍ତ୍ୱ । ଏହି ମୂଳ ତତ୍ତ୍ୱକୁ ନେଇ ସେ ଜଗତର ବ୍ୟାଖ୍ୟା କରିବାକୁ ପ୍ରୟାସ କରିଛନ୍ତି । ସଂଖ୍ୟା ବିଶ୍ୱର ଏକ ମୌଳିକ ଭାବନା ଓ ବିଭିନ୍ନ ଚିନ୍ତନ କ୍ଷେତ୍ରରେ ଏହାର ମୌଳିକତା ସ୍ୱୀକାର୍ଯ୍ୟ । ତେବେ ପିଥାଗୋରାସ ଓ ତାଙ୍କ ଅନୁଗାମୀମାନେ ସଂଖ୍ୟା ତତ୍ତ୍ୱକୁ ବହୁ ସ୍ତରକୁ ବିସ୍ତାରିତ କରିଛନ୍ତି ଓ ଜଗତ ଯେ ସଂଖ୍ୟାରୁ ଉତ୍ପତ୍ତି ଏହି ପ୍ରକାରର ଏକ ତତ୍ତ୍ୱମୀମାଂସାର ଅବତାରଣା କରିଛନ୍ତି । ଥେଲିସ୍ ଯେପରି ଜଳକୁ ମୂଳ ତତ୍ତ୍ୱ ଭାବରେ ନେଇ ବିଶ୍ୱର ସୃଷ୍ଟି ଜଳରୁ ବୋଲି ଏକ ତାତ୍ତ୍ୱିକ ସିଦ୍ଧାନ୍ତ ଦେଇଛନ୍ତି, ପିଥାଗୋରାସ ସେହିପରି ସଂଖ୍ୟାକୁ ମୂଳ ତତ୍ତ୍ୱ ଭାବେ ସ୍ୱୀକାର କରି ବିଶ୍ୱର ଉତ୍ପତ୍ତି ସଂଖ୍ୟାରୁ ହୋଇଥିବା କହି ଏକ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତ ନିର୍ମାଣ କରିଛନ୍ତି । ତାଙ୍କ ଦର୍ଶନରେ ସଂଖ୍ୟା ହେଉଛି ମୂଳ ଉପାଦାନ ଓ ସେହି ଉପାଦାନରେ ବିଶ୍ୱ ସମ୍ଭବ ହୋଇପାରିଛି । ପୁନଶ୍ଚ ଏହିପରି ଏକ ସିଦ୍ଧାନ୍ତ ନିର୍ମାଣ ପରିପ୍ରେକ୍ଷୀରେ ପିଥାଗୋରାସ ନାନା କଳ୍ପନା ଓ ମନଗଢ଼ା ପ୍ରକଳ୍ପର ଅବତାରଣା କରିଛନ୍ତି । ପ୍ରଥମରେ ସେ କଳ୍ପନା କରିଛନ୍ତି ଯେ ସମସ୍ତ ସଂଖ୍ୟା ଏକକ ଭାବନାରୁ ଉଦ୍‌ଭବ ହୋଇଛି । ପ୍ରତ୍ୟେକ ସଂଖ୍ୟା କେତେକ ଏକକର ସମାହାର । ପୁନଶ୍ଚ ପ୍ରତ୍ୟେକ ସଂଖ୍ୟା ଯୁଗ୍ମ, ଅଯୁଗ୍ମ ଆଧାରରେ ବିଭାଜ୍ୟ, ଅର୍ଥାତ୍ ଗୋଟିଏ ସଂଖ୍ୟା ଯୁଗ୍ମ ଶ୍ରେଣୀର ହୋଇପାରେ କିମ୍ବା ଅଯୁଗ୍ମ ଶ୍ରେଣୀର ହୋଇପାରେ । ଯୁଗ୍ମ ଓ ଅଯୁଗ୍ମ ଭିତରେ ଯେପରି ଏକ ଦ୍ୱୈତତତ୍ତ୍ୱଜନିତ ଭିନ୍ନତା ରହିଛି ସେହିପରି ଜଗତରେ ଏହି ଦ୍ୱୈତ ବିଭେଦତା ରହିଆସିଛି । ଯୁଗ୍ମ ଅଯୁଗ୍ମ ଭିତରେ ଥିବା ଭିନ୍ନତା ବିଶ୍ୱରେ ଦ୍ୱୈତ ବିରୋଧତା ମଧ୍ୟରେ ବ୍ୟକ୍ତ ହୋଇଥିବା ଦେଖାଯାଏ । ଯୁଗ୍ମ ଓ ଅଯୁଗ୍ମ ଯେପରି ପରସ୍ପର ଭିତରେ ଭିନ୍ନତା ରଖେ, ସେହିପରି ବିଶ୍ୱରେ ବିଭିନ୍ନ ଦ୍ୱୈତ ପ୍ରତ୍ୟୟ ଭିତରେ ଭିନ୍ନତା ପରିଲକ୍ଷିତ ହୁଏ । ପୁନଶ୍ଚ ସଂଖ୍ୟାମାନ ଯେପରି ଯୁଗ୍ମ ଅଯୁଗ୍ମ ଭାବରେ ବିଭାଜିତ, ସେହିପରି ଜଗତ ପରସ୍ପର ବିରୋଧୀ ତତ୍ତ୍ୱକୁ ନେଇ ଗଠିତ । ଏହି ପରସ୍ପର ବିରୋଧୀ ତତ୍ତ୍ୱର ମୂଳାଧାର ହେଉଛି ଯୁଗ୍ମ ଅଯୁଗ୍ମ ସଂଖ୍ୟା ଭିତରର ପାର୍ଥକ୍ୟ । ଏକ ଯୁଗ୍ମ ସଂଖ୍ୟା ଦୁଇଦ୍ୱାରା ବିଭାଜ୍ୟ, ଏଣୁ ଏହା ଦ୍ୱୈତ-ବିଭାଜନ (bipartition) କ୍ଷେତ୍ରରେ କୌଣସି ସୀମା ନିର୍ଦ୍ଧାରଣ

କରିପାରିବ ନାହିଁ । ତେଣୁ ଏହା ଅସୀମ । ଏକ ଅଯୁଗ୍ମ ସଂଖ୍ୟା ଦୁଇଦ୍ୱାରା ବିଭାଜ୍ୟ ନୁହେଁ, ତେଣୁ ଏହା ଦ୍ୱୈତ-ବିଭାଜନ କ୍ଷେତ୍ରରେ ସୀମା ନିର୍ଦ୍ଧାରଣ କରିପାରିବ । ତେଣୁ ଏହାର ସୀମା ରହିଛି । ଏଣୁ ସୀମିତ ଓ ଅସୀମ (limited and unlimited) ଉଭୟ ବିଶ୍ୱର ଦୁଇ ମୌଳିକ ତତ୍ତ୍ୱ । ଯୁଗ୍ମ ଅଯୁଗ୍ମ ଭିତରର ପାର୍ଥକ୍ୟକୁ ନେଇ ପିଥାଗୋରାସ ବିଶ୍ୱର ଦଶଟି ବିରୋଧାଭାସ ଜନିତ ଦ୍ୱୈତ ସିଦ୍ଧାନ୍ତର ଅବତାରଣା କରିଛନ୍ତି । ପରସ୍ପର ବିରୋଧୀ ଏହି ଦଶଟି ଦ୍ୱୈତ ତତ୍ତ୍ୱକୁ ନେଇ ଜଗତର ଗଠନ ହୋଇଛି ବୋଲି ସେ ବିଚାର ଦେଇଛନ୍ତି । ସେହି ଦ୍ୱୈତ ତତ୍ତ୍ୱମାନ ହେଲା- (୧) ସସୀମ ବା ସୀମିତ ଓ ଅସୀମ, (୨) ଅଯୁଗ୍ମ ଓ ଯୁଗ୍ମ, (୩) ଏକ ଓ ଅନେକ, (୪) ଦକ୍ଷିଣ ଓ ବାମ (୫) ପୁଲିଙ୍ଗ ଓ ସ୍ତ୍ରୀଲିଙ୍ଗ (୬) ସ୍ଥିର ଓ ଗତିଶୀଳ (୭) ସଳଖ ଓ ବକ୍ର (୮) ଆଲୋକ ଓ ଅନ୍ଧକାର (୯) ଉତ୍ତମ ଓ ଅଶୁଭ ବା ମନ୍ଦ (୧୦) ବର୍ଗ ଓ ଆୟତ

ସଂଖ୍ୟା ଭାବନାରୁ ପିଥାଗୋରାସ ଜଗତର ଦଶଟି ବିରୋଧିତତ୍ତ୍ୱର ଅବତାରଣା କରିଛନ୍ତି । ପୁନଶ୍ଚ କୌଣସି ନିୟମକୁ ଅବଲମ୍ବନ ନକରି ସେ ମନମୁଖି ଭାବରେ ସଂଖ୍ୟା ମାନଙ୍କୁ ବିଭିନ୍ନ ବିଷୟର ପ୍ରତୀକ ଭାବରେ ନେଇଛନ୍ତି । ୧କୁ ବିନ୍ଦୁ, ୨କୁ ରେଖା, ୩କୁ ସମତଳ କ୍ଷେତ୍ର, ୪ କୁ କଠିନ, ୫କୁ ବାହ୍ୟିକ ଗୁଣ, ୬କୁ ସଜୀବତା (animation), ୭କୁ ବୁଦ୍ଧି, ସ୍ୱାସ୍ଥ୍ୟ, ପ୍ରେମ୍ ଓ ପ୍ରଜ୍ଞାର ପ୍ରତୀକ ଭାବରେ ଗ୍ରହଣ କରିଛନ୍ତି । କେଉଁ ସଂଖ୍ୟାକୁ କେଉଁ ବସ୍ତୁ, ଗୁଣ ବା ଭାବନାର ପ୍ରତିନିଧି ଭାବରେ ଗ୍ରହଣ କରାଯିବ ବା ତାହା ସହିତ ସଂଯୁକ୍ତ କରାଯିବ ତାହା ଏକ ମନଗଢ଼ା ବିଷୟ ଓ ତାହା ପଶ୍ଚାତରେ କୌଣସି ଯୁକ୍ତିଶୀଳ ଆଧାର ନାହିଁ । ତେବେ ପିଥାଗୋରାସ ଓ ତାଙ୍କର ଅନୁଗାମୀମାନଙ୍କ ମଧ୍ୟରେ ଏହି ପ୍ରସଙ୍ଗକୁ ନେଇ ମତପାର୍ଥକ୍ୟ ରହିଛି । କେଉଁ ସଂଖ୍ୟାକୁ କାହାର ପ୍ରତୀକ ଭାବରେ ନିଆଯିବ କିମ୍ବା କେଉଁ ଭାବନା ପ୍ରତି ପ୍ରୟୋଗ କରାଯିବ ସେ କ୍ଷେତ୍ରରେ ଏହି ମତପାର୍ଥକ୍ୟ ରହିବା ସ୍ୱାଭାବିକ, ଯେହେତୁ ଏହା ଏକ ମନଗଢ଼ା କାହାଣୀ ।

ସମାନକୁ ସମାନ ବା ଯେସାକୁ ତେସା ସଂଖ୍ୟାତତ୍ତ୍ୱର ଏକ ବ୍ୟାବହାରିକ ପ୍ରୟୋଗ । ସଂଖ୍ୟା ସ୍ତରରେ ଯେପରି ସମାନର ଭାବନା ରହିଛି ଯେପରି ୨+୨=୪ ବା ୩+୩=୬, ସେହି ଧାରାରେ "ନ୍ୟାୟ" ର ଭାବନାକୁ ବ୍ୟକ୍ତ କରାଯାଇଛି । ଯେ ଯେପରି କାର୍ଯ୍ୟ କରିବେ, ସେହି ସମାନ ପରିଣତି ତାଙ୍କୁ ନେବାକୁ ହେବ । ମୁଁ ଯଦି କାହାକୁ ଆଘାତ ଦେଲି, ତେବେ ମୋତେ ସେହିପ୍ରକାର ଆଘାତ ନେବାକୁ ହେବ, ଏହା ହିଁ ହେବ ନ୍ୟାୟର ଆଧାର । ନ୍ୟାୟକୁ ଏକ ସଂଖ୍ୟା ଭାବରେ ପ୍ରକାଶ କରିବାକୁ ଯାଇ ସମାନକୁ ସମାନର ଭାବନା ଭିତରେ ସେ ବ୍ୟାଖ୍ୟା କରିଛନ୍ତି ।

ସଂଖ୍ୟାକୁ ମୂଳତତ୍ତ୍ୱ ଭାବରେ ସ୍ୱୀକାର କଲାପରେ ସେହି ମୂଳତତ୍ତ୍ୱ ଆଧାରରେ ବିଶ୍ୱକୁ ବା ଜଗତର ଘଟଣା ପ୍ରବାହକୁ ବ୍ୟାଖ୍ୟା କରିବା ପାଇଁ ପିଥାଗୋରାସ ଓ ତାଙ୍କ ଅନୁଗାମୀ ମାନେ ପ୍ରୟାସ କରିଛନ୍ତି । ତତ୍ତ୍ୱମୀମାଂସୀୟ ଦାର୍ଶନିକମାନେ କୌଣସି ପ୍ରତ୍ୟୟକୁ ମୂଳତତ୍ତ୍ୱ ଭାବରେ ସ୍ୱୀକାର କରିବା ପରେ ସେହି ତତ୍ତ୍ୱ ଆଧାରରେ ସବୁ

କିଛିକୁ ବ୍ୟାଖ୍ୟା କରିବାକୁ ପ୍ରୟାସ କରିଥାନ୍ତି । ଏହା ଏକ ଦାର୍ଶନିକ ଧାରା । ସେହି ଧାରାରେ ପିଥାଗୋରାସ ସଂଖ୍ୟାକୁ ମୂଳ ସିଦ୍ଧାନ୍ତ ଭାବରେ ନେଇ ଏହାକୁ ବ୍ୟାପକ କ୍ଷେତ୍ରରେ ପ୍ରୟୋଗ କରିବାକୁ ପ୍ରୟାସ କରିଛନ୍ତି । ଜଗତର ମୂଳ ବସ୍ତୁ ବୋଲି ଅଗ୍ନି, ଜଳ, ବାୟୁ ଓ ଭୂମି ବା ପୃଥ୍ୱୀକୁ ଗ୍ରହଣ କରାଯାଉଥିଲା । ଏସବୁକୁ ମଧ ସଂଖ୍ୟା ମାଧ୍ୟମରେ ସୂଚାଇବାକୁ ଚେଷ୍ଟା କରିଛନ୍ତି । ଅଗ୍ନି ପିରାମିଡ ଆକାରର ବିନ୍ଦୁ ବା ଅଣୁଦ୍ୱାରା ସଂଯୋଜିତ । ସେହିପରି ବାୟୁ ଗୁଣଦ୍ୱାରା, ଜଳ କ୍ଷେତ୍ର ଦ୍ୱାରା ଓ ପୃଥ୍ୱୀ କଠିନଦ୍ୱାରା ସଂଯୋଜିତ । ୧ କୁ ବିନ୍ଦୁ, ୨କୁ ଗୁଣ, ୩କୁ କ୍ଷେତ୍ର ଓ ୪ କୁ କଠିନ ଭାବରେ ସେ ଦର୍ଶାଇଛନ୍ତି ଯାହାର ସୂଚନା ପୂର୍ବରୁ ପ୍ରଦାନ କରାଯାଇଛି । ବିଭିନ୍ନ ସଂଖ୍ୟାକୁ ବିଭିନ୍ନ ବସ୍ତୁ ସହିତ ସେ ସଂଯୁକ୍ତ କରି ସେମାନଙ୍କ ମଧ୍ୟରେ ଏକ ତାଦାତ୍ମ୍ୟ ସ୍ଥାପନ କରିଛନ୍ତି । ମୂର୍ତ୍ତ ବସ୍ତୁ ହେଉ ବା ଅମୂର୍ତ୍ତ (abstract) ଭାବନା ହେଉ ସେସବୁକୁ ତାଙ୍କର ମୂଳ ତତ୍ତ୍ୱ ସଂଖ୍ୟା ମାଧ୍ୟମରେ ବୁଝାଇବାକୁ ସେ ପ୍ରୟାସ କରିଛନ୍ତି । ଏହି ବ୍ୟାଖ୍ୟା ହୁଏତ କାଳ୍ପନିକ ବା ମନଗଢ଼ା ମନେ ହୋଇପାରେ । ତେବେ ତତ୍ତ୍ୱମୀମାଂସା କ୍ଷେତ୍ରରେ ଏହା ହିଁ ପ୍ରାୟତଃ ଦୃଷ୍ଟିଗୋଚର ହୁଏ । କୌଣସି ପ୍ରତ୍ୟୟକୁ ମୂଳତତ୍ତ୍ୱ ଭାବରେ ସ୍ୱୀକାର କରିବା ଓ ସେହି ଆଧାରରେ ଜଗତର ବ୍ୟାଖ୍ୟା ଦେବା ତତ୍ତ୍ୱମୀମାଂସାର ସ୍ୱରୂପ ଅଟେ ।

ପିଥାଗୋରାସଙ୍କ ଦାର୍ଶନିକ ପରିକଳ୍ପନା ମଧ୍ୟରେ "କେନ୍ଦ୍ରୀୟ ଅଗ୍ନି"ର ଏକ ଭାବନା ରହିଛି । ପୂର୍ବରୁ ରହିଥିବା ଏକ ଭାବନା ଅନୁଯାୟୀ ବିଶ୍ୱବ୍ରହ୍ମାଣ୍ଡର କେନ୍ଦ୍ରରେ ପୃଥିବୀ ରହିଛି । କିନ୍ତୁ ପିଥାଗୋରାସଙ୍କ ମତରେ ବିଶ୍ୱର ମଧ୍ୟଭାଗରେ ଏକ କେନ୍ଦ୍ରୀୟ ଅଗ୍ନି ରହିଛି ଓ ସେହି କେନ୍ଦ୍ରୀୟ ଅଗ୍ନି ଚତୁଃପାର୍ଶ୍ୱରେ ପୃଥିବୀ ଘୂର୍ଣ୍ଣାୟମାନ ହେଉଛି । ଏହିଠାରେ ହୁଏତ କେହି କଳ୍ପନା କରିପାରନ୍ତି ଯେ ଏହି କେନ୍ଦ୍ରୀୟ ଅଗ୍ନି ପ୍ରାୟ ସୂର୍ଯ୍ୟ ହେବେ ଯେହେତୁ ସୂର୍ଯ୍ୟଙ୍କ ଚତୁଃପାର୍ଶ୍ୱରେ ପୃଥିବୀ ପରିକ୍ରମା କରୁଛି । କିନ୍ତୁ ଏହି ମତ ଯଥାର୍ଥ ନୁହେଁ । ବରଂ ପିଥାଗୋରାସଙ୍କ ମତାନୁଯାୟୀ ସୂର୍ଯ୍ୟ ବି ଏହି କେନ୍ଦ୍ରୀୟ ଅଗ୍ନି ଚତୁଃପାର୍ଶ୍ୱରେ ଘୂରି ବୁଲୁଛି । ଅର୍ଥାତ୍ ବିଶ୍ୱ ବ୍ରହ୍ମାଣ୍ଡର କେନ୍ଦ୍ରରେ କେନ୍ଦ୍ରୀୟ ଅଗ୍ନି ରହିଛି ଓ ସେହି କେନ୍ଦ୍ରୀୟ ଅଗ୍ନି ଚତୁଃପାର୍ଶ୍ୱରେ ସୂର୍ଯ୍ୟ, ପୃଥିବୀ, ଗ୍ରହମାନ ପରିକ୍ରମା କରୁଛନ୍ତି । ଆମେ ସେହି କେନ୍ଦ୍ରୀୟ ଅଗ୍ନିକୁ ପର୍ଯ୍ୟବେକ୍ଷଣ କରିବା ସମ୍ଭବ ନୁହେଁ, କାରଣ ଆମେ ପୃଥିବୀର ଯେଉଁ ଭାଗରେ ରହିଛେ ତାହା ସବୁଦିନ ପାଇଁ କେନ୍ଦ୍ରୀୟ ଅଗ୍ନିର ବିପରୀତ ଭାଗରେ ରହିଛି । ପୃଥିବୀ କେନ୍ଦ୍ରୀୟ ଅଗ୍ନିର ଚତୁଃପାର୍ଶ୍ୱରେ ଓ ନିଜ ଅକ୍ଷ ପଥରେ ପରିକ୍ରମା କରୁଥିବାରୁ ଆମେ ସେହି ଅଗ୍ନିକୁ ଦେଖିବା ସମ୍ଭବ ନୁହେଁ । ଅର୍ଥାତ୍ ପୃଥିବୀର ଯେଉଁ ଭାଗରେ ଆମେ ସ୍ଥିତ, କେନ୍ଦ୍ରୀୟ ଅଗ୍ନି ତାହାର ବିପରୀତ ଭାଗରେ ସ୍ଥିତ ଥିବାରୁ ତାହାକୁ ଦେଖିବା ଆମ ପକ୍ଷରେ ସମ୍ଭବ ନୁହେଁ । ଏହି କେନ୍ଦ୍ରୀୟ ଅଗ୍ନିକୁ ପିଥାଗୋରାସ ଓ ତାଙ୍କର ଅନୁଗାମୀମାନେ 'ବିଶ୍ୱର ଅଗ୍ନିକୁଣ୍ଡ', 'ଇନ୍ଦ୍ର (ସ୍ୱର୍ଗର ଦେବତା) ର ଭବନ' ଇତ୍ୟାଦି ଭାଷାରେ ବ୍ୟକ୍ତ କରିଛନ୍ତି । କେନ୍ଦ୍ରୀୟ ଅଗ୍ନି ଏକ କଳ୍ପିତ ବସ୍ତୁ । ତେବେ ଏହିପରି ଏକ କଳ୍ପନାର ଅବତାରଣା ଭିତରେ ଏହାର ଅନ୍ୟାନ୍ୟ ଦୁଇଟି ତାତ୍ପର୍ଯ୍ୟ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ପ୍ରଥମରେ ପିଥାଗୋରାସଙ୍କର ସୃଷ୍ଟି-ବିଜ୍ଞାନ ଭାବନା ଭିତରେ ସେ ପୃଥିବୀ-କୈନ୍ଦ୍ରିକ ସ୍ଥିତିକୁ ଗ୍ରହଣ କରି ନାହାନ୍ତି । ତାଙ୍କ ପୂର୍ବରୁ ଭାବନା ରହିଥିଲା ଯେ ବିଶ୍ୱ ବ୍ରହ୍ମାଣ୍ଡର କେନ୍ଦ୍ରରେ ପୃଥିବୀ ଅବସ୍ଥିତ ରହିଛି । ଏପରିକି ପାଶ୍ଚାତ୍ୟ ଭୂଖଣ୍ଡରେ କୋପରନିକସ ଓ

ଗାଲିଲିଓଙ୍କ ଆବିର୍ଭାବ ପର୍ଯ୍ୟନ୍ତ ପୃଥିବୀ ହିଁ ବିଶ୍ୱ ବ୍ରହ୍ମାଣ୍ଡର କେନ୍ଦ୍ରରେ ରହିଛି ବୋଲି ଭାବନା ରହିଥିଲା । ପିଥାଗୋରାସଙ୍କର ଭାବନାକୁ ଆରିଷ୍ଟୋଟଲ ପ୍ରତ୍ୟାଖ୍ୟାନ କରି ପୃଥିବୀ-କୈନ୍ଦ୍ରିକ ବିଶ୍ୱର ଭାବନାକୁ ଦୃଢ଼ କଲେ ଓ ଖ୍ରୀଷ୍ଟିଆନ ଧର୍ମଧାରାରେ ମଧ୍ୟ ପୃଥିବୀ ସୃଷ୍ଟିର ମଧ୍ୟଭାଗରେ ରହିଥିବା ବିଶ୍ୱାସ ଦିଆଗଲା । ଦ୍ୱିତୀୟରେ ପିଥାଗୋରାସ ପୃଥିବୀ ଏକ ଗ୍ରହ ଓ ଏହା ଘୂର୍ଣ୍ଣୟମାନ ବୋଲି ଭାବନା ଦେଇଥିଲେ । ତେବେ ସୃଷ୍ଟିମୀମାଂସା କ୍ଷେତ୍ରରେ ପିଥାଗୋରାସଙ୍କ ଭାବନା ଥିଲା ଯେ ବିଶ୍ୱର କେନ୍ଦ୍ରରେ କେନ୍ଦ୍ରୀୟ ଅଗ୍ନି ରହିଛି ଓ ତାହାର ଚତୁଃପାର୍ଶ୍ୱରେ ଦଶ ଖଗୋଳୀୟ ପିଣ୍ଡ ଘୂର୍ଣ୍ଣୟମାନ ରହିଛନ୍ତି । ତାଙ୍କର ସୃଷ୍ଟିମୀମାଂସା କ୍ଷେତ୍ରରେ କେନ୍ଦ୍ରୀୟ ଅଗ୍ନି ଓ ଦଶ ଖଗୋଳୀୟ ପିଣ୍ଡର ପରିକଳ୍ପନା ରହିଛି । ସେହି ଖଗୋଳୀୟ ପିଣ୍ଡମାନ ହେଲେ-(୧) ପ୍ରତିଯୋଗୀ ପୃଥିବୀ (Counter-earth) । ପ୍ରତିଯୋଗୀ ପୃଥିବୀ ଏକ କାଳ୍ପନିକ ପିଣ୍ଡ । (୨) ପୃଥିବୀ (୩) ଚନ୍ଦ୍ର (୪) ସୂର୍ଯ୍ୟ (୫) ପାଞ୍ଚଟି ଗ୍ରହ (୬) ସ୍ଥିର ରହିଥିବା ତାରାମାନଙ୍କର ଆକାଶ । ଏହିପରି ଦଶଟି ଖଗୋଳୀୟ ପିଣ୍ଡକୁ ନେଇ ବିଶ୍ୱ ବ୍ରହ୍ମାଣ୍ଡର ପରିକଳ୍ପନା ପିଥାଗୋରାସ କରିଥିବା ଦେଖାଯାଏ । ତେବେ ତାଙ୍କ ବ୍ରହ୍ମାଣ୍ଡ-ତତ୍ତ୍ୱରେ କେତୋଟି ବିଷୟ ଗୁରୁତ୍ୱପୂର୍ଣ୍ଣ ମନେହୁଏ ଯଥା ପୃଥିବୀ ଏକ ଗ୍ରହ ଓ ପୃଥିବୀ ଘୂର୍ଣ୍ଣାୟମାନ । ତାଙ୍କର ଏହି ସୃଷ୍ଟିମୀମାଂସାକୁ ଆରିଷ୍ଟୋଟଲ ପ୍ରତ୍ୟାଖ୍ୟାନ କରି ଯେଉଁ ପୃଥିବୀ-କୈନ୍ଦ୍ରିକ ସୃଷ୍ଟିର ପରିକଳ୍ପନା କଲେ ତାହା ଦୀର୍ଘଦିନ ଧରି ବିଶ୍ୱାସ ସ୍ତରରେ ରହିଥିଲା । ପରେ ବିଜ୍ଞାନସମ୍ମତ ଭାବରେ କୋପରନିକସ ସୂର୍ଯ୍ୟ-କୈନ୍ଦ୍ରିକ ବ୍ରହ୍ମାଣ୍ଡର ପରିକଳ୍ପନା କରିବା ଦ୍ୱାରା ଆରିଷ୍ଟୋଟଲଙ୍କର ଭାବନା ମିଥ୍ୟା ପ୍ରମାଣିତ ହେଲା । କୋପରନିକସଙ୍କ ସୂର୍ଯ୍ୟ-କୈନ୍ଦ୍ରିକ ବିଶ୍ୱ ଭାବନାକୁ ପିଥାଗୋରାସଙ୍କ ପରିକଳ୍ପନା ପ୍ରଭାବିତ କରିଥିବା କେତେକ ଲେଖକ ମତ ବ୍ୟକ୍ତ କରିଥିବା ଦେଖାଯାଏ ।

ପିଥାଗୋରାସଙ୍କର ଅନ୍ୟ ଏକ ପରିକଳ୍ପନା ହେଉଛି "ବିଶାଳ ବର୍ଷ" (great year) । ଏହି ଭାବନା ଅନୁଯାୟୀ ପୃଥିବୀର ଉତ୍ପତ୍ତି ପରଠାରୁ ଏହା ଦଶ ହଜାର ବର୍ଷ ପର୍ଯ୍ୟନ୍ତ ତିଷ୍ଠି ରହେ ଓ ଦଶ ହଜାର ବର୍ଷ ପରେ ଏହାର ବିଲୟ ଘଟେ । ଏହି ପ୍ରକ୍ରିୟା ନିରନ୍ତର ଭାବେ ଚାଲିଥାଏ । ପ୍ରତି ଥର ଦଶହଜାର ବର୍ଷରେ ଏହାର ବିଲୟ ଘଟେ ଓ ପୁଣି ବିବର୍ତ୍ତନ ଧାରାରେ ଏହାର ଉତ୍ପତ୍ତି ହୁଏ । ପୃଥିବୀର ଉତ୍ପତ୍ତି, ବିଲୟ, ଉତ୍ପତ୍ତି ପ୍ରାୟ ଦଶହଜାର ବର୍ଷରେ ହୋଇଚାଲିଥାଏ । ତେବେ ଏହାର କୌଣସି ଯଥାଯଥ ବର୍ଣ୍ଣନା ବା ବ୍ୟାଖ୍ୟା ପିଥାଗୋରାସଙ୍କ ବିଚାରରେ ଦେଖିବାକୁ ମିଳେ ନାହିଁ, କେବଳ ଏହିପରି ଏକ କଳ୍ପନାର ସୂଚନା ମାତ୍ର ମିଳେ ।

ପିଥାଗୋରାସ ପୁନର୍ଜନ୍ମବାଦରେ ବିଶ୍ୱାସ କରୁଥିଲେ । ବ୍ୟକ୍ତିକୁ ବାରମ୍ବାର ଜନ୍ମ ନେବାକୁ ପଡିଥାଏ । ପ୍ରତ୍ୟେକ ବ୍ୟକ୍ତିର ଆତ୍ମା ରହିଛି ଓ ଆତ୍ମା ଶରୀରର ନଷ୍ଟ ସହ ନଷ୍ଟ ହୁଏ ନାହିଁ । ଆତ୍ମା ଜନ୍ମ-ମୃତ୍ୟୁ ଚକ୍ରରେ ଘୂରି ବୁଲୁଥାଏ । ମନୁଷ୍ୟ ଭଲ କର୍ମଦ୍ୱାରା ମନୁଷ୍ୟ ଜନ୍ମ ହୁଏ, ନଚେତ୍ ପଶୁ ଯୋନିରେ ଜନ୍ମ ନିଏ । ଶରୀର ଆତ୍ମାର କାରାଗାର ସଦୃଶ । ତେବେ ମନୁଷ୍ୟ ପ୍ରୟାସ ଦ୍ୱାରା ମୁକ୍ତି ପାଇପାରିବ । ମୁକ୍ତି ପାଇବା ଅର୍ଥ ଜନ୍ମଲାଭ ନକରିବା । ମୁକ୍ତି ପାଇବା ପାଇଁ ପିଥାଗୋରାସ ଦୁଇଟି ପନ୍ଥା ଦର୍ଶାଇଛନ୍ତି । ଏଥିପାଇଁ ପ୍ରଥମରେ ସେ କେତେକ ଧର୍ମୀୟ ଆଚାର

ଓ କର୍ମକାଣ୍ଡର ପରାମର୍ଶ ଦେଇଛନ୍ତି । ସଂଯମ, ସାଧନା, ଧାର୍ମିକ ସଂସ୍କାର, କର୍ମକାଣ୍ଡ ଇତ୍ୟାଦି ଦ୍ୱାରା ଜଣେ ମୁକ୍ତି ପାଇପାରିବ ଅର୍ଥାତ୍ ପୁନର୍ଜନ୍ମ ପ୍ରାପ୍ତ ହେବ ନାହିଁ । ଗ୍ରୀସ୍‌ରେ ପ୍ରଚଳିତ ଥିବା ଧର୍ମୀୟ ଭାବନାକୁ "ଅର୍ଫବାଦ" କୁହାଯାଏ । କାଳ୍ପନିକ ଚରିତ୍ର ଅର୍ଫେୟସଙ୍କ ନାମରେ ପ୍ରଚଳିତ ଥିବା ବିଭିନ୍ନ ମିଥ୍‌କୁ ଆଧାରକରି ସୃଷ୍ଟିର ରହସ୍ୟ, ପୁନର୍ଜନ୍ମବାଦ, ମନ୍ଦ କାର୍ଯ୍ୟ ପାଇଁ ମୃତ୍ୟୁପରେ ଦଣ୍ଡ ଭାବନାର ଯେଉଁ ବିଶ୍ୱାସ ରହିଥିଲା ସେଥିରେ ପିଥାଗୋରାସଙ୍କର ବିଶ୍ୱାସ ଦୃଢ଼ ଥିଲା । ଧାର୍ମିକ ଜୀବନ ବଞ୍ଚିବା ପାଇଁ ଅର୍ଫବାଦରେ ବିଭିନ୍ନ ଆରାଧନା, ପ୍ରାର୍ଥନା ଓ କର୍ମକାଣ୍ଡର ବିବରଣୀ ରହିଥିଲା । ପିଥାଗୋରାସ ଏଥିରେ ଗଭୀର ଭାବରେ ପ୍ରଭାବିତ ହୋଇ ମୁକ୍ତି ପାଇଁ ଏହି ଧର୍ମୀୟ ପନ୍ଥା ଉପରେ ଗୁରୁତ୍ୱ ଦେଇଥିଲେ । ସେହିପରି ଧର୍ମୀୟଧାରାର ସଂଯମତା, ସଂସ୍କାର ଓ କର୍ମକାଣ୍ଡ ବ୍ୟତୀତ ସେ ମୁକ୍ତି ପାଇଁ ଏକ ଦ୍ୱିତୀୟ ସାଧନର ଭାବନା ଦେଇଥିଲେ । ଏହାନୁଯାୟୀ ବୌଦ୍ଧିକ ଚିନ୍ତନ, ବିଶ୍ୱର ମୌଳିକ ସତ୍ତା ବିଷୟରେ ଅନୁଶୀଳନ ତଥା ବୈଜ୍ଞାନିକ ଓ ଦାର୍ଶନିକ ଜିଜ୍ଞାସା ଦ୍ୱାରା ମଧ୍ୟ ଜଣେ ମୁକ୍ତି ଲାଭ କରିପାରିବ । ପିଥାଗୋରାସ ଓ ତାଙ୍କର ଅନୁଗାମୀ ମାନେ ଗ୍ରୀସ୍‌ରେ ପ୍ରଚଳିତ ଥିବା ଧାର୍ମିକ ବିଶ୍ୱାସ ଓ କର୍ମକାଣ୍ଡ ସହିତ ଏକ ବୌଦ୍ଧିକ ପନ୍ଥାକୁ ମୁକ୍ତିର ସାଧନ ଭାବେ ଗ୍ରହଣ କରିବା ଉଲ୍ଲେଖନୀୟ ଅଟେ । ଶରୀରରୁ ଆତ୍ମାର ମୁକ୍ତି ପାଇଁ ପିଥାଗୋରୀୟ ମାନେ ବେଶ୍ ଚିନ୍ତା ପ୍ରକଟ କରୁଥିଲେ ଓ ଏ ସମ୍ବନ୍ଧୀୟ ଭାବନାକୁ ନିର୍ଦ୍ଦିଷ୍ଟ ରୂପରେଖ ଦେଇଥିଲେ । ଧାର୍ମିକ ପଦ୍ଧତି ଓ ବୌଦ୍ଧିକ ଜିଜ୍ଞାସା ଯେ ମୁକ୍ତିର ସାଧନ ଏହା ସେମାନେ ବିଶ୍ୱାସ କରୁଥିଲେ । ତେବେ ଏ କ୍ଷେତ୍ରରେ ଆତ୍ମହତ୍ୟାକୁ ପିଥାଗୋରୀୟମାନେ ଅସ୍ୱୀକାର କରିଛନ୍ତି । ଆତ୍ମହତ୍ୟା ଦ୍ୱାରା ଶରୀରଠାରୁ ଆତ୍ମା, ପୃଥକ୍ ହେଉଥିଲେ ମଧ୍ୟ ଆତ୍ମହତ୍ୟା ମୁକ୍ତିର ପନ୍ଥା ହୋଇନପାରେ । ସେମାନଙ୍କର ବିଶ୍ୱାସ ଥିଲା ଯେ ମନୁଷ୍ୟ ହେଉଛି ଈଶ୍ୱରଦତ୍ତ ସତ୍ତା ଓ ଆତ୍ମହତ୍ୟା ଦ୍ୱାରା ଈଶ୍ୱରଙ୍କ କାର୍ଯ୍ୟ ପ୍ରତି ଅବମାନନା ହେବ । ସୁତରାଂ ମୁକ୍ତି ପାଇଁ ଧର୍ମୀୟ ସାଧନ କିମ୍ବା ବୌଦ୍ଧିକ ଅନୁଶୀଳନ ହିଁ ସାଧନ ହୋଇପାରିବ ।

ସାଧନା ଓ ଜ୍ଞାନର ଦୃଷ୍ଟିକୋଣରୁ ପିଥାଗୋରାସ ଲୋକମାନଙ୍କୁ ତିନି ଶ୍ରେଣୀରେ ବିଭକ୍ତ କରିଛନ୍ତି । ଏହାକୁ ସେ ଅଲଂପିକ୍ ଖେଳକୁ ଆସୁଥିବା ଲୋକମାନଙ୍କ ସହ ତୁଳନା କରିଛନ୍ତି । ଗ୍ରୀସ୍‌ରେ ସେ ସମୟରେ ଅଲଂପିକ୍ କ୍ରୀଡା ଅନୁଷ୍ଠିତ ହେଉଥିଲା ଓ ଗ୍ରୀସ୍‌ର ବିଭିନ୍ନ ଭୂଖଣ୍ଡରୁ ଲୋକମାନେ ଏଥିରେ ଯୋଗଦେବାକୁ ଆସୁଥିଲେ । ଅଲଂପିକ୍ ଖେଳକୁ କିଣା-ବିକା କରିବା ଉଦ୍ଦେଶ୍ୟରେ ଯେଉଁ ଲୋକମାନେ ଆସୁଥିଲେ ସେମାନଙ୍କୁ ସେ ନିମ୍ନତମ ଶ୍ରେଣୀର ବ୍ୟକ୍ତି କହିଛନ୍ତି । ଖେଳରେ ଭାଗନେବାକୁ ଯେଉଁମାନେ ଆସୁଥିଲେ ସେହି ଖେଳାଳିମାନଙ୍କୁ ସେ ମଧ୍ୟମ ଶ୍ରେଣୀର ବ୍ୟକ୍ତି ଭାବେ ନେଇଛନ୍ତି । ଯେଉଁ ଲୋକମାନେ ଖେଳ ଦେଖି ଉପଭୋଗ କରିବା ପାଇଁ ଆସୁଥିଲେ ସେ ସେମାନଙ୍କୁ ଅର୍ଥାତ୍ ଦର୍ଶକମାନଙ୍କୁ ଉତ୍ତମ ଶ୍ରେଣୀର ବ୍ୟକ୍ତି ଭାବେ ନେଇଛନ୍ତି । ଏହି ସାଦୃଶ୍ୟରେ ସେ ଲୋକମାନଙ୍କୁ ମଧ୍ୟ ତିନି ଶ୍ରେଣୀରେ ବିଭକ୍ତ କରିଛନ୍ତି । ଯେଉଁମାନେ ଧନ, ସଂପତ୍ତି ପ୍ରତି ଆସକ୍ତ ସେମାନଙ୍କୁ ବିଷୟାସକ୍ତ କହିଛନ୍ତି, ଯେଉଁମାନେ କି ନିକୃଷ୍ଟ ଶ୍ରେଣୀର । ଯେଉଁମାନେ ଯଶ ଓ ଖ୍ୟାତି ପାଇଁ ଅତ୍ୟନ୍ତ ଲାଳାୟିତ, ସେମାନଙ୍କୁ ପିଥାଗୋରାସ ମଧ୍ୟମ ଶ୍ରେଣୀର ବ୍ୟକ୍ତି କହିଛନ୍ତି । ଏମାନେ ଦ୍ୱିତୀୟ ଶ୍ରେଣୀର । ଯେଉଁ ଲୋକମାନେ ସର୍ବଦା ଜ୍ଞାନ

ବିଜ୍ଞାନ, ଦର୍ଶନ ଚର୍ଚ୍ଚାରେ ନିମଗ୍ନ ରହନ୍ତି ଓ ବୌଦ୍ଧିକ ଜୀବନ ଅତିବାହିତ କରନ୍ତି ସେମାନଙ୍କୁ ପିଥାଗୋରାସ ଉତ୍ତମ ଶ୍ରେଣୀର ବ୍ୟକ୍ତି ବୋଲି ଅଭିହିତ କରିଛନ୍ତି । ଏମାନେ ହେଲେ ତୃତୀୟ ଶ୍ରେଣୀର ବ୍ୟକ୍ତି ଓ ଏମାନଙ୍କୁ ସେ ଜ୍ଞାନପ୍ରେମୀ ବୋଲି କହିଛନ୍ତି । ଅର୍ଥାତ୍ ଲୋକମାନଙ୍କୁ ଧନପ୍ରେମୀ, ଯଶପ୍ରେମୀ ଓ ଜ୍ଞାନପ୍ରେମୀ ଭାବରେ ସେ ତିନି ଶ୍ରେଣୀରେ ବିଭକ୍ତ କରିଛନ୍ତି ।

ଅର୍ଫିବାଦରେ ପବିତ୍ର ଜୀବନ ଉପରେ ଯେଉଁ ଗୁରୁତ୍ୱ ଦିଆଯାଇଛି ତାହାକୁ ପିଥାଗୋରାସ ଗ୍ରହଣ କରି ଏକ ଶୁଦ୍ଧପୂତ ଜୀବନ ଉପରେ ପ୍ରାଧାନ୍ୟ ଦେଇଛନ୍ତି । ଆତ୍ମାର ମୁକ୍ତି ପାଇଁ ଆତ୍ମଶୁଦ୍ଧି ଯେ ଆବଶ୍ୟକ ଏହା ଭାବିଛନ୍ତି । ଶୁଦ୍ଧିକରଣ ବାହ୍ୟିକ ହୋଇପାରେ, ଆନ୍ତରିକ ମଧ ହୋଇପାରେ । ବାହ୍ୟ ଶୁଦ୍ଧି କ୍ଷେତ୍ରରେ ସେ ସଂଯମତା ଓ ମିତାହାରକୁ ଗୁରୁତ୍ୱ ଦେଇଛନ୍ତି । ଆତ୍ମ ଶୁଦ୍ଧି ପାଇଁ ଭକ୍ତି, ଉପାସନା ଓ ସଂଗୀତ ଉପରେ ପ୍ରାଧାନ୍ୟ ରଖିଛନ୍ତି । ପିଥାଗୋରାସ ମୋଟଉପରେ ଏକ ଶୁଦ୍ଧ ପୂତ ଜୀବନକୁ ତାଙ୍କ ବିଚାର କ୍ଷେତ୍ରରେ ବହୁ ଗୁରୁତ୍ୱ ପ୍ରଦାନ କରିଛନ୍ତି ।

ଦର୍ଶନ ଇତିହାସକାରମାନେ ପିଥାଗୋରସଙ୍କ ଦର୍ଶନର ଆଲୋଚନା କଲା ବେଳେ ତାଙ୍କୁ କଟୁ ସମାଲୋଚନା କରିଛନ୍ତି । ଏହାକୁ କେତେକ ଅବିଶୁଦ୍ଧ ଓ ଅବିକଶିତ ଦର୍ଶନ ବୋଲି ବିଚାର କରିଛନ୍ତି । ସେ ସଂଖ୍ୟାକୁ ଯେପରି ମୂଳତତ୍ତ୍ୱ ଭାବେ ଗ୍ରହଣ କରି ସଂଖ୍ୟାମାନଙ୍କୁ ବିଭିନ୍ନ କ୍ଷେତ୍ରରେ ପ୍ରୟୋଗ କରିଛନ୍ତି ତାହାକୁ ସାଂଖ୍ୟିକ ବା ଅଙ୍କ ଶାସ୍ତ୍ରୀୟ ରହସ୍ୟବାଦ (arithmetical mysticism) ବୋଲି ଆଖ୍ୟା ଦିଆଯାଉଛି । ପିଥାଗୋରାସ ଚିନ୍ତାଧାରାର ସାଧାରଣ ଲକ୍ଷଣକୁ ସଂଖ୍ୟା ସହିତ ସଂଯୁକ୍ତ କରି କେବଳ କାଳ୍ପନିକ ଚିତ୍ର ପ୍ରଦାନ କରିଛନ୍ତି । ନିର୍ଦ୍ଦିଷ୍ଟ ସଂଖ୍ୟା ମାନଙ୍କୁ ବିଚାରଧାରାର ସାମାନ୍ୟ ଲକ୍ଷଣ ସହିତ ସଂଯୁକ୍ତ କରିବା ଦ୍ୱାରା ଏକ କାଳ୍ପନିକ ଓ ମନଗଢ଼ା ବ୍ୟାଖ୍ୟାନର ସୂତ୍ରପାତ ହେଉଛି । ଏଥିରେ କୌଣସି ତର୍କସଂଗତ ବ୍ୟାଖ୍ୟାନର ଚିତ୍ର ନାହିଁ । 'ଏକ' କୁ ସରଳ ଓ ଅବ୍ୟବହିତ ବୋଲି ନେବା, 'ଦୁଇ' କୁ ମଧ୍ୟସ୍ଥତା ଓ ବ୍ୟବହିତ ବୋଲି ଗ୍ରହଣ କରିବା ଓ 'ତିନି' କୁ ଏ ଉଭୟର ସଂଯୋଗ ବା ଐକ୍ୟ ଭାବରେ ବ୍ୟକ୍ତ କରିବା କ୍ଷେତ୍ରରେ ପିଥାଗୋରାସ ସଂଖ୍ୟାମାନଙ୍କୁ ଯେପରି ସଂଯୁକ୍ତ କରାଇଛନ୍ତି ତାହା ପଶ୍ଚାତରେ କୌଣସି କାରଣ ନିହିତ ନାହିଁ । ନିଶ୍ଚିତ ସଂଖ୍ୟାମାନଙ୍କୁ ନିଶ୍ଚିତ ଭାବନା ସହ ସମ୍ବନ୍ଧିତ କରିବା କ୍ଷେତ୍ରରେ କୌଣସି ନିୟମ ନାହିଁ କିମ୍ବା ସେ କୌଣସି ଯୁକ୍ତିର ଅବତାରଣା କରିନାହାଁନ୍ତି । ଏହା କେବଳ କଳ୍ପନା ଉପରେ ଆଧାରିତ । ଗଣନ ବା ମୌଳିକ ସଂଖ୍ୟାମାନଙ୍କୁ ଏପରି ବ୍ୟକ୍ତ କରିବା ଏକ ମନୋରଂଜନ ହୋଇପାରେ । କାରଣ ସଂଖ୍ୟାମାନ ନିର୍ଦ୍ଦିଷ୍ଟ ଭାବନାକୁ ବ୍ୟକ୍ତ କରିବା କ୍ଷେତ୍ରରେ ସେପରି କିଛି ଆଧାର ନାହିଁ । ପିଥାଗୋରାସଙ୍କ ସଂଖ୍ୟା ସିଦ୍ଧାନ୍ତ ଭିତରେ ତର୍କସଂଗତ ବିଶ୍ଲେଷଣ ପରିବର୍ତ୍ତେ କେବଳ ରହସ୍ୟବାଦ ରହିଥିବା ମନେହୁଏ । ଦାର୍ଶନିକ ବ୍ୟାଖ୍ୟାନ କ୍ଷେତ୍ରରେ କିଛି ଯୁକ୍ତିସଂଗତ କାରଣ ରହିଥାଏ । ସେହି ଯୁକ୍ତି ହୁଏତ ବୈଧ ନ ହୋଇପାରେ । ତେବେ ଯୁକ୍ତି ପରିବର୍ତ୍ତେ ବିଶ୍ୱାସ ବା କଳ୍ପନାର ପ୍ରାଧାନ୍ୟ ରହିଲେ ସେଠାରେ ରହସ୍ୟବାଦ ଆସିଥାଏ । ଏହି ଦୃଷ୍ଟିରୁ ପିଥାଗୋରାସ ଓ ତାଙ୍କ ଅନୁଗାମୀମାନଙ୍କ ବିଚାରରେ ରହସ୍ୟବାଦର ଚିତ୍ର ଦେଖିବାକୁ ମିଳେ ।

ଅବଶ୍ୟ ଏଥିରୁ ଏହା ବିଚାର କରିବା ଯଥାର୍ଥ ନୁହେଁ ଯେ ପିଥାଗୋରାସ ଓ ତାଙ୍କ ଅନୁଗାମୀମାନଙ୍କର ଦର୍ଶନ ବା ଜ୍ଞାନ କ୍ଷେତ୍ରକୁ କୌଣସି ମହତ୍ତ୍ୱପୂର୍ଣ୍ଣ ଅବଦାନ ନାହିଁ । ବରଂ ଗଣିତ, ବିଜ୍ଞାନ ଓ ଦର୍ଶନ କ୍ଷେତ୍ରର ବିକାଶ ପାଇଁ ତାଙ୍କ ବିଚାର ଅନେକ ପ୍ରେରଣା ଯୋଗାଇଛି । ସେ ସୀମିତ ଓ ଅସୀମିତ କ୍ଷେତ୍ରରେ ଯେଉଁ ଭାବନାର ଅବତାରଣା କରିଥିଲେ ତାହା ପରବର୍ତ୍ତୀ କାଳରେ କେତେକ ଦାର୍ଶନିକ ସିଦ୍ଧାନ୍ତ ବିକାଶ କ୍ଷେତ୍ରରେ ନୂଆ ଦିଗନ୍ତ ସୃଷ୍ଟି କରିଛି । ପ୍ଲେଟୋ ଓ ଆରିଷ୍ଟୋଟଲଙ୍କର ଦ୍ରବ୍ୟତତ୍ତ୍ୱ ଓ ଆକାରତତ୍ତ୍ୱର ବିକାଶ ପାଇଁ ପିଥାଗୋରାସଙ୍କର ବିଚାର ପଥ ଦେଖାଇଛି । ତାଙ୍କର 'କେନ୍ଦ୍ରୀୟ ଅଗ୍ନି' ଭାବନା ପଢ଼ିବା ପରେ କୋପରନିକସଙ୍କୁ ଏହି ସୂଚନା ମିଳିଛି ଯେ ବିଶ୍ୱର କେନ୍ଦ୍ର ପୃଥିବୀ ନୁହେଁ । କୋପରନିକସଙ୍କ ସୂର୍ଯ୍ୟ-କୈନ୍ଦ୍ରିକ ବିଶ୍ୱର ପରିକଳ୍ପନାକୁ ରୂପ ଦେବାରେ ପିଥାଗୋରାସଙ୍କ ଚିନ୍ତନ ପଥ ଦେଖାଇଛି । ସେହିପରି ଇଉକ୍ଲିଡଙ୍କର ଜ୍ୟାମିତିର ସିଦ୍ଧାନ୍ତମାନ ନିର୍ମାଣ କରିବା କ୍ଷେତ୍ରରେ ପିଥାଗୋରାସଙ୍କର ଯଥେଷ୍ଟ ଅବଦାନ ରହିଛି । ଏପରିକି ପିଥାଗୋରାସ କେତେକ ଜ୍ୟାମିତିକ ଉପପାଦ୍ୟର ସୂତ୍ର ଦେଇଛନ୍ତି ଯାହାକୁ ଭିତ୍ତିକରି ପରବର୍ତ୍ତୀ ସମୟରେ ଇଉକ୍ଲିଡ ଜ୍ୟାମିତିଶାସ୍ତ୍ରର ବିକାଶ କରିଛନ୍ତି । ତାଙ୍କର ସଂଖ୍ୟାତତ୍ତ୍ୱର ଗଭୀର ଅଧ୍ୟୟନ ଗାଣିତିକ ଜ୍ଞାନ ବିକାଶର ଯେ ମୂଳସୂତ୍ର ଏହା କୁହାଯାଇପାରେ । ଏ କ୍ଷେତ୍ରରେ ପିଥାଗୋରାସ ପଥପ୍ରଦର୍ଶକ ମନେହୁଅନ୍ତି ।

ପିଥାଗୋରାସଙ୍କର ଏକ ବଡ ଅବଦାନ ହେଉଛି ଯେ ସେ ପ୍ରଥମେ "ଫିଲୋସଫି" ଶବ୍ଦର ପ୍ରୟୋଗ କରିଥିଲେ । ଯେଉଁ ବୌଦ୍ଧିକ କ୍ଷେତ୍ରକୁ ଦର୍ଶନ ବା ଫିଲୋସଫି କୁହାଯାଉଛି ତାହା ପ୍ରଥମେ ତାଙ୍କଦ୍ୱାରା ପରିଭାଷିତ ହୋଇଥିଲା । ଗଣିତଶାସ୍ତ୍ର, ଧ୍ୱନିଶାସ୍ତ୍ର, ଦର୍ଶନଶାସ୍ତ୍ର ଓ ନକ୍ଷତ୍ର ଶାସ୍ତ୍ରର ବିକାଶର ପଥପ୍ରଦର୍ଶକ ଭାବରେ ପିଥାଗୋରାସଙ୍କୁ ସ୍ୱୀକାର କରାଯାଏ । ଏତଦ୍‌ବ୍ୟତୀତ, ଧାର୍ମିକ ସଂପ୍ରଦାୟର ପ୍ରତିଷ୍ଠା, ସମାଜ ସଂସ୍କାର ଓ ଏକ ନୀତିପୂର୍ଣ୍ଣ ଜୀବନ ପାଇଁ ତାଙ୍କର ଅବଦାନ ମଧ୍ୟ ସର୍ବଜନବିଦିତ । ବିଶ୍ୱର ମୌଳିକ ଚିନ୍ତକମାନଙ୍କ ମଧ୍ୟରେ ପିଥାଗୋରାସଙ୍କୁ ସ୍ଥାନିତ କରାଯାଏ । ସଭ୍ୟତାର କ୍ରମବିକାଶ ସହ ଜ୍ଞାନ ବିଜ୍ଞାନ କ୍ଷେତ୍ରରେ ଅଭୂତପୂର୍ବ ବିକାଶ ପାଇଁ ଯେଉଁମାନେ ପ୍ରଥମେ ଉଦ୍ୟମ କରିଛନ୍ତି ସେମାନଙ୍କ ମଧ୍ୟରେ ସେ ସ୍ଥାନ ପାଇଥାନ୍ତି । ତାଙ୍କର ଅନେକ ସିଦ୍ଧାନ୍ତ ରହସ୍ୟମୟ, କାଳ୍ପନିକ ଓ ଭ୍ରମାତ୍ମକ ହେଲେ ମଧ୍ୟ ସେ ଯେ ବିଭିନ୍ନ କ୍ଷେତ୍ରରେ ଚିନ୍ତାର ବୀଜ ବପନ କରିଛନ୍ତି ଏହା ଅନସ୍ୱୀକାର୍ଯ୍ୟ ।

## ୪.୨ ହେରାକ୍ଲାଇଟସ (Heracleitus)

**ଜୀବନୀ :-** ହେରାକ୍ଲାଇଟସଙ୍କର ଜନ୍ମ ଏସିଆ ମାଇନର ଅନ୍ତର୍ଗତ ଇଫିସସ୍ ସହରରେ ଖ୍ରୀ.ପୂ. ୫୩୫ ରେ ହୋଇଥିଲା ଓ ତାଙ୍କର ଦେହାନ୍ତ ଖ୍ରୀ.ପୂ. ୪୭୫ ରେ ହୋଇଥିବା କୁହାଯାଏ । ସେ ପାର୍ମେନିଡୀସଙ୍କର ସମସାମୟିକ ଓ ଜେନୋଙ୍କର ପୂର୍ବବର୍ତ୍ତୀ ଥିଲେ । ହେରାକ୍ଲାଇଟସଙ୍କର ଜନ୍ମ ଏକ ସଂଭ୍ରାଂତ ପରିବାରରେ ହୋଇଥିଲା, କାରଣ ତାଙ୍କ ବାପା ଇଫିସସ୍ ସହରର ବହୁ ପ୍ରଭାବଶାଳୀ ବ୍ୟକ୍ତି ଥିଲେ । ତାଙ୍କ ବାପାଙ୍କ ପରେ ତାଙ୍କୁ ରାଜକୀୟ ପଦବୀ ମିଳିଥିଲା, ତେବେ ପିଲାଟି ସମୟରୁ ବୈରାଗ୍ୟ ସ୍ୱଭାବର ବ୍ୟକ୍ତି ଥିବା ହେତୁ ସେ ଏହି ପଦବୀ ଗ୍ରହଣ ନକରି ତାଙ୍କ

ସାନ ଭାଇଙ୍କୁ ଏହା ଅର୍ପଣ କରିଥିବା କୁହାଯାଏ । ଜୀବନସାରା ସେ ଅର୍ଥ, ପଦ-ପଦବୀ ପ୍ରତି ନିସ୍ପୃହ ଥିଲେ । ଏକ ନିଃସଙ୍ଗ ଜୀବନ ପ୍ରତି ତାଙ୍କର ଆଗ୍ରହ ଥିଲା ଓ ସଙ୍ଗହୀନ ତଥା ନିର୍ଜନ ଭାବରେ ବଞ୍ଚିବାକୁ ସେ ଭଲ ପାଉଥିଲେ । ସାଧାରଣ ଲୋକଙ୍କ ପ୍ରତି ତାଙ୍କର ବିଦ୍ୱେଷ ରହିଥିଲା ଓ ଏପରିକି ତାଙ୍କ ସମୟର ବୁଦ୍ଧିଜୀବୀଙ୍କୁ ସେ ନ୍ୟୂନ ଦୃଷ୍ଟିରେ ଦେଖୁଥିଲେ । ସେଥିପାଇଁ ସେ କେବେ ରାଜନୈତିକ କାର୍ଯ୍ୟ ପ୍ରତି ଆଗ୍ରହୀ ନ ଥିଲେ ଓ ଏକ ସିନିକ୍ ପ୍ରକୃତିର ବ୍ୟକ୍ତି ଥିଲେ ।

ସେ "ପ୍ରକୃତି" ଶିରୋନାମାରେ ଏକ ଗ୍ରନ୍ଥ ରଚନା କରିଥିଲେ । ତାଙ୍କର ଦାର୍ଶନିକ ବିଚାର ଓ ପଦ୍ଧତି କିଛିଟା ଅସ୍ପଷ୍ଟ ଭାବରେ ଏଥିରେ ବ୍ୟକ୍ତ ହୋଇଥିଲା । ସେ ତାଙ୍କ ଭାବନାକୁ ବିରୋଧାଭାସ ଶୈଳୀରେ ଓ ବେଳେ ବେଳେ ଦୁର୍ବୋଧ୍ୟ ଭାବରେ ବ୍ୟକ୍ତ କରୁଥିଲେ । ତାଙ୍କର ବିଚାରଧାରାକୁ ସେ ସୂତ୍ର ରୂପରେ ପ୍ରକାଶ କରୁଥିବା ହେତୁ ସେଥିରେ ବହୁ ଅସ୍ପଷ୍ଟତା ରହୁଥିଲା । ତାଙ୍କର ସିଦ୍ଧାନ୍ତମାନ ସ୍ପଷ୍ଟ ଭାବରେ ବ୍ୟକ୍ତ ନ ହେବା ଯୋଗୁ ତାଙ୍କୁ କେତେକ "ତିମିର ଦାର୍ଶନିକ" ବୋଲି ଅଭିହିତ କରୁଥିଲେ । ସେ ଜାଣିଶୁଣି ତାଙ୍କର ଭାବନା ମାନଙ୍କୁ ଅତ୍ୟନ୍ତ ଦୁଃରୁହ ଓ ଅସ୍ପଷ୍ଟ କରି ବ୍ୟକ୍ତ କରୁଥିବା ଅଭିଯୋଗ ତାଙ୍କ ନାମରେ ହୋଇଥିବା ଜଣାଯାଏ । ତାଙ୍କର କୃତି ଗଦ୍ୟଶୈଳରେ ରଚିତ ହୋଇଥିଲା ଓ ସକ୍ରେଟିସ୍ ଓ ଆରିଷ୍ଟୋଟଲଙ୍କ ପର୍ଯ୍ୟନ୍ତ ଏହା ପୂରା ଉପଲବ୍ଧ ଥିଲା । ତେବେ ପରବର୍ତ୍ତୀ ସମୟରେ ତାଙ୍କ ଲେଖାର କିଛି ଅଂଶମାନ ଦେଖିବାକୁ ମିଳେ । ତତ୍ତ୍ୱମୀମାଂସା, ସୃଷ୍ଟିବିଜ୍ଞାନ ଓ ନୀତିଦର୍ଶନ କ୍ଷେତ୍ରକୁ ତାଙ୍କର ମୌଳିକ ଅବଦାନ ଥିବା ଜଣାଯାଏ ।

**ତତ୍ତ୍ୱମୀମାଂସା:-** ହେରାକ୍ଲାଇଟସଙ୍କ ଦାର୍ଶନିକ ସିଦ୍ଧାନ୍ତ ଇଲୀୟ ମାନଙ୍କ ସିଦ୍ଧାନ୍ତର ସଂପୂର୍ଣ୍ଣ ବିପରୀତ ମନେହୁଏ । ଇଲୀୟ ବିଚାରଧାରାରେ ସତ୍ତାର ଅସ୍ତିତ୍ୱ ଶାଶ୍ୱତ ବା ଚିରନ୍ତନ । ସତ୍ତାକୁ ସେମାନେ "ବିଙ୍ଗ୍" ବୋଲି ମନେକରନ୍ତି, ଯାହା ଅପରିବର୍ତ୍ତନୀୟ । ଯାହା ପରିବର୍ତ୍ତନଶୀଳ ତାହା 'ନନ୍-ବିଙ୍ଗ୍' ବା ବିକମିଙ୍ଗ୍ । ଯାହା ବିକମିଙ୍ଗ୍ ତାହା ଭ୍ରମ ବା ମାୟା । କିନ୍ତୁ ହେରାକ୍ଲାଇଟସଙ୍କ ମତରେ ସଂସାରରେ ସବୁ କିଛି ପରିବର୍ତ୍ତନଶୀଳ । ପରିବର୍ତ୍ତନଶୀଳତା ଜଗତର ଧର୍ମ । ସଂସାରରେ ଯାହା କିଛି ଅଛି ସବୁ ଅସ୍ଥାୟୀ । "ସ୍ଥାୟିତ୍ୱ" "ଶାଶ୍ୱତ" ଭ୍ରମାତ୍ମକ ଭାବନା । ସବୁ କିଛି ଗତିଶୀଳ, ଅସ୍ଥାୟୀ ଓ ପରିବର୍ତ୍ତନଶୀଳ । ସମୟର ଗତି ସହ ସବୁକିଛି ବଦଳି ଚାଲିଥାଏ, କୌଣସି କିଛି ସ୍ଥିର, ସ୍ଥାୟୀ ଓ ଶାଶ୍ୱତ ହୋଇ ରହେ ନାହିଁ ।

ଏହି ପରିବର୍ତ୍ତନଶୀଳତାକୁ ବ୍ୟାଖ୍ୟା କରିବାକୁ ଯାଇ ସେ କହନ୍ତି ଯେ ଜଣେ ବ୍ୟକ୍ତି ଏକା ନଦୀରେ ଦୁଇଥର ସ୍ନାନ କରିପାରିବ ନାହିଁ । ନଦୀ ରହିଛି, ହେଲେ ଏହାର ଜଳ ଚିର ପ୍ରବାହିତ ହୋଇ ଚାଲିଛି । ଆମେ ଆଜି ନଦୀରେ ଯେଉଁ ଜଳରେ ସ୍ନାନ କରୁଛେ ସେହି ଜଳ ଧାବମାନ ହୋଇଚାଲିଛି, ଆସନ୍ତା କାଲି ସେହି ସ୍ଥାନରେ ନଦୀର ସେହି ଜଳ ନଥିବ । ଜଳ ପ୍ରବାହିତ ହୋଇଚାଲିବା ଯୋଗୁଁ ଓ ଏହି ପ୍ରକ୍ରିୟା ନିରନ୍ତର ହୋଇଥିବା ଯୋଗୁ ବର୍ତ୍ତମାନର ଜଳ ଓ ପର ମୁହୂର୍ତ୍ତର ଜଳ ସମାନ ନୁହେଁ ।

ହେରାକ୍ଲାଇଟସ କେବଳ ଯେ ନିରଙ୍କୁଶ ସତ୍ତାକୁ ଅସ୍ୱୀକାର କରୁଛନ୍ତି ତାହା ନୁହଁ, ସେ ମଧ୍ୟ ଆପେକ୍ଷିକ ଅସ୍ତିତ୍ୱକୁ ଅସ୍ୱୀକାର କରୁଛନ୍ତି । ନିରଙ୍କୁଶ ଭାବରେ ହେଉ କିମ୍ବା ଆପେକ୍ଷିକ ଭାବରେ ହେଉ, କୌଣସି କିଛିର ସ୍ଥାୟିତ୍ୱ ହିଁ ନାହିଁ । କିଛି ଜିନିଷ ଜଗତରେ ସ୍ଥାୟୀ ନୁହେଁ, ସବୁ କିଛି ପରିବର୍ତ୍ତନ ସାପେକ୍ଷ, ତେଣୁ ଅସ୍ଥାୟୀ । ଏକ କୀଟଠାରୁ ଆରମ୍ଭ କରି ଏକ ପାହାଡ ପର୍ଯ୍ୟନ୍ତ ସବୁ କିଛି ପରିବର୍ତ୍ତନଶୀଳ । ସମୁଦ୍ର ଜଳରାଶିରେ ଉଠୁଥିବା ତରଙ୍ଗ ଯେପରି ମୁହୂର୍ତ୍ତକୁ ମୁହୂର୍ତ୍ତ ବଦଳି ଚାଲିଥାଏ, କୌଣସି ତରଙ୍ଗ ସ୍ଥାୟୀ ହୋଇ ରହେ ନାହିଁ, ସେହିପରି ଜଗତର ସବୁକିଛି ମୁହୂର୍ତ୍ତକୁ ମୁହୂର୍ତ୍ତ ପରିବର୍ତ୍ତିତ ହୋଇ ଚାଲିଥାଏ । ତରଙ୍ଗର ଫର୍ମ ବା ଆକାର ଆମକୁ ସମାନ ଜଣାଯାଏ, ହେଲେ ତାର ଜଳରାଶି ବଦଳୁ ଥାଏ । ଆମେ ଆଜି ଯେଉଁ ସୂର୍ଯ୍ୟକୁ ଅସ୍ତଗାମୀ ହେବାର ଦେଖୁଛେ ଓ ଆସନ୍ତା କାଲି ଯେଉଁ ସୂର୍ଯ୍ୟ ଉଦିତ ହେବ, ସେମାନେ ମଧ୍ୟ ଏକା ସୂର୍ଯ୍ୟ ନୁହନ୍ତି । ଆଜିର ଅସ୍ତଗାମୀ ସୂର୍ଯ୍ୟରେ ଯେଉଁ ଅଗ୍ନିର ଦହନ ହେଉଥିଲା, ଆଗାମୀ ଦିନର ସୂର୍ଯ୍ୟରେ ସେହି ଅଗ୍ନିର ଦହନ ନଥିବ, ସେମାନେ ପରସ୍ପରଠାରୁ ଭିନ୍ନ ।

ପୁନଶ୍ଚ ବସ୍ତୁମାନ ଯେ ମୁହୂର୍ତ୍ତକୁ ମୁହୂର୍ତ୍ତ ପରିବର୍ତ୍ତିତ ହୋଇ ଚାଲିଛନ୍ତି ଓ ଏବେ ଯେଉଁ ବସ୍ତୁର ଅସ୍ତିତ୍ୱ ରହିଛି, ପରବର୍ତ୍ତୀ ମୁହୂର୍ତ୍ତରେ ସେହି ବସ୍ତୁ ନଥିବ ଏହା ମଧ୍ୟ ହେରାକ୍ଲାଇଟସ କହୁନାହାନ୍ତି । ଯାହା ଏହି ମୁହୂର୍ତ୍ତରେ ଅଛି, ତାହା ଯେ ପର ମୁହୂର୍ତ୍ତରେ ନ ଥିବ ତାହା ନୁହେଁ । ଯାହା ଅଛି ଓ ଯାହା ନାହିଁ ଉଭୟ ବିକମିଙ୍ଗ୍ ସହ ସଂଯୁକ୍ତ । ଇଲୀୟମାନଙ୍କ ସହ ତୁଳନା କରି ଏହି ଭାବଧାରାକୁ ସ୍ପଷ୍ଟ କରାଯାଇ ପାରିବ । ଇଲୀୟମାନେ ସବୁ କିଛିକୁ ଦୁଇଟି ଶ୍ରେଣୀରେ ବିଭକ୍ତ କରିଥାନ୍ତି ଯଥା ବିଙ୍ଗ୍ ଯାହା ଚିରସ୍ଥାୟୀ ଓ ନଟ୍-ବିଙ୍ଗ୍ ଯାହା ଚିରସ୍ଥାୟୀ ନୁହେଁ । ଯାହା ବିଙ୍ଗ୍ ତାହା ସତ୍ୟ, ଚିରସ୍ଥାୟୀ, ଯାହା ନଟ୍ -ବିଙ୍ଗ୍ ତାହା ମିଥ୍ୟା ଓ ଭ୍ରମ । କିନ୍ତୁ ହେରାକ୍ଲାଇଟସଙ୍କ ମତରେ ଉଭୟ ବିଙ୍ଗ୍ ଓ ନଟ୍-ବିଙ୍ଗ୍ ସମଭାବରେ ସତ୍ୟ । ବିଙ୍ଗ୍ ସତ୍ୟ, ନଟ୍‌ବିଙ୍ଗ ମଧ୍ୟ ସତ୍ୟ, ବିଙ୍ଗ ଓ ନଟ୍‌ବିଙ୍ଗ ଉଭୟ ସମାନ । ଅସ୍ତିତ୍ୱ ଓ ପରିବର୍ତ୍ତନ ଏକ ବସ୍ତୁର ଦୁଇ ପୃଥକ୍ ନାମ ମାତ୍ର । ସୁତରାଂ କୌଣସି ବିଶେଷ ବସ୍ତୁ ସଂପର୍କରେ କିଛି ଜାଣିବା ସମ୍ଭବ ନୁହେଁ । ଆମେ ଯାହାର ସ୍ଥିତିକୁ ଏବେ ସତ୍ୟ ବୋଲି ଜାଣୁଛେ, ପରବର୍ତ୍ତୀ ମୁହୂର୍ତ୍ତରେ ଏହାର ପରିବର୍ତ୍ତନ ହୋଇଯିବା ସମ୍ଭବ । କୌଣସି ବସ୍ତୁକୁ ଆମେ ଯେତେ ସୂକ୍ଷ୍ମ ଭାବରେ ଜାଣିବାକୁ ପ୍ରୟାସ କରିଥାଏ, ଏହା ସେତେ ଶୀଘ୍ର ଗତିଶୀଳ ବୋଲି ଆମର ଜ୍ଞାନ ହୋଇଥାଏ । ପ୍ରତ୍ୟେକ ବସ୍ତୁ ଭିତରେ ପରସ୍ପର-ବିରୋଧୀ ଲକ୍ଷଣ ବା ତତ୍ତ୍ୱ ପରିଲକ୍ଷିତ ହୋଇଥାଏ । ବସ୍ତୁର ଗୁଣରେ ପରିବର୍ତ୍ତନ ହୋଇ ଚାଲିଥାଏ, ତେଣୁ ବସ୍ତୁର ନିଜସ୍ୱ ଗୁଣ ରହିନଥାଏ । ବସ୍ତୁରେ କୌଣସି ତତ୍ତ୍ୱ ସ୍ଥିର ହୋଇ ରହେ ନାହିଁ । ଯାହା ବିକମିଙ୍ଗ୍ ତାହା ବିଙ୍ଗ୍ ଓ ନଟ୍-ବିଙ୍ଗ୍ ମଧ୍ୟରେ ଏକତ୍ୱ କୁ ହିଁ ବୁଝାଇଥାଏ । ବିକମିଙ୍ଗ୍‌ର ଦୁଇଟି ଆକାର ହେଉଛି ଯାହାର ଉତ୍ପତ୍ତି ହୁଏ ଓ ଯାହାର ବିଲୁପ୍ତ ହୁଏ । ବସ୍ତୁମାନଙ୍କର ଆରମ୍ଭ ହୁଏ ଓ ବିଲୟ ମଧ୍ୟ ହୁଏ । ଜନ୍ମ-ମୃତ୍ୟୁ, ଉତ୍ପତ୍ତି-ବିଲୟ, ଆରମ୍ଭ-ଶେଷ, ବିକମିଙ୍ଗ୍ ଯୋଗୁ ହୋଇଥାଏ । ହୁଏତ ଏହା ଯଥାର୍ଥ ବୋଧ ହୋଇନପାରେ, ଉତ୍ପତ୍ତି ଓ ବିଲୟ କିମ୍ବା ଆରମ୍ଭ ଓ ଶେଷ ମଝିରେ ଅନ୍ୟାନ୍ୟ ଆକାର ବା ଅବସ୍ଥା ରହିପାରେ । ମନୁଷ୍ୟ ଜନ୍ମ ନିଏ, ଏହା ତାହାର ଉତ୍ପତ୍ତି ବା ଆରମ୍ଭକୁ ସୂଚାଏ । ସେହିପରି ସେ ମୃତ୍ୟୁ ମୁଖରେ ପଡେ, ଏହା ତାହାର ବିଲୟ ବା ସମାପ୍ତିକୁ ବୁଝାଏ । ତେବେ ଜନ୍ମ ଓ ମୃତ୍ୟୁ ମଧ୍ୟରେ ସେ ଅନେକ ଅବସ୍ଥା

ଦେଇ ଗତି କରିଥାଏ । ଜନ୍ମ ନିଏ, ବୃଦ୍ଧିପାଏ, କିଶୋର ହୁଏ, ଯୁବକ ହୁଏ, ବାର୍ଦ୍ଧକ୍ୟକୁ ଯାଏ ଓ ଶେଷରେ ମୃତ୍ୟୁ ମୁଖରେ ପଡେ । ସେ ନାନା କଥା ଶିକ୍ଷାକରେ, ଜ୍ଞାନ ଅର୍ଜନ କରେ, ସାମାଜିକ ହୁଏ ବା ଅସାମାଜିକ ହୁଏ- ଏହିପରି ବିଭିନ୍ନ ଅବସ୍ଥା ଦେଇ ଓ ଗୁଣର ଅଧିକାରୀ ହୋଇ ତାର ପରିସମାପ୍ତି ଘଟିଥାଏ । ବାର୍ଦ୍ଧକ୍ୟ ଆସିଲେ ତାର ଦୃଷ୍ଟିଶକ୍ତି ହ୍ରାସ ପାଏ, ସ୍ମରଣ ଶକ୍ତି କମିଯାଏ, କେଶ ପକ୍ୱ ହୋଇଯାଏ, ଏହି ସବୁ ତାହାର ବିଭିନ୍ନ ସ୍ଥିତି ଓ ଅବସ୍ଥାକୁ ବୁଝାଏ । ସେହିପରି ଏକ ବୃକ୍ଷର ପତ୍ରମାନଙ୍କର ଉତ୍ପତ୍ତି ଓ ବିଲୟ କେତେ କେତେ ସ୍ତର ଦେଇ ସଂଘଟିତ ହୁଏ । ଗଛରେ ପତ୍ରଟିଏ କଅଁଳି ଥାଏ, ବୃଦ୍ଧି ପାଏ, ସାଧାରଣ ସବୁଜିମାରୁ ଗାଢ଼ ସବୁଜିମା ଧାରଣ କରେ, ଏହାପରେ ଧୀରେ ଧୀରେ ରଙ୍ଗ ବଦଳି ଚାଲେ ଓ ପୀତ ବର୍ଣ୍ଣ ହୋଇ ବୃନ୍ତଚ୍ୟୁତ ହୁଏ । ପତ୍ରଟିର ଉତ୍ପତ୍ତିଠାରୁ ବୃନ୍ତଚ୍ୟୁତ ହେବା ପର୍ଯ୍ୟନ୍ତ ଏହା ବିଭିନ୍ନ ଅବସ୍ଥା ଦେଇ ଗତିକରିଥାଏ । ତେବେ ହେରାକ୍ଲାଇଟସଙ୍କ ମତରେ ପ୍ରତ୍ୟେକ ବସ୍ତୁର ମାତ୍ର ଦୁଇଟି ଅବସ୍ଥା ଥାଏ, ତାହା ହେଲା ଉତ୍ପତ୍ତି ଓ ବିଲୟ, କିନ୍ତୁ ଏହାର ସତ୍ତା କେଉଁଠି ହେଲେ ଚିରସ୍ଥାୟୀ ହୋଇନଥାଏ । ପ୍ରତ୍ୟେକ ସ୍ଥିତିରେ କେବଳ କେତେକ ଗୁଣ ରହିଥାଏ । ଯେତେବେଳେ ପତ୍ରଟିଏ ସବୁଜ ସ୍ଥିତିରୁ ପୀତ ଅବସ୍ଥାକୁ ଯାଏ, ସବୁଜ ସ୍ଥିତିର ବିଲୟ ଘଟେ ଓ ପୀତ ସ୍ଥିତିର ଉତ୍ପତ୍ତି ହୁଏ । ଉତ୍ପତ୍ତି ନଟ୍-ବିଙ୍ଗ୍‌ରୁ ବିଙ୍ଗ୍‌କୁ ବୁଝାଏ ଓ ବିଲୟ ବିଙ୍ଗ୍‌ରୁ ନଟ୍-ବିଙ୍ଗ୍‌କୁ ବୁଝାଏ । ଷ୍ଟେସ୍‌ଙ୍କ ବକ୍ତବ୍ୟ ଏଠାରେ ଉଦ୍ଧାର କରାଯାଇପାରେ, "Origination is the passage of not-being into Being. Decease is the passage of Being into not-being. Becoming, then has in it only the two factors of Being and not-being, and it means the passing of one into the other" (ପୃଷ୍ଠା୭୫) ଯାହାକୁ ପରିବର୍ତ୍ତନ ବା ବିକମିଙ୍ଗ୍ କୁହାଯାଉଛି ତାହାର ଦୁଇଟି ଉପାଦାନ ରହିଛି ଯଥା ବିଙ୍ଗ୍ ଓ ନଟ୍-ବିଙ୍ଗ୍ । ଏହାର ତାତ୍ପର୍ଯ୍ୟ ହେଉଛି ଗୋଟିଏ ସ୍ଥିତିରୁ ଅନ୍ୟ ଏକ ସ୍ଥିତିକୁ ଯିବା । ତେବେ ହେରାକ୍ଲାଇଟସଙ୍କ ମତରେ ଏହା ନୁହେଁ ଯେ ଗୋଟିଏ ଅବସ୍ଥାରେ ବିଙ୍ଗ୍ ରହିଛି ଓ ପର ମୁହୂର୍ତ୍ତରେ ନଟ୍-ବିଙ୍ଗ୍ ରହିଛି । ପରନ୍ତୁ ପ୍ରତ୍ୟେକ ବସ୍ତୁରେ ଓ ପ୍ରତ୍ୟେକ ସମୟରେ ଏଥିରେ ଉଭୟ ବିଙ୍ଗ୍ ଓ ନଟ୍-ବିଙ୍ଗ୍ ରହିଛି । ବିଙ୍ଗ୍ ଭିତରେ ନଟ୍-ବିଙ୍ଗ୍ ଅନ୍ତର୍ନିହିତ ହୋଇ ରହିଛି । ଯାହା ବିଙ୍ଗ୍ ତାହା ହେଉଛି ନଟ୍-ବିଙ୍ଗ୍ ।

ହେରାକ୍ଲାଇଟସଙ୍କ ଏହି ମତ ବିଙ୍ଗ୍ ଓ ନଟ୍-ବିଙ୍ଗ୍ ଦୁଇଟି ପୃଥକ୍ ଅବସ୍ଥାକୁ ବୁଝାଉ ନାହିଁ, ପରନ୍ତୁ ପ୍ରତ୍ୟେକ ବସ୍ତୁ ଭିତରେ ଥିବା ସ୍ଥିତିକୁ ବୁଝାଉଛି । ଏହାକୁ ଏକ ଉଦାହରଣ ଦେଇ ବ୍ୟାଖ୍ୟା କରାଯାଇପାରେ । ସାଧାରଣତଃ ଆମେ ଭାବିଥାଉ ଯେ ମୃତ୍ୟୁ କୌଣସି ଏକ ବାହ୍ୟ କାରଣ ଯୋଗୁ ହୋଇଥାଏ । ଯେତେବେଳେ ବ୍ୟକ୍ତି ଜୀବିତ ଥାଏ, ଏହା ଜୀବିତ ଅବସ୍ଥାକୁ ବୁଝାଏ, ଯାହା ସହିତ ମୃତ୍ୟୁ ସଂଯୁକ୍ତ ନଥାଏ । ଜୀବନ ସେ ପର୍ଯ୍ୟନ୍ତ ରହିଥାଏ ଯେଉଁ ପର୍ଯ୍ୟନ୍ତ କୌଣସି ବାହ୍ୟିକ କାରଣ ଏହାକୁ ପ୍ରଭାବିତ କରିନଥାଏ । ସାଧାରଣ ଧାରଣା ହେଉଛି ଜୀବନ ଗତିଶୀଳ ଥାଏ ଯେପର୍ଯ୍ୟନ୍ତ କିଛି ବାହ୍ୟିକ କାରଣ ଏହାକୁ ପ୍ରଭାବିତ କରି ଏହାକୁ ମୃତ୍ୟୁମୁଖକୁ ନେଇନଥାଏ । ସୁତରାଂ ମୃତ୍ୟୁ ଏକ ବାହ୍ୟିକ କାରଣ ଯୋଗୁ ସଂଘଟିତ ହୋଇଥାଏ । ସେହି ବାହ୍ୟିକ କାରଣ ରୋଗ ହୋଇପାରେ, ବାର୍ଦ୍ଧକ୍ୟ ହୋଇପାରେ କିମ୍ବା କିଛି ଦୁର୍ଘଟଣା ହୋଇପାରେ । ବାର୍ଦ୍ଧକ୍ୟକୁ ବି ଏକ ରୋଗ ଭାବେ ନିଆଯାଇପାରେ ।

ମୃତ୍ୟୁ କୌଣସି କାରଣ ଯୋଗୁ ହେବା ଏକ ସାଧାରଣ ଧାରଣା । ପ୍ରତ୍ୟେକ ଘଟଣାର କିଛି କାରଣ ରହିଥିବା ବିଶ୍ୱାସ କରାଯାଏ । କାରଣରୁ କାର୍ଯ୍ୟ ଉଦ୍‌ଭବ ହୋଇଥାଏ । କାର୍ଯ୍ୟ-କାରଣ ସିଦ୍ଧାନ୍ତ କ୍ଷେତ୍ରରେ କୌଣସି ବ୍ୟତିକ୍ରମକୁ ସ୍ୱୀକାର କରାଯାଏ ନାହିଁ । ପ୍ରତ୍ୟେକ ଘଟଣାର କାରଣ ରହିଛି ଓ କାର୍ଯ୍ୟ-କାରଣ ସମ୍ବନ୍ଧ ଏକ ସାର୍ବଜନୀନ ସମ୍ବନ୍ଧ । ସୁତରାଂ ଏହା ଗ୍ରହଣ କରାଯାଏ ଯେ ପ୍ରତ୍ୟେକ ମୃତ୍ୟୁ ପଶ୍ଚାତରେ କିଛି କାରଣ ନିହିତ ରହିଥାଏ । ତେବେ କୌଣସି ଘଟଣାର କାରଣ ଜାଣିବା ତାହାର ବ୍ୟାଖ୍ୟା ନୁହେଁ । କାର୍ଯ୍ୟକାରଣ ଭାବ ଏକ ବ୍ୟାଖ୍ୟାନ ଜନିତ ସିଦ୍ଧାନ୍ତ ନୁହେଁ । ଏଥିରୁ ଏହା ସୂଚିତ ହୁଏ ଯେ ଯାହା କାରଣ ତାହା କାର୍ଯ୍ୟର ଅବ୍ୟବହିତ ଅବ୍ୟଭିଚାରୀ ପୂର୍ବବର୍ତ୍ତୀ ଘଟଣା । ଯଦି କ ଘଟଣା ଖ ଘଟଣାର ଅବ୍ୟବହିତ ଓ ଅବ୍ୟଭିଚାରୀ ପୂର୍ବବର୍ତ୍ତୀ ଘଟଣା, ତେବେ ଖ କାର୍ଯ୍ୟର କାରଣ ହେଉଛି କ । ଏହାର ତାତ୍ପର୍ଯ୍ୟ ହେଉଛି କ ଘଟିଲେ ଖ ଘଟିବ । କିନ୍ତୁ ଖ କାହିଁକି ସୃଷ୍ଟି ହୁଏ ସେଥିରୁ ବୁଝାପଡେ ନାହିଁ । ଜଣେ ବ୍ୟକ୍ତିର କୌଣସି କାରଣରୁ ମୃତ୍ୟୁ ହୋଇପାରେ, ତେବେ ମୃତ୍ୟୁ କାହିଁକି ସେଥିରୁ ସୃଷ୍ଟି ହୁଏ ତାହା ଜଣା ପଡେ ନାହିଁ । ମୃତ୍ୟୁ ଯେ ଜୀବନ ସହିତ ସଂଯୋଜିତ ହୋଇ ରହିଛି ଏହା ହିଁ ଏକ ନିଷ୍କର୍ଷ ଭାବରେ ଆସିଥାଏ । ଜୀବନ ସହ ମୃତ୍ୟୁ ପ୍ରଚ୍ଛନ୍ନ ଭାବେ ଅନ୍ତର୍ନିହିତ ରହିଛି । ଜୀବନ-ମୃତ୍ୟୁ ପରସ୍ପର ସହ ଅଭିନ୍ନ ଭାବେ ସଂଯୋଜିତ । ମୃତ୍ୟୁର ଯାହା କାରଣ ନିଆଯାଉଛି ତାହା କେବଳ ଏକ ପ୍ରକ୍ରିୟା ବା ସାଧନ ମାତ୍ର । ସେହି ସାଧନ ଯୋଗୁ ହୁଏତ ଏକ ଘଟଣା ଘଟିବାର ପରିବେଶ ଆସୁଛି । ତେବେ ଜୀବନ ସହିତ ମୃତ୍ୟୁ ଐକାନ୍ତିକ ଭାବେ ସଂଯୁକ୍ତ ନଥିଲେ ଏହା ସମ୍ଭବ ହୁଅନ୍ତା ନାହିଁ । ଜୀବନ-ମୃତ୍ୟୁ ଯେପରି ପରସ୍ପରଠାରୁ ଅଭିନ୍ନ ସେହିପରି ବିଙ୍ଗ୍ ଓ ନଟ୍-ବିଙ୍ଗ୍ ପରସ୍ପର ସହ ମଧ୍ୟ ଅଭିନ୍ନ । ବିଙ୍ଗ୍ ସହିତ ନଟ୍-ବିଙ୍ଗ୍ ଏକତ୍ର ରହିଛି ।

ବିଙ୍ଗ୍ ଓ ନଟ୍-ବିଙ୍ଗ୍ ମଧ୍ୟରେ ତାଦାତ୍ମ୍ୟ ରହିଛି ବୋଲି ହେରାକ୍ଲାଇଟସ ଭାବିଛନ୍ତି । ବିଙ୍ଗ୍ ଓ ନଟ୍-ବିଙ୍ଗ୍ ପରସ୍ପରର ବିପରୀତ । ବିଙ୍ଗ୍ ସତ୍ ଓ ନଟ୍-ବିଙ୍ଗ୍‌କୁ ଅସତ୍ ଭାବେ ଗ୍ରହଣ କଲେ ସେମାନେ ପରସ୍ପରର ବିପରୀତ । ଏହି ଭାବନାରୁ ହେରାକ୍ଲାଇଟସ ଜଗତର ପ୍ରତ୍ୟେକ ବସ୍ତୁ ଭିତରେ ଏହାର ବିପରୀତ ବିଦ୍ୟମାନ ରହିଛି ବୋଲି ଭାବିଛନ୍ତି । ଯେକୌଣସି ଏକ ସ୍ଥିତି ଥିବା ବସ୍ତୁ ମଧ୍ୟରେ ଦୁଇ ବିପରୀତ ତତ୍ତ୍ୱ ରହିଛି ଓ ସେ ଭିତରେ ଏକ ସମନ୍ୱୟ ସାଧିତ ହେଉଛି । ଦୁଇ ବିପରୀତ ତତ୍ତ୍ୱ ପ୍ରତ୍ୟେକ ସତ୍ତା ଭିତରେ ବିଦ୍ୟମାନ ଥାଇ ମଧ୍ୟ ଏକ ସଂହତି ବିଦ୍ୟମାନ ରହିଛି । କୌଣସି ଏକ ସଂହତି ପାଇଁ ଦୁଇ ବିପରୀତ ତତ୍ତ୍ୱ ଆବଶ୍ୟକ ବୋଲି ହେରାକ୍ଲାଇଟସ ପରିକଳ୍ପନା କରିଛନ୍ତି । ଦୁଇଟି ବିପରୀତ ତତ୍ତ୍ୱ ମଧ୍ୟରେ ବିରୋଧାଭାସ ରହିଲେ ମଧ୍ୟ ସେମାନେ ଏକ ସଂହତି ସ୍ଥାପନ କରିପାରିବେ । ଯେଉଁଠି ସଂହତି ବିଦ୍ୟମାନ, ସେଠାରେ ଦୁଇଟି ବିପରୀତ ସିଦ୍ଧାନ୍ତର ସମନ୍ୱୟ ହୋଇଥାଏ ବୋଲି ସେ ଭାବିଛନ୍ତି । ପ୍ରତ୍ୟେକ ବସ୍ତୁ ମଧ୍ୟରେ ତାହାର ବିପରୀତ ତତ୍ତ୍ୱ ନିହିତ ରହିଥାଏ । ଏହି ବିରୋଧାଭାସ ବା ବିରୁଦ୍ଧ ସିଦ୍ଧାନ୍ତ ମଧ୍ୟରେ ଯେଉଁ ସଂଘର୍ଷ ରହିଛି ତାହା ମଧ୍ୟଦେଇ ପ୍ରତ୍ୟେକର ଅସ୍ତିତ୍ୱ, ଉତ୍ପତ୍ତି, ଜୀବନ ବା ସତ୍ତା ରହିଆସିଛି । ପ୍ରତ୍ୟେକ ବିଷୟର କେନ୍ଦ୍ରରେ ଏହି ବିରୋଧାଭାସ ରହିଛି । କୌଣସି ବସ୍ତୁ କ୍ଷେତ୍ରରେ ଏହି ବିଭେଦ (Conflict) ନ ରହିଲେ ଏହାର ଅସ୍ତିତ୍ୱ ରହିପାରିବ ନାହିଁ । ଏହି ଭାବନାରୁ ହେରାକ୍ଲାଇଟସ ଜଗତର ପ୍ରତ୍ୟେକ ବସ୍ତୁ ଭିତରେ

ଏହାର ବିପରୀତ ବିଦ୍ୟମାନ ରହିଛି ବୋଲି ଭାବିଛନ୍ତି । ଯେକୌଣସି ଏକ ସ୍ଥିତି ଥିବା ବସ୍ତୁ ମଧ୍ୟରେ ଦୁଇ ବିପରୀତ ତତ୍ତ୍ୱ ରହିଛି ଓ ସେ ଭିତରେ ଏକ ସମନ୍ୱୟ ସାଧିତ ହେଉଛି । ଦୁଇ ବିପରୀତ ତତ୍ତ୍ୱ ପ୍ରତ୍ୟେକ ସତ୍ତା ଭିତରେ ବିଦ୍ୟମାନ ଥାଇ ମଧ୍ୟ ଏକ ସଂହତି ବିଦ୍ୟମାନ ରହିଛି । କୌଣସି ଏକ ସଂହତି ପାଇଁ ଦୁଇ ବିପରୀତ ତତ୍ତ୍ୱ ଆବଶ୍ୟକ ବୋଲି ହେରାକ୍ଲାଇଟସ ପରିକଳ୍ପନା କରିଛନ୍ତି । ଦୁଇଟି ବିପରୀତ ତତ୍ତ୍ୱ ମଧ୍ୟରେ ବିରୋଧାଭାସ ରହିଲେ ମଧ୍ୟ ସେମାନେ ଏକ ସଂହତି ସ୍ଥାପନ କରିପାରିବେ । ଯେଉଁଠି ସଂହତି ବିଦ୍ୟମାନ, ସେଠାରେ ଦୁଇଟି ବିପରୀତ ସିଦ୍ଧାନ୍ତର ସମନ୍ୱୟ ହୋଇଥାଏ ବୋଲି ସେ ଭାବିଛନ୍ତି । ପ୍ରତ୍ୟେକ ବସ୍ତୁ ମଧ୍ୟରେ ତାହାର ବିପରୀତ ତତ୍ତ୍ୱ ନିହିତ ରହିଥାଏ । ଏହି ବିରୋଧାଭାସ ବା ବିରୁଦ୍ଧ ସିଦ୍ଧାନ୍ତ ମଧ୍ୟରେ ଯେଉଁ ସଂଘର୍ଷ ରହିଛି ତାହା ମଧ୍ୟ ଦେଇ ପ୍ରତ୍ୟେକର ଅସ୍ତିତ୍ୱ, ଉତ୍ପତ୍ତି, ଜୀବନ ବା ସତ୍ତା ରହିଆସିଛି । ପ୍ରତ୍ୟେକ ବିଷୟର କେନ୍ଦ୍ରରେ ଏହି ବିରୋଧାଭାସ ରହିଛି । କୌଣସି ବସ୍ତୁ କ୍ଷେତ୍ରରେ ଏହି ବିଭେଦ (Conflict) ନ ରହିଲେ ଏହାର ଅସ୍ତିତ୍ୱ ରହିପାରିବ ନାହିଁ । ଏହି ଭାବନାକୁ ହେରାକ୍ଲାଇଟସ ନାନା ଭାବରେ ବ୍ୟକ୍ତ କରିଛନ୍ତି । ପ୍ରତ୍ୟେକ ବସ୍ତୁ କ୍ଷେତ୍ରରେ ଏହି ଦ୍ୱନ୍ଦ୍ୱ ବା ବିଭେଦ ରହିବା ଅବଶ୍ୟମ୍ଭାବୀ ସଂସାରରେ ନାନା ବିରୁଦ୍ଧ ଶକ୍ତି ଓ ଘାତ-ପ୍ରତିଘାତ ମଧ୍ୟରେ ମଧ୍ୟ ସଂହତି ବିଦ୍ୟମାନ । ଏକ ବୀଣା ଯନ୍ତ୍ରରେ ବିପରୀତ ତନ୍ତ୍ରମାନ ରହିଥିଲେ ମଧ୍ୟ ସେଥିରୁ ସୁମଧୁର ସଂଗୀତର ମୂର୍ଚ୍ଛନା ସୃଷ୍ଟି ହୋଇପାରେ । ବିଭିନ୍ନ ପରସ୍ପର ବିପରୀତ ତରଙ୍ଗର ସମାହାରରେ ଏକ ସୁନ୍ଦର ଚିତ୍ରର ରଚନା କରାଯାଇପାରେ । କଳା କ୍ଷେତ୍ରରେ ଯେପରି ବିପରୀତ ଧାରାକୁ ନେଇ ଏକ ସୁନ୍ଦର ସୃଷ୍ଟିର ସର୍ଜନା କରାଯିବା ସମ୍ଭବ, ସେହିପରି ବିପରୀତ ତତ୍ତ୍ୱ ବା ସିଦ୍ଧାନ୍ତକୁ ନେଇ ସଂସାରର ସଂରଚନା କାହିଁକି ସମ୍ଭବ ହେବ ନାହିଁ ବୋଲି ହେରାକ୍ଲାଇଟସ ପ୍ରଶ୍ନ ଉଠାଇଛନ୍ତି । ଦିନ ଓ ରାତି, ଗ୍ରୀଷ୍ମ ଓ ଶୀତ, ସଂଘର୍ଷ ଓ ଶାନ୍ତି, କ୍ଷୁଧା ଓ ଖାଦ୍ୟର ପରିତୃପ୍ତି ଇତ୍ୟାଦି ମଧ୍ୟରେ ଯେଉଁ ଦ୍ୱନ୍ଦ୍ୱ ଓ ଭିନ୍ନତା ରହିଛି ଏବଂ ବିରୋଧୀ ଶକ୍ତିମାନଙ୍କର ସଂଘର୍ଷ ମଧ୍ୟରୁ ସଂହତି ଓ ସମନ୍ୱୟର ଚିତ୍ର ସୃଷ୍ଟି ହୋଇଥାଏ । ପ୍ରତ୍ୟେକ ବସ୍ତୁ ଭିତରେ ଏହି ବିରୋଧାଭାସ ପ୍ରତିକ୍ଷଣରେ ବିଦ୍ୟମାନ ରହିଆସିଛି । ପ୍ରକୃତି କ୍ଷେତ୍ରରେ ଓ ଆମ ଜୀବନଧାରାରେ ଏହି ବିରୋଧାଭାସର ଅଭିବ୍ୟକ୍ତି ସ୍ପଷ୍ଟ ରୂପରେ ପରିଲକ୍ଷିତ ହୁଏ । ଜୀବନ ସହିତ ମୃତ୍ୟୁ ସଂଯୁକ୍ତ ହୋଇ ରହିଛି, ମୃତ୍ୟୁ ଜୀବନ ପ୍ରକ୍ରିୟା ଓ ପରିବର୍ତ୍ତନର ଅବିଚ୍ଛେଦ୍ୟ ଅଙ୍ଗ । ସୁତରାଂ ଜୀବନ ଓ ମୃତ୍ୟୁ ଏକ ପ୍ରକ୍ରିୟାର ଦୁଇ ଦିଗନ୍ତ । ଗୋଟିଏ ଦୃଷ୍ଟିକୋଣରୁ ଦେଖିଲେ ଆମର ଅସ୍ତିତ୍ୱ ନାହିଁ କାରଣ ଏହା ସର୍ବଦା ପରିବର୍ତ୍ତନ ହୋଇ ଚାଲିଛି । ଅନ୍ୟ ଏକ ଦୃଷ୍ଟିକୋଣରୁ ବିଚାର କଲେ ଆମର ସ୍ଥିତି ବିଦ୍ୟମାନ କାରଣ ଆମର ଅସ୍ତିତ୍ୱର ତାଦାତ୍ମ୍ୟ ବା ଏକରୂପତା ଉପଲବ୍ଧ । ବ୍ୟକ୍ତି ବିଷୟରେ ଯାହା କୁହାଯାଉଛି ତାହା ଯେକୌଣସି ବସ୍ତୁ ସମ୍ବନ୍ଧରେ ମଧ୍ୟ କୁହାଯାଇପାରିବ । କୌଣସି ବସ୍ତୁ ସଂପର୍କରେ କିଛି ସିଦ୍ଧାନ୍ତ ବା ନିର୍ଣ୍ଣୟ ଦେବା ବେଳେ ଆମେ କିଛି ଦୃଷ୍ଟିଭଙ୍ଗୀ ବା ମାନକ ଆଧାରରେ ଏହା କରିଥାଏ । କୌଣସି ଦୃଷ୍ଟିଭଙ୍ଗୀକୁ ଆଧାରକରି କିଛିକୁ ଆମେ ଶୁଭ ବା ଅଶୁଭ, ସୁନ୍ଦର ବା ଅସୁନ୍ଦର, ଶୁଦ୍ଧ ବା ଅଶୁଦ୍ଧ ଇତ୍ୟାଦି ନିର୍ଣ୍ଣୟ କରିଥାଏ । ସମୁଦ୍ରର ଜଳ ମନୁଷ୍ୟ ବା ଅନ୍ୟ ପ୍ରାଣୀ ପାଇଁ ଅଶୁଦ୍ଧ ଯେହେତୁ ଏହା ଆମ ପାନୀୟଯୋଗ୍ୟ ନୁହେଁ । ପରନ୍ତୁ ମାଛ ମାନଙ୍କ ପାଇଁ ସମୁଦ୍ରର ଜଳ ଶୁଦ୍ଧ, ଯେହେତୁ ଏହି ଜଳରେ ମାଛମାନେ ରହି

ବଂଶବିସ୍ତାର କରିଥାନ୍ତି । ଆମର ମାନସିକ ଦୃଷ୍ଟିକୋଣ ଅନୁଯାୟୀ ବସ୍ତୁ, ଜଗତ, ଜୀବନ ଆମକୁ ଭିନ୍ନ ଭିନ୍ନ ପ୍ରତୀତ ହୋଇଥାଏ । ଏହି ବିଷୟକୁ ଦାର୍ଶନିକ ପରିଭାଷାରେ ସାପେକ୍ଷବାଦ କୁହାଯାଏ । ହେରାକ୍ଲାଇଟସ ଏହି ନିୟମକୁ ଏକ ବ୍ୟାପକ ଅର୍ଥରେ ପ୍ରୟୋଗ କରିଥିବା ମନେହୁଏ । ପ୍ରତ୍ୟେକ ବସ୍ତୁର ଆରମ୍ଭ ଓ ଶେଷ ବା ଉତ୍ପତ୍ତି ଓ ବିଲୟର ଆଧାର ଅଭିନ୍ନ ମନେହୁଏ । ସୁତରାଂ ଆମକୁ ପ୍ରତୀୟମାନ ହେଉଥିବା ବିବିଧତା ମିଥ୍ୟା ଅଟେ । ଯାହା ଆମ ପାଇଁ ଦିନ ତାହା ଅନ୍ୟ ପାଇଁ ରାତି ହୋଇପାରେ । ସବୁ କିଛି ପରିବର୍ତ୍ତନଶୀଳ ଓ ଏହି ପରିବର୍ତ୍ତନଶୀଳତା ପଶ୍ଚାତରେ ଆମର ଦୃଷ୍ଟିଭଙ୍ଗୀ ନିହିତ ରହିବା ଦେଖାଯାଏ । ଆମର ସ୍ଥିତି ଅଛି, ପୁଣି ସ୍ଥିତି ନାହିଁ, ଆମେ ଏକ ନଦୀରେ ଏକ ସମୟରେ ପ୍ରବେଶ କରେ, ପୁଣି ପ୍ରବେଶ କରେ ନାହିଁ । ସବୁ କିଛି ଯେ ପରିବର୍ତ୍ତନଶୀଳ ସେହି ପ୍ରକ୍ରିୟା ମଧ୍ୟରେ ସାପେକ୍ଷବାଦର ଭାବନା ହେରାକ୍ଲାଇଟସଙ୍କର ଏକ ଦାର୍ଶନିକ ନିର୍ଣ୍ଣୟ ଅଟେ ।

**ସୃଷ୍ଟିବିଜ୍ଞାନ :** କେତେକ ଗ୍ରୀକ୍ ଦାର୍ଶନିକ ଜଗତର ମୌଳିକ ସତ୍ତା କ'ଣ ଏହି ପ୍ରଶ୍ନ ଉପରେ ଗମ୍ଭୀର ଆଲୋଚନା କରିଛନ୍ତି । ଥେଲିସ୍ ଓ ଆନେକ୍ସିମେନିସ୍ ସେମାନଙ୍କ ଦର୍ଶନରେ ଏହି ପ୍ରଶ୍ନର ଅବତାରଣା କରିଛନ୍ତି ଯେ ଜଗତର ମୂଳ ସତ୍ତା କ'ଣ ହୋଇପାରେ । ସେ ସମୟର ବିଚାର ଥିଲା ଯେ କୌଣସି ଏକ ମୂଳ ସତ୍ତାରୁ ଏହି ବିଶାଳ ବିଶ୍ୱର ଉତ୍ପତ୍ତି ସମ୍ଭବ ହୋଇଛି । ଥେଲିସ୍ ଏହାକୁ ଜଳ ଓ ଆନେକ୍ସିମେନିସ୍ ଏହାକୁ ବାୟୁ ବୋଲି ପରିକଳ୍ପନା କରିଛନ୍ତି । ସେହିପରି ହେରାକ୍ଲାଇଟସ ମଧ୍ୟ ଏହି ବିଶ୍ୱର ମୌଳିକ ସତ୍ତା ବିଷୟରେ ତାଙ୍କର ଭାବନା ବ୍ୟକ୍ତ କରିଛନ୍ତି । ତାଙ୍କ ମତରେ ଅଗ୍ନି ହେଉଛି ଏହି ବିଶ୍ୱର ମୂଳ ତତ୍ତ୍ୱ ବା ଆଦି ସତ୍ତା । ଅଗ୍ନି ହେଉଛି ଜଗତର ମୂଳ ବସ୍ତୁ ଯେଉଁଥିରୁ ପୃଥ୍ୱୀ ଉତ୍ପତ୍ତି ହୋଇଛି ଓ ଶେଷରେ ସବୁ କିଛି ଅଗ୍ନିରେ ବିଲୀନ ହେବ । ଏହି ଜଗତକୁ କେହି ଦେବୀ ଦେବତା ସୃଷ୍ଟି କରି ନାହାନ୍ତି, ବରଂ ଏହି ବ୍ୟବସ୍ଥିତ ଜଗତ ଅଗ୍ନିରୁ ହିଁ ଉଦ୍‌ଭବ ହୋଇଛି । ତେବେ ଅଗ୍ନିର ସ୍ୱରୂପ ନେଇ ପରବର୍ତ୍ତୀ ଦାର୍ଶନିକ ମାନେ ଭିନ୍ନ ଭିନ୍ନ ମତପୋଷଣ କରିଛନ୍ତି । ଯାହାହେଲେ ମଧ୍ୟ ହେରାକ୍ଲାଇଟସ ଅଗ୍ନିକୁ ଜଗତର ମୂଳ ତତ୍ତ୍ୱ ଓ ବିଶେଷ ସତ୍ତା ଭାବରେ ନେଇଛନ୍ତି ଓ ସେହିଥିରୁ ସବୁକିଛିର ଯେ ଉଦ୍‌ଭବ ହୋଇଛି ଏହା ଭାବିଛନ୍ତି । ବିଶ୍ୱର ସବୁ କିଛି ତାଙ୍କ ମତରେ ପରିବର୍ତ୍ତନଶୀଳ ହେଲେ ମଧ୍ୟ ଅଗ୍ନିରୁ ହିଁ ସବୁ କିଛିର ଉଦ୍‌ଭବ ହୋଇଛି ଓ ଅଗ୍ନିକୁ ମୂଳ ସତ୍ତା ଭାବରେ ଗ୍ରହଣକରି ଜଗତର ପରିବର୍ତ୍ତନଶୀଳତାକୁ ସେ ଅଗ୍ନିର ସ୍ୱଭାବ ଆଧାରରେ ବ୍ୟାଖ୍ୟା କରିବାକୁ ପ୍ରଯତ୍ନ କରିଛନ୍ତି । ଜଗତରେ ଯେତେ ସବୁ ଭୌତିକ ବସ୍ତୁ ରହିଛି, ସେ ସବୁ ଅଗ୍ନିର ରୂପାନ୍ତର ବା ପରିବର୍ତ୍ତିତ ରୂପ । ହେରାକ୍ଲାଇଟସ ବିଙ୍ଗ୍ ବା ସତ୍ତା ପରିବର୍ତ୍ତେ ବିକମିଙ୍ଗ୍ ବା ସଂଭବନକୁ ସତ୍ୟ ବୋଲି ସ୍ୱୀକାର କରିଥିବା ପୂର୍ବରୁ ଦର୍ଶାଯାଇଛି । ତତ୍ତ୍ୱମୀମାଂସା କ୍ଷେତ୍ରରେ ସେ ସଂଭବନକୁ ମୌଳିକ ତତ୍ତ୍ୱ ଭାବରେ ଗ୍ରହଣ କରିଛନ୍ତି ଓ ତାହାର ବାହ୍ୟିକ ବା ଭୌତିକ ସମାନ୍ତରାଳ ଭାବେ ଅଗ୍ନିକୁ ସ୍ୱୀକାର କରିଛନ୍ତି । ସଂସାରରେ ଯେତେ ମୌଳିକ ବସ୍ତୁ ରହିଛନ୍ତି ସେମାନଙ୍କ ମଧ୍ୟରେ ଅଗ୍ନି ହେଉଛି ସବୁଠାରୁ ପରିବର୍ତ୍ତନଶୀଳ ସତ୍ତା । ଅଗ୍ନି ମୁହୂର୍ତ୍ତକୁ ମୁହୂର୍ତ୍ତ ପରିବର୍ତ୍ତିତ ହେଉଥାଏ ଓ କେବେ ହେଲେ ଦୁଇଟି ମୁହୂର୍ତ୍ତରେ ସମାନ ରହେନାହିଁ । ଅଗ୍ନିରେ ଇନ୍ଧନ ଭାବେ ଯେକୌଣସି ବସ୍ତୁ ଦହନ ପ୍ରକ୍ରିୟାରେ ପରିବର୍ତ୍ତିତ ହେଉଥାଏ । ଅଗ୍ନିର ଦହନ ପ୍ରକ୍ରିୟାରୁ ଏକ ବସ୍ତୁ ଧୂମ ଓ ବାଷ୍ପରେ ରୂପାନ୍ତରିତ ହୁଏ ।

ଜଗତର ମୂଳ ବସ୍ତୁକୁ ଅଗ୍ନି ଭାବରେ ନେବାପରେ ଅଗ୍ନିରୁ କିପରି ସବୁକିଛି ଉଦ୍‌ଭବ ହୋଇଛି ଓ ଶେଷରେ ଅଗ୍ନିରେ ବିଲୀନ ହେବ ତାହାର ଏକ ସମ୍ଭାବ୍ୟ ପ୍ରକ୍ରିୟା ହେରାକ୍ଲାଇଟସ ବୁଝାଇଛନ୍ତି । ସେ ଏହାକୁ ଉର୍ଦ୍ଧ୍ୱଗାମୀ ମାର୍ଗ ଓ ନିମ୍ନଗାମୀ ମାର୍ଗ ଆଧାରରେ ବ୍ୟାଖ୍ୟା କରିଛନ୍ତି । ମୂଳ ସତ୍ତା ଅଗ୍ନି ଘନୀଭୂତ ସ୍ତରରେ ବାୟୁରେ ପରିବର୍ତ୍ତିତ ହୁଏ, ବାୟୁ ଜଳରେ ଓ ଜଳ ପୃଥ୍ୱୀ ବା କ୍ଷିତିରେ ରୂପାନ୍ତରିତ ହୁଏ । ଅର୍ଥାତ୍ ଘନୀଭୂତ (condensed) ଅଗ୍ନିରୁ ବାୟୁ, ଘନୀଭୂତ ବାୟୁରୁ ଜଳ ଓ ଘନୀଭୂତ ଜଳରୁ ପୃଥ୍ୱୀର ଉଦ୍‌ଭବ ହୁଏ ବୋଲି ହେରାକ୍ଲାଇଟସ ପରିକଳ୍ପନା କରିଛନ୍ତି ଓ ଏହି କ୍ରିୟାକୁ ନିମ୍ନଗାମୀ ମାର୍ଗ (downward path) କୁହାଯାଇଛି । ଏହାର ବିପରୀତ ପ୍ରକ୍ରିୟାକୁ ଉର୍ଦ୍ଧ୍ୱଗାମୀ ମାର୍ଗ (upward path) କୁହାଯାଉଛି । ପୃଥ୍ୱୀ ଯେତେବେଳେ ମୌଳିକାନ୍ତକରଣ ଯୋଗୁ ଜଳରେ ରୂପାନ୍ତରିତ ହେଉଛି, ଜଳ ସେହି ପ୍ରକ୍ରିୟାରେ ବାୟୁରେ ପରିବର୍ତ୍ତିତ ହେଉଛି ଓ ବାୟୁ ଅଗ୍ନିରେ ରୂପାନ୍ତରିତ ହେଉଛି ଏହାକୁ ଉର୍ଦ୍ଧ୍ୱଗାମୀ ମାର୍ଗ କୁହାଯାଉଛି । ନିମ୍ନଗାମୀ ମାର୍ଗରେ ଅଗ୍ନିରୁ ଭୂତମାନଙ୍କର ଉତ୍ପତ୍ତି ଓ ଉର୍ଦ୍ଧ୍ୱଗାମୀ ମାର୍ଗରେ ସବୁ କିଛି ଶେଷରେ ଅଗ୍ନିରେ ବିଲୀନ ହେବା ପ୍ରକ୍ରିୟା ସୃଷ୍ଟିର ଏକ ନିରନ୍ତର ଧାରା । ସକଳ ପରିବର୍ତ୍ତନ ଏହିପରି ଏକ ବ୍ୟବସ୍ଥିତ ଧାରାରେ ସଂପନ୍ନ ହୋଇଥାଏ । ହେରାକ୍ଲାଇଟସଙ୍କ ମତରେ ଉର୍ଦ୍ଧ୍ୱଗାମୀ ଓ ନିମ୍ନଗାମୀ ମାର୍ଗ ସ୍ୱରୂପରେ ଗୋଟିଏ କ୍ରିୟାର ଦୁଇ ବିପରୀତ ଅଭିବ୍ୟକ୍ତି । ନିମ୍ନଗାମୀ ମାର୍ଗରେ ସୃଷ୍ଟି ବା ପରିବର୍ତ୍ତନ ଓ ଉର୍ଦ୍ଧ୍ୱଗାମୀ ମାର୍ଗରେ ବିଲୟ ବା ପ୍ରଳୟର ଭାବନା ଆସିଥାଏ । ଏହା ଦୁଇ ବିପରୀତ ପ୍ରକ୍ରିୟା ହେଲେ ମଧ୍ୟ ଏହାର ଏକତ୍ର ସ୍ଥିତି କ୍ଷେତ୍ରରେ ବିରୋଧାଭାସ ନାହିଁ । ହେରାକ୍ଲାଇଟସଙ୍କ ସିଦ୍ଧାନ୍ତ କ୍ଷେତ୍ରରେ ପ୍ରତ୍ୟେକ ସତ୍ତାରେ ଦୁଇ ବିପରୀତ ତତ୍ତ୍ୱ ରହିବା ଏକ ଗୃହୀତ ନିର୍ଣ୍ଣୟ ଅଟେ ।

ହେରାକ୍ଲାଇଟସଙ୍କର ଏକ ପ୍ରଳୟ ଭାବନା ରହିଥିଲା ଯାହା ଏକ ଅଭିନବ ତତ୍ତ୍ୱ ଅଟେ । ପରବର୍ତ୍ତୀ ଗ୍ରୀକ୍ ଦାର୍ଶନିକମାନେ ଏହାର ବିଭିନ୍ନ ବ୍ୟାଖ୍ୟା କରିଥିବା ଦେଖାଯାଏ । ତେବେ ପ୍ରଳୟ ଯେ ଜଗତର ଏକ ପରିସମାପ୍ତି ଏହି ଭାବନା ସେ ପୋଷଣ କରିନାହାନ୍ତି । ସେ କେବଳ ଏହି ପରିକଳ୍ପନା କରିଥିଲେ ଯେ ଉର୍ଦ୍ଧ୍ୱଗାମୀ ମାର୍ଗରେ ସବୁ ଏକ ଅଗ୍ନି-ମଣ୍ଡଳରେ ପରିଣତ ହୋଇଯିବ ଓ ନିମ୍ନଗାମୀ ମାର୍ଗରେ ଏହି ଅଗ୍ନିମଣ୍ଡଳରୁ ପୁନଶ୍ଚ ସବୁ କିଛିର ଉଦ୍‌ଭବ ହେବ । ଏକ ସୀମିତ ଅର୍ଥରେ ସେ ପରିବର୍ତ୍ତନ ଓ ପ୍ରଳୟର ଅବଧାରଣା କରିଥିବା ମନେହୁଏ ।

ହେରାକ୍ଲାଇଟସଙ୍କ ଦର୍ଶନରେ ଅଗ୍ନିକୁ ମୂଳ ସତ୍ତା ଭାବରେ ଗ୍ରହଣ କରାଯିବା ସହ ପରିବର୍ତ୍ତନବାଦକୁ ଏକ ସିଦ୍ଧାନ୍ତ ଭାବରେ ସ୍ୱୀକାର କରାଯାଇଛି । ଏହି କାରଣ ଯୋଗୁ ଜଗତରେ ରହିଥିବା ଅନନ୍ତ ବସ୍ତୁ ସକଳ ଅଗ୍ନିର ରୂପାନ୍ତର ଭାବେ ଅଭିବ୍ୟକ୍ତ ହୋଇଛନ୍ତି କିମ୍ବା ଅଗ୍ନିର ରୂପ ଧାରଣ କରିବାରେ ସମର୍ଥ ହୋଇଛନ୍ତି । ଅଗ୍ନି ଏବଂ ବସ୍ତୁ ମାନଙ୍କ ମଧ୍ୟରେ ଏହି ପାରସ୍ପରିକ ବିନିମୟ ଏକ ଆକସ୍ମିକ କିମ୍ବା ସଂଯୋଗବଶତ ଘଟଣା ନୁହେଁ । ଏଥିରେ ଏକ ସୁବ୍ୟବସ୍ଥିତ ସଂହତି ବିଦ୍ୟମାନ ଯାହା ଏକ ନିୟମ ଆଧାରରେ ଅଭିବ୍ୟକ୍ତ ହୋଇଥିବା ଜଣାଯାଏ । ବିଶ୍ୱର ଉତ୍ପତ୍ତି ଓ ସଂଚାଳନ ପ୍ରକ୍ରିୟାକୁ ହେରାକ୍ଲାଇଟସ "ବୁଦ୍ଧି" (Logus) ମାଧ୍ୟମରେ ବ୍ୟାଖ୍ୟା କରିବାକୁ ପ୍ରଯତ୍ନ କରିଛନ୍ତି ।

ଜଗତର ସକଳ ବସ୍ତୁ ଅସ୍ଥାୟୀ ଓ ଅନିତ୍ୟ ହେଲେ ମଧ୍ୟ ଏହାକୁ ନିୟନ୍ତ୍ରଣ ଓ ସଂଚାଳନ କରିବା ପାଇଁ ବୁଦ୍ଧି ଏକ ପରମ ସତ୍ତା ଭାବେ ରହିଛି । ଏହି ବୁଦ୍ଧିକୁ ସେ ସର୍ବୋଚ୍ଚ ସତ୍ତା ଭାବରେ ନେଇଛନ୍ତି । ଏହି ବୁଦ୍ଧିକୁ ସେ ନିରାକାର ଭାବେ ଗ୍ରହଣ କରି ତାହାକୁ ବିଶ୍ୱାଗ୍ନି ଭାବେ କଳ୍ପନା କରିଛନ୍ତି । ବିଶ୍ୱାଗ୍ନି ଭୌତିକ ଅଗ୍ନି ନୁହେଁ, ତେବେ ଏହି ବିଶ୍ୱାଗ୍ନି ଜଗତର ଓ ଜଗତରେ ଥିବା ସକଳ ବସ୍ତୁମାନଙ୍କର ମୂଳ ସ୍ରୋତ ବା ଆଧାର ଅଟେ । ସବୁ କିଛିର ଉତ୍ପତ୍ତି ଏଥିରୁ ସମ୍ଭବ ହୋଇଛି । ଏହି ବିଶ୍ୱାଗ୍ନିକୁ ସେ ସ୍ୱସ୍ଥିତ ଓ ସ୍ୱୟଂଭୂ ଭାବେ ପରିକଳ୍ପନା କରିଛନ୍ତି ।

ସେହିପରି ବୁଦ୍ଧି ଏକ ଆଦ୍ୟ ନିୟାମକ ଶକ୍ତି ବୋଲି ସେ ଭାବିଛନ୍ତି । ଜଗତର ସକଳ ବସ୍ତୁର ସୃଜନ ଓ ସଂଚାଳନ ବୁଦ୍ଧିଦ୍ୱାରା ସମାହିତ ହେଉଛି । ଏପରିକି ଏହା ମୂଳ ଅଗ୍ନିକୁ ମଧ୍ୟ ସଂଚାଳନ କରିବାର ଭାବନା ବ୍ୟକ୍ତ କରିଛନ୍ତି । ଅଗ୍ନିର ନିମ୍ନଗାମୀ ମାର୍ଗ, ଊର୍ଦ୍ଧ୍ୱଗାମୀ ମାର୍ଗ ଓ ସୃଷ୍ଟି-ଚକ୍ର ଏହି ବୁଦ୍ଧିର ସଂଚାଳନ ଦ୍ୱାରା ସମ୍ଭବ ହୋଇଛି । ସେହିପରି ବିରୁଦ୍ଧ ଶକ୍ତିମାନଙ୍କର ସଂଘର୍ଷ, ସହାବସ୍ଥାନ ଓ ସକଳ ପରିବର୍ତ୍ତନର ବ୍ୟବସ୍ଥା ବୁଦ୍ଧିଦ୍ୱାରା ନିୟନ୍ତ୍ରିତ ହେଉଛି । ମୋଟଉପରେ ହେରାକ୍ଲାଇଟସ ଯାହାକୁ ବୁଦ୍ଧି ବା ଲୋଗସ କହୁଛନ୍ତି ତାକୁ ଏକ 'ପରମ ଚେତନା' କୁହାଯାଇପାରେ । ସେ ସବୁର ନିୟନ୍ତକ ଓ ନିୟାମକ । ସମସ୍ତ ପ୍ରାଣୀମାନଙ୍କ ମଧ୍ୟରେ ଥିବା ଜୀବନକୁ ସେ ଆତ୍ମା ବୋଲି ନେଇଛନ୍ତି ଓ ଏହି ଆତ୍ମାର ମୂଳ-ସ୍ରୋତ ହେଉଛି ପରମ ଚେତନା । କୌଣସି ବ୍ୟକ୍ତିର ଏକ ନିଜସ୍ୱ ବା ସ୍ୱତନ୍ତ୍ର ଆତ୍ମା ନାହିଁ । ବ୍ୟକ୍ତିମାନଙ୍କ ମଧ୍ୟରେ ରହିଥିବା ଚେତନା ବିଶ୍ୱଚେତନାର ଅଂଶବିଶେଷ ମାତ୍ର । କିମ୍ବା ଅନ୍ୟ ଭାବରେ କହିଲେ ମାନବୀୟ ଚେତନା ବିଶ୍ୱାଗ୍ନିର ଅଂଶ ବିଶେଷ । It is part of the universal soul-fire (ପୃଷ୍ଠା-୭୯) ବୋଲି ଷ୍ଟେସ୍ ଏହାର ସ୍ୱରୂପକୁ ଦର୍ଶାଇଛନ୍ତି । ତେବେ ମାନବାତ୍ମା ମୂଳ ଅଗ୍ନିର ଉଷ୍ଣତମ ଅଂଶ ଯଦିବା ଏହାର ଏକ ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ । ହେରାକ୍ଲାଇଟସଙ୍କ ମତରେ ଯେଉଁ ଆତ୍ମାରେ ଯେତେ ଅଧିକ ଅଗ୍ନି ବା ଉଷ୍ଣତା ବିଦ୍ୟମାନ, ତାହା ସେତେ ଉତ୍ତମ ସ୍ୱଭାବ ବିଶିଷ୍ଟ ହୋଇଥାଏ । ବ୍ୟକ୍ତିର ସ୍ୱଭାବ ଓ ବ୍ୟକ୍ତିତ୍ୱକୁ ଉଷ୍ଣତା ବା ଅଗ୍ନିର ମାତ୍ରା ପ୍ରଭାବିତ କରିଥାଏ । ଯେପରି ମୂଳ ଅଗ୍ନି ବିଶ୍ୱ ଉପରେ ନିୟନ୍ତ୍ରଣ ରଖିଥାଏ, ସେହିପରି ମାନବାତ୍ମା ମାନବିକ କାର୍ଯ୍ୟକୁ ପ୍ରଭାବିତ କରିଥାଏ । ବ୍ୟକ୍ତି ଭିତରେ ଥିବା ଆତ୍ମା ବା ଚେତନା ବିଶ୍ୱାଗ୍ନିର ଅଂଶବିଶେଷ ମାତ୍ର । ବିଶ୍ୱକୁ ବିଶ୍ୱାଗ୍ନି ନିୟନ୍ତ୍ରଣ କଲା ପରି ମାନବୀୟ କାର୍ଯ୍ୟକଳାପ ବ୍ୟକ୍ତି ଭିତରର ଚେତନା ଦ୍ୱାରା ନିୟନ୍ତ୍ରିତ ହୋଇଥାଏ ।

ସଂସାରରେ ଯେପରି ଅଗ୍ନିର ନିମ୍ନଗାମୀ ଓ ଊର୍ଦ୍ଧ୍ୱଗାମୀ ମାର୍ଗ ରହିଛି, ସେହିପରି ବ୍ୟକ୍ତି ସ୍ୱଭାବରେ ମଧ୍ୟ ତାହାର ପ୍ରତିଫଳନ ରହିଛି । ବ୍ୟକ୍ତି ଭିତରେ ସକ୍ରିୟତା ରହିବା ସହ ଆଳସ୍ୟ, ନିଦ୍ରା ଇତ୍ୟାଦି ମଧ୍ୟ ରହିଛି । ବ୍ୟକ୍ତି ଭିତରର ବୁଦ୍ଧି ଓ ଚେତନା ଅଗ୍ନିର ଗୁଣ ବହନ କରେ ଓ ଏହା ଊର୍ଦ୍ଧ୍ୱଗାମୀ ଚେତନାର ପ୍ରତୀକ । ସେହିପରି ନିମ୍ନଗାମୀ କ୍ରିୟାରେ ଯେତେବେଳେ ଆତ୍ମାର ଅଗ୍ନିକୁ ଜଳ ପରାଭୂତକରେ, ସେତେବେଳେ ବ୍ୟକ୍ତି ସ୍ୱଭାବରେ ଆଳସ୍ୟ, ନିଦ୍ରା ଆଦି ଉଦ୍ରେକ ହୁଏ । ଯେତେବେଳେ ଅଗ୍ନିତତ୍ତ୍ୱ, ପୂର୍ଣ୍ଣ ରୂପରେ ପରାଭୂତ ହୋଇଯାଏ, ସେତେବେଳେ ବ୍ୟକ୍ତିର ମୃତ୍ୟୁ ହୁଏ । ହେରାକ୍ଲାଇଟସ ମୃତ୍ୟୁର ଏକ ଭିନ୍ନ ବ୍ୟାଖ୍ୟା ମଧ୍ୟ ଦେଇଛନ୍ତି । ବିଶ୍ୱ ଅଗ୍ନି ସହ ମାନବାତ୍ମାର

ସମ୍ବନ୍ଧ ଛିନ୍ନ ହେଲେ ବ୍ୟକ୍ତିର ବୁଦ୍ଧି ଲୁପ୍ତ ହୁଏ ଓ ଏହି ପ୍ରକ୍ରିୟାରେ ବ୍ୟକ୍ତିର ମୃତ୍ୟୁ ହୁଏ ।

**ଧର୍ମ ଓ ନୀତିଶାସ୍ତ୍ର :** ହେରାକ୍ଲାଇଟସ ନିଜ ସମୟର ଧାର୍ମିକ ପରଂପରା ଓ ଲୋକବିଶ୍ୱାସ ସମ୍ବନ୍ଧରେ ସଂଶୟବାଦୀ ଥିଲେ । ତେବେ ସମସାମୟିକ ସମାଜର ମୌଳିକ ଧର୍ମବିଶ୍ୱାସ ଗୁଡିକ ବା ଈଶ୍ୱର ବିଶ୍ୱାସ ପ୍ରତି ସେ ଶ୍ରଦ୍ଧାଶୀଳ ଥିଲେ । ତାଙ୍କର ଈଶ୍ୱର ବିଶ୍ୱାସ ଥିଲା । ତେବେ ହେରାକ୍ଲାଇଟସ ସଂସ୍କାରବାଦୀ ଚେତନାର ବ୍ୟକ୍ତି ଥିଲେ । ତାଙ୍କ ସମୟରେ ଗ୍ରୀସ୍‌ରେ ଲୋକ ବିଶ୍ୱାସରେ ଯେଉଁ ପ୍ରତିମା ପୂଜାର ପରମ୍ପରା ଥିଲା ସେ ତାହାକୁ ସ୍ୱୀକାର କରୁନଥିଲେ । ସେହିପରି ତାଙ୍କ ସମୟରେ ଯେଉଁ ପଶୁବଳି ପ୍ରଥା ସମାଜରେ ପ୍ରଚଳିତ ଥିଲା ସେ ତାହାର ସମାଲୋଚନା କରୁଥିଲେ । ଅର୍ଥାତ୍ ଦେବୀଦେବତାଙ୍କୁ ମାନବିକ ରୂପରେ ପୂଜାକରିବା ଓ ମନସ୍କାମନା ପୂରଣ ପାଇଁ ନିରୀହ ପଶୁମାନଙ୍କୁ ବଳିଦେବା ପଦ୍ଧତି ସେ ବିରୋଧୀ ଥିଲେ । ମନ୍ଦ କାର୍ଯ୍ୟରେ ଲିପ୍ତ ଥିବା ବ୍ୟକ୍ତିମାନେ ପଶୁବଳି ଦେଇ ନିଜର ପାପ ଲାଘବ କରିବାର ଉଦ୍ୟମର ସେ ସମାଲୋଚକ ଥିଲେ ଓ ସମାଜକୁ ସଂସ୍କାରିତ କରିବାକୁ ପ୍ରୟାସ କରିଥିଲେ । ନିଜ ସମୟର ଯେଉଁ ପୂଜକ ଗୋଷ୍ଠୀ ଲୋକମାନଙ୍କ ଭିତରେ ଏହିସବୁ କୁସଂସ୍କାର ପ୍ରସାର କରୁଥିଲେ ସେ ସେମାନଙ୍କୁ ତୀବ୍ର ସମାଲୋଚନା କରୁଥିଲେ । ଯେଉଁ ବିଶ୍ୱାସମାନ ମୂର୍ଖତାପୂର୍ଣ୍ଣ ଓ ସମାଜ ପାଇଁ କ୍ଷତିକାରକ ସେ ସବୁକୁ ସେ ଅସ୍ୱୀକାର କରି ସମାଜ ସଂସ୍କାର କ୍ଷେତ୍ରରେ ନିଜର ସଂପୃକ୍ତି ବ୍ୟକ୍ତ କରିଥିଲେ । ତେବେ ଆଧିଦୈବିକ ବିଶ୍ୱାସ ଓ ଡେଲଫି୍ ଦେବୀଙ୍କ ଦୈବୀବାଣୀ ଉପରେ ତାଙ୍କର ଆସ୍ଥା ଥିବା କେତେକ ତଥ୍ୟରୁ ଜଣାପଡେ । ଦୈବୀଶକ୍ତିଙ୍କ ପ୍ରତି ନିଷ୍ଠା ଓ ଭକ୍ତିଦ୍ୱାରା ଭବିଷ୍ୟତ ସଂପର୍କରେ ଯେ ଜାଣିହେବ ଏଥିରେ ତାଙ୍କର ବିଶ୍ୱାସ ରହିଥିଲା । ସମ୍ଭବତଃ ସେ ସମୟର ଗ୍ରୀସ୍‌ରେ ଏହା ଏକ ସାର୍ବଜନୀନ ବିଶ୍ୱାସ ଥିଲା ।

ହେରାକ୍ଲାଇଟସ ସଂଯମତା ଓ ବିବେକତାପୂର୍ଣ୍ଣ ଜୀବନକୁ ଗଭୀର ପ୍ରାଧାନ୍ୟ ଦେଉଥିଲେ । ସେ ପ୍ରାୟତଃ ବୈରାଗୀ ସ୍ୱଭାବର ବ୍ୟକ୍ତି ଥିଲେ । ସଂଯମତାହୀନ, ବିଳାସପୂର୍ଣ୍ଣ ଓ ବୈଭବପୂର୍ଣ୍ଣ ଜୀବନକୁ ପ୍ରତ୍ୟାଖ୍ୟାନ କରି ଏକ ସଂଯମତାପୂର୍ଣ୍ଣ ଓ ସରଳ ଜୀବନ ପ୍ରତି ଆଗ୍ରହ ରଖିଥିଲେ । କାମନା, ବାସନାରୁ ମୁକ୍ତ ରହିବାକୁ ସେ ଉଚିତ ମନେ କରୁଥିଲେ ଓ ଏକ ପ୍ରାକୃତିକ ଜୀବନ ପ୍ରତି ଶ୍ରଦ୍ଧାଶୀଳ ଥିଲେ । ନିଜର କାର୍ଯ୍ୟ ଓ କଥା ମଧ୍ୟରେ ସମନ୍ୱୟ ରଖି ଜୀବନ ବଞ୍ଚିବାକୁ ଆଦର୍ଶ ମନେ କରୁଥିଲେ ।

ହେରାକ୍ଲାଇଟସ ବୁଦ୍ଧି ଓ ଇନ୍ଦ୍ରିୟଗ୍ରାହ୍ୟତା ଭିତରେ ପାର୍ଥକ୍ୟ କରି ଯାହା ବୁଦ୍ଧି ଓ ବିଚାରଦ୍ୱାରା ସତ୍ୟ, ତାହାକୁ ସ୍ୱୀକାର କରୁଥିଲେ । ଇନ୍ଦ୍ରିୟଦ୍ୱାରା ଆମେ କେତେକ ବିଷୟକୁ ସତ୍ୟ ବୋଲି ଗ୍ରହଣ କରୁଥିଲେ ବି କେବଳ ବିଚାର ବୁଦ୍ଧି ଦ୍ୱାରା ଆମେ ବାସ୍ତବ ସତ୍ୟକୁ ଉପଲବ୍ଧ କରିପାରିବା ବୋଲି ବିଶ୍ୱାସ କରୁଥିଲେ । ଇନ୍ଦ୍ରିୟ ଲବ୍ଧ ଜ୍ଞାନ ଭ୍ରାନ୍ତିପୂର୍ଣ୍ଣ ହୋଇପାରେ କିନ୍ତୁ ବୁଦ୍ଧିଯୁକ୍ତ ଓ ବିଚାରସମର୍ଥିତ ଜ୍ଞାନ ଭ୍ରମପୂର୍ଣ୍ଣ ହେବ ନାହିଁ ବୋଲି ଭାବନା ଦେଇଥିଲେ । ବିଶେଷକରି ବୁଦ୍ଧିଦ୍ୱାରା ସମ୍ଭବନ ସିଦ୍ଧାନ୍ତ (Law of becoming) ସମ୍ବନ୍ଧରେ ଆମେ ଜାଣିପାରିବା । ସମ୍ଭବନ ସିଦ୍ଧାନ୍ତ ଉପରେ ଉପଯୁକ୍ତ ଜ୍ଞାନଦ୍ୱାରା ଆମେ ନିଜର କର୍ତ୍ତବ୍ୟ ବିଷୟରେ ସଚେତନ ହୋଇ ପାରିବା ।

ନିଜର କର୍ତ୍ତବ୍ୟ ଜନିତ ଜ୍ଞାନଦ୍ୱାରା ସୁଖକର ଜୀବନ ବଞ୍ଚିପାରିବା । ମୋଟ ଉପରେ କହିଲେ ବିଚାରଶୀଳ ମାର୍ଗ ଅନୁସରଣ କରିବା ସର୍ବୋତ୍ତମ ସଦ୍‌ଗୁଣ ଅଟେ । ଏହାଦ୍ୱାରା ଆମର ଆତ୍ମା ସୁସଂସ୍କୃତ ଓ ଜ୍ଞାନପୂର୍ଣ୍ଣ ହୋଇପାରିବ । ଆମର ଆତ୍ମାକୁ ଜ୍ଞାନପୂର୍ଣ୍ଣ କରିବାର ପ୍ରୟାସ ନ ରହିଲେ ଆମର ଇନ୍ଦ୍ରିୟଲବ୍ଧ ଅନୁଭୂତି ଆମ ପାଇଁ ବ୍ୟର୍ଥ ହେବ । ଇନ୍ଦ୍ରିୟଲବ୍ଧ ଅନୁଭୂତିର ଉପଯୁକ୍ତ ମୂଲ୍ୟାୟନ ଅଭାବରେ ଆମେ ସତ୍ୟରେ ଉପନୀତ ହୋଇପାରିବା ନାହିଁ । ହେରାକ୍ଲାଇଟସଙ୍କ ମତରେ ବୁଦ୍ଧିଦ୍ୱାରା ଆମର ନୈତିକ ଜୀବନ ନିର୍ଦ୍ଧାରିତ ହୋଇପାରିବ । ନୀତିମାନ ହେବା ପାଇଁ ବୌଦ୍ଧିକ ଜୀବନ ଯେ ଅବଶ୍ୟମ୍ଭାବୀ ଏହା ତାଙ୍କର ନିର୍ଣ୍ଣୟ ମନେହୁଏ । ନୈତିକତାକୁ ସେ ନିୟମ ପ୍ରତି ଶ୍ରଦ୍ଧା ଓ ଆତ୍ମସଂଯମ ଅର୍ଥରେ ଗ୍ରହଣ କରୁଥିଲେ । ନିଜର ବୁଦ୍ଧି ବିବେକଦ୍ୱାରା ନିଜ ଜୀବନକୁ ସଂଚାଳିତ କରିବା ନୈତିକ ହେବାର ଅନିବାର୍ଯ୍ୟ କାରଣ ବୋଲି ତାଙ୍କର ବିଶ୍ୱାସ ରହିଥିଲା । ମୋଟ ଉପରେ କହିଲେ ଜୀବନର ନୈତିକ ଶୃଂଖଳା ଏକ ମହତ୍ତର ଜୀବନର ମାନଦଣ୍ଡ ଓ ଏହି ଶୃଂଖଳା ଆମର ବୌଦ୍ଧିକ ଓ ବିଚାରଶୀଳତା ଦ୍ୱାରା ଯେ ଆସି ପାରିବ ଏହା ତାଙ୍କର ଉପଲବ୍ଧି ଥିଲା ।

ଦର୍ଶନର ବିଭିନ୍ନ କ୍ଷେତ୍ରକୁ ହେରାକ୍ଲାଇଟସଙ୍କର କିଛି ମହତ୍ତ୍ୱପୂର୍ଣ୍ଣ ଅବଦାନ ରହିଛି । ତେବେ କେତେକ ଦର୍ଶନ-ଐତିହାସିକ ତାଙ୍କୁ ରହସ୍ୟବାଦୀ ବୋଲି ଚିତ୍ରଣ କରିଛନ୍ତି । ସ୍ଥଳ ବିଶେଷରେ ତାଙ୍କ ଭାଷାର କ୍ଲିଷ୍ଟତା, ବିରୋଧାଭାସ-ପୂର୍ଣ୍ଣ ଅଭିବ୍ୟକ୍ତି ଓ ଜଟିଳ ସୈଦ୍ଧାନ୍ତିକ ଉକ୍ତି ଯୋଗୁ ସେ ଦୁର୍ବୋଧ ମନେହୁଅନ୍ତି । ସେଥିପାଇଁ ତାଙ୍କୁ କେତେକ ରହସ୍ୟବାଦୀ ବୋଲି ଚିତ୍ରଣ କରିଥାନ୍ତି, ଅନ୍ୟ କେତେକ ଐତିହାସିକ ହେରାକ୍ଲାଇଟସଙ୍କର ଏପରି ଚିତ୍ରଣ ସହ ସମ୍ମତ ହୁଅନ୍ତି ନାହିଁ । ତାଙ୍କ ବର୍ଣ୍ଣନା ଶୈଳୀରେ କେତେକ କ୍ଷେତ୍ରରେ ଅସ୍ପଷ୍ଟତା ରହିଥିବାରୁ ତାଙ୍କୁ କେତେକ ରହସ୍ୟବାଦୀ ଦାର୍ଶନିକ ବୋଲି ଅଭିହିତ କରିଥିବା ବେଳେ ଅନ୍ୟ କେତେକ ଲେଖକ ତାଙ୍କ ଅବଦାନର ପ୍ରଶଂସା କରିଛନ୍ତି । ତାଙ୍କୁ ସଂଶୟବାଦୀ, ହେତୁବାଦୀ, ରହସ୍ୟବାଦୀ ଇତ୍ୟାଦି ଯେଉଁଳି ବ୍ୟକ୍ତ କଲେ ମଧ୍ୟ ସେ ଯେ ତାଙ୍କ ସମୟର ଜଣେ ପ୍ରଭାବଶାଳୀ ଦାର୍ଶନିକ ଏହା ଅନସ୍ୱୀକାର୍ଯ୍ୟ । ତାଙ୍କ ବିଚାର ଓ ସିଦ୍ଧାନ୍ତ ମାନଙ୍କର ଯେ ଦର୍ଶନ ଇତିହାସରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ରହିଛି ଓ ପରବର୍ତ୍ତୀ ସମୟରେ ପାଶ୍ଚାତ୍ୟ ଦର୍ଶନ ଇତିହାସରେ ବହୁ ପ୍ରବୀଣ ଚିନ୍ତକ ତାଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି ଏହା ଅସ୍ୱୀକାର କରିହେବ ନାହିଁ । ତାଙ୍କ ବିଚାରରେ ସାପେକ୍ଷବାଦ, ବୁଦ୍ଧିବାଦ, ନିୟତିବାଦ, ବୈରାଗ୍ୟବାଦ ପରି ବିଚାରମାନଙ୍କର ଯେଉଁ ଝଲକ ରହିଛି ତାହାର ବିକାଶ ପରବର୍ତ୍ତୀ ସମୟରେ ହୋଇଛି । ତାଙ୍କ ଦାର୍ଶନିକ ଦିଗନ୍ତ ବହୁ ସୁଦୂରପ୍ରସାରୀ ଥିଲା ଓ ଏହା ପାଶ୍ଚାତ୍ୟ ଚିନ୍ତାମାନସକୁ ବହୁ ଦିଗରେ ପ୍ରଭାବିତ କରିଛି । ସେ ଯେ ଏକ ବହୁମୁଖୀ ପ୍ରତିଭାର ବ୍ୟକ୍ତି ଥିଲେ ଏହା ନିଃସନ୍ଦେହ ମନେହୁଏ ।

### ୪.୩ ଏମ୍ପେଡୋକ୍ଲିସ୍ (Empedocles)

ଏଂପେଡୋକ୍ଲିସ୍‌ଙ୍କର ଜନ୍ମ ସିସିଲୀ ରାଜ୍ୟର ଆଗ୍ରିଜେଣ୍ଟମ୍ ସହରରେ ଖ୍ରୀ:ପୂ. ୪୯୫ ରେ ହୋଇଥିଲା ଓ ତାଙ୍କର ଦେହାନ୍ତ ଖ୍ରୀ.ପୂ. ୪୩୫ ରେ ହେବା କୁହାଯାଏ । ତାଙ୍କର ଜନ୍ମ ଏକ ସଂଭ୍ରାନ୍ତ ପରିବାରରେ ହୋଇଥିଲା ଓ ସେ ଏକ ଆକର୍ଷଣୀୟ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ । ତାଙ୍କ ବିଷୟରେ ଅନେକ ଲୋକକଥା ଓ ଚମତ୍କାରିତାର

କାହାଣୀ ଶୁଣାଯାଏ । ସେ ଜଣେ ବାଗ୍ମୀ ଭାବରେ ପରିଚିତ ଥିଲେ ଓ ରାଜନୀତି କ୍ଷେତ୍ରରେ ଆଗ୍ରହ ରଖିଥିଲେ । ସେ ତାଙ୍କର ବାଗ୍ମିତା ଓ ପାଣ୍ଡିତ୍ୟ ଯୋଗୁ ଲୋକମାନଙ୍କ ମଧ୍ୟରେ ସୁପରିଚିତ ଥିଲେ । ରାଜ୍ୟର ସୁଶାସନ ପାଇଁ ସେ ଲୋକତନ୍ତ୍ର ଉପରେ ଆସ୍ଥା ରଖିଥିଲେ ଓ ସେଥିପାଇଁ ରାଜ୍ୟରୁ ନିର୍ବାସିତ ହୋଇଥିଲେ । ସେ ବହୁ ବିଷୟରେ ପାରଦର୍ଶୀ ଥିଲେ ଓ ନିଜ ସମସାମୟିକ କାଳରେ ଜଣେ ପ୍ରଚଣ୍ଡ ପ୍ରତିଭାଧାରୀ ବ୍ୟକ୍ତି ଭାବରେ ପରିଚିତ ହୋଇଥିଲେ ।

ତାଙ୍କର ଦାର୍ଶନିକ ଭାବନାମାନଙ୍କୁ ସେ କବିତା ମାଧ୍ୟମରେ ପ୍ରକାଶ କରିଥିଲେ । କବିତା ମାଧ୍ୟମରେ ଦାର୍ଶନିକ ସିଦ୍ଧାନ୍ତମାନଙ୍କୁ ବ୍ୟକ୍ତ କରିଥିବା ଯୋଗୁ ସେ ବେଳେ ବେଳେ ଅସ୍ପଷ୍ଟ ବୋଧ ହୁଅନ୍ତି । ଏହା ସହିତ ତାଙ୍କର ସିଦ୍ଧାନ୍ତ ମାନ କବିତା ମାଧ୍ୟମରେ ବ୍ୟକ୍ତ ହୋଇଥିବା ଯୋଗୁ ଦାର୍ଶନିକ ଭାବନା କ୍ଷେତ୍ରରେ ସେ ତର୍କଶୀଳତାକୁ ବିଶେଷ ପ୍ରାଧାନ୍ୟ ଦେଇନାହାନ୍ତି । ଭାଷାର କିଛି କ୍ଲିଷ୍ଟତା, ଅସ୍ପଷ୍ଟତା ଇତ୍ୟାଦି କାରଣରୁ ତାଙ୍କ ସିଦ୍ଧାନ୍ତମାନ ସ୍ପଷ୍ଟ ହୋଇନାହିଁ । ଏଂପେଡୋକ୍ଲିସ୍‌ଙ୍କ ଆବିର୍ଭାବ ସମୟକୁ ଗ୍ରୀସ୍‌ରେ ବିଭିନ୍ନ ପରସ୍ପରବିରୋଧୀ ଦାର୍ଶନିକ ସିଦ୍ଧାନ୍ତ ମାନଙ୍କର ବିକାଶ ହୋଇଥିଲା । ଏହି ସ୍ଥିତିରେ ଏଂପେଡୋକ୍ଲିସ୍‌ଙ୍କର ଆଭିମୁଖ୍ୟ ରହିଲା ପରସ୍ପରବିରୋଧୀ ଦାର୍ଶନିକ ତତ୍ତ୍ୱମାନଙ୍କ ମଧ୍ୟରେ ଏକ ସମନ୍ୱୟ ସୃଷ୍ଟି କରିବା । ତାଙ୍କ ଦର୍ଶନରେ କେତେକ ଭାବନା ମାନଙ୍କର ସମନ୍ୱୟ ଦେଖିବାକୁ ମିଳେ । ଅର୍ଥାତ୍ ପରସ୍ପର ବିପରୀତ ମନେହେଉଥିବା ଦାର୍ଶନିକ ସିଦ୍ଧାନ୍ତମାନଙ୍କୁ ଏକତ୍ର କରି ଏକ ସମନ୍ୱିତ ସିଦ୍ଧାନ୍ତ ନିର୍ମାଣ କରିବା ତାଙ୍କର ଆଭିମୁଖ୍ୟ ଥିଲା । ଏକ ସମନ୍ୱିତ ସିଦ୍ଧାନ୍ତ ବିକାଶ କରିବାର ପ୍ରୟାସ ଭିତରେ ସେ ଦାର୍ଶନିକ ସିଦ୍ଧାନ୍ତର ଅବତାରଣା କରିଛନ୍ତି ।

**ତତ୍ତ୍ୱମୀମାଂସା :-** ଏଂପେଡୋକ୍ଲିସ୍ ତାଙ୍କ ପୂର୍ବବର୍ତ୍ତୀ ଦାର୍ଶନିକମାନଙ୍କ ସିଦ୍ଧାନ୍ତଦ୍ୱାରା ପ୍ରଭାବିତ ହୋଇ ସେମାନଙ୍କ ମଧ୍ୟରେ ଏକ ସମନ୍ୱୟ ସୃଷ୍ଟି କରିବାକୁ ପ୍ରୟାସ କରିଛନ୍ତି । ପାର୍ମେନିଡୀସଙ୍କ ବିଚାର କ୍ଷେତ୍ରରେ ଦୁଇଟି ପୃଥକ୍ ଧାରା ରହିଥିବା ଦେଖାଯାଏ । ତାଙ୍କ ସିଦ୍ଧାନ୍ତକୁ ଦୁଇଟି ଭିନ୍ନ ଦିଗରୁ ବ୍ୟାଖ୍ୟା କରାଯାଇପାରେ । ପାର୍ମେନିଡୀସଙ୍କ ସିଦ୍ଧାନ୍ତ କ୍ଷେତ୍ରରେ କିଛି ଅସ୍ପଷ୍ଟତା ହେତୁ ଏହାକୁ ଏକ ପ୍ରତ୍ୟୟବାଦୀ ଦର୍ଶନ କିମ୍ବା ଭୌତିକବାଦୀ ଦର୍ଶନ ଭାବରେ ବ୍ୟାଖ୍ୟା କରାଯିବା ସମ୍ଭବ । ପାର୍ମେନିଡୀସ୍‌ଙ୍କ ମତରେ ସତ୍ ବା ବିଇଂ ସର୍ବଦା ବିଇଂ ହୋଇ ରହିବ । ଯାହା ସତ୍ ବା ବିଇଂ ତାହାର ବିନାଶ ହେବ ନାହିଁ ଓ ଯାହା ଅସତ୍ ବା ନଟ୍-ବିଇଂ ତାହାର ଉତ୍ପତ୍ତି ନାହିଁ । ଏହି ଭାବଧାରାକୁ ଏଂପେଡୋକ୍ଲିସ୍ ଭୌତିକବାଦ କ୍ଷେତ୍ରରେ ପ୍ରୟୋଗ କରିଛନ୍ତି । ଏହାନୁଯାୟୀ ଭୌତିକ ଉପାଦାନମାନଙ୍କର ଆରମ୍ଭ ନାହିଁ ବା ଶେଷ ନାହିଁ । ସେ ଚାରିପ୍ରକାର ମୌଳିକ ବସ୍ତୁର ପରିକଳ୍ପନା କରିଛନ୍ତି । ସେହି ମୌଳିକ ଭୌତିକ ବସ୍ତୁମାନ ହେଲେ ଅଗ୍ନି, ବାୟୁ, ଜଳ ଓ କ୍ଷିତି ବା ଭୂମି । ଏହି ବସ୍ତୁମାନଙ୍କର ଉପାଦାନ ହେଉଛି ମୂଳ ବା ମୌଳିକ, ଯେଉଁଥିରୁ ସବୁ କିଛିର ଉତ୍ପତ୍ତି ହୋଇଛି । ଜଗତ୍‌ରେ ଆମେ ଯାହା କିଛି ବସ୍ତୁ ଦେଖୁଛୁ ସେ ସବୁ ଏହି ମୂଳ ବସ୍ତୁର ଉପାଦାନରୁ ବିଭିନ୍ନ ଅନୁପାତରେ ନିର୍ମିତ ହୋଇଛି । ମୂଳ ବସ୍ତୁର ବଭିନ୍ନ ମିଶ୍ରଣରୁ ଅନ୍ୟ ସବୁକିଛିର ଉତ୍ପତ୍ତି ଘଟିଛି । ସମ୍ଭବତଃ ଦର୍ଶନ ଇତିହାସରେ ଏଂପେଡୋକ୍ଲିସ୍ ହେଉଛନ୍ତି ପ୍ରଥମ ଦାର୍ଶନିକ ଯେ ବିଶ୍ୱର ଚାରୋଟି ମୌଳିକ ବସ୍ତୁର ପରିକଳ୍ପନା

କରି ସେଥିରୁ ସବୁ କିଛିର ଉତ୍ପତ୍ତି ହୋଇଥିବା ଚିନ୍ତା କରିଛନ୍ତି । ଏହି ପ୍ରତ୍ୟେକଟି ମୂଳ ବସ୍ତୁ ହେଉଛି ନିତ୍ୟ, ଅପରିବର୍ତ୍ତନୀୟ, ଅବିଭାଜ୍ୟ ଓ ଅବିନାଶୀ । ଏଂପେଡୋକ୍ଲିସ୍ ଭାବିଛନ୍ତି ଯେ ମୂଳ ବସ୍ତୁର ଉପାଦାନ (ଅଗ୍ନି, ବାୟୁ, ଜଳ ଓ ଭୂମି) ଗୋଟିଏ ସ୍ଥିତିରେ ହିଁ ରହେ ଓ ସେଥିରେ କିଛି ପରିବର୍ତ୍ତନ ସଂଘଟିତ ହୁଏ ନାହିଁ । ଅର୍ଥାତ୍ ଅଗ୍ନି ସର୍ବଦା ଅଗ୍ନି ହୋଇ ରହେ, ବାୟୁ ସର୍ବଦା ବାୟୁ ହୋଇ ରହେ । ଅଗ୍ନି ଜଳରେ କେବେ ରୂପାନ୍ତରିତ ହୁଏ ନାହିଁ । ବାୟୁ କେବେ ହେଲେ ଭୂମିର ରୂପ ଧାରଣକରେ ନାହିଁ । ପ୍ରତ୍ୟେକ ମୌଳିକ ବସ୍ତୁ କେବେ ହେଲେ ନିଜର ମୌଳିକ ସ୍ୱରୂପ ହରାଏ ନାହିଁ ବା ଅନ୍ୟ କେଉଁଥିକୁ ରୂପାନ୍ତରିତ ହୁଏ ନାହିଁ । ଏଂପେଡୋକ୍ଲିସ୍ ଏହି ଦାର୍ଶନିକ ସିଦ୍ଧାନ୍ତ ବ୍ୟକ୍ତ କରିଛନ୍ତି ଯେ ବିଶ୍ୱରେ ଏହି ଚାରିଟି ମୌଳିକ ସତ୍ତା ବିଦ୍ୟମାନ ରହିଛି ଓ ସେହିଥିରୁ ସବୁ କିଛିର ଉତ୍ପତ୍ତି ସମ୍ଭବ ହୋଇଛି ।

ହେରାକ୍ଲାଇଟସଙ୍କ ମତରେ ସଂସାରରେ ସବୁକିଛି ପରିବର୍ତ୍ତନଶୀଳ, କୌଣସି କିଛି ଶାଶ୍ୱତ ବା ଚିରନ୍ତନ ନୁହେଁ । ପରିବର୍ତ୍ତନଶୀଳତା ଜଗତର ଧର୍ମ । ସଂସାରରେ ସବୁକିଛି ପରିବର୍ତ୍ତିତ ହେଉଥାଏ, ବଦଳୁ ଥାଏ । ପାର୍ମେନିଡୀସ ଓ ହେରାକ୍ଲାଇଟସଙ୍କ ମତ ପରସ୍ପରବିରୋଧୀ ପ୍ରତୀତ ହୋଇଥାଏ । ପାର୍ମେନିଡୀସ ସତ୍ତାକୁ ଚିରନ୍ତନ, ଶାଶ୍ୱତ ବୋଲି ବିଶ୍ୱାସ କରୁଥିବା ବେଳେ ହେରାକ୍ଲାଇଟସ୍ ସବୁ କିଛି ଯେ ପରିବର୍ତ୍ତନଶୀଳ ଓ କିଛି ଚିରନ୍ତନ ନୁହେଁ ଏହା ବିଚାର କରିଛନ୍ତି । ଏହି ସ୍ଥିତିରେ ଏଂପେଡୋକ୍ଲିସ୍ ଏହି ଦୁଇ ବିପରୀତ ମତ ମଧ୍ୟରେ ଏକ ସମନ୍ୱୟ ଆଣିବାକୁ ଚେଷ୍ଟା କରିଛନ୍ତି । ଜଣେ ଦାର୍ଶନିକ ପରିବର୍ତ୍ତନକୁ ମିଥ୍ୟା ଓ ଆଭାସ ବୋଲି ମନେ କରୁଥିବା ବେଳେ ଅନ୍ୟ ଜଣେ ଦାର୍ଶନିକ ପରିବର୍ତ୍ତନକୁ ସତ୍ୟ ବୋଲି ଅବବୋଧ କରି ସ୍ଥିରତା ବା ନିତ୍ୟତାକୁ ଭ୍ରମ ବୋଲି ଗ୍ରହଣ କରିଛନ୍ତି । ଏହି ସ୍ଥିତିରେ ଏଂପେଡୋକ୍ଲିସ୍ ମତ ରଖିଛନ୍ତି ଯେ ବସ୍ତୁମାନଙ୍କର ଉଦ୍‌ଭବ ଓ ବିନାଶ ରହିଛି ତେବେ ସକଳ ବସ୍ତୁ ଯେଉଁ ମୂଳ ବସ୍ତୁମାନଙ୍କର ଉପାଦାନରୁ ଉଦ୍‌ଭବ ହୋଇଛି ସେହି ମୂଳ ବସ୍ତୁର ଅଣୁମାନ ଅସୃଷ୍ଟ ଅପରିବର୍ତ୍ତନୀୟ ଓ ଶାଶ୍ୱତ । ଅର୍ଥାତ୍ ମୌଳିକ ବସ୍ତୁର ପରିବର୍ତ୍ତନ ନାହିଁ, କିନ୍ତୁ ମୌଳିକ ବସ୍ତୁମାନଙ୍କର ମିଶ୍ରଣରେ ଯେଉଁ ଦ୍ରବ୍ୟମାନ ନିର୍ମିତ ହୋଇଛନ୍ତି ସେମାନଙ୍କର ପରିବର୍ତ୍ତନ ଓ ବିଲୟ ରହିଛି । ଏଂପେଡୋକ୍ଲିସ୍ ମୂଳ ବସ୍ତୁ ଯଥା ଅଗ୍ନି, ବାୟୁ, ଜଳ ଓ ଭୂମିକୁ ଅପରିବର୍ତ୍ତନୀୟ ବୋଲି ମନେ କରିଛନ୍ତି ଅଥଚ ଏସବୁ ବସ୍ତୁର ସମ୍ମିଶ୍ରଣରେ ଯେଉଁ ସବୁ ପଦାର୍ଥର ଉଦ୍‌ଭବ ହୋଇଛି ସେ ସବୁ ଯେ ପରିବର୍ତ୍ତନୀୟ ଓ ବିନାଶଶୀଳ ତାହା ଭାବିଛନ୍ତି । ଏହିପରି ସେ ହେରାକ୍ଲାଇଟସ ଓ ପାର୍ମେନିଡୀସଙ୍କ ମତ ମଧ୍ୟରେ ସମନ୍ୱୟ ଆଣିବାକୁ ପ୍ରୟାସ କରିଛନ୍ତି । ଏ ବିଶ୍ୱର ମୌଳିକ ସତ୍ତା କ'ଣ ଏହି ପ୍ରଶ୍ନକୁ ଦାର୍ଶନିକମାନେ ଗମ୍ଭୀରତାର ସହ ବ୍ୟାଖ୍ୟା କରିବାକୁ ଏକ ସମୟରେ ପ୍ରୟାସ କରିଛନ୍ତି । ସେହି ପୃଷ୍ଠଭୂମିରେ ଆଓନିଆର ଆଦ୍ୟ ଗ୍ରୀକ୍ ଦାର୍ଶନିକ ଥେଲିସ୍ ଜଳକୁ ଓ ଆନେକ୍ସିମେନିସ୍ ବାୟୁକୁ ମୌଳିକ ସତ୍ତା ଭାବରେ ସ୍ୱୀକାର କରିଥିବା ପୂର୍ବରୁ ଦର୍ଶାଯାଇଛି । ତେବେ ଏଂପେଡୋକ୍ଲିସ୍ ଚାରୋଟି ଭୌତିକ ବସ୍ତୁକୁ ମୌଳିକ ସତ୍ତା ଭାବେ ସ୍ୱୀକାର କରିଛନ୍ତି । ଜଗତର ସମସ୍ତ ପଦାର୍ଥ ଏହି ମୌଳିକ ବସ୍ତୁରୁ ଉଦ୍ଭବ ବୋଲି ଦର୍ଶାଇଛନ୍ତି । ଜଗତର ସକଳ ପଦାର୍ଥ, ସଂଭୂତି ବା ବିକମିଙ୍ଗ୍ ଏହି ମୌଳିକ ବସ୍ତୁମାନଙ୍କର ମିଶ୍ରଣର ପରିଣାମ' ଏହି ଚାରି ତତ୍ତ୍ୱକୁ ଛାଡି ଅନ୍ୟ

କୌଣସି ମୂଳ ତତ୍ତ୍ୱକୁ ସ୍ୱୀକାର କରିନାହାନ୍ତି । ମୌଳିକ ବସ୍ତୁମାନଙ୍କର ଭିନ୍ନ ଭିନ୍ନ ଆନୁପାତିକ ମିଶ୍ରଣର ପରିଣାମ ହେଉଛି ଏହି ବିବିଧ ବିଶ୍ୱ । ସୁତରାଂ ପଦାର୍ଥମାନଙ୍କର ଉତ୍ପତ୍ତି, ବିଲୟ ଓ ସେମାନଙ୍କ ମଧ୍ୟରେ ଥିବା ଗୁଣଗତ ପାର୍ଥକ୍ୟ ଚାରି ମୂଳ ତନ୍ମାତ୍ର ବା ତତ୍ତ୍ୱ (element) ମାନଙ୍କର ମିଶ୍ରଣ, ବିଘଟନ ଓ ଭିନ୍ନ ଭିନ୍ନ ଆନୁପାତିକ ସ୍ଥିତିର ପରିଣାମ ମାତ୍ର ।

ମୂଳ ସତ୍ତାମାନଙ୍କର ସଂଯୋଗ ବା ମିଶ୍ରଣ ପାଇଁ ସେମାନେ ଗତିଶୀଳ ହେବା ଆବଶ୍ୟକ । ସେମାନଙ୍କୁ ଗତିଶୀଳ କରିବା ପାଇଁ ଏକ ଚାଳକ ଶକ୍ତିର ଆବଶ୍ୟକତା ରହିବା ଅନିବାର୍ଯ୍ୟ ମନେହୁଏ । ଆଓନିଆର ଦାର୍ଶନିକ ମାନେ ମୂଳ ସତ୍ତା ଭିତରେ ଏହି ଗତିଶୀଳତା ଅନ୍ତର୍ନିହିତ ହୋଇ ରହିବା ପରିକଳ୍ପନା କରିଛନ୍ତି । ଆନେକ୍ସିମେନିସ୍ ବାୟୁକୁ ମୂଳ ସତ୍ତା ଭାବେ ଗ୍ରହଣ କରିବା ସହ ଗତିଶୀଳତା ଏଥିରେ ଅନ୍ତର୍ନିହିତ ବୋଲି ଭାବିଛନ୍ତି । ତାଙ୍କ ମତରେ ବାୟୁ ହେଉଛି ମୂଳ ତତ୍ତ୍ୱ ଓ ବାୟୁ ଭିତରେ ଗତିଶୀଳତା ଅନ୍ତର୍ନିହିତ ହୋଇ ରହିଥିବାରୁ ସେହି ପ୍ରକ୍ରିୟାରେ ସକଳ ବସ୍ତୁମାନଙ୍କର ଉତ୍ପତ୍ତି ହୋଇଛି । ତେବେ ତାଙ୍କର ଏହି ସିଦ୍ଧାନ୍ତକୁ ଏଂପେଡୋକ୍ଲିସ୍ ଗ୍ରହଣ କରିନାହାନ୍ତି । ଏଂପେଡୋକ୍ଲିସ୍‌ଙ୍କ ମତରେ ଭୌତିକ ସତ୍ତାମାନ ଜଡ ଓ ସ୍ଥିର । ସେମାନେ ସ୍ୱକୀୟ ଧାରାରେ ଗତିଶୀଳ ହେବେ ନାହିଁ । ସେମାନଙ୍କୁ ଗତିଶୀଳ କରିବା ପାଇଁ କିଛି ବାହ୍ୟ ଶକ୍ତିର ପ୍ରଭାବ ରହିବା ଆବଶ୍ୟକ । ସୁତରାଂ ଭୌତିକ ବସ୍ତୁକୁ କ୍ରିୟାଶୀଳ କରିବାକୁ କିଛି ବାହ୍ୟ ଶକ୍ତିକୁ ଏଂପେଡୋକ୍ଲିସ୍ ପରିକଳ୍ପନା କରିଛନ୍ତି । ମୌଳିକ ଦ୍ରବ୍ୟମାନଙ୍କର ସଂଯୋଗ ସମ୍ମିଶ୍ରଣ ଓ ବିଯୋଗ ବା ବିଘଟନ ଜଗତର ଦୁଇ ଅବଶ୍ୟମ୍ଭାବୀ ପ୍ରକ୍ରିୟା । ଏହି ଦୁଇ ପ୍ରକ୍ରିୟା ପରସ୍ପରର ବିପରୀତ । ଏଣୁ ଦୁଇ ବିପରୀତ ଶକ୍ତିର କ୍ରିୟାଦ୍ୱାରା ସଂଯୋଗ ଓ ବିଯୋଗ ସଂଘଟିତ ହେବା ସମ୍ଭବ । ଏହି ଦୁଇ ବିପରୀତ ଶକ୍ତିକୁ ଏଂପେଡୋକ୍ଲିସ୍ ପ୍ରେମ ଓ ଘୃଣା (Love and Hate) କିମ୍ବା ସଂହତି ଓ ଅସଂହତି (Harmony and Discord) ବୋଲି ପରିକଳ୍ପନା କରିଛନ୍ତି । ପ୍ରେମ ଓ ଘୃଣା ଯଦିବା ମାନବିକ ସ୍ୱଭାବର ସୂଚନା ବ୍ୟକ୍ତ କରେ କିନ୍ତୁ ଏଂପେଡୋକ୍ଲିସ୍ ସେମାନଙ୍କୁ ଭୌତିକ ଶକ୍ତି ଭାବରେ ନେଇଛନ୍ତି । ଆକର୍ଷଣ ଓ ବିକର୍ଷଣ ମାନବିକ ପ୍ରବୃତ୍ତି କ୍ଷେତ୍ରରେ ଯେପରି ପ୍ରେମ ଓ ଘୃଣା ଯୋଗୁ ଯଥାକ୍ରମେ ଉଦ୍‌ଭବ ହୋଇଥାଏ, ସେହିପରି ପ୍ରେମ ଓ ଘୃଣାକୁ ସେ ବିଶ୍ୱଜଗତର ବିଶ୍ୱ ପ୍ରକ୍ରିୟା ଭାବରେ ନେଇଛନ୍ତି । ପ୍ରେମ ଜନିତ ବିଶ୍ୱ ପ୍ରକ୍ରିୟା ମାଧ୍ୟମରେ ବିଭିନ୍ନ ପଦାର୍ଥମାନ ମୌଳିକ ସତ୍ତାମାନଙ୍କର ସଂଯୋଗ ଯୋଗୁ ଉଦ୍‌ଭବ ହୋଇଥାଏ । ସେହିପରି ଘୃଣା ଜନିତ ବିଶ୍ୱ ପ୍ରକ୍ରିୟାଦ୍ୱାରା ଭୌତିକ ବସ୍ତୁମାନଙ୍କର ବିଘଟନ ମଧ୍ୟ ସମ୍ଭବ ହୁଏ । ତେବେ ପ୍ରେମ ଓ ଘୃଣା ବାହ୍ୟିକ ଶକ୍ତି ଭାବରେ ବସ୍ତୁମାନଙ୍କୁ କ୍ରିୟାଶୀଳ କରାଇଥାଏ । ଏହି ଦୁଇ ବାହ୍ୟିକ ଶକ୍ତିକୁ ସେ ସାର୍ବଜନୀନ କ୍ରିୟା ଭାବରେ ସ୍ୱୀକାର କରିଛନ୍ତି । ପ୍ରେମ ଓ ଘୃଣାକୁ ସେ ମାନବିକ ସଂପ୍ରତ୍ୟୟ ଭାବରେ ଗ୍ରହଣ ନକରି ସେମାନଙ୍କୁ ଭୌତିକ ଶକ୍ତି ଭାବରେ ନେଇଛନ୍ତି । ଜଗତରେ ଏହି ଭୌତିକ ଶକ୍ତିର କ୍ରିୟାଶୀଳତା ଯୋଗୁ ବିଭିନ୍ନ ପଦାର୍ଥମାନଙ୍କର ସ୍ଥିତି ରହିଛି । ଖଟ, ଟେବୁଲ, ଆଲମିରା ଇତ୍ୟାଦି ବସ୍ତୁମାନଙ୍କର ଯେପରି ଦୈର୍ଘ୍ୟ, ପ୍ରସ୍ତ, ଉଚ୍ଚତା ରହିଛି, ସେହିପରି ଭୌତିକ ଶକ୍ତିର କ୍ରିୟାଶୀଳତା ଯୋଗୁ ଅଗ୍ନି, ବାୟୁ, ଜଳ ଓ ଭୂମିର ବ୍ୟାପ୍ତି ସମ୍ଭବ ହୋଇଛି ।

ଏଂପେଡୋକ୍ଲିସ୍ ପ୍ରେମ ଓ ଘୃଣାକୁ ଦୁଇ ବିପରୀତ ଶକ୍ତିଭାବରେ ନେଇଛନ୍ତି ଯାହା ପରସ୍ପର ବିରୋଧୀ । ଏକ ଶକ୍ତିଦ୍ୱାରା ନିରନ୍ତର ଭାବେ ବୃଦ୍ଧି ହେବା ବେଳେ ଅନ୍ୟ ଶକ୍ତିଦ୍ୱାରା ନିରନ୍ତର ହ୍ରାସ ହେବା ଜଗତର ନିୟମ । ମୂଳ ସତ୍ତାମାନଙ୍କ ଭିତରେ ଏହି ଶକ୍ତି ଯୋଗୁ ଗତିଶୀଳତା ସୃଷ୍ଟି ହୁଏ, କିନ୍ତୁ ଶକ୍ତିର ଗତିଶୀଳତା ପାଇଁ କିଛି ଆବଶ୍ୟକ ହୁଏ ନାହିଁ । ପ୍ରତ୍ୟେକ ଶକ୍ତି ଭିତରେ ବୃଦ୍ଧି ବା ହ୍ରାସ ନିରନ୍ତର ଭାବରେ ସଂଘଟିତ ହେଉଥାଏ । ଯେତେବେଳେ ପ୍ରେମ ଚରମ ଉତ୍କର୍ଷରେ ଉପନୀତ ହୁଏ ସେତେବେଳେ ମୂଳ ସତ୍ତା ଯଥା ଅଗ୍ନି, ବାୟୁ, ଜଳ ଓ ଭୂମି ପରସ୍ପର ଭିତରେ ବିଲୀନ ହୁଅନ୍ତି । ପ୍ରଥମ ଅବସ୍ଥାରେ ମୂଳ ବସ୍ତୁମାନ ପରସ୍ପର ସହ ସଂଯୋଜିତ ହୋଇ ରହିଥିଲେ ଓ ପ୍ରେମର ଚରମ ଅବସ୍ଥାରେ ମୌଳିକ ସତ୍ତାମାନେ ପରସ୍ପର ଭିତରେ ସଂଯୁକ୍ତ ହୋଇ ରହିବେ । ସେହି ସ୍ଥିତିରେ ମୌଳିକ ସତ୍ତାମାନଙ୍କ ମଧ୍ୟରେ ସମନ୍ୱୟ ରହିଥାଏ ଓ ସେମାନେ ପରସ୍ପର ମଧ୍ୟରେ ଅଭିନ୍ନ ହୋଇ ରହିଥାନ୍ତି । ସେହି ଅବସ୍ଥାରେ ଘୃଣାର ସ୍ଥିତି ବାହାରେ ଥାଏ । ଯେତେବେଳେ ବାହ୍ୟିକ ଶକ୍ତି ଘୃଣା ସେମାନଙ୍କ ଭିତରେ ପ୍ରବେଶ କରେ, ସେତେବେଳେ ପ୍ରତ୍ୟେକ ମୂଳ ତତ୍ତ୍ୱମାନ ପରସ୍ପରଠାରୁ ପୃଥକ୍ ହେବା ଆରମ୍ଭ କରନ୍ତି । ଘୃଣା ଯେତେବେଳେ ଅନ୍ତର୍ପ୍ରବେଶ କରି କେନ୍ଦ୍ରକୁ ସ୍ପର୍ଶକରେ, ତାହାଦ୍ୱାରା ମୌଳିକ ବସ୍ତୁମାନ ପରସ୍ପରଠାରୁ ସଂପୂର୍ଣ୍ଣ ଭିନ୍ନ ହୋଇଥାନ୍ତି । ଏହି ପ୍ରକ୍ରିୟା ଚରମ ସୀମାରେ ପହଞ୍ଚିଲେ ଚାରି ମୂଳ ତତ୍ତ୍ୱ ଅଗ୍ନି, ବାୟୁ, ଜଳ ଓ ଭୂମି ପରସ୍ପରଠାରୁ ପୂର୍ଣ୍ଣ ରୂପେ ଭିନ୍ନ ହୋଇଯାନ୍ତି । ସେମାନଙ୍କ ଭିତରେ ସଂହତି ରହେ ନାହିଁ, ଅର୍ଥାତ୍ ଘୃଣା ଯେତେବେଳେ ଉତ୍କର୍ଷ ସ୍ଥିତିକୁ ଆସେ, ସେତେବେଳେ ଚାରି ମୂଳତତ୍ତ୍ୱଯାକ ପରସ୍ପରଠାରୁ ପୂର୍ଣ୍ଣ ରୂପେ ପୃଥକ୍ ହୋଇଥାନ୍ତି । ସେହି ସ୍ଥିତିରେ ପ୍ରେମର ପ୍ରଭାବ ରହେ ନାହିଁ ଓ ଏହା ବାହାରେ ରହିଥାଏ । ଏହି ଅବସ୍ଥାରେ ସମସ୍ତ ଅଗ୍ନିର ଉପାଦାନ ଏକତ୍ର ହୋଇଥାଏ, ସକଳ ବାୟୁର ଉପାଦାନ ସଂଯୋଜିତ ହୋଇଯାଏ, ସବୁ ଜଳ ବା ଭୂମିର ଉପାଦାନ ମାନ ନିଜ ନିଜ ଭିତରେ ସଂପୃକ୍ତ ହୋଇ ଏକାକାର ହୋଇଥାନ୍ତି । ମୂଳ ତତ୍ତ୍ୱମାନ ଘୃଣାର ପ୍ରଭାବରେ ପୂର୍ଣ୍ଣ ରୂପେ ପରସ୍ପରଠାରୁ ପୃଥକ୍ ହେବା ପରେ ପୁନଶ୍ଚ ପ୍ରେମ ସେମାନଙ୍କ ଭିତରେ ଅନ୍ତର୍ପ୍ରବେଶ କରିବାକୁ ଉଦ୍ୟମ କରେ । ପରିଣାମ ସ୍ୱରୂପ ଚାରି ମୂଳ ସତ୍ତା ଭିତରେ ସଂଯୋଗ ସ୍ଥାପନର ପ୍ରକ୍ରିୟା ଆରମ୍ଭ ହୁଏ । ଏହି ଧାରାରେ ଯେତେବେଳେ ପ୍ରେମ ନିଜର ଉତ୍କର୍ଷ ସ୍ଥିତିକୁ ଆସେ, ସେତେବେଳେ ମୂଳ ତତ୍ତ୍ୱମାନ ପରସ୍ପର ଭିତରେ ସଂଯୋଗ ସ୍ଥାପନ କରି ପୂର୍ଣ୍ଣାଙ୍ଗ ହୋଇଥାଏ । ଏହି ପ୍ରକ୍ରିୟା ନିରନ୍ତର ଭାବେ ଅବ୍ୟାହତ ରହିଛି । ତେଣୁ ବିଶ୍ୱ ଏକ ଚକ୍ରାକାରରେ ରହିବା ଏଂପେଡୋକ୍ଲିସ୍ ପରିକଳ୍ପନା କରିଛନ୍ତି ଏହାକୁ "ବିଶ୍ୱ ଚକ୍ରକ ପ୍ରକ୍ରିୟା" (World cycle) କୁହାଯାଉଛି । ମୂଳ ତତ୍ତ୍ୱ ମାନଙ୍କର ସମ୍ମିଶ୍ରଣ, ସଂଯୋଗ ଓ ସଂହତି ସହ ବିଯୋଗ, ଅସଂହତି ଓ ପୃଥକୀକରଣ ଧାରାବାହିକ ଭାବେ ସଂଘଟିତ ହୋଇଚାଲିଛି । ଏହା ଦୁଇ ପୃଥକ୍ ଶକ୍ତି ପ୍ରେମ ଓ ଘୃଣା ଯୋଗୁ ଅବିରତ ଚାଲୁରହିଛି ।

ମୂଳ-ସତ୍ତାମାନଙ୍କର ପୃଥକୀକରଣରୁ ସୃଷ୍ଟି ପ୍ରକ୍ରିୟା ଆରମ୍ଭ ହୁଏ । ଏହା ଘୃଣା ବା ସଂଘର୍ଷରୁ ଉଦ୍‌ଭବ ହୋଇଥାଏ । ଏଂପେଡୋକ୍ଲିସ୍ ସୃଷ୍ଟି ପ୍ରକ୍ରିୟାର ଏକ ଚିତ୍ର ଦେବାକୁ ପ୍ରଯତ୍ନ କରିଛନ୍ତି । ସଂଘର୍ଷର ପ୍ରଭାବରୁ ପ୍ରଥମେ

ବାୟୁ ପୃଥକ୍ ହୋଇଥାଏ । ଏହାପରେ ଅଗ୍ନିର ପ୍ରକାଶ ହୁଏ, ତାହାପରେ ଜଳର ପରିପ୍ରକାଶ ଘଟେ । ଏହି ଧାରାରେ ଚାରି ମୂଳ ସତ୍ତା ପରସ୍ପରଠାରୁ ଭିନ୍ନ ହୋଇଥାନ୍ତି । ବାୟୁରୁ ଆକାଶ ଏବଂ ଅଗ୍ନିରୁ ସୂର୍ଯ୍ୟର ଉତ୍ପତ୍ତି ହେବା ସେ ପରିକଳ୍ପନା କରିଛନ୍ତି । ତେବେ ମୂଳ-ସତ୍ତାମାନଙ୍କର ମିଶ୍ରଣ ବା ସଂଘଟନ ପ୍ରକ୍ରିୟାରୁ ଜଗତର ପାର୍ଥିବ ବସ୍ତୁମାନ ଉତ୍ପତ୍ତି ହୋଇଥାଏ । ସଂଘର୍ଷ ପ୍ରକ୍ରିୟା ଦେଇ ସବୁ କିଛି ଉଦ୍‌ଭବ ହେବା ସେ ଭାବିଛନ୍ତି । ତେବେ ଏହା ଏକ ଚକ୍ରକ ପ୍ରକ୍ରିୟା । ସୃଷ୍ଟିପରେ ପୁନଶ୍ଚ ମୂଳ ସତ୍ତାମାନଙ୍କ ମଧ୍ୟରେ 'ପ୍ରେମ' ଯୋଗୁ ସଂହତି ପ୍ରକ୍ରିୟା ଆରମ୍ଭ ହୁଏ । ଏହି ସଂହତି ଧାରାରେ ମୂଳ ତତ୍ତ୍ୱମାନ ପରସ୍ପର ଠାରୁ ଭିନ୍ନ ହୋଇ ନିଜସ୍ୱ ଏକକତ୍ୱ ହାସଲ କରନ୍ତି । ଏସବୁ ଚକ୍ରକ ଧାରାରେ ସମାହିତ ହେଉଥାଏ ।

ଏଂପେଡୋକ୍ଲିସ୍ ତାଙ୍କର ଦୁଇ ଶକ୍ତି ପ୍ରେମ ଓ ଘୃଣାକୁ ମୂଳତତ୍ତ୍ୱ ଉପରେ ପ୍ରୟୋଗ କରି ଜୀବଜଗତର ବିବର୍ତ୍ତନକୁ ମଧ୍ୟ ପରିକଳ୍ପନା କରିଛନ୍ତି । ଯାହା କିଛି ଜଗତରେ ରହିଛି, ତାହା ବସ୍ତୁ ଜଗତ ହେଉ ବା ପ୍ରାଣୀ ଜଗତ ହେଉ, ତାହା ଚାରି ମୂଳସତ୍ତା ବା ତତ୍ତ୍ୱରୁ ଦୁଇ ବାହ୍ୟିକ ଶକ୍ତି ପ୍ରେମ ଓ ଘୃଣା ଯୋଗୁ ପ୍ରକାଶିତ ହୋଇଛି । ତେବେ ଏସବୁ କ୍ଷେତ୍ରରେ ବିଶେଷ ଯୁକ୍ତିସଂଗତ କାରଣ ଅପେକ୍ଷା କାବ୍ୟିକ କଳ୍ପନାକୁ ସେ ଆଧାର କରିଛନ୍ତି । ତାଙ୍କର ବିଚାରକୁ ଯେହେତୁ ସେ କବିତା ମାଧ୍ୟମରେ ବ୍ୟକ୍ତ କରିଛନ୍ତି, ସେଥିପାଇଁ କଳ୍ପନାର ପ୍ରାଧାନ୍ୟ ରହିଛି । କଳ୍ପନା ଆଧାରରେ କାବ୍ୟ ସୃଷ୍ଟିରୁ ତାଙ୍କ ଦାର୍ଶନିକ ବିଚାରର ବିକାଶ ହୋଇଛି । ତାଙ୍କର ତତ୍ତ୍ୱମୀମାଂସା ଓ ସୃଷ୍ଟିତତ୍ତ୍ୱ ଭିତରେ ଯାହା କିଛି ଦାର୍ଶନିକ ବିଚାର ରହିଛି ତାହାର ଆଧାର ଯୁକ୍ତିଗତ କାରଣ ଅପେକ୍ଷା ଅଧିକ କଳ୍ପନା-ପ୍ରସୂତ ହୋଇଛି ।

ଏଂପେଡୋକ୍ଲିସ୍ ପ୍ରତ୍ୟକ୍ଷ ଜ୍ଞାନ ସମ୍ବନ୍ଧରେ ଏକ ସିଦ୍ଧାନ୍ତର ଅବତାରଣା କରିଛନ୍ତି । ଏହାର ତାତ୍ପର୍ଯ୍ୟ ହେଉଛି ଆମ ଭିତରେ ଅନ୍ତର୍ନିହିତ ଥିବା ସତ୍ତା ବାହ୍ୟ ଜଗତର ସେହି ସତ୍ତାକୁ ହିଁ ପ୍ରତ୍ୟକ୍ଷ କରିଥାଏ । ଆମେ ମଧ୍ୟ ମୂଳ ସତ୍ତାର ଉପାଦାନ ବା ଅଣୁରେ ଗଠିତ । ଆମ ଶରୀର ଅଗ୍ନି, ବାୟୁ, ଜଳ, ପୃଥ୍ୱୀର ଅଣୁରେ ଗଠିତ । ଆମ ଭିତରେ ବା ଦୃଷ୍ଟିରେ ରହିଥିବା ଅଗ୍ନିର ଉପାଦାନ ଯୋଗୁ ଆମେ ବାହ୍ୟ ଅଗ୍ନିକୁ ପ୍ରତ୍ୟକ୍ଷ କରିଥାଏ । ସେହିପରି ଯେଉଁ ଉପାଦାନ ଆମ ଇନ୍ଦ୍ରିୟ ମଧ୍ୟରେ ନିହିତ ରହିଛି, ଆମ ଇନ୍ଦ୍ରିୟ ବାହାର ଜଗତର ସେହି ଉପାଦାନର ବସ୍ତୁକୁ ପ୍ରତ୍ୟକ୍ଷ କରିବାକୁ ସମର୍ଥ ହୋଇଥାଏ । ଏହାକୁ କୁହାଯାଏ "Like perceives like".

ଏଂପେଡୋକ୍ଲିସ୍‌ଙ୍କ ଈଶ୍ୱର ସଂପର୍କୀୟ ମତ ତାଙ୍କ ସମସାମୟିକ ଗ୍ରୀସ୍‌ରେ କିଛିଟା କ୍ରାନ୍ତିକାରୀ ଥିବା ମନେହୁଏ । ତାଙ୍କର ଆବିର୍ଭାବ ସମୟକୁ ବହୁଦେବବାଦର ଭାବନା ସମାଜରେ ପରିବ୍ୟାପ୍ତ ରହିଥିଲା । ସେ କିନ୍ତୁ ଏକେଶ୍ୱରବାଦର ବିଚାର ରଖିଥିଲେ । ଈଶ୍ୱର ଏକ ଯେ ଅବ୍ୟକ୍ତ ଓ ନିରାକାର । ଈଶ୍ୱର ସମଗ୍ର ବିଶ୍ୱରେ ପରିବ୍ୟାପ୍ତ ହୋଇ ରହିଛନ୍ତି । ଈଶ୍ୱର ଯେହେତୁ ଆକାରବିହୀନ, ତେଣୁ ଆମେ ଈଶ୍ୱରଙ୍କୁ ପ୍ରତ୍ୟକ୍ଷ କରିପାରିବା ନାହିଁ । ତେବେ ଆମେ ଆମ ବିଚାରରେ ଈଶ୍ୱର ଭାବନା ବିଷୟରେ ଚିନ୍ତା କରିପାରିବା । ତାଙ୍କ କାବ୍ୟ କବିତାରେ ସେ ଯେଉଁ ଈଶ୍ୱରୀୟ ବର୍ଣ୍ଣନା ପ୍ରଦାନ କରିଛନ୍ତି ସେଥିରୁ ଆଧୁନିକ ପରିଭାଷାରେ ଯାହାକୁ "ସର୍ବେଶ୍ୱରବାଦ" କୁହାଯାଉଛି ତାହାର ଝଲକ ରହିଥିବା

ମନେହୁଏ । ଯଦିବା ଦାର୍ଶନିକ ଚିନ୍ତନ ପରିପ୍ରେକ୍ଷୀରେ ସେ ଏକେଶ୍ୱରବାଦର ସମର୍ଥକ ଥିଲେ, ତେବେ ଗ୍ରୀକ୍ ସମାଜରେ ପ୍ରଚଳିତ ଥିବା ବହୁ ଦେବତାଙ୍କୁ ମାନୁଥିବା କେତେକ ଦର୍ଶନ-ଇତିହାସକାର ସୂଚନା ଦେଇଛନ୍ତି । ବିଭିନ୍ନ ଦେବଦେବୀଙ୍କୁ ସେ ପ୍ରତୀକ ଭାବେ ଗ୍ରହଣ କରୁଥିଲେ ବୋଲି କେତେକ ଲେଖକ ଦର୍ଶାଇଛନ୍ତି ।

ସେ ପୁନର୍ଜନ୍ମବାଦରେ ବିଶ୍ୱାସ ରଖିଥିଲେ । ପିଥାଗୋରାସଙ୍କ ପରି ପୁନର୍ଜନ୍ମବାଦକୁ ଏଂପେଡୋକ୍ଲିସ୍ ମଧ୍ୟ ଗ୍ରହଣ କରୁଥିଲେ । ସେ ବିଶ୍ୱାସ କରୁଥିଲେ ଯେ ମନୁଷ୍ୟ ହେଉଛି ଏକ ପତିତ ଆତ୍ମା । ସେଥିପାଇଁ ତାକୁ ଏକ ଶ୍ରମ-ସାଧ୍ୟ ଓ ଦୁଃଖପୂର୍ଣ୍ଣ ଜୀବନ ବଞ୍ଚିବାକୁ ହୁଏ । ସେ ନିଜ ବିଷୟରେ କହିଛନ୍ତି ଯେ ସେ ଏହି ଜନ୍ମ ପୂର୍ବରୁ ଏକ ପୁଅ, ଏକ ଝିଅ, ଏକ ହିଂସ୍ର ପଶୁ, ଏକ ପକ୍ଷୀ ଓ ସମୁଦ୍ରର ଏକ ମାଛ ଭାବେ ଜୀବନ ଅତିବାହିତ କରିଛନ୍ତି । (କୋପ୍ଲେଷ୍ଟୋନ୍, ଏଫ୍, ପ୍ରଥମ ଭାଗ ପୃ.୬୪) ତାଙ୍କର ଏହି ବିଶ୍ୱାସ ତାଙ୍କ ଦାର୍ଶନିକ ସିଦ୍ଧାନ୍ତ ସହ ସଂଗତ ନୁହେଁ ବୋଲି କୋପ୍ଲେଷ୍ଟୋନ୍ ମତପୋଷଣ କରିଛନ୍ତି । କାରଣ ଯଦି ସବୁ କିଛି ଭୌତିକ ଅଣୁର ସମଷ୍ଟି ଯାହା ମୃତ୍ୟୁରେ ବିଘଟିତ ହୁଏ, ତେବେ ସେଠାରେ ପୁନର୍ଜନ୍ମବାଦର ପ୍ରସଙ୍ଗ କିପରି ଆସୁଛି ବୋଲି ସମାଲୋଚନା କରିଛନ୍ତି । ତାଙ୍କ ଦାର୍ଶନିକ ସିଦ୍ଧାନ୍ତ ଓ ଧାର୍ମିକ ବିଶ୍ୱାସ ଭିତରେ ଯେ ସଂଗତି ନାହିଁ ଏହା କୋପ୍ଲେଷ୍ଟୋନ୍ ସୂଚାଇଛନ୍ତି । (ପୃଷ୍ଠା.୬୪)

ପାର୍ମେନିଡୀସଙ୍କ ମତ ସହିତ ହେରାକ୍ଲାଇଟସ୍‌ଙ୍କ ମତର ଏକ ସମନ୍ୱୟ ସୃଷ୍ଟି କରିବା ଓ ଏହି ଉଭୟ ଦାର୍ଶନିକ ଭାବଧାରା ମଧ୍ୟରେ ଏକ ତର୍କଶୀଳ ସମନ୍ୱୟ ଆନୟନ କରିବାରେ ଏଂପେଡୋକ୍ଲିସ୍‌ଙ୍କ ପ୍ରୟାସ ଉଲ୍ଲେଖନୀୟ । ବିଶେଷକରି ତାଙ୍କର ତତ୍ତ୍ୱମୀମାଂସା କ୍ଷେତ୍ରରେ ସେ ଯେପରି ଅଗ୍ନି, ବାୟୁ, ଜଳ ଓ ଭୂମିକୁ ମୂଳ-ସତ୍ତା ଭାବରେ ନେଇ ସେମାନଙ୍କ ଅଣୁର ମିଶ୍ରଣରେ ଜଗତକୁ ବ୍ୟାଖ୍ୟା କରିବାକୁ ପ୍ରଯତ୍ନ କରିଛନ୍ତି ତାହା ଦର୍ଶନ ଇତିହାସରେ ଅଭିନବ ମନେହୁଏ । ଭୌତିକ ବସ୍ତୁମାନଙ୍କ ଆଧାରରେ ଜଗତର ବ୍ୟାଖ୍ୟା ଯାହା ଥେଲିସ୍‌ଙ୍କ ଠାରୁ ଆରମ୍ଭ ହୋଇଥିଲା ତାହାର ଏକ ସୈଦ୍ଧାନ୍ତିକ ଓ ଅଧିକ ଯୁକ୍ତିସଂଗତ ପରିପ୍ରକାଶ ଏଂପେଡୋକ୍ଲିସ୍‌ଙ୍କ ଦର୍ଶନରେ ହୋଇଥିବା ଅନସ୍ୱୀକାର୍ଯ୍ୟ । ଘୃଣା ଆଧାରରେ ସୃଷ୍ଟି ପ୍ରକ୍ରିୟାକୁ ବ୍ୟାଖ୍ୟା କରିବାକୁ ପ୍ରଯତ୍ନ କରିବା ଯୋଗୁ ଏଥରେ ପୌରାଣିକ ଭାବନାର ପ୍ରଭାବ ରହିଥିବା ମନେହୁଏ । ସେହିପରି ସ୍ଥଳ ବିଶେଷରେ ଧାର୍ମିକ ବିଶ୍ୱାସମାନ ତାଙ୍କ ଭାବନାକୁ ଗଭୀର ଭାବରେ ପ୍ରଭାବିତ ଯେ କରିଛି ଏହା ମଧ୍ୟ କୁହାଯାଇପାରେ । ତେବେ ଗ୍ରୀକ୍ ଦର୍ଶନର ବିକାଶ ପ୍ରକ୍ରିୟାରେ ଏଂପେଡୋକ୍ଲିସ୍‌ଙ୍କର ଯେ ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି ଏହା ଅଧିକାଂଶ ଗ୍ରୀକ୍ ଦର୍ଶନର ଐତିହାସିକମାନେ ସୂଚାଇଛନ୍ତି ।

### ୪.୪ ଆନାକ୍ସଗୋରାସ (Anaxagoras)

ଆନାକ୍ସଗୋରାସଙ୍କ ଜନ୍ମ ଏସିଆ ମାଇନରସ୍ଥିତ କ୍ଲେଜୋମନିଠାରେ ଏକ ସଂଭ୍ରାଂତ ପରିବାରରେ ଖ୍ରୀ.ପୂ. ୫୦୦ ମସିହାରେ ହୋଇଥିବା ଜଣାଯାଏ । ସେ ପିଲାଟି ବେଳୁ ବେଶ୍ ବୁଦ୍ଧିମାନ ଓ ଅନୁସନ୍ଧିତ୍ସୁ ଥିଲେ । ଧନ, ସଂପତ୍ତି ବା ପ୍ରାଚୁର୍ଯ୍ୟ ପ୍ରତି ତାଙ୍କର କୌଣସି ଆଗ୍ରହ ନଥିଲା, ବରଂ ଦର୍ଶନ ଓ ବିଜ୍ଞାନ ବିଷୟରେ ଅଧିକରୁ ଅଧିକ ଜାଣିବା ପାଇଁ ସେ ଆନ୍ତରିକତା ବ୍ୟକ୍ତ କରୁଥିଲେ । କ୍ଲେଜୋମନିଠାରୁ ଚାଲି ଆସି ସେ ଏଥେନ୍ସଠାରେ ସ୍ଥାୟୀ

ଭାବରେ ରହି ଜ୍ଞାନବିଜ୍ଞାନ ଚର୍ଚ୍ଚାରେ ସଂପୃକ୍ତ ହୋଇଥିଲେ । ସେ ସମୟକୁ ଏଥେନ୍ସଠାରେ ଦର୍ଶନ ସଂପର୍କରେ ଆଲୋଚନାର ପରିବେଶ ଆସିନଥିଲା । କୁହାଯାଏ ସେ ଏଥେନ୍ସରେ ଦର୍ଶନ ଚର୍ଚ୍ଚାର ଯେଉଁ ମଂଜି ରୋପଣ କରିଥିଲେ ତାହା ପରବର୍ତ୍ତୀ ସମୟରେ ବହୁ ସୁଫଳ ଦେଇଥିଲା । ସମଗ୍ର ଗ୍ରୀସ୍‌ରେ ଏଥେନ୍ସ ଜ୍ଞାନଚର୍ଚ୍ଚା ବିଶେଷକରି ଦର୍ଶନ ଚର୍ଚ୍ଚା କ୍ଷେତ୍ରରେ ଏକ ମହାନ ସ୍ଥଳୀ ହୋଇପାରିଥିଲା । ଆନାକ୍ସଗୋରାସ ଯେଉଁ ସମୟରେ ଏଥେନ୍ସରେ ରହିଥିଲେ ସେ ସେଠିକାର ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସହ ସଂପର୍କ ଓ ବନ୍ଧୁତା ସୃଷ୍ଟି କରିଥିଲେ । ବିଶେଷକରି ଏଥେନ୍ସର ବିଶିଷ୍ଟ କବି ୟୁରିପାଇଡିସ ଓ ରାଜନୈତିକ ବ୍ୟକ୍ତିତ୍ୱ ପେରିକ୍ଲିସ୍‌ଙ୍କ ସହ ତାଙ୍କର ସୁସଂପର୍କ ଗଢ଼ି ଉଠିଥିଲା । ତେବେ ପେରିକ୍ଲିସ୍‌ଙ୍କ ସହ ସଂପର୍କ ଯୋଗୁ ତାଙ୍କୁ ବହୁ ବିରୋଧର ସମ୍ମୁଖୀନ ହେବାକୁ ପଡିଥିଲା । ପେରିକ୍ଲିସ୍‌ଙ୍କର ଅନେକ ରାଜନୈତିକ ଶତ୍ରୁ ଥିଲେ । ଆନାକ୍ସଗୋରାସ ରାଜନୀତି ସହ ସଂପୃକ୍ତ ନଥିଲେ ମଧ୍ୟ ପେରିକ୍ଲିସ୍‌ଙ୍କ ସହ ସଂପର୍କ ଯୋଗୁ ପେରିକ୍ଲିସ୍‌ଙ୍କ ବିରୋଧୀ ମାନେ ତାଙ୍କର ବିରୋଧୀ ହୋଇ ଯାଇଥିଲେ । ସେହି ସମୟରେ ସମାଜରେ ନାନା ରୂଢ଼ିବାଦୀ ଓ ଅପବିଶ୍ୱାସମାନ ରହିଥିଲା ଓ ଏଥେନ୍ସରେ ମୁକ୍ତ ଚିନ୍ତାର ପରିବେଶ ନଥିଲା । ଆନାକ୍ସଗୋରାସଙ୍କ କେତେକ ବିଚାରକୁ ନେଇ ତାଙ୍କ ବିରୁଦ୍ଧରେ "ଧର୍ମଦ୍ରୋହୀ" ବୋଲି ଅଭିଯୋଗ ଅଣାଯାଏ । ସେସମୟରେ ସମାଜରେ ବିଶ୍ୱାସ ଥିଲା ଯେ ସୂର୍ଯ୍ୟ, ଚନ୍ଦ୍ର ଓ ଖଗୋଳୀୟ ବସ୍ତୁମାନ ହେଉଛନ୍ତି ଦେବତା । ଆନାକ୍ସଗୋରାସ ସୂର୍ଯ୍ୟ, ଚନ୍ଦ୍ରକୁ ଦେବତା ବୋଲି ଗ୍ରହଣ କରୁନଥିଲେ । ସେ ତାଙ୍କର ଦାର୍ଶନିକ କୃତିରେ ମତପୋଷଣ କରିଥିଲେ ଯେ ସୂର୍ଯ୍ୟ ଏକ ବିଶାଳ ଅଗ୍ନିମୟ ପଥର ଓ ଚନ୍ଦ୍ର ପୃଥିବୀରୁ ସୃଷ୍ଟି ହୋଇଥିବା ଏକ ଗ୍ରହ ସଦୃଶ ପିଣ୍ଡ । ସେତେବେଳର ଧର୍ମଧାରଣାରେ ସୂର୍ଯ୍ୟ ଏକ ଦେବତା ଓ ଚନ୍ଦ୍ରକୁ ଏକ ଦେବୀ ବୋଲି ବିଶ୍ୱାସ କରାଯାଉଥିଲା । ପରିଣାମତଃ ଆନାକ୍ସଗୋରାସଙ୍କୁ ଧର୍ମଦ୍ରୋହୀ ଓ ନାସ୍ତିକ ବୋଲି ଚିତ୍ରଣ କରାଯାଇ ତାଙ୍କୁ ବନ୍ଦୀ କରାଗଲା । ତେବେ ପେରିକ୍ଲିସ୍‌ଙ୍କ ସାହାଯ୍ୟରୁ ସେ ମୁକ୍ତ ହେଲେ ଓ ତାଙ୍କୁ ଏଥେନ୍ସ ବାହାରକୁ ପଠାଇ ଦିଆଗଲା । ସେ ଶେଷରେ ନିଜର ମୂଳ ସ୍ଥାନକୁ ଫେରି ଆସିଲେ ଓ ୭୨ ବର୍ଷ ବୟସରେ ତାଙ୍କର ଦେହାନ୍ତ ହେଲା । ସେ ଦର୍ଶନ ସଂପର୍କରେ ଯେଉଁ ଗ୍ରନ୍ଥ ରଚନା କରିଥିଲେ ତାହା ସକ୍ରେଟିସ୍‌ଙ୍କ ସମୟରେ ଉପଲବ୍ଧ ଥିଲା, ତେବେ ତାଙ୍କ ରଚନାର କିଛି ଅଂଶ ରହିପାରିଛି ଓ ଅନ୍ୟାନ୍ୟ ଲେଖା ନଷ୍ଟ ହୋଇଯାଇଛି ।

ଏଂପୋଡ୍ରୋକ୍ଲିସ୍ ଓ ପରମାଣୁବାଦୀମାନଙ୍କ ମତ ସହିତ ଆନାକ୍ସଗୋରାସଙ୍କ ଦର୍ଶନର ସାମଂଜସ୍ୟ ରହିଛି । ଆନାକ୍ସଗୋରାସ ମୂଳ ସତ୍ତାର ପରିବର୍ତ୍ତନକୁ ଅସ୍ୱୀକାର କରିଥାନ୍ତି । ଯାହା ପରମ ସତ୍ତା ବା ତତ୍ତ୍ୱ ତାହାର ସୃଷ୍ଟି ନାହିଁ କି ବିନାଶ ନାହିଁ । ଯେଉଁ ସତ୍ତାକୁ ମୂଳ ସତ୍ତା ଭାବରେ ଗ୍ରହଣ କରାଯାଉଛି ତାହାର ଉତ୍ପତ୍ତି ନାହିଁ କିମ୍ବା ତାହା ଧ୍ୱଂସ ସାଧନ ମଧ୍ୟ ନୁହେଁ । ତେବେ ଏହି ପରମ ସତ୍ତାକୁ ଯଦି ଏକକ ବୋଲି ଗ୍ରହଣ କରାଯାଏ ତେବେ ଜଗତର ବିବିଧତା ଓ ଗତିଶୀଳତାକୁ କିପରି ବ୍ୟାଖ୍ୟା କରାଯିବ ? ଯାହା ପରମ ତାହା ନିତ୍ୟ, ତାହାର ଉତ୍ପତ୍ତି, ପରିବର୍ତ୍ତନ ବା ନିର୍ଧ୍ୱଂସନ ନାହିଁ । ତେବେ ଆମେ ଆମ ଚତୁର୍ଦ୍ଦିଗରେ ଯେଉଁ ବିବିଧତାପୂର୍ଣ୍ଣ ଓ ଗତିଶୀଳ ବିଶ୍ୱକୁ ଦେଖେ, ସେଥିରୁ ଏହା ପ୍ରତୀତ ହୁଏ ଯେ କେତେକ ମୂଳ ବସ୍ତୁ ରହିଛନ୍ତି । ଯାହା ପରମ ସତ୍ତା, ତାହା ଏକ ହୋଇନପାରେ, ତାହା

ଅନେକ ବୋଲି ସେ ବିଶ୍ୱାସ କରୁଥିଲେ । ଯେଉଁ ସତ୍ତାମାନ ମୂଳ, ସେମାନଙ୍କର ଉତ୍ପତ୍ତି ନାହିଁ, କିମ୍ବା ସେମାନେ ଧ୍ୱଂସ ହେବେ ନାହିଁ । ଗ୍ରୀକ୍‌ମାନେ ମୂଳ ସତ୍ତାମାନଙ୍କର ଉତ୍ପତ୍ତି ଓ ଧ୍ୱଂସ ବିଷୟରେ ଯେଉଁ ମତ ରଖିଛନ୍ତି ତାହା ଯଥାର୍ଥ ନୁହେଁ ବୋଲି ଆନାକ୍ସଗୋରାସ ବିଚାର କରିଛନ୍ତି । ଜଗତରେ ଆମେ ଯେଉଁ ବିବିଧତା ଦେଖୁଛେ ତାହା ପରମ ସତ୍ତାମାନଙ୍କର ମିଶ୍ରଣ କିମ୍ବା ଅମିଶ୍ରଣର ପରିଣାମ ମାତ୍ର । ମୂଳ ସତ୍ତାମାନଙ୍କର ମିଶ୍ରଣ ଏକ ସମାହାର ପ୍ରକ୍ରିୟା ଓ ଅମିଶ୍ରଣ ଏକ ବିଘଟନ ପ୍ରକ୍ରିୟା । ମୂଳ ସତ୍ତାମାନଙ୍କର ମିଶ୍ରଣ ଓ ବିଘଟନ କିମ୍ବା ପୁନର୍ବ୍ୟବସ୍ଥାପନର ପରିଣତି ହେଉଛି ଏହି ବିବିଧ ବିଶ୍ୱ । ବିଶ୍ୱର ବିବିଧତା ଓ ପରିବର୍ତ୍ତନ ମୂଳ ସତ୍ତାମାନଙ୍କର ମିଶ୍ରଣ ଓ ବିଘଟନର ପରିଣତି ବୋଲି ଆନାକ୍ସଗୋରାସ ଚିନ୍ତା କରିଛନ୍ତି ।

ପରମାଣୁବାଦୀମାନେ ବିଚାର କରନ୍ତି ଯେ ସବୁ କିଛିର ମୂଳ ହେଉଛି ପରମାଣୁ । ସଂସାରର ସବୁ କିଛି ପରମାଣୁମାନଙ୍କର ସମଷ୍ଟିରେ ଉଦ୍‌ଭବ ହୋଇଛି ବୋଲି ପରମାଣୁବାଦୀ ଦାର୍ଶନିକମାନେ ବିଚାରବ୍ୟକ୍ତ କରିଛନ୍ତି । ଏଂପୋଡୋକ୍ଲିସ୍ ପରମ ସତ୍ତାର ପରମାଣୁକୁ ଚାରି ଶ୍ରେଣୀରେ ବିଭକ୍ତ କରିଛନ୍ତି । ସେ ଭୂମି, ଜଳ, ଅଗ୍ନି ଓ ବାୟୁକୁ ମୂଳ ତତ୍ତ୍ୱ ଭାବରେ ଗ୍ରହଣ କରି ସେମାନଙ୍କର ପରମାଣୁକୁ ଅବିନାଶୀ ଓ ନିତ୍ୟ ବୋଲି ସ୍ୱୀକାର କରିଛନ୍ତି । କିନ୍ତୁ ଏଂପୋଡୋକ୍ଲିସ୍‌ଙ୍କ ଏହି ମତକୁ ଆନାକ୍ସଗୋରାସ ସ୍ୱୀକାର କରୁ ନାହାନ୍ତି । ଆନାକ୍ସଗୋରାସ ମଧ୍ୟ ମୂଳ ସତ୍ତା ଯେ ପରମାଣୁ ତାହା ମଧ୍ୟ ସ୍ୱୀକାର କରିନାହାନ୍ତି । ତାଙ୍କ ମତରେ ବିଭିନ୍ନ ପ୍ରକାର ବସ୍ତୁମାନ ରହିଛନ୍ତି ଓ ସେମାନେ ଚାରି ପ୍ରକାର ମୂଳ ବସ୍ତୁରୁ ଉଦ୍‌ଭବ ଏହା ଯଥାର୍ଥ ନୁହେଁ । ସୁନା, ରୁପା, ଲୁହା, ତମ୍ବା, ହାଡ, କେଶ, କାଠ, ଜଳ, ବାୟୁ ଇତ୍ୟାଦି ବହୁ ବସ୍ତୁମାନ ମଧ୍ୟ ମୌଳିକ ଓ ମୂଳ ବସ୍ତୁ । ଆମ ବାସ୍ତବ ଅନୁଭୂତିରେ ଆମେ ତ ଏହିପରି ଅନେକ ବସ୍ତୁକୁ ଦେଖୁଛେ, ତେବେ ସେମାନଙ୍କର ଅସ୍ତିତ୍ୱକୁ ଆମେ ଅସ୍ୱୀକାର କରିପାରିବା କି? ଏମାନେ ଯଦି ସତ୍ ନୁହନ୍ତି, ଏମାନେ କ'ଣ ଅସତ୍‌ରୁ ସୃଷ୍ଟି ହୋଇଛନ୍ତି? ଅସତ୍‌ରୁ ସତ୍ ସୃଷ୍ଟି ସମ୍ଭବ କି? ସଂସାରରେ ମାତ୍ର ଚାରି ପ୍ରକାରର ମୂଳ ବସ୍ତୁ ଅଛନ୍ତି ବୋଲି କିପରି କୁହାଯାଇପାରିବ ବୋଲି ଆନାକ୍ସଗୋରାସ ପ୍ରଶ୍ନ ଉଠାଇଛନ୍ତି । ଏଂପେଡୋକ୍ଲିସ୍‌ଙ୍କ ମତରେ ସଂସାରରେ ଯାହା କିଛି ଅଛି ସେମାନେ ଚାରି ମୂଳ ସତ୍ତାରୁ ଉଦ୍‌ଭବ ହୋଇଛନ୍ତି ଓ ଏହି ପ୍ରତ୍ୟେକ ମୂଳ ସତ୍ତାର ପରମାଣୁ ମାନ ଅବିଭାଜ୍ୟ ଓ ଅବିନାଶୀ । କିନ୍ତୁ ଆନାକ୍ସଗୋରାସଙ୍କ ମତରେ ସଂସାରରେ ଏପରି କିଛି ବସ୍ତୁ ନାହିଁ ଯାହାର ବିଭାଜନ ସମ୍ଭବ ନୁହେଁ । ବରଂ ସଂସାରରେ ପ୍ରତ୍ୟେକ ବସ୍ତୁର ବିଭାଜନ ଅନନ୍ତ ଓ ଅସୀମ ।

ଏଂପେଡୋକ୍ଲିସଙ୍କ ମତରେ ପ୍ରତ୍ୟେକ ମୂଳ ସତ୍ତା ଅନ୍ୟ ମୂଳ ସତ୍ତାଠାରୁ ପୃଥକ୍ । ଗୋଟିଏ ସତ୍ତା ଭିତରେ ସେହି ସତ୍ତାର ଅଂଶ ବିଦ୍ୟମାନ, ଅନ୍ୟ ସତ୍ତା ସେଥିରେ ରହିପାରିବ ନାହିଁ । ଅର୍ଥାତ୍ ଜଳରେ କେବଳ ଜଳର ଅଂଶ ରହିଛି ଓ ଅଗ୍ନିରେ ଅଗ୍ନିର ଅଂଶ ରହିଛି, ଜଳରେ ଅଗ୍ନିର ବା ବାୟୁରେ ଜଳର ଅଂଶ ରହିବ ନାହିଁ । ଏଂପେଡୋକ୍ଲିସ୍‌ଙ୍କ ଏହି ମତଠାରୁ ଆନାକ୍ସଗୋରାସଙ୍କ ମତ ଭିନ୍ନ । ଆନାକ୍ସଗୋରାସଙ୍କ ମତରେ ପ୍ରତ୍ୟେକ ବସ୍ତୁରେ ଅନ୍ୟ ବସ୍ତୁର ଅଂଶ

ବିଦ୍ୟମାନ ରହିଛି । ଏପରିକି ଏକ ବସ୍ତୁରେ ବିପରୀତ ଗୁଣ ବହନ କରୁଥିବା ଅନ୍ୟ ବସ୍ତୁର ଅଂଶ ବି ବିଦ୍ୟମାନ । ଯେପରି ଅଗ୍ନି ଭିତରେ ଜଳର ଗୁଣ ଓ ଭୂମିରେ ବାୟୁର ଗୁଣ ବି ନିହିତ । ତେବେ ଏକ ବସ୍ତୁରେ ଦ୍ରବ୍ୟମାନଙ୍କର ମାତ୍ରା ଭିନ୍ନ ଭିନ୍ନ ଅଟେ । ଜଳରେ ଜଳ ବ୍ୟତୀତ ଅଗ୍ନି, ବାୟୁ ଓ ଭୂମିର ଅଂଶ ବିଦ୍ୟମାନ ଥିଲେ ମଧ୍ୟ ଜଳର ପରିମାଣ ଅଧିକ ରହିଥାଏ । ସେହିପରି ଲୁହାରେ ଅନ୍ୟ ବସ୍ତୁର ଅଂଶ ବିଦ୍ୟମାନ ଥିଲେ ମଧ୍ୟ ଲୁହାର ପରିମାଣ ଅଧିକ ହେତୁ ଏହାକୁ ଲୁହା କୁହାଯାଏ ।

ଆନାକ୍ସଗୋରାସଙ୍କ ମତରେ ସୃଷ୍ଟି ପ୍ରାରମ୍ଭରେ ବିଭିନ୍ନ ଦ୍ରବ୍ୟମାନ ଏକ ଅବ୍ୟବସ୍ଥିତ (chaotic) ଭାବେ ପରସ୍ପର ସହ ମିଶ୍ରିତ ହୋଇ ରହିଥିଲେ । ଏହି ମିଶ୍ରିତ ଦ୍ରବ୍ୟମାନ ସମଗ୍ର ବିଶ୍ୱରେ ବିସ୍ତାରିତ ଥିଲା । ବିଭିନ୍ନ ଦ୍ରବ୍ୟମାନ ପରସ୍ପର ସହ ସଂଯୁକ୍ତ ହୋଇ ସମଗ୍ର ବିଶ୍ୱରେ ସ୍ଥାନ ନେଇଥିଲା । ତେବେ ଯେତେବେଳେ ଦ୍ରବ୍ୟମାନ ଅମିଶ୍ରିତ (unmixed) ହେବାକୁ ଆରମ୍ଭ କଲେ, ଅର୍ଥାତ୍ ଏକ ବସ୍ତୁ କେବଳ ସେହି ବସ୍ତୁ ସହ ମିଶ୍ରିତ ହେଲା ସେତେବେଳେ ପୃଥିବୀର ସୃଷ୍ଟି ପ୍ରକ୍ରିୟା ଆରମ୍ଭ ହେଲା । ଲୁହାର କଣିକାମାନ ଅନ୍ୟ ଦ୍ରବ୍ୟଠାରୁ ପୃଥକ୍ ହୋଇ ଯେତେବେଳେ ମିଶ୍ରିତ ହେଲେ ସେତେବେଳେ ଲୁହାର ବସ୍ତୁତ୍ୱ ସୃଷ୍ଟି ହେଲା, ସେହିପରି କାଠର କଣିକାମାନ ସଂଯୁକ୍ତ ହେବାଦ୍ୱାରା କାଠର ବସ୍ତୁତ୍ୱ ଆସିଲା, ଜଳର କଣିକାମାନ ଏକତ୍ର ସଂଯୋଜିତ ହେବା ଦ୍ୱାରା ଜଳର ବସ୍ତୁତ୍ୱ ଆସିଲା ଇତ୍ୟାଦି । ଯେହେତୁ ବସ୍ତୁମାନ ଅନନ୍ତ ଭାବେ ବିଭାଜିତ, ମୌଳିକ ବସ୍ତୁମାନଙ୍କର ମିଶ୍ରଣ ଏକ ଅନ୍ତହୀନ ପ୍ରକ୍ରିୟା । ସୁତରାଂ ବସ୍ତୁମାନଙ୍କର ଅମିଶ୍ରଣ ପାଇଁ ସମୟର ସୀମା ନାହିଁ । ସେହି ପ୍ରକ୍ରିୟା ଏବେ ବି ଅବ୍ୟାହତ ରହିଛି ଓ ଭବିଷ୍ୟତରେ ମଧ୍ୟ ରହିବ । ଏପରିକି ଯେଉଁ ଦ୍ରବ୍ୟମାନଙ୍କୁ ଶୁଦ୍ଧ ବୋଲି ଗ୍ରହଣ କରାଯାଉଛି ସେଥିରେ ମଧ୍ୟ ଅନ୍ୟ ଦ୍ରବ୍ୟର କଣିକା ସଂଯୁକ୍ତ ହୋଇ ରହିବା ଅସମ୍ଭବ ନୁହେଁ । ସଂସାରରେ ସୁନା ବା କାଠ ବା କୌଣସି ବସ୍ତୁ ସଂପୂର୍ଣ୍ଣ ଭାବେ ବିଶୁଦ୍ଧ ନୁହେଁ । ତେବେ ସୁନାରେ ସୁନାର କଣିକାମାନ, କାଠରେ କାଠର କଣିକାମାନ ବା ଜଳରେ ଜଳର କଣିକାମାନ ମୁଖ୍ୟ ଉପାଦାନ ହୋଇ ରହିବା ଦେଖାଯାଏ । ଅମିଶ୍ରିତ ପ୍ରକ୍ରିୟାଦ୍ୱାରା ଅବ୍ୟବସ୍ଥିତ ବିଶ୍ୱ ବ୍ୟବସ୍ଥିତ ରୂପ ନେବାର କ୍ରିୟା ଆରମ୍ଭ ହୋଇ ତାହା ନିରନ୍ତର ଭାବେ ଚାଲିଛି ବୋଲି ଆନାକ୍ସଗୋରାସ ପରିକଳ୍ପନା କରିଛନ୍ତି । ସବୁ କିଛି ସୃଷ୍ଟି ପୂର୍ବରୁ ମିଶ୍ରିତ ହୋଇ ରହିଥିଲେ, ଅର୍ଥାତ୍ ଅଗଣିତ ଦ୍ରବ୍ୟମାନଙ୍କର କଣିକା ମାନ ମିଶିକରି ରହିଥିଲେ । ଏହି ମିଶ୍ରଣରୁ ଯେତେବେଳେ କଣିକା (particle) ମାନ ପୃଥକ୍ ବା ଅମିଶ୍ରିତ ହେବା ଆରମ୍ଭ କଲେ ତାହାଦ୍ୱାରା ସୃଷ୍ଟି ପ୍ରକ୍ରିୟା ଆରମ୍ଭ ହେଲା ଓ ଏହା ସୀମାହୀନ ଭାବେ ଚାଲୁରହିଛି । ସୃଷ୍ଟି ପ୍ରକ୍ରିୟାରେ ଯେଉଁ ମିଶ୍ରଣ ଆରମ୍ଭ ହେଲା ତାହା ହେଲା ସ୍ୱକଣିକା ମିଶ୍ରଣ । ଅର୍ଥାତ୍ ଯାହା ଅନ୍ୟ ସହିତ ମିଶିକରି ଥିଲା ତାହା ପୃଥକ୍ ହୋଇ କେବଳ ନିଜ କଣିକା ସହ ମିଶ୍ର ହେଲା । ସୃଷ୍ଟି ପ୍ରକ୍ରିୟା ଏକ ଅମିଶ୍ରଣ-ମିଶ୍ରଣ ବ୍ୟବସ୍ଥା । ଅମିଶ୍ରଣ, କାରଣ ଏକ ଦ୍ରବ୍ୟର କଣିକା ଅନ୍ୟ ଦ୍ରବ୍ୟର କଣିକାଠାରୁ ଭିନ୍ନ ହେବା, ଏହା ମିଶ୍ରଣ କାରଣ ଏକ ପ୍ରକାର କଣିକାମାନ ଏକତ୍ର ହୋଇ ମିଶ୍ରିତ ହେବା ।

ସୃଷ୍ଟି ପୂର୍ବରୁ ସବୁ ଦ୍ରବ୍ୟମାନଙ୍କର କଣିକାମାନ ମିଶି କରି ରହିଥିଲେ, ସେହି ମିଶ୍ରଣରୁ ଏକ ଅମିଶ୍ରଣ ବା ପୃଥକୀକରଣ ପ୍ରକ୍ରିୟା କିପରି ଆରମ୍ଭ ହେଲା ? ଏଂପେଡୋକ୍ଲିସ ବା ପରମାଣୁବାଦୀ ଦାର୍ଶନିକମାନେ ମଧ୍ୟ ଏହି ସମସ୍ୟାର ସମ୍ମୁଖୀନ ହୋଇଛନ୍ତି । କେଉଁ କ୍ରିୟାଶୀଳ ଶକ୍ତିଦ୍ୱାରା ଏକ ପୃଥକୀକରଣ ପ୍ରକ୍ରିୟାର ସୂତ୍ରପାତ ହେଲା ? ସେହିପରି କେଉଁ କାରଣରୁ ମୌଳିକ ବସ୍ତୁର ପରମାଣୁମାନେ ପରସ୍ପର ସହ ମିଶ୍ରିତ ହୋଇ ସୃଷ୍ଟି ପ୍ରକ୍ରିୟା ଆରମ୍ଭ ହେଲା ? ଯେଉଁମାନେ ଭୂମି, ଜଳ, ଅଗ୍ନି, ବାୟୁର ପରମାଣୁରୁ ଏହି ବିବିଧ ବିଶ୍ୱର ଉତ୍ପତ୍ତି ହୋଇଛି ବୋଲି ପରିକଳ୍ପନା କରିଛନ୍ତି, ସେମାନେ ମଧ୍ୟ ଏହି ସମସ୍ୟାକୁ ସାମ୍ନା କରିଛନ୍ତି । ଏଂପେଡୋକ୍ଲିସ୍ ମୂଳ ସତ୍ତାରୁ ବିବିଧ ବିଶ୍ୱର ଉତ୍ପତ୍ତି ପାଇଁ ଯେଉଁ କ୍ରିୟାଶୀଳ ଶକ୍ତି (moving force) ର ପରିକଳ୍ପନା କରିଛନ୍ତି ତାହା ହେଉଛି ପ୍ରେମ ଓ ଘୃଣା । ପ୍ରେମ ଓ ଘୃଣା ପରି କାଳ୍ପନିକ ଶକ୍ତିର ପରିକଳ୍ପନା କରି ଏଂପେଡୋକ୍ଲିସ ଚାରି ମୂଳ ସତ୍ତାରୁ ପ୍ରକାଶିତ ବିଶ୍ୱର ବିବର୍ତ୍ତନକୁ ଅନୁମାନ କରିଛନ୍ତି । ତେବେ ପ୍ରେମ ଓ ଘୃଣା (Love and Hate) କାଳ୍ପନିକ କ୍ରିୟାଶୀଳ ଶକ୍ତି ହେଲେ ମଧ୍ୟ ସେମାନେ ସ୍ୱରୂପରେ ଭୌତିକ (physical) । ଅନ୍ୟ ପରମାଣୁବାଦୀ ଦାର୍ଶନିକମାନେ ପରମାଣୁରୁ ସୃଷ୍ଟି ପ୍ରକ୍ରିୟାକୁ ବ୍ୟାଖ୍ୟା କରିବାକୁ ସେହିପରି ଭୌତିକ ଶକ୍ତିର ମଧ୍ୟ କଳ୍ପନା କରିଛନ୍ତି ଯାହା କ୍ରିୟାଶୀଳ ଭାବେ କାର୍ଯ୍ୟକରିଥାଏ । ତେବେ ଦର୍ଶନ ଇତିହାସରେ ଆନେକ୍ସଗୋରାସ ପ୍ରଥମ ଦାର୍ଶନିକ ଯେ କ୍ରିୟାଶୀଳ ଶକ୍ତିକୁ ଅଭୌତିକ ହେବା ପରିକଳ୍ପନା କରିଛନ୍ତି । ଯେଉଁ କ୍ରିୟାଶୀଳ ଶକ୍ତି ଯୋଗୁଁ ଅମିଶ୍ରଣ ବା ପୃଥକୀକରଣ ପ୍ରକ୍ରିୟା କାର୍ଯ୍ୟ କରିଛି ବା ଆରମ୍ଭ ହୋଇଛି ସେହି ଶକ୍ତିକୁ ସେ ଭୌତିକ ନ ନେଇ ଅଭୌତିକ ବୋଲି ଭାବିଛନ୍ତି । ଏହାକୁ ସେ ନାଉସ (Nous) ବା ଆଦ୍ୟବୁଦ୍ଧି ବୋଲି କହିଛନ୍ତି । ନାଉସକୁ ଆଦ୍ୟବୁଦ୍ଧି/ପରମ-ବିଜ୍ଞାନ/ଶୁଦ୍ଧବୁଦ୍ଧି ଭାବରେ ପରିଭାଷିତ କରାଯାଇଛି ଓ ଆମେ ଏଠାରେ ଆଦ୍ୟବୁଦ୍ଧି ଭାବେ ନାଉସକୁ ଗ୍ରହଣ କରୁଛେ । ଏହି ଆଦ୍ୟବୁଦ୍ଧି ଏକ ସ୍ୱଚାଳିତ ଶକ୍ତି । ସଂସାରରେ ସବୁକିଛି ସ୍ଥିର ଓ ଶକ୍ତିଶୂନ୍ୟ ହେବାବେଳେ ଆଦ୍ୟବୁଦ୍ଧି ଏକ କ୍ରିୟାଶୀଳ ଶକ୍ତି ଭାବରେ ବିଶ୍ୱ ନିର୍ମାଣ ପ୍ରକ୍ରିୟାରେ ପୃଥକୀକରଣକୁ ସମ୍ଭବ କରାଇଛି । ବିଶ୍ୱରେ ଏହି ଆଦ୍ୟବୁଦ୍ଧିର କ୍ରିୟାଶୀଳତାରୁ ଅମିଶ୍ରଣର ପ୍ରକ୍ରିୟା ଆରମ୍ଭ ହୋଇଛି ଯଦ୍ଦ୍ୱାରା ସମାନ କଣିକାମାନ ପରସ୍ପର ସହ ସଂଯୋଜିତ ହୋଇଛନ୍ତି । ଆଦ୍ୟବୁଦ୍ଧିକୁ ଅସୀମ, ଆକାରଶୂନ୍ୟ, ବିଶୁଦ୍ଧ ଓ ଅମିଶ୍ରିତ ଭାବେ ପରିକଳ୍ପନା କରାଯାଇଛି । ଏହାକୁ ସ୍ୱତନ୍ତ୍ର ଓ ସ୍ୱସ୍ଥିତ ବୋଲି ବ୍ୟାଖ୍ୟା କରାଯାଇଛି । ସଂସାରରେ ଯାହା ଗତି, ସକ୍ରିୟତା, କ୍ରିୟାଶୀଳତା ଆଦି ରହିଛି ତାହା ଆଦ୍ୟବୁଦ୍ଧି ଯୋଗୁ ସମ୍ଭବ ହେଉଛି ବୋଲି ଆନାକ୍ସଗୋରାସ ପରିକଳ୍ପନା କରିଛନ୍ତି ।

ଆନାକ୍ସଗୋରାସଙ୍କ ଆଦ୍ୟବୁଦ୍ଧିର ପରିକଳ୍ପନା ଭିତରେ ପ୍ରକୃତିରେ ରହିଥିବା ଶୃଙ୍ଖଳା, ସଂହତି ଏକରୂପତା ଓ ଅଭିକଳ୍ପ (design) ର କାରଣ ରହିଥିବା ଷ୍ଟେସ ଦର୍ଶାଇଛନ୍ତି (ପୃଷ୍ଠା. ୯୭) । ପ୍ରକୃତିର ଏହି ଶୃଂଖଳାକୁ ଭୌତିକ ଶକ୍ତି ଆଧାରରେ ବୁଝାଇବା ସମ୍ଭବ ନୁହେଁ । ପ୍ରକୃତିର ବିଭିନ୍ନ କ୍ଷେତ୍ରରେ ଯେଉଁ ଶୃଂଖଳା ଓ ଲକ୍ଷ୍ୟ ନିହିତ ରହିଛି ତାହା ପଶ୍ଚାତରେ କ୍ରିୟାଶୀଳ ବୁଦ୍ଧି ରହିବା ଏକ ସାଧାରଣ ଅନୁମାନ । ପୃଥିବୀରେ ସବୁ କିଛି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଦିଗରେ କାର୍ଯ୍ୟକରିବା ଦେଖାଯାଏ । ସତେ ଯେପରି ସବୁ କିଛିକୁ ଏକ ସୁବ୍ୟବସ୍ଥିତ ଓ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଦିଗରେ ଅଭିକଳ୍ପିତ

କରାଯାଇଛି । ପରମାଣୁବାଦୀ ଦାର୍ଶନିକମାନେ ପ୍ରକୃତିକୁ ଓ ପୃଥିବୀକୁ ବ୍ୟାଖ୍ୟା କରିବା ପାଇଁ ଭୌତିକ ଶକ୍ତିକୁ ଅନୁମାନ କରିଛନ୍ତି । କିନ୍ତୁ ଭୌତିକ ଶକ୍ତି ଆଧାରରେ ପୃଥିବୀରେ ନିହିତ ଥିବା ଶୃଂଖଳା, ସଂହତି ଓ ଅଭିକଳ୍ପକୁ ବ୍ୟାଖ୍ୟା କରିବା ସହଜ ମନେହୁଏ ନାହିଁ । ଯଦି ବି ଭୌତିକ ଶକ୍ତି ଯାନ୍ତିକ ଭାବରେ କାର୍ଯ୍ୟକରେ ବୋଲି ଗ୍ରହଣ କରାଯାଏ ଏହା ଏକ ଅର୍ଥପୂର୍ଣ୍ଣ ଓ ସଂହତିପୂର୍ଣ୍ଣ ବିଶ୍ୱକୁ ବ୍ୟାଖ୍ୟା କରିପାରିବ ନାହିଁ । ସଂସାରରେ ସବୁ କିଛି ଏକ ବ୍ୟବସ୍ଥିତ ଧାରାରେ କ୍ରିୟାଶୀଳ ହେବା ଏକ ସାଧାରଣ ଉପଲବ୍ଧି । ଏକ ଅବ୍ୟବସ୍ଥିତ କ୍ରିୟା ଅବ୍ୟବସ୍ଥିତ ଧାରାକୁ ଜନ୍ମ ଦେଇପାରେ, ଏହା ଶୃଂଖଳା ଓ ଅଭିକଳ୍ପ ପ୍ରତିଷ୍ଠା କରିପାରିବ ନାହିଁ । କେବଳ ବୁଦ୍ଧି ଓ ସଚେତନ କ୍ରିୟାଦ୍ୱାରା ପ୍ରକୃତିରେ ଶୃଂଖଳା ଓ ଏକରୂପତା ପ୍ରତିଷ୍ଠା ହୋଇପାରିବ । ଏହି ଆଧାରରେ ଆନାକ୍ସଗୋରାସ ଏକ ନାଉସ ବା ଆଦ୍ୟବୁଦ୍ଧିର ପରିକଳ୍ପନା କରିଛନ୍ତି । ଜଗତର ସୃଷ୍ଟି ପ୍ରକ୍ରିୟା, କ୍ରିୟାଶୀଳତା ଓ ଶୃଂଖଳାକୁ ବ୍ୟାଖ୍ୟା କରିବା ପାଇଁ ଏକ ବିଶ୍ୱ-ନିୟନ୍ତ୍ରିତ ଆଦ୍ୟବୁଦ୍ଧିର ଭାବନା ବ୍ୟକ୍ତ କରିବା ପାଇଁ ଏକ ବିଶ୍ୱ-ନିୟନ୍ତ୍ରିତ ଆଦ୍ୟବୁଦ୍ଧିର ଭାବନା ବ୍ୟକ୍ତ କରିଛନ୍ତି ।

ଆଦ୍ୟବୁଦ୍ଧି ବା ନାଉସର ସ୍ୱରୂପ ନେଇ ଦାର୍ଶନିକ ମାନଙ୍କ ମଧ୍ୟରେ ମତପାର୍ଥକ୍ୟ ରହିଛି । ଆନାକ୍ସଗୋରାସ ଆଦ୍ୟବୁଦ୍ଧି ସମ୍ବନ୍ଧରେ ବ୍ୟକ୍ତ କରିଛନ୍ତି ଯେ ଏହାର ସ୍ୱରୂପ ହେଉଛି ସୂକ୍ଷ୍ମତମ, ଶୁଦ୍ଧତମ ଓ ଅମିଶ୍ରିତ । ଆରିଷ୍ଟୋଟଲ ଆନାକ୍ସଗୋରାସଙ୍କୁ ସମାଲୋଚନା କରିବା ବେଳେ ଆଦ୍ୟବୁଦ୍ଧି ଯେ ଏକ 'ଅଭୌତିକ ସିଦ୍ଧାନ୍ତ' (incorporeal principle) ଏହା ବ୍ୟକ୍ତ କରିଛନ୍ତି । ପରବର୍ତ୍ତୀ ସମୟରେ ଦର୍ଶନର ଇତିହାସ ରଚନା କରିଥିବା ବିଶିଷ୍ଟ ଆଧୁନିକ ଲେଖକମାନେ ଆଦ୍ୟବୁଦ୍ଧିକୁ ଭିନ୍ନ ଭିନ୍ନ ଭାବରେ ବ୍ୟାଖ୍ୟା କରିଛନ୍ତି । ଜେଲ୍ଲର, ଏଡମାନ ଓ ଅନ୍ୟାନ୍ୟ ଲେଖକମାନେ ଆଦ୍ୟବୁଦ୍ଧିକୁ ଅଭୌତିକ ସିଦ୍ଧାନ୍ତ ଭାବେ ସ୍ୱୀକାର କରିଛନ୍ତି । ତେବେ ଗ୍ରୋଟେ ଓ ବର୍ନେଟ୍ ଆଦ୍ୟବୁଦ୍ଧିକୁ ଏକ ଭୌତିକ ଶକ୍ତି (material force) ବୋଲି ବ୍ୟାଖ୍ୟାନ ଦେଇଛନ୍ତି । ବର୍ନେଟଙ୍କ ଯୁକ୍ତି ହେଉଛି ଯେ ଆଦ୍ୟବୁଦ୍ଧିକୁ ଆନାକ୍ସଗୋରାସ ସୂକ୍ଷ୍ମ ଓ ଅମିଶ୍ରିତ ବୋଲି କହିଥିବାରୁ ଏହା ଭୌତିକ ବୋଲି ପ୍ରତୀତ ହେଉଛି । କାରଣ ଭୌତିକ ସତ୍ତା ପାଖରେ ହିଁ 'ସୂକ୍ଷ୍ମ', 'ଅମିଶ୍ରିତ' ପଦ ପ୍ରୟୋଗ ହୋଇପାରିବ । ସୂକ୍ଷ୍ମ-ବୃହତ, ଅମିଶ୍ରିତ-ମିଶ୍ରିତ, କେବଳ ଭୌତିକ ବସ୍ତୁ ବା ସତ୍ତା ପାଖରେ ପ୍ରୟୋଗ ହେବା ବିଧେୟ । ଏ ସବୁ ପଦ ସ୍ଥାନବାଚକ (spatial) । ଯାହା ସ୍ଥାନବାଚକର ସୂଚନା ଦିଏ ତାହାକୁ ଏକ ଭୌତିକ ସତ୍ତା ବା ଶକ୍ତି ଭାବରେ ନିଆଯାଇପାରେ । ଏହି ଦୃଷ୍ଟିରୁ ବର୍ନେଟ ଆଦ୍ୟବୁଦ୍ଧିକୁ ଭୌତିକ ବୋଲି ବିଚାର କରିଛନ୍ତି । ତେବେ ପରବର୍ତ୍ତୀ ବ୍ୟାଖ୍ୟାକାରମାନେ ବର୍ନେଟଙ୍କ ବ୍ୟାଖ୍ୟା ଭ୍ରମାତ୍ମକ ବୋଲି ଦର୍ଶାଇଛନ୍ତି । ସାଧାରଣତଃ ଦାର୍ଶନିକମାନେ ଅମୂର୍ତ୍ତୀୟ ଓ ବିବିକ୍ତ (abstract) ପ୍ରତ୍ୟୟମାନଙ୍କୁ ବ୍ୟାଖ୍ୟା କରିବା ସମୟରେ ଭାଷାର ପ୍ରତିବନ୍ଧକର ସମ୍ମୁଖୀନ ହୁଅନ୍ତି, ଫଳରେ ଆଧାତ୍ମିକ ଓ ଅମୂର୍ତ୍ତୀୟ ଭାବନାମାନଙ୍କୁ ବ୍ୟାଖ୍ୟା କରିବା ପାଇଁ ସେମାନେ ଇନ୍ଦ୍ରିୟଗ୍ରାହ୍ୟ ଭାବନା ମାନଙ୍କର ସହାୟତା ନିଅନ୍ତି । ଅଭୌତିକ ବିଚାରକୁ ବୁଝାଇବା ପାଇଁ ଭୌତିକ ଉଦାହରଣ ଦିଆଯିବା ଏକ ସ୍ୱାଭାବିକ ପ୍ରକ୍ରିୟା । ଆଦ୍ୟବୁଦ୍ଧି ସଂପର୍କରେ ଆନାକ୍ସଗୋରାସ କହିଛନ୍ତି ଯେ ବୃହତ୍ତର ବା କ୍ଷୁଦ୍ରତର ସ୍ଥିତିରେ ଆଦ୍ୟବୁଦ୍ଧିର ସ୍ୱରୂପ ସମାନ । ବୃହତ୍ତର ବା କ୍ଷୁଦ୍ରତର କହିବା ବେଳେ ସ୍ଥାନବାଚକ ସ୍ଥିତିର ସୂଚନା ଯେ ନିଶ୍ଚିତ ଭାବରେ ମିଳେ ଏହା କୁହାଯାଇ ପାରିବ ନାହିଁ । ଆରିଷ୍ଟୋଟଲ

ଆଲେକ୍‌ଜାଣ୍ଡରଙ୍କ ଅପେକ୍ଷା ବୃହତ୍ତର ପ୍ରତିଭାର ଅଧିକାରୀ । ଆମେ ଭାଷାରେ ମଧ୍ୟ କହିଥାଉ ଯେ ଗୋପାଳ ବିଜୟ ତୁଳନାରେ ଭାରି କ୍ଷୁଦ୍ର ମନା ବ୍ୟକ୍ତି । ପ୍ରତିଭା କ୍ଷେତ୍ରରେ ବୃହତ୍ତର ଶବ୍ଦ ଓ ମନ କ୍ଷେତ୍ରରେ କ୍ଷୁଦ୍ର ଶବ୍ଦ ବ୍ୟବହାର କଲାବେଳେ କୌଣସି ସ୍ଥାନବାଚକ ସ୍ଥିତିର ସୂଚନା ଆସେ ନାହିଁ । ଆମେ ଏଠାରେ କ'ଣ କହିବା ଯେ ବିଜୟର ମନ (mind) ଗୋପାଳର ମନଠାରୁ ଆକାରରେ ସାନ ? ଯେଉଁ ଆଦ୍ୟବୁଦ୍ଧି ଯୋଗୁ ପୃଥିବୀର ସୃଜନ ପ୍ରକ୍ରିୟା ଆରମ୍ଭ ହୋଇଛି ସେହି ଆଦ୍ୟବୁଦ୍ଧି ବି ବ୍ୟକ୍ତି ପାଖରେ ନିହିତ ରହିଛି । ପୃଥିବୀ ସୃଜନ ପ୍ରକ୍ରିୟାରେ ନିହିତ ଆଦ୍ୟବୁଦ୍ଧି (ବୃହତ୍ତର ବା the greater) ମନୁଷ୍ୟ ବ୍ୟକ୍ତି ପାଖରେ ରହିଥିବା ଆଦ୍ୟବୁଦ୍ଧି (କ୍ଷୁଦ୍ରତର ବା the smaller) ପରସ୍ପର ସ୍ୱରୂପରେ ସମାନ ବା ସମରୂପ । ଏଠାରେ ବୃହତ୍ତର ବା କ୍ଷୁଦ୍ରତର କୌଣସି ସ୍ଥାନବାଚକ ଭାବନାକୁ ବ୍ୟକ୍ତ କରୁନାହିଁ । ପୁନଶ୍ଚ ଆନାକ୍ସଗୋରାସ ବ୍ୟକ୍ତ କରିଛନ୍ତି ଯେ ଯେଉଁଠି ଜୀବନସତ୍ତା ରହିଛି ତାହା ମନୁଷ୍ୟ, ପ୍ରାଣୀ ଓ ଏପରିକି ଉଦ୍ଭିଦ ଯାହା ହେଉନା କାହିଁକି ସେଠାରେ ଆଦ୍ୟବୁଦ୍ଧିର ପ୍ରତିଫଳନ ହୋଇଛି । ଏଠାରେ ଯେଉଁ ପାର୍ଥକ୍ୟ ରହିଛି ତାହା ଗୁଣାତ୍ମକ ନୁହେଁ ବରଂ ପରିମାଣାତ୍ମକ । ଷ୍ଟେସ୍ ଏହି ପରିପ୍ରେକ୍ଷୀରେ ଲେଖିଛନ୍ତି – "For Anaxagoras it is the one Nous which animates all living beings, men, animals and even plants. These different orders of beings are animated by the same Nous but in different degrees, that of man being the greatest" (ପୃଷ୍ଠା. ୯୭)

ଏଥିରୁ ଏହା ସ୍ପଷ୍ଟ ସୂଚିତ ହୁଏ ଯେ ଆଦ୍ୟବୁଦ୍ଧି ମନୁଷ୍ୟ ପାଖରେ ବୃକ୍ଷ ତୁଳନାରେ ଅଧିକ ସ୍ଥାନ ଅଧିକାର କରେ ନାହିଁ । ଅର୍ଥାତ୍ ଆଦ୍ୟବୁଦ୍ଧିକୁ ସ୍ଥାନବାଚକ ନେବା ଯଥାର୍ଥ ନୁହେଁ । ଯଦି ବି ଆନାକ୍ସଗୋରାସ ଆଦ୍ୟବୁଦ୍ଧିକୁ ସ୍ଥାନବାଚକ ଭାବେ ନେଇଥିବା ଭାବନାକୁ ଗ୍ରହଣ କରାଯାଏ ସେ ଏହାକୁ ଭୌତିକ ବୋଲି କେବେ ବି କଳ୍ପନା କରିନାହାନ୍ତି । ମନ ବା ଚେତନା ଯେ ଅ-ସ୍ଥାନବାଚକ (non-spatial) ଏହି ଭାବନା ଦେକାର୍ତଙ୍କ (୧୫୯୬-୧୬୫୦) ପର୍ଯ୍ୟନ୍ତ ପାଶ୍ଚାତ ଦର୍ଶନରେ ବିକଶିତ ହୋଇନାହିଁ । ଦେକାର୍ତ ପ୍ରଥମ କରି ଶରୀର ଓ ମନ ଭିତରେ ପର୍ଯ୍ୟାୟ ଜନିତ ବିଚାର ବ୍ୟକ୍ତ କରି ସେମାନଙ୍କ ଭିତରେ ସଂପର୍କ ନେଇ ବିତର୍କ ଆରମ୍ଭ କରିଛନ୍ତି । ଆନାକ୍ସଗୋରାସ ମନକୁ ଅ-ସ୍ଥାନବାଚକ ଭାବେ ଭାବନା ବ୍ୟକ୍ତ କରିନାହାନ୍ତି କାରଣ ସେ ଦେକାର୍ତଙ୍କ ବହୁ ପୂର୍ବରୁ ତାଙ୍କର ଦାର୍ଶନିକ ସିଦ୍ଧାନ୍ତ ବ୍ୟକ୍ତ କରିଛନ୍ତି । ମନ ଯେ ଅ-ଭୌତିକ ବା ଅଶରୀରୀ ଏହି ଭାବନାକୁ ସେ ଅସ୍ପଷ୍ଟ ଭାବରେ ଚିନ୍ତା କରିଛନ୍ତି । ତଥାପି ଭୌତିକ ଓ ଅଭୌତିକ ଭିତରେ ଥିବା ବିରୋଧାଭାସ ନେଇ ସେ ସଚେତନ ହୋଇଛନ୍ତି । ଏହି ପୃଷ୍ଠଭୂମିରେ ଆନାକ୍ସଗୋରାସ ଆଦ୍ୟବୁଦ୍ଧିକୁ ଏକ ଅଭୌତିକ ସିଦ୍ଧାନ୍ତ ଭାବରେ ଯେ ପ୍ରକାଶ କରିଛନ୍ତି ଏହା କହିବା ଯଥାର୍ଥ ମନେହୁଏ । ଜଗତରେ ରହିଥିବା ଶୃଂଖଳା ଓ ସଂହତିକୁ ସେ ଯେହେତୁ ଭୌତିକ ସିଦ୍ଧାନ୍ତ ଆଧାରରେ ବ୍ୟାଖ୍ୟା କରିପାରି ନାହାନ୍ତି ସେ ଆଦ୍ୟ ବୁଦ୍ଧିର ପରିକଳ୍ପନା କରି ତାହାରି ଆଧାରରେ ଜଗତକୁ ବ୍ୟାଖ୍ୟା କରିବାକୁ ପ୍ରୟାସ କରିଛନ୍ତି ।

ଆଦ୍ୟବୁଦ୍ଧି ଆଧାରରେ ଆନାକ୍ସଗୋରାସ ଜଗତର ଗତିଶୀଳତାକୁ ବ୍ୟାଖ୍ୟା କରିଛନ୍ତି । ଜଗତର ବିଭିନ୍ନ ସ୍ତରରେ ଶୃଂଖଳା, ଗତିଶୀଳତା ଓ ଅଭିକଳ୍ପ ରହିଥିବା ମନେହୁଏ । ଏସବୁକୁ ବୁଝାଇବାକୁ ସେ ଆଦ୍ୟବୁଦ୍ଧିକୁ ସିଦ୍ଧାନ୍ତ ଭାବରେ ନେଇଛନ୍ତି । ଜଗତର ସ୍ୱରୂପ କ୍ଷେତ୍ରରେ ସେ ଉପାଦାନ ମାନଙ୍କୁ ଭୌତିକବାଦୀ ମାନଙ୍କ ପରି ଗ୍ରହଣ କରିଛନ୍ତି, ତେବେ ସେ ଆଦ୍ୟବୁଦ୍ଧି ମାଧ୍ୟମରେ ଜଗତର ଗତିଶୀଳତାକୁ ବ୍ୟାଖ୍ୟା କରିଛନ୍ତି । ଚେତନା ଏକ ଗତିଶୀଳ ଶକ୍ତି ଯାହା ଆଦ୍ୟବୁଦ୍ଧି ଆଧାରରେ ବ୍ୟକ୍ତ ହୋଇପାରିବ । ସୃଷ୍ଟି ପ୍ରକ୍ରିୟା ଯେଉଁ ପୃଥକୀକରଣରୁ ଆରମ୍ଭ ହୋଇଛି ତାହା ଆଦ୍ୟବୁଦ୍ଧି ଯୋଗୁ ହିଁ ସମ୍ଭବ ହୋଇଛି । ଗତିଶୀଳତାର କାରଣ ହେଉଛି ଚେତନାର ଅଭିବ୍ୟକ୍ତି । ତେବେ ଆଦ୍ୟବୁଦ୍ଧି ସବୁକୁ ଗତିଶୀଳ କରାଏ, କନ୍ତୁ ତାହା ସ୍ୱରୂପରେ ସ୍ଥିର । ଯଦି ଆଦ୍ୟବୁଦ୍ଧିକୁ ଗତିଶୀଳ ଭାବେ ନିଆଯିବ, ତେବେ ଗତିଶୀଳତା ଏହା ଭିତରେ କିପରି ସୃଷ୍ଟି ହେଲା ଏହି ପ୍ରଶ୍ନ ଉଠିବ । ଆଦ୍ୟବୁଦ୍ଧିକୁ ଗତିଶୀଳ କରିବା ପାଇଁ ବାହ୍ୟିକ ସତ୍ତାକୁ ସ୍ୱୀକାର କରିବାକୁ ହେବ । ସୁତରାଂ ଆନାକ୍ସଗୋରାସ ଆଦ୍ୟବୁଦ୍ଧିକୁ ସବୁର ଗତି ଓ ସକ୍ରିୟତା ପାଇଁ ଆଧାର ଭାବରେ ନେଲେ ମଧ୍ୟ ଏହା ସ୍ୱରୂପରେ ସ୍ଥିର ଓ ଅପରିବର୍ତ୍ତିତ ମନେହୁଏ । ଏତଦ୍‌ବ୍ୟତୀତ ଆଦ୍ୟବୁଦ୍ଧି ଶୁଦ୍ଧ ଓ କାହା ସହିତ ମିଶ୍ର ନୁହେଁ । ଏହା ସ୍ୱୟଂସ୍ଥିତ । ଦ୍ରବ୍ୟ ବା ବସ୍ତୁ ସହିତ ତୁଳନା ପରିପ୍ରେକ୍ଷୀରେ ଏହା ଶୁଦ୍ଧ, ସରଳ ଓ ଅମିଶ୍ର । ଏହି ଦୃଷ୍ଟିରୁ ଏହା ସର୍ବଶକ୍ତି-ସତ୍ତା । ଏଥିରେ କୌଣସି ବସ୍ତୁ ସତ୍ତା ସଂଯୁକ୍ତ ନୁହେଁ, କାରଣ ବସ୍ତୁ ସୀମାବଦ୍ଧ, ଅଥଚ ଆଦ୍ୟବୁଦ୍ଧି ଅସୀମ । ଏହା ସହିତ ବସ୍ତୁ ସଂଶ୍ଳିଷ୍ଟ ହୋଇଥିଲେ ଏହା ସୀମିତ ହୋଇଥାନ୍ତା ଓ ସବୁ ଉପରେ ନିୟନ୍ତ୍ରଣ ରଖିପାରନ୍ତା ନାହିଁ । ଆଦ୍ୟବୁଦ୍ଧିର ଏହି ସବୁ ବ୍ୟାଖ୍ୟାନ ପୃଷ୍ଠଭୂମିରେ ଏକ ପ୍ରଶ୍ନ ସ୍ୱତଃ ଆସିଥାଏ । ଆଦ୍ୟବୁଦ୍ଧିକୁ ଏକ ବ୍ୟକ୍ତି ସତ୍ତା ଭାବରେ ଗ୍ରହଣ କରାଯିବ କି ? ଖ୍ରୀଷ୍ଟଧର୍ମରେ ଯେପରି ଈଶ୍ୱରଙ୍କୁ ଏକ ବ୍ୟକ୍ତି ଭାବରେ ନିଆଯାଇଛି, ସେହିପରି ଆଦ୍ୟବୁଦ୍ଧି ବା ନାଉସକୁ ବ୍ୟକ୍ତି ସତ୍ତା ଆରୋପ କରାଯାଇ ପାରିବ କି ? ତେବେ ଏହି ପ୍ରଶ୍ନର ଉତ୍ତର ଦେବା ସମ୍ଭବ ନୁହେଁ, ଯେହେତୁ ଏହି ପ୍ରଶ୍ନ ଆନାକ୍ସଗୋରାସଙ୍କ ପାଖରେ ଉଦ୍‌ଭବ ହୋଇ ନାହିଁ । ଈଶ୍ୱରଙ୍କର ବ୍ୟକ୍ତି ସତ୍ତା ରହିଛି ନା ଈଶ୍ୱର ଅବ୍ୟକ୍ତିକ ଏହି ପ୍ରଶ୍ନ ବହୁତ ପରେ ଦର୍ଶନ ପରିସରକୁ ଆସିଛି । ଗ୍ରୀକ୍ ଦର୍ଶନରେ ଈଶ୍ୱରଙ୍କ ସ୍ୱରୂପ ସଂକ୍ରାନ୍ତରେ ଏହି ପ୍ରଶ୍ନର ଅବତାରଣା ହୋଇନାହିଁ । ଈଶ୍ୱରଙ୍କ ଅସ୍ତିତ୍ୱକୁ ସ୍ୱୀକାର କରାଗଲେ ମଧ୍ୟ ଈଶ୍ୱରଙ୍କ ବ୍ୟକ୍ତି ସତ୍ତା ପ୍ରସଙ୍ଗ ଉପରେ ଆଲୋଚନା ହୋଇନାହିଁ । ଏପରିକି ପ୍ଲେଟୋଙ୍କ ଦର୍ଶନ ପରିପ୍ରେକ୍ଷୀରେ ମଧ୍ୟ ଏହି ସମସ୍ୟା ଉଠିଛି ।

ସୃଷ୍ଟି ପ୍ରକ୍ରିୟାରେ ଆଦ୍ୟବୁଦ୍ଧିର ଭୂମିକା ସମ୍ବନ୍ଧରେ ଏହା କୁହାଯାଇପାରେ ଯେ ଏହା ଜଗତର ନିମିତ୍ତ କାରଣ, ଜଗତର ଉପାଦାନ କାରଣ ନୁହେଁ । ନିମିତ୍ତ କାରଣ ଅର୍ଥ ଯେଉଁ ଉପାଦାନର ଆଧାର ଉପରେ ଜଗତର ସର୍ଜନା କରାଯାଇଛି । ଉପାଦାନ କାରଣର ଅର୍ଥ ଯେଉଁ ଉପାଦାନରୁ ଜଗତର ସୃଷ୍ଟି ସମ୍ଭବ ହୋଇଛି । ଏକ ସୁନା ଅଳଙ୍କାର କ୍ଷେତ୍ରରେ ସୁନା ହେଉଛି ଉପାଦାନ, ସ୍ୱର୍ଣ୍ଣକାର ହେଉଛି ନିମିତ୍ତ କାରଣ ଅର୍ଥାତ୍ ସୁନା ଉପାଦାନରୁ ସ୍ୱର୍ଣ୍ଣକାର ଅଳଙ୍କାରଟି ତିଆରି କରିଛନ୍ତି । ଏହି ସାଦୃଶ୍ୟରେ ଆଦ୍ୟବୁଦ୍ଧି ଜଗତର ନିମିତ୍ତ କାରଣ । ଜଗତରେ ବସ୍ତୁ ଓ ଆଦ୍ୟବୁଦ୍ଧି ଉଭୟ ସନାତନ, ଅର୍ଥାତ୍ ସେମାନେ ଅନନ୍ତ କାଳରୁ ରହି ଆସିଛନ୍ତି । ଆଦ୍ୟବୁଦ୍ଧି ବସ୍ତୁ ବା ଦ୍ରବ୍ୟର

ସ୍ରଷ୍ଟା ନୁହନ୍ତି, ସେ ଏହାର ଆୟୋଜକ ମାତ୍ର । ଅସଂଖ୍ୟ ମୂଳସତ୍ତା ମିଶ୍ରିତ ଭାବରେ ଆଦ୍ୟରୁ ରହିଛନ୍ତି, ଆଦ୍ୟବୁଦ୍ଧି ଯୋଗୁ ମିଶ୍ରିତ ସତ୍ତାରୁ ପୃଥକୀକରଣ ପ୍ରକ୍ରିୟା ଆରମ୍ଭ ହୋଇଛି ଯାହା ଜଗତ ଉତ୍ପତ୍ତିର କାରଣ । ସୁତରାଂ ଆଦ୍ୟବୁଦ୍ଧି ଜଗତର ନିମିତ୍ତ କାରଣ । ଜଗତରେ ରହିଥିବା ଶୃଂଖଳା ଓ ସଂହତି ପୃଷ୍ଠଭୂମିରେ ଆଦ୍ୟବୁଦ୍ଧି ଭାବନାର ଗୁରୁତ୍ୱ ରହିଛି । ଆଧୁନିକ କାଳରେ ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରମାଣ କରିବାକୁ ପ୍ରୟୋଜନ ଯୁକ୍ତି ବା ଉଦ୍ଦେଶ୍ୟମୂଳକ ଯୁକ୍ତି (Teleological argument) କୁ ଏକ ବଳିଷ୍ଠ ଯୁକ୍ତି ଭାବରେ କେତେକ ଗ୍ରହଣ କରନ୍ତି ଯଦିବା ଏହି ଯୁକ୍ତିର ଅନେକ ଦୁର୍ବଳତା ଓ ତର୍କଦୋଷ ରହିଛି । ପ୍ରୟୋଜନ ଯୁକ୍ତିରେ କୁହାଯାଏ ଯେ ଜଗତରେ ଯେଉଁ ଶୃଂଖଳା ରହିଛି ତାହା କେହି ପ୍ରଦାନ କରିଛନ୍ତି । ଜଗତରେ ଯାହା କିଛି ଅଛି ତାହା କିଛି ଉଦ୍ଦେଶ୍ୟ ପୂରଣ ପାଇଁ ରହିଛି । ଜଗତରେ ଯାହା ସବୁ ରହିଛି ତାହା ନିର୍ଦ୍ଦିଷ୍ଟ ଲକ୍ଷ୍ୟ ପୂରଣ ପାଇଁ ରହିଛି ଓ ଜଗତର ସଂହତି ପାଇଁ ସେ ସବୁ ଉଦ୍ଦିଷ୍ଟ । ଜଗତରେ କିଛି ଲକ୍ଷ୍ୟ ସାଧନ ପାଇଁ ଈଶ୍ୱର ସବୁ କିଛିକୁ ସୁବ୍ୟବସ୍ଥିତ କରିଛନ୍ତି । ତେବେ ପ୍ରୟୋଜନ ଯୁକ୍ତି ଆଧାରରେ କୁହାଯାଇପାରେ ଯେ ଈଶ୍ୱର ଜଗତରେ ସଂହତି ରକ୍ଷା କରିଛନ୍ତି, କିନ୍ତୁ ଜଗତକୁ ସେ ଶୂନ୍ୟରୁ ସୃଷ୍ଟି କରିଛନ୍ତି ଏହା ଏହି ଯୁକ୍ତିର ନିଷ୍କର୍ଷ ହେଉନାହିଁ । ଷ୍ଟେସ୍ ଏହି ପରିପ୍ରେକ୍ଷୀରେ ଲେଖିଛନ୍ତି – Teleology cannot possibly be made the basis of an argument for the existence of a world-creating intelligence, but only for the existence of a world designing intelligence (ପୃଷ୍ଠା–୧୦୧) । ଯଦି ଏକ ପରିତ୍ୟକ୍ତ ସ୍ଥାନରେ ଭୂମି ତଳୁ ଏକ ପ୍ରାଚୀନ ସହରର ଧ୍ୱଂସାବଶେଷ, ଗୃହ ଓ ପୂଜାସ୍ଥଳର ସନ୍ଧାନ ମିଳେ ତେବେ ଆମେ ଏହା ଭାବିବା ଯୁକ୍ତିସଂଗତ ଯେ ବହୁ ଅତୀତରେ ଏଠାରେ ଲୋକମାନେ ଏହା ନିର୍ମାଣ କରିଥିଲେ । ସହରକୁ ନିର୍ମାଣ କରିବା ଅର୍ଥ ନୁହେଁ ଯେ ସେମାନେ ସହରକୁ ଶୂନ୍ୟରୁ ସୃଷ୍ଟି କରିଥିଲେ । ଯେଉଁମାନେ ସହରରେ ଘରଦ୍ୱାର ନିର୍ମାଣ କରି ରହୁଥିଲେ ସେମାନେ ସେସବୁ ଉପାଦାନକୁ ଯେ ସୃଷ୍ଟି କରିଥିଲେ ଏହା କହିବା ଯଥାର୍ଥ ନୁହେଁ । ଆନାକ୍ସଗୋରାସ ଯେତେବେଳେ ଭାବିଛନ୍ତି ଯେ ଆଦ୍ୟବୁଦ୍ଧି ମୂଳ ବସ୍ତୁର ଉପାଦାନ ଭିତରେ ଶୃଂଖଳା ସୃଷ୍ଟି କରିଛନ୍ତି ତାହା ଯଥାର୍ଥ ମନେ ହୋଇପାରେ । ପ୍ରୟୋଜନ ବା ଉଦ୍ଦେଶ୍ୟମୂଳକ ସିଦ୍ଧାନ୍ତ ଜଗତ–ସୃଷ୍ଟି ଜନିତ ବୁଦ୍ଧିକୁ ପ୍ରକାଶ କରୁ ନାହିଁ, ବରଂ ଏହା ଜଗତର ସଂହତି ସ୍ଥାପନର ଭାବନାକୁ ବ୍ୟକ୍ତ କରୁଛି । ଯଦି ଜଗତ ସୃଷ୍ଟି ସଂପର୍କୀୟ ବିଚାରକୁ ଗ୍ରହଣ କରାଯିବ, ସେ କ୍ଷେତ୍ରରେ ଉଦ୍ଦେଶ୍ୟମୂଳକ ଯୁକ୍ତି ପରିବର୍ତ୍ତେ ଅନ୍ୟ ଯୁକ୍ତିର ସହାୟତା ନେବାକୁ ହେବ । ଆନାକ୍ସଗୋରାସ ବସ୍ତୁତଃ ତାଙ୍କ ପ୍ରସ୍ତାବନାରେ ଆଦ୍ୟବୁଦ୍ଧିକୁ ଜଗତ–ସୃଷ୍ଟିର କାରଣ ଭାବେ ନନେଇ ନିମିତ୍ତ ସଂସ୍ଥାପକ ଭାବେ ଗ୍ରହଣ କରିଛନ୍ତି । କାରଣ ଜଗତର ଉପାଦାନ ସକଳ ଆଦ୍ୟବୁଦ୍ଧି ସହ ଚିରନ୍ତନ ଭାବେ ରହିଆସିଛି । ସୁତରାଂ ଆଦ୍ୟବୁଦ୍ଧି ଜଗତର ନିମିତ୍ତ କାରଣ, ଯେହେତୁ ତାଙ୍କ ପ୍ରଭାବରୁ ମୂଳ ସତ୍ତାମାନଙ୍କର ମିଶ୍ରଣରୁ ଅମିଶ୍ରଣ ପ୍ରକ୍ରିୟା ଆରମ୍ଭ ହୋଇ ଜଗତର ଉଦ୍‌ଭବ ହୋଇଛି ।

ପୂର୍ବରୁ ସୂଚନା ଦିଆଯାଇଛି ଯେ ଆରମ୍ଭରୁ ଜଗତ ଅତ୍ୟନ୍ତ ଅବ୍ୟବସ୍ଥିତ ସ୍ତରରେ ରହିଥିଲା ଓ ସେତେବେଳେ ବିଭିନ୍ନ ମୂଳ ଦ୍ରବ୍ୟମାନ ପରସ୍ପର ସହ ସଂଯୋଜିତ ବା ମିଶ୍ରିତ ହୋଇ ରହିଥିଲେ । ଆଦ୍ୟବୁଦ୍ଧିର ପ୍ରଭାବରେ ମିଶ୍ରିତ

ବସ୍ତୁମାନଙ୍କର କଣିକାମାନ ଅମିଶ୍ରିତ ବା ପୃଥକୀକରଣ ହେବାଦ୍ୱାରା ସଂସାରର ବସ୍ତୁମାନଙ୍କର ନିର୍ମାଣ ପ୍ରକ୍ରିୟା ଆରମ୍ଭ ହେଲା । ସଂସାରରେ ଅସଂଖ୍ୟ ବସ୍ତୁ ରହିଛନ୍ତି ଓ ସେମାନଙ୍କର ଗୁଣମାନ ମଧ୍ୟ ପରସ୍ପରଠାରୁ ଭିନ୍ନ । ପୃଥକୀକରଣ ବା ଅମିଶ୍ରଣ ପ୍ରକ୍ରିୟାରେ ସମାନ ଗୁଣ ବିଶିଷ୍ଟ ବସ୍ତୁମାନଙ୍କର କଣିକାମାନଙ୍କର ଏକତ୍ର ମିଶ୍ରଣ ଧାରାରେ ଅସଂଖ୍ୟ ବସ୍ତୁ ଉଦ୍‌ଭବ ହେଲେ । ଏହି ପ୍ରକ୍ରିୟାକୁ ଆନାକ୍ସଗୋରାସ ନିର୍ଦ୍ଦିଷ୍ଟ ଧାରାରେ ବ୍ୟାଖ୍ୟା କରିଛନ୍ତି । ତାଙ୍କ ମତରେ ଯେତେବେଳେ ସବୁକିଛି ମିଶିକରି ଥିଲା, ବସ୍ତୁଦ୍ୱର କେନ୍ଦ୍ରରେ ଆଦ୍ୟବୁଦ୍ଧି ପ୍ରଭାବରେ ଏକ ସମୟରେ ଏକ ଆବର୍ତ୍ତ (vortex) ସୃଷ୍ଟି ହେଲା । ଏହି ଆବର୍ତ୍ତନ ବସ୍ତୁଦ୍ୱର ଚତୁର୍ଦ୍ଦିଗରେ ପ୍ରସାରିତ ହେବାକୁ ଲାଗିଲା । ଏକ ଜଳରାଶିରେ ଏକ ଟେକା ପକାଇବାଦ୍ୱାରା ଯେପରି ତରଙ୍ଗ ସୃଷ୍ଟି ହୋଇ ଚତୁର୍ଦ୍ଦିଗରେ ପ୍ରସାରିତ ହୁଏ, ସେହିପରି ବସ୍ତୁଦ୍ୱ ଭିତରେ ସୃଷ୍ଟି ହୋଇଥିବା ଆବର୍ତ୍ତ ମିଶ୍ରିତ ବସ୍ତୁ ଭିତରେ ପ୍ରସାରିତ ହେବାକୁ ଲାଗିଲା । ଏହାର ପରିଣାମରେ ଅସୀମ ବସ୍ତୁଦ୍ୱ ମଧ୍ୟରୁ ବସ୍ତୁ ସତ୍ତାମାନ ସଂଗଠିତ ହେଲେ । ଏହି ପ୍ରସାରଣ ଏକ ଅନନ୍ତ ପ୍ରକ୍ରିୟା । ଏହି ପ୍ରକ୍ରିୟାଦ୍ୱାରା ସମାନ କଣିକାମାନ ମଶ୍ରିତ ହେଲେ । ତେଣୁ ଆଦ୍ୟବୁଦ୍ଧିଦ୍ୱାରା ବିଶ୍ୱରେ ପ୍ରଥମେ ଗତି ବା କ୍ରିୟାଶୀଳତା ସୃଷ୍ଟି ହେଲା । ଏହା ପ୍ରଥମେ ବସ୍ତୁଦ୍ୱର କେନ୍ଦ୍ରରେ ସଂଘଟିତ ହେଲା ଓ ଏହି ଆବର୍ତ୍ତ ପରବର୍ତ୍ତୀ ଗତିଶୀଳତାକୁ ରୂପ ଦେଲା । ପ୍ରଥମେ ଯେଉଁ ଆବର୍ତ୍ତ ସୃଷ୍ଟି ହୋଇଥିଲା, ତାହାର ପରିଣାମରୁ ଅନେକ କ୍ରିୟାଶୀଳତା ଓ ଗତିର ଉଦ୍‌ଭବ ହେଲା । ବସ୍ତୁଦ୍ୱର କ୍ରିୟାଶୀଳତାରୁ ଯେଉଁ ସଞ୍ଚାଳନ ଓ ଗତି ଆସିଲା ତାହାଦ୍ୱାରା ଅସଂଖ୍ୟ ଦ୍ରବ୍ୟମାନ ସୃଷ୍ଟି ହେଲେ । ପ୍ରଥମେ ବସ୍ତୁଦ୍ୱରୁ ଉଷ୍ମ, ଶୁଷ୍କ ଓ ହାଲୁକା କଣିକାମାନ ପୃଥକ୍ ହେଲେ ଓ ଏମାନେ ଉପରସ୍ଥ ବାୟୁ ବା ଇଥରରେ ରୂପାନ୍ତରିତ ହେଲେ । ଏହାପରେ ବସ୍ତୁଦ୍ୱରୁ ଶୀତଳ, ଆର୍ଦ୍ର, ସାନ୍ଦ୍ରତା ଇତ୍ୟାଦିର କଣିକାମାନ ପୃଥକ୍ ହୋଇ ମିଶ୍ରତ ହେବାଦ୍ୱାରା ନିମ୍ନର ବାୟୁ ସୃଷ୍ଟି ହେଲା । ବାୟୁର ସଞ୍ଚାଳନ, ଘୂର୍ଣ୍ଣନ ଓ ଆବର୍ତ୍ତନ ବସ୍ତୁର କେନ୍ଦ୍ର ଆଡକୁ ପ୍ରବାହରୁ ପୃଥିବୀ ସୃଷ୍ଟି ହେଲା । ପୃଥିବୀର ଘୂର୍ଣ୍ଣନ ପ୍ରକ୍ରିୟାରୁ ଅନ୍ୟ ନଭମଣ୍ଡଳର ପିଣ୍ଡ (heavenly bodies) ଯଥା ଚନ୍ଦ୍ର, ତାରା ମାନଙ୍କର ଉଦ୍‌ଭବ ହେଲା । ଏମାନେ ପୃଥିବୀରୁ ପୃଥକ୍ ହେବା ପଶ୍ଚାତରେ ପୃଥିବୀର ଘୂର୍ଣ୍ଣନର ଶକ୍ତି ହିଁ କାରଣ ଥିଲା । ପୃଥିବୀରୁ ପୃଥକ୍ ହେବା ପରେ ସେମାନଙ୍କର ଘୂର୍ଣ୍ଣନରୁ ସେମାନେ ଦୀପ୍ତିମାନ ହୋଇ ଆଲୋକ ବିଚ୍ଛୁରଣ କରିବାକୁ ଲାଗିଲେ । ଆନାକ୍ସଗୋରାସ ଭାବିଥିଲେ ଯେ ଚନ୍ଦ୍ର ପୃଥିବୀରୁ ପୃଥକ୍ ହୋଇ ସୂର୍ଯ୍ୟର ଆଲୋକରେ ଆଲୋକିତ ହେଉଛି । ଆନାକ୍ସଗୋରାସ ଚନ୍ଦ୍ରାଲୋକର କିରଣ ବିଷୟରେ ପ୍ରଥମେ ଏହି ଭାବନା ଦେଇଥିଲେ ଯେ ଚନ୍ଦ୍ର ସୂର୍ଯ୍ୟର କିରଣରେ ଆଲୋକିତ ହେଉଛି । ସେ ମଧ୍ୟ ପ୍ରଥମ ବ୍ୟକ୍ତି ଯେ ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟପରାଗର କାରଣ ବିଷୟରେ ନିଜର ସୁଚିନ୍ତିତ ମତ ଦେଇଥିଲେ । ସୂର୍ଯ୍ୟପରାଗ ସୂର୍ଯ୍ୟ ଓ ପୃଥିବୀ ମଝିରେ ଚନ୍ଦ୍ରର ଅବସ୍ଥାନ ଯୋଗୁ ସଂଘଟିତ ହେଉଛି ଓ ଚନ୍ଦ୍ରଗ୍ରହଣ ଚନ୍ଦ୍ର ଉପରେ ପୃଥିବୀର ଛାଇ ପଡିବା ଯୋଗୁ ଘଟୁଛି । ଏହି ସିଦ୍ଧାନ୍ତ ସହ ଆଧୁନିକ ବୈଜ୍ଞାନିକ ମତର ସାମଂଜସ୍ୟ ରହିଛି । ସେ ଏହା ମଧ୍ୟ ବିଶ୍ୱାସ କରୁଥିଲେ ଯେ ଆମ ପୃଥିବୀ ସଦୃଶ ଅନେକ ପୃଥିବୀ ନଭମଣ୍ଡଳରେ ରହିଛନ୍ତି ଓ ସେମାନଙ୍କ ପୃଥକ୍ ସୂର୍ଯ୍ୟ ଚନ୍ଦ୍ର ରହିଛନ୍ତି । ପୃଥିବୀ ପୃଷ୍ଠରେ କିପରି ଜୀବସତ୍ତାର ଉଦ୍ଭବ ହୋଇଛି ସେ ବିଷୟରେ ବି ସେ ନିଜର ଭାବନା ବ୍ୟକ୍ତ କରିଥିଲେ । ସେ ବିଶ୍ୱାସ କରୁଥିଲେ ଯେ

ବାୟୁମଣ୍ଡଳରେ ରହିଥିବା କୀଟାଣୁ ମାନ ବର୍ଷାଦ୍ୱାରା ଧରାପୃଷ୍ଠକୁ ଆସିଛନ୍ତି ଓ ସେଠାରେ ଜୀବସତ୍ତାର ବିକାଶର କାରଣ ହୋଇଛନ୍ତି । ସେମାନଙ୍କର ବିକାଶ ଓ ପ୍ରଜନନ ଯୋଗୁ ଧରାପୃଷ୍ଠରେ ପ୍ରାଣୀଜଗତର ଉଦ୍‌ଭବ ହୋଇଛି । ସେହିପରି ସୂର୍ଯ୍ୟର ଆକାର ତାଙ୍କ ରାଜ୍ୟ ପେଲୋପୋନିସଠାରୁ ବହୁ ଗୁଣ ହେବ ସେ କଳ୍ପନା କରିଥିଲେ । ଏହିପରି ବହୁ ନୂଆ ନୂଆ ଭାବନା, ତତ୍ତ୍ୱ, ପ୍ରକଳ୍ପ ଇତ୍ୟାଦି ତାଙ୍କ ବିଚାରଧାରାରେ ରୂପରେଖ ନେଇଥିଲା ।

ଆନାକ୍ସଗୋରାସଙ୍କ ଦର୍ଶନର ମୂଲ୍ୟାୟନ କଲାବେଳେ ତାଙ୍କ ଚିନ୍ତନର କେତେକ ମୌଳିକ ଦିଗ ନଜରକୁ ଆସିଥାଏ । ଦର୍ଶନ ଇତିହାସରେ ସେ ପ୍ରଥମ ବ୍ୟକ୍ତି ଯେ ନାଉସ ବା ଆଦ୍ୟବୁଦ୍ଧି ପରି ଏକ ଅଭିନବ ପ୍ରତ୍ୟୟର ପରିକଳ୍ପନା କରିଥିଲେ । ସେହିପରି ଭୌତିକ ବସ୍ତୁ ଓ ଅଭୌତିକ ସତ୍ତା ମଧ୍ୟରେ ସେ ପାର୍ଥକ୍ୟ ଦର୍ଶାଇଥିଲେ । ତାଙ୍କର ଆବିର୍ଭାବ ପର୍ଯ୍ୟନ୍ତ ଗ୍ରୀକ୍ ଦର୍ଶନର ଧାରା ପ୍ରାକୃତିକ ବିଶ୍ୱର ମୂଳ ସତ୍ତା କେଉଁ ପ୍ରାକୃତିକ ତତ୍ତ୍ୱ ହୋଇପାରେ ତାହା ହିଁ ବିଚାରର ମୁଖ୍ୟ ପ୍ରସଙ୍ଗ ଥିଲା । ଆନାକ୍ସଗୋରାସ ପ୍ରକୃତି ସହିତ ଅନ୍ତର୍ପ୍ରକୃତି ଓ ମାନସିକ ସତ୍ତା ସଂପର୍କରେ ଚିନ୍ତା ବ୍ୟକ୍ତ କଲେ । ତାଙ୍କ ପରିକଳ୍ପିତ ଆଦ୍ୟବୁଦ୍ଧିର ବ୍ୟାଖ୍ୟାନ ମାନବୀୟ ଅନ୍ତର୍ପ୍ରକୃତି ସମ୍ବନ୍ଧରେ ବିଚାରର ଅୟମାରମ୍ଭ ଥିଲା । ଦର୍ଶନର ଇତିହାସରେ ମନ ସଂପର୍କିତ ବିଶ୍ଳେଷଣ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନେଲା । ସବୁ କ୍ଷେତ୍ରରେ ବୁଦ୍ଧିଦୀପ୍ତ ବ୍ୟାଖ୍ୟା, ଯୁକ୍ତିସଂଗତ ଆଧାର ଓ ତର୍କଶୀଳ ବ୍ୟାଖ୍ୟାନ ପ୍ରାଧାନ୍ୟ ପାଇଲା । ମାନବୀୟ ପ୍ରକୃତି, ବ୍ୟକ୍ତି ସ୍ୱଭାବ, ସାମାଜିକ କ୍ଷେତ୍ର, ବାହ୍ୟ ପ୍ରକୃତି, ରାଷ୍ଟ୍ର ଇତ୍ୟାଦି ବିଭିନ୍ନ କ୍ଷେତ୍ରକୁ ବିଚାରଶୀଳ ଭାବେ ଅନୁଶୀଳନ କରିବାର ମାନସିକତା ଆନାକ୍ସଗୋରାଙ୍କ ଠାରୁ ଆରମ୍ଭ ହେଲା । ଗ୍ରୀକ୍ ଦର୍ଶନର ବିକାଶର ଧାରାରେ ଆନାକ୍ସଗୋରାସ ଏକ ନୂତନ ଦିଗନ୍ତ ସୃଷ୍ଟି କଲେ । ବସ୍ତୁ ଓ ଚେତନ ଭିତରେ ସେ ଯେଉଁ ବିଚାରର ଅୟମାରମ୍ଭ କରିଥିଲେ ତାହା ଗ୍ରୀକ୍ ଦର୍ଶନର ଦ୍ୱିତୀୟ ଭାଗରେ ବହୁ ସମ୍ଭାବନାର ଦ୍ୱାର ଉନ୍ମୁକ୍ତ କଲା । ଗ୍ରୀକ୍-ଦର୍ଶନର ଦ୍ୱିତୀୟ ପର୍ଯ୍ୟାୟର ସେ ଥିଲେ ମୁଖ୍ୟ ସୂତ୍ରଧର ।

ଏତଦ୍‌ବ୍ୟତୀତ ଆନାକ୍ସଗୋରାଙ୍କ ଅନ୍ୟ ଏକ ମୌଳିକ ଦିଗନ୍ତ ହେଉଛି ଯେ ସେ ପ୍ରଥମେ ଦାର୍ଶନିକ ବିଚାର କ୍ଷେତ୍ରକୁ ପ୍ରୟୋଜନବାଦ ବା ଉଦ୍ଦେଶ୍ୟବାଦ (Teleology) ର ଭାବନା ଆଣିଛନ୍ତି । ଗ୍ରୀକ୍ ଦର୍ଶନଧାରାରେ ପ୍ରକୃତିର ମୌଳିକ ସତ୍ତା ପରମାଣୁବାଦର ଯେଉଁ ବିଚାର ଆସିଥିଲା ତାହା ବିଶ୍ୱର ବ୍ୟାଖ୍ୟାନ କ୍ଷେତ୍ରରେ ଯାନ୍ତ୍ରିକବାଦର ବିଚାର ସୃଷ୍ଟି କରିଥିଲା । ଯାନ୍ତ୍ରିକବାଦ ପ୍ରକୃତିର ବିଭିନ୍ନ କ୍ଷେତ୍ରକୁ କାରଣ-କାର୍ଯ୍ୟ ସିଦ୍ଧାନ୍ତ ଧାରାରେ ବ୍ୟକ୍ତ କରିବାର ପ୍ରୟାସ ଥିଲା । ପ୍ରକୃତିରେ ଏକ କାର୍ଯ୍ୟ କିପରି ସୃଷ୍ଟି ହୁଏ ତାହାର ବ୍ୟାଖ୍ୟାନ କାରଣ-କାର୍ଯ୍ୟ ଆଧାରରେ ବ୍ୟାଖ୍ୟା କରିବା ଏକ ଯାନ୍ତ୍ରିକ ପ୍ରକ୍ରିୟା ମନେହୁଏ । କିନ୍ତୁ ଯାନ୍ତ୍ରିକତା ସହ ପ୍ରୟୋଜନବାଦର ଭାବନା ଦର୍ଶନ ଧାରାରେ ଅନ୍ୟ ଏକ ଦିଗନ୍ତର ସୂତ୍ରପାତ କଲା । ଏକ ଘଟଣାର କାରଣ ଖୋଜିବା ଓ ତାହା ପଶ୍ଚାତର ଉଦ୍ଦେଶ୍ୟ ଅନୁସନ୍ଧାନ କରିବା କ୍ଷେତ୍ରରେ ଯାନ୍ତ୍ରିକବାଦ ଓ ପ୍ରୟୋଜନବାଦ ଉଭୟ ସିଦ୍ଧାନ୍ତର ଆବଶ୍ୟକତାର ବିଚାର ଆନାକ୍ସଗୋରାସଙ୍କ ଠାରୁ ଆରମ୍ଭ ହେଲା । ଏକ କାର୍ଯ୍ୟର ଆରମ୍ଭ ବିଷୟର ଅନୁସନ୍ଧାନ ସମୟରେ କାରଣ ଜାଣିବା ଆବଶ୍ୟକ ହୋଇପାରେ,

ତେବେ ଏହାର ଲକ୍ଷ୍ୟ ବା ପରିଣତିକୁ ସ୍ପଷ୍ଟ ଭାବରେ ପରିକଳ୍ପନା କରିବା ତାହାର ପ୍ରୟୋଜନ ବା ଉଦ୍ଦେଶ୍ୟ ବିଷୟରେ ଚିତ୍ର ପ୍ରଦାନ କରିଥାଏ । ବସ୍ତୁତଃ ଯାନ୍ତ୍ରିକବାଦ ଓ ଉଦ୍ଦେଶ୍ୟବାଦ ଉଭୟର ଭୂମିକା ଆମର ଚିନ୍ତନ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଆନାକ୍ସଗୋରାସ ପ୍ରୟୋଜନବାଦ ସଂପର୍କରେ ପ୍ରଥମେ ଏକ ଅସ୍ପଷ୍ଟ ଭାବନାର ଅବତାରଣା କରିଥିଲେ ଓ ପରବର୍ତ୍ତୀ ପର୍ଯ୍ୟାୟରେ ତାହା ବିଚାର-ବିମର୍ଶ କ୍ଷେତ୍ରରେ ଏକ ସିଦ୍ଧାନ୍ତ ଭାବେ ବିକଶିତ ହୋଇଥିଲା । ଏହି ପ୍ରୟୋଜନବାଦ ବିଶେଷକରି ପ୍ଲେଟୋ ଓ ଆରିଷ୍ଟୋଟଲଙ୍କ ଦାର୍ଶନିକ ଆଲୋଚନାରେ ଏକ ସିଦ୍ଧାନ୍ତ ଭାବେ ଦୃଢ଼ ଭିତ୍ତି ନେଇଥିଲା । ବସ୍ତୁ ଓ ଚେତନା ଏବଂ ଯାନ୍ତ୍ରିକବାଦ ଓ ପ୍ରୟୋଜନବାଦ ଭିତରେ ଆନାକ୍ସଗୋରାସ ପ୍ରଥମେ ଯେଉଁ ପାର୍ଥକ୍ୟ ବା ବିରୋଧାଭାସର ଚିତ୍ର ଦେଲେ ତାହା ତାଙ୍କର ଦର୍ଶନ କ୍ଷେତ୍ରକୁ ଏକ ବଡ ଅବଦାନ ବୋଲି ଗ୍ରୀକ୍ ଦର୍ଶନର ଇତିହାସ ଲେଖିଥିବା ଅଧିକାଂଶ ଲେଖକ ମତପୋଷଣ କରିଛନ୍ତି । ତେବେ ଏହି ପାର୍ଥକ୍ୟରୁ ତାଙ୍କ ଦାର୍ଶନିକ ବିଚାରର ମୌଳିକତା ଯେପରି ବ୍ୟକ୍ତ ହୋଇଛି ସେହିପରି ତାଙ୍କ ସିଦ୍ଧାନ୍ତର ଦୁର୍ବଳତା ମଧ୍ୟ ପ୍ରକାଶ ପାଇଛି । ତାଙ୍କ ଦାର୍ଶନିକ ସିଦ୍ଧାନ୍ତ ପୃଷ୍ଠଭୂମିରେ ସେ ଏକ ଦ୍ୱୈତବାଦୀ ତତ୍ତ୍ୱମୀମାଂସାର ସମର୍ଥକ ହୋଇଛନ୍ତି । ତତ୍ତ୍ୱମୀମାଂସା ପରିପ୍ରେକ୍ଷୀରେ ଏକତତ୍ତ୍ୱବାଦ, ଦ୍ୱୈତବାଦ, ବହୁତତ୍ତ୍ୱବାଦ ଇତ୍ୟାଦି ପରସ୍ପର ବିରୋଧୀ ସିଦ୍ଧାନ୍ତ । ଆନାକ୍ସଗୋରାସ ଦ୍ରବ୍ୟ ଓ ମନକୁ ଦୁଇ ପରମ ସତ୍ତା ଭାବେ ସ୍ୱୀକାର କରିଛନ୍ତି । ସେ ଆଦ୍ୟବୁଦ୍ଧି ଓ ବସ୍ତୁକୁ ଦୁଇ ସ୍ୱତନ୍ତ୍ର ତତ୍ତ୍ୱ ଭାବରେ ସ୍ୱୀକାର କରି ଉଭୟକୁ ସନାତନ ଓ ଚିରନ୍ତନ ବୋଲି ଭାବିଛନ୍ତି । ଯେଉଁମାନେ ବସ୍ତୁ-ଏକତତ୍ତ୍ୱବାଦ ବା ଏକତତ୍ତ୍ୱପରକ ବସ୍ତୁବାଦ (materialistic monism) ସିଦ୍ଧାନ୍ତ ଗ୍ରହଣ କରନ୍ତି ସେମାନେ ମନ ଓ ସକଳ ମାନସିକ କ୍ରିୟା ବସ୍ତୁରୁ ଉଦ୍ଭବ ବୋଲି ଗ୍ରହଣ କରିବେ । ଠିକ୍ ସେହିପରି ଯେଉଁମାନେ ଏକତତ୍ତ୍ୱପରକ ପ୍ରତ୍ୟୟବାଦ (monistic idealism) ସିଦ୍ଧାନ୍ତ ଗ୍ରହଣ କରନ୍ତି ସେମାନେ ମନ ଓ ସକଳ ବସ୍ତୁକୁ ମନ / ଚେତନା / ଆଦ୍ୟବୁଦ୍ଧିରୁ ଉଦ୍ଭବ ବୋଲି ବିଚାର ଦେବେ । ଆନାକ୍ସଗୋରାସ ଏକତତ୍ତ୍ୱବାଦ ସିଦ୍ଧାନ୍ତ ପରିବର୍ତ୍ତେ ଦ୍ୱିତତ୍ତ୍ୱବାଦ ସିଦ୍ଧାନ୍ତର ଅବତାରଣା କରିଛନ୍ତି । ମନ ଓ ଦ୍ରବ୍ୟକୁ ଦୁଇ ସ୍ୱତନ୍ତ୍ର ସତ୍ତାଭାବେ ଗ୍ରହଣ କରିବା ଫଳରେ ସେ ଦ୍ୱୈତବାଦର ପ୍ରବର୍ତ୍ତକ ହୋଇଛନ୍ତି ।

ଆନାକ୍ସଗୋରାସ ପ୍ରୟୋଜନବାଦ ସିଦ୍ଧାନ୍ତକୁ ଗ୍ରହଣ କରି ଏହାକୁ ଯାନ୍ତ୍ରିକବାଦଠାରୁ ପୃଥକ୍ କରିଥିଲେ ମଧ୍ୟ ତାଙ୍କ ବିଚାର ଏକ ଯାନ୍ତ୍ରିକବାଦ୍‌ରେ ପରିଣତ ହୋଇଯାଇଛି । ସେ ଆଦ୍ୟବୁଦ୍ଧିକୁ ପ୍ରଥମ କାରଣ ବା ଗତିଶୀଳତାର ଆଦି ପ୍ରବର୍ତ୍ତକ ଭାବେ ନେଇଛନ୍ତି । ଗତିଶୀଳତାର କାରଣକୁ ବ୍ୟାଖ୍ୟା କରିବାକୁ ସେ ଆଦ୍ୟବୁଦ୍ଧିର ପରିକଳ୍ପନା କରିଛନ୍ତି ଅର୍ଥାତ୍ ଆଦ୍ୟବୁଦ୍ଧି ବ୍ୟତୀତ ସେ ବସ୍ତୁଜଗତର କ୍ରିୟାଶୀଳତାକୁ ବ୍ୟାଖ୍ୟା କରିବାକୁ ସମର୍ଥ ହୋଇନାହାନ୍ତି । ଆଦ୍ୟବୁଦ୍ଧି କେବଳ ଗତି ସୃଷ୍ଟି କରିଛି, କିନ୍ତୁ ଏହି ଗତିର କ'ଣ ପ୍ରୟୋଜନ ରହିଛି କିମ୍ବା ଏହି ଗତି କେଉଁ ଲକ୍ଷ୍ୟ ଦିଗରେ କାର୍ଯ୍ୟ କରିଛି ତାହାର କୌଣସି ସୂଚନା ଦେଇନାହାନ୍ତି । ତେଣୁ କେତେକ ସମାଲୋଚକ ତାଙ୍କୁ ଯାନ୍ତ୍ରିକବାଦୀ ବୋଲି ଅଭିହିତ କରିଛନ୍ତି ଯେହେତୁ ସେ ବିଶ୍ୱ ପରିବର୍ତ୍ତନ / ବିବର୍ତ୍ତନ / ସର୍ଜନ ପ୍ରକ୍ରିୟାରେ ଆଦ୍ୟବୁଦ୍ଧିକୁ ଅନ୍ୟ କୌଣସି ଭୂମିକା ଦେଇନାହାନ୍ତି ।

ଗ୍ରୀକ୍ ଦର୍ଶନ ଇତିହାସରେ ଆନାକ୍ସଗୋରାସଙ୍କର ଅବଦାନ ବହୁ ଦୃଷ୍ଟିରୁ ଯୁଗାନ୍ତକାରୀ । ଗ୍ରୀକ୍ ଦର୍ଶନର ଦୁଇ ସନ୍ଧିକ୍ଷଣର ମଝିରେ ତାଙ୍କର ଆବିର୍ଭାବ ଅନ୍ୟ ଏକ ଦିଗନ୍ତ ପାଇଁ ବିଚାରର ଅୟମାରମ୍ଭ କରିଥିଲା । ଭୌତିକବାଦୀ ଦର୍ଶନରୁ ଏକ ଅଧ୍ୟାତ୍ମବାଦୀ ବିଚାରର ଭିତ୍ତି ସ୍ଥାପନ କରିବାରେ, ଯେତେ ସୀମିତ ଅର୍ଥରେ ହେଲେ ମଧ୍ୟ, ସେ ଥିଲେ ସଂଯୋଗକାରୀ । ଏହି ଦୃଷ୍ଟିରୁ ତାଙ୍କ ଦର୍ଶନ ଯେ ଅନେକ ମହତ୍ତ୍ୱ ରଖେ ଏହା ନିଃସନ୍ଦେହ ମନେହୁଏ ।

# ପଞ୍ଚମ ପରିଚ୍ଛେଦ

## ସକ୍ରେଟିସ୍‌ଙ୍କ ପୂର୍ବବର୍ତ୍ତୀ ଦାର୍ଶନିକ ଧାରା

### ୫.୧ ପରମାଣୁବାଦୀ ଦର୍ଶନ

ବିଶ୍ୱର ଉତ୍ପତ୍ତି ଓ ସ୍ଥିତି ସଂପର୍କରେ ଏଂପେଡୋକ୍ଲିସ୍ ଓ ଆନାକ୍‌ସଗୋରାସ ଏକ ପ୍ରାକୃତିକ ତଥା ସ୍ୱାଭାବିକ ବ୍ୟାଖ୍ୟା ଦେବାକୁ କିଛି ପ୍ରୟାସର ସୂତ୍ରପାତ କରିଥିଲେ । ପୂର୍ବ ପରିଚ୍ଛେଦରେ ଏହି ଦୁଇ ଦାର୍ଶନିକଙ୍କ ସମ୍ବନ୍ଧରେ ଆଲୋଚନା କରାଯାଇଛି । ତେବେ ସେମାନଙ୍କ ସିଦ୍ଧାନ୍ତ ଓ ପରିକଳ୍ପନାକୁ ଏକ ଯୁକ୍ତିସଂଗତ ଭିତ୍ତି ଦେବାକୁ ତଥା ସେମାନଙ୍କ ବିଚାର କ୍ଷେତ୍ରରେ ରହିଥିବା କେତେକ ଅସଂଗତିକୁ ଦୂର କରିବାକୁ ପ୍ରୟାସ ହୋଇଛି । ସେହି ପ୍ରୟାସ ମଧ୍ୟରୁ ପରମାଣୁବାଦ (atomism) ଏକ ଦାର୍ଶନିକ ସିଦ୍ଧାନ୍ତ ଭାବରେ ଉଦ୍‌ଭବ ହୋଇଛି । ବିଶ୍ୱର ଏକ ତାତ୍ତ୍ୱିକ ଓ ତାର୍କିକ ବିଶ୍ଳେଷଣ କ୍ଷେତ୍ରରେ ପରମାଣୁବାଦ ଅଧିକ ବାସ୍ତବ ମନେହୁଏ । ଗ୍ରୀକ୍ ଦର୍ଶନ ଇତିହାସରେ ଯେଉଁ ଦୁଇ ଜଣ ଦାର୍ଶନିକ ପରମାଣୁବାଦର ପ୍ରବର୍ତ୍ତକ ଭାବେ ସ୍ୱୀକୃତ ହୋଇଛନ୍ତି ସେମାନେ ହେଲେ ଲୁସିପସ ଓ ଡେମୋକ୍ରିଟସ । ଏହି ପରିଚ୍ଛେଦରେ ସେମାନଙ୍କ ଦାର୍ଶନିକ ବିଚାର ଓ ପରମାଣୁବାଦ ସଂପର୍କରେ ସେମାନଙ୍କର ସିଦ୍ଧାନ୍ତ ସଂପର୍କରେ ଆଲୋଚନା କରାଯିବ ।

**ଲୁସିପସ (Leucippus)**

ପରମାଣୁବାଦର ପ୍ରତିଷ୍ଠାତା ଭାବରେ ଗ୍ରୀକ୍ ଦର୍ଶନ ଇତିହାସରେ ଲୁସିପସଙ୍କୁ ଗୌରବର ଅଧିକାରୀ କରାଯାଏ । ତେବେ ଲୁସିପସ କେବେ, କେଉଁଠାରେ ଜନ୍ମ ହୋଇଥିଲେ ସେ ବିଷୟରେ କୌଣସି ତଥ୍ୟ ଜଣା ନାହିଁ । ଏପରିକି ଏପିକ୍ୟୁରସ ଲୁସିପସଙ୍କ ପରି କେହି ଦାର୍ଶନିକ ଥିବା ବିଷୟକୁ ଅସ୍ୱୀକାର କରିଥିବା ବିଷୟ ବହୁ ଖଣ୍ଡରେ ପାଶ୍ଚାତ୍ୟ ଦର୍ଶନର ଇତିହାସ ଲେଖିଥିବା ଏଫ୍ କୋପ୍ଲେଷ୍ଟୋନ ଉଲ୍ଲେଖ କରିଛନ୍ତି । (History of Philosophy, Vol.I, P.72) ତେବେ ଏହି ମତ ଯଥାର୍ଥ ନୁହେଁ, ବୋଲି କୋପ୍ଲେଷ୍ଟୋନ ଓ ଅନ୍ୟାନ୍ୟ ଦର୍ଶନ ଲେଖକମାନେ ସୂଚାଇଛନ୍ତି । ଏହାର କାରଣ ହେଉଛି ଏପିକ୍ୟୁରସ ନିଜ ଦାର୍ଶନିକ ଅବଦାନର ମୌଳିକତା ପ୍ରତିଷ୍ଠା କରିବାକୁ ଲୁସିପସଙ୍କର ଅସ୍ତିତ୍ୱକୁ ଅସ୍ୱୀକାର କରିଥିବା ମନେହୁଏ । ତେବେ ଆରିଷ୍ଟୋଟଲ ଓ ଥିଓଫ୍ରାଷ୍ଟସଙ୍କ ପରି ବିଦ୍ୱାନ ବ୍ୟକ୍ତିମାନେ ଲୁସିପସଙ୍କର ସ୍ଥିତିକୁ ସ୍ୱୀକାର କରିବା ସହ ପରମାଣୁବାଦୀ ଦର୍ଶନର ପ୍ରତିଷ୍ଠାତା ବୋଲି ତାଙ୍କୁ ଗ୍ରହଣ କରିଛନ୍ତି । ଏହି ଦୃଷ୍ଟିରୁ ଲୁସିପସଙ୍କର ଅସ୍ତିତ୍ୱକୁ ସ୍ୱୀକାର କରାଯାଉଛି । ତାଙ୍କର କୌଣସି କୃତିର ସନ୍ଧାନ ମିଳିନାହିଁ, ତେବେ ତାଙ୍କ ଭାବନା ବିଷୟରେ ଡେମୋକ୍ରିଟସଙ୍କ ଲେଖାରେ ବହୁ ସୂଚନା ରହିଛି । ଲୁସିପସଙ୍କ ବିଷୟରେ ଏତିକି ଜଣାଯାଏ ଯେ ସେ ଏଂପେଡୋକ୍ଲିସ୍ ଓ ଆନାକ୍‌ସଗୋରାସଙ୍କର ସମସାମୟିକ ଥିଲେ ଓ

ପାର୍ମେନିଡୀସଙ୍କର ଶିଷ୍ୟ ଥିଲେ । ଏହି ଦୃଷ୍ଟିରୁ ଲୁସିପସ ମାଇଲେଟସ, ଅବଡେରା କିମ୍ବା ଇଲିଆର ବ୍ୟକ୍ତି ହୋଇପାରନ୍ତି ବୋଲି ଅନୁମାନ କରାଯାଏ । ପରମାଣୁବାଦର ବିଶିଷ୍ଟ ପ୍ରବକ୍ତା ଭାବରେ ଲୁସିପସ ଓ ଡେମୋକ୍ରିଟସଙ୍କୁ ଗ୍ରହଣ କରାଯାଏ । ପରମାଣୁବାଦ ସମ୍ବନ୍ଧରେ ଯାହା କିଛି ଦାର୍ଶନିକ ତତ୍ତ୍ୱର ସିଦ୍ଧାନ୍ତ ଉପଲବ୍ଧ, କେଉଁ ବିଷୟ ଲୁସିପସଙ୍କର ଓ କେଉଁ ବିଷୟ ଡେମୋକ୍ରିଟସଙ୍କର ତାହା ପାର୍ଥକ୍ୟ କରିବା ସମ୍ଭବ ନୁହେଁ । ତେବେ ଲୁସିପସ ଡେମୋକ୍ରିଟସଙ୍କଠାରୁ ବୟସରେ ବଡ ଥିବା ଅନୁମାନ କରାଯାଏ । ଏହିଦୃଷ୍ଟିରୁ ପରମାଣୁବାଦ ସିଦ୍ଧାନ୍ତର ଅବଦାନ ପାଇଁ ଲୁସିପସ ଓ ଡେମୋକ୍ରିଟସଙ୍କର ନାମ ବିଚାରକୁ ଆସିଥାଏ, ଯଦିବା ଡେମୋକ୍ରିଟସଙ୍କ ବିଷୟରେ ବହୁ ତଥ୍ୟ ଉପଲବ୍ଧ ଥିବା ଇତିହାସରୁ ଜଣାଯାଏ ।

**ଡେମୋକ୍ରିଟସ (Democritus)**

ଡେମୋକ୍ରିଟସଙ୍କର ଜନ୍ମ ଖ୍ରୀ.ପୂ. ୪୬୦ ରେ ଥ୍ରେସ ଜନରାଜ୍ୟର ଆବ୍‌ଡେରାଠାରେ ହୋଇଥିବା ଜଣାଯାଏ । ସେ ଏକ ସଂଭ୍ରାଂତ ପରିବାରରେ ଜନ୍ମ ହୋଇଥିଲେ । ସେ ଜ୍ଞାନପିପାସୁ ଓ ଅନୁସନ୍ଧିତ୍ସୁ ବ୍ୟକ୍ତି ଥିଲେ । ନିଜର ବୌଦ୍ଧିକ ଅନୁସନ୍ଧିତ୍ସାକୁ ପୂରଣ କରିବା ପାଇଁ ବିଭିନ୍ନ ସ୍ଥାନ ଭ୍ରମଣ କରୁଥିଲେ । ସେ ଅତ୍ୟନ୍ତ ଚିନ୍ତାଶୀଳ ଓ ମୌଳିକ ଭାବନାର ବ୍ୟକ୍ତି ମଧ୍ୟ ଥିଲେ । ବହୁ ସ୍ଥାନକୁ ଯିବା, ବିଭିନ୍ନ ସ୍ଥାନର ଜ୍ଞାନୀ, ଗୁଣୀ ଲୋକଙ୍କ ସହ ଭାବନାର ଆଦାନ ପ୍ରଦାନ କରିବା, ବହୁ ପରିବେଶରୁ ଜୀବନ ପାଇଁ ନୂଆ ନୂଆ ଅନୁଭୂତି ସଂଗ୍ରହ କରିବା ତାଙ୍କ ଜୀବନର ଆଦର୍ଶ ଥିଲା । ଦର୍ଶନ, ଭୌତିକ ବିଜ୍ଞାନ, ମନୋବିଜ୍ଞାନ, ଗଣିତ, ବ୍ୟାକରଣ, ଚିତ୍ରକଳା ଇତ୍ୟାଦି ବହୁ କ୍ଷେତ୍ରରେ ତାଙ୍କର ରୁଚି ରହିଥିଲା ଓ ବହୁ ପ୍ରସଙ୍ଗ ଉପରେ ସେ ମୌଳିକ ବିଚାରମାନ ବ୍ୟକ୍ତ କରିଥିବା ଜଣାଯାଏ । ଗ୍ରୀସ୍‌ର ପ୍ରବୀଣ ଐତିହାସିକ ଡାଓଜିନିସଙ୍କ ମତରେ ଆରିଷ୍ଟୋଟଲଙ୍କ ପରି ବହୁ ପାଣ୍ଡିତ୍ୟର ଅଧିକାରୀ ଭାବରେ ଯଦି ଗ୍ରୀସ୍‌ର ଅନ୍ୟ କାହାର ନାମ ସ୍ୱୀକାର କରାଯିବ ସେ ହେଉଛନ୍ତି ଡେମୋକ୍ରିଟସ । ରୋମର ଗୌରବମୟ ଇତିହାସରେ ପ୍ଲେଟୋ, ଆରିଷ୍ଟୋଟଲ ଓ ଡେମାକ୍ରିଟସଙ୍କ ଅବଦାନ ସେ ସମୟରେ ଚର୍ଚ୍ଚାର ମୁଖ୍ୟ ଆଧାର ଥିଲା । କୁହାଯାଏ ଯେ ଟାଇବେରିୟସଙ୍କ ଶାସନ କାଳରେ ଥ୍ରେସିଲସ ନାମକ ଜଣେ ଐତିହାସିକ ବିଦ୍ୱାନ ଡେମୋକ୍ରିଟସଙ୍କର ସମସ୍ତ ରଚନାର ସୂଚୀ ପ୍ରସ୍ତୁତ କରିଥିଲେ । ତାଙ୍କର ବିଶିଷ୍ଟ କୃତି ଭାବେ ବିଶ୍ୱ-ବ୍ୟବସ୍ଥା-କ୍ରମ ଏକ ମୁଖ୍ୟ ଗ୍ରନ୍ଥ ଥିଲା । ତେବେ ପରିତାପର ବିଷୟ ତାଙ୍କର ଏସବୁ ଲେଖା ସଂଗୃହୀତ ହୋଇପାରି ନାହିଁ ଓ ସେ ସବୁ ପ୍ରାୟ ନଷ୍ଟ ହୋଇଯାଇଛି । ସେ ବହୁ ଦେଶକୁ ଭ୍ରମଣ କରିବାକୁ ଯାଇଛନ୍ତି । ଇଜିପ୍ଟ, ବେବିଲୋନିଆର ବହୁ ସ୍ଥାନ ଭ୍ରମଣ କରିଛନ୍ତି । ତେବେ ସେ କେବେ ମୃତ୍ୟୁବରଣ କଲେ ତାହା ଐତିହାସିକମାନେ ନିର୍ଦ୍ଦିଷ୍ଟ ଭାବେ ସ୍ଥିର କରିପାରି ନାହାନ୍ତି । ଅବଶ୍ୟ କେତେକ ତଥ୍ୟରୁ ଜଣାଯାଏ ସେ ନବେବର୍ଷ ଉପରେ ବଞ୍ଚିଥିଲେ ଓ କ୍ଷେସ୍ ଦର୍ଶାଇଛନ୍ତି ଯେ ସେ ନବେରୁ ଶହେ ବର୍ଷ ପର୍ଯ୍ୟନ୍ତ ବଞ୍ଚିଥିଲେ । ତାଙ୍କ ଦାର୍ଶନିକ ସିଦ୍ଧାନ୍ତ "ପରମାଣୁବାଦ ବା ଅଣୁବାଦ" ଲୁସିପସଙ୍କ ଭାବନାରୁ ଆସିଥିବା କେହି କେହି ମତ ଦେଇଥାନ୍ତି । ଲୁସିପସଙ୍କର ପରମାଣୁବାଦ ସିଦ୍ଧାନ୍ତକୁ ବ୍ୟାଖ୍ୟାକରି ସୁସଂହତ ଭାବେ ଓ ବିସ୍ତୃତ ଭାବରେ ଡେମୋକ୍ରିଟସ ଏହାକୁ ପ୍ରତିଷ୍ଠା କରିଥିବା କେତେକ ମତ ଦେଇଛନ୍ତି । ତେବେ ଲୁସିପସ କେଉଁ ଭାବନାର

ସୂତ୍ରପାତ କରିଥିଲେ ଓ ଡେମୋକ୍ରିଟସ ତାହା ଉପରେ କିପରି ବିଶ୍ଳେଷଣକରି ପରମାଣୁବାଦର ପ୍ରତିଷ୍ଠା କଲେ ସେ ବିଷୟରେ ପାର୍ଥକ୍ୟ କରାଯାଇ ପାରିବ ନାହିଁ । ସୁତରାଂ ସେ ଦୁଇଜଣ ଯେ ପରମାଣୁବାଦ ବା ଆଟମିଜମ୍‌ର ପ୍ରବକ୍ତା ଏହାକୁ ଐତିହାସିକମାନେ ଦର୍ଶାଇଛନ୍ତି । ବସ୍ତୁତଃ ଏ କ୍ଷେତ୍ରରେ ଡେମୋକ୍ରିଟସଙ୍କର ଅବଦାନ ଅଧିକ ସ୍ୱୀକୃତ ହୋଇଥିବା ମନେହୁଏ ।

ଏଂପେଡୋକ୍ଲିସ, ପାର୍ମେନିଡୀସ ଓ ହେରାକ୍ଲାଇଟସଙ୍କ ଦୁଇ ବିରୋଧୀ ସିଦ୍ଧାନ୍ତ ଭିତରେ ସମନ୍ୱୟ ଆଣିଥିବା ଦର୍ଶାଯାଇଛି । ଏଂପେଡୋକ୍ଲିସଙ୍କ ବିଚାରଧାରାରୁ ପରମାଣୁବାଦର ସିଦ୍ଧାନ୍ତ ବିବର୍ତ୍ତିତ ହୋଇ ଏକ ଦୃଢ଼ ସୈଦ୍ଧାନ୍ତିକ ଭିତ୍ତି ନେଇଥିବା ମନେହୁଏ । ପାର୍ମେନିଡୀସଙ୍କ ମତରେ ଯାହା ସତ୍ ବା ବିଙ୍ଗ୍ (Being) ତାହା ଅସତ୍ ବା ନନ୍-ବିଙ୍ଗ୍‌କୁ ରୂପାନ୍ତରିତ ହୋଇପାରିବ ନାହିଁ । ଯାହା ସତ୍ ତାହାର ପରିବର୍ତ୍ତନ ବା ବିନାଶ ସମ୍ଭବ ନୁହେଁ । ଅପର ପକ୍ଷରେ ହେରାକ୍ଲାଇଟସଙ୍କ ମତରେ ସବୁ କିଛି ପରିବର୍ତ୍ତନଶୀଳ ଓ ସଂସାରରେ ଏପରି କୌଣସି ସତ୍ତା ନାହିଁ ଯାହାର ପରିବର୍ତ୍ତନ ହେବ ନାହିଁ । ଜଣେ ଦାର୍ଶନିକ (ପାର୍ମେନିଡୀସ) ସତ୍‌କୁ ଚିରନ୍ତନ, ଶାଶ୍ୱତ ଓ ଅପରିବର୍ତ୍ତନୀୟ ବୋଲି ଗ୍ରହଣ କରୁଥିବା ବେଳେ ଆଉ ଜଣେ ଦାର୍ଶନିକ (ହେରାକ୍ଲାଇଟସ) ସଂସାରରେ କୌଣସି କିଛି ଚିରନ୍ତନ ନୁହେଁ ଓ ସବୁ କିଛି ପରିବର୍ତ୍ତନଶୀଳ ବୋଲି ମତ ରଖିଛନ୍ତି । ଏହି ଦୁଇ ବିରୋଧୀ ମତ ମଧ୍ୟରେ ଏଂପେଡୋକ୍ଲିସ ଏକ ସମନ୍ୱୟ ଆଣିବାକୁ ପ୍ରୟାସ କରିଛନ୍ତି । ଏଂପେଡୋକ୍ଲିସଙ୍କ ମତରେ ସଂସାରରେ ସବୁ କିଛି ବସ୍ତୁ ପରିବର୍ତ୍ତନଶୀଳ ହେଲେ ମଧ ସେମାନେ ଯେଉଁ କଣିକାରୁ ଉଦ୍‌ଭବ ହୋଇଛନ୍ତି ସେ ସେସବୁର ପରମାଣୁ ଅବିନାଶୀ । ଏଂପେଡୋକ୍ଲିସ ଚାରୋଟି ମୌଳିକ ବସ୍ତୁ ଯଥା ଅଗ୍ନି, ବାୟୁ, ଜଳ ଓ ଭୂମିକୁ ମୂଳସତ୍ତା ଭାବରେ ଗ୍ରହଣ କରିଛନ୍ତି । ଏହି ବସ୍ତୁମାନଙ୍କର ପରମାଣୁମାନ ମୌଳିକ ଯେଉଁଥିରୁ ସଂସାରରେ ସବୁ କିଛି ଉଦ୍‌ଭବ ହୋଇଛି । ଏହି ଚାରୋଟି ମୌଳିକ ବସ୍ତୁ ନିତ୍ୟ, ଅବିଭାଜ୍ୟ ଓ ଅବିନାଶୀ ବୋଲି ଏଂପେଡୋକ୍ଲିସ ଭାବିଛନ୍ତି, ଏହାର ତାତ୍ପର୍ଯ୍ୟ ହେବ ସତ୍ କେବେହେଲେ ଅସତ୍‌କୁ ରୂପାନ୍ତରିତ ହୋଇପାରିବ ନାହିଁ ବା ଅସତ୍‌ରୁ ସତ୍ ସମ୍ଭବ ହେବ ନାହିଁ । ଏଂପେଡୋକ୍ଲିସଙ୍କର ଏହି ମତରେ କେତେକ ଅସଙ୍ଗତି ରହିଥିବା ଓ ଏହି ସିଦ୍ଧାନ୍ତ ସନ୍ତୋଷଜନକ ନୁହେଁ ବୋଲି ଡୋମୋକ୍ରିଟସ ଦର୍ଶାଇଛନ୍ତି । ଯଦି ଏହା ସ୍ୱୀକାର କରିବାକୁ ହୁଏ ଯେ ପ୍ରତ୍ୟେକ ବସ୍ତୁ ବିଭିନ୍ନ ଉପାଦାନରେ ଗଠିତ, ଓ ସକଳ ସଂଭୂତି (Becoming) ମୂଳ କଣିକା ମାନଙ୍କର ମିଶ୍ରଣ ଓ ଅମିଶ୍ରଣର ପରିଣାମ, ତେବେ ଏଥିପାଇଁ କଣିକାମାନଙ୍କ ବିଷୟରେ ଏକ ସିଦ୍ଧାନ୍ତ ଗ୍ରହଣ କରିବାକୁ ହେବ । ଯଦି ଏଂପେଡୋକ୍ଲିସ ଚାରି ପ୍ରକାର ଭୌତିକ ବସ୍ତୁର କଣିକା ମାନଙ୍କୁ ଅବିଭାଜ୍ୟ ଓ ଅବିନାଶୀ ବୋଲି ସ୍ୱୀକାର କରିବେ ତେବେ ସେହି କଣିକାମାନଙ୍କର ପ୍ରକୃତ ସ୍ୱରୂପ ଓ ସଂଜ୍ଞା କ'ଣ ହେବ? କଣିକାମାନ କିପରି ସଂଯୋଜିତ ହୋଇ ବସ୍ତୁ ସୃଷ୍ଟି କରନ୍ତି? ବସ୍ତୁର ବିଘଟନଦ୍ୱାରା କଣିକାମାନ କିପରି ପୂର୍ବ ମୂଳ ସତ୍ତାରେ ରୂପାନ୍ତରିତ ହୁଅନ୍ତି? ବସ୍ତୁର ମୂଳ କଣିକାମାନ ପ୍ରେମ ଓ ଘୃଣାଦ୍ୱାରା ସଂଯୋଜିତ ଓ ବିଘଟିତ ହୁଅନ୍ତି ବୋଲି ସେ ଯାହା ଦର୍ଶାଇଛନ୍ତି ତାହା ଅବାସ୍ତବ ଓ ଅତ୍ୟନ୍ତ କାଳ୍ପନିକ ପ୍ରତୀତ ହୁଏ । ପ୍ରେମ ଓ ଘୃଣା କିପରି କଣିକାମାନଙ୍କୁ କ୍ରିୟାଶୀଳ କରାଇ ଥାଏ ତାହାର କିଛି ବ୍ୟାଖ୍ୟା ସେ ପ୍ରଦାନ କରିନାହାନ୍ତି । ଯଦି ବି କଣିକାମାନଙ୍କର

ସ୍ଥିତି ଓ ସଂଯୋଜନ ଉପରେ ସେମାନଙ୍କର ଗୁଣ ନିର୍ଭର କରେ ବୋଲି ଏଂପେଡୋକ୍ଲିସ ପରିକଳ୍ପନା କରିଛନ୍ତି ଏହାକୁ ସୁସଂହତ ଭାବରେ ବିକଶିତ କରିନାହାନ୍ତି । ପୁନଶ୍ଚ ଏଂପେଡୋକ୍ଲିସ କେବଳ ଚାରିପ୍ରକାରର ମୌଳିକ ବସ୍ତୁର ପରିକଳ୍ପନା କରିଛନ୍ତି ଓ ପ୍ରତ୍ୟେକ ବସ୍ତୁର ଗୁଣ ଅନ୍ୟଠାରୁ ଭିନ୍ନ ବୋଲି ଦର୍ଶାଇଛନ୍ତି । ଏହି ବିବିଧ ବିଶ୍ୱରେ ରହିଥିବା ଅସଂଖ୍ୟ ବସ୍ତୁ ଏହି ଚାରି ମୂଳ ତତ୍ତ୍ୱର ମିଶ୍ରଣର ପରିଣାମ ବୋଲି ସେ ଭାବିଛନ୍ତି ଓ ଏହି ମିଶ୍ରଣ ପ୍ରକ୍ରିୟାରେ ବିଭିନ୍ନ ଗୁଣ ଉଦ୍‌ଭବ ହୋଇଥିବା ପରିକଳ୍ପନା କରିଛନ୍ତି । ଯେଉଁ ଚାରିଟି ମୂଳ ବସ୍ତୁକୁ ସେ ଗ୍ରହଣ କରିଛନ୍ତି ଓ ପ୍ରତ୍ୟେକର ମୌଳିକ ଲକ୍ଷଣର ସୂଚନା ଦେଇଛନ୍ତି ଏହି ବ୍ୟାଖ୍ୟାନକୁ ସେ ଏକ ଯାନ୍ତ୍ରିକ ଧାରାରେ କରିଛନ୍ତି । ଏହି ଜଗତରେ ରହିଥିବା ବସ୍ତୁରାଜୀ, ବିବିଧତା ଓ ଅସଂଖ୍ୟ ଗୁଣକୁ ଆମେ କିପରି ଏକ ଯାନ୍ତ୍ରିକ ଧାରାରେ ବ୍ୟାଖ୍ୟା କରିପାରିବା ? ଏଂପେଡୋକ୍ଲିସ ବସ୍ତୁମାନଙ୍କର କ୍ରିୟାଶୀଳତାକୁ ବ୍ୟାଖ୍ୟା କରିବାକୁ ପ୍ରେମ ଓ ଘୃଣାର ପରିକଳ୍ପନା କରିଥିବା ବେଳେ ଆନାକ୍ସଗୋରାସ ବସ୍ତୁମାନଙ୍କର କ୍ରିୟାଶୀଳତା ପାଇଁ ଆଦ୍ୟବୁଦ୍ଧିର ଅବତାରଣା କରିଛନ୍ତି । ଏଂପିଡୋକ୍ଲିସ ଚାରେଟି ମୌଳିକ ତତ୍ତ୍ୱର ପରିକଳ୍ପନା କରିଥିବା ବେଳେ ଆନାକ୍‌ସଗୋରାସ ବହୁ ତତ୍ତ୍ୱକୁ ସ୍ୱୀକାର କରିଛନ୍ତି । ଏହି ପୃଷ୍ଠଭୂମିରେ ଏଂପେଡୋକ୍ଲିସ ଓ ଆନାକ୍ସଗୋରାସ ଯେଉଁ ଦାର୍ଶନିକ ମୀମାଂସାର ଅବତାରଣା କରିଥିଲେ ତାହା ପରମାଣୁବାଦୀ ଦାର୍ଶନିକ ତତ୍ତ୍ୱର ବିକାଶ ପାଇଁ ଭିତ୍ତିଭୂମି ଯୋଗାଇଥିଲା । ବିଶ୍ୱର ବ୍ୟାଖ୍ୟାନ କ୍ଷେତ୍ରରେ ଯେଉଁ ଭୌତିକବାଦୀ ଦର୍ଶନର ସୂତ୍ରପାତ ଏଂପେଡୋକ୍ଲିସ ଓ ଆନାକ୍ସଗୋରାସଙ୍କ ବିଚାର ମଧ୍ୟ ଦେଇ ଆରମ୍ଭ ହୋଇଥିଲା ତାହାର ଏକ ତାର୍କିକ ପରିଣତି ପରମାଣୁବାଦୀ ଦର୍ଶନ ମଧ୍ୟ ଦେଇ ତର୍କସଂଗତ ଭାବେ ବିକଶିତ ହେଲା ।

ଏଂପେଡୋକ୍ଲିସ ଓ ଆନାକ୍ସଗୋରାସଙ୍କ ପରି ଲୁସିପସ୍ ଓ ଡେମୋକ୍ରିଟସ ସତ୍ ଯେ ଅନେକ ଏହା ସ୍ୱୀକାର କରୁଥିଲେ । ଏହା ସହ ଏହା ମଧ୍ୟ ସ୍ୱୀକାର କରୁଥିଲେ ଯେ ଯାହା ସତ୍ ବା ପରମ ସତ୍ତା ତାହା ଅବିନାଶୀ, ଅବିଭକ୍ତ, ଅପରିବର୍ତ୍ତନୀୟ ଓ ଅସୃଷ୍ଟ । ଯେକୌଣସି ଦ୍ରବ୍ୟକୁ ବିଭାଜିତ କରିଚାଲିଲେ ଏପରି ଏକ ସ୍ଥିତି ଆସେ ଯେତେବେଳେ ଏହାର ଆଉ ବିଭାଜନ ସମ୍ଭବ ହୁଏ ନାହିଁ । ତେଣୁ ଏହି ଅବିଭାଜିତ ସତ୍ତାକୁ ପରମାଣୁ ବା ଆଟମ୍ ବୋଲି କୁହାଯାଏ । ଏକ ପରମାଣୁ କେବଳ ସେହି ସତ୍ତାକୁ ହିଁ ଦର୍ଶାଏ । ପରମାଣୁମାନଙ୍କ ମଧ୍ୟରେ କୌଣସି ଗୁଣଗତ ପାର୍ଥକ୍ୟ ଦେଖାଯାଏ ନାହିଁ । ପରମାଣୁ ମାନଙ୍କର ସଂଖ୍ୟା ଅସୀମ ଓ ଅସଂଖ୍ୟ । ଏକ ପରମାଣୁ କ୍ଷୁଦ୍ରାଦପି କ୍ଷୁଦ୍ର ହୋଇଥିବାରୁ ଏହା ଆମର ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ ନୁହେଁ । ଏଂପେଡୋକ୍ଲିସ ମାତ୍ର ଚାରି ପ୍ରକାରର ପରମାଣୁର ପରିକଳ୍ପନା କରିଥିଲେ । କିନ୍ତୁ ପରମାଣୁବାଦୀମାନେ ସମସ୍ତ ପରମାଣୁକୁ ଏକ ପ୍ରକାର ବୋଲି ଭାବିଛନ୍ତି । ପରମାଣୁମାନଙ୍କ ମଧ୍ୟରେ କୌଣସି ଗୁଣଗତ ବିଭେଦ ନାହିଁ, ସେମାନଙ୍କ ମଧ୍ୟରେ ଯାହା ପରିମାଣଗତ ପ୍ରଭେଦ ରହିଛି । ପରମାଣୁମାନଙ୍କର ସଂଖ୍ୟା ଅସୀମ (infinite) ହେଲେ ମଧ୍ୟ ସମସ୍ତ ପରମାଣୁ ସ୍ୱରୂପରେ ସମାନ । ସେମାନଙ୍କ ଭିତରେ ଗୁଣର ଭିନ୍ନତା ବା ପାର୍ଥକ୍ୟ ନାହିଁ; ପରମାଣୁ ମଧ୍ୟ ଗୁଣରହିତ । ପରମାଣୁମାନଙ୍କ ମଧ୍ୟରେ ଯେଉଁ ଭିନ୍ନତା ରହିଛି ତାହା କେବଳ ପରିମାଣଜନିତ ଭିନ୍ନତା । କେତେକଙ୍କର ଆକାର କ୍ଷୁଦ୍ର ବା ବଡ଼ । ତେଣୁ ସେମାନଙ୍କ ମଧ୍ୟରେ ଆକାରଗତ ଭିନ୍ନତା ବିଦ୍ୟମାନ । ତେବେ ପରମାଣୁ ସକଳ ବସ୍ତୁମାନଙ୍କର ଅନ୍ତିମ କଣିକା, ଓ ସେମାନେ

ଗୁଣରହିତ ହେଲେ ମଧ୍ୟ ସେମାନଙ୍କ ସମଷ୍ଟିରେ ଯେଉଁ ବସ୍ତୁମାନ ସୃଷ୍ଟି ହୁଏ ସେମାନେ ଗୁଣ ବିଶିଷ୍ଟ । ପରମାଣୁ ମାନଙ୍କର ସଂଯୋଜନ ଓ ସ୍ଥିତିରୁ ବସ୍ତୁମାନଙ୍କ ଭିତରେ ଗୁଣ ସୃଷ୍ଟି ହୋଇଥାଏ ଓ ଦୁଇଟି ବସ୍ତୁ ଭିତରେ ଗୁଣର ପାର୍ଥକ୍ୟ ରହିଥାଏ ।

ପରମାଣୁବାଦୀଙ୍କ ମତରେ ପରମାଣୁମାନଙ୍କରେ ସାଧାରଣ ଅର୍ଥରେ ଗୁଣଗତ ପାର୍ଥକ୍ୟ ନାହିଁ । ଆମେ ବସ୍ତୁ ଜଗତକୁ ଆମର ଇନ୍ଦ୍ରିୟ ଆଧାରରେ ଜାଣିଥାଏ । ଇନ୍ଦ୍ରିୟ ସାହାଯ୍ୟରେ ଆମେ ବସ୍ତୁମାନଙ୍କୁ ରଂଗ, ସ୍ୱାଦ, ଗନ୍ଧ, ତାପ ଇତ୍ୟାଦି ମାଧ୍ୟମରେ ଅବବୋଧ କରିଥାଏ । ସକଳ ବସ୍ତୁର ଅନ୍ତିମ ଅବିଭାଜ୍ୟ ଅଂଶ ହେଉଛି ପରମାଣୁ ଓ ପରମାଣୁବାଦୀଙ୍କ ମତରେ ସମସ୍ତ ପରମାଣୁ ସମାନ, ସେମାନଙ୍କ ମଧ୍ୟରେ ଗୁଣଗତ ପାର୍ଥକ୍ୟ ନାହିଁ । ତେବେ ପରମାଣୁମାନଙ୍କର ସମଷ୍ଟିରେ ବସ୍ତୁ ହେଲା ପରେ ସେମାନଙ୍କ ଭିତରେ ଗୁଣଗତ ପାର୍ଥକ୍ୟ ଆସିଥାଏ । ପରମାଣୁ ମାନଙ୍କର ଆକାର, ବିନ୍ୟାସ, ସ୍ଥିତି ଓ ସଂଯୋଜନ ଜନିତ କାରଣରୁ ବସ୍ତୁମାନଙ୍କର ଗୁଣ ଭିନ୍ନ ଭିନ୍ନ ହୋଇଥାଏ । ପରମାଣୁମାନେ ଗୁଣରହିତ ହେଲେ ମଧ୍ୟ କେତେକ ବ୍ୟତିକ୍ରମର ଧାରଣା ଦେଖିବାକୁ ମିଳିଥାଏ । ତେବେ ପରମାଣୁମାନଙ୍କ ମଧ୍ୟରେ ଘନତ୍ୱ (solidity) ଏବଂ ଅଭେଦ୍ୟତା (impenetrability) ରହିବା ଦେଖାଯାଏ । ପରମାଣୁମାନେ ଅବିଭାଜ୍ୟ ହେଲେ ମଧ୍ୟ ସେମାନଙ୍କ ମଧ୍ୟରେ ଘନତ୍ୱ ଓ ଅଭେଦ୍ୟତାକୁ ପରମାଣୁବାଦୀ ମାନେ ସ୍ୱୀକାର କରିଛନ୍ତି । ପରମାଣୁମାନଙ୍କ ମଧ୍ୟରେ ଘନତ୍ୱ ଓ ଅଭେଦ୍ୟତା ରହିଥିବା କାରଣରୁ ସେମାନଙ୍କର ଆକାର ଓ ପ୍ରକୃତି ପରସ୍ପରଠାରୁ ପୃଥକ୍ ଅଟେ । ତେବେ ପରମାଣୁ ଭିତରେ କୌଣସି ଶୂନ୍ୟତା (void) ନଥିବା ବିଷୟ ଲୁସିପସ ଓ ଡେମୋକ୍ରିଟସ ସ୍ୱୀକାର କରିଛନ୍ତି । ପରମାଣୁମାନେ ଅଦୃଶ୍ୟ ହେଲେ ମଧ୍ୟ ସେମାନେ ଆକାର ବିଶିଷ୍ଟ ଓ ଘନତ୍ୱବିଶିଷ୍ଟ । ତେବେ ପରମାଣୁମାନଙ୍କର ଓଜନ ରହିଛି କି ନାହିଁ ଏହା ବିବାଦୀୟ ମନେହୁଏ । ଏପିକିଉରସ ପରମାଣୁବାଦକୁ ସମର୍ଥନ କରି ଡେମୋକ୍ରିଟସଙ୍କ ବିଚାରରେ କେତେକ ନୂତନ ଭାବନା ସଂଯୁକ୍ତ କରିଛନ୍ତି । ଏପିକିଉରସବାଦୀମାନେ ପରମାଣୁ ମାନଙ୍କର ଓଜନ ଥିବା କଥାକୁ ଗ୍ରହଣ କରିଛନ୍ତି । ଏହି ଭାବନା ଲୁସିପସ ଓ ଡେମୋକ୍ରିଟସଙ୍କ ଭାବଧାରାରେ ରହିଥିଲା ନା ଏପିକିଉରସ ଏହି ଭାବନା ଆଣିଛନ୍ତି ତାହା ବିବାଦୀୟ ମନେହୁଏ । ସମ୍ଭବତଃ ଏପିକିଉରସ ପରମାଣୁବାଦକୁ ଗ୍ରହଣ କରି ସେଥିରେ କେତେକ ପରିବର୍ତ୍ତନ ଆଣିଛନ୍ତି । ଲୁସିପସ ଓ ଡେମୋକ୍ରିଟସ ପରମାଣୁ ମାନଙ୍କୁ ଓଜନ ରହିତ କରିଛନ୍ତି । ପରମାଣୁ ମାନଙ୍କର ଆକାର, ବିନ୍ୟାସ ଓ ଗତିଶୀଳତା କାରଣରୁ ବସ୍ତୁମାନ ଯେପରି ବିଭିନ୍ନ ଧର୍ମ (property) ଧାରଣ କରୁଛନ୍ତି ସେହିପରି ବସ୍ତୁମାନେ ମଧ୍ୟ ଓଜନଯୁକ୍ତ ହେଉଛନ୍ତି ବୋଲି ଡେମୋକ୍ରିଟସ ବ୍ୟାଖ୍ୟା କରିପାରିବେ । ପରମାଣୁମାନେ କ୍ଷୁଦ୍ର, ଗୁଣରହିତ, ଅବିଭାଜ୍ୟ ଓ ଅଭେଦ୍ୟ ହେଲେ ମଧ୍ୟ ସେମାନେ ନିଜର ବିନ୍ୟାସ, ସଂଯୋଜନ ଓ ଗତିଶୀଳତା କାରଣରୁ ବସ୍ତୁମାନଙ୍କୁ ଧର୍ମଯୁକ୍ତ କରୁଛନ୍ତି ।

ପରମାଣୁ ସକଳ ଗୁଣରହିତ ହେଲେ ମଧ୍ୟ, ପରମାଣୁମାନ ଭିନ୍ନ ଭିନ୍ନ ଆକାରର ଅଟନ୍ତି । ଦୁଇଟି ପରମାଣୁ ସମାନ ଆକାର ବିଶିଷ୍ଟ ନୁହନ୍ତି, ତେବେ ଦୁଇଟି ପରମାଣୁ ଭିତରେ କ'ଣ ଆକାରିକ ପ୍ରଭେଦ ରହିଛି ତାହା କହିବା

ସମ୍ଭବ ନୁହେଁ । କାରଣ ପରମାଣୁମାନ ଇନ୍ଦ୍ରିହଗ୍ରାହ୍ୟ ବସ୍ତୁ ନୁହନ୍ତି । ପରମାଣୁମାନ ବସ୍ତୁର ଅବିଭାଜିତ କ୍ଷୁଦ୍ରତମ ଅଂଶ ଓ ଇନ୍ଦ୍ରିୟଦ୍ୱାରା ପ୍ରତ୍ୟକ୍ଷ ନ ହେଲେ ମଧ୍ୟ ସେମାନେ ନିଜସ୍ୱ ସ୍ୱରୂପରେ ଆକାରଯୁକ୍ତ । ସେମାନେ ଭିନ୍ନ ଭିନ୍ନ ଆକାରଯୁକ୍ତ ଓ ସେମାନଙ୍କର ସ୍ୱରୂପ ଓ ପ୍ରକୃତି ମଧ୍ୟ ପରସ୍ପରଠାରୁ ପୃଥକ୍ । ସେହି ଦୃଷ୍ଟିରୁ ପ୍ରତ୍ୟେକ ପରମାଣୁର ଅସ୍ତିତ୍ୱ ସ୍ୱତନ୍ତ୍ର । ଗୋଟିଏ ପରମାଣୁ ଅନ୍ୟ ପରମାଣୁରୁ ଉତ୍ପନ୍ନ ହୁଏ ନାହିଁ କିମ୍ବା କୌଣସି ପରମାଣୁର ସ୍ୱଭାବରେ କିଛି ପରିବର୍ତ୍ତନ ବି ହୁଏ ନାହିଁ । ତେବେ ପରମାଣୁମାନେ ସ୍ୱସ୍ଥିତ, ଆକାରଯୁକ୍ତ, ଗତିଶୀଳ ଓ ଗୁଣରହିତ ।

ପରମାଣୁମାନଙ୍କ ଭିତରେ କୌଣସି ଗୁଣଗତ ଭିନ୍ନତା ନାହିଁ । ତେବେ ପ୍ରଶ୍ନ ହେବ ଯେହେତୁ ବସ୍ତୁମାନ ପରମାଣୁମାନଙ୍କ ସମଷ୍ଟିର ପରିଣାମ ମାତ୍ର, ବସ୍ତୁମାନଙ୍କ ଭିତରେ ଭିନ୍ନତା କିପରି ସୃଷ୍ଟି ହେଉଛି ? ଏହି ପ୍ରସଙ୍ଗ ଉପରେ ପୂର୍ବରୁ ସୂଚନା ଦିଆଯାଇଛି ଯେ ପରମାଣୁ ମାନଙ୍କର ଆକାର, ଗତିଶୀଳତା ଓ ସଂଯୋଜନ ଯୋଗୁ ବସ୍ତୁମାନ ପରସ୍ପରଠାରୁ ଭିନ୍ନ ହୋଇଥାନ୍ତି । ପୁନଶ୍ଚ ଆଜି ଯେଉଁ ବସ୍ତୁ ସୁନ୍ଦର ଓ ସୁଗନ୍ଧିତ ଜଣାଯାଉଛି ଏହା ପରବର୍ତ୍ତୀ ସମୟରେ କିପରି କୁତ୍ସିତ ବା ଦୁର୍ଗନ୍ଧଯୁକ୍ତ ହେଉଛି ? ଡେମୋକ୍ରିଟସ ଏହାର ବ୍ୟାଖ୍ୟା କ୍ଷେତ୍ରରେ କହିଛନ୍ତି ଯେ ପରମାଣୁ ମାନଙ୍କର ସ୍ଥାନ ପରିବର୍ତ୍ତନ, ଗତିଶୀଳତା ପରି କାରଣରୁ ଏହି ପରବର୍ତ୍ତନ ବସ୍ତୁମାନଙ୍କ ମଧ୍ୟରେ ଉଦ୍‌ଭବ ହେଉଛି । ପରମାଣୁମାନଙ୍କ ମଧ୍ୟରେ ଯେଉଁ ସ୍ଥାନିକ (spatial) ପରିବର୍ତ୍ତନ ହେଉଛି, ତାହାର ପରିଣାମରୁ ଏପରି ସ୍ଥିତି ଉଦ୍‌ଭବ ହେଉଛି । ପରମାଣୁମାନଙ୍କର ମାତ୍ରାଗତ ବିଭେଦତା, ସ୍ଥାନିକ ପରିବର୍ତ୍ତନ, ଗତିଶୀଳତା ଜନିତ କାରଣରୁ ଏହି ବାହ୍ୟ ପରିବର୍ତ୍ତନ ହେଉଥିବାର କାରଣ ଦିଆଯାଉଛି ।

ପରମାଣୁମାନେ ଆକାରଯୁକ୍ତ, ଗତିଶୀଳ ଓ ପରସ୍ପରଠାରୁ ପୃଥକ୍ । ତେବେ ପ୍ରତ୍ୟେକ ପରମାଣୁ ଅନ୍ୟ ପରମାଣୁଠାରୁ ସ୍ୱରୂପରେ ପୃଥକ୍ । ସେମାନେ କିପରି ପୃଥକ୍ ? ଏହି ଭାବନାକୁ ବୁଝାଇବାକୁ ପରମାଣୁବାଦୀମାନେ ଶୂନ୍ୟ-ଆକାଶ (empty space) ନାମକ ଏକ ପ୍ରତ୍ୟୟର ଅବତାରଣା କରିଛନ୍ତି । ସକଳ ପରିବର୍ତ୍ତନ, ସଂଭୂତି (becoming) ପରମାଣୁ ମାନଙ୍କର ସଂଯୋଗ ଓ ମିଶ୍ରଣର ପରିଣାମ । ପରମାଣୁମାନଙ୍କର ମିଶ୍ରଣ ଓ ଅମିଶ୍ରଣ ପାଇଁ ସେମାନେ ଗତିଶୀଳ ହେବା ଆବଶ୍ୟକ । ଏହି ଗତିଶୀଳତା ଓ ମିଶ୍ରଣ ପାଇଁ ଶୂନ୍ୟ ଆକାଶର ସ୍ଥିତିକୁ ସ୍ୱୀକାର କରିବାକୁ ହେବ । ଶୂନ୍ୟ ସ୍ଥାନ ବା ଆକାଶ ଅଭାବରେ କିଛିର ଗତିଶୀଳତାକୁ ବ୍ୟାଖ୍ୟା କରିବା ସମ୍ଭବ ନୁହେଁ । କିଛି ଗତିଶୀଳ ହେବା ପାଇଁ ଶୂନ୍ୟ ସ୍ଥାନ ରହିବା ଅବଶ୍ୟମ୍ଭାବୀ ମନେହୁଏ । ଏହି ପରିପ୍ରେକ୍ଷୀରେ ପରମାଣୁମାନ ପରସ୍ପରଠାରୁ ପୃଥକ୍ ରହିବା, ଗତିଶୀଳ ହେବା, ସଂଯୋଜିତ ବା ମିଶ୍ରିତ ହେବା ପାଇଁ ଆବଶ୍ୟକ ଶୂନ୍ୟ ସ୍ଥାନ ବା ଶୂନ୍ୟ ଆକାଶ (empty space) । ଏହି ପରିପ୍ରେକ୍ଷୀରେ ପରମାଣୁବାଦୀମାନେ ଦୁଇଟି ପରମ ତତ୍ତ୍ୱ ବା ପରମ ସତ୍ତା (Absolute reality) କୁ ସ୍ୱୀକାର କରୁଛନ୍ତି । ପରମାଣୁମାନ ଏକ ପରମ ତତ୍ତ୍ୱ ଓ ଶୂନ୍ୟ ଆକାଶ ବି ଏକ ପରମ ତତ୍ତ୍ୱ ।

ଏହି ପୃଷ୍ଠଭୂମିରେ ଇଲୀୟ ଦର୍ଶନ ସହିତ ପରମାଣୁବାଦୀ ଦର୍ଶନ ଭିତରେ କିଛି ମୌଳିକ ପାର୍ଥକ୍ୟ ଦୃଷ୍ଟିଗୋଚର ହୋଇଥାଏ । ଇଲୀୟମାନେ ସତ୍(Being) ଓ ସଂଭୂତି (Becoming) ଭିତରେ ପାର୍ଥକ୍ୟ ଦର୍ଶାଇଛନ୍ତି । ଇଲୀୟମାନେ

ସତ୍‌ର ସତ୍ତାକୁ ସ୍ୱୀକାର କରନ୍ତି ଓ ସଂଭୂତିକୁ ଅସତ୍ (not-being) ବୋଲି ଗ୍ରହଣ କରିଛନ୍ତି । ଯାହା ସତ୍ ତାହା ବାସ୍ତବ, ଯାହା ଅସତ୍ ତାହା ଅବାସ୍ତବ ବୋଲି ଇଲୀୟ ଦାର୍ଶନିକମାନେ ମତ ରଖିଛନ୍ତି । କିନ୍ତୁ ଡେମୋକ୍ରିଟସ ସତ୍ ଓ ଅସତ୍ ଉଭୟକୁ ବାସ୍ତବ ଭାବରେ ନେଇଛନ୍ତି । ଶୂନ୍ୟ ଆକାଶକୁ ସେମାନେ ବାସ୍ତବ ବୋଲି ଗ୍ରହଣ କରୁଛନ୍ତି, ଯେଉଁପରି ପରମାଣୁକୁ ବାସ୍ତବ ବୋଲି ସ୍ୱୀକାର କରୁଛନ୍ତି । ଶୂନ୍ୟ ଆକାଶ ମଧ୍ୟ ବାସ୍ତବ । ଶୂନ୍ୟ ଆକାଶ ଅସତ୍ ହେଲେ ମଧ୍ୟ ଏହା ବାସ୍ତବ । ମୋଟ ଉପରେ ପରମାଣୁ ଓ ଶୂନ୍ୟ ଆକାଶ ଉଭୟ ପରମ ତତ୍ତ୍ୱ ଭାବରେ ପରମାଣୁବାଦୀ ଦର୍ଶନରେ ସ୍ୱୀକୃତ ହୋଇଛି । ପରମାଣୁ ସତ୍ ଓ ଶୂନ୍ୟ ଆକାଶ ଅସତ୍ ହେଲେ ମଧ୍ୟ ସେମାନେ ବାସ୍ତବ ଓ ଦୁଇ ପରମ ତତ୍ତ୍ୱ । ପରମାଣୁବାଦୀମାନଙ୍କ ପାଇଁ ପରମ ସତ୍ତା ସତ୍ ଓ ଅସତ୍ ହେବା ସମ୍ଭବ । ସତ୍ ପରମାଣୁ ମାନଙ୍କ ପାଇଁ ଉଦ୍ଦିଷ୍ଟ ଓ ଅସତ୍ ଶୂନ୍ୟ ଆକାଶ ପାଇଁ ଉଦ୍ଦିଷ୍ଟ । ଏହି ଦୃଷ୍ଟିରୁ ଏହି ଦର୍ଶନରେ ପରମ ସତ୍ତା ଦ୍ୱିବିଧ । ସତ୍ ଓ ଅସତ୍ ଦୁଇ ପରମ ତତ୍ତ୍ୱ ଭାବରେ ପରମାଣୁବାଦୀ ଦର୍ଶନରେ ସ୍ୱୀକୃତ ହୋଇଛି ।

ପରମାଣୁବାଦୀ ଦର୍ଶନରେ ଗତିଶୀଳତାକୁ ଗ୍ରହଣ କରାଯାଇଛି । ପରମାଣୁ ମାନଙ୍କର ଗତିରୁ ହିଁ ସେମାନଙ୍କର ମିଶ୍ରଣ ବା ଅମିଶ୍ରଣ ଓ ସଂଯୋଜନ ସମ୍ଭବ ହୋଇଛି । ପରମାଣୁ ମାନ କିପରି ଗତିଶୀଳ ହୁଅନ୍ତି ? କୌଣସି ବାହ୍ୟ ଶକ୍ତିଦ୍ୱାରା ସେମାନଙ୍କ ଭିତରେ ଗତି ସୃଷ୍ଟି ହୁଏ କି ? ଏହି ପ୍ରଶ୍ନକୁ ଦାର୍ଶନିକମାନେ ବିଭିନ୍ନ ଭାବରେ ବ୍ୟାଖ୍ୟା କରିବାକୁ ପ୍ରୟାସ କରିଛନ୍ତି । ଏଂପେଡୋକ୍ଲିସ ପ୍ରେମ ଓ ଘୃଣା ଆଧାରରେ ଓ ଆନାକ୍ସଗୋରାସ ଆଦ୍ୟ-ବୁଦ୍ଧି ସହାୟତାରେ ଗତିକୁ ବ୍ୟାଖ୍ୟା କରିଛନ୍ତି । କିନ୍ତୁ ଲୁସିପସ ଓ ଡେମୋକ୍ରିଟସଙ୍କ ମତରେ "ଗତି" ପରମାଣୁ ଭିତରେ ଆରମ୍ଭରୁ ହିଁ ରହିଆସିଛି । ପରମାଣୁ ଯେପରି ଅବିନାଶୀ, ପରମାଣୁ ମଧ୍ୟରେ ଅନ୍ତର୍ନିହିତ ଗତି ମଧ୍ୟ ସେହିପରି ଅବିନାଶୀ । ପରମାଣୁ ମାନଙ୍କୁ ଗତିଶୀଳ କରିବା କ୍ଷେତ୍ରରେ କୌଣସି ଦୈବୀ ଶକ୍ତି କିମ୍ବା କାଳ୍ପନିକ ଶକ୍ତିର ପରିକଳ୍ପନା ପରମାଣୁବାଦୀମାନେ କରିନାହାନ୍ତି । ପରମାଣୁ ସହିତ ଗତି ପ୍ରାରମ୍ଭରୁ ସଂଶ୍ଲିଷ୍ଟ ହୋଇରହିଛି । ଅଗ୍ନି ସହ ଉତ୍ତାପ ବା ଜଳ ସହ ଶୀତଳତା ଯେପରି ଅବିଚ୍ଛିନ୍ନ ଭାବରେ ନିହିତ ରହିଛି ସେହିପରି ପରମାଣୁ ସହିତ ଗତି ସଂଯୁକ୍ତ ରହିଥିବା ଡେମୋକ୍ରିଟସ ପରିକଳ୍ପନା କରିଛନ୍ତି । ପରମାଣୁ ଓ ଗତି ପରସ୍ପର ସହ ଅବିଚ୍ଛେଦ୍ୟ ଭାବେ ସଂଶ୍ଲିଷ୍ଟ । ସୁତରାଂ ପରମାଣୁର ଗତିକୁ ବ୍ୟାଖ୍ୟା କରିବା ପାଇଁ କୌଣସି ଲକ୍ଷ୍ୟ, ସଂଯୋଗ ବା ଉଦ୍ଦେଶ୍ୟର ପ୍ରସଙ୍ଗ ଉଠିନଥାଏ କିମ୍ବା କୌଣସି ବାହ୍ୟ ଶକ୍ତିର ପରିକଳ୍ପନା ଅବାନ୍ତର ମନେହୁଏ ।

ପରମାଣୁବାଦୀଙ୍କ ମତାନୁସାରେ ପରମାଣୁ ମଧ୍ୟରେ ଗତି-ଯେପରି ଅନ୍ତର୍ନିହିତ ହୋଇ ରହିଛି ସେହିପରି ପରମାଣୁମାନେ ଓଜନ-ବିଶିଷ୍ଟ । ଏପିକିଉରସୀୟମାନେ ପରମାଣୁ ଭିତରେ ଓଜନକୁ ସ୍ୱୀକାର କରି ତାହାରି ଆଧାରରେ ସେମାନେ ଗତିଶୀଳ ବୋଲି ମତ ରଖିଛନ୍ତି । ଅନନ୍ତ ଆକାଶ ମଧ୍ୟରେ ପରମାଣୁମାନେ ଓଜନବିଶିଷ୍ଟ ହୋଇଥିବାରୁ ସେମାନେ ନିମ୍ନକୁ ନିରନ୍ତର ଖସି ଥାନ୍ତି । ତେବେ ପରମାଣୁବାଦୀମାନଙ୍କର 'ମାଧ୍ୟାକର୍ଷଣ" ଶକ୍ତି ସଂପର୍କରେ କୌଣସି ପ୍ରତ୍ୟୟ ନଥିଲା କିମ୍ବା ନିରଙ୍କୁଶ ଭାବେ ଉର୍ଦ୍ଧ୍ୱ ବା ନିମ୍ନର ଧାରଣା ଯେ ଅବାନ୍ତର ଏହି ଭାବନା ମଧ୍ୟ ସୃଷ୍ଟି ହୋଇ ନଥିଲା । ପରମାଣୁମାନେ ଓଜନ ବିଶିଷ୍ଟ ଓ ଆକାର ବିଶିଷ୍ଟ । ସୁତରାଂ ଯାହାର ଆକାର ଯେତେ ବଡ, ତାହାର

ଓଜନ ସେତେ ଅଧିକ ଓ ଯାହାର ଆକାର ଯେତେ କ୍ଷୁଦ୍ର, ତାହାର ଓଜନ ସେତେ କମ୍ । ଆକାର ଓ ଓଜନ ଭିତରେ ଏହିପରି ଏକ ଆନୁପାତିକ ସମ୍ବନ୍ଧ ରହିଥିବା ମନେହୁଏ । ଯଦି ଏକ ପରମାଣୁର ଆକାର ଅନ୍ୟ ପରମାଣୁର ଆକାରର ଦୁଇଗୁଣ, ତେବେ ତାହାର ଓଜନ ମଧ୍ୟ ତାର ଦୁଇ ଗୁଣ ହେବ । ଅନ୍ତହୀନ ଶୂନ୍ୟରେ ଅଧିକ ଓଜନ ଥିବା ପରମାଣୁମାନେ ତଳକୁ ଖସିଲେ ଓ ଏହି ପ୍ରକ୍ରିୟାରେ ପରସ୍ପର ଭିତରେ ସଂଘର୍ଷ ଉତ୍ପନ୍ନ ହେଲା । ଭାରିଥିବା ପରମାଣୁମାନେ ନିମ୍ନଗାମୀ ହେବା ଭିତରେ ଯେଉଁ ଘୂର୍ଣ୍ଣନ ପ୍ରକ୍ରିୟା ସୃଷ୍ଟି ହେଲା ସେଥିରେ ହାଲ୍‌କା ପରମାଣୁମାନେ ଏକ ସ୍ଥାନରେ ଏକତ୍ରିତ ହେଲେ ଓ ଓଜନିଆ ପରମାଣୁମାନେ ଅନ୍ୟ ସ୍ଥାନରେ ଏକତ୍ର ହେଲେ । ଅର୍ଥାତ୍ ସମାନ ଓଜନ ଥିବା ପରମାଣୁମାନେ ନିକଟତର ହେବା ପ୍ରକ୍ରିୟାରେ ଭାରି ବା ଓଜନିଆ ପରମାଣୁମାନେ ଏକତ୍ର ହେଲେ ଓ ଲଘୁ ବା ହାଲୁକା ପରମାଣୁମାନେ ଏକତ୍ର ହେବାକୁ ଲାଗିଲେ । ପରମାଣୁ ମାନଙ୍କର ଏହି ଏକତ୍ରୀକରଣ ଓ ସଂଘାତ ପ୍ରକ୍ରିୟାରୁ ଏହି ବିଶାଳ ବିଶ୍ୱର ଉତ୍ପତ୍ତି ହୋଇଛି ।

ପରମାଣୁବାଦୀଙ୍କ ମତରେ ସୃଷ୍ଟି ପ୍ରକ୍ରିୟାରେ ପ୍ରଥମେ ପୃଥିବୀର ଉତ୍ପତ୍ତି ହୋଇଛି । ତାହା ପରେ ପରେ ଚନ୍ଦ୍ର, ସୂର୍ଯ୍ୟ ଓ ନକ୍ଷତ୍ର ମାନଙ୍କର ଉତ୍ପତ୍ତି ହୋଇଛି । ତେବେ ଏହି ବିଶାଳ ବିଶ୍ୱରେ ଦେଶ (space) ହେଉଛି ଅନନ୍ତ ଓ ସୀମାହୀନ । ପରମାଣୁମାନେ ନିରନ୍ତର ଭାବରେ ଏକତ୍ରୀକରଣ ଓ ସଂଘାତ ପ୍ରକ୍ରିୟାରେ ଅଧିକ ଓଜନ ବହନ କରୁଥିବା ପରମାଣୁ ନିମ୍ନଗାମୀ ହୋଇଛନ୍ତି । ସୁତରାଂ ଏହି ବିଶ୍ୱ ବ୍ରହ୍ମାଣ୍ଡରେ ଅସଂଖ୍ୟ ପୃଥିବୀ ଉଦ୍‌ଭବ ହୋଇଛି, ଆମ ଧରିତ୍ରୀ ଏହି ଅସଂଖ୍ୟ ପୃଥିବୀ ମଧ୍ୟରୁ ଗୋଟିଏ ମାତ୍ର । ତେବେ ପରମାଣୁମାନଙ୍କର ଏକତ୍ରୀକରଣରୁ ପୃଥିବୀ ସୃଷ୍ଟି ହୋଇଛି । ଯଦି ପରମାଣୁମାନେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇଯିବେ ତେବେ ପୃଥିବୀ ଲୁପ୍ତ ହୋଇଯିବ । ଦୃଶ୍ୟମାନ ବିଶ୍ୱରେ ଅସଂଖ୍ୟ ପୃଥିବୀ, ଗ୍ରହମାନ ପରସ୍ପରଠାରୁ ଦୂରରେ ରହିଛନ୍ତି । ପୃଥିବୀର ଉତ୍ପତ୍ତି ସମୟରେ ଏଥିରେ ଉତ୍ତାପ କିମ୍ବା ଦୀପ୍ତି ନଥିଲା । କାଳକ୍ରମେ ଅଗ୍ନିର ପରମାଣୁମାନ ଏକତ୍ରିତ ହେଲେ ଓ ଧୀରେ ଧୀରେ ଉଷ୍ମତା ପ୍ରକାଶ ପାଇଲା । ସୂର୍ଯ୍ୟମଣ୍ଡଳରେ ଉତ୍ତପ୍ତ ପରମାଣୁମାନେ ମିଶ୍ରିତ ହେବା କାରଣରୁ ଏହା ଅଗ୍ନିମୟ ହେଲା ଯାହାକୁ ସୂର୍ଯ୍ୟ କୁହାଯାଉଛି । ଚନ୍ଦ୍ର ପୃଥିବୀ ସଦୃଶ୍ୟ ଓ ଏହା ସୂର୍ଯ୍ୟଙ୍କ ଠାରୁ ପ୍ରକାଶିତ ଓ ପୃଥିବୀର ନିକଟତମ । ତେବେ ବ୍ରହ୍ମାଣ୍ଡ ମଧ୍ୟରେ ଅସଂଖ୍ୟ ବିଶ୍ୱ ରହିଛି । ଆମ ପୃଥିବୀ ଯେପରି ଏକ ବିଶ୍ୱ ଯେଉଁଥିରେ ସୂର୍ଯ୍ୟ, ଚନ୍ଦ୍ର ରହିଛନ୍ତି ସେହିପରି କେତେକ ବିଶ୍ୱରେ ସୂର୍ଯ୍ୟ ଚନ୍ଦ୍ର ନଥାଇ ପାରନ୍ତି ବୋଲି ଡେମୋକ୍ରିଟସ ପରିକଳ୍ପନା କରିଛନ୍ତି । ତେବେ ଯେତେ ବିଶ୍ୱ ରହିଲେ ମଧ୍ୟ ପ୍ରତ୍ୟେକ ବିଶ୍ୱର ନିର୍ମାଣ ପରମାଣୁ ଓ ଶୂନ୍ୟ-ଦେଶ (empty space) ପ୍ରକ୍ରିୟାରେ ହୋଇଥିବା ପରମାଣୁବାଦୀମାନେ ପରିକଳ୍ପନା କରିଛନ୍ତି । ପରମାଣୁମାନଙ୍କର ମିଶ୍ରଣ ଓ ସଂଘାତ ଯୋଗୁ ଦେଶରେ ଅସଂଖ୍ୟ ପୃଥିବୀ ରହିଛି । ଅବଶ୍ୟ ବହୁ ବିଶ୍ୱ ରହିଥିଲେ ବି ସକଳ ବିଶ୍ୱମାନଙ୍କର ଗୁଣ ବା ଧର୍ମ ସମାନ ନୁହେଁ । ଏହାର କାରଣ ପରମାଣୁମାନଙ୍କର ଆକାର, ପ୍ରକୃତି ଓ ସଂଖ୍ୟା ଭିନ୍ନ ଭିନ୍ନ ହୋଇଥିବାରୁ ବିଭିନ୍ନ ବିଶ୍ୱ ପରସ୍ପରଠାରୁ ପୃଥକ୍ ହେବା ମନେହୁଏ ।

ପରମାଣୁବାଦୀ ଦାର୍ଶନିକମାନେ ଏକ ତତ୍ତ୍ୱମୀମାଂସାର ଅବତାରଣା କରିବା ସହ ଏକ ସୃଷ୍ଟି-ତତ୍ତ୍ୱର ମଧ୍ୟ

ପରିକଳ୍ପନା କରିଛନ୍ତି । ସେମାନଙ୍କର ତତ୍ତ୍ୱମୀମାଂସାରେ ପରମାଣୁ ଓ ଦେଶକୁ ମୁଖ୍ୟ ଆୟୁଧ ଭାବରେ ସେମାନେ ସ୍ୱୀକାର କରିଛନ୍ତି । ଏହି ଦୁଇ ମୂଳ ତତ୍ତ୍ୱ ସେମାନଙ୍କ ଦର୍ଶନରେ ପ୍ରାଧାନ୍ୟ ପାଇଛି । ତେବେ ଏହି ମୂଳ ତତ୍ତ୍ୱ ଅପ୍ରତ୍ୟକ୍ଷ, ଯେହେତୁ ସେସବୁ ଇନ୍ଦ୍ରିୟ ଗୋଚର ବସ୍ତୁ ନୁହନ୍ତି । ଏତଦ୍‌ବ୍ୟତୀତ ଆମେ ଯେଉଁ ଜଗତରେ ରହିଛେ ତାହା ପରମାଣୁ ଓ ଦେଶର ସଂଯୋଗରେ ସମ୍ଭବ ହୋଇଛି । ଏହି ଜଗତ ଆମ ଇନ୍ଦ୍ରିୟଦ୍ୱାରା ଜ୍ଞେୟ, ଏହି ଜ୍ଞେୟ ପୃଥିବୀରେ ଯାହା ସବୁ ବସ୍ତୁ, ପ୍ରାଣୀ ଇତ୍ୟାଦି ରହିଛନ୍ତି ସେସବୁର ମୂଳ ସତ୍ତା ହେଉଛି ପରମାଣୁ ଓ ଦେଶ । ପୁନଶ୍ଚ ପରମାଣୁମାନଙ୍କର ସଂଯୋଗ ମିଶ୍ରଣ ଓ ସଂଯୋଜନ କୌଣସି ବାହ୍ୟିକ ସତ୍ତା ବା ଶକ୍ତିଦ୍ୱାରା ସଂପନ୍ନ ହୁଏ ନାହିଁ । ବରଂ ସକଳ ସଂଭୂତି ବା ସୃଷ୍ଟି ଏକ ଯାନ୍ତିକ ପ୍ରକ୍ରିୟା ବା କାରଣ ମାଧ୍ୟମରେ ହୋଇଥାଏ । ପରମାଣୁବାଦ ବସ୍ତୁବାଦ ଓ ଯାନ୍ତିକବାଦକୁ ସମର୍ଥନ କରେ ।

ଡେମୋକ୍ରିଟସଙ୍କ ମତରେ ସକଳ ଜଡ ବସ୍ତୁ ଓ ଏପରିକି ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର ଇତ୍ୟାଦି ଯେପରି ପରମାଣୁ ମାନଙ୍କର ମିଶ୍ରଣ ଯୋଗୁ ସମ୍ଭବ ହୋଇଛି ସେହିପରି ମନ, ଆତ୍ମାପରି ଚେତନ ସତ୍ତା ମଧ୍ୟ ପରମାଣୁ ମାନଙ୍କ ସଂଯୋଗରେ ସମ୍ଭବ ହୋଇଛି । ଆତ୍ମା ଓ ମନ ଏକ ହିଁ ସତ୍ତା ଓ ସେମାନଙ୍କ ମଧ୍ୟରେ କୌଣସି ଭିନ୍ନତା ଥିବା ଡେମୋକ୍ରିଟସ ସ୍ୱୀକାର କରିନାହାନ୍ତି । ପରମାଣୁବାଦ ମଧ୍ୟରେ ବିଭିନ୍ନ ବସ୍ତୁମାନଙ୍କର ଉତ୍ପତ୍ତି କିପରି ପରମାଣୁମାନଙ୍କର ସଂଯୋଗରେ ସଂପନ୍ନ ହୋଇଛି ସେ ସଂପର୍କରେ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ରହିବା ଆବଶ୍ୟକ । ପରମାଣୁ ମାନଙ୍କର ଆକାର ଓ ଆକୃତି, ସ୍ଥିତି ଇତ୍ୟାଦି ଉପରେ ଏହା ନିର୍ଭରଶୀଳ ହୋଇଥାଏ । ପରମାଣୁବାଦୀଙ୍କ ମତରେ ପରିମାର୍ଜିତ, ଚିକ୍‌କଣ ଓ ଗୋଲାକାର ପରମାଣୁ ମାନଙ୍କର ସଂଯୋଗରେ ଅଗ୍ନିର ଉଦ୍‌ଭବ ହୋଇଛି । ସେହିପରି ପରିଷ୍କୃତ ଅଗ୍ନି, (refined fire), ପରିମାର୍ଜିତ ଓ ଚିକ୍‌କଣ ପରମାଣୁ ମାନଙ୍କ ସାହାଯ୍ୟରେ ଆତ୍ମାର ସୃଷ୍ଟି ହୋଇଛି । ଏହି ପରମାଣୁ ଯେତେବେଳେ ଭୂମି, ଜଳ, ବାୟୁ ଇତ୍ୟାଦି ପରମାଣୁର ସଂଯୋଗରେ ଆସେ ସେତେବେଳେ ଜୀବନ ବା ଚେତନାର ଉତ୍ପତ୍ତି ସମ୍ଭବ ହୋଇଥାଏ । ସୁତରାଂ ଆତ୍ମା ବା ଚେତନା ଜଡ ତତ୍ତ୍ୱଠାରୁ ଭିନ୍ନ ନୁହେଁ । ଯେତେବେଳ ପର୍ଯ୍ୟନ୍ତ ଶରୀର ମଧ୍ୟରେ ଚେତନ ପରମାଣୁମାନ ସୁସଂହତ ହୋଇ ରହେ ସେ ପର୍ଯ୍ୟନ୍ତ ବ୍ୟକ୍ତି ଜୀବିତ ରହିଥାଏ । କିନ୍ତୁ ଧୀରେ ଧୀରେ ଆତ୍ମପରମାଣୁ ମାନଙ୍କର ସଂଖ୍ୟାରେ ହ୍ରାସ ଆରମ୍ଭ ହୁଏ ଓ ଶରୀରରେ ପରିବର୍ତ୍ତନ ହେବା ଆରମ୍ଭ କରେ । ଯେତେବେଳେ ଏହି ସଂଖ୍ୟାରେ ଅଧିକ ହ୍ରାସ ହୁଏ ବା ପୂର୍ଣ୍ଣରୂପରେ ହ୍ରାସ ହୁଏ, ସେତେବେଳେ ବ୍ୟକ୍ତି ମୃତ୍ୟୁମୁଖରେ ପଡେ । ଶରୀରରୁ ଆତ୍ମ-ପରମାଣୁ ପୃଥକ୍ ହୋଇଯିବା ପରେ ଏହା ଆତ୍ମାର ଅନନ୍ତ ପରମାଣୁରେ ବିଲୀନ ହୋଇଯାଏ । ଏଣୁ ପରମାଣୁବାଦୀମାନେ ବ୍ୟକ୍ତିଗତ ଆତ୍ମା, ପୁନର୍ଜନ୍ମ ଭାବନାରେ ବିଶ୍ୱାସ କରନ୍ତି ନାହିଁ । ପରମାଣୁବାଦୀମାନେ ଦୁଇ ପ୍ରକାର ଆତ୍ମାର ଭାବନା ରଖିଥିବା ବିଷୟରେ କେତେକ ମତ ଦେଇଥାନ୍ତି, ଯଥା ବୌଦ୍ଧିକ ଆତ୍ମା ଓ ଅବୌଦ୍ଧିକ ଆତ୍ମା । ବୌଦ୍ଧିକ ଆତ୍ମା ହୃଦୟରେ ରହିଥାଏ ଯେଉଁଥିରୁ ବ୍ୟକ୍ତି ଭିତରେ ବିଚାର, ଭାବନା ଓ ଚିନ୍ତା ଉଦ୍ରେକ ହୁଏ । ଭାବନା ସୃଷ୍ଟିରେ ଏହା ସହାୟକ ହୋଇଥାଏ । ଅବୌଦ୍ଧିକ ଆତ୍ମା ସମଗ୍ର ଶରୀରରେ ପ୍ରସାରିତ ହୋଇ ରହିଥାଏ ଯାହା ବ୍ୟକ୍ତି ଭିତରେ ସମ୍ବେଦନ ସୃଷ୍ଟି କରିଥାଏ । ଅନ୍ୟ ଏକ ମତରେ ଆତ୍ମା

ଦୁଇ ପ୍ରକାର ନୁହେଁ, ଏକ ପ୍ରକାରର । ସକଳ ଆତ୍ମା ଏକ ପ୍ରକାରର ପରମାଣୁରେ ଉତ୍ପନ୍ନ ହେବା ଦେଖାଯାଏ । ବିଚାରର ଭାବନା ହେଉ ବା ସମ୍ବେଦନର ଭାବନା ହେଉ ସବୁ ଏକ ପ୍ରକାରର । ସକଳ ଆତ୍ମା ଏକ ପ୍ରକାରର ପରମାଣୁରେ ଉତ୍ପନ୍ନ ହେବା ଦେଖାଯାଏ । ବିଚାରର ଭାବନା ହେଉ ବା ସମ୍ବେଦନର ଭାବନା ହେଉ ସବୁ ଏକ ପ୍ରକାରର ପରମାଣୁରୁ ଉଦ୍‌ଭବ ହୋଇଥାଏ । ବ୍ୟକ୍ତିମାନଙ୍କ ଭିତରେ ଯେଉଁ ବିଚାରଗତ ଭିନ୍ନତା ଦେଖାଯାଏ ତାହାର କାରଣ ଉଷ୍ମ ବା ଶୀତଳ ପରମାଣୁର କାରଣରୁ ହୋଇଥାଏ । ଉଷ୍ମ ପରମାଣୁ ଓ ଶୀତଳ ପରମାଣୁରେ ମାତ୍ରାଗତ ଭିନ୍ନତା ଯୋଗୁ ଏପରି ଘଟିଥାଏ ।

ଡେମୋକ୍ରିଟସ ପ୍ରତ୍ୟକ୍ଷ ସମ୍ବନ୍ଧରେ ମଧ୍ୟ ତାଙ୍କର ଏକ ସିଦ୍ଧାନ୍ତର ଅବତାରଣା କରିଥିଲେ । ସକଳ ବସ୍ତୁ ଯାହା ପରମାଣୁଦ୍ୱାରା ଗଠିତ ସେସବୁ ଦେଶରେ ନିଜର ଆକାରରେ ପ୍ରତିବିମ୍ବିତ ହୋଇଥାନ୍ତି । ସେମାନଙ୍କର ପ୍ରତିବିମ୍ବ (image) ଆମ ଇନ୍ଦ୍ରିୟଦ୍ୱାରା ଗ୍ରାହ୍ୟ ହୁଏ । ବସ୍ତୁର ଇନ୍ଦ୍ରିୟଗାହ୍ୟ ଗୁଣକୁ ଆମେ ପ୍ରତ୍ୟକ୍ଷ କରେ । ଆମେ ବସ୍ତୁକୁ ରଙ୍ଗ, ସ୍ୱାଦ, ଘ୍ରାଣ ଇତ୍ୟାଦି ଆଧାରରେ ଜାଣିବାକୁ ସମର୍ଥ ହୋଇଥାଏ । ତେବେ ଏହି ସବୁ ଗୁଣ ବସ୍ତୁ ଭିତରେ ଅନ୍ତର୍ନିହିତ ନ ରହି ବରଂ ଆମକୁ ଆମର ଇନ୍ଦ୍ରିୟ ଏହି ଅନୁଭୂତି ଦେଇଥାଏ । ଆମକୁ ଇନ୍ଦ୍ରିୟ ଯେପରି ଅନୁଭୂତି ଦିଏ ସେହି ଆଧାରରେ ଆମେ ବସ୍ତୁର ସ୍ୱରୂପକୁ ଜାଣିଥାଏ । ସୁତରାଂ ଏସବୁ ଆପେକ୍ଷିକ ମନେହୁଏ, ଯେହେତୁ ଏକ ବସ୍ତୁକୁ ଭିନ୍ନ ଭିନ୍ନ ଭାବରେ ପ୍ରତ୍ୟକ୍ଷ କରାଯାଇପାରେ । ଏହି ପୃଷ୍ଠଭୂମିରେ ସେ ଅନୁଭବବାଦୀ ଦାର୍ଶନିକଙ୍କ ସଦୃଶ ବିଶ୍ୱାସ କରୁଥିଲେ ଯେ ଆମର ସକଳ ଜ୍ଞାନ ଅନୁଭବପରକ ଅର୍ଥାତ୍ ଇନ୍ଦ୍ରିୟ ଆଧାରିତ । ସମ୍ବେଦନ (sensation) ଓ ଚିନ୍ତନ ହିଁ ସକଳ ଜ୍ଞାନର ଭିତ୍ତି ବୋଲି ତାଙ୍କର ବିଶ୍ୱାସ ରହିଥିଲା । ସମ୍ବେଦନ ଓ ସ୍ୱଚିନ୍ତନ ପ୍ରକ୍ରିୟାରେ ଆମର ଭାବନା, ବିଚାର ବିକଶିତ ହୋଇଥାଏ । ସମ୍ବେଦନ ଓ ସ୍ୱଚିନ୍ତନର ସମନ୍ୱିତ ଅଭିବ୍ୟକ୍ତି ହେଉଛି ଆମର ପ୍ରତ୍ୟକ୍ଷଣ ମୁଦ୍ରା (impression) ଯେଉଁଥିରୁ ଆମର ଜ୍ଞାନରାଜି ରୂପ ନେଇଥାଏ ।

ଡେମୋକ୍ରିଟସ ବିଭିନ୍ନ ସମୟରେ କେତେକ ନୈତିକ ସିଦ୍ଧାନ୍ତର ଅବତାରଣା କରିଛନ୍ତି । ଅବଶ୍ୟ ତାଙ୍କ ନୈତିକ ସିଦ୍ଧାନ୍ତ ମାନଙ୍କର ପରମାଣୁବାଦ ସହ ସେପରି କିଛି ସମ୍ବନ୍ଧ ନାହିଁ । ବିଭିନ୍ନ ସମୟରେ ସେ ନୀତିଶାସ୍ତ୍ରର କେତେକ ବିବେଚନା କରିଥିବା ଜଣାଯାଏ । କୁହାଯାଏ ଯେ ମାନବ ଜୀବନର ଲକ୍ଷ୍ୟ ସୁଖପ୍ରଦ ସ୍ଥିତି ବୋଲି ସେ ଭାବୁଥିଲେ । ମନୁଷ୍ୟର ସକଳ କାର୍ଯ୍ୟ ସୁଖଲାଭ କରିବା ଓ ଦୁଃଖକୁ ପରିହାର କରିବା ପାଇଁ ଉଦ୍ଦିଷ୍ଟ ବୋଲି ତାଙ୍କର ବିଚାର ଥିଲା । ଯାହା ଆମକୁ ସୁଖକର ମନେହୁଏ ତାହା ଆମ ପାଇଁ ଉପଯୋଗୀ ଓ ଯାହା ଆମ ପାଇଁ ଦୁଃଖପ୍ରଦ ତାହା ଆମପାଇଁ ଉପଯୋଗୀ ନୁହେଁ । ଅବଶ୍ୟ ଏଥିରୁ ଆମେ ଏହା ଭାବିବା ଯଥାର୍ଥ ନୁହେଁ ଯେ ମିଲ୍ ଓ ବେଂଥାମ ଯେଉଁ ସୁଖବାଦ (hedonism) ଜନିତ ନୈତିକ ମାନକର ଅବତାରଣା କରିଛନ୍ତି, ଡେମୋକ୍ରିଟସ ମଧ୍ୟ ତାହା କରିଥିଲେ । ଡେମୋକ୍ରିଟସ ଭୋଗବିଳାସ ଓ ଇନ୍ଦ୍ରିୟ ତୃପ୍ତିକୁ ଆଦୌ ପ୍ରାଧାନ୍ୟ ଦେଇନାହାନ୍ତି । ବାସ୍ତବ ସୁଖକୁ ସେ ଇନ୍ଦ୍ରିୟ କାମନା ଭିତରେ ସୀମିତ କରିନାହାନ୍ତି କାରଣ ଏସବୁ କ୍ଷଣିକ ଓ ଉତ୍ତେଜକ ବୋଲି ସେ ମନେ କରୁଥିଲେ । ପରନ୍ତୁ ଯେଉଁ ସୁଖ ଶାନ୍ତିପ୍ରଦ ଓ ସାତ୍ତ୍ୱିକ ତାହାକୁ ସେ ପ୍ରାଧାନ୍ୟ ଦେଉଥିଲେ । ଶୃଂଖଳା, ସଂଯମତା, କର୍ମନିଷ୍ଠତା

ଇତ୍ୟାଦିକୁ ସେ ପ୍ରସାର କରୁଥିଲେ ଓ ଏକ ଉନ୍ନତ ଜୀବନ ପାଇଁ ଏହି ସବୁ ଆଦର୍ଶ ଯେ ଆବଶ୍ୟକ ଏହା ଭାବୁଥିଲେ । ଜୀବନର ଶ୍ରେୟ ସାଧନ କ୍ଷେତ୍ରରେ ସେ ଅଧ୍ୟୟନ ଓ ଜ୍ଞାନ ଆହରଣକୁ ମୁଖ୍ୟ ସ୍ଥାନ ଦେଉଥିଲେ । ନିଜ ବ୍ୟକ୍ତିଗତ ଜୀବନରେ ଜ୍ଞାନଲାଭ ପାଇଁ ତାଙ୍କର ଗଭୀର ଶ୍ରଦ୍ଧା ରହିଥିଲା । ସେ ଥିଲେ ଅତ୍ୟନ୍ତ ନୀତିବାଦୀ ବ୍ୟକ୍ତି ଓ ଜ୍ଞାନପିପାସୁ ।

ପ୍ରଚଳିତ ସମାଜର ଧର୍ମ, ଈଶ୍ୱର ବିଶ୍ୱାସ ସଂପର୍କରେ ପରମାଣୁବାଦୀ ମାନଙ୍କର କ'ଣ ବିଚାର ଥିଲା ତାହା ନେଇ ଗ୍ରୀକ୍ ଦର୍ଶନର ଇତିହାସ ଲେଖିଥିବା ଲେଖକମାନଙ୍କ ମଧ୍ୟରେ ନାନା ମତଭେଦ ରହିଛି । ଡେମୋକ୍ରିଟସଙ୍କ ସମୟରେ ବହୁ ଦେବବାଦର ପରିକଳ୍ପନା ରହିଥିଲା । ଏହା ସହିତ ସୂର୍ଯ୍ୟ, ନକ୍ଷତ୍ର, ଅଗ୍ନି ଇତ୍ୟାଦି ଯେ ଦୈବୀ ସତ୍ତା ଏହି ବିଶ୍ୱାସ ସମାଜରେ ଥିଲା । ପରଂପରାଗତ ଧର୍ମ, ଦେବାଦେବୀ ଇତ୍ୟାଦିକୁ ଡେମୋକ୍ରିଟସ ବିଶ୍ୱାସ କରୁଥିଲେ କି ନାହିଁ ସେ ସଂପର୍କରେ ମତପାର୍ଥକ୍ୟ ରହିଛି । ତେବେ ଏହାର ଏକ ଅଧିକ ଗ୍ରହଣୀୟ ମତ ଫ୍ରାଙ୍କ୍ ଥିଲି ବ୍ୟକ୍ତି କରିଛନ୍ତି । ଥିଲିଙ୍କ ମତରେ ଦେବଦେବୀମାନେ ମନୁଷ୍ୟମାନଙ୍କ ଅପେକ୍ଷା ଅଧିକ ଶକ୍ତିଶାଳୀ ହେଲେ ମଧ୍ୟ ସେମାନେ ମନୁଷ୍ୟମାନଙ୍କ ପରି ମରଣଶୀଳ । ସେମାନେ ମଧ୍ୟ ପରମାଣୁଦ୍ୱାରା ନିୟନ୍ତ୍ରିତ ଥିବାରୁ ସେମାନେ ମୃତ୍ୟୁମୁଖରେ ପଡିବା ଅବଶ୍ୟମ୍ଭାବୀ । ଅନନ୍ତ ବିଶ୍ୱରେ କେହି ଚରମ ସୁବିଧା ଉପଭୋଗ କରିପାରିବେ ନାହିଁ । ତେବେ ଜନବିଶ୍ୱାସରେ ଥିବା ଦେବ-ଦେବୀମାନେ ଆମଠାରୁ ଅଧିକ ଶକ୍ତିଶାଳୀ ଓ ବୁଦ୍ଧିଦୀପ୍ତ ହୋଇଥିବାରୁ ସେମାନଙ୍କ ପ୍ରତି ଆମର ଶ୍ରଦ୍ଧା-ଭକ୍ତି ରହିବା ଆବଶ୍ୟକ । ତେବେ ଏହା ସହିତ ଥିଲିଙ୍କ ମତରେ ଯଦିବି ଦେବ-ଦେବୀଙ୍କୁ ବିଶ୍ୱାସ କରାଯାଏ ବା ସେମାନେ ଲୋକମାନଙ୍କର ସ୍ୱପ୍ନରେ ଆବିର୍ଭୂତ ହୁଅନ୍ତି ତଥାପି ଡେମୋକ୍ରିଟସଙ୍କ ମତରେ ଲୋକମାନେ ସକଳ ପ୍ରକାର କୁସଂସ୍କାରରୁ ଓ ଦେବ-ଦେବୀଙ୍କ ପ୍ରତି ଭୟରୁ ମୁକ୍ତ ରହିବା ଆବଶ୍ୟକ । ଡେମୋକ୍ରିଟସଙ୍କ ପରମାଣୁବାଦ ଯେପରି ଏକ ପ୍ରାକୃତିକ ବ୍ୟବସ୍ଥା, ସେହି ପ୍ରାକୃତିକ ନିୟମ ସବୁ ପ୍ରତି ପ୍ରଯୁଜ୍ୟ । ପ୍ରାକୃତିକ ଶୃଂଖଳା, ନିୟମ ଓ ବ୍ୟବସ୍ଥାର ଦେବ-ଦେବୀ ବି ଅବିଚ୍ଛେଦ୍ୟ ଅଙ୍ଗ, ସୁତରାଂ ସେମାନେ ପ୍ରାକୃତିକ ନିୟମ ଓ ସୀମାବଦ୍ଧତାଦ୍ୱାରା ନିୟନ୍ତ୍ରିତ । ଡେମୋକ୍ରିଟସଙ୍କ ଭାବନାର ଏହିପରି ଏକ ବିଚାରଶୀଳ ବିଶ୍ଳେଷଣ କେତେକ ବ୍ୟାଖ୍ୟାକାର ପ୍ରଦାନ କରିଛନ୍ତି ।

ମୋଟଉପରେ ଲୁସିପସ ହୁଅନ୍ତୁ ବା ଡେମୋକ୍ରିଟସ ହୁଅନ୍ତୁ ସେ ଉଭୟ ପରମାଣୁବାଦକୁ ଏକ ସୈଦ୍ଧାନ୍ତିକ ଭିତ୍ତି ଦେବାରେ ଗ୍ରୀକ୍ ଦର୍ଶନ ଇତିହାସରେ ଗୌରବର ଅଧିକାରୀ ହୋଇଛନ୍ତି । ସେମାନେ ପରମାଣୁବାଦ ପ୍ରବକ୍ତା ହେବା ସହ ଏହି ଭାବଧାରାକୁ ଆଧାର କରି ଏକ ତତ୍ତ୍ୱମୀମାଂସା, ସୃଷ୍ଟିତତ୍ତ୍ୱ, ଜ୍ଞାନମୀମାଂସା, ମୂଲ୍ୟମୀମାଂସାର ଅବତାରଣା କରିଛନ୍ତି । ଦର୍ଶନଶାସ୍ତ୍ର ପରିସରରେ ଏସବୁର ଗମ୍ଭୀର ମୂଲ୍ୟ ରହିଛି । ଦର୍ଶନଶାସ୍ତ୍ରରେ ଯେତେ ସବୁ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତମାନ ବିକଶିତ ହୋଇଛି, ସେ କ୍ଷେତ୍ରରେ ପରମାଣୁବାଦର ଏକ ନିରନ୍ତର ମୂଲ୍ୟ ରହିଛି । ଆଧୁନିକ ବିଜ୍ଞାନର ବିକାଶ ପରମାଣୁବାଦ ସଂପର୍କରେ ଗମ୍ଭୀର ଅଧ୍ୟୟନ କରି ମାନବ ସଭ୍ୟତାକୁ ଆଧୁନିକ ପ୍ରଯୁକ୍ତି ସାହାଯ୍ୟରେ ନୂଆ ରୂପରେଖ ଦେଇଛି । ପରମାଣୁ ସଂପର୍କିତ ବୈଜ୍ଞାନିକ ଗବେଷଣା ପ୍ରଯୁକ୍ତିର ଦିଗନ୍ତକୁ ବିସ୍ତାର

କରିପାରିଛି । ତେବେ ପରମାଣୁର ବୈଜ୍ଞାନିକ ଅନୁଶୀଳନର ବହୁ ପୂର୍ବରୁ ଚିନ୍ତାସ୍ତରରେ ଦାର୍ଶନିକ ମାନେ ପରମାଣୁର ପରିକଳ୍ପନା କରିଛନ୍ତି । ବିଶ୍ୱ ବ୍ରହ୍ମାଣ୍ଡର ମୂଳ ସତ୍ତା ଯେ ପରମାଣୁ ଏହି ପରିକଳ୍ପନା ଦର୍ଶନ ପରିସରରେ ଆସିବା ଏକ ଉଲ୍ଲେଖନୀୟ ଘଟଣା । ପାଶ୍ଚାତ୍ୟ ଦର୍ଶନରେ ହେଉ ବା ପ୍ରାଚ୍ୟ ଦର୍ଶନରେ ହେଉ ପରମାଣୁର ତାତ୍ତ୍ୱିକ ପରିକଳ୍ପନା ଚିନ୍ତାରାଜ୍ୟରେ ଏକ ଯୁଗାନ୍ତକାରୀ ଘଟଣା । ଏହି ଦୃଷ୍ଟିରୁ ଲୁସିପସ ଓ ଡେମୋକ୍ରିଟସ୍ ଗ୍ରୀକ୍ ଦର୍ଶନରେ ପରମାଣୁ ସଂପର୍କରେ ଯେଉଁ ବୈଚାରିକ ସିଦ୍ଧାନ୍ତର ଅବତାରଣା କରିଛନ୍ତି ତାହା ବେଶ୍ ମୌଳିକ ମନେହୁଏ । ଦାର୍ଶନିକମାନେ ତଥ୍ୟଭିତ୍ତିକ ଜ୍ଞାନ ପ୍ରଦାନ କରନ୍ତି ନାହିଁ, କେବଳ ପ୍ରତ୍ୟୟଗତ ବ୍ୟାଖ୍ୟା ଓ ପରିକଳ୍ପନାର ସୂତ୍ରପାତ କରନ୍ତି । ଯାହା ତଥ୍ୟଭିତ୍ତିକ ଜ୍ଞାନ ତାହା ବିଜ୍ଞାନ, ଯାହା ପ୍ରତ୍ୟୟଗତ ଅନୁଶୀଳନ ତାହା ଦର୍ଶନ । ସୁତରାଂ ଦର୍ଶନ ପରିସରରେ ବହୁ ପରସ୍ପର ବିରୋଧୀ ପରିକଳ୍ପନାତ୍ମକ ତତ୍ତ୍ୱମୀମାଂସା (speculative metaphysics) ର ଅବତାରଣା ହେବା ଦେଖାଯାଏ । ତେବେ ପରମାଣୁବାଦ ଏକ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତ ହେଲେ ମଧ୍ୟ ଏହା ବୈଜ୍ଞାନିକ ଭାବନାର ନିକଟବର୍ତ୍ତୀ । ଡେମୋକ୍ରିଟସଙ୍କର ପରମାଣୁବାଦ ମାଧ୍ୟମରେ ପ୍ରଦତ୍ତ ଦାର୍ଶନିକ ସିଦ୍ଧାନ୍ତ ଏକ ମୌଳିକ ଭାବନାର ସୂତ୍ରପାତ କରିଥିବା ମନେହୁଏ । ତାଙ୍କ ଦର୍ଶନରେ କେତେକ ଅସଂଗତ ଓ ଅଯୌକ୍ତିକ ବିଚାର ରହିଥିଲେ ମଧ୍ୟ ତାଙ୍କ ଅବଦାନର ମହତ୍ତ୍ୱ ଅନସ୍ୱୀକାର୍ଯ୍ୟ । ସାଂପ୍ରତିକ ଯୁଗର ମାନଦଣ୍ଡରେ ତାଙ୍କର ସିଦ୍ଧାନ୍ତମାନ କାଳ୍ପନିକ ଓ ଅବୈଜ୍ଞାନିକ ମନେ ହେଲେ ବି ସେ ଯେଉଁ ଯୁଗରେ ବଞ୍ଚିଥିଲେ ସେ ଯୁଗରେ ତାଙ୍କ ଦର୍ଶନ ଓ ଭାବଧାରା ଥିଲା ଯୁଗାନ୍ତକାରୀ ।

### ୫.୨ ସଫିଷ୍ଟ ଦର୍ଶନ

ଗ୍ରୀକ୍ ଦର୍ଶନର ଇତିହାସ ଲେଖିଥିବା ଅଧିକାଂଶ ଲେଖକ ମତପୋଷଣ କରିଥାନ୍ତି ଯେ ଏହି ଦର୍ଶନର ପ୍ରଥମ ଧାରା ଆନାକ୍ସଗୋରାସଙ୍କ ପାଖରେ ସମାପ୍ତ ହୋଇ ଏକ ନୂତନ ବୈଚାରିକ ଧାରା ସଫିଷ୍ଟମାନଙ୍କ ପାଖରୁ ଆରମ୍ଭ ହେଲା । ଦାର୍ଶନିକ ଅନୁଶୀଳନର ପ୍ରଥମ ଧାରାରେ ବିଶ୍ୱର ସୃଷ୍ଟି କିପରି ହୋଇଛି ଓ ଏହାର ମୂଳତତ୍ତ୍ୱ ବା ପରମ ସତ୍ତା କ'ଣ ହୋଇପାରେ ତାହା ଦାର୍ଶନିକଙ୍କ ପାଇଁ ଗମ୍ଭୀର ଚିନ୍ତାର ବିଷୟ ହୋଇଥିଲା । ପ୍ରଥମ ପର୍ଯ୍ୟାୟରେ କେଉଁ ପ୍ରାକୃତିକ ବସ୍ତୁ ବା ସତ୍ତାରୁ ପୃଥିବୀର ସୃଷ୍ଟି ସମ୍ଭବ ହୋଇଛି ସେ ବିଷୟରେ ଦାର୍ଶନିକ ପରିକଳ୍ପନା ପ୍ରକାଶ ପାଇଥିଲା । ଥେଲିସ୍ ଏ ବିଶ୍ୱର ମୂଳ ତତ୍ତ୍ୱ ଭାବରେ ଜଳକୁ ପରିକଳ୍ପନା କରିଥିଲେ । ଆନେକ୍ସିମେନିସ୍ ବାୟୁକୁ ମୂଳତତ୍ତ୍ୱ ଭାବରେ ନେଇ ପୃଥିବୀ ନିର୍ମାଣର ଭାବନା ଦେଇଥିଲେ । ଏକ ସମୟରେ କୌଣସି ପ୍ରାକୃତିକ ସତ୍ତାରୁ ସବୁକିଛିର ଉଦ୍‌ଭବ ହୋଇଥିବାର ପରିକଳ୍ପନା ପ୍ରକାଶ ପାଇଥିଲା । ସେହିପରି ବିଶ୍ୱର ସ୍ଥିତି, ପରିବର୍ତ୍ତନ ଓ ସଂଭୂତି ସଂପର୍କରେ ବିଭିନ୍ନ ଦାର୍ଶନିକମାନେ ଭିନ୍ନ ଭିନ୍ନ ବ୍ୟାଖ୍ୟାନ ମାନଙ୍କର ଅବତାରଣା କରିଥିବା ଜଣାଯାଏ । ପ୍ରଥମେ ମୂଳତତ୍ତ୍ୱକୁ ପ୍ରାକୃତିକ ସତ୍ତା ବୋଲି ଗ୍ରହଣ କରାଗଲା ପରେ ଅନ୍ୟ ଜଣେ ଦାର୍ଶନିକ ଆନାକ୍ସଗୋରାସ ଭୌତିକ ବସ୍ତୁ ସହ ଏକ ଅଭୌତିକ ବା ଆଦ୍ୟବୁଦ୍ଧି (Nous)ର ପରିକଳ୍ପନା କରିଛନ୍ତି । ଜଗତରେ ରହିଥିବା ଶୃଙ୍ଖଳା, ସଂହତି ଓ ଏକରୂପତା ପାଇଁ ଆନାକ୍ସଗୋରାସ ଅଭୌତିକ ତତ୍ତ୍ୱର ଅବତାରଣା କରିଛନ୍ତି । ଚେତନାରହିତ ବସ୍ତୁ ଓ ବସ୍ତୁରହିତ ଚେତନା ଯେ ଜଗତ ନିର୍ମାଣରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଛନ୍ତି ସେହି ବିଚାରବୋଧ ମଧ୍ୟଦେଇ ବିଚାର ଓ

ପ୍ରତିପକ୍ଷ-ବିଚାର ଗ୍ରୀକ୍ ଦାର୍ଶନିକ ଧାରାରେ ପ୍ରକାଶ ପାଇଛି । ଦାର୍ଶନିକ ଅନୁଶୀଳନର ଆଦ୍ୟପର୍ବରେ ଏକ ତତ୍ତ୍ୱ ଓ ପ୍ରତିପକ୍ଷ-ତତ୍ତ୍ୱ (Thesis and anti-thesis) ଦାର୍ଶନିକ ବିଚାର କ୍ଷେତ୍ରକୁ ଆସିଛି । ଏହି ଆଦ୍ୟପର୍ବରେ ଜଗତର ସୃଷ୍ଟି, ପରିବର୍ତ୍ତନ ଓ ସଂଭୂତିର କାରଣ ନେଇ ଚର୍ଚ୍ଚା ମୁଖ୍ୟ ସ୍ଥାନ ନେଇଛି ।

ସଫିଷ୍ଟମାନେ ଜୀବନ ଓ ମନୁଷ୍ୟକୁ ପ୍ରାଧାନ୍ୟ ଦେଇ ସେ ଉପରେ ଚର୍ଚ୍ଚା ଆରମ୍ଭ କରିଛନ୍ତି । ଫଳତଃ ଗ୍ରୀକ୍ ଦର୍ଶନ ପରିସରରେ ଏକ ଭିନ୍ନ ଧାରାର ଅୟମାରମ୍ଭ ହୋଇଛି । ସଫିଷ୍ଟମାନଙ୍କ ପୂର୍ବରୁ ବିଶ୍ୱର ମୌଳିକ ତତ୍ତ୍ୱ ଦର୍ଶନ-ଚର୍ଚ୍ଚା ଭିତରେ ମୁଖ୍ୟ ପ୍ରସଙ୍ଗ ଥିଲା, ସଫିଷ୍ଟମାନେ ମନୁଷ୍ୟ ସଂକ୍ରାନ୍ତରେ ଆଲୋଚନାକୁ ପ୍ରାଧାନ୍ୟ ଦେଇ ଏକ ନୂତନ ଧାରାର ପ୍ରବର୍ତ୍ତନ କଲେ । ତେବେ ଏହି ଦୁଇ ପ୍ରସଙ୍ଗ ବିଶ୍ୱର ଅନୁଶୀଳନ ଓ ମନୁଷ୍ୟର ଅଧ୍ୟୟନ ସଫିଷ୍ଟମାନଙ୍କ ପରେ ଦର୍ଶନର ମୁଖ୍ୟ ପ୍ରସଙ୍ଗ ହେଲା । ପ୍ଲେଟୋ ଓ ଆରିଷ୍ଟୋଟଲଙ୍କ ପରି ବିଶ୍ୱପ୍ରସିଦ୍ଧ ଦାର୍ଶନିକମାନେ ବିଶ୍ୱକୁ ଓ ମାନବୀୟ ଚେତନାକୁ ବିଶ୍ଳେଷଣ କରିବା ପାଇଁ ପ୍ରୟାସ କଲେ । ସଫିଷ୍ଟମାନେ ଯେଉଁ ସବୁ ଭାବନାର ଅବତାରଣା କରିଥିଲେ ତାହାର ସମାଲୋଚନା ଓ ବିଶ୍ଳେଷଣରୁ ଦର୍ଶନର ଦିଗନ୍ତ ବିସ୍ତାରିତ ହେଲା । ଏହି ପୃଷ୍ଠଭୂମିରେ ଆମେ ସଫିଷ୍ଟମାନଙ୍କ ସଂପର୍କରେ ଆଲୋଚନା ସହ ଗ୍ରୀକ୍ ଦର୍ଶନରେ ସେମାନଙ୍କର ଭୂମିକା ନେଇ କେତେକ ସୂଚନା ରଖିବା ।

ବୈଷୟିକ ଦୃଷ୍ଟିକୋଣରୁ ଦେଖିଲେ ସଫିଷ୍ଟମାନେ ଏକ "ଦାର୍ଶନିକ ଶ୍ରେଣୀ" ନଥିଲେ । ସେମାନେ ନିର୍ଦ୍ଦିଷ୍ଟ ଭାବରେ ଦାର୍ଶନିକ ସମସ୍ୟା ଉପରେ ବିଶେଷତା ପ୍ରକାଶ କରିନାହାନ୍ତି । ସେମାନେ ଥିଲେ ଏପରି ଏକ ଗୋଷ୍ଠୀ ଯେଉଁମାନେ ଲୋକମାନଙ୍କର ଆବଶ୍ୟକତାନୁଯାୟୀ ସେମାନଙ୍କୁ ଶିକ୍ଷା ଦେଉଥିଲେ । ଲୋକମାନେ ଯାହା ଜାଣିବାକୁ ଆଗ୍ରହୀ ହେଉଥିଲେ ସେମାନଙ୍କୁ ସେହି ବିଷୟରେ ଶିକ୍ଷାଦେବାକୁ ଆଗ୍ରହ କରୁଥିବା ବ୍ୟକ୍ତିମାନଙ୍କୁ ସଫିଷ୍ଟ କୁହାଯାଉଥିଲା । ସେମାନେ ଥିଲେ ଏକ ଚତୁର ଓ ବିଶେଷଜ୍ଞ ଗୋଷ୍ଠୀ । କେତେକ ଏହି ଦୃଷ୍ଟିରୁ ସମାଜର ବୁଦ୍ଧିମାନ ଗୋଷ୍ଠୀକୁ ସଫିଷ୍ଟ କହିଛନ୍ତି । ଯେକୌଣସି ବିଦ୍ୟାରେ ପାରଦର୍ଶିତା ଥିବା ବ୍ୟକ୍ତିମାନଙ୍କୁ ଅନ୍ୟମାନେ ସଫିଷ୍ଟ କହୁଥିଲେ । ସେମାନେ ଥିଲେ ଏକ ବୃତ୍ତିଗତ ଶିକ୍ଷାଦାନ କରୁଥିବା ସଚେତନ ଗୋଷ୍ଠୀ । ସେମାନେ ଅର୍ଥ ନେଉଥିଲେ ଓ ଅନ୍ୟମାନଙ୍କୁ ପାଠ ପଢ଼ାଉଥିଲେ । ଏଥି ପାଇଁ କେତେକ ସେମାନଙ୍କୁ "ପାଠ-ବ୍ୟବସାୟୀ" ବୋଲି ଅସମ୍ମାନସୂଚକ ଭାବେ ଚିତ୍ରଣ କରୁଥିଲେ । ସେମାନେ ଦର୍ଶନ ଚର୍ଚ୍ଚାରେ ସେପରି ବ୍ରତୀ ନଥିଲେ ବରଂ ବ୍ୟାବହାରିକ ଜୀବନରେ ଗୁରୁତ୍ୱ ବହନ କରୁଥିବା ବିଭିନ୍ନ ପ୍ରସଙ୍ଗ ଉପରେ ନିଜର ବିଚାର ବ୍ୟକ୍ତ କରୁଥିଲେ ଓ ଆଗ୍ରହୀ ବ୍ୟକ୍ତିମାନଙ୍କୁ ଶିକ୍ଷା ପ୍ରଦାନ କରୁଥିଲେ । ମୋଟଉପରେ କହିବାକୁ ଗଲେ ସଫିଷ୍ଟମାନେ ଥିଲେ ଏକ ବାଗ୍ମୀଗୋଷ୍ଠୀ । ସେମାନେ ମଧ୍ୟ ରାଜନୀତି ଉପରେ ଅଧିକ ଶ୍ରଦ୍ଧା ରଖିଥିଲେ । ଏମାନଙ୍କ ମଧ୍ୟରେ କେତେକ ଦର୍ଶନ ଚର୍ଚ୍ଚାରେ ଆଗ୍ରହୀ ଥିଲେ, ଅନ୍ୟ କେତେକ ଯୁକ୍ତିବାଦୀ ଥିଲେ ଓ ଏପରିକି କେତେକ ବିଦ୍ୟା-ବେପାରୀ ଥିଲେ । ଏହିପରି ଦେଖିଲେ ସମାଜର ଏକ ସଚେତନ ଓ ବାଗ୍ମୀ ଗୋଷ୍ଠୀ ସଫିଷ୍ଟ ଭାବେ ଗ୍ରୀସ୍‌ରେ ପରିଚିତ ଥିଲେ । କୌଣସି ବିଷୟରେ କିଛି ବିଶେଷତା ଅର୍ଜନ କରିଥିବା ବ୍ୟକ୍ତି ଯେଉଁମାନେ ଲୋକମାନଙ୍କୁ କୌଣସି ବିଷୟରେ ପ୍ରଶିକ୍ଷଣ ଦେଇ ପାରୁଥିଲେ ଓ ସେମାନଙ୍କୁ

ଉତ୍ତମ ନାଗରିକ ହେବାରେ ସହଯୋଗ କରୁଥିଲେ ସେମାନେ ସଫିଷ୍ଟ ଭାବେ ପରିଚିତ ହେଉଥିଲେ । ଏହିପରି ଦେଖିଲେ ସମାଜର ଏକ କୁଶଳୀ, ସଚେତନ, ବାଗ୍ମୀ ଓ ଶିକ୍ଷାଦେବାର ସାମର୍ଥ୍ୟ ରଖିଥିବା ଲୋକମାନେ ଥିଲେ "ସଫିଷ୍ଟ" ।

ସଫିଷ୍ଟମାନଙ୍କର ଅବଦାନ ଓ ଭୂମିକା ବିଷୟରେ ସ୍ପଷ୍ଟ ଭାବରେ ଜାଣିବାକୁ ହେଲେ ତତ୍‌କାଳୀନ ଗ୍ରୀକ୍ ସମାଜର ରାଜନୈତିକ, ଧାର୍ମିକ, ସାଂସ୍କୃତିକ ଓ ବୌଦ୍ଧିକ ସ୍ଥିତି ସମ୍ବନ୍ଧରେ କେତେକ ସାଧାରଣ ଧାରଣା ରହିବା ଆବଶ୍ୟକ । ଗୋଟିଏ ସମୟରେ ସବୁ ସମାଜରେ ଏକ ସାମନ୍ତ ଓ ସଂଭ୍ରାନ୍ତ ଗୋଷ୍ଠୀ ରହିଥିଲେ । ଗଣତନ୍ତ୍ରର ବିକାଶଦ୍ୱାରା ସମାଜରୁ ସାମନ୍ତବାଦ ଦୂରୀଭୂତ ହୋଇଥିବା ମନେହୁଏ । ପ୍ରାଚୀନ ଗ୍ରୀସ୍‌ରେ ଗଣତନ୍ତ୍ର ରହିଥିଲା, ତେବେ ସାଂପ୍ରତିକ ପରିଭାଷାରେ ଗଣତନ୍ତ୍ର କହିଲେ ଯେପରି ଏକ ଲୋକପ୍ରତିନିଧି ମୂଳକ ଶାସନ ବ୍ୟବସ୍ଥାକୁ ବୁଝାଯାଉଛି ସେ ଯୁଗରେ ଏହା ଭିନ୍ନ ଥିଲା । ପ୍ରାଚୀନ ଗ୍ରୀସ୍ ଏକ ରାଷ୍ଟ୍ର ନଥିଲା ବା ସେଠାରେ ଏକ ସରକାର ସମଗ୍ର ଗ୍ରୀସ୍‌କୁ ଶାସନ କରୁନଥିଲା । ପ୍ରତ୍ୟେକ ସହର ଓ ପ୍ରତ୍ୟେକ ଗ୍ରାମ ଏକ ଏକ ସ୍ୱାଧୀନ ରାଜ୍ୟ ଥିଲା । ପ୍ରତ୍ୟେକ ସ୍ୱାଧୀନ ରାଜ୍ୟର ନୀତି, ନିୟମ ଓ ଆଇନ ଶୃଂଖଳା ପୃଥକ୍ ରହିଥିଲା । ପ୍ରତ୍ୟେକ ରାଜ୍ୟର ଲୋକସଂଖ୍ୟା ଅତି ସୀମିତ ଥିଲା ଓ ଗୋଟିଏ ଗୋଟିଏ ଗ୍ରାମ ମାତ୍ର କେତୋଟି ପରିବାରକୁ ନେଇ ସ୍ୱତନ୍ତ୍ର ରହିଥିଲା । ପ୍ରତ୍ୟେକ ରାଜ୍ୟ ଏପରି କ୍ଷୁଦ୍ର ରହିଥିଲା ଯେ ଏହାର ନାଗରିକମାନେ ଏକ ସ୍ଥାନରେ ସମବେତ ହୋଇ ନିଜ ରାଜ୍ୟ ପାଇଁ ନିଷ୍ପତ୍ତିମାନ ଗ୍ରହଣ କରୁଥିଲେ । ଏଥିପାଇଁ ପ୍ରତ୍ୟେକ ରାଜ୍ୟର ଅଧିବାସୀ ମାନେ ନିଜ ରାଜ୍ୟ ବିଷୟରେ ଚିନ୍ତା ବ୍ୟକ୍ତ କରୁଥିଲେ ଓ ରାଜନୈତିକ ସ୍ତରରେ ସଚେତନ ଥିଲେ । ରାଜ୍ୟର ନାଗରିକମାନେ ନିଜର ଲକ୍ଷ୍ୟ, ସ୍ୱାର୍ଥ ଓ ପ୍ରଭାବକୁ ପ୍ରାଧାନ୍ୟ ଦେଉଥିଲେ ଓ ନିଜ ରାଜ୍ୟରେ ସେମାନେ କିପରି ଅଧିକ ଜନପ୍ରିୟତା ହାସଲ କରିବେ ସେଥିପାଇଁ କୌଶଳ ଅବଲମ୍ବନ କରୁଥିଲେ । ନିଜର ସ୍ୱାର୍ଥ ଓ ପ୍ରତିଷ୍ଠା ପାଇଁ ସେମାନଙ୍କୁ ବିଭିନ୍ନ କଳା-କୌଶଳ ଅବଲମ୍ବନ କରିବାକୁ ପଡୁଥିଲା ।

ଗ୍ରୀସ୍‌ର ପ୍ରତ୍ୟେକ ସହର ଓ ଗ୍ରାମ ଏକ ଏକ ସ୍ୱୟଂଶାସିତ ଗଣତାନ୍ତ୍ରିକ ରାଜ୍ୟରେ ପରିଣତ ହୋଇଥିଲା । ସେହି ସମୟରେ ଲୋକମାନଙ୍କର ପାରମ୍ପରିକ ପ୍ରଥା, ଧର୍ମବିଶ୍ୱାସ ପ୍ରତି ଅନେକ ଅନାସ୍ଥା ଭାବ ସୃଷ୍ଟି ହୋଇଥିଲା । ଗ୍ରୀସ୍‌ରେ ସେତେବେଳେ ଯେଉଁ ସବୁ ପୌରାଣିକ କାହାଣୀ, ଲୋକକଥା, ମିଥ୍ ଇତ୍ୟାଦି ପ୍ରଚଳିତ ଥିଲା ଲୋକମାନଙ୍କୁ ତାହା ନୈତିକ ଭାବଧାରାରେ ପ୍ରଭାବିତ କରୁନଥିଲା । ଏପରିକି ସମାଜରେ ରହିଥିବା ଅନୈତିକ କାର୍ଯ୍ୟକୁ ପୌରାଣିକ ଚରିତ୍ରମାନଙ୍କ ସହ ସଂଯୁକ୍ତ କରାଯାଉଥିଲା । ତେବେ ଗ୍ରୀସ୍‌ରେ ଯେଉଁ ଦାର୍ଶନିକ ବିଚାରର ଓ ଭୌତିକ ବିଜ୍ଞାନର ଭାବନାମାନ ସୃଷ୍ଟି ହେଲା ତାହା ପ୍ରଚଳିତ ଧାର୍ମିକ ବିଶ୍ୱାସକୁ ଆହ୍ୱାନ ଦେଲା । ଯୁଗ ଯୁଗର ପୌରାଣିକ ଓ ଅଲୌକିକ ବିଶ୍ୱାସମାନଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖାଗଲା । ଏହି ସମୟରେ ଗ୍ରୀସ୍‌ରେ ଦର୍ଶନର ଯେଉଁ ପରଂପରା ସୃଷ୍ଟି ହୋଇଥିଲା, ସେଥିରେ ବିଶ୍ୱର ପ୍ରାକୃତିକ ମୂଳ ତତ୍ତ୍ୱ ନେଇ ବିଚାରମାନଙ୍କର ଅବତାରଣା ହେଲା । ଅତୀତରେ ବିଶ୍ୱାସ ଥିଲା ଯେ ଏ ବିଶ୍ୱ କୌଣସି ଏକ ବା ଏକାଧିକ ଦୈବୀସତ୍ତାଙ୍କ ଦ୍ୱାରା ସମ୍ଭବ ହୋଇଛି । ଦାର୍ଶନିକ ସିଦ୍ଧାନ୍ତରେ ବିଶ୍ୱର ମୌଳିକ

ସତ୍ତା ଯେ "ପ୍ରାକୃତିକ ତତ୍ତ୍ୱ" ଏହି ଭାବନା ପ୍ରାଚୀନ ବିଶ୍ୱାସ ସକଳକୁ ପ୍ରତ୍ୟାଖ୍ୟାନ କଲା । ଆଲୌକିକ ବା ପାରଲୌକିକ ଦୈବୀ ସତ୍ତା ଉପରେ ଯେଉଁ ସାଧାରଣ ଲୋକବିଶ୍ୱାସ ରହିଥିଲା ତାହା ଦାର୍ଶନିକ ଭାବନାର ପ୍ରସାର ଦ୍ୱାରା ଅହେତୁକ ଓ ଅଯୌକ୍ତିକ ମନେହେଲା । ଅଧିକାଂଶ ଦାର୍ଶନିକ ପ୍ରକାଶ୍ୟରେ ହେଉ ବା ଗୋପନୀୟ ଭାବରେ ହେଉ ଲୋକବିଶ୍ୱାସରେ ରହିଥିବା ଧାର୍ମିକ ଭାବନା ସକଳକୁ ବିରୋଧ କରୁଥିଲେ । ଜନୋଫେନିସ୍ ବହୁଦେବବାଦ, ଅର୍ଥହୀନ କର୍ମକାଣ୍ଡ ଓ ସାମାଜିକ କୁସଂସ୍କାରର ବଡ ସମାଲୋଚକ ଥିଲେ । ତାଙ୍କ ବିଚାରଧାରା ହେରାକ୍ଲାଇଟସଙ୍କ ଭାବଧାରାରେ ଅଧିକ ପରିପୁଷ୍ଟ ହୋଇଥିଲା ଓ ସେ ବି ସଂସ୍କାରର ବାର୍ତ୍ତାକୁ ଦାର୍ଶନିକ ଭିତ୍ତି ଦେଇଥିଲେ । ଏହାପରେ ଡେମୋକ୍ରିଟସ ହେତୁବାଦୀ ଚେତନାର ପ୍ରସାରକୁ ଅଧିକ ଦୃଢ଼ କରିଥିଲେ । ବିଶାଳ ପ୍ରକୃତି ଓ ଜ୍ୟୋତିର୍ବିଜ୍ଞାନ ବା ଖଗୋଳୀୟ ଘଟଣା ସମୂହରୁ ମନୁଷ୍ୟ ମନରେ ଯେଉଁ ଭୟର ଭାବନା ସୃଷ୍ଟି ହେଉଛି ସେଥିରୁ ସେ ନାନା ଦୈବୀଶକ୍ତିର ପରିକଳ୍ପନା କରିଛି । ତେବେ ଜଣେ ସଚେତନ ବ୍ୟକ୍ତି କାଳ୍ପନିକ ଦୈବୀଶକ୍ତିର ବିଶ୍ୱାସରୁ ମୁକ୍ତ ରହିବା ଆବଶ୍ୟକ ବୋଲି ଡେମୋକ୍ରିଟସ ଭାବନା ସୃଷ୍ଟି କରିଥିଲେ । ଏହିପରି ଦେଖିବାକୁ ଗଲେ ଦାର୍ଶନିକ ଚିନ୍ତନ ମଧ ଦେଇ ଯେଉଁ ତର୍କଶୀଳ ଓ ହେତୁବାଦୀ ଚେତନାର ବିକାଶ ହୋଇଥିଲା ତାହା ଗ୍ରୀସ୍‌ର ସାମାଜିକ ଜୀବନକୁ ଗମ୍ଭୀର ଭାବରେ ପ୍ରଭାବିତ କରିଥିଲା । ଗଣତାନ୍ତ୍ରିକ ବିଚାର ମଧ ଦେଇ ସମାଜରେ ପରିବ୍ୟାପ୍ତ ଥିବା ସାମନ୍ତବାଦ ଆହ୍ୱାନର ସମ୍ମୁଖୀନ ହୋଇଥିଲା । ଯେତେ ସୀମିତ ଅର୍ଥରେ ହେଲେ ମଧ ଗ୍ରୀସ୍‌ର ନଗର ରାଜ୍ୟ ମାନଙ୍କରେ ଯେଉଁ ଗଣତନ୍ତ୍ର ସୃଷ୍ଟି ହୋଇଥିଲା ତାହା ଅଭିଜାତ ଗୋଷ୍ଠୀର ପ୍ରାଧାନ୍ୟକୁ କ୍ଷୁର୍ଣ୍ଣ କରିବାରେ ସହାୟକ ହୋଇଥିଲା । ସେହିପରି ଦାର୍ଶନିକ ପ୍ରଜ୍ଞା ମଧଦେଇ ଯେଉଁ ବୈଜ୍ଞାନିକ ପ୍ରକୃତିବାଦର ଭାବନା ଆସିଥିଲା ତାହା ସମାଜର ପ୍ରଚଳିତ ଧାର୍ମିକ ରକ୍ଷଣଶୀଳତା ଓ କୁସଂସ୍କାରକୁ ମଧ ଆହ୍ୱାନ ଦେଇଥିଲା । ସମାଜର ପ୍ରଚଳିତ ଧର୍ମବିଶ୍ୱାସ, ରକ୍ଷଣଶୀଳ ଦୃଷ୍ଟିଭଙ୍ଗୀ, ପରଂପରା, ନାନା କର୍ମକାଣ୍ଡ ଇତ୍ୟାଦି ବିରୁଦ୍ଧରେ ସାମାଜିକ ଚେତନାର ସ୍ୱର ଶାଣିତ ହେବାକୁ ଲାଗିଲା । ପରଂପରାକ୍ରମେ ଗ୍ରୀସ୍‌ର ଜନସାଧାରଣ ମଧରେ ରହିଆସିଥିବା ଧାର୍ମିକ ବିଶ୍ୱାସ ସକଳକୁ ବିଚାରଶୀଳ ଆଧାରରେ ପ୍ରଶ୍ନ କରାଗଲା । ଯେଉଁ ସବୁ ଭାବନାକୁ ପୁରୁଷାନୁକ୍ରମେ ଲୋକମାନେ ସତ୍ୟ ଓ ପରଂପରାକୁ ପବିତ୍ର ବୋଲି ମନେ କରୁଥିଲେ ସେସବୁକୁ ତର୍କଶୀଳତାର ଆଧାର ଉପରେ ପ୍ରଶ୍ନ କରାଗଲା । ଗଣ ପରିବର୍ତ୍ତେ ବ୍ୟକ୍ତି ହିଁ ପ୍ରାଧାନ୍ୟ ନେଲା । ବ୍ୟକ୍ତି ପ୍ରାଧାନ୍ୟ ନେବା ସହ ବ୍ୟକ୍ତିର କାମନା, ବାସନା, ସ୍ୱାର୍ଥ ଇତ୍ୟାଦି ମଧ ଜନମାନସରେ ପ୍ରସାରିତ ହେବାକୁ ଲାଗିଲା ।

ପାରଂପରିକ ପ୍ରଥା ଓ ଲୋକବିଶ୍ୱାସ ଯେତେବେଳେ ଟଳମଳ ସ୍ଥିତିକୁ ଆସିଲା, ସେହି ସନ୍ଧିକ୍ଷଣରେ ଯେଉଁ ବୁଦ୍ଧିଜୀବୀ ଗୋଷ୍ଠୀର ଉଦ୍ଭବ ହୋଇଥିଲା, ସେମାନେ ସଫିଷ୍ଟ ଭାବରେ ପରିଚିତ ହେଲେ । ସଫିଷ୍ଟମାନେ ଦାର୍ଶନିକ ଜିଜ୍ଞାସା କ୍ଷେତ୍ରରେ ଧୂରୀଣ ନଥିଲେ । କୌଣସି ସଫିଷ୍ଟ କିଛି ମୌଳିକ ଦାର୍ଶନିକ ତତ୍ତ୍ୱ ନିର୍ମାଣ କରି ନାହାନ୍ତି । ଗୋଟିଏ ଯୁଗର ବୈଚାରିକ ଦୃଷ୍ଟିଭଙ୍ଗୀ ଓ ନିଜ ସମୟର ପ୍ରଚଳିତ ଭାବଧାରାର ସେମାନେ ଥିଲେ ପ୍ରତିନିଧି । ସେମାନଙ୍କ ଚିନ୍ତାଧାରାରେ କିଛି ସାମଂଜସ୍ୟ ଓ ଅଧିକ୍ରମଣ (overlapping) ରହିବା ଦେଖାଯାଏ । ସେମାନେ ଥିଲେ ଏକ ବୃତ୍ତିଧାରୀ ଶ୍ରେଣୀ ଓ ସମାଜର ଏକ ସଚେତନ ଗୋଷ୍ଠୀ । କୌଣସି ବୈଚାରିକ ତତ୍ତ୍ୱ ବା ସିଦ୍ଧାନ୍ତ

ସେମାନେ ନିର୍ମାଣ କରିନାହାନ୍ତି । ସେମାନେ ଗ୍ରୀସ୍‌ର ବିଭିନ୍ନ ଅଞ୍ଚଳରେ ରହିଥିଲେ ଓ ଏପରିକି ପରସ୍ପର ଭିତରେ ବୃତ୍ତିଗତ ପ୍ରତିଦ୍ୱନ୍ଦ୍ୱିତା ମଧ୍ୟ ପୋଷଣ କରୁଥିଲେ । ତେବେ ସେମାନେ ଶିକ୍ଷା କ୍ଷେତ୍ରରେ ଅଗ୍ରଣୀ ଥିଲେ ଓ ଜନସାଧାରଣଙ୍କୁ ଶିକ୍ଷାଦେବା ସେମାନଙ୍କର ବୃତ୍ତି ପାଲଟିଥିଲା ।

ସେହି ସମୟର ଗ୍ରୀକ୍ ସମାଜରେ ସାଧାରଣ ଶିକ୍ଷା ପାଇଁ ଜନସଚେତନତା ସୃଷ୍ଟି ହୋଇଥିଲା । ନଗରରାଜ୍ୟରେ ପ୍ରତ୍ୟେକ ନାଗରିକଙ୍କର କିଛି ରାଜନୈତିକ ସଂପୃକ୍ତି ରହୁଥିଲା ଓ ଶିକ୍ଷା ପାଇଁ ଲୋକମାନଙ୍କ ଭିତରେ ଆଗ୍ରହ ସୃଷ୍ଟି ହେଉଥିଲା । ସର୍ବସାଧାରଣଙ୍କ ପାଇଁ ରାଜନୈତିକ କ୍ଷମତା ଓ ଅଧିକାର ମୁକ୍ତ ଥିଲା । ଯେହେତୁ ପ୍ରତ୍ୟକ୍ଷ ଗଣତନ୍ତ୍ର ପ୍ରତ୍ୟେକ ନଗରରାଜ୍ୟରେ ରହିଥିଲା, ତେଣୁ ନଗରରାଜ୍ୟର ଅଧିବାସୀମାନେ ଶିକ୍ଷା ପାଇଁ ଆଗ୍ରହୀ ଥିଲେ । ଜଣେ ବ୍ୟକ୍ତି ଯଦି ନିଜର ବୁଦ୍ଧି, ଭାଷଣ ଇତ୍ୟାଦିଦ୍ୱାରା ଅନ୍ୟମାନଙ୍କୁ ପ୍ରଭାବିତ କରିପାରୁଥିଲା, ତେବେ ସେ କ୍ଷମତାର ଅଧିକାରୀ ହେଉଥିଲା । ଏକ ନଗରରାଜ୍ୟରେ ରାଜନୈତିକ କ୍ଷମତାର ଶୀର୍ଷକୁ ଯିବାପାଇଁ ଜଣଙ୍କର ଭାଷଣ ଓ ବୁଦ୍ଧି ନିର୍ଣ୍ଣାୟକ ମନେ ହେଉଥିଲା । ଏଣୁ ସମସ୍ତେ ଶିକ୍ଷା ଲାଭ କରିବାକୁ ପ୍ରୟାସୀ ହେଉଥିଲେ । ସମାଜରେ ଏହି ଧାରଣା ସୃଷ୍ଟି ହୋଇଥିଲା ଯେ ନିଜର ଶିକ୍ଷାଦ୍ୱାରା ହିଁ ଜଣେ ଉଚ୍ଚ ପଦକୁ ଯାଇପାରିବ । ଲୋକମାନଙ୍କର ଏହି ଆଶା ଓ ସ୍ୱପ୍ନ ପୂରଣ କରିବା କ୍ଷେତ୍ରରେ ସଫିଷ୍ଟମାନେ ପ୍ରୟାସ କରୁଥିଲେ । ସଫିଷ୍ଟମାନେ ଜନରାଜ୍ୟରୁ ଜନରାଜ୍ୟକୁ ଯାଇ ଲୋକମାନଙ୍କ ଭିତରେ ଶିକ୍ଷା ଓ ସଚେତନତା ପ୍ରସାର କରିବାରେ ମୁଖ୍ୟ ଭୂମିକା ନେଉଥିଲେ । ସେମାନେ ନିଜର ବାଗ୍ମିତା ବଳରେ ଲୋକମାନଙ୍କୁ ପ୍ରଭାବିତ କରୁଥିଲେ, ଛାତ୍ର ଗ୍ରହଣ କରି ସେମାନଙ୍କୁ ଶିକ୍ଷା ଦେଉଥିଲେ ଓ ବିଭିନ୍ନ ବିତର୍କରେ ମୁଖ୍ୟ ଭୂମିକା ନିର୍ବାହ କରୁଥିଲେ । ସେମାନେ ଲୋକମାନଙ୍କୁ ଶିକ୍ଷା ଦେବା ପାଇଁ ସେମାନଙ୍କଠାରୁ ଅର୍ଥ ସଂଗ୍ରହ କରୁଥିଲେ । ବିଦ୍ୟାଦାନ ଓ ଲୋକଙ୍କ ଭିତରେ ଜ୍ଞାନର ପ୍ରସାର ପାଇଁ ସେମାନେ ବହୁ ପାରିଶ୍ରମିକ ଗ୍ରହଣ କରୁଥିଲେ । ସେମାନଙ୍କ ପୂର୍ବରୁ ଜ୍ଞାନଚର୍ଚ୍ଚା ପାଇଁ କେହି ବ୍ୟକ୍ତି ଲୋକମାନଙ୍କ ପାଖରୁ ପାରିତୋଷିକ ନେବାର ମନୋଭାବ ପୋଷଣ କରିନଥିଲେ । କିନ୍ତୁ ସଫିଷ୍ଟମାନେ ଜ୍ଞାନର ବିତରଣ ପାଇଁ ଓ ଶିକ୍ଷା ପ୍ରଦାନ କରିବାକୁ ପ୍ରଚୁର ପାରିତୋଷିକ ନେଉଥିଲେ । ଲୋକମାନଙ୍କର ଯେଉଁ ରାଜନୈତିକ ଅଭିଳାଷ ରହୁଥିଲା ଓ ଯେଉଁଥିପାଇଁ ସେମାନେ ଶିକ୍ଷାଲାଭ କରିବାକୁ ଆଗ୍ରହୀ ହେଉଥିଲେ ସେହି ଲକ୍ଷ୍ୟ ପୂରଣ ପାଇଁ ସଫିଷ୍ଟମାନେ ପ୍ରୟାସ କରୁଥିଲେ । ତେବେ ସଫିଷ୍ଟମାନେ ଲୋକମାନଙ୍କର ଆବଶ୍ୟକତାକୁ ଦୃଷ୍ଟିରେ ରଖି ବିଭିନ୍ନ ବିଷୟରେ ଲୋକମାନଙ୍କୁ ଶିକ୍ଷା ପ୍ରଦାନ କରିବାକୁ ପ୍ରଯତ୍ନ କରୁଥିଲେ । ଏହି ପ୍ରକ୍ରିୟାରେ ବିଭିନ୍ନ ସଫିଷ୍ଟମାନେ ବିଭିନ୍ନ ବିଷୟରେ ନିଜର ଦକ୍ଷତା ବୃଦ୍ଧି ପାଇଁ ପ୍ରୟାସୀ ଥିଲେ । ପ୍ରୋଟାଗୋରାସ ରାଜନୀତି କ୍ଷେତ୍ରରେ କିପରି ସଫଳତା ହାସଲ କରିବାକୁ ହେବ ବା ଜଣେ ନାଗରିକ ଭାବରେ ଜଣେ କିପରି ସଫଳ ଜୀବନ ବଞ୍ଚିପାରିବ ସେ ବିଷୟରେ ତାଙ୍କ ଛାତ୍ରମାନଙ୍କୁ ଶିକ୍ଷା ଦେଉଥିଲେ । ଜଣେ କିପରି ସୁବକ୍ତା ହୋଇପାରିବ ତାହାର କଳାକୌଶଳ ଗର୍ଗିଆସ ତାଙ୍କର ଛାତ୍ରମାନଙ୍କୁ ପ୍ରଶିକ୍ଷଣ ଦେଉଥିଲେ । ଭାଷା, ସାହିତ୍ୟ, ବ୍ୟାକରଣ ବିଷୟରେ ଲୋକମାନଙ୍କୁ ପ୍ରଡିକସ୍ ଶିକ୍ଷାପ୍ରଦାନ କରୁଥିଲେ ଓ ହିପିଆସ୍ ଇତିହାସ, ଗଣିତ ଓ ପଦାର୍ଥ ବିଜ୍ଞାନ ବିଷୟ ବୁଝାଉଥିଲେ । ମୁଖ୍ୟତଃ ସଫିଷ୍ଟମାନେ ଦାର୍ଶନିକ ସମସ୍ୟା ଉପରେ ଗମ୍ଭୀର

ଆଲୋଚନା ବା କୌଣସି ତାତ୍ତ୍ୱିକ ସିଦ୍ଧାନ୍ତର ଅବତାରଣା କରୁନଥିଲେ । ସେମାନେ କେବଳ ସମାଜର ସଚେତନ ବର୍ଗ ହିସାବରେ ଶିକ୍ଷାଦାନରେ ବ୍ରତୀ ଥିଲେ । ଜଣେ ଉତ୍ତମ ନାଗରିକ ହେବାକୁ କିମ୍ବା ଏକ ସଫଳ ଜୀବନର ଅଧିକାରୀ ହେବା ପାଇଁ ସଫିଷ୍ଟମାନଙ୍କ ପାଖରୁ ଶିକ୍ଷା ନେଉଥିଲେ । ଯାହାଙ୍କର ଯେଉଁ ବିଷୟରେ ରୁଚି ରହିଛି ସେ ସେହି ବିଷୟରେ କିପରି ଶୀର୍ଷକୁ ଯାଇପାରିବେ ବା ଏକ କୁଶଳୀ ବ୍ୟକ୍ତି ହୋଇପାରିବେ ଏହା ସଫିଷ୍ଟମାନେ ଦେଖୁଥିଲେ । ନାଗରିକମାନେ କିପରି ବିଶ୍ୱାସନୀୟ ବ୍ୟକ୍ତି ହେବା ସହ ନୈତିକ ଉତ୍କୃଷ୍ଟତା ହାସଲ କରିପାରିବେ ସଫିଷ୍ଟମାନେ ଏହାଉପରେ ପ୍ରାଧାନ୍ୟ ଦେଉଥିଲେ । ଉତ୍କର୍ଷକୁ ସେମାନେ କେବଳ ନୈତିକ ମାନଦଣ୍ଡ ଭିତରେ ସୀମିତ ନ ରଖି ଏହାକୁ ଏକ ବ୍ୟାପକ ଅର୍ଥରେ ପ୍ରୟୋଗ କରୁଥିଲେ । ଜଣେ ଚିକିତ୍ସକ କିପରି ଜଣେ ଉତ୍ତମ ଚିକିତ୍ସକ ହେବେ, ଜଣେ କାରିଗର କିପରି ନିଜ ବୃତ୍ତିରେ କୁଶଳତା ହାସଲ କରିପାରିବେ, ଅଶ୍ୱଚାଳନା ବିଷୟରେ ଶିକ୍ଷା ଦେଉଥିବା ବ୍ୟକ୍ତି କିପରି ଏ କ୍ଷେତ୍ରରେ ଭଲ ପ୍ରଶିକ୍ଷକ ହୋଇପାରିବେ ଏସବୁ ବିଷୟରେ ସଫିଷ୍ଟମାନେ ଲୋକମାନଙ୍କୁ ଶିକ୍ଷା ଦେଉଥିଲେ ।

ସମସାମୟିକ ଗ୍ରୀକ୍ ସମାଜରେ ଜଣେ ନାଗରିକ ପାଇଁ ରାଜନୈତିକ ସଫଳତା ବଡ ଲକ୍ଷ୍ୟ ରହିଥିଲା । ଏକ ନଗରରାଜ୍ୟରେ ରାଜନୈତିକ କ୍ଷମତାରେ ପ୍ରତିଷ୍ଠିତ ହେବା ଲୋକମାନଙ୍କ ପାଇଁ ଆକର୍ଷଣର ପ୍ରସଙ୍ଗ ଥିଲା । ଏଥି ପାଇଁ ଜଣଙ୍କର ବାଗ୍ମିତା ହିଁ ସଫଳତାର ବଡ ମାନଦଣ୍ଡ ଥିଲା । ଜଣେ ଯଦି ଭଲ ଭାଷଣ ଦେଇପାରୁଥିଲେ, ଯେକୌଣସି ପ୍ରସଙ୍ଗ ଉପରେ ନିଜର ଯୁକ୍ତି ଉପସ୍ଥାପନ କରୁଥିଲେ ତେବେ ସେ ଲୋକ ମାନଙ୍କର ଦୃଷ୍ଟି ଆକର୍ଷଣ କରିପାରୁଥିଲେ । ଜଣଙ୍କର ଯୁକ୍ତି କେତେ ତର୍କସଂଗତ ବା ତଥ୍ୟ ସମର୍ଥିତ ତାହା ଅପେକ୍ଷା ସେ କିପରି ଲୋକଙ୍କୁ ପ୍ରଭାବିତ କଲାପରି ଆଳଙ୍କାରିକ ଭାଷା ବ୍ୟବହାର କରିପାରୁଛନ୍ତି ତାହା ତାଙ୍କୁ ରାଜନୈତିକ ସଫଳତା ଆଣି ଦେଉଥିଲା । ଆଳଙ୍କାରିକ ଓ ସମ୍ମୋହନାତ୍ମକ ଭାଷା ବ୍ୟବହାର ନେଇ ସଫିଷ୍ଟମାନେ ମଧ୍ୟ ଶିକ୍ଷା ଦେଉଥିଲେ । ରାଜନୈତିକ ଲୋକମାନେ କ୍ଷମତା ପାଇଁ ବା ଜନସମର୍ଥନ ଲାଭ କରିବା ପାଇଁ କିପରି ଆବେଗପୂର୍ଣ୍ଣ ଭାବରେ ଲୋକମାନଙ୍କୁ ଆକର୍ଷିତ କରିପାରିବେ ଏହି 'କଳା' ଗ୍ରୀସ୍‌ର ସଫିଷ୍ଟମାନେ ବେଶ୍ ଜାଣିଥିଲେ ଓ ଏ ବିଷୟରେ ଛାତ୍ରମାନଙ୍କୁ ଶିକ୍ଷା ମଧ୍ୟ ଦେଉଥିଲେ । ସତ୍ୟ ଓ ସେବା ପ୍ରତି ପ୍ରତିବଦ୍ଧ ରହିବା ପରିବର୍ତ୍ତେ କ୍ଷମତାହାସଲ ପାଇଁ ସମ୍ମୋହନାତ୍ମକ ଭାଷାରେ ଧୂରୀଣ ହେବାକୁ ସେମାନେ ଛାତ୍ରମାନଙ୍କୁ ଶିକ୍ଷା ଦେଉଥିଲେ । ରାଜନୈତିକ ଲକ୍ଷ୍ୟପୋଷଣ କରୁଥିବା ଯୁବପିଢ଼ି ସତ୍ୟ, ନ୍ୟାୟ ଓ ମାନବିକ ମୂଲ୍ୟବୋଧ ପ୍ରତି ଆଗ୍ରହୀ ହେବା ପରିବର୍ତ୍ତେ ସମ୍ମୋହନାତ୍ମକ ଭାଷାଦ୍ୱାରା ଲୋକମାନଙ୍କୁ କିପରି ପ୍ରଭାବିତ କରିହେବ ଏହି କଳା ହାସଲ କରିବାକୁ ଆଗ୍ରହୀ ହେଉଥିଲେ । ଓକିଲମାନେ ଯେପରି ସତ୍ୟ, ନ୍ୟାୟକୁ ପ୍ରାଧାନ୍ୟ ନ ଦେଇ କେସ୍‌ରେ ଜିତିବାକୁ ଲକ୍ଷ୍ୟ ପୋଷଣ କରନ୍ତି, ସଫିଷ୍ଟମାନେ ସେହିପରି ଯେକୌଣସି ପ୍ରସଙ୍ଗ ଉପରେ ଯୁକ୍ତିର ଅବତାରଣା କରିପାରୁଥିଲେ । ସେମାନେ ଯେ କୌଣସି ବିଷୟକୁ ପ୍ରମାଣ କରିବାକୁ ଯୁକ୍ତି ଉପସ୍ଥାପନ କରୁଥିଲେ । ଏକ ମନ୍ଦ ବିଷୟକୁ ଭଲରେ ରୂପାନ୍ତରିତ କରିବା ବା କଳାକୁ ଧଳା କରିବାରେ ସେମାନେ ବେଶ୍ ପାରଙ୍ଗମ ଥିଲେ । କୌଣସି ବିଷୟରେ ପାଣ୍ଡିତ୍ୟ ହାସଲ କରିବା ପରିବର୍ତ୍ତେ ପ୍ରତ୍ୟୁତ୍ପନ୍ନମତି

ହୋଇ ଯେକୌଣସି ବିଷୟ ଉପରେ ଉତ୍ତର ଦେବାର କଳା ସେମାନଙ୍କୁ ବେଶ୍ ଜଣା ଥିଲା । ଭାଷାର ଚାତୁରୀ ଓ ଶବ୍ଦର ଖେଳ ଭିତରେ ଲୋକମାନଙ୍କୁ କିପରି ପ୍ରଭାବିତ କରିହେବ ଏହାର କଳା ସଫିଷ୍ଟମାନେ ବେଶ୍ ଜାଣିଥିଲେ । ଅର୍ଥାତ୍ ଖଳ-ଯୁକ୍ତି ପରିବେଷଣର କଳା ବା ସଫିଷ୍ଟ୍ରିର ଭାବନା ଗ୍ରୀସ୍‌ରୁ ହିଁ ସେ ଯୁଗରେ ସୃଷ୍ଟି ହୋଇଥିଲା । ପ୍ରତିପକ୍ଷକୁ ଗୋଲକଧନ୍ଦାରେ ପକାଇବା, ଅନ୍ୟକୁ ବିଭ୍ରାନ୍ତ କରିବା ଓ ସେମାନଙ୍କୁ ଶବ୍ଦଜାଲ ଭିତରେ ଛନ୍ଦି ସେମାନଙ୍କୁ ହତବମ୍ଭ କରିବାରେ ସଫିଷ୍ଟମାନେ ପାରଙ୍ଗମ ଥିଲେ । ଶବ୍ଦଜାଲ ଭିତରେ ଅନ୍ୟକୁ ଛନ୍ଦି ନିଜର ଯୁକ୍ତିକୁ କିପରି ପ୍ରତିଷ୍ଠା କରିହେବ ଏହି ପ୍ରସଙ୍ଗରୁ ଅନେକ "ତର୍କଦୋଷ" (fallacy) ର ଭାବନା ସୃଷ୍ଟି ହୋଇଥିଲା । ଏହି ସବୁ ଯୁକ୍ତି ଏତେ ପ୍ରଭାବଶାଳୀ ହେଉଥିଲା ଯେ ତର୍କଶାସ୍ତ୍ରରେ ପାରଦର୍ଶିତା ନଥିଲେ ଜଣେ ସହଜରେ ହତବମ୍ଭ ହୋଇଯିବ । ଅସଂଖ୍ୟ ଉଦାହରଣ ଓ ବହୁପ୍ରକାରର ତର୍କଦୋଷ ଭିତରୁ ଗୋଟିକର ଉଦାହରଣ ଏଠାରେ ଦିଆଯାଇପାରେ । ଜଣେ ତାଙ୍କ ପ୍ରତିପକ୍ଷଙ୍କୁ ପ୍ରଶ୍ନ କଲେ "ଆପଣ ମଦ ପିଇବା ଛାଡିଲେଣି ?" ଏହି ପ୍ରଶ୍ନର ଉତ୍ତର ସେ ହଁ ବା ନା ଯାହା କହିଲେ ବି ଯୁକ୍ତିଟି ତାଙ୍କ ବିରୁଦ୍ଧରେ ଯିବ । ସେ ଯଦି "ହଁ" କୁହନ୍ତି ଏହାର ତାତ୍ପର୍ଯ୍ୟ ହେବ ସେ ଆଗରୁ ମଦ୍ୟପାନ କରୁଥିଲେ, ଏବେ ଛାଡିଛନ୍ତି । ଯଦି "ନାଁ" କହନ୍ତି ତାହାର ତାତ୍ପର୍ଯ୍ୟ ହେବ ସେ ଏବେ ବି ମଦ୍ୟପାନ କରୁଛନ୍ତି । ଏହାକୁ ତର୍କଶାସ୍ତ୍ରର ପରିଭାଷାରେ "ବହୁପ୍ରଶ୍ନ ତର୍କଦୋଷ" କୁହାଯାଏ । ଏହିପରି ନାନା ପ୍ରକାରର ତର୍କଦୋଷର ଭାବନା ତର୍କଶାସ୍ତ୍ର ପରିସରରେ ଦେଖାଯାଏ । କୁହାଯାଏ ସଫିଷ୍ଟମାନେ ଯେଉଁ ଯୁକ୍ତି ପ୍ରୟୋଗକରି ପ୍ରତିପକ୍ଷକୁ ଅକ୍ଳେଶରେ ଗୋଲକଧନ୍ଦାରେ ପକାଉଥିଲେ, ପରେ ସେସବୁ ଉଦାହରଣରୁ ନାନା ପ୍ରକାରର 'ତର୍କଦୋଷ' ର ସୈଦ୍ଧାନ୍ତିକ ବିଚାର ତର୍କଶାସ୍ତ୍ରର ପରିସରରେ ଆଲୋଚନାର ପ୍ରସଙ୍ଗ ହେଲା । ପୁନଶ୍ଚ କୌଣସି ବିଷୟରେ ଅନ୍ୟମାନଙ୍କୁ ପ୍ରଭାବିତ କରିବାକୁ ସେମାନେ ଆଳଙ୍କାରିକ ଉପମା ମଧ୍ୟ ପ୍ରୟୋଗ କରୁଥିଲେ । ମୋଟ ଉପରେ ଜଣେ ଭଲ ବାଗ୍ମୀ କିପରି ହୋଇପାରିବ ସେଥିପାଇଁ ସଫିଷ୍ଟମାନେ ଶିକ୍ଷା ଦେଉଥିଲେ । ବାଗ୍ମିତାଶାସ୍ତ୍ରରେ ଧୂରୀଣ ଥିବା ବ୍ୟକ୍ତିମାନେ ପ୍ରାୟତଃ ସଫିଷ୍ଟ ଭାବେ ପରିଚିତ ହେଉଥିଲେ ।

ପୁନଶ୍ଚ ବ୍ୟକ୍ତିଗତ ଜୀବନରେ ଜଣେ ଭଲ ନାଗରିକ ହେବା ପାଇଁ କିମ୍ବା ସାର୍ବଜନୀନ କାର୍ଯ୍ୟରେ ବିବେକପୂର୍ଣ୍ଣ ଭାବରେ କାର୍ଯ୍ୟ କରିବାକୁ ସେମାନେ ଶିକ୍ଷା ଦେଉଥିଲେ । ସେମାନେ ଥିଲେ ସମାଜର ଏକ ବିଦ୍ୱାନ ଗୋଷ୍ଠୀ । ସାହିତ୍ୟ, ବ୍ୟାକରଣ, ରାଜନୀତି, ଦ୍ୱନ୍ଦ୍ୱନ୍ୟାୟ, ବାଗ୍ମିତାର କଳା, ନୈତିକତା ଇତ୍ୟାଦି ବହୁ ବିଷୟରେ ସେମାନେ ଶିକ୍ଷାପ୍ରଦାନ କରୁଥିଲେ । ଯେଉଁ ସଫିଷ୍ଟମାନେ ଭଲ ମଣିଷ ଥିଲେ ସେମାନେ ଉତ୍ତମ ଶିକ୍ଷା ପ୍ରଦାନ କରୁଥିଲେ, ପରନ୍ତୁ ଯେଉଁମାନେ କିଛିଟା ମନ୍ଦ ସ୍ୱଭାବର ଥିଲେ, ସେମାନେ ସ୍ୱାର୍ଥ ଦିଗରେ ଯୁବକମାନଙ୍କୁ ପ୍ରଭାବିତ କରୁଥିଲେ । ସେମାନେ ମୁଖ୍ୟତଃ ଯୁବକମାନଙ୍କୁ ଶିକ୍ଷା ଦେବା ସହ ନଗରରାଜ୍ୟ ମାନଙ୍କରେ ଭାଷଣ ଦେଉଥିଲେ । ସେମାନେ ଥିଲେ ଏକ ଭ୍ରମଣଶୀଳ ଗୋଷ୍ଠୀ ଯେଉଁମାନେ ରାଜ୍ୟକୁ ରାଜ୍ୟ ଭ୍ରମଣକରି ଯୁବକ ମାନଙ୍କୁ ଶିକ୍ଷା ଦେଉଥିଲେ । ସେମାନେ ନିଜ ରାଜ୍ୟରେ ହେଉ ବା ଅନ୍ୟ ରାଜ୍ୟରେ ହେଉ ଛାତ୍ରମାନଙ୍କୁ ନିଜର ପାଣ୍ଡିତ୍ୟ ଓ ବାଗ୍ମିତାଦ୍ୱାରା ଆକର୍ଷିତ କରୁଥିଲେ । ସଫିଷ୍ଟମାନଙ୍କ ବିଷୟରେ ଲୋକମାନେ ଭିନ୍ନ ଭିନ୍ନ ମତପୋଷଣ କରିବା ସାଧାରଣ ଘଟଣା

ଥିଲା । ସଫିଷ୍ଟମାନେ ନିଜର ଶାଣିତ ଯୁକ୍ତି ବା ବ୍ୟଙ୍ଗଦ୍ୱାରା ଯେକୌଣସି ପ୍ରଚଳିତ ବିଶ୍ୱାସ ବା ଭାବନାକୁ ସମାଲୋଚନା କରୁଥିଲେ । ଗ୍ରୀକ୍ ସମାଜରେ ବୟସ୍କ ବ୍ୟକ୍ତିମାନେ ଯେଉଁମାନେ ନିଜର ପରଂପରା, ଧାର୍ମିକ କର୍ମକାଣ୍ଡ ଓ ବିଶ୍ୱାସ ପ୍ରତି ଗଭୀର ଶ୍ରଦ୍ଧା ରଖିଥିଲେ ସେମାନେ ସଫିଷ୍ଟମାନଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ । ତେବେ ଯୁବକମାନେ ସଫିଷ୍ଟମାନଙ୍କ ପାଖରୁ ଭିନ୍ନ ଭିନ୍ନ ପ୍ରସଙ୍ଗ, ନୂତନ ଜ୍ଞାନ ଓ ଯୁକ୍ତିଶୀଳତା ଶିକ୍ଷା କରୁଥିବାରୁ ସେମାନଙ୍କ ପ୍ରତି ଆକୃଷ୍ଟ ହେଉଥିଲେ ଓ ସେମାନଙ୍କୁ ଯଥେଷ୍ଟ ସମ୍ମାନ କରୁଥିଲେ । ସେ ସମୟରେ ସଫିଷ୍ଟମାନେ ଥିଲେ ଜ୍ଞାନୀ, ଅନୁଭୂତିସଂପନ୍ନ ଓ ବେଶ୍ ବୁଦ୍ଧିମାନ ବ୍ୟକ୍ତି । ତେଣୁ ଯୁବକମାନେ ସେମାନଙ୍କ ପାଖକୁ ଯାଇ ଶିକ୍ଷାଲାଭ କରୁଥିଲେ ଓ ବିଶେଷ କରି ରାଜନୈତିକ ଅଭିଳାଷ ରଖିଥିବା ବ୍ୟକ୍ତିମାନେ ସଫିଷ୍ଟମାନଙ୍କର ପ୍ରଶଂସକ ଥିଲେ । ସଫିଷ୍ଟମାନେ ବିଭିନ୍ନ ନଗରରାଜ୍ୟକୁ ଯାଇ ଶିକ୍ଷା ପ୍ରଦାନ କରୁଥିଲେ ।

ମୋଟ ଉପରେ କହିବାକୁ ଗଲେ ସଫିଷ୍ଟମାନେ ହେଉଛନ୍ତି ଗ୍ରୀସ୍ ଜନରାଜ୍ୟମାନଙ୍କର ଏକ ଚିନ୍ତକ ବର୍ଗ । ଗ୍ରୀସ୍‌ରେ ଅନେକ ଜନରାଜ୍ୟ ରହିଥିଲା ଓ ପ୍ରତ୍ୟେକ ସହର ଓ ଗ୍ରାମ ଥିଲା ଏକ ଏକ ଜନରାଜ୍ୟ ଓ ସାର୍ବଭୌମ । ସଫିଷ୍ଟମାନେ ଥିଲେ ଭ୍ରାମ୍ୟମାଣ ଶିକ୍ଷା ପ୍ରଦାନକାରୀ ସଚେତନ ଗୋଷ୍ଠୀ । ସମସ୍ତ ସଫିଷ୍ଟମାନେ ସମ୍ମିଳିତ ଭାବରେ କୌଣସି ସୈଦ୍ଧାନ୍ତିକ ତତ୍ତ୍ୱ ନିର୍ମାଣ କରିନାହାନ୍ତି କିମ୍ବା କୌଣସି ସିଦ୍ଧାନ୍ତ କ୍ଷେତ୍ରରେ ସହମତି ବ୍ୟକ୍ତ କରିନାହାନ୍ତି । ସଫିଷ୍ଟମାନଙ୍କ ମଧ୍ୟରୁ ବ୍ୟକ୍ତିଗତ ଭାବରେ କେତେକ ଦାର୍ଶନିକ ଚିନ୍ତାର ଅବତାରଣା ହୁଏତ କରିଛନ୍ତି ତେବେ ସମସ୍ତେ "ସଫିଜମ୍" ନାମରେ କିଛି ଦାର୍ଶନିକ ସିଦ୍ଧାନ୍ତ ଦେଇ ନାହାନ୍ତି । "ସଫିଜମ୍" ଏହି ଦୃଷ୍ଟିରୁ ଏକ ଦାର୍ଶନିକ ତତ୍ତ୍ୱ ନୁହେଁ, କାରଣ ସେପରି କିଛି ଦାର୍ଶନିକ ସିଦ୍ଧାନ୍ତ ସଫିଜମ୍ ମଧ୍ୟ ଦେଇ ବିକଶିତ ହୋଇ ନାହିଁ । ତେବେ ଯେଉଁ କେତେଜଣ ସଫିଷ୍ଟ ବ୍ୟକ୍ତିଗତ ଭାବରେ କିଛି ଦାର୍ଶନିକ ମତର ଅବତାରଣା କରିଛନ୍ତି, ସେମାନଙ୍କ ବିଷୟରେ ଆମେ ଏଠାରେ ସଂକ୍ଷିପ୍ତ ଆଲୋଚନା କରିବା ।

(କ) ପ୍ରୋଟାଗୋରାସ (Protagoras)

ସଫିଷ୍ଟମାନଙ୍କ ମଧ୍ୟରେ ସବୁଠାରୁ ପ୍ରାଚୀନ ଓ ପରିଚିତ ଚିନ୍ତକ ହେଉଛନ୍ତି ପ୍ରୋଟାଗୋରାସ । ସଫିଷ୍ଟମାନଙ୍କ ମଧ୍ୟରେ ସେ ଅଧିକ ପ୍ରଭାବଶାଳୀ ଓ ମୌଳିକ ଚିନ୍ତାର ବ୍ୟକ୍ତି ଥିବା ଜଣାଯାଏ । ତାଙ୍କର ଜନ୍ମ ଅବଡେରାଠାରେ ଖ୍ରୀ.ପୂ. ୪୮୦ରେ ହୋଇଥିଲା ବୋଲି ଅନୁମାନ କରାଯାଏ । ସେ ଥିଲେ ଜ୍ଞାନପିପାସୁ ଓ କେତେକ ସ୍ଥାନକୁ ଯାଇ ସେ ଏଥେନ୍ସ ଜନରାଜ୍ୟରେ ଆସି ସ୍ଥାୟୀ ଭାବରେ ରହିଲେ । ସେ ସମୟରେ ଏଥେନ୍ସ ସମଗ୍ର ଗ୍ରୀସ୍‌ରେ ବୌଦ୍ଧିକ ଜଗତର କେନ୍ଦ୍ରବିନ୍ଦୁ ଥିଲା । ସେ ଥିଲେ ଏକ ବହୁମୁଖୀ ପ୍ରତିଭା । ଗ୍ରୀକ୍ ବ୍ୟାକରଣ ସେ ପ୍ରଥମେ ରଚନା କରିଥିବା ମନେହୁଏ । ଏହା ସହିତ ସେ ଗଣିତଜ୍ଞ ଓ ଦାର୍ଶନିକ ଭାବରେ ପରିଚିତ ଥିଲେ । ଏଥେନ୍ସରେ ଥିବା ସମୟରେ ତାଙ୍କୁ ଧର୍ମଦ୍ରୋହୀ ଓ ନାସ୍ତିକ ବୋଲି ଅଭିହିତ କରାଗଲା । ଏହାର କାରଣ ଥିଲା ସେ ଈଶ୍ୱରଙ୍କ ସମ୍ବନ୍ଧରେ ଏକ ପୁସ୍ତକର ଆରମ୍ଭରେ ଲେଖିଥିଲେ– "ଈଶ୍ୱରଙ୍କର ଅସ୍ତିତ୍ୱ ରହିଛି କି ରହିନାହିଁ ଏ ବିଷୟରେ ମୁଁ କିଛି କହିପାରିବି ନାହିଁ" । ତାଙ୍କର ଏହି ଲେଖା ପାଇଁ ତାଙ୍କ ବିରୁଦ୍ଧରେ ଅଭିଯୋଗର ବିଚାର ହେବା ପୂର୍ବରୁ ସେ

ଏଥେନ୍‌ସରୁ ଗୁପ୍ତରେ ଚାଲିଆସିଲେ ଓ ସିସିଲକୁ ଯିବା ବାଟରେ ସେ ଏକ ନଦୀରେ ବୁଡି ପ୍ରାଣତ୍ୟାଗ କଲେ । ଏହି ଘଟଣା ଖ୍ରୀ.ପୂ. ୪୧୦ରେ ହୋଇଥିବା ଅନୁମାନ କରାଯାଏ । ପ୍ଲେଟୋ ତାଙ୍କର ପ୍ରସିଦ୍ଧ କୃତି "ଡାଏଲଗ୍"ରେ 'ପ୍ରୋଟାଗୋରାସ'ଙ୍କ ଉପରେ ଲେଖିଥିବା ବର୍ଣ୍ଣନାରୁ ପ୍ରୋଟାଗୋରାସଙ୍କ ଅବଦାନ ବିଷୟରେ ଅନେକ କଥା ଜଣାଯାଏ ।

ପ୍ରୋଟାଗୋରାସଙ୍କ ସବୁଠାରୁ ଏକ ଉଲ୍ଲେଖନୀୟ ବକ୍ତବ୍ୟ ଉପରେ ଗ୍ରୀକ୍ ଦର୍ଶନର ଲେଖକ ମାନେ ବହୁ ପ୍ରାଧାନ୍ୟ ଦେଇଥାନ୍ତି । ସେ ବକ୍ତବ୍ୟଟି ହେଉଛି – "Man is the measure of all things; of what is, that it is; of what is not , that it is not" ଏହାର ତାତ୍ପର୍ଯ୍ୟ ହେଉଛି "ମନୁଷ୍ୟ ସବୁ କିଛିର ମାପଦଣ୍ଡ; କ'ଣ ଅଛି ବା କ'ଣ ନାହିଁ ଏହା ମନୁଷ୍ୟ ହିଁ ସ୍ଥିର କରିପାରିବ" । ପ୍ରୋଟାଗୋରାସଙ୍କର ସମଗ୍ର ଚିନ୍ତାମାନସ ଏହି ଏକକ ବକ୍ତବ୍ୟରେ ପ୍ରତିଫଳିତ ହୋଇଥିବା ଧରାଯାଏ । କେବଳ ପ୍ରୋଟାଗୋରାସ ନୁହନ୍ତି, ସମସ୍ତ ସଫିଷ୍ଟ ଏହି ଭାବଧାରାର ପ୍ରବକ୍ତା ବୋଲି ଗ୍ରହଣ କରାଯାଏ । ଏହାର ମହତ୍ତ୍ୱ ହେଉଛି ମନୁଷ୍ୟ ହିଁ ସବୁର ବିଚାରକ, ନିର୍ଣ୍ଣାୟକ ଓ ମାପକାଠି ।

ତେବେ ଏଠାରେ "ମନୁଷ୍ୟ" କହିଲେ ପ୍ରକୃତରେ ପ୍ରୋଟାଗୋରାସ କ'ଣ ବୁଝୁଥିଲେ ତାହାର ବ୍ୟାଖ୍ୟା ନେଇ ବହୁତ ବିବାଦୀୟ ମତ ମାନ ରହିଛି । ମନୁଷ୍ୟ କହିଲେ ସେ ବ୍ୟକ୍ତିକୁ ବୁଝୁଥିଲେ ନା ଏକ ଗୋଷ୍ଠୀ, ସମୁଦାୟ ବା ମନୁଷ୍ୟ ସମାଜକୁ ବୁଝୁଥିଲେ ତାହା ହିଁ ବିବାଦର ପ୍ରସଙ୍ଗ । କେତେକ ବ୍ୟାଖ୍ୟାକରଙ୍କ ମତରେ ସେ ମନୁଷ୍ୟ ଦ୍ୱାରା ବ୍ୟକ୍ତିକୁ ବୁଝୁ ନଥିଲେ, ବରଂ ଏହାକୁ ଏକ ବିଶେଷ ଅର୍ଥରେ ଗ୍ରହଣ କରୁଥିଲେ । ଅର୍ଥାତ୍ ବ୍ୟକ୍ତି ଯେଉଁ ସଂଗୋଷ୍ଠୀ ଭିତରେ ରହେ ବା ସମଗ୍ର ମନୁଷ୍ୟ ସମାଜର ଅନ୍ତର୍ଭୁକ୍ତ ତାହା ହିଁ ତାଙ୍କ ବକ୍ତବ୍ୟ "ମନୁଷ୍ୟ" ର ଅର୍ଥ । ଅନ୍ୟମାନଙ୍କ ମତରେ ମନୁଷ୍ୟ ମାନେ ସେ ବ୍ୟକ୍ତିକୁ ବୁଝୁଥିଲେ । ଯଦି ମନୁଷ୍ୟର ତାତ୍ପର୍ଯ୍ୟ ବ୍ୟକ୍ତି ହେବ – "ଯାହା ଆପଣଙ୍କ ପାଇଁ ସତ୍ୟ ପ୍ରତୀତ ହେବ ତାହା ଆପଣଙ୍କ ପାଇଁ ସତ୍ୟ; ଯାହା ମୋ ପାଇଁ ସତ୍ୟ ବୋଧ ହେବ, ତାହା ମୋ ପାଇଁ ସତ୍ୟ" । କିଛିର ସତ୍ୟତା ନିରୂପଣ କରିବା ପାଇଁ ମାନଦଣ୍ଡ କ'ଣ – ବ୍ୟକ୍ତି ନା ସମୂହ ? ଏହାକୁ ନେଇ ନାନା ମତ, ବ୍ୟାଖ୍ୟାର ଭାବନା ରହିଛି । ସେହିପରି ସବୁକିଛିର ମାପଦଣ୍ଡ (measure of all things) କହିଲା ବେଳେ "ସବୁକିଛି" ର ପ୍ରକୃତ ତାତ୍ପର୍ଯ୍ୟ କ'ଣ ? ଆମେ ସବୁକିଛିକୁ କିପରି ଜାଣୁ ? ଜାଣିବାର ପ୍ରକ୍ରିୟା କ'ଣ ? ଜ୍ଞାନର ଆଧାର ଆମର ଇନ୍ଦ୍ରିୟ ଆଧାରିତ ସମ୍ବେଦନ ନା ମସ୍ତିଷ୍କ ଆଧାରିତ ତର୍କବୁଦ୍ଧି ? ଏହି ପ୍ରସଙ୍ଗ ଉପରେ ଦର୍ଶନ ଇତିହାସରେ ବହୁ ବିତର୍କ ରହିଛି । ଗ୍ରୀକ୍-ଦର୍ଶନରୁ ଆରମ୍ଭ ହୋଇଥିବା ଏହି ପ୍ରସଙ୍ଗ ଉପରେ ଆଧୁନିକ ଯୁଗରେ ମଧ୍ୟ ଦୁଇଟି ସ୍ୱତନ୍ତ୍ର ଦାର୍ଶନିକ ଧାରା ଅନୁଭବବାଦ (empiricism) ଓ ତର୍କବୁଦ୍ଧିବାଦ (rationalism) ସୃଷ୍ଟି ହୋଇଛି । ତେବେ ପ୍ରୋଟାଗୋରାସଙ୍କ ପରିପ୍ରେକ୍ଷୀରେ ଓ ଗ୍ରୀକ୍ ଦର୍ଶନରେ ଜ୍ଞାନର ଆଧାର କ'ଣ – ଇନ୍ଦ୍ରିୟଜନିତ ସମ୍ବେଦନ ଅଥବା ଆମର ତର୍କବୁଦ୍ଧି ? ପ୍ରୋଟାଗୋରାସଙ୍କ ଉକ୍ତିରୁ କ'ଣ ନିଷ୍କର୍ଷ ଆସିପାରିବ– ଅର୍ଥାତ୍ ଜ୍ଞାନର ଭିତ୍ତି ଇନ୍ଦ୍ରିୟ ବା ତର୍କବୁଦ୍ଧି – ଏହି ପ୍ରସଙ୍ଗ ଉପରେ ବହୁ ବ୍ୟାଖ୍ୟା, ମତବାଦ ରହିଥିବା ମନେହୁଏ ।

ପ୍ରଥମେ ଦ୍ୱିତୀୟ ପ୍ରସଙ୍ଗଟିକୁ ବିଚାରକୁ ନିଆଯାଉ । ଅର୍ଥାତ୍ ଜ୍ଞାନର ଆଧାର କ'ଣ – ସମ୍ବେଦନ ବା

ତର୍କବୁଦ୍ଧି ? ପ୍ରାଚୀନ ଗ୍ରୀକ୍ ଦର୍ଶନରେ ବା ପ୍ରୋଟାଗୋରାସଙ୍କ ପୂର୍ବରୁ ପ୍ରତ୍ୟକ୍ଷରୁ ଆସୁଥିବା ସମ୍ବେଦନ (sensation) ଓ ଆମର ତର୍କବୁଦ୍ଧି (reason) ମଧ୍ୟରେ ପାର୍ଥକ୍ୟ କରାଯିବା ସୁବିଦିତ । ଇଲୀୟ ଦାର୍ଶନିକ ମାନେ ପ୍ରତ୍ୟକ୍ଷ ଓ ତର୍କବୁଦ୍ଧି ଭିତରେ ପ୍ରଥମେ ପାର୍ଥକ୍ୟର ସୂତ୍ରପାତ କରିଥିଲେ । ସେମାନେ ଭାବିଥିଲେ ଯେ ବିଶ୍ୱର ପରମ ତତ୍ତ୍ୱ ହେଉଛି ସତ୍ (Being) । ସତ୍‌କୁ ଆମେ କେବଳ ତର୍କବୁଦ୍ଧି ସାହାଯ୍ୟରେ ଜାଣିପାରିବା । ଇନ୍ଦ୍ରିୟଜନିତ ଜ୍ଞାନ ଭ୍ରମାତ୍ମକ ହେବାର ସମ୍ଭାବନା, କିନ୍ତୁ ବିଚାରବୁଦ୍ଧିଦ୍ୱାରା ନିର୍ଣ୍ଣିତ ଜ୍ଞାନ ଭ୍ରମାତ୍ମକ ହେବ ନାହିଁ । ସୁତରାଂ ସତ୍‌କୁ ଜାଣିବାକୁ ହେଲେ ତର୍କବୁଦ୍ଧିକୁ ଆଧାର କରିବାକୁ ହେବ । ସେହିପରି ହେରାକ୍ଲାଇଟସ ଭାବୁଥିଲେ ଯେ ସଂଭୂତି (Becoming) ହିଁ ସତ୍ୟ । ସଂସାରର ସବୁ କିଛି ପରିବର୍ତ୍ତନଶୀଳ, ପରିବର୍ତ୍ତନଶୀଳତା ହିଁ ସତ୍ୟ । ସବୁକିଛି ଯେ ପରିବର୍ତ୍ତନଶୀଳ ଓ ସଂଭୂତି ଯେ ବିଶ୍ୱର ନିୟମ ଏହା ଆମେ ତର୍କବୁଦ୍ଧିଦ୍ୱାରା ହିଁ ଜାଣିବାକୁ ସମର୍ଥ । ସେହିପରି ପରମାଣୁବାଦର ପ୍ରବକ୍ତା ଡେମୋକ୍ରିଟସଙ୍କ ମତରେ ବସ୍ତୁମାନଙ୍କର ଅନ୍ତିମ ତତ୍ତ୍ୱ ହେଉଛି ପରମାଣୁ ଯାହା ଏତେ ସୂକ୍ଷ୍ମ ଯେ ତାହା ଇନ୍ଦ୍ରିୟଦ୍ୱାରା ପ୍ରତ୍ୟକ୍ଷ ହୋଇପାରିବ ନାହିଁ । ପରମାଣୁ ବିଶ୍ୱର ମୂଳ ସତ୍ତା, ଯେଉଁଥିରୁ ସବୁକିଛିର ଉତ୍ପତ୍ତି ହୋଇଛି ଓ ଏହି ପରମାଣୁ ବିଷୟରେ ଆମେ କେବଳ ତର୍କବୁଦ୍ଧିଦ୍ୱାରା ଜାଣିବାକୁ ସମର୍ଥ । ବସ୍ତୁତଃ ପ୍ରୋଟାଗୋରାସଙ୍କ ପୂର୍ବରୁ ଗ୍ରୀସ୍‌ର ବିଶିଷ୍ଟ ଦାର୍ଶନିକ ମାନେ ପ୍ରତ୍ୟକ୍ଷ ଓ ତର୍କବୁଦ୍ଧି ମଧ୍ୟରେ ପାର୍ଥକ୍ୟ କରି ତର୍କବୁଦ୍ଧିକୁ ଜ୍ଞାନର ଆଧାର ଭାବରେ ନେଉଥିଲେ ।

ତେବେ ପ୍ରୋଟାଗୋରାସ ପ୍ରଥମେ ପ୍ରତ୍ୟକ୍ଷ ଓ ତର୍କବୁଦ୍ଧି ମଧ୍ୟରେ କରାଯାଉଥିବା ଏହି ପାର୍ଥକ୍ୟକୁ ଦର୍ଶାଇ ଏଥିରେ ରହିଥିବା ଜଟିଳତାକୁ ସ୍ପଷ୍ଟ କଲେ । ତର୍କବୁଦ୍ଧି ହେଉଛି ସାର୍ବିକ (universal), ସମ୍ବେଦନ ହେଉଛି ବ୍ୟକ୍ତିଗତ ପ୍ରତ୍ୟକ୍ଷ । ଯାହା ବ୍ୟକ୍ତିର ଇନ୍ଦ୍ରିୟଗତ ପ୍ରତ୍ୟକ୍ଷ ତାହା ଅନ୍ୟକୁ ହସ୍ତାନ୍ତର କରି ହେବ ନାହିଁ, ତାହା ଅକଥନୀୟ ବା ଅସଂଚାରଯୋଗ୍ୟ (incommunicable) । ଜଣେ ବ୍ୟକ୍ତିର ସମ୍ବେଦନ ବା ଉପଲବ୍ଧି ସଂପୂର୍ଣ୍ଣ ବ୍ୟକ୍ତିଗତ । କୌଣସି ବସ୍ତୁର ରଙ୍ଗକୁ ଆମେ ଯେପରି ପ୍ରତ୍ୟକ୍ଷ କରୁଛେ, ଆମର ସେହି ଅନୁଭୂତିକୁ ଆମେ ଜଣେ ରଙ୍ଗ-ଦୃଷ୍ଟିହୀନ ବ୍ୟକ୍ତିକୁ ହସ୍ତାନ୍ତର କରିପାରିବା ନାହିଁ । କୌଣସି ରଙ୍ଗକୁ ଆମେ ଯେପରି ପ୍ରତ୍ୟକ୍ଷ କରେ, ପ୍ରତ୍ୟକ୍ଷ କରିବାର ସାମର୍ଥ୍ୟ ନଥିବା ବ୍ୟକ୍ତିକୁ ଆମେ ଆମର ଅନୁଭୂତି ଦେଇପାରିବା ନାହିଁ । କିନ୍ତୁ ଆମର କୌଣସି ଭାବନା ବା ସିଦ୍ଧାନ୍ତ ଯେ କୌଣସି ବିଚାରଶୀଳ ବ୍ୟକ୍ତିକୁ ଆମେ କହିପାରିବା ବା ବୁଝାଇପାରିବା । ପୁନଶ୍ଚ ପ୍ରତ୍ୟକ୍ଷ କ୍ଷେତ୍ରରେ ବିଭିନ୍ନ ବ୍ୟକ୍ତିଙ୍କର ଅନୁଭବ ଭିନ୍ନ ଭିନ୍ନ ହେବା ସମ୍ଭବ । ଏକ ଶୀତଳ ଭଣ୍ଡାର ମଧ୍ୟରେ ଘଣ୍ଟାଟିଏ ରହି କାର୍ଯ୍ୟକରି ବାହାରକୁ ଆସିବା ପରେ ଜଣେ ବାହାରେ ବେଶ୍ ଉଷ୍ମ ଅନୁଭବ ପାଇପାରେ । ପରନ୍ତୁ ବାହାରେ ରହି କାର୍ଯ୍ୟ କରୁଥିବା ଜଣେ ବ୍ୟକ୍ତି ସମାନ ପରିବେଶରେ କିଛି ଗରମର ଅନୁଭୂତି ପାଇନଥାଏ । ବ୍ୟକ୍ତିଗତ ସମ୍ବେଦନ ଏକା ପରିବେଶରେ ଭିନ୍ନ ଭିନ୍ନ ଲୋକଙ୍କ ପାଇଁ ପୃଥକ୍ ହୋଇପାରେ । ଏକ ସମଦ୍ୱିବାହୁ ତ୍ରିଭୁଜର ଭୂମିର ଦୁଇ କୋଣ ସମାନ କି ବୋଲି ସନ୍ଦେହ ଆସିପାରେ । ହୁଏତ ଜଣେ ଏହାକୁ ଦେଖି ଦୁଇକୋଣ ସମାନ ଦେଖାଯାଉଛନ୍ତି ବୋଲି ମତ ଦେଇପାରନ୍ତି । ଅନ୍ୟ ଜଣେ ଗୋଟିଏ କୋଣ ସାମାନ୍ୟ ଅଧିକ ଥିବା ଅନୁଭବ କରିପାରନ୍ତି । ସାଧାରଣ

ଅନୁଭୂତିରେ ଏକ ବିଷୟର ପ୍ରତ୍ୟକ୍ଷ ଭିନ୍ନ ଭିନ୍ନ ହୋଇପାରେ । ତେବେ ଏକ ସମଦ୍ୱିବାହୁ ତ୍ରିଭୁଜର ସଂଲଗ୍ନ କୋଣ ଦ୍ୱୟ ଯେ ସମାନ ଏହାକୁ ଇଉକ୍ଲିଡୀୟ ଜ୍ୟାମିତିକ ନିୟମ ଅନୁସାରେ ପ୍ରମାଣ କରାଗଲା ପରେ ଏଥିରେ ସାମାନ୍ୟତମ ସନ୍ଦେହର ଅବକାଶ ରହେ ନାହିଁ । ସୁତରାଂ ଯାହା ତର୍କବୁଦ୍ଧିଦ୍ୱାରା ପ୍ରମାଣିତ ହୁଏ ତାହା ସାର୍ବିକ ଭାବେ ଗୃହୀତ ହୋଇଥାଏ, ପରନ୍ତୁ ଯାହା ଇନ୍ଦ୍ରିୟଜନିତ ସମ୍ବେଦନ ଆଧାରରେ ବ୍ୟକ୍ତ କରାଯାଏ ସେଥିରେ ସହମତି ରହିନପାରେ । ଏହାର କାରଣ ହେଉଛି ପ୍ରତ୍ୟେକ ବ୍ୟକ୍ତିର ସମ୍ବେଦନ ଏକ ବ୍ୟକ୍ତିଗତ ଅନୁଭବର ବିଷୟ । ବ୍ୟକ୍ତିର ପ୍ରତ୍ୟକ୍ଷ, ଅନୁଭବ, ସମ୍ବେଦନ ଇତ୍ୟାଦି କ୍ଷେତ୍ରରେ ସାର୍ବିକତା ରହିନପାରେ ଏବଂ ବ୍ୟକ୍ତିମାନଙ୍କ ପାଖରେ ଏହା ପୃଥକ୍ ହୋଇପାରେ । ପରନ୍ତୁ ଏକ ତର୍କବୁଦ୍ଧିଯୁକ୍ତ ସିଦ୍ଧାନ୍ତ କ୍ଷେତ୍ରରେ ପୂର୍ଣ୍ଣ ସହମତି ରହିପାରେ । ତର୍କବୁଦ୍ଧିଦ୍ୱାରା ଜଣେ ଯେଉଁ ସିଦ୍ଧାନ୍ତରେ ଉପନୀତ ହୁଅନ୍ତି ସେ ସେହି ସିଦ୍ଧାନ୍ତ ବିଷୟରେ ଅନ୍ୟମାନଙ୍କ ସହ ସହମତ ହୋଇପାରିବେ । କାରଣ ଏକ ତର୍କ ବୁଦ୍ଧି ଜନିତ ସିଦ୍ଧାନ୍ତ ବ୍ୟକ୍ତିଭିତ୍ତିକ ନୁହଁ, ଏହା ସାର୍ବଜନୀନ । ଜଣେ ଯେଉଁ ତର୍କବୁଦ୍ଧିର ସାହାଯ୍ୟ ନେଇ ଏକ ସିଦ୍ଧାନ୍ତ ପ୍ରକାଶ କରନ୍ତି, ସେହି ତର୍କବୁଦ୍ଧି ଯେ କେହି ବି ପ୍ରୟୋଗ କରିପାରିବେ ଓ ଏକା ସିଦ୍ଧାନ୍ତରେ ଉପନୀତ ହେବେ । ବସ୍ତୁତଃ ତର୍କବୁଦ୍ଧିର ପ୍ରୟୋଗ ସାର୍ବଜନୀନ ହେବାବେଳେ ସମ୍ବେଦନ ଏକ ବ୍ୟକ୍ତିଗତ ଅନୁଭୂତିକୁ ଦର୍ଶାଇଥାଏ । ସମ୍ବେଦନ ଓ ତର୍କବୁଦ୍ଧି ମଧ୍ୟରେ କରାଯାଉଥିବା ଏହି ପାର୍ଥକ୍ୟକୁ ପ୍ରୋଟାଗୋରାସ ସ୍ୱୀକାର କରନ୍ତି ନାହିଁ । ବରଂ ସେ ଯେଉଁ ସିଦ୍ଧାନ୍ତ ବା ଡିକ୍‌ଟମ ଦେଇଛନ୍ତି-ମନୁଷ୍ୟ ହେଉଛି ସବୁ କିଛିର ମାପଦଣ୍ଡ- ତାହାନୁଯାୟୀ ମନୁଷ୍ୟ ହେଉଛି ଜଣେ ବ୍ୟକ୍ତି । ସେ ମନୁଷ୍ୟକୁ ମାନବସମୂହ ଭାବରେ ଗ୍ରହଣ କରିନାହାନ୍ତି । ସବୁର ମାପଦଣ୍ଡର ତାତ୍ପର୍ଯ୍ୟ ହେଉଛି ଜଣେ ବ୍ୟକ୍ତିର ବୌଦ୍ଧିକ ସାମର୍ଥ୍ୟ । ବ୍ୟକ୍ତି ତାହାନୁଯାୟୀ ସତ୍ୟ ଜାଣିଥାଏ । ଜଣେ ବ୍ୟକ୍ତିର ସମ୍ବେଦନ ଓ ପ୍ରତ୍ୟକ୍ଷଣ ମୁଦ୍ରା (impression) ବ୍ୟତୀତ ତାହା ପାଇଁ ସତ୍ୟର ଅନ୍ୟ କିଛି ମାପଦଣ୍ଡ ରହିନପାରେ । ଯାହା ମୋ ସମ୍ବେଦନ ଓ ପ୍ରତ୍ୟକ୍ଷଣ ମୁଦ୍ରାନୁଯାୟୀ ମୋତେ ସତ୍ୟ ଜଣାଯାଉଛି ତାହା ମୋ ପାଇଁ ସତ୍ୟ । ଯାହା ଆପଣଙ୍କ ସମ୍ବେଦନ ଓ ପ୍ରତ୍ୟକ୍ଷଣ ମୁଦ୍ରାନୁଯାୟୀ ଆପଣଙ୍କୁ ସତ୍ୟ ବୋଧ ହେଉଛି ତାହା ଆପଣଙ୍କ ପାଇଁ ସତ୍ୟ ।

ସାଧାରଣତଃ ଦର୍ଶନ ପରିସରରେ ବ୍ୟକ୍ତିନିଷ୍ଠ ଅନୁଭୂତି ଓ ବସ୍ତୁନିଷ୍ଠ ସତ୍ୟତା ମଧ୍ୟରେ ପାର୍ଥକ୍ୟ ଓ ଚର୍ଚ୍ଚା ଦେଖିବାକୁ ମିଳେ । ବ୍ୟକ୍ତିନିଷ୍ଠତା ବ୍ୟକ୍ତିକୈନ୍ଦ୍ରିକ, ବସ୍ତୁନିଷ୍ଠତା ବସ୍ତୁକୈନ୍ଦ୍ରିକ ବୋଲି ଗ୍ରହଣ କରାଯାଏ । ମୁଁ ବର୍ତ୍ତମାନ ମୋ ସମ୍ମୁଖରେ ପୁସ୍ତକ ମାନଙ୍କୁ ଦେଖୁଛି ଓ ସେ ବିଷୟରେ ଭାବୁଛି- କହିବା ବେଳେ "ମୁଁ" ହେଉଛି ବ୍ୟକ୍ତି, ଯେ ଦେଖୁଛି ଓ ଚିନ୍ତା କରୁଛି । "ପୁସ୍ତକ" ହେଉଛି ବସ୍ତୁ । ଯେ ପ୍ରତ୍ୟକ୍ଷ କରେ, ଭାବେ, ଚିନ୍ତାକରେ ସେ ହେଉଛି ବ୍ୟକ୍ତି ବା କର୍ତ୍ତା । କର୍ତ୍ତା ହିଁ ପ୍ରତ୍ୟକ୍ଷକରେ ଓ ଚିନ୍ତାକରେ । ସେ ଯାହା ବିଷୟରେ ଚିନ୍ତାକରେ ତାହା ହେଲା ବସ୍ତୁ । ବ୍ୟକ୍ତିନିଷ୍ଠତା ବ୍ୟକ୍ତି ସହ ସମ୍ବନ୍ଧିତ, ବସ୍ତୁନିଷ୍ଠତା ବସ୍ତୁ ସହ ସଂପର୍କିତ । କୁହାଯାଏ ଯେ ବସ୍ତୁନିଷ୍ଠତା ବ୍ୟକ୍ତିଠାରୁ ପୃଥକ୍ ଓ ବ୍ୟକ୍ତିନିଷ୍ଠତା ବସ୍ତୁଠାରୁ ଭିନ୍ନ । ସମୁଦ୍ର କୂଳରେ ଛିଡା ହୋଇ ସମୁଦ୍ରର ଅନନ୍ତ ଜଳରାଶିକୁ ଦେଖିଲା ବେଳେ ମୋର ଅନୁଭବ ହୁଏ ଯେ ସମୁଦ୍ର ସୀମାହୀନ ଓ ଅନନ୍ତ । କିନ୍ତୁ ବସ୍ତୁନିଷ୍ଠ ଭାବରେ ସମୁଦ୍ରର ସୀମା ରହିଛି ଓ ଏହା ସୀମାହୀନ ନୁହେଁ । ସେହିପରି ଏକ ଟ୍ରେନରେ ଯାତ୍ରା କଲା ସମୟରେ ମୋତେ ପ୍ରତୀତ ହୁଏ ଯେ ମୁଁ ସ୍ଥିର

ରହିଛି, ଅଥଚ ବାହାରର ଗଛଲତା, ପାହାଡ, ଭୂମି ଗତିଶୀଳ । ତେବେ ଏହା ହେଉଛି ମୋର ଅନୁଭବ ବା ବ୍ୟକ୍ତିନିଷ୍ଠ ପ୍ରତ୍ୟକ୍ଷଣ ମୁଦ୍ରା (subjective impression) । କିନ୍ତୁ ବାସ୍ତବତା ହେଉଛି ଯେ ଟ୍ରେନ୍‌ଟି ଗତିଶୀଳ ଭାବରେ ଆଗକୁ ଯାଉଛି, ଅଥଚ ଗଛଲତା, ପାହାଡ ସବୁ ସ୍ଥିର ରହିଛନ୍ତି । ଯାହା ବସ୍ତୁନିଷ୍ଠ ଭାବରେ ସତ୍ୟ, ତାହାର ସ୍ୱତନ୍ତ୍ର ଅସ୍ତିତ୍ୱ ରହିଛି ଓ ତାହା ମୋଠାରୁ ଭିନ୍ନ । ତେବେ ବସ୍ତୁ ବିଷୟରେ ଆମେ କ'ଣ ଚିନ୍ତାକରୁଛେ କିମ୍ବା କେଉଁ ପ୍ରକାରର ପ୍ରତ୍ୟକ୍ଷଣ ମୁଦ୍ରା ଲାଭକରୁଛେ ତାହା ବସ୍ତୁଠାରୁ ପୃଥକ୍ । ଯାହା ବସ୍ତୁନିଷ୍ଠ ଭାବରେ ସତ୍ୟ, ତାହା ବ୍ୟକ୍ତିନିଷ୍ଠ ଅନୁଭୂତିଠାରୁ ଭିନ୍ନ । ଯାହା ବସ୍ତୁନିଷ୍ଠ ତାହା ହିଁ ସତ୍ୟ । ସତ୍ୟ ବସ୍ତୁରେ ନିହିତ, ଆମେ ସେହି ସତ୍ୟକୁ ଜ୍ଞାନ ମାଧ୍ୟମରେ ଜାଣୁ । ତେବେ ଆମେ କ'ଣ ଜାଣୁଛେ, ଚିନ୍ତାକରୁଛେ, ଅନୁଭବ କରୁଛେ ଆମର ଏହି ବ୍ୟକ୍ତିନିଷ୍ଠ ଭାବନାଠାରୁ ବସ୍ତୁନିଷ୍ଠତା ସଂପୂର୍ଣ୍ଣ ପୃଥକ୍ । ଅର୍ଥାତ୍ ବସ୍ତୁନିଷ୍ଠତା ଓ ବ୍ୟକ୍ତିନିଷ୍ଠତା ଭିତରେ ଏହି ଯେଉଁ ପାର୍ଥକ୍ୟ କରାଯାଏ, ପ୍ରୋଟାଗୋରାସ ସେହି ଭିନ୍ନତାକୁ ଅସ୍ୱୀକାର କରୁଛନ୍ତି । ବରଂ ତାଙ୍କ ବିଚାରରେ ବ୍ୟକ୍ତିଠାରୁ ପୃଥକ୍ ହୋଇ କୌଣସି ସତ୍ୟ ରହିନପାରେ । ବ୍ୟକ୍ତିକୁ ବାଦ୍ ଦେଇ ସତ୍ୟର ପରିକଳ୍ପନା ଅବାସ୍ତବ ଓ ଅସମ୍ଭବ । ଯାହା ବ୍ୟକ୍ତିକୁ ବାସ୍ତବ, ସତ୍ୟ ବୋଲି ପ୍ରତୀତ ହୁଏ ତାହା ହିଁ ବ୍ୟକ୍ତି ପାଇଁ ସତ୍ୟ । ସତ୍ୟ ବ୍ୟକ୍ତିନିଷ୍ଠ ବୋଲି ପ୍ରୋଟାଗୋରାସ ଭାବିଛନ୍ତି । ବ୍ୟକ୍ତିର ସମ୍ବେଦନ ଓ ପ୍ରତ୍ୟକ୍ଷଣ ମୁଦ୍ରା ଅନୁଯାୟୀ ବ୍ୟକ୍ତି ସତ୍ୟର ଉପଲବ୍ଧି ଲାଭ କରେ । ବସ୍ତୁନିଷ୍ଠ ସତ୍ୟତା ବୋଲି କିଛି ନାହିଁ । ମୋଟଉପରେ କହିଲେ ପ୍ରୋଟାଗୋରାସଙ୍କ ମତରେ ସତ୍ୟ ବ୍ୟକ୍ତିନିଷ୍ଠ, ବସ୍ତୁନିଷ୍ଠ ନୁହେଁ ।

ପ୍ରୋଟାଗୋରାସ ତର୍କବୁଦ୍ଧି ଓ ସମ୍ବେଦନ ମଧ୍ୟରେ କରାଯାଉଥିବା ପାର୍ଥକ୍ୟକୁ ଯେପରି ଅସ୍ୱୀକାର କରିଛନ୍ତି, ଠିକ୍ ସେହିପରି ବସ୍ତୁନିଷ୍ଠ ସତ୍ୟତା ଓ ବ୍ୟକ୍ତିନିଷ୍ଠ ପ୍ରତ୍ୟକ୍ଷଣ ମୁଦ୍ରା ମଧ୍ୟରେ ଥିବା ପାର୍ଥକ୍ୟକୁ ମଧ୍ୟ ସ୍ୱୀକାର କରିନାହାନ୍ତି । ସତ୍ୟ ଯେ ବ୍ୟକ୍ତିନିଷ୍ଠ ବା ବ୍ୟକ୍ତିଗତ ସମ୍ବେଦନର ବିଷୟ ଏହା କହିବାଦ୍ୱାରା ସେ ତର୍କବୁଦ୍ଧି ଓ ସମ୍ବେଦନ ମଧ୍ୟରେ ଥିବା ପାର୍ଥକ୍ୟ ଓ ବସ୍ତୁନିଷ୍ଠତା ଓ ବ୍ୟକ୍ତିନିଷ୍ଠତା ମଧ୍ୟରେ ଥିବା ପାର୍ଥକ୍ୟକୁ ଅସ୍ୱୀକାର କରିଛନ୍ତି । "ମନୁଷ୍ୟ ସବୁକିଛିର ମାପଦଣ୍ଡ" – ପ୍ରୋଟାଗୋରାସଙ୍କ ଏହି ଉକ୍ତିରୁ ତାଙ୍କର ବିଚାର ବ୍ୟକ୍ତିକୈନ୍ଦ୍ରିକ ହୋଇଉଠିଛି । ସେ ମଧ୍ୟ ବ୍ୟକ୍ତିର ମହତ୍ତ୍ୱକୁ ସ୍ୱୀକାର କରିଛନ୍ତି । ପରବର୍ତ୍ତୀ ସମୟର କେତେକ ଲେଖକ ପ୍ରୋଟାଗୋରାସଙ୍କ ଦର୍ଶନର ଭିନ୍ନ ବ୍ୟାଖ୍ୟା କରି "ମଣିଷ ସବୁର ମାପଦଣ୍ଡ" କହିଲା ବେଳେ ସେ ବ୍ୟକ୍ତିକୁ ନ ବୁଝି ସମଷ୍ଟିକୁ ନେଇଛନ୍ତି ବୋଲି ମତପ୍ରକାଶ କରିଥାନ୍ତି । ଏଠାରେ ବ୍ୟକ୍ତିବାଦ ପରିବର୍ତ୍ତେ ସମଷ୍ଟିବାଦର ବା ମାନବ ସମୁଦାୟର ଭାବନା ରହିଥିବା କେତେକ ଲେଖକ ଦର୍ଶାଇଛନ୍ତି । ତେବେ ପରବର୍ତ୍ତୀ ପର୍ଯ୍ୟାୟର ବ୍ୟାଖ୍ୟାକାରଙ୍କ ବ୍ୟାଖ୍ୟାନ ଅପେକ୍ଷା ପ୍ରୋଟାଗୋରାସଙ୍କ ପରେ ପରେ ଗ୍ରୀକ୍ ଦର୍ଶନରେ ଆବିର୍ଭାବ ହୋଇଥିବା ପ୍ଲେଟୋଙ୍କର ଭାବନା ଅଧିକ ଗ୍ରହଣ ଯୋଗ୍ୟ ମନେହୁଏ । ପ୍ଲେଟୋ ତାଙ୍କର ଏକ ଡାଏଲଗ୍‌ରେ ପ୍ରୋଟାଗୋରାସଙ୍କ ମତର ଉଲ୍ଲେଖ କରି ତାହାର ଗମ୍ଭୀର ସମାଲୋଚନା କରିଛନ୍ତି । ପ୍ରୋଟାଗୋରାସ ମନୁଷ୍ୟକୁ ଏକ ବ୍ୟକ୍ତିବାଦୀ ମାନଦଣ୍ଡରୁ ନେଇ ବ୍ୟକ୍ତିର ପ୍ରତ୍ୟକ୍ଷ ତା ପାଇଁ ସତ୍ୟ ବୋଲି ମତ ଦେଇଥିବା ପ୍ଲେଟୋ ଦର୍ଶାଇ ସେହି ମତର ନାନା ଦୁର୍ବଳତା ଦର୍ଶାଇଛନ୍ତି । ସେହିପରି ସକ୍ରେଟିସ୍ ମଧ୍ୟ ପ୍ରୋଟାଗୋରାସଙ୍କ

ଜ୍ଞାନ ସମ୍ବନ୍ଧୀୟ ବିଚାରର ଦୁର୍ବଳତା ଦେଖାଇଛନ୍ତି । ସମାନ ପବନ ବୋହୁଛି, ତେବେ ଭିନ୍ନ ଭିନ୍ନ ବ୍ୟକ୍ତି ଏଥିରୁ ଭିନ୍ନ ଭିନ୍ନ ଅନୁଭବ ଲାଭ କରୁଛନ୍ତି । ଏକା ପବନ ଜଣଙ୍କୁ ଅତ୍ୟନ୍ତ ଥଣ୍ଡା ଲାଗିପାରେ, ଅନ୍ୟ ଜଣକୁ ସାମାନ୍ୟ ଶୀତଳ ଅନୁଭବ ଦେଇପାରେ, ଅନ୍ୟ ଜଣଙ୍କ ଦେହ କାଲୁଆ ମାରିଯାଇପାରେ ଇତ୍ୟାଦି । ଏକା ପବନ କାହାକୁ ସାମାନ୍ୟ ଶୀତଳ ଲାଗିବ, ଅନ୍ୟଜଣଙ୍କୁ ଅତ୍ୟନ୍ତ ଥଣ୍ଡା ଲାଗିବା ଭିତରେ ଆମେ କ'ଣ କହିବା ଯେ ପବନ ଜଣଙ୍କ ପାଇଁ ଶୀତଳ ଓ ପ୍ରୀତିପଦ ଓ ଅନ୍ୟଜଣଙ୍କ ପାଇଁ ଅତ୍ୟନ୍ତ ଥଣ୍ଡା ଓ କଷ୍ଟଦାୟକ ? ପ୍ରୋଟାଗୋରାସଙ୍କ ଏହି ମତ ଯଥାର୍ଥ କି ବୋଲି ସକ୍ରେଟିସ୍ ପ୍ରଶ୍ନ ଉଠାଇଛନ୍ତି । ପ୍ରୋଟାଗୋରାସଙ୍କ ପରେ ପରେ ସକ୍ରେଟିସ୍ ଓ ପ୍ଲେଟୋଙ୍କର ଗ୍ରୀସରେ ଆବିର୍ଭାବ ହୋଇଥିବାରୁ ସେମାନେ ତାଙ୍କ ବିଚାରର ଯେଉଁ ଅଭିବ୍ୟକ୍ତି ଦେଇଛନ୍ତି ତାହା ଯେ ପ୍ରୋଟାଗୋରାସଙ୍କ ମତ, ଏହାକୁ ସନ୍ଦେହ କରାଯାଇନପାରେ ବୋଲି କୋପ୍ଲେଷ୍ଟୋନ ମତପୋଷଣ କରିଛନ୍ତି । (ପୃଷ୍ଠା ୮୮)

ପ୍ରୋଟାଗୋରାସ ମନୁଷ୍ୟଙ୍କୁ ବ୍ୟକ୍ତିବାଦୀ ମାନଦଣ୍ଡରୁ ବିଚାର କରିଥିବା ସିଦ୍ଧାନ୍ତକୁ ଅନେକ ଗ୍ରହଣ କରିଥାନ୍ତି । ସୁତରାଂ ତର୍କବୁଦ୍ଧି ଓ ବ୍ୟକ୍ତିଗତ ସମ୍ବେଦନ ଭିତରର ପାର୍ଥକ୍ୟ ହେଉ କିମ୍ବା ବସ୍ତୁନିଷ୍ଠ ସତ୍ୟ ଓ ବ୍ୟକ୍ତିନିଷ୍ଠ ଅନୁଭବ ଭିତରର ପାର୍ଥକ୍ୟ ହେଉ, ପ୍ରୋଟାଗୋରାସ ଏସବୁକୁ ଅସ୍ୱୀକାର କରିଛନ୍ତି । ସେହିପରି ସ୍ଥିତିରେ ବ୍ୟକ୍ତିଗତ ସମ୍ବେଦନ ବ୍ୟକ୍ତି ପାଇଁ ସତ୍ୟର ମାନଦଣ୍ଡ ମନେହେବ । ବ୍ୟକ୍ତିଗତ ସମ୍ବେଦନ ଭିନ୍ନ ଭିନ୍ନ ହେବା ଏକ ସ୍ୱାଭାବିକ ଧାରଣା । ଏହାର ତାତ୍ପର୍ଯ୍ୟ ହେବ ଯାହା ମୋ ଉପଲବ୍ଧିରେ ସତ୍ୟ, ତାହା ମୋ ପାଇଁ ସତ୍ୟ; ଯାହା ଆପଣଙ୍କ ସମ୍ବେଦନରେ ସତ୍ୟ, ତାହା ଆପଣଙ୍କ ପାଇଁ ସତ୍ୟ । ଆମର ସମ୍ବେଦନ ଓ ପ୍ରତ୍ୟକ୍ଷଣ ମୁଦ୍ରା କ୍ଷେତ୍ରରେ ଭିନ୍ନତା ରହିଲେ ଆମ ପାଇଁ ସତ୍ୟର ସ୍ୱରୂପ ଭିନ୍ନ ଭିନ୍ନ ହେବ । ଏପରି ସ୍ଥିତିରେ ପରସ୍ପରବିରୋଧୀ ବଚନମାନ ଏକା ସମୟରେ ସତ୍ୟ ବୋଲି ସ୍ୱୀକୃତ ହେବ । ପ୍ରୋଟାଗୋରାସ ଏହିପରି ମତ ଦେଇଛନ୍ତି ଯେ ପ୍ରତ୍ୟେକ ମତର ମହତ୍ତ୍ୱ ରହିଛି ଓ ସମସ୍ତ ମତ ସମାନ ଭାବରେ ସତ୍ୟ ହୋଇପାରନ୍ତି । ଏକ ବସ୍ତୁ ବା ଘଟଣା ବ୍ୟକ୍ତିଗତ ସମ୍ବେଦନ ଆଧାରରେ କାହାପାଇଁ ସତ୍ୟ ହୋଇପାରେ ଅନ୍ୟ କାହାପାଇଁ ମିଥ୍ୟା ହୋଇପାରେ । ଯାହା କ ପାଇଁ ସତ୍ୟ, ତାହା ଖ ପାଇଁ ମିଥ୍ୟା ହୋଇପାରେ, ଯାହା ଖ ପାଇଁ ସତ୍ୟ ତାହା ଗ ପାଇଁ ମିଥ୍ୟା ହୋଇପାରେ । ସେହିପରି କୁହାଗଲେ ସତ୍ୟ ଓ ମିଥ୍ୟା ମଧ୍ୟରେ କୌଣସି ନିର୍ଣ୍ଣାୟକ ମାନଦଣ୍ଡ ରହିପାରିବ ନାହିଁ । ପ୍ରୋଟାଗୋରାସ ଏକ ଅନେକାନ୍ତବାଦୀ ସିଦ୍ଧାନ୍ତର ଯେ ପ୍ରବକ୍ତା ରହିଥିଲେ ଏହା ତାଙ୍କର ବିଚାରରୁ ଜଣାପଡେ ।

ପ୍ରୋଟାଗୋରାସ ଏପରି ଏକ ସିଦ୍ଧାନ୍ତ ସ୍ଥାପନ କରିବାର କାରଣ ହୋଇପାରେ ଯେ ବିଭିନ୍ନ ବ୍ୟକ୍ତି ଏକ ବସ୍ତୁକୁ ଭିନ୍ନ ଭିନ୍ନ ଭାବରେ ଅବବୋଧ ବା ପ୍ରତ୍ୟକ୍ଷ କରିଥାନ୍ତି ଓ ଏପରିକି ଜଣେ ବ୍ୟକ୍ତି ଭିନ୍ନ ଭିନ୍ନ ସମୟରେ ଏକ ବସ୍ତୁ ସଂପର୍କରେ ପୃଥକ୍ ପୃଥକ୍ ସମ୍ବେଦନ ଲାଭ କରିଥାନ୍ତି । ଯଦି ଆମର ଜ୍ଞାନ ଆମର ସମ୍ବେଦନ ବା ଅନୁଭବ ଉପରେ ନିର୍ଭର କରେ ତେବେ କୌଣସି ବିଷୟରେ ନିର୍ଦ୍ଦିଷ୍ଟ ସତ୍ୟରେ ଉପନୀତ ହେବା ସମ୍ଭବ ନୁହେଁ । ପ୍ରୋଟାଗୋରାସଙ୍କର ଏହି ସିଦ୍ଧାନ୍ତ ହେରାକ୍ଲାଇଟସଙ୍କ ଦର୍ଶନଦ୍ୱାରା କେତେକାଂଶରେ ପ୍ରଭାବିତ ହେବା ମନେହୁଏ ।

ହେରାକ୍ଲାଇଟସଙ୍କ ମତରେ କୌଣସି କିଛି ସଂସାରରେ ନିତ୍ୟ ବା ଚିରସ୍ଥାୟୀ ନୁହେଁ, ସବୁ କିଛି ପରିବର୍ତ୍ତନଶୀଳ । ପ୍ରତ୍ୟେକ କିଛି ନିୟମିତ ବଦଳି ଚାଲିଛି । ବିକମିଙ୍ଗ୍ ବା ସଂଭବନ ହିଁ ସଂସାରର ନିୟମ । ଏହି ମୁହୂର୍ତ୍ତରେ ଏକ ବସ୍ତୁ ଯାହା ରହିଛି, ପର ମୁହୂର୍ତ୍ତରେ ତାହା ସମାନ ନାହିଁ, ସେଥିରେ କିଛି ପରିବର୍ତ୍ତନ ହୋଇଛି । ହେରାକ୍ଲାଇଟସଙ୍କର ଏହି ଭାବଧାରା ପ୍ରୋଟାଗୋରାସଙ୍କ ବିଚାର କ୍ଷେତ୍ରରେ ମଧ୍ୟ ପ୍ରତିଫଳିତ ହୋଇଛି । ଏକ ବସ୍ତୁ ଜଣଙ୍କ ପାଇଁ ସତ୍ୟ ହୋଇପାରେ, ଅନ୍ୟ ଜଣଙ୍କ ପାଇଁ ମିଥ୍ୟା ବି ହୋଇପାରେ । ତେଣୁ ଯାହାକୁ ଆମେ ଜ୍ଞାନ କହୁଛୁ ତାହାର ଯେ କୌଣସି ସାର୍ବଜନୀନତା ନାହିଁ ଏହା ହିଁ ପ୍ରୋଟାଗୋରାସ ପ୍ରତିଷ୍ଠା କରିବାକୁ ଚାହିଁଛନ୍ତି ।

ଏହି ପୃଷ୍ଠଭୂମିରେ ଅନ୍ୟ ଏକ ପ୍ରଶ୍ନ ଆସୁଛି ଯେ ନୈତିକ ପ୍ରସଙ୍ଗ ଉପରେ ପ୍ରୋଟାଗୋରାସ କ'ଣ ସିଦ୍ଧାନ୍ତ ଦେବେ ? ଯାହା ଇନ୍ଦ୍ରିୟ - ସମ୍ବେଦନ କ୍ଷେତ୍ରରେ କୁହାଯାଉଛି, ତାହା ନୈତିକ ପ୍ରଶ୍ନ ଉପରେ କୁହାଯାଇ ପାରିବ କି ? ମନୁଷ୍ୟ ସବୁର ପରିମାପକ କହିବା ବେଳେ ପ୍ରୋଟାଗୋରାସ ବ୍ୟକ୍ତିବାଦର ପ୍ରତିଷ୍ଠା କରିଥିବା ଗ୍ରୀକ୍ ଦର୍ଶନର ଇତିହାସ ଲେଖିଥିବା ଅଧିକାଂଶ ଲେଖକ ଦର୍ଶାଇଛନ୍ତି । ଯଦି ଆମର ସକଳ ଜ୍ଞାନ ପରିବର୍ତ୍ତନଶୀଳ, ତେବେ ଆମର ନୈତିକ ଶୃଂଖଳା ମାନ କ'ଣ ପରିବର୍ତ୍ତନଶୀଳ ? ଯଦି ଜ୍ଞାନ କ୍ଷେତ୍ରରେ ସାର୍ବଜନୀନତା ନାହିଁ, ତେବେ ନୈତିକ ମୂଲ୍ୟବୋଧ କ୍ଷେତ୍ରରେ ଏହା ରହିବା ସମ୍ଭବ କି ? ଯଦ ନୈତିକ ମୂଲ୍ୟଚୟକୁ ସାର୍ବିକ ଭାବରେ ସ୍ୱୀକାର କରାଯିବ, ତେବେ ଜ୍ଞାନକୁ କାହିଁକି ପରିବର୍ତ୍ତନଶୀଳ (flux) ବୋଲି ନିଆଯିବ ? ଏହି ପ୍ରସଙ୍ଗରେ ପ୍ରୋଟାଗୋରାସଙ୍କ ମତ ବିଷୟରେ କୁହାଯାଏ ଯେ ତାଙ୍କ ଦୃଷ୍ଟିରେ ନୈତିକ ଆଦର୍ଶମାନ ଆପେକ୍ଷିକ । ନୈତିକ ବିଧାନମାନ ଏକ ଜନରାଜ୍ୟ ପାଇଁ ଯେପର୍ଯ୍ୟନ୍ତ ଯଥାର୍ଥ ଓ ଉପଯୋଗୀ ମନେହୁଏ ତାହା ଏକ ରାଜ୍ୟରେ ପାଳିତ ହୁଏ । ତେବେ ତାହାର ଯଥାର୍ଥତା ତାର ଉପଯୋଗିତା ଉପରେ ନିର୍ଭର କରେ । ସେଥିରେ ପରିବର୍ତ୍ତନ ସମ୍ଭବ, ଏହି ମାନଦଣ୍ଡରେ ନୈତିକ ଆଦର୍ଶମାନ ନିରପେକ୍ଷ । ତେବେ ସମାଜର ପ୍ରାଜ୍ଞ ଓ ନୀତିମାନ ଲୋକମାନେ ସମାଜର ମଙ୍ଗଳ ଦୃଷ୍ଟିରୁ ଆଦର୍ଶମାନ ପ୍ରବର୍ତ୍ତନ କରିବା ଆବଶ୍ୟକ । ଯେଉଁ ପ୍ରଚଳିତ ବିଶ୍ୱାସ ବା ବିଧାନ ସମାଜର ଗୁଣାତ୍ମକ ବିକାଶ ପାଇଁ ପ୍ରତିବନ୍ଧକ, ସେସବୁ ପରିବର୍ତ୍ତନ କରିବା କ୍ଷେତ୍ରରେ ସମାଜର ପ୍ରାଜ୍ଞ ଲୋକମାନେ ପଥପ୍ରଦର୍ଶକ ହେବା ଦରକାର । ସମାଜର ବିଧାନମାନଙ୍କର ଏକ ନୈତିକ ଭିତ୍ତି ରହିବା ଦେଖାଯାଏ । ସମାଜର ଜ୍ଞାନୀ ଓ ଗୁଣୀଜନ ମାନେ ହିଁ ନଗରରାଜ୍ୟ ପାଇଁ ଉନ୍ନତ ଆଇନ ପ୍ରଚଳନ କରିପାରିବେ ।

ଜଣେ ଉତ୍ତମ ନାଗରିକ ହେବାକୁ ହେଲେ ବ୍ୟକ୍ତି ସମାଜର ପ୍ରଚଳିତ ପରଂପରା ଓ ଆଦର୍ଶକୁ ପାଳନ କରିବା ଆବଶ୍ୟକ । ନିଜର କର୍ତ୍ତବ୍ୟ ଓ ନ୍ୟାୟ ପ୍ରତି ପ୍ରତ୍ୟେକ ନାଗରିକ ପ୍ରତିବଦ୍ଧ ରହିବା ଦରକାର । ସେ ମଧ୍ୟ ଜଣେ ଶିକ୍ଷକ ଭାବରେ ତାଙ୍କର ଛାତ୍ରମାନଙ୍କୁ ଏହି ଶିକ୍ଷା ଦେଉଥିବା ଜଣାଯାଏ । ଉତ୍ତମ ନାଗରିକ ହେବା ପାଇଁ ଜୀବନରେ କର୍ତ୍ତବ୍ୟ ପରାୟଣ, ଶୃଂଖଳିତ ଓ ନ୍ୟାୟବାନ ହେବା ଉଚିତ । ଏକ ସୁଖମୟ ଜୀବନ ଅତିବାହିତ କରିବାକୁ ହେଲେ ଜଣେ କର୍ତ୍ତବ୍ୟପରାୟଣ ଓ ସୌନ୍ଦର୍ଯ୍ୟଲିପ୍‌ସୁ ହେବା ଆବଶ୍ୟକ ବୋଲି ସେ କହିଛନ୍ତି ।

ବ୍ୟକ୍ତିଗତ ବିଶ୍ୱାସରେ ପ୍ରୋଟାଗୋରାସ ଥିଲେ ସଂଶୟବାଦୀ ବା ଅଜ୍ଞେୟବାଦୀ । ଦେବ-ଦେବୀଙ୍କୁ ସେ ଅସ୍ୱୀକାର କରୁନଥିଲେ କିନ୍ତୁ ସେ ସବୁ ବିଷୟରେ ଆମର ଜ୍ଞାନ ସମ୍ଭବ ନଥିବାରୁ ସେ ସଂଶୟ ପୋଷଣ କରୁଥିଲେ । ଦାର୍ଶନିକ ପରିଭାଷାରେ ସେ ଥିଲେ ଆଗ୍ନୋଷ୍ଟିକ ବା ଅଜ୍ଞେୟବାଦୀ । ସଫିଷ୍ଟ ଭାବେ ପ୍ରୋଟାଗୋରାସ ଥିଲେ ଏକ ଆକର୍ଷଣୀୟ ବ୍ୟକ୍ତି । ସଫିଷ୍ଟ ବିଚାରଧାରାର ସେ ଥିଲେ ପଥ ପ୍ରଦର୍ଶକ ।

### (ଖ) ଗର୍ଗିଆସ (Gorgias)

ଗର୍ଗିଆସଙ୍କର ଜନ୍ମ ଖ୍ରୀ.ପୂ.୪୭୦ରେ ସିସିଲସ୍ଥିତ ଲିଓଣ୍ଟିନିଠାରେ ହୋଇଥିବା କୁହାଯାଏ । ତାଙ୍କ ପରିବାର ଏକ ସମୃଦ୍ଧ ପରିବାର ଥିଲା । ସେ ଏଂପୋଡୋକ୍ଲିସଙ୍କ ପାଖରୁ ଶିକ୍ଷାଲାଭ କରିଥିବା ଜଣାଯାଏ । ଗର୍ଗିଆସ ଜଣେ କବି ଥିଲେ ବୋଲି ଇତିହାସରେ ଉଲ୍ଲେଖ ରହିଛି । ସେ ମଧ୍ୟ ଜଣେ ଐତିହାସିକ ଥିଲେ ଓ ଜଣେ ଉଚ୍ଚକୋଟିର ବାଗ୍ମୀ ଥିଲେ । ସେ ବାଗ୍ମିତାଶାସ୍ତ୍ର ଉପରେ ପ୍ରଥମେ ଏକ ପୁସ୍ତକ ରଚନା କରିଥିବା ଜଣାଯାଏ । ସେ ତାଙ୍କର ବାଗ୍ମିତାଦ୍ୱାରା ସମସ୍ତଙ୍କୁ ବିମୁଗ୍ଧ କରିପାରିବା ତାଙ୍କ ବ୍ୟକ୍ତିତ୍ୱର ଆକର୍ଷଣୀୟ ଦିଗ ଥିଲା । ତାଙ୍କର ବାଗ୍ମିତା ଓ ପାଣ୍ଡିତ୍ୟ ପାଇଁ ତାଙ୍କ ପାଖକୁ ଅନେକ ଛାତ୍ର ଶିକ୍ଷା କରିବାକୁ ଆସୁଥିଲେ । ପରେ ସେ ଏଥେନ୍ସର ନାଗରିକ ହୋଇଥିଲେ ଓ ସେଠାରେ ମଧ୍ୟ ଅନେକ ଶିଷ୍ୟଙ୍କୁ ଶିକ୍ଷା ପ୍ରଦାନ କରିଥିଲେ ।

ପ୍ରୋଟାଗୋରାସ ଯେଉଁ ବ୍ୟକ୍ତିବାଦୀ ସିଦ୍ଧାନ୍ତର ଅବତାରଣା କରିଥିଲେ ତାହାର ଏକ ତାର୍କିକ ପରିଣାମ ଥିଲା ଯେ ବସ୍ତୁନିଷ୍ଠ ଜ୍ଞାନ ସମ୍ଭବ ନୁହେଁ । ଅର୍ଥାତ୍ ଯଦି ସତ୍ୟ ବସ୍ତୁନିଷ୍ଠ ନୁହେଁ, ତେବେ ଜ୍ଞାନ ମଧ୍ୟ ସମ୍ଭବ ନୁହେଁ । ଗର୍ଗିଆସ ପ୍ରୋଟାଗୋରାସଙ୍କର ଏହି ସିଦ୍ଧାନ୍ତକୁ ଏକ ଦ୍ୱନ୍ଦ୍ୱାତ୍ମକ ସ୍ଥିତିକୁ ନେଇ ଜ୍ଞାନମୀମାଂସା କ୍ଷେତ୍ରରେ ଏକ ସଂଶୟବାଦ ପ୍ରତିଷ୍ଠା କରିଥିଲେ । ତାଙ୍କର ସଂଶୟବାଦକୁ ଜେନୋଙ୍କ ଦର୍ଶନ ମଧ୍ୟ ଗଭୀର ପ୍ରଭାବିତ କରିଥିଲା । ଗର୍ଗିଆସଙ୍କର ସଂଶୟବାଦ କ୍ଷେତ୍ରରେ ତିନୋଟି ମୌଳିକ ପ୍ରସଙ୍ଗ ଆସିଥିଲା, ଯଥା (୧) କୌଣସି ବସ୍ତୁର ଅସ୍ତିତ୍ୱ ନାହିଁ (୨) ଯଦି ବି କିଛିର ଅସ୍ତିତ୍ୱ ଥାଏ ତାହା ବୋଧଗମ୍ୟ ନୁହେଁ ଅର୍ଥାତ୍ ତାହାକୁ ଜାଣିବା ସମ୍ଭବ ନୁହେଁ (୩) ଯଦି ବି ଏହାକୁ ଜାଣିହୁଏ, ତେବେ ସେହି ଜ୍ଞାନ ଅନ୍ୟକୁ ଦେଇ ହେବ ନାହିଁ ।

ଗର୍ଗିଆସଙ୍କର ପ୍ରଥମ ବଚନ ଥିଲା- କିଛିର ଅସ୍ତିତ୍ୱ ନାହିଁ । ଇଲିୟାର ଦାର୍ଶନିକ ଜେନୋ ଓ ପାର୍ମେନିଡୀସଙ୍କ ସିଦ୍ଧାନ୍ତ ଗର୍ଗିଆସଙ୍କୁ ପ୍ରଭାବିତ କରିଥିଲା । ଜେନୋ ବିବିଧତା ଓ ଗତିଶୀଳତାକୁ ତାଙ୍କ ଦାର୍ଶନିକ ସିଦ୍ଧାନ୍ତ କ୍ଷେତ୍ରରେ ଅସ୍ୱୀକାର କରିଛନ୍ତି । ତାହା ପଶ୍ଚାତରେ ପାର୍ମେନିଡୀସଙ୍କର ସତ୍‌ର ଭାବନା ରହିଥିଲା । ପାର୍ମେନିଡୀସ ଯାହା ଅପରିବର୍ତ୍ତନୀୟ, ଶାଶ୍ୱତ ତାହାକୁ ସତ୍ ବୋଲି ନେଇଛନ୍ତି ଓ ସଂଭୂତିକୁ ଅସତ୍ ବୋଲି ଗ୍ରହଣ କରିଛନ୍ତି । ଜେନୋ ସଂଶୟବାଦୀ ଭାବେ ବିବିଧତା ଓ ଗତିଶୀଳତାକୁ ଅସ୍ୱୀକାର କରିନାହାନ୍ତି । ବରଂ ଗତିଶୀଳତା ଓ ବିବିଧତା କ୍ଷେତ୍ରରେ ଯେଉଁ ବିରୋଧାଭାସ ଦେଖିଛନ୍ତି ତାହାର ନିରାକରଣ କରିବାକୁ ଯାଇ ତାଙ୍କ ସିଦ୍ଧାନ୍ତର ଅବତାରଣା କରିଛନ୍ତି । ତେବେ ଜେନୋଙ୍କର ଦ୍ୱନ୍ଦ୍ୱ ତର୍କକୁ ପ୍ରୟୋଗ କରି ଗର୍ଗିଆସ ତାଙ୍କର ସିଦ୍ଧାନ୍ତ ନିର୍ମାଣ କରିଛନ୍ତି । ଗର୍ଗିଆସଙ୍କ

ମତରେ ଯାହାର ଅସ୍ତିତ୍ୱ ରହିଛି ତାହାର ଏକ ଆରମ୍ଭ ରହିଛି । ଏହାର ଅସ୍ତିତ୍ୱ ସତ୍‌ରୁ କିମ୍ବା ଅସତ୍‌ରୁ ଆରମ୍ଭ ହୋଇଥିବ । ଯଦି ଏହାର ଉତ୍ପତ୍ତି ସତ୍‌ରୁ ତେବେ ଏହାର ଆରମ୍ଭ ନାହିଁ । ଯାହା ସତ୍ ତାହା ଚିରନ୍ତନ ହୋଇଥିବାରୁ ତାହାର ଆରମ୍ଭ ନଥାଏ । ଯଦି ଏହାର ଉତ୍ପତ୍ତି ଅସତ୍‌ରୁ ହୋଇଛି ବୋଲି ଧରାଯିବ, ଏହା ମଧ୍ୟ ସମ୍ଭବ ହେବ ନାହିଁ । କାରଣ କିଛି ଅସତ୍‌ରୁ ଉଦ୍‌ଭବ ହେବ ନାହିଁ । ଏହାର ଆରମ୍ଭ ଯଦି ସତ୍‌ରୁ ନୁହେଁ କିମ୍ବା ଅସତ୍‌ରୁ ନୁହେଁ, ତେବେ ଏହାର ସ୍ଥିତି ଅଛି ବୋଲି କିପରି କୁହାଯିବ ? ଏହାର ଉତ୍ପତ୍ତି ସତ୍ ଓ ଅସତ୍ ଉଭୟରୁ ହୋଇଛି ବୋଲି ମଧ୍ୟ କୁହାଯାଇ ପାରିବ ନାହିଁ । କାରଣ ସତ୍ ଓ ଅସତ୍‌ର ସମ୍ମିଶ୍ରଣ ସମ୍ଭବ ହିଁ ନୁହେଁ । ସୁତରାଂ ଯଦି କିଛି ସତ୍‌ରୁ, ବା ଅସତ୍‌ରୁ ବା ଉଭୟ ସତ୍-ଅସତ୍‌ରୁ ଉଦ୍‌ଭବ ନୁହେଁ ତେବେ ଏହାର ଯେ ଅସ୍ତିତ୍ୱ ରହିଛି ତାହା କୁହାଯାଇପାରିବ ନାହିଁ । ତେଣୁ କୌଣସି ବସ୍ତୁର ଅସ୍ତିତ୍ୱ ହିଁ ନାହିଁ ।

ଗର୍ଗିଆସଙ୍କର ଦ୍ୱିତୀୟ ସୂତ୍ରଟି ହେଉଛି - ଯଦି ବି କିଛିର ଅସ୍ତିତ୍ୱ ଥାଏ ତାହା ଆମ ପାଇଁ ବୋଧଗମ୍ୟ ନୁହେଁ । ସଫିଷ୍ଟମାନେ ଜ୍ଞାନ କ୍ଷେତ୍ରରେ କେବଳ ଇନ୍ଦ୍ରିୟଜନିତ ସମ୍ବେଦନକୁ ପ୍ରାଧାନ୍ୟ ଦିଅନ୍ତି ଓ କୌଣସି ପ୍ରତ୍ୟୟ ନିର୍ମାଣକୁ ସ୍ୱୀକାର କରନ୍ତି ନାହିଁ । ବିନା ପ୍ରତ୍ୟୟ ନିର୍ମାଣରେ କିଛିକୁ ଜାଣିହେବ କି ? ଆମର ସମ୍ବେଦନ ବା ଅନୁଭୂତି ପରସ୍ପରଠାରୁ ଭିନ୍ନ । ଏପରିକି ଜଣେ ବ୍ୟକ୍ତିଙ୍କର ସମ୍ବେଦନ ବିଭିନ୍ନ ସମୟରେ ମଧ୍ୟ ପୃଥକ୍ । ଏକ ବସ୍ତୁକୁ ସମସ୍ତେ ସମାନ ଭାବରେ ପ୍ରତ୍ୟକ୍ଷଣ କରନ୍ତି ନାହିଁ କିମ୍ବା ଜଣେ ବ୍ୟକ୍ତି ମଧ୍ୟ ଭିନ୍ନ ଭିନ୍ନ ସମୟରେ ଏକ ପ୍ରକାର ଭାବରେ ପ୍ରତ୍ୟକ୍ଷ କରି ନଥାନ୍ତି । ସୁତରାଂ ବସ୍ତୁର ପ୍ରକୃତ ସ୍ୱରୂପ ବିଷୟରେ ଆମେ ଜାଣିବା ସମ୍ଭବ ନୁହେଁ । ପୁନଶ୍ଚ ଯେଉଁ ବସ୍ତୁକୁ ଆମେ ଦେଖିପାରୁ ତାହା ଆମ ଦୃଷ୍ଟିର ବିଷୟ, ଯାହାକୁ ଆମେ ସ୍ପର୍ଶ କରୁ ତାହା ଆମ ସ୍ପର୍ଶର ବିଷୟ । ତେବେ ଯାହାକୁ ଦେଖି ହେବ ନାହିଁ କିମ୍ବା ଯାହାକୁ ସ୍ପର୍ଶ କରିହେବ ନାହିଁ, ତାହାକୁ ଆମେ ଚିନ୍ତା କରିପାରୁ ବୋଲି କୁହାଯାଇପାରେ । ପକ୍ଷୀ ଥିବା ଅଶ୍ୱ, ହାତୀ ମୁଣ୍ଡ ଥିବା ମନୁଷ୍ୟ ବିଷୟରେ ଆମେ ଭାବିପାରୁ ତେବେ ଏହି ସବୁ ଭାବନା କେବଳ କଳ୍ପନା ଓ ଅସ୍ତିତ୍ୱବିହୀନ । ଯାହା କେବେ ବି ପ୍ରତ୍ୟକ୍ଷଣର ବିଷୟ ନୁହେଁ ତାହାର ଅସ୍ତିତ୍ୱ ରହିବା କହିବାର କିଛି ଅର୍ଥ ନଥାଏ । ସୁତରାଂ ଯଦି ବି କିଛିର ଅସ୍ତିତ୍ୱ ଥାଏ ତେବେ ତାହା ଆମ ବୋଧଗମ୍ୟର ବିଷୟ ନୁହେଁ ବା ତାହାକୁ ଜାଣିବା ସମ୍ଭବ ନୁହେଁ ।

ଗର୍ଗିଆସଙ୍କର ତୃତୀୟ ବଚନଟି ହେଉଛି -ଯଦି ବି କିଛିକୁ ବୋଧଗମ୍ୟ କରିହୁଏ ତେବେ ସେହି ଜ୍ଞାନକୁ ଆମେ ଅନ୍ୟ ପାଖକୁ ସଂଚାର କରିପାରିବା ନାହିଁ । ଆମ ଜ୍ଞାନର ଆଧାର ହେଉଛି ଆମର ଇନ୍ଦ୍ରିୟଜନ୍ୟ ସମ୍ବେଦନ । ତେବେ ପ୍ରତ୍ୟେକ ବ୍ୟକ୍ତିର ଅନୁଭୂତି, ସମ୍ବେଦନ ତାର ନିଜସ୍ୱ ବ୍ୟାପାର । ଜଣେ ନିଜର ଅନୁଭୂତିକୁ ଅନ୍ୟକୁ ଦେଇ ପାରିବ ନାହିଁ । ସେହିପରି ଦୃଷ୍ଟିର ବିଷୟ ଚକ୍ଷୁଦ୍ୱାରା ଜ୍ଞେୟ ଓ ଶବ୍ଦର ବିଷୟ ଶ୍ରବଣଦ୍ୱାରା ଜ୍ଞେୟ । ଚକ୍ଷୁଦ୍ୱାରା ଶବ୍ଦକୁ ଜାଣିହେବ ନାହିଁ କିମ୍ବା ଶବ୍ଦର ବିଷୟକୁ ଦୃଷ୍ଟିଦ୍ୱାରା ଜାଣିବା ସମ୍ଭବ ନୁହେଁ । ଆମେ ଯାହାକୁ କିଛି ଜଣାଇବାକୁ ଚାହିଁବା କେବଳ ଆମର ଶବ୍ଦ ଦ୍ୱାରା ଜଣାଇ ପାରିବା । କିନ୍ତୁ ଶବ୍ଦଦ୍ୱାରା ଆମର ଚକ୍ଷୁଦ୍ୱାରା ଦୃଶ୍ୟ, ସ୍ପର୍ଶଦ୍ୱାରା ସମ୍ବେଦନ ଇତ୍ୟାଦି ଅନ୍ୟକୁ ଜଣାଇବା ସମ୍ଭବ ନୁହେଁ । ମୋଟ ଉପରେ କହିଲେ ଜଣେ ନିଜର ସମ୍ବେଦନଦ୍ୱାରା

ଯାହା ଜାଣେ ତାହା ତାର ବ୍ୟକ୍ତିଗତ ଉପଲବ୍ଧି, ତାହା ଅନ୍ୟକୁ ଜଣାଇବା କେବେ ସମ୍ଭବ ହୋଇପାରିବ ନାହିଁ। ସୁତରାଂ ଯାହା ବି ଆମେ ବୋଧଗମ୍ୟ କରିପାରିବା, ଆମେ ତାହା ଅନ୍ୟକୁ ଦେଇପାରିବା ନାହିଁ।

ଗର୍ଗିଆସଙ୍କର ଏହି ସବୁ ମତକୁ କେତେକ ଏକପ୍ରକାର ଦାର୍ଶନିକ ନାସ୍ତିକବାଦ ବା ଶୂନ୍ୟବାଦ ଭାବରେ ଚିତ୍ରଣ କରିଛନ୍ତି। ତାଙ୍କ ବାଗ୍ମିତାର ଅଭିବ୍ୟକ୍ତି କ୍ଷେତ୍ରରେ ସେ କେବଳ ଶବ୍ଦର ଚାତୁରୀ ସୃଷ୍ଟି କରିଛନ୍ତି। ଇଲୀୟ ଦାର୍ଶନିକ ମାନଙ୍କର ଦ୍ୱନ୍ଦ୍ୱତର୍କକୁ ଆଧାର କରି ସେ କିଛି ସିଦ୍ଧାନ୍ତର ଅବତାରଣା କରିଛନ୍ତି ଯାହା କେବଳ ଦାର୍ଶନିକ ସମାଲୋଚନା ପାଇଁ ଉଦ୍ଦିଷ୍ଟ। ଭାଷାର ଚାତୁରୀଦ୍ୱାରା କିପରି ଅନ୍ୟମାନଙ୍କୁ ଏକ ଲକ୍ଷ୍ୟ ଉଦ୍ଦେଶ୍ୟରେ ପ୍ରଭାବିତ କରିହେବ ଏହି କଳା ବିଷୟରେ ଗର୍ଗିଆସ ବେଶ୍ ପାରଙ୍ଗମ ଥିବା କୁହାଯାଏ। ସେହି ଦୃଷ୍ଟିରୁ ଦେଖିଲେ ଗର୍ଗିଆସଙ୍କର ଦର୍ଶନ କ୍ଷେତ୍ରକୁ ସେପରି କିଛି ଅବଦାନ ନାହିଁ, ସେ କେବଳ ନିଜ ସମୟରେ ଜଣେ କୁଶଳୀ ବାଗ୍ମୀ ଭାବେ ପରିଚିତ।

### (ଗ) ପ୍ରୋଡିକସ (Prodicus)

ପ୍ରୋଡିକସ ଏଗିଆନ୍‌ସ୍ଥିତ ସିଅସ ଦ୍ୱୀପର ଅଧିବାସୀ ଥିଲେ। ଜନଶ୍ରୁତି ଅନୁଯାୟୀ ଏହି ଦ୍ୱୀପର ଲୋକମାନେ ଅନେକାଂଶରେ ନୈରାଶ୍ୟବାଦୀ ସ୍ୱଭାବର ବ୍ୟକ୍ତି ଥିଲେ। ପ୍ରୋଡିକସ ମଧ୍ୟ ସେହିପରି ସ୍ୱଭାବ ପୋଷଣ କରୁଥିଲେ। ଜୀବନର ସକଳ ମନ୍ଦରୁ ପରିତ୍ରାଣ ପାଇଁ ମୃତ୍ୟୁ ହିଁ ଶ୍ରେୟସ୍କର ବୋଲି ପ୍ରୋଡିକସ ମତ ଦେଉଥିଲେ। ତେବେ ମୃତ୍ୟୁର ଭୟ ଅହେତୁକ ବୋଲି ସେ କହୁଥିଲେ। ଏହାର କାରଣ ବିଷୟରେ ସେ ଏକ ଦ୍ୱନ୍ଦ୍ୱନ୍ୟାୟର ଅବତାରଣା କରୁଥିଲେ। ମୃତ୍ୟୁ ନା ଜୀବିତ ନା ମୃତ ଲୋକ ସହ ସଂପର୍କିତ। ଜୀବିତ ଲୋକ ସହ ମୃତ୍ୟୁର ସମ୍ବନ୍ଧ ନାହିଁ, କାରଣ ଲୋକ ଜୀବିତ। ସେହିପରି ମୃତ୍ୟୁ ମୃତ ଲୋକର କିଛି କରିପାରିବ ନାହିଁ, କାରଣ ବ୍ୟକ୍ତିଟି ଜୀବିତ ନୁହେଁ। ତେଣୁ ମୃତ୍ୟୁର ଭୟ ପୋଷଣ କରିବା ଅସଂଗତ ବୋଲି ସେ ମତ ଦେଉଥିଲେ। ପ୍ରୋଡିକସଙ୍କ ଜନ୍ମ ବା ମୃତ୍ୟୁ ବିଷୟରେ କିଛି ଜଣା ନାହିଁ, ତେବେ ସେ ସକ୍ରେଟିସ୍‌ଙ୍କ ସମୟର ବ୍ୟକ୍ତି ଥିଲେ। ସକ୍ରେଟିସ୍‌ଙ୍କ ସହ ସଂପର୍କ ରଖିଥିବା ଯେଉଁ ଯୁବକମାନେ ବିଶେଷ କିଛି ବୌଦ୍ଧିକ ବିକାଶ କରିପାରୁ ନଥିଲେ ସେ ସେମାନଙ୍କୁ ପ୍ରୋଡିକସଙ୍କ ପାଖକୁ ଯାଇ ଶିକ୍ଷା କରିବାକୁ ପରାମର୍ଶ ଦେଇଥିବା ପ୍ଲେଟୋଙ୍କର ଏକ ଡାଏଲଗରେ ଉଲ୍ଲେଖ ରହିଛି। ତେଣୁ ପ୍ରୋଡିକସ ସକ୍ରେଟିସ୍‌ଙ୍କର ସମସାମୟିକ ଥିବା ଅନୁମାନ କରାଯାଏ।

ପ୍ରୋଡିକସଙ୍କ ଧର୍ମ ସଂପର୍କିତ ମତ ଉଲ୍ଲେଖନୀୟ। ତାଙ୍କ ମତରେ ମନୁଷ୍ୟ ଯାହାଠାରୁ ସାହାଯ୍ୟ ପାଉଥିଲା ତାକୁ ଈଶ୍ୱର ଭାବି ପୂଜା କରୁଥିଲା। ସୂର୍ଯ୍ୟ, ଚନ୍ଦ୍ର, ନଦୀ, ହ୍ରଦ, ଫଳନ୍ତି ଗଛରୁ ମନୁଷ୍ୟ ଉପକାର ପାଉଥିଲା। ଉପକାର ପାଉଥିବା ପ୍ରାକୃତିକ ସତ୍ତା ବା ତାକୁ ଖାଦ୍ୟ ଦେଉଥିବା ବୃକ୍ଷକୁ ମଣିଷ ପ୍ରାଥମିକ ଅବସ୍ଥାରେ ପ୍ରାର୍ଥନା କରୁଥିଲା। ଏହା ଥିଲା ଆଦିମ ଅବସ୍ଥାରେ ମନୁଷ୍ୟର ଧର୍ମ ବିଶ୍ୱାସ। ପରବର୍ତ୍ତୀ ପର୍ଯ୍ୟାୟରେ ମନୁଷ୍ୟ ବିଭିନ୍ନ ସାମର୍ଥ୍ୟର ଅଧିକାରୀ ହେଲା। ସେ କୃଷିର ଜ୍ଞାନ ଅର୍ଜନ କରି କୃଷିକରି ଖାଦ୍ୟ ଉତ୍ପାଦନ କଲା, ଧାତୁର ବ୍ୟବହାର କରି ଶିଖିଲା। ଏହି ସ୍ଥିତିରେ ସେ ବିଭିନ୍ନ ଦେବାଦେବୀର ପରିକଳ୍ପନା କଲା। ଆସ୍ତେ ଆସ୍ତେ ବିଭିନ୍ନ ଦେବତାଙ୍କୁ

ତାର ମଙ୍ଗଳ ପାଇଁ ମନୁଷ୍ୟ ପୂଜା, ପ୍ରାର୍ଥନା କଲା । ତେଣୁ ଏ ସବୁ ବିଶ୍ୱାସ ବା ପ୍ରାର୍ଥନାର ଯେ ସେପରି କିଛି ମୂଲ୍ୟ ନାହିଁ ଏହା ପ୍ରୋଡିକସ ମତ ବ୍ୟକ୍ତ କରିଥିଲେ । ତାଙ୍କର ଏହି ଅବିଶ୍ୱାସ ପାଇଁ ସେ ଏଥେନ୍ସରେ କେତେକ ସମସ୍ୟାର ସମ୍ମୁଖୀନ ହୋଇଥିବା ଜଣାଯାଏ । ପ୍ରୋଟାଗୋରାସଙ୍କ ପରି ସେ ସମସ୍ୟାର ସମ୍ମୁଖୀନ ହୋଇଥିଲେ ମଧ ତାଙ୍କ ବିଷୟରେ ଅନ୍ୟ କୌଣସି ତଥ୍ୟ ଇତିହାସରେ ନାହିଁ ।

ପ୍ରୋଡିକସ ଭାଷା ଉପରେ ଅଧ୍ୟୟନ କରିଥିବା ବା ପାରଦର୍ଶିତା ହାସଲ କରିଥିବା ଜଣାଯାଏ । ସେ ଗ୍ରୀକ୍ ଭାଷାରେ ସମାର୍ଥବୋଧକ ଶବ୍ଦମାନଙ୍କ ଉପରେ ଏକ ପୁସ୍ତକ ଲେଖିଥିଲେ । ସେ ବିଭିନ୍ନ ଛାତ୍ରମାନଙ୍କୁ ଶିକ୍ଷା ଦେଇଥିବା ଜଣାଯାଏ ।

### (ଘ) ହିପ୍ପିଆସ (Hippias)

ଏଲିସ ରାଜ୍ୟର ଅଧିବାସୀ ଥିଲେ ହିପ୍ପିଆସ । ସେ ପ୍ରୋଟାଗୋରାସଙ୍କଠାରୁ ବୟସରେ ସାନ ଥିଲେ ବି ତାଙ୍କର ସମସାମୟିକ ଥିଲେ । ସେ ବହୁ ବିଦ୍ୟାରେ ପାରଙ୍ଗମ ଥିବା ଜଣାଯାଏ । ଗଣିତ, ଜ୍ୟୋତିର୍ବିଜ୍ଞାନ, ବ୍ୟାକରଣ, ସାହିତ୍ୟ, ଇତିହାସ, ପୁରାଣ ଇତ୍ୟାଦି ବହୁ ବିଷୟରେ ଧୂରୀଣ ବ୍ୟକ୍ତି ଥିଲେ । ଏପରିକି ଏକ ଅଲଂପିଆଡରେ ଯୋଗ ଦେବା ସମୟରେ ସେ ପରିଧାନ କରିଥିବା ସମସ୍ତ ବସ୍ତ୍ର ନିଜେ ତିଆରି କରିଥିବା ଦାବି କରିଥିଲେ । ଯେଉଁମାନେ ଅଲଂପିକ ଖେଳରେ ବିଜୟୀ ହେଉଥିଲେ ସେ ସେମାନଙ୍କର ନାମକୁ ଲିପିବଦ୍ଧ କରିଥିଲେ । ପରେ ଜଣେ ଐତିହାସିକ ଟିମାଏସ ଅଲଂପିକର ଇତିହାସ ରଚନା କରିବା ସମୟରେ ହିପ୍ପିଆସଙ୍କ ଲିଷ୍ଟ ତାଙ୍କୁ ବହୁ ସାହାଯ୍ୟ କରିଥିଲା ଓ ତଥ୍ୟ ଦେଇଥିଲା ବୋଲି ଜଣାଯାଏ ।

ପ୍ଳେଟୋ ତାଙ୍କର ଏକ ଡାଏଲଗ୍‌ରେ ହିପ୍ପିଆସଙ୍କର ମତ ଉଲ୍ଲେଖ କରିଥିବା ଜଣାଯାଏ । ହିପ୍ପିଆସ କହୁଥିଲେ ସାମାଜିକ ନିୟମ ଓ ଶୃଂଖଳା ବ୍ୟକ୍ତିସ୍ୱଭାବର ପରିପନ୍ଥୀ । ଏହାକୁ ସେ ଗଣଙ୍କର ସ୍ୱେଚ୍ଛାଚାର ବୋଲି ଅଭିହିତ କରୁଥିଲେ । ପ୍ରତ୍ୟେକ ଜନରାଜ୍ୟରେ ପ୍ରଚଳିତ ଥିବା ବିଧି ବିଧାନମାନ ଉତ୍ପୀଡକ ବୋଲି ସେ କହୁଥିଲେ । ଇତିହାସରେ ତାଙ୍କ ବିଷୟରେ ଅଧିକ କିଛି ତଥ୍ୟ ନଥିବା ଜଣାଯାଏ ।

### (ଙ) ସଫିଷ୍ଟବାଦର ମୂଲ୍ୟାୟନ

ସଫିଷ୍ଟବାଦୀମାନଙ୍କ ବିଷୟରେ ପୂର୍ବରୁ କୁହାଯାଇଛି ଯେ ସେମାନେ ଥିଲେ ଏକ ପେଷାଦାର ଶିକ୍ଷକ ଗୋଷ୍ଠୀ ଓ ନିଜ ଯୁଗର ପ୍ରତିନିଧି । ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀରେ ଗ୍ରୀସ୍‌ରେ ଶିକ୍ଷାର ପ୍ରସାର କ୍ଷେତ୍ରରେ ସେମାନଙ୍କର ଯଥେଷ୍ଟ ଅବଦାନ ଥିଲା । ସଫିଷ୍ଟମାନେ ଦାର୍ଶନିକ ନଥିଲେ ଯଦି ବା ପ୍ରୋଟାଗୋରାସ ଓ ଗର୍ଗିଆସଙ୍କର ଦର୍ଶନରେ ବହୁ ଆଗ୍ରହ ଓ ପ୍ରବେଶ ରହିଥିଲା । ତେବେ ଅଧିକାଂଶ ସଫିଷ୍ଟ ଥିଲେ କୌଶଳୀ ତାର୍କିକ, ବାଗ୍ମୀ ଓ ପ୍ରୟୋଗାତ୍ମକ ଜ୍ଞାନର ଅଧିକାରୀ । ଖ୍ରୀ.ପୂ. ପଞ୍ଚମ ଓ ଚତୁର୍ଥ ଶତାବ୍ଦୀ ସମୟକୁ ଗ୍ରୀସ୍‌ର ସାମାଜିକ ଓ ରାଜନୈତିକ ପରିସ୍ଥିତିରେ ଶିକ୍ଷାର ଯଥେଷ୍ଟ ଆବଶ୍ୟକତା ସାଧାରଣ ଜୀବନରେ ବେଶ୍ ଦରକାର ହେଉଥିଲା ଓ ସଫିଷ୍ଟମାନେ ସେହି ଆବଶ୍ୟକତା

ପୂରଣ କ୍ଷେତ୍ରରେ ଭୂମିକା ନିର୍ବାହ କରୁଥିଲେ । ସଫିଷ୍ଟମାନଙ୍କ ପୂର୍ବରୁ ଗ୍ରୀସ୍‌ରେ ଯେଉଁ ଦାର୍ଶନିକ ଜିଜ୍ଞାସାର ଯୁଗ ଆରମ୍ଭ ହୋଇଥିଲା ସେଥିରେ ଏ ବିଶ୍ୱର ମୌଳିକ ସତ୍ତା ବା ପରମ ତତ୍ତ୍ୱ କ'ଣ ତାହା ହିଁ ଚିନ୍ତାରାଜ୍ୟରେ ପ୍ରାଧାନ୍ୟ ନେଇଥିଲା । ଠିକ୍ ତାର ପରେ ପରେ ପ୍ରୟୋଗାତ୍ମକ ଜ୍ଞାନର ଉପଯୋଗିତା ନେଇ ଜନମାନସରେ ଆଗ୍ରହ ସୃଷ୍ଟି ହେଲା । ସମାଜକୁ ଉନ୍ନତ କରିବା ଓ ଜୀବନର ସଫଳତା ଲାଭ ପାଇଁ ପ୍ରୟୋଗାତ୍ମକ ଜ୍ଞାନ, ବୁଦ୍ଧିବାଦ, କଳାର ବିକାଶ ଓ ମାନବବାଦୀ ଆଭିମୁଖ୍ୟ ଯେ ମହତ୍ତ୍ୱପୂର୍ଣ୍ଣ ଏହି ଧାରଣା ଗ୍ରୀକ୍ ସମାଜରେ ସଫିଷ୍ଟମାନେ ସୃଷ୍ଟି କରିଥିଲେ । ଦାର୍ଶନିକମାନେ ଯେଉଁ ସବୁ ଆଧିବିଦ୍ୟକ ତତ୍ତ୍ୱ (metaphysical theories ) ନିର୍ମାଣ କରିଥିଲେ ସେ ସବୁ ମୂଲ୍ୟହୀନ ନହେଲେ ବି ସମାଜ ପାଇଁ କୌଣସି ଉପଯୋଗୀ ନୁହେଁ ଏହା ଧୀରେ ଧୀରେ ଲୋକମାନସରେ ଗୃହୀତ ହେଲା । ବିଶାଳ ବିଶ୍ୱର ରହସ୍ୟ ଭେଦ କରିବାକୁ ମାନବୀୟ ବୁଦ୍ଧି ଯେ ଅସମର୍ଥ ଏହା ମଧ୍ୟ ବିଶ୍ୱାସ ସ୍ତରକୁ ଆସିଲା । ସେତେବେଳର ଦାର୍ଶନିକମାନେ ଯେଉଁ ସବୁ ପରସ୍ପରବିରୋଧୀ ତତ୍ତ୍ୱମୀମାଂସାର ଅବତାରଣା କରିଥିଲେ ସେଥିରେ ସଫିଷ୍ଟମାନେ ଭାବିଲେ ଯେ ମାନବୀୟ ବୁଦ୍ଧି ଏ ବିଶାଳ ବିଶ୍ୱ ସମ୍ବନ୍ଧରେ ଜ୍ଞାନଦେବାକୁ ସମର୍ଥ ନୁହେଁ । ସୁତରାଂ ସେମାନେ ଅଧିବିଦ୍ୟା ଜନିତ ତତ୍ତ୍ୱମୀମାଂସା ପରିବର୍ତ୍ତେ ମନୁଷ୍ୟ ସମ୍ବନ୍ଧରେ ଜାଣିବାକୁ ଅଧିକ ଆଗ୍ରହୀ ହୋଇଛନ୍ତି । ଯେକୌଣସି ଜ୍ଞାନ ଜ୍ଞାତା ଉପରେ ନିର୍ଭରଶୀଳ । ସଫିଷ୍ଟମାନେ ପ୍ରାୟତଃ ବ୍ୟକ୍ତି-ନିରପେକ୍ଷ ଜ୍ଞାନକୁ ସନ୍ଦେହ ଦୃଷ୍ଟିରେ ଦେଖିବାକୁ ପ୍ରଯତ୍ନ କରିଛନ୍ତି । ଜ୍ଞାନ ଜ୍ଞାତା ଉପରେ ଯେହେତୁ ନିର୍ଭରଶୀଳ, ତେଣୁ ଜ୍ଞାନକୁ ସାର୍ବଜନୀନ ଭାବିବା ଯଥାର୍ଥ ନୁହେଁ ବୋଲି ସଫିଷ୍ଟମାନେ ଚିନ୍ତା କରିଛନ୍ତି । ଅଧିବିଦ୍ୟା ସମ୍ବନ୍ଧୀୟ ତତ୍ତ୍ୱଜ୍ଞାନ ଯେ ଆଧାରହୀନ ଏହି ବିଚାର ସେ ଯୁଗରେ କେତେକ ସଫିଷ୍ଟ ଦେଇଥିଲେ, ଯାହା ବହୁ ପରେ ଦର୍ଶନ ପରିସରରେ ଏକ ପ୍ରତିପାଦ୍ୟ ସିଦ୍ଧାନ୍ତ ଭାବେ ଗୃହୀତ ହେଲା । ଅଧିବିଦ୍ୟା ପରିବର୍ତ୍ତେ ମନୁଷ୍ୟ ସମାଜ ସହ ସମ୍ବନ୍ଧିତ ସାହିତ୍ୟ, କଳା, ରାଜନୀତି, ନୈତିକତା, ଗଣିତ, ପ୍ରଯୁକ୍ତି ଇତ୍ୟାଦି ଯେ ଅଧିକ ଗୁରୁତ୍ୱପୂର୍ଣ୍ଣ ଏହି ବିଚାର ସଫିଷ୍ଟମାନେ ପ୍ରସାର କରିବାକୁ ଲାଗିଲେ । ଈଶ୍ୱର, ଅତିନ୍ଦ୍ରୀୟ ସତ୍ତା, ଆଧିଦୈବିକ ଚେତନା ଇତ୍ୟାତି ବିଷୟ ପରିବର୍ତ୍ତେ ମଣିଷ, ତାର ସାମାଜିକ ଜୀବନ ଓ ସମସ୍ୟା ବିଷୟରେ ଧ୍ୟାନ ଦେବାକୁ ସେମାନେ ପ୍ରୟାସ କଲେ । ସେତେବେଳର ଗ୍ରୀକ୍ ସମାଜରେ ଦାସତ୍ୱ ପ୍ରଥା ମଧ୍ୟ କେତେକ କ୍ଷେତ୍ରରେ ରହିଥିଲା । ନାଗରିକମାନଙ୍କ ତୁଳନାରେ ଦାସମାନେ ଯେ ନୀଚ ବା ନ୍ୟୁନ ନୁହନ୍ତି କେତେକ ସଫିଷ୍ଟ ଏହି ଭାବନାର ମଧ୍ୟ ସୂତ୍ରପାତ କରିଥିଲେ । ବ୍ୟକ୍ତିର ଅଧିକାର ଓ ମାନବିକ ଦୃଷ୍ଟି ସଂପର୍କରେ ସେମାନେ ସେ ଯୁଗରେ ବିଚାର ମଧ୍ୟ ଦେଇଥିଲେ ।

ଗ୍ରୀସ୍‌ରେ ଯେଉଁ ସମୟରେ ଗଣତନ୍ତ୍ରର ବିକାଶ ହୋଇଥିଲା ସେହି ଯୁଗରେ ସଫିଷ୍ଟମାନଙ୍କର ଆବିର୍ଭାବ ଘଟିଥିଲା । ସଫିଷ୍ଟମାନଙ୍କର ପ୍ରୟାସ ଓ ଶିକ୍ଷାପ୍ରଦାନ ଯୋଗୁ ଶାସନର ଡୋରୀ ଯୋଗ୍ୟ ଲୋକମାନଙ୍କ ହାତକୁ ଆସିଲା । ପୂର୍ବରୁ ସାମନ୍ତବାଦୀ ଓ ସଂଭ୍ରାନ୍ତବଂଶୀୟ ଲୋକମାନେ ହିଁ ଶାସନ କ୍ଷେତ୍ରରେ ପ୍ରଭାବ ବିସ୍ତାରକରି ରହିଥିଲେ । ସଫିଷ୍ଟମାନଙ୍କ ଦ୍ୱାରା ଗଣଶିକ୍ଷାର ପ୍ରସାର ଫଳରେ ସମାଜର ବୁଦ୍ଧିମାନ ଓ ଯୋଗ୍ୟ ଲୋକମାନେ ଶାସନ କ୍ଷେତ୍ରରେ ଉଚ୍ଚ ପଦପଦବୀ କ୍ଷେତ୍ରକୁ ଆସିପାରିଲେ । ଶିକ୍ଷା ଯେ ଜୀବନରେ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଓ ଏକ ଉନ୍ନତ ସମାଜ

ଗଠନରେ ନିର୍ଣ୍ଣାୟକ ଏହା ସଫିଷ୍ଟମାନେ ପ୍ରସାର କରିଥିଲେ । ଏହି ଦୃଷ୍ଟିରୁ ଦେଖିଲେ ସଫିଷ୍ଟମାନେ ବହୁ ସକାରାତ୍ମକ ଭାବଧାରାର ମୂଳଭିତ୍ତି ଗ୍ରୀସ୍‌ରେ ପକାଇଥିଲେ ।

ତେବେ ସଫିଷ୍ଟ ଭାବଧାରାର କେତେକ ନକାରାତ୍ମକ ପ୍ରଭାବ ମଧ୍ୟ ରହିଥିଲା । ବିଶେଷକରି ଜ୍ଞାନ ଓ ନୈତିକତା କ୍ଷେତ୍ରରେ ସଫିଷ୍ଟମାନଙ୍କର ଚିନ୍ତାଧାରା ଥିଲା କେତେକାଂଶରେ ସମାଜବିରୋଧୀ । କେତେକଙ୍କ ମତରେ ସେମାନଙ୍କ ଚିନ୍ତାଧାରା ସମାଜରେ ଅରାଜକତା ପ୍ରସାର ପାଇଁ ବାଟ ଖୋଲିଥିଲା । ସେମାନେ ନିଜର ବାଗ୍ମିତା ଦ୍ୱାରା ଲୋକମାନଙ୍କୁ ବିଭ୍ରାନ୍ତ କରୁଥିଲେ । ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀରେ ଯେଉଁ ସଫିଷ୍ଟମାନେ ଜ୍ଞାନର ନାନା ଦିଗନ୍ତ ଉପରେ ବିଚାର ଆଲୋଚନାର ସୂତ୍ରପାତ କରିଥିଲେ ତାହା ସେମାନଙ୍କୁ ସମାଜରେ ବହୁ ସମ୍ମାନର ଅଧିକାରୀ କରିଥିଲା । କିନ୍ତୁ କେତୋଟି ପିଢି ପରେ ଖ୍ରୀ.ପୂ. ଚତୁର୍ଥ ଶତାବ୍ଦୀ ବେଳକୁ ସଫିଷ୍ଟମାନେ ଯେଉଁ ଭାବଧାରାର ଓ ଶିକ୍ଷାର ପ୍ରସାର କଲେ ତାହା ଯୁବସମାଜକୁ ବିଭ୍ରାନ୍ତ କରିବା ସହ ସମାଜରେ ନୀତିହୀନତା ଓ ସ୍ୱାର୍ଥପରତାର ପ୍ରସାର ଦିଗରେ ସହାୟକ ହେଲା । ସମାଜର ଏକ କ୍ଷୟଶୀଳ ପରିସ୍ଥିତି ସକ୍ରେଟିସ୍‌ଙ୍କୁ ଗଭୀର ଭାବେ ଆନ୍ଦୋଳିତ କରିଥିଲା । କେତେକ ଲେଖକଙ୍କ ମତରେ ସକ୍ରେଟିସ୍ ଥିଲେ ସଫିଷ୍ଟମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ, ପୁନଶ୍ଚ ସଫିଷ୍ଟମାନଙ୍କର କଟୁ ସମାଲୋଚକ । ନୈତିକ ଜୀବନ ଯାପନ ପାଇଁ ଓ ନୈତିକତାର ଅନ୍ତର୍ନିହିତ ମହତ୍ତ୍ୱ ପ୍ରତିଷ୍ଠା ପାଇଁ ସକ୍ରେଟିସ୍ ତାଙ୍କ ସମୟରେ ଅନେକ ପ୍ରୟାସ କରିଥିଲେ । ସଫିଷ୍ଟମାନେ ସେମାନଙ୍କ ବିଚାରଦ୍ୱାରା ନୈତିକତା ଓ ମାନବିକ ମୂଲ୍ୟବୋଧକୁ ଯେପରି ନ୍ୟୂନ କରିଥିଲେ ତାହା ବିରୁଦ୍ଧରେ ସକ୍ରେଟିସ୍ ସ୍ୱର ଉତ୍ତୋଳନ କରି ସମାଜର ନୈତିକ ଚେତନାକୁ ଉନ୍ନତ କରିବାକୁ ପ୍ରୟାସ କରିବା ଥିଲା ଉଲ୍ଲେଖନୀୟ ।

ପ୍ରୋଟାଗୋରାସ, ଗର୍ଗିଆସ ଆଦି ସଫିଷ୍ଟମାନେ ବ୍ୟକ୍ତିଗତ ଜୀବନରେ ଥିଲେ ଆଦର୍ଶବାଦୀ ବ୍ୟକ୍ତି । ଜଣେ ଉତ୍ତମ ବ୍ୟକ୍ତି ଓ ସୁନାଗରିକ ହେବାକୁ ସେମାନେ ଅନ୍ୟମାନଙ୍କୁ ଶିକ୍ଷା ଦେଉଥିଲେ । ସକଳ ଜ୍ଞାନର ଉଦ୍ଦେଶ୍ୟ ହେଉଛି ଜୀବନକୁ ଉନ୍ନତ କରିବା ଓ ମାନବ ସମାଜର କଲ୍ୟାଣ ସାଧନ କରିବା । ତେବେ ଜ୍ଞାନମୀମାଂସା କ୍ଷେତ୍ରରେ ପ୍ରୋଟାଗୋରାସ ଯେଉଁ ବିଚାରର ଅବତାରଣା କରିଥିଲେ ଯେ ଜ୍ଞାନ ବସ୍ତୁନିଷ୍ଠ ବା ସାର୍ବଜନୀନ ନୁହେଁ ତାହାର ପ୍ରୟୋଗ ନୈତିକତା କ୍ଷେତ୍ରରେ କେତେକ ସଫିଷ୍ଟ କଲେ । ଅର୍ଥାତ୍ ନୈତିକତା କ୍ଷେତ୍ରରେ କୌଣସି ସାର୍ବିକ ମାନଦଣ୍ଡ ରହିପାରିବ ନାହିଁ ବୋଲି ସେମାନେ ମତପୋଷଣ କଲେ । ଜଣେ ବ୍ୟକ୍ତିକୁ ଯାହା ଉଚିତ ମନେହୁଏ ତାହା ତା ପାଇଁ ଯଥାର୍ଥ । ଯଦି ନୈତିକତା କ୍ଷେତ୍ରରେ କିଛି ସାର୍ବଜନୀନତା ନ ରହେ କିମ୍ବା ଏହାକୁ ବିଚାରଶୀଳତା ଆଧାରରେ ପ୍ରତିଷ୍ଠା କରାନଯାଏ, ତେବେ ନୈତିକତାର ମହତ୍ତ୍ୱ ରହିବ କି ? ବିଚାର, ବୁଦ୍ଧି ଓ ବିଚାରଶୀଳତାର ଏକ ସାର୍ବଜନୀନ ଭିତ୍ତି ରହିଛି ଓ ଏହାରି ଆଧାରରେ ଯେଉଁ ନୈତିକ ମୂଲ୍ୟଚୟର ବିକାଶ ହେବ ତାହା ସର୍ବଜନାଦୃତ ହୋଇପାରିବ । ଯଦି ଜୀବନଧାରାରୁ ବିଚାର, ବୁଦ୍ଧିକୁ ବାଦ୍ ଦିଆଯିବ ଓ ଏହାକୁ ବ୍ୟକ୍ତିଗତ ଅନୁଭବ ଓ ସମ୍ବେଦନ ଆଧାରରେ ପ୍ରତିଷ୍ଠା କରାଯିବ, ତେବେ ତାହା ସମାଜ ପାଇଁ କ୍ଷତିକାରକ ହେବ । ମୋର ସମ୍ବେଦନ ଓ ଅନୁଭବ ମୋର ବ୍ୟକ୍ତିଗତ ବ୍ୟାପାର ଏହା ସହିତ ଅନ୍ୟର ସମ୍ବନ୍ଧ ନାହିଁ । ତେଣୁ ବ୍ୟକ୍ତିଗତ ଅନୁଭବ ଆଧାରରେ ନୈତିକତାକୁ

ପ୍ରତିଷ୍ଠା କରାଯାଇ ପାରିବ ନାହିଁ । ଯାହା କ ର ଅନୁଭବରେ ଠିକ୍ ତାହା କ ପାଇଁ ଠିକ୍, ଯାହା ଖ ର ଅନୁଭବରେ ଯଥାର୍ଥ, ତାହା ଖ ପାଇଁ ଯଥାର୍ଥ; ଯାହା ଗ ଦୃଷ୍ଟିରେ ଠିକ୍ ତାହା ଗ ପାଇଁ କରଣୀୟ- ଏପରି ବିଚାରଦ୍ୱାରା ନୈତିକତାର ମାନ ମୂଲ୍ୟହୀନ ହୋଇଯିବ । ଯଦି ପ୍ରତ୍ୟେକ ବ୍ୟକ୍ତିର ଅନୁଭବ, ଆବେଗ ଓ ବିଚାରଦ୍ୱାରା ତାର ନୈତିକ ଜୀବନ ପ୍ରଭାବିତ ହେବ ଓ ନୈତିକତା କ୍ଷେତ୍ରରେ କୌଣସି ସାଧାରଣ ମାନଦଣ୍ଡ ରହିବ ନାହିଁ, ତେବେ ସାଧାରଣ ଜୀବନ ବିପର୍ଯ୍ୟସ୍ତ ହେବ । ପରବର୍ତ୍ତୀ ସଫିଷ୍ଟମାନେ ନୈତିକତାକୁ ଏକ ବ୍ୟକ୍ତିଗତ ଅନୁଭବର ପ୍ରସଙ୍ଗ କରିବା ଫଳରେ ସେମାନେ ସମାଲୋଚନାର ଶରବ୍ୟ ହୋଇଛନ୍ତି । ବିଶେଷକରି ପୋଲସ୍, ଥ୍ରାସିମାକସ, କ୍ରିଟିଆସଙ୍କ ପରି ସଫିଷ୍ଟମାନେ ନୈତିକତାକୁ ବ୍ୟକ୍ତିଗତ ବିଚାରର ପ୍ରସଙ୍ଗ କରିବା ଦ୍ୱାରା ସମାଲୋଚିତ ହେବା ଦେଖାଯାଏ ।

ଆମେ ଅନେକ ସମୟରେ ନ୍ୟାୟ ଓ ଉତ୍ତମ ବିଧି କଥା କହିଥାଏ । ଏହା କହିବା ଦ୍ୱାରା ନ୍ୟାୟ ଓ ଉତ୍ତମତା କ୍ଷେତ୍ରରେ ଆମେ ଏକ ଉତ୍ତମ ମାନକର ଭାବନା ଆଣିଥାଏ । ଗୋଟିଏ ସାର୍ବଜନୀନ ମାନକ ସହ ଏକ ବିଧିବ୍ୟବସ୍ଥାକୁ ତୁଳନା କରି ଏହା କେତେଦୂର ନ୍ୟାୟସଂଗତ ଆମେ ବିଚାର କରିଥାଏ । ଯଦି ସମାଜରେ କୌଣସି ନୈତିକ ମାନକ (moral standard) ରହିବ ନାହିଁ, ତେବେ ଏକ ରାଜ୍ୟର ସକଳ ଆଇନ ଓ ବିଧି କେବଳ ପରମ୍ପରା ଓ ଶକ୍ତିଶାଳୀ ବା ସ୍ୱେଚ୍ଛାଚାରୀ ଲୋକଙ୍କର ମନମୁଖି ବିଧାନ ହେବ । ବିଚାରଶୀଳତା ପରିବର୍ତ୍ତେ ଯଦି ଯଥେଚ୍ଛାଚାରିତା ସାମାଜିକ ଜୀବନରେ ପ୍ରାଧାନ୍ୟ ବିସ୍ତାର କରିବ ତେବେ ସମାଜରେ ନୀତି, ନ୍ୟାୟ ଓ ଉତ୍ତମତା ଅର୍ଥହୀନ ହୋଇଯିବ । ଯଦି ଉତ୍ତମତା ବା ନ୍ୟାୟର କୌଣସି ଅର୍ଥ ରହିବ ନାହିଁ ବା ସେଥି ପାଇଁ କିଛି ମାନଦଣ୍ଡ ରହିବ ନାହିଁ ତେବେ ଯେକୌଣସି ସ୍ୱେଚ୍ଛାଚାରିତାକୁ ହିଁ ନିୟମ କରାଯିବ । ସେପରି ସ୍ଥିତିରେ ଯାହା ସ୍ୱେଚ୍ଛାଚାରୀ ବା କ୍ଷମତାଧାରୀ ଲୋକମାନେ ଚାହିଁବେ, ତାହା ହିଁ ସମାଜ ପାଇଁ ନିୟମ ହେବ । ସମାଜର ଚତୁର ଓ କୌଶଳୀ ଲୋକମାନେ ଅନ୍ୟମାନଙ୍କୁ ନିୟନ୍ତ୍ରଣ କରିବା ପାଇଁ ନାନା ନିୟମର ବିଧାନ କରିବେ । ସେପରି ସ୍ଥିତିରେ 'ଜୋର୍ ଯା'ର ମୂଲକ ତା'ର' ନୀତିକୁ ଗ୍ରହଣ କରିବେ । କେତେକ ସଫିଷ୍ଟ ମଧ "Might is right" ନୀତିକୁ ହିଁ ସମର୍ଥନ କରିଛନ୍ତି । କ୍ରିଟିଆସଙ୍କ ପରି ସଫିଷ୍ଟ ଆହୁରି ଅତିରଂଜିତ କରି କହିଛନ୍ତି ଯେ କେତେକ ଧୂର୍ତ୍ତ ବ୍ୟକ୍ତି ଲୋକମାନଙ୍କ ଭିତରେ ଭୟ ସଞ୍ଚାର କରି ନିଜର ଫାଇଦା ଉଠାଇବାକୁ ଈଶ୍ୱର ବା ଦେବଦେବୀ ଭାବନାମାନ ସୃଷ୍ଟି କରିଛନ୍ତି । ଲୋକଙ୍କ ସରଳ ବିଶ୍ୱାସର ସୁଯୋଗ ନେବା ପାଇଁ ସେମାନଙ୍କୁ ଧର୍ମ, ଈଶ୍ୱର ଭାବନା ବେଶ୍ ସାହାଯ୍ୟ କରିଛି । ସଫିଷ୍ଟମାନଙ୍କୁ ସମାଲୋଚନା କରାଯାଇଛି ଯେ ବିଚାର, ବୁଦ୍ଧି, ଚିନ୍ତାଶୀଳତା ଆଧାରରେ ନୈତିକ ମାନକକୁ ଗ୍ରହଣ ନକରି ଏହାକୁ ବ୍ୟକ୍ତିଗତ ପ୍ରସଙ୍ଗ କଲେ ସମାଜର ନୈତିକ ଭିତ୍ତି ବିପର୍ଯ୍ୟସ୍ତ ହୋଇପଡିବ ।

ସଫିଷ୍ଟମାନଙ୍କର ଅବଦାନ ଓ ଭାବନାକୁ ନେଇ ଗ୍ରୀକ୍ ଦର୍ଶନର ଐତିହାସିକମାନେ ଭିନ୍ନ ଭିନ୍ନ ବକ୍ତବ୍ୟ ଉପସ୍ଥାପନ କରିଥିବା ମନେହୁଏ । ସଫିଷ୍ଟମାନେ ସ୍ୱୀକାର କରୁଥିଲେ ଯେ ସତ୍ୟ ଆପେକ୍ଷିକ ଓ ଅନ୍ତିମ ସତ୍ୟ ଏକ ଭ୍ରମାତ୍ମକ ଭାବନା । ସତ୍ୟ ଯେପରି ଆପେକ୍ଷିକ ନୈତିକ ଆଦର୍ଶମାନ ମଧ ସେହିପରି ଆପେକ୍ଷିକ । ସେଗୁଡିକ ଜନରାଜ୍ୟରୁ ଜନରାଜ୍ୟ ମଧ୍ୟ ପୃଥକ୍ ଓ ଏପରିକି ଗୋଟିଏ ସମାଜରେ ମଧ ସମୟକୁ ସମୟ ପରିବର୍ତ୍ତନଶୀଳ ।

ସମାଜର ନୀତି-ନୈତିକତା, ପ୍ରଥା, ପରଂପରା ପ୍ରତି ସଫିଷ୍ଟମାନଙ୍କର ଶ୍ରଦ୍ଧା ବା ସମ୍ମାନ ନଥିଲା ବୋଲି ସେମାନଙ୍କ ବିରୁଦ୍ଧରେ ଅଭିଯୋଗ ହୋଇଥାଏ । ସମାଜର ଧର୍ମ, ନୈତିକତା, ମର୍ଯ୍ୟାଦା ବିରୁଦ୍ଧରେ ସେମାନେ ଲୋକମାନଙ୍କୁ ପ୍ରଭାବିତ କରୁଥିବା କୁହାଯାଏ । ସେମାନଙ୍କ ଭାବଧାରାକୁ କେତେକ ସମାଜବିରୋଧୀ ବୋଲି ମଧ୍ୟ ଚିତ୍ରଣ କରିଛନ୍ତି । ଆଇନ, କାନୁନ, ପ୍ରଥା, ପରଂପରା ଓ ସାମାଜିକ ପ୍ରଭୁତ୍ୱକୁ ସେମାନେ ସ୍ୱୀକାର କରୁନଥିବା କୁହାଯାଏ । ପ୍ରୋଟାଗୋରାସ, ଗର୍ଗିଆସଙ୍କ ପରି ସଫିଷ୍ଟମାନେ ମାନବବାଦୀ ଥିଲେ ଓ ସମାଜର ଆଇନ ଏବଂ ନୈତିକତା ପ୍ରତି ଗଭୀର ସମ୍ମାନ ରଖିଥିବା ସୁବିଦିତ । ହୁଏତ ସେମାନଙ୍କ ପରେ ସଫିଷ୍ଟମାନେ ବ୍ୟକ୍ତିବାଦକୁ ଅଧିକ ପ୍ରସାର କରିଥିବା ମନେହୁଏ । ସଫିଷ୍ଟମାନଙ୍କ ବିରୁଦ୍ଧରେ ଏହି ସବୁ ସମାଲୋଚନା ସତ୍ତ୍ୱେ ଗ୍ରୀସର ଚିନ୍ତାରାଜ୍ୟରେ ଏକ ନବଜାଗରଣ ଆଣିବାରେ ସେମାନେ ଯେ ପଥପ୍ରଦର୍ଶକ ଏହା କେତେକ ପ୍ରକାଶ କରିଛନ୍ତି । ମାନବ ସଭ୍ୟତାର ଇତିହାସରେ ୟୁରୋପରେ ଯେପରି ଏକ ଜ୍ଞାନବିକାଶ (Age of Enlightenment) ର ପରିବେଶ ସପ୍ତଦଶ ଶତାବ୍ଦୀରେ ଆସିଥିଲା, ଯାହାର ପରିଣାମରୁ ଆଧୁନିକ ବିଜ୍ଞାନ, ମାନବବାଦୀ ଦୃଷ୍ଟିଭଙ୍ଗୀ, ଗଣତାନ୍ତ୍ରିକ ବ୍ୟବସ୍ଥା ଓ ଶିକ୍ଷାର ବ୍ୟାପକ ପ୍ରସାର ହେଲା ସେହିପରି ସଫିଷ୍ଟମାନଙ୍କ ମାଧ୍ୟମରେ ଗ୍ରୀସ୍‌ରେ ସେହି ସମୟରେ ଏକ ନବଜାଗରଣର ପରିବେଶ ଆସିଥିଲା । ମାନବ ସଭ୍ୟତାର ଇତିହାସରେ ଗୋଟିଏ ବୌଦ୍ଧିକ ଆଲୋଡନ ସଭ୍ୟତାକୁ ଲଂଫ ପ୍ରଦାନ କରିଥାଏ । ସମ୍ଭବତଃ ପାଶ୍ଚାତ୍ୟ ସଭ୍ୟତାରେ ଗ୍ରୀସ୍‌ର ଏହି ଆଲୋଡନ ଥିଲା ପ୍ରଥମ ଜ୍ଞାନବିକାଶର ଆଲୋଡନ । ବୌଦ୍ଧିକ ବିକାଶଧାରାରେ ଥେଲିସ୍‌ଙ୍କ ଠାରୁ ଆରମ୍ଭ ହୋଇଥିବା ଦର୍ଶନର ଚର୍ଚ୍ଚା ଆନାକ୍ସଗୋରାସଙ୍କ ପର୍ଯ୍ୟନ୍ତ ଯେଉଁପରି ଗତି କରିଥିଲା, ସଫିଷ୍ଟମାନଙ୍କର ଆବିର୍ଭାବରେ ଏହା ବହୁ ଦିଗରେ ବିସ୍ତାରିତ ହେଲା । ସମଗ୍ର ୟୁରୋପୀୟ ସଭ୍ୟତାର ଇତିହାସରେ ପ୍ରାଚୀନ ଗ୍ରୀକ୍ ସଭ୍ୟତା ଥିଲା ଏକ ସ୍ୱର୍ଣ୍ଣାଭ ସମୟ ଯେଉଁଥିରୁ ଚିନ୍ତାରାଜ୍ୟକୁ ବହୁ ଯୁଗାନ୍ତକାରୀ ଭାବନାମାନ ଆସିଥିଲା । ସାହିତ୍ୟ, ବ୍ୟାକରଣ, ଦର୍ଶନ, ବିଜ୍ଞାନ, ଗଣିତ, ସାମାଜିକ ବିଜ୍ଞାନ ଇତ୍ୟାଦି ବହୁ କ୍ଷେତ୍ରରେ ଯେଉଁ ବୌଦ୍ଧିକ ଆଲୋଡନ ମାନ ଆସିଥିଲା ତାହା ଥିଲା ଯୁଗାନ୍ତକାରୀ । ଏହି ବୌଦ୍ଧିକ ଆଲୋଡନ କ୍ଷେତ୍ରରେ ସଫିଷ୍ଟମାନଙ୍କର ବଡ ଭୂମିକା ରହିଥିଲା । ଏକ ନୂତନ ଆଲୋଡନର ପ୍ରକ୍ରିୟାରୁ ସମାଜର ଅନେକ ପ୍ରଚଳିତ ବିଶ୍ୱାସ, କୁସଂସ୍କାର ବଦଳି ନୂତନ ଭାବଧାରା ଜନ୍ମନେଇଥାଏ । ଏହି ନୂତନ ଭାବଧାରାର ହୁଏତ କିଛି ସକାରାତ୍ମକ ଓ ନକାରାତ୍ମକ ପ୍ରଭାବ ସମୟର ବ୍ୟବଧାନ ଭିତରେ ସୃଷ୍ଟି ହୁଏ । ସଫିଷ୍ଟମାନଙ୍କ ବିଚାରଧାରା ଦେଇ ଯେଉଁ ବ୍ୟକ୍ତିବାଦ, ଅହଂକେନ୍ଦ୍ରିକତାବାଦ, ଆପେକ୍ଷିକତାବାଦ ଇତ୍ୟାଦିର ଭାବନା ସୃଷ୍ଟି ହୋଇଥିଲା ତାହାର ବହୁ ସୁଦୂରପ୍ରସାରୀ ପ୍ରଭାବ ରହିଥିବା ମନେହୁଏ ।

ସଫିଷ୍ଟମାନଙ୍କ ଭାବଧାରାରୁ ଏକ ମାନବକୈନ୍ଦ୍ରିକ ଜୀବନଦର୍ଶନର ଯୁଗ ଆରମ୍ଭ ହୋଇଥିଲା । ଏହା ଥିଲା ଏକ ବୈପ୍ଳବିକ ବିଚାର । ମନୁଷ୍ୟକୁ ଛାଡି ସତ୍ୟନିଷ୍ଠତା, ନ୍ୟାୟବୋଧ ଇତ୍ୟାଦିର ଭାବନା ଅର୍ଥହୀନ ମନେହୁଏ । ବସ୍ତୁନିଷ୍ଠ-ସତ୍ୟତା ପରିବର୍ତ୍ତେ ସଫିଷ୍ଟମାନେ ମାନବକୈନ୍ଦ୍ରିକ ସତ୍ୟତା ଉପରେ ପ୍ରାଧାନ୍ୟ ଦେଇଥିଲେ । ସତ୍ୟ ଆପେକ୍ଷିକ ଓ ଏହା ବ୍ୟକ୍ତିର ଅନୁଭୂତି ଓ ସମ୍ବେଦନ ଉପରେ ନିର୍ଭରଶୀଳ । ପୁନଶ୍ଚ ଆଧୁନିକ ଯୁଗରେ ଯେଉଁ

ବ୍ୟାବହାରିକତାବାଦ (pragmatism) ର ଭାବନା ଦର୍ଶନ କ୍ଷେତ୍ରକୁ ଆସିଲା, ତାହାର ଝଲକ ସଫିଷ୍ଟ ଭାବଧାରାରେ ରହିଥିଲା । ସତ୍ୟ ବସ୍ତୁନିଷ୍ଠ ନୁହେଁ, ଏହା ବିଷୟିନିଷ୍ଠ । ପୁନଶ୍ଚ ବ୍ୟାବହାରିକତାବାଦ ଅନୁଯାୟୀ ଯେଉଁ ବିଶ୍ୱାସ, ଭାବନା ବାସ୍ତବରେ ଉପଯୋଗୀ ତାହା ସମାଜ ପାଇଁ ଗ୍ରହଣଯୋଗ୍ୟ । ଯାହା ବ୍ୟକ୍ତି ପାଇଁ ବା ସମାଜ ପାଇଁ ଉପଯୋଗୀ ତାହାର ଜୀବନ ପାଇଁ ମୂଲ୍ୟ ରହିଛି । ଯେଉଁ ଭାବନା, ବିଶ୍ୱାସ ଇତ୍ୟାଦିର ଉପଯୋଗିତା ନାହିଁ ତାହା ଆମ ପାଇଁ ମୂଲ୍ୟ ରଖେ ନାହିଁ । ଯେଉଁ ଭାବନା ଓ ବିଶ୍ୱାସ ବାସ୍ତବରେ କାର୍ଯ୍ୟକାରୀ ହୋଇପାରିବ ତାହା ସତ୍ୟ, ଯାହା କାର୍ଯ୍ୟକାରୀ ହୋଇପାରିବ ନାହିଁ ତାହା ସତ୍ୟ ନୁହେଁ । ତେବେ ପ୍ରଶ୍ନ ହେବ ଯେଉଁ ଭାବନା, ବିଶ୍ୱାସ ବା ବିଚାର ଗୋଟିଏ ଯୁଗରେ ଉପଯୋଗୀ ମନେହୁଏ, ତାହା ଅନ୍ୟ ଯୁଗରେ ଉପଯୋଗୀ ହୁଏ ନାହିଁ । ସେହିପରି ଯାହା ଏକ ସ୍ଥାନରେ କାର୍ଯ୍ୟକାରୀ ହୋଇଥାଏ ତାହା ଅନ୍ୟ ସ୍ଥାନରେ କୌଣସି ଗୁରୁତ୍ୱବହନ କରେ ନାହିଁ । ସେହିପରି ଆମେ ଆଜି ଯାହା ବିଶ୍ୱାସ କରୁଛେ ହୁଏତ ଆସନ୍ତା କାଲି ତାହା ବିଶ୍ୱାସ କରିବା ନାହିଁ । ଏହାର ତାତ୍ପର୍ଯ୍ୟ ହେଉଛି ସତ୍ୟ ବସ୍ତୁନିଷ୍ଠ ନୁହେଁ, ଏହା ବିଷୟିନିଷ୍ଠ । ସଫିଷ୍ଟମାନେ ଏହିପରି ଯେଉଁ ବିଷୟନିଷ୍ଠତାବାଦର ଭାବନାକୁ ପ୍ରାଧାନ୍ୟ ଦେଇଥିଲେ ତାହା ଆଧୁନିକ ସମୟର ଉପଯୋଗୀତାବାଦ ସହ ସମତାଳ ମନେହୁଏ । ଅର୍ଥାତ୍ ସଫିଷ୍ଟ ଭାବଧାରାରେ ଆଧୁନିକ ଉପଯୋଗିତାବାଦର ଯେ ଝଲକ ରହିଥିଲା ଏହା ମନେହୁଏ ।

କେତେକ ଲେଖକ ସଫିଷ୍ଟବାଦକୁ ଆଧୁନିକ ଯୁଗର ପ୍ରୋଟେଷ୍ଟାଣ୍ଟିଜିମ ସହ ତୁଳନା କରିଛନ୍ତି । ପ୍ରୋଟେଷ୍ଟାଣ୍ଟବାଦ ୟୁରୋପୀୟ ନବଜାଗରଣ ଯୁଗରେ ଏକ ସଂସ୍କାରବାଦୀ ବିଚାର ଭାବରେ ଖ୍ରୀଷ୍ଟିଆନ ଧର୍ମରେ ବିକଶିତ ହୋଇଥିଲା । ରୋମାନ କାଥୋଲିକ ରକ୍ଷଣଶୀଳତା ବିରୁଦ୍ଧରେ ଏକ ବିଦ୍ରୋହୀ ଚେତନା ଭାବରେ ପ୍ରୋଟେଷ୍ଟାଣ୍ଟବାଦ ଥିଲା ଏକ ସଂସ୍କାରବାଦୀ ଆନ୍ଦୋଳନ । ଠିକ୍ ସେହିପରି ସଫିଷ୍ଟବାଦ ଥିଲା ଗ୍ରୀକ୍ ରକ୍ଷଣଶୀଳତା, କୁସଂସ୍କାର, ପରଂପରା ଓ ସଂଭ୍ରାନ୍ତବର୍ଗଙ୍କ ପ୍ରଭୁତ୍ୱ ବିରୁଦ୍ଧରେ ଏକ ବିଦ୍ରୋହୀ ଚେତନା । ସେହିପରି ସଫିଷ୍ଟବାଦକୁ ଆଧୁନିକ ସମୟରେ ଗଣତନ୍ତ୍ର ସହ ମଧ୍ୟ ତୁଳନା କରାଯାଏ । ସାମନ୍ତବାଦ, ରାଜତନ୍ତ୍ର ଓ ସଂଭ୍ରାଂତବାଦ ବିରୁଦ୍ଧରେ ଗଣତନ୍ତ୍ର ଥିଲା ଏକ ବୈଚାରିକ ଆଲୋଡନ । ଗଣତାନ୍ତ୍ରିକ ବ୍ୟବସ୍ଥାରେ ଏକ ନିର୍ଦ୍ଦେଶନାମାକୁ ସାମାଜିକ ଚେତନା ବିରୁଦ୍ଧରେ ଲୋକମାନଙ୍କୁ ଗ୍ରହଣ କରିବା ପାଇଁ ବାଧ୍ୟ କରାଯାଇ ପାରିବ ନାହିଁ । ଏକ ଯୁକ୍ତିବିରୋଧୀ, ମାନବିକତା ବିରୋଧୀ ଭାବନାକୁ ରାଷ୍ଟ୍ର ଗଣତାନ୍ତ୍ରିକ ବ୍ୟବସ୍ଥାରେ ଲଦି ଦେଇପାରିବ ନାହିଁ । ଏକ ଅହେତୁକ ଭାବନା ବ୍ୟକ୍ତି ଉପରେ ଲଦି ଦେବାକୁ ସଫିଷ୍ଟବାଦୀମାନେ ବିରୋଧ କରିଥାନ୍ତି । ତେବେ ବ୍ୟକ୍ତିର ବିଚାର, ବୁଦ୍ଧିର ଏକ ଯୁକ୍ତିସଂଗତ ସାର୍ବଜନୀନ ମହତ୍ତ୍ୱ ରହିବା ଆବଶ୍ୟକ । ସଫିଷ୍ଟମାନେ ଯେଉଁ ବ୍ୟକ୍ତିବାଦୀ ଭାବଧାରାର ସମର୍ଥକ ଥିଲେ ସେମାନେ ପ୍ରାଚୀନ ଗ୍ରୀସ୍‌ରେ ଗଣତନ୍ତ, ମାନବବାଦ ଓ ବ୍ୟକ୍ତି ସ୍ୱତନ୍ତ୍ରତାର ସମର୍ଥକ ଥିଲେ ବୋଲି କୁହାଯାଇପାରେ ।

ବ୍ୟକ୍ତିବାଦ ସହ ଅହଂବାଦ, ସ୍ୱାର୍ଥକୈନ୍ଦ୍ରିକତା ବା ଭାବାବେଗ ସଂଶ୍ଳିଷ୍ଟ ହୋଇପାରେ । ବ୍ୟକ୍ତି ଭିତରେ ରହିଥିବା ସାମର୍ଥ୍ୟ, ପ୍ରତିଭା ଏକ ଉପଯୁକ୍ତ ସାମାଜିକ ପରିବେଶରେ ବିକଶିତ ହୋଇ ସମାଜର ଭୌତିକ ଓ ନୈତିକ ବିକାଶ ଦିଗରେ ସହାୟକ ହୋଇପାରିବ । ବ୍ୟକ୍ତିବାଦକୁ ଏକ ସକାରାତ୍ମକ ଦିଗରେ ନେଇ ଏହା ସାମାଜିକ

ଜୀବନରେ ଉତ୍କର୍ଷ ସୃଷ୍ଟି କରିପାରିବ । ବ୍ୟକ୍ତିବାଦକୁ ସ୍ୱାର୍ଥପରତା ଓ ଆତ୍ମକୈନ୍ଦ୍ରିକତାଭାବରେ ନେଲେ ଏହାର ଏକ ନକାରାତ୍ମକ ପ୍ରଭାବ ମଧ୍ୟ ରହିପାରିବ । ସଫିଷ୍ଟମାନଙ୍କର ଏହି ନକାରାତ୍ମକ ବ୍ୟକ୍ତିବାଦକୁ ପରବର୍ତ୍ତୀ ପର୍ଯ୍ୟାୟରେ ସକ୍ରେଟିସ୍ ଓ ପ୍ଲେଟୋ ଗଭୀର ସମାଲୋଚନା କରିଛନ୍ତି । ବ୍ୟକ୍ତିବାଦ ଏକ ସାଧନ ହୋଇପାରିବ, ଏହାକୁ ଏକ ଲକ୍ଷ୍ୟ ବା ସାଧ୍ୟ ଭାବରେ ନେଲେ ସେଥିରୁ ନକାରାତ୍ମକ ପରିସ୍ଥିତି ଆସିବ । ଜଣେ କଳାକାର ନିଜର ବ୍ୟକ୍ତିଗତ ଅଭିରୁଚି ଅନୁସାରେ ତାର ପ୍ରତିଭାକୁ ବିନିଯୋଗ କଲେ ଓ ସାମାଜିକ ଜୀବନରେ ତାର ପ୍ରଭାବ ନେଇ ଉଦାସୀନ ରହିଲେ ସେ ହୁଏତ ସମାଜର କ୍ଷତିକରିବ । ବ୍ୟକ୍ତିବାଦକୁ ଏକ ଯଥେଚାଚାର ଭାବରେ ପ୍ରୟୋଗ କଲେ ତାହାର ନାନା କୁପରିଣାମ ଆସିବ । ବସ୍ତୁତଃ ବ୍ୟକ୍ତିବାଦକୁ ସାଧ୍ୟ ବା ଲକ୍ଷ୍ୟ କଲେ ଓ ତାହାକୁ ସାମାଜିକ, ନୈତିକ ଓ ଯୌକ୍ତିକ ଆଧାରରୁ ମୁକ୍ତ କଲେ ତାହାର କୁପରିଣାମ ଆସିବ । ବ୍ୟକ୍ତିବାଦର ଅଯୌକ୍ତିକ, ଅସାମାଜିକ ଓ ଅନୈତିକ ଦିଗର ନାନା ସମାଲୋଚନା ପରବର୍ତ୍ତୀ ଗ୍ରୀକ୍ ଦାର୍ଶନିକମାନେ କରିଥିବା ମନେହୁଏ ।

ଦର୍ଶନ ଇତିହାସରେ ସଫିଷ୍ଟ ଭାବଧାରାର ଯେ କିଛି ମହତ୍ତ୍ୱ ରହିଛି ଏହା ଅସ୍ୱୀକାର କରିହେବ ନାହିଁ । ଏହାକୁ କେବଳ ପ୍ରାଚୀନ ଗ୍ରୀସ୍‌ର ଏକ ବିଦ୍ରୋହୀ ଭାବଧାରା କହି ପରିତ୍ୟାଗ କରିବା ମଧ୍ୟ ଯଥାର୍ଥ ମନେହୁଏ ନାହିଁ । ବରଂ ସଫିଷ୍ଟ ଭାବଧାରାରେ ଥିବା କେତେକ ବିଚାର ଆଧୁନିକ ମାନସକୁ ପ୍ରଭାବିତ କରିପାରିବ କିମ୍ବା ସାଂପ୍ରତିକ ଯୁଗର ଆଦର୍ଶ ସହ ସମତାଳ ହୋଇପାରିବ । ଜଣେ ବ୍ୟକ୍ତିର କୌଣସି ବିଷୟରେ ଦୃଢ଼ ଆତ୍ମପ୍ରତ୍ୟୟ ରହିବା ଆବଶ୍ୟକ । ଜଣେ ବ୍ୟକ୍ତି କ'ଣ ବିଶ୍ୱାସ କରୁଛି ତାହା ଏତେ ଗୁରୁତ୍ୱପୂର୍ଣ୍ଣ ନୁହେଁ । ତେବେ ନିଜର ବିଶ୍ୱାସ ନେଇ ଜଣଙ୍କର ଦୃଢ଼ତା, ଆତ୍ମପ୍ରତ୍ୟୟ ଓ ଗଭୀରତା ଅଧିକ ମହତ୍ତ୍ୱପୂର୍ଣ୍ଣ । ସୁତରାଂ ବ୍ୟକ୍ତିବାଦ ସହ ଆତ୍ମପ୍ରତ୍ୟୟତା ଓ ଦୃଢତା ରହିଲେ ଏହା ଏକ ବୈଚାରିକ ଭିତ୍ତି ନେଇପାରିବ ।

ମୋଟ ଉପରେ ସଫିଷ୍ଟମାନେ ପ୍ରାଚୀନ ଗ୍ରୀସ୍‌ରେ ଶିକ୍ଷାର ପ୍ରସାର, ବ୍ୟକ୍ତିବାଦର ପ୍ରତିଷ୍ଠା, ବାଗ୍ମିତା, ବ୍ୟାକରଣ, ଆଳଙ୍କାରିକ ପ୍ରକାଶ ଶୈଳୀ ଇତ୍ୟାଦି କ୍ଷେତ୍ରରେ ପଥପ୍ରଦର୍ଶକ ଥିଲେ । ଗ୍ରୀସ୍‌ର ନବଜାଗରଣରେ ସେମାନେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିଲେ । ସେମାନେ ନିଜ ଯୁଗର ବୌଦ୍ଧିକ ପ୍ରତିନିଧି ଥିଲେ ବୋଲି କୁହାଯାଇପାରେ ।.

## ଷଷ୍ଠ ପରିଚ୍ଛେଦ

### ସକ୍ରେଟିସ୍

୬.୧ ଜୀବନୀ ଓ ବ୍ୟକ୍ତିତ୍ୱ

ଦର୍ଶନ ଇତିହାସରେ ସକ୍ରେଟିସ୍ ଏକ ଅନନ୍ୟ ବ୍ୟକ୍ତିତ୍ୱ । ତାଙ୍କ ବ୍ୟକ୍ତିତ୍ୱ ଯେତିକି ମହନୀୟ ସେତିକି ଅସାଧାରଣ । ସ୍ୱାଧୀନ ଚିନ୍ତା, ଜ୍ଞାନ ଅନ୍ୱେଷଣ, ସତ୍ୟ ପ୍ରତି ପ୍ରତିବଦ୍ଧତା ଓ ନୈତିକ ଶୃଂଖଳା ତାଙ୍କ ଚରିତ୍ରର ମହକ । ତାଙ୍କ ବ୍ୟକ୍ତିତ୍ୱ ଏତେ ମହନୀୟ ଯେ ତାହା ହଜାର ହଜାର ବର୍ଷ ଧରି ମାନବ ସମାଜକୁ ନୈତିକ ଆଦର୍ଶ ଓ ମାନବିକ ମୂଲ୍ୟବୋଧ କ୍ଷେତ୍ରରେ ପ୍ରଭାବିତ କରିଆସିଛି । ସକ୍ରେଟିସ୍‌ଙ୍କର ଜନ୍ମ ଖ୍ରୀ.ପୂ ୪୬୯ ବା ୪୭୦ ରେ ଏଥେନ୍‌ସଠାରେ ହୋଇଥିଲା । ବାପା ଥିଲେ ଜଣେ ଭାସ୍କର ବା ପଥର-ଶିଳ୍ପୀ ଓ ମା' ଥିଲେ ଜଣେ ଧାଈ । ତାଙ୍କର ବାଲ୍ୟକାଳ ବା ଶିକ୍ଷା ବିଷୟରେ ବିଶେଷ କିଛି ଜଣାନାହିଁ । ତେବେ କୁହାଯାଏ ଯେ ସେ ତାଙ୍କ ବାପାଙ୍କର ବୃତ୍ତିରେ କିଛି ବର୍ଷ ଅତିବାହିତ କରିଥିଲେ । ଏଥେନ୍‌ସସ୍ଥିତ ଆକ୍ରୋପଲିସଠାରେ କେତେକ ମୂର୍ତ୍ତି ସକ୍ରେଟିସ୍‌ଙ୍କ ଦ୍ୱାରା ନିର୍ମିତ ହୋଇଥିବା ମନେ କରାଯାଏ । ସେ ଦେଖିବାକୁ କିଛି ଅସୁନ୍ଦର ଥିଲେ ଓ ଏକ ଅତି ସରଳ ଜୀବନ ବଞ୍ଚୁଥିଲେ । ସେ ଅନେକ ଦାରିଦ୍ର୍ୟ ଭିତରେ ଜୀବନ ନିର୍ବାହ କରିଥିଲେ । ବହୁତ ପରେ ସେ ବିବାହ କରିଥିଲେ ଓ ତିନୋଟି ପୁତ୍ରଙ୍କର ବାପା ହୋଇଥିଲେ । ଦୁଇଟି ଯୁଦ୍ଧରେ ସେ ସୈନିକ ଭାବରେ ଅଳ୍ପ ଦିନ ପାଇଁ ଏଥେନ୍ସ ବାହାରକୁ ଯିବା ବ୍ୟତୀତ ସମଗ୍ର ଜୀବନ କାଳ ଏଥେନ୍ସଠାରେ ଅତିବାହିତ କରିଥିଲେ । ଏଥେନ୍ସଦ୍ୱାରା ହୋଇଥିବା ପେଲୋପୋନେସୀୟ ଯୁଦ୍ଧରେ କିଛି କାଳ ସେ ସୈନିକ ରହିଥିଲେ । ସକଳ ପ୍ରତିକୂଳ ସ୍ଥିତିରେ ସେ କିପରି ଖୁସି ମନରେ ସମୟ ଅତିବାହିତ କରୁଥିଲେ ଓ ନିଜର ଅପୂର୍ବ ସାହସିକତା ପ୍ରଦର୍ଶନ କରିଥିଲେ ତାଙ୍କର କେତେକ ସୈନିକ ସାଥି ବ୍ୟକ୍ତ କରିଛନ୍ତି । ସେହିପରି ଡେଲିଅମ ଯୁଦ୍ଧରେ ଯେଉଁଥିରେ ଏଥେନ୍ସ ପରାଜୟ ବରଣ କରିଥିଲା, ସେଥିରେ ମଧ୍ୟ ସେ ଅପୂର୍ବ ସାହସିକତାର ପରିଚୟ ଦେଇଥିଲେ । ସକ୍ରେଟିସ୍‌ଙ୍କ ପରି ଅନ୍ୟମାନେ ଯଦି ସେହିପରି ସାହସିକତାର ସହ ଯୁଦ୍ଧରେ ସଂପୃକ୍ତ ହୋଇଥାନ୍ତେ ତେବେ ଏଥେନୀୟମାନେ ଯେ ଯୁଦ୍ଧରେ ପରାଜୟ ବରଣ କରିନଥାନ୍ତେ ଏହା ଅନେକ ବ୍ୟକ୍ତ କରିଥିବାର ପ୍ରମାଣ ରହିଛି ।

ସକ୍ରେଟିସ୍ ଯେପରି ଦାର୍ଶନିକ ଥିଲେ, ସେହିପରି ଥିଲେ ଜଣେ ମହାତ୍ମା ଓ ଏକ ଜ୍ଞାନପିପାସୁ ବ୍ୟକ୍ତି । କୌତୂହଳର ବିଷୟ ସକ୍ରେଟିସ୍ ନିଜେ କିଛି ଲେଖିଯାଇ ନାହାନ୍ତି । ବରଂ ସକ୍ରେଟିସ୍‌ଙ୍କ ବିଷୟରେ ତାଙ୍କର ଜଣେ ଅନୁଗାମୀ ପ୍ଲେଟୋ ତାଙ୍କର ଡାଏଲଗ୍ ମାନଙ୍କରେ ତାଙ୍କ ଚରିତ୍ରର ସଦ୍‌ଗୁଣ ସଂପର୍କରେ ଉଲ୍ଲେଖ କରିଛନ୍ତି । ପ୍ଲେଟୋଙ୍କର ଡାଏଲଗ୍‌ମାନ ଚିନ୍ତାରାଜ୍ୟରେ ଏକ ଅନନ୍ୟ କୃତି । ଏହି ଡାଏଲଗ୍‌ମାନଙ୍କରେ ପ୍ଲେଟୋ ସକ୍ରେଟିସ୍‌ଙ୍କ

ମହାନ ବ୍ୟକ୍ତିତ୍ୱ ସମ୍ବନ୍ଧରେ ଯେଉଁ ହୃଦୟସ୍ପର୍ଶୀ ଚିତ୍ର ଦେଇଛନ୍ତି ତାହାକୁ ନେଇ ହୁଏତ ସନ୍ଦେହ ରହିପାରେ । ପ୍ରକୃତରେ ଜଣେ ରକ୍ତ ମାଂସର ମଣିଷ ଏତେ ମହନୀୟ ହୋଇପାରେ ତାହାକୁ କେତେକ ସନ୍ଦେହ କରିଛନ୍ତି ଓ ଏପରିକି ପ୍ଲେଟୋଙ୍କ ଡାଏଲଗ୍ ମାନଙ୍କରେ ବର୍ଣ୍ଣିତ ସକ୍ରେଟିସ୍ ଏକ ଐତିହାସିକ ବ୍ୟକ୍ତି ହେବା ସନ୍ଦେହ ଜନକ ବୋଲି କହିଛନ୍ତି । ପ୍ଲେଟୋଙ୍କ ଡାଏଲଗ୍‌ମାନଙ୍କରେ ବର୍ଣ୍ଣିତ ସକ୍ରେଟିସ୍ ଏକ ଐତିହାସିକ ବ୍ୟକ୍ତି ହେବା ସନ୍ଦେହ ଜନକ ବୋଲି କେତେକ କହିଛନ୍ତି । ପ୍ଲେଟୋଙ୍କ ବ୍ୟତୀତ ଜେନୋଫୋନ୍ (xenophon) ମଧ୍ୟ ସକ୍ରେଟିସ୍‌ଙ୍କ ଉପରେ ମେମୋରେବିଲିଆ (Memorabilia) ନାମକ ଏକ ପୁସ୍ତକରେ ତାଙ୍କ ମହନୀୟ ବ୍ୟକ୍ତିତ୍ୱର ଝଲକ ଦେଇଛନ୍ତି । ଜେନୋଫୋନ୍‌ଙ୍କର ଦର୍ଶନ ପ୍ରତି ରୁଚି ନଥିଲା, ସେ ଥିଲେ ଜଣେ ସୈନିକ । ଜେନୋଫୋନ୍ ସକ୍ରେଟିସ୍‌ଙ୍କ ସଂପର୍କରେ ଆସି ତାଙ୍କ ବ୍ୟକ୍ତିତ୍ୱର ପରଶରେ ପ୍ରଭାବିତ ହୋଇଥିଲେ । ସକ୍ରେଟିସ୍‌ଙ୍କ ସହ ପ୍ଲେଟୋଙ୍କ ସଂପର୍କ ଦାର୍ଶନିକ ବିଚାରକୁ ନେଇ, କିନ୍ତୁ ଜେନୋଫୋନ୍‌ଙ୍କର ସକ୍ରେଟିସ୍‌ଙ୍କ ସଂପର୍କ ଭିନ୍ନ । ସେ ସକ୍ରେଟିସ୍‌ଙ୍କ ଜୀବନୀ ଲେଖି ନାହାନ୍ତି ବରଂ ସକ୍ରେଟିସ୍‌ଙ୍କ ବ୍ୟକ୍ତିତ୍ୱର ସରଳତା ଓ ମହନୀୟତାର କିଛି ସୂଚନା ଦେଇଛନ୍ତି । ବଶେଷକରି ସକ୍ରେଟିସ୍‌ଙ୍କୁ ସମାଲୋଚନା କରୁଥିବା ବ୍ୟକ୍ତିମାନଙ୍କୁ ସେ ସକ୍ରେଟିସ୍‌ଙ୍କ ପବିତ୍ର ହୃଦୟର ବାର୍ତ୍ତା ଦେଇଛନ୍ତି ଓ ଜଣେ ସରଳ, ସତ୍ୟନିଷ୍ଠ ଓ ବିବେକବାନ ବ୍ୟକ୍ତିଙ୍କର ସମାଲୋଚନା କରୁଥିବା ଅସହିଷ୍ଣୁ ଲୋକମାନଙ୍କୁ କଟାକ୍ଷ କରିଛନ୍ତି । ସକ୍ରେଟିସ୍‌ଙ୍କ ଦାର୍ଶନିକ ଭାବଧାରାକୁ କେତେକ ବି ସମାଲୋଚନା କରିଛନ୍ତି । ଏହିପରି ସକ୍ରେଟିସ୍‌ଙ୍କ ବଷୟରେ ଭିନ୍ନ ଭିନ୍ନ ଚିତ୍ର ବିଭିନ୍ନ ଲେଖାରୁ ମିଳୁଥିବାରୁ ତାଙ୍କ ଐତିହାସିକତାକୁ ନେଇ କେତେକ ପ୍ରଶ୍ନ ଉଠାଇଛନ୍ତି । ବିଶେଷକରି ପ୍ଲେଟୋ ସକ୍ରେଟିସ୍‌ଙ୍କ ଚରିତ୍ରକୁ ତାଙ୍କର କେତେକ ଡାଏଲଗ୍‌ମାନଙ୍କରେ ଯେପରି ଚିତ୍ରଣ କରିଛନ୍ତି ଓ ତାଙ୍କୁ ମାନବିକ ଦୋଷଦୁର୍ବଳତାର ଊର୍ଦ୍ଧ୍ୱରେ ରଖିଛନ୍ତି ତାହା ନେଇ କେତେକ ସନ୍ଦେହ ପ୍ରକାଶ କରିଥାନ୍ତି । ଆରିଷ୍ଟୋଟଲ ବି ସକ୍ରେଟିସ୍‌ଙ୍କ ସିଦ୍ଧାନ୍ତ ବିଷୟରେ ତାଙ୍କ ଲେଖାରେ ଉଲ୍ଲେଖ କରିଛନ୍ତି । ଏ ସବୁ ଦୃଷ୍ଟିରୁ ସକ୍ରେଟିସ୍ ଯେ ଜଣେ ଐତିହାସିକ ବ୍ୟକ୍ତିତ୍ୱ ଏହା ସନ୍ଦେହର ଊର୍ଦ୍ଧ୍ୱରେ । ସକ୍ରେଟିସ୍‌ଙ୍କ ମୃତ୍ୟୁର ପ୍ରାୟ ପନ୍ଦର ବର୍ଷ ପରେ ଆରିଷ୍ଟୋଟଲଙ୍କର ଜନ୍ମ । ତେବେ ଆରିଷ୍ଟୋଟଲ ଥିଲେ ପ୍ଲେଟୋଙ୍କର ଛାତ୍ର ଓ ସେ ସକ୍ରେଟିସ୍ କିପରି ଦ୍ୱନ୍ଦ୍ୱନ୍ୟାୟ, ସାର୍ବଜନୀନ ସଂଜ୍ଞା ଓ ନୀତିଶାସ୍ତ୍ରର ପ୍ରବକ୍ତା ତାହା ଦର୍ଶାଇଛନ୍ତି । ସକ୍ରେଟିସ୍ ଜଣେ ଗଭୀର ଜ୍ଞାନପିପାସୁ ଓ ଉଚ୍ଚକୋଟିର ବ୍ୟକ୍ତିତ୍ୱ, ଏହା ନିଃସନ୍ଦେହ । ପ୍ଲେଟୋ ବି ଥିଲେ ଜଣେ ପ୍ରବୀଣ ଦାର୍ଶନିକ ଓ ବହୁ ପ୍ରତିଭାର ଅଧିକାରୀ । ତାଙ୍କର ଆପୋଲୋଜି, ଫିଡୋ, ସିଂପୋଜିୟମ, ମିନୋ ଇତ୍ୟାଦି ଡାଏଲଗ୍‌ରେ ସକ୍ରେଟିସ୍ ମୁଖ୍ୟ ଚରିତ୍ର ଭାବରେ ପ୍ରକାଶିତ ହୋଇଛନ୍ତି । ପ୍ଲେଟୋଙ୍କ ପରି ଜଣେ ମହାନ୍ ଦାର୍ଶନିକ ଜଣେ କାଳ୍ପନିକ ଚରିତ୍ରକୁ ଏତେ ସମ୍ମାନର ସହ ପ୍ରକାଶ କରିବା ସମ୍ଭବତଃ ଅର୍ଥପୂର୍ଣ୍ଣ ମନେହୁଏ ନାହିଁ । ସୁତରାଂ ତାଙ୍କ ଡାଏଲଗ୍ ମାନଙ୍କରେ ସକ୍ରେଟିସ୍‌ଙ୍କୁ ଯେପରି ଚିତ୍ରଣ କରାଯାଇଛି ସେଥିରେ କିଛି ଅତିରଂଜନ ଥାଇପାରେ ତେବେ ପ୍ଲେଟୋଙ୍କ ପରି ଜଣେ ଦାର୍ଶନିକ ଓ ମନୀଷୀଙ୍କୁ ଆଜୀବନ ପ୍ରେରଣା ଯୋଗାଇଥିବା ସକ୍ରେଟିସ୍ ଯେ ନିଶ୍ଚୟ ମହାନ୍ ଏହାକୁ ଅସ୍ୱୀକାର କରାଯାଇପାରିବ ନାହିଁ । ପୁନଶ୍ଚ ସକ୍ରେଟିସ୍‌ଙ୍କୁ ଜାଣିଥିବା ଓ ତାଙ୍କ ପ୍ରତ୍ୟକ୍ଷ ସଂପର୍କରେ ଆସିଥିବା ବହୁ ବ୍ୟକ୍ତି ସେତେବେଳେ ରହିଥିଲେ । ପ୍ଲେଟୋ ଯଦି ସକ୍ରେଟିସ୍‌ଙ୍କ ବିଷୟରେ ବାହୁଲ୍ୟ ଓ ମନଗଢ଼ା କଥା ଲେଖିଥିବେ ତେବେ ସେ ନିଶ୍ଚୟ ସମାଲୋଚନାର

ଶରବ୍ୟ ହୋଇଥାନ୍ତେ । ସୁତରାଂ ପ୍ରକୃତ ସକ୍ରେଟିସ୍ ଓ ପ୍ଲେଟୋଙ୍କ ଡାଏଲଗ୍ର ସକ୍ରେଟିସ୍‌ଙ୍କ ଭିତରେ ବିଶେଷ ପାର୍ଥକ୍ୟ ନଥିବ । ତେବେ ପ୍ଲେଟୋଙ୍କର ଉଚ୍ଚ ବର୍ଣ୍ଣନାଶୈଳୀ ଓ ଆବେଗପୂର୍ଣ୍ଣ ଅଭିବ୍ୟକ୍ତି ସକ୍ରେଟିସ୍‌ଙ୍କୁ ମହାନ କରି ଗଢ଼ି ତୋଳିଛି ।

ସକ୍ରେଟିସ୍‌ଙ୍କ ବିଷୟରେ ଦୁଇଟି ଚମତ୍କାରିତାର କାହାଣୀ ଜନମାନସରେ ପରିବ୍ୟାପ୍ତ ଥିଲା । ତାଙ୍କ ଅନ୍ତରାତ୍ମାରେ ତାଙ୍କୁ କିଛି ଦୈବୀ ନିର୍ଦ୍ଦେଶ ମିଳୁଥିଲା ଓ ସେହି ପୂର୍ବସୂଚନା ତାଙ୍କ ଜୀବନବୋଧକୁ ଗଭୀର ପ୍ରଭାବିତ କରୁଥିଲା । ଭଲ-ମନ୍ଦ, ସତ୍ୟ-ମିଥ୍ୟା, ନ୍ୟାୟ – ଅନ୍ୟାୟ ନେଇ ସେ ନିଜ ଅନ୍ତରାତ୍ମାର ବାର୍ତ୍ତାଦ୍ୱାରା ପରିଚାଳିତ ହେଉଥିଲେ । ଏଣୁ ସେ ସକଳ ପ୍ରତିକୂଳତା ଭିତରେ ଥାଇ ମଧ୍ୟ କେବେ ସତ୍ୟ, ନ୍ୟାୟ ଓ ବିଚାରଶୀଳତା ପାଖରୁ ଦୂରେଇ ଯାଇନଥିଲେ । ସେ ଜୀବନସାରା ନୈତିକ ଖଣ୍ଡାଧାରାରେ ଚାଲିଛନ୍ତି ଓ କୌଣସି ସମୟରେ ସାମାନ୍ୟତମ ଦୁର୍ବଳତା ବା ଅନୈତିକତାର ଆଶ୍ରୟ ନେଇନାହାନ୍ତି । ପ୍ଲେଟୋଙ୍କ ଡାଏଲଗ୍ "ଆପୋଲୋଜି" ରୁ ସକ୍ରେଟିସ୍‌ଙ୍କ ସଂପର୍କରେ ଅନ୍ୟ ଏକ ଚମତ୍କାରିତାର ସୂଚନା ମିଳେ । ଚ୍ୟେରିଫୋନ୍ (chairephon) ତୀର୍ଥଯାତ୍ରାରେ ଡେଲଫି ଯାଇ ସେଠିକାର ଓରାକେଲ (ଭବିଷ୍ୟ ବାଣୀ କରୁଥିବା ଦେବତା)ଙ୍କ ଏକ ମତ ନେଇଥିଲେ । ଡେଲ୍‌ଫି ହେଉଛି ଗ୍ରୀସ୍‌ରେ ଏକ ପବିତ୍ର ଆଧ୍ୟାତ୍ମିକ ପୀଠ, ଯାହା ଦେବତାଙ୍କ ସ୍ଥାନ ବୋଲି ବିଶ୍ୱାସ କରାଯାଏ । ତାହା ଦେବତା ଆପୋଲୋଙ୍କର ନିବାସ ଓ ଆପୋଲୋ ହେଉଛନ୍ତି ଜ୍ଞାନ, ଆଲୋକ ଓ ସତ୍ୟର ଦେବତା । ସେଠାରେ ଆପୋଲୋଙ୍କର ଯାହାଙ୍କ ପାଖରେ ଆବିର୍ଭାବ ହୁଏ ସେ ହେଉଛନ୍ତି ଓରାକେଲ (Oracle) । ସେହି ଡେଲଫିକୁ ତୀର୍ଥ କରିବାକୁ ଯାଇ ଚ୍ୟେରିଫୋନ ଓରାକେଲଙ୍କୁ ଏକ ପ୍ରଶ୍ନ କରିଥିଲେ । "ଏଥେନ୍ସରେ ସକ୍ରେଟିସ୍‌ଙ୍କଠାରୁ ଅଧିକ ପ୍ରାଜ୍ଞ କେହି ବ୍ୟକ୍ତି ରହିଛନ୍ତି କି" ? ଓରାକେଲଙ୍କ ବାଣୀକୁ ଗ୍ରୀସ୍‌ର ଲୋକମାନେ ଈଶ୍ୱରଙ୍କର ବାର୍ତ୍ତା ବୋଲି ବିଶ୍ୱାସ କରନ୍ତି । ଓରାକେଲଙ୍କର ଚ୍ୟେରିଫୋନଙ୍କୁ ଉତ୍ତର ଥିଲା – "ନା" । ଏହାର ତାତ୍ପର୍ଯ୍ୟ ହେଉଛି ଏଥେନ୍‌ସରେ ସକ୍ରେଟିସ୍ ହେଉଛନ୍ତି ସର୍ବୋତ୍ତମ ପ୍ରାଜ୍ଞ ବ୍ୟକ୍ତି । ପ୍ଲେଟୋ ଆପୋଲୋଜି ଡାଏଲଗ୍‌ରେ ସକ୍ରେଟିସ୍‌ଙ୍କ ମୁହଁରେ କହିଛନ୍ତି ଯେ ସକ୍ରେଟିସ୍ ଏହି କଥା ଉପରେ ନଜେ ମଧ୍ୟ ଗମ୍ଭୀର ଆଶ୍ଚର୍ଯ୍ୟ ବ୍ୟକ୍ତ କରିଛନ୍ତି । ଏଥେନ୍ସର ବହୁ ଜ୍ଞାନୀ, ଗୁଣୀ ଲୋକମାନଙ୍କୁ ସେ ଜାଣନ୍ତି । ସେମାନଙ୍କ ସହ ସେ ବାର୍ତ୍ତାଳାପ କରନ୍ତି । ସକ୍ରେଟିସ୍ ସର୍ବଦା ନିଜର ଅଜ୍ଞତା ପ୍ରକାଶ କରନ୍ତି ଓ ଅନ୍ୟମାନଙ୍କ ପାଖରୁ ସତ୍ୟ, ନ୍ୟାୟ, ସୌନ୍ଦର୍ଯ୍ୟ କ'ଣ ଜାଣିବାକୁ ଇଚ୍ଛା କରନ୍ତି । ଅନ୍ୟମାନଙ୍କ ପାଖରୁ ଏ ବିଷୟରେ ଯାହା ଶୁଣନ୍ତି ତାଙ୍କୁ ପ୍ରଶ୍ନ କରିବା ଭିତରେ ସେମାନଙ୍କ ଚିନ୍ତାର ବିରୋଧାଭାସ ସହଜରେ ପ୍ରକାଶ ପାଇଥାଏ । ଯେଉଁମାନେ ନିଜକୁ ଜ୍ଞାନୀ, ପ୍ରାଜ୍ଞ ବୋଲି ଅହମିକା ପ୍ରକାଶ କରନ୍ତି ସେମାନଙ୍କର ଅଜ୍ଞତାକୁ ସକ୍ରେଟିସ୍ ସହଜରେ ଆଲୋଚନା ମାଧ୍ୟମରେ ପଦାକୁ ଆଣନ୍ତି । ସକ୍ରେଟିସ୍ ତ ନିଜକୁ ସର୍ବଦା ଅଜ୍ଞ ବୋଲି ଅଭିହିତ କରନ୍ତି, ତେବେ ଯେଉଁମାନଙ୍କ ସହ ସେ ବାର୍ତ୍ତାଳାପ କରନ୍ତି ସେମାନେ ଯେ ପ୍ରକୃତରେ ଅଜ୍ଞ ତାଙ୍କର ଏହି ଉପଲବ୍ଧି ହୋଇଥାଏ । ନିଜକୁ ବୁଦ୍ଧିମାନ, ବିଜ୍ଞ, ଜ୍ଞାନୀ ଇତ୍ୟାଦି ଦାବି କରୁଥିବା ଲୋକମାନଙ୍କ ସହ ସକ୍ରେଟିସ୍‌ଙ୍କର କଥୋପକଥନରୁ ସେ ଜାଣନ୍ତି ଯେ ପ୍ରକୃତରେ ସେମାନେ ଆଦୌ ଜ୍ଞାନୀ ନୁହନ୍ତି, ସେମାନେ ଅନ୍ତତଃ ତାଙ୍କଠାରୁ ଅଧିକ ଅଜ୍ଞ । ସକ୍ରେଟିସ୍ ନିଜର ଅଜ୍ଞତା ବିଷୟରେ ସଚେତନ, କିନ୍ତୁ ଅନ୍ୟମାନେ ଯେପରି ନିଜକୁ ବିଜ୍ଞ ମନେ କରୁଛନ୍ତି ସେମାନେ ବିଜ୍ଞ ନୁହନ୍ତି, ବରଂ ତାଙ୍କଠାରୁ

ଅଧିକ ଅଜ୍ଞ । ବସ୍ତୁତଃ ସକ୍ରେଟିସ୍‌ଙ୍କର ଉପଲବ୍ଧି ହୁଏ ଓରାକେଲ ଯେଉଁ ଭବିଷ୍ୟବାଣୀ କରିଥିଲେ ତାହା ପ୍ରକୃତରେ ସତ୍ୟ କି ! ପ୍ଲେଟୋ ଏହି ବିଷୟକୁ ସୁନ୍ଦର ଭାବରେ ଡାଏଲଗ୍‌ରେ ସକ୍ରେଟିସ୍‌ଙ୍କ ବିଷୟରେ ବ୍ୟକ୍ତ କରିଛନ୍ତି ।

ସକ୍ରେଟିସ୍ ନିଜକୁ ଅଜ୍ଞ କହୁଥିଲେ, ତେବେ ଯୁକ୍ତି କରିବାର କୌଶଳ କ୍ଷେତ୍ରରେ ଅଦ୍ୱିତୀୟ ଥିଲେ । ତାଙ୍କ ପାଖରେ ଚମତ୍କାର ରସିକତା ରହିଥିଲା ଓ ନିଜର ରସିକତା ଓ ବିନୟଦ୍ୱାରା ସେ ସବୁ ଶ୍ରେଣୀର ଲୋକମାନଙ୍କ ସହ ଆଲୋଚନାରେ ସଂପୃକ୍ତ ହେଉଥିଲେ । ସେ ପ୍ରତିଦିନ ଗ୍ରୀସ୍‌ର ଜନଗହଳିପୂର୍ଣ୍ଣ ସ୍ଥାନମାନଙ୍କୁ ଯାଇ ଲୋକମାନଙ୍କ ସହ ଆଲୋଚନାରେ ଭାଗ ନେଉଥିଲେ । ତାଙ୍କର ଜ୍ଞାନଚର୍ଚ୍ଚାର ମାଧମ ଥିଲା "ପାରସ୍ପରିକ ଆଲୋଚନା" । ସେ ଲୋକମାନଙ୍କ ପାଖରୁ ଅଧିକ ଶୁଣୁଥିଲେ, ଲୋକଙ୍କ କଥାରୁ ଖିଅ ନେଇ ପ୍ରଶ୍ନ କରୁଥିଲେ ଓ ତିନି / ଚାରିଟି ପ୍ରଶ୍ନ ପରେ ଆଲୋଚକ ହତଭମ୍ବ ହେଉଥିଲେ । ଅନ୍ୟମାନଙ୍କର ଚିନ୍ତା ଚେତନାକୁ ସେମାନଙ୍କର ଉତ୍ତରରେ ବିଶ୍ଳେଷଣ କରାଇ ସେମାନଙ୍କ ଅଜ୍ଞତା ବିଷୟରେ ସେମାନଙ୍କୁ ସଚେତନ କରାଉଥିଲେ । ଅନ୍ୟମାନେ ନିଜର ଅଜ୍ଞତାକୁ ଉପଲବ୍ଧି କଲେ ସେମାନେ ଯେ ଜ୍ଞାନପିପାସା ଦିଗରେ ଆଗ୍ରହୀ ହେବେ ଏହା ସେ ଭାବୁଥିଲେ । ଚିନ୍ତାକରିବା, ଅଧ୍ୟୟନ କରିବା ଓ ଆତ୍ମସମୀକ୍ଷା କରିବା ଯେ ବୌଦ୍ଧିକ ବିକାଶର ମୂଳମନ୍ତ୍ର ଏହି ବାର୍ତ୍ତା ସେ ଆଲୋଚନା ମାଧମରେ ଦେଉଥିଲେ । ଜଣେ ଚେଷ୍ଟାକଲେ ସିଲେଇ, ବୟନ କଳା, ପହଁରିବା, ମିସ୍ତ୍ରୀକାମ ଇତ୍ୟାଦି ଶିକ୍ଷା କରିପାରିବ, କିନ୍ତୁ ସତ୍ୟ, ନ୍ୟାୟ, ସୌନ୍ଦର୍ଯ୍ୟ ଇତ୍ୟାଦି ଅମୂର୍ତ୍ତ ପ୍ରତ୍ୟୟମାନଙ୍କୁ ଜାଣିବା ପାଇଁ ଗମ୍ଭୀର ଅନୁଶୀଳନ ଯେ ଆବଶ୍ୟକ ଏହା ସେ ବିଶ୍ୱାସ କରୁଥିଲେ । ସକ୍ରେଟିସ୍‌ଙ୍କର ଉପଲବ୍ଧି ଥିଲା ଯେ ନିଜର ଅଜ୍ଞତା ବିଷୟରେ ଲୋକମାନଙ୍କୁ ସଚେତନ କରିବା ।

ସକ୍ରେଟିସ୍‌ଙ୍କ କଥା ଶୁଣିବା ପାଇଁ ଯୁବକ ମାନେ ବେଶି ଆଗ୍ରହୀ ହେଉଥିଲେ । ଯେଉଁ ସ୍ଥାନକୁ ଯାଉଥିଲେ ଓ ଯେଉଁମାନେ ଚାହୁଁଥିଲେ ସକ୍ରେଟିସ୍ ସେମାନଙ୍କ ସହ କଥାବାର୍ତ୍ତାରେ ନିଜକୁ ସଂପୃକ୍ତ କରୁଥିଲେ । ଅତି ସାଧାରଣ ବେଶପୋଷାକ, ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର, କିଛି ବ୍ୟଙ୍ଗପୂର୍ଣ୍ଣ ହସ ରସ ଇତ୍ୟାଦି ଯୋଗୁ ଅନ୍ୟମାନେ ତାଙ୍କ ପାଖକୁ ଆକର୍ଷିତ ହୋଇ ଆସୁଥିଲେ ଓ ସେମାନଙ୍କ ପାଖରୁ ଅଧିକ ଶୁଣିବାକୁ ଭଲ ପାଉଥିଲେ । ମନୁଷ୍ୟ କିପରି ସୁଖ ଶାନ୍ତିରେ ଜୀବନ ବଞ୍ଚିବ, କ'ଣ ପାଇଲେ ମଣିଷ ସୁଖୀ ହେବ, କି ପ୍ରକାର ଜୀବନ ଏକ ଉତ୍ତମ ଜୀବନ ଏହିପରି ଅନେକ ପ୍ରଶ୍ନ ସେ ଉଠାଉଥିଲେ ଓ ଅନ୍ୟମାନଙ୍କ ପାଖରୁ ଏ ବିଷୟରେ ଜାଣିବାକୁ ଚାହୁଁଥିଲେ । ସେ ଲୋକମାନଙ୍କ ଭାବନାର ଦୁର୍ବଳତା ଓ ବିରୋଧାଭାସକୁ ସହଜରେ ଧରାଇ ଦେଉଥିଲେ ଓ ଲୋକଙ୍କର ପ୍ରଶ୍ନରେ ନିଜର କିଛି ମନ୍ତବ୍ୟ ରଖୁଥିଲେ । ତେବେ ତାଙ୍କ ମନ୍ତବ୍ୟର ଦୁର୍ବଳତା ଜଣାଇବା ପାଇଁ ସେ ଅନ୍ୟମାନଙ୍କୁ ଆହ୍ୱାନ କରୁଥିଲେ । ସର୍ବଦା ମୁକ୍ତ ମନ ପୋଷଣ କରୁଥିଲେ ଓ ତାଙ୍କ ଭାବନାରେ ଦୁର୍ବଳତା କେହି ଦର୍ଶାଇଲେ ସେ ସ୍ୱାଗତ କରୁଥିଲେ ଓ ନିଜକୁ ସଂଶୋଧନ କରିବାକୁ ପ୍ରସ୍ତୁତ ଥିଲେ ।

ସକ୍ରେଟିସ୍ ଯେପରି ମୁକ୍ତ ଚିନ୍ତକ ଥିଲେ ସେହିପରି ମଧ ନିର୍ଭୀକ ଥିଲେ । ମନୁଷ୍ୟର ମୁକ୍ତ ଚିନ୍ତନ ଓ ସତ୍ୟାନୁସନ୍ଧାନ ପାଇଁ ସେ ଯୁବକମାନଙ୍କୁ ଗଭୀର ଭାବରେ ପ୍ରଭାବିତ କରୁଥିଲେ । ବିଭିନ୍ନ ଲୋକମାନଙ୍କ ସହ ଓ

ବିଶେଷକରି ଯୁବକମାନଙ୍କ ସହ ଆଲୋଚନା ସମୟରେ ଗ୍ରୀକ୍ ସମାଜର ବା ଏଥେନ୍‌ସର ଶାସକମାନଙ୍କର ମନ୍ଦ କାର୍ଯ୍ୟରେ କଠୋର ସମାଲୋଚନା କରୁଥିଲେ । ଅପ୍ରିୟ ସତ୍ୟ ପ୍ରକାଶ କରିବା କ୍ଷେତ୍ରରେ ତାଙ୍କର କୁଣ୍ଠାବୋଧ ନଥିଲା । ଲୋକମାନେ ସ୍ୱାଧୀନଚେତା ହେଲେ ସେମାନେ ଶାସକମାନଙ୍କର ଆଦେଶ ପାଳନ କରିବେ ନାହିଁ ଓ ଲୋକମାନଙ୍କୁ ନିୟନ୍ତ୍ରଣ କରିବା କଠିନ ହେବ ବୋଲି ଶାସକମାନେ ଆଶଙ୍କା କରୁଥିଲେ । ସୁତରାଂ ଶାସକମାନେ ସକ୍ରେଟିସ୍‌ଙ୍କୁ ମନ ଭିତରେ ଭୟ କରୁଥିଲେ । ସେହିପରି ଯେଉଁମାନେ ସମାଜରେ ନିଜକୁ ଜ୍ଞାନୀ, ବିଜ୍ଞ ବୋଲି ମନେକରନ୍ତି ସେମାନେ କିପରି ଅଜ୍ଞ ଏହା ସେ ସେମାନଙ୍କ ସହ ଆଲୋଚନା ମାଧ୍ୟମରେ ଦର୍ଶାଇ ଦେଉଥିଲେ । ସେମାନେ କିପରି ସେମାନଙ୍କର ଭ୍ରାନ୍ତ ଧାରଣାମାନଙ୍କୁ ନେଇ ସନ୍ତୋଷ ରହୁଛନ୍ତି ଏହା ସକ୍ରେଟିସ୍ ଉପଲବ୍ଧି କରୁଥିଲେ । ସକ୍ରେଟିସ୍‌ଙ୍କ ସହ ଆଲୋଚନା ଦ୍ୱାରା ଅନ୍ୟମାନେ ଯେତେବେଳେ ନିଜ ନିଜର ଅଜ୍ଞତାକୁ ଜାଣୁଥିଲେ ସେମାନେ ସକ୍ରେଟିସ୍‌ଙ୍କ ଉପରେ କ୍ରୋଧ ପ୍ରକାଶ କରୁଥିଲେ । ସେମାନେ ମଧ୍ୟ କେତେକ ଅନ୍ତରରେ ସକ୍ରେଟିସ୍‌ଙ୍କ ପ୍ରତି ଅସହିଷ୍ଣୁ ହେଉଥିଲେ । ସକ୍ରେଟିସ୍ ନିଜକୁ ଅଜ୍ଞ ବୋଲି ଭାବୁଥିଲେ କିନ୍ତୁ ଅନ୍ୟମାନେ ଅଜ୍ଞ ହୋଇ ମଧ୍ୟ ଯେପରି ଜ୍ଞାନୀ ବୋଲି ଆତ୍ମତୃପ୍ତିରେ ମଗ୍ନ ରହୁଥିଲେ ସେ ସେହି ଅଜ୍ଞତାକୁ ପ୍ରକାଶ କରିଦେଉଥିଲେ । ତାଙ୍କଠାରୁ ଅଧିକ ବିଜ୍ଞ କିଏ ରହିଛନ୍ତି ଏହା ଜାଣିବାକୁ ଉତ୍ସାହୀ ହୋଇ ସେ ନିଜର ଯେଉଁ ଅନୁସନ୍ଧାନ ଚଳାଇଥିଲେ ଏହା ତାଙ୍କ ବ୍ୟଙ୍ଗବୋଧର ସୂଚନା ଦିଏ । ଏହି ପ୍ରକ୍ରିୟାରେ ତାଙ୍କର ବିଶ୍ୱାସ ଦୃଢ଼ ହୋଇଥିଲା ଯେ ସେ ଯେ ଅଜ୍ଞ ଏହା ସେ ଜାଣନ୍ତି, କିନ୍ତୁ ଅନ୍ୟମାନେ ଅଜ୍ଞ ହୋଇ ଏହା ଜାଣନ୍ତି ନାହିଁ । ସେହି ଦୃଷ୍ଟିରୁ ଓରାକେଲ ଯେଉଁ ଭବିଷ୍ୟବାଣୀ ଚ୍ୟେରିଫୋନଙ୍କୁ କରିଥିଲେ ତାହା ସତ୍ୟ ବୋଲି ସେ ଉପଲବ୍ଧି କରିଥିଲେ । ବିଶେଷକରି ଯୁବକମାନେ ସକ୍ରେଟିସ୍‌ଙ୍କର ଚତୁଃପାର୍ଶ୍ୱରେ ସର୍ବଦା ଭିଡ ଜମାଉଥିଲେ ଓ ତାଙ୍କ ସହ ନାନା ପ୍ରସଙ୍ଗରେ ଆଲୋଚନା କରିବାକୁ ଭଲ ପାଉଥିଲେ । ଏଥେନ୍‌ସରେ ସକ୍ରେଟିସ୍ ଯେଉଁ ଆଡେ ଯାଉଥିଲେ ତାଙ୍କ ବ୍ୟକ୍ତିତ୍ୱ ଓ ପ୍ରଜ୍ଞାଦ୍ୱାରା ଆକର୍ଷିତ ହୋଇ ଯୁବକମାନେ ତାଙ୍କ ପାଖକୁ ଆସୁଥିଲେ ଓ ନାନା ଆଲୋଚନା ଭିତରେ ତାଙ୍କଠାରୁ ପ୍ରେରଣା ଓ ଉତ୍ସାହ ଲାଭ କରୁଥିଲେ । ସକ୍ରେଟିସ୍ ଯାହା ବି ଶିକ୍ଷା ଦେଉଥିଲେ କେବେ କାହାଠାରୁ କୌଣସି ପାରିତୋଷିକ ନେଉନଥିଲେ । ବହୁ ଅଭାବ ଓ ଦାରିଦ୍ର୍ୟ ଭିତରେ ରହିଥିଲେ ମଧ୍ୟ ସେ ନିଃସ୍ୱାର୍ଥପର ଥିଲେ ଓ ଅତି ସରଳ ଜୀବନ ବଞ୍ଚୁଥିଲେ ।

ଘଟଣାଚକ୍ରରେ ସକ୍ରେଟିସ୍‌ଙ୍କର ଏଥେନ୍‌ସରେ କିଛି ଲୋକଙ୍କ ସହ ଶତ୍ରୁତା ସୃଷ୍ଟି ହୋଇଥିଲା । ବ୍ୟକ୍ତିଗତ ଭାବରେ ସେ କାହା ସହିତ କେବେ କଳହ କରିନଥିଲେ । ରାଜନୈତିକ ଲୋକମାନେ ସେ ଯୁବକମାନଙ୍କ ଭିତରେ ସ୍ୱାଧୀନଚିନ୍ତା ଓ ବିଚାରଶୀଳତାର ପ୍ରସାର କରାଉଥିବାରୁ ସେମାନେ ତାଙ୍କ ପାଇଁ ସକ୍ରେଟିସ୍ ବିପଦ ବୋଲି ମନେ କରୁଥିଲେ । ସେହିପରି ସମାଜର କେତେକ ପ୍ରଭାବଶାଳୀ ଲୋକ ସେମାନଙ୍କର ଅଜ୍ଞତା ନେଇ ଯେପରି ସକ୍ରେଟିସ୍‌ଙ୍କ ପାଖରେ ଧରା ପଡୁଥିଲେ ସେଥିରେ ସେମାନେ ମଧ୍ୟ ତାଙ୍କ ଉପରେ ରାଗ ରଖୁଥିଲେ । ନିଜକୁ ବିଜ୍ଞ ଓ ଜ୍ଞାନୀ ଭାବୁଥିବା ଲୋକମାନେ ଆଲୋଚନା ଭିତରେ ହତଭମ୍ବ ହେଉଥିବାରୁ ସେମାନେ ମଧ୍ୟ ଅସହିଷ୍ଣୁ ହେଉଥିଲେ । ଘଟଣାକ୍ରମେ ମିଲିଟସ, ଲିକନ ଓ ଆନିଟସ ସକ୍ରେଟିସ୍‌ଙ୍କ ବିରୁଦ୍ଧରେ ତିନୋଟି ଗୁରୁତର ଅଭିଯୋଗ ଆଣିଲେ । ସେତେବେଳେ ଏଥେନ୍‌ସ ଜନରାଜ୍ୟରେ ଗଣତନ୍ତ୍ର ରହିଥିଲେ ବି ପ୍ରଭାବଶାଳୀ ଓ ପ୍ରତିପତ୍ତିଶାଳୀ ଲୋକମାନେ

ଶାସନକୁ ନିୟନ୍ତ୍ରଣ କରୁଥିଲେ । ସେ ସମୟର ଜନତନ୍ତ୍ରକୁ ସକ୍ରେଟିସ୍ ସମାଲୋଚନା କରୁଥିଲେ । ସେ ସମ୍ଭ୍ରାନ୍ତ ଶ୍ରେଣୀର ବ୍ୟକ୍ତି ନଥିଲେ କିମ୍ବା ପ୍ରଭାବଶାଳୀ ଲୋକମାନଙ୍କୁ ସମର୍ଥନ କରୁନଥିଲେ । ସେ ଭାବୁଥିଲେ ଯେ ସମାଜରେ ବିଜ୍ଞ, ନ୍ୟାୟବାନ ଓ ଭଦ୍ର ଲୋକମାନେ ଶାସନ କରିବା ଆବଶ୍ୟକ ଓ ସେମାନଙ୍କର ସଂଖ୍ୟା ସର୍ବଦା କମ୍ । ସେ ଶାସନ ବ୍ୟବସ୍ଥାରେ ଅଂଶଗ୍ରହଣ କରୁନଥିଲେ ବରଂ ଯୁବକମାନଙ୍କୁ ଏପରି ଭଲ ଦିଗରେ ପ୍ରଶିକ୍ଷିତ କରୁଥିଲେ ଯେପରି ଭବିଷ୍ୟତରେ ସେମାନେ ଏଥେନ୍ସର ଶାସନଭାର ପରିଚାଳନା କରିବେ । ସକ୍ରେଟିସ୍ କ୍ୱଚିତ ରାଜନୈତିକ ନିଷ୍ପତ୍ତିରେ ଅଂଶଗ୍ରହଣ କରୁଥିଲେ । ଜୀବନ କାଳରେ ଯେଉଁ ଦୁଇଥର ସେ ରାଜନୈତିକ ନିଷ୍ପତ୍ତିରେ ଅଂଶଗ୍ରହଣ କରିଥିଲେ ସେଥିରେ ସେ ନ୍ୟାୟ ଓ ଅନ୍ୟର ଜୀବନ ରକ୍ଷା ପାଇଁ କରିଥିଲେ ଓ ପ୍ରାୟତଃ ରାଜନୈତିକ କାର୍ଯ୍ୟ ପ୍ରତି ବିତସ୍ପୃହ ରହିଥିଲେ । ପରେ ତାଙ୍କ କାର୍ଯ୍ୟ ଶାସନତନ୍ତ୍ର ବିରୋଧୀ ବୋଲି କେତେକ ଧରିଥିଲେ । ପୁନଶ୍ଚ କେତେକ ସକ୍ରେଟିସ୍‌ଙ୍କୁ ସଫିଷ୍ଟ ବୋଲି ବିଚାର କରୁଥିଲେ ଓ ସଫିଷ୍ଟମାନଙ୍କ ପ୍ରତି ସମାଜରେ ଏକ ବିଦ୍ୱେଷ ଭାବ ରହିଥିଲା । ସକ୍ରେଟିସ୍ ସଂପୂର୍ଣ୍ଣ ଭାବେ ସଫିଷ୍ଟ ଭାବଧାରାର ଓ ଜୀବନଶୈଳୀର ବିରୋଧୀ ଥିଲେ । ତେବେ ଲୋକମାନଙ୍କ ଭିତରେ ତାଙ୍କୁ ସଫିଷ୍ଟ ବୋଲି ଭାବିବାର ଏକ ଭ୍ରମ କେତେକ କାରଣରୁ ସୃଷ୍ଟି ହୋଇଥିଲା । ଆରିଷ୍ଟୋଫେନ୍ସ "ଦି କ୍ଲାଉଡ" ନାମରେ ଏକ ନାଟକ ଲେଖିଥିଲେ । ଆରିଷ୍ଟୋଫେନ୍ସ ରକ୍ଷଣଶୀଳ ପ୍ରକୃତିର ଲୋକଥିଲେ ଓ ସଫିଷ୍ଟ ମାନଙ୍କୁ ସେ ତାଙ୍କ ନାଟକରେ ବହୁ ବ୍ୟଙ୍ଗ କରିଥିଲେ । ସେହି ନାଟକରେ ମୁଖ୍ୟ ଚରିତ୍ର ଭାବରେ ସକ୍ରେଟିସ୍‌ଙ୍କୁ ନିଆଯାଇଥିଲା ଓ ତାଙ୍କୁ ସଫିଷ୍ଟମାନଙ୍କର ମୁଖ୍ୟ ଭାବେ ଚିତ୍ରଣ କରାଯାଇଥିଲା । ଏହା ଅନ୍ୟାୟ ଥିଲା ଏବଂ ସାଧାରଣରେ ସକ୍ରେଟିସ୍‌ଙ୍କୁ ସଫିଷ୍ଟମାନଙ୍କର ନେତା ବୋଲି ଏକ ଭୁଲ ବାର୍ତ୍ତା ଦିଆଯାଇଥିଲା । ସମାଜର ପ୍ରଚଳିତ ଆଦର୍ଶ, ପରଂପରାର ବିରୋଧୀ ଭାବେ ସଫିଷ୍ଟମାନଙ୍କୁ ଚିତ୍ରଣ କରାଯାଉଥିଲା ଓ ପରିସ୍ଥିତି କ୍ରମେ ସେହି ନାଟକରେ ସକ୍ରେଟିସ୍‌ଙ୍କୁ ତାଙ୍କର ନେତା ଭାବେ ଚିତ୍ରଣ କରାଯାଇଥିଲା । ସଫିଷ୍ଟମାନେ ଜ୍ଞାନଲାଭକୁ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ ଓ ଚରମ ସଂଶୟୀ ଥିଲେ । ହେଲେ ସକ୍ରେଟିସ୍ ଯଦି ବି ସଂଶୟୀ ଥିଲେ ତାଙ୍କ ସଂଶୟ ଓ ସଫିଷ୍ଟମାନଙ୍କ ସଂଶୟ ଭିତରେ ବହୁ ଗରୁତ୍ୱପୂର୍ଣ୍ଣ ଓ ମୌଳିକ ପାର୍ଥକ୍ୟ ରହିଥିଲା । ତେବେ ଆରିଷ୍ଟୋଫେନ୍ସ ସକ୍ରେଟିସ୍‌ଙ୍କୁ ସଫିଷ୍ଟ ଭାବେ ଚିତ୍ରଣ କରିବାରେ ଭୁଲ୍ କରିଥିଲେ । ଲୋକମାନେ ସଫିଷ୍ଟ ମାନଙ୍କୁ ଯେପରି ଅବଜ୍ଞା ଦୃଷ୍ଟିରେ ଦେଖୁଥିଲେ ସେଥିରେ ସକ୍ରେଟିସ୍ ସେହି ନାଟକଟି ଯୋଗୁ ଏକ ମିଥ୍ୟାଭିଯୋଗର ଶିକାର ହୋଇଥିଲେ ।

ତେବେ ମିଲିଟସ ଓ ଅନ୍ୟ ଦୁଇଜଣ ସକ୍ରେଟିସ୍‌ଙ୍କ ବିରୁଦ୍ଧରେ ତିନୋଟି ଅଭିଯୋଗ ଆଣି ତାଙ୍କୁ ଦଣ୍ଡବିଧାନ କରିବାକୁ ନିବେଦନ କଲେ । ସେହି ଅଭିଯୋଗ ମାନ ଥିଲା (୧) ସକ୍ରେଟିସ୍ ଏଥେନ୍ସର ଯୁବସମାଜକୁ ବିପଥଗାମୀ କରୁଛନ୍ତି (୨) ନଗର ରାଷ୍ଟ୍ରର ଜନଗଣ ଯେଉଁ ଦେବତାମାନଙ୍କୁ ଆରାଧନା କରୁଛନ୍ତି ସକ୍ରେଟିସ୍ ସେହି ଦେବତାମାନଙ୍କୁ ସ୍ୱୀକାର କରୁନାହାନ୍ତି (୩) ସକ୍ରେଟିସ୍ ତାଙ୍କ ପରିକଳ୍ପିତ ଦେବତା ମାନଙ୍କ ବିଷୟରେ ପ୍ରଚାର କରୁଛନ୍ତି । ବାସ୍ତବ ପକ୍ଷେ ସକ୍ରେଟିସ୍ ଯୁବକମାନଙ୍କ ଭିତରେ ଯେଉଁ ଜନପ୍ରିୟତା ହାସଲ କରିଥିଲେ ଓ ରାଜନୀତିଜ୍ଞ ତଥା ସମାଜର ପ୍ରଭାବଶାଳୀ ଲୋକମାନଙ୍କୁ ଯେପରି ସମାଲୋଚନା କରୁଥିଲେ ସେଥିରେ ସମାଜର ସଂଭ୍ରାନ୍ତବଂଶୀୟ ଲୋକମାନେ ତାଙ୍କର ବିରୋଧୀ ହୋଇ ଯାଇଥିଲେ । ସମାଜର ରାଜନୈତିକ ତଥା ତଥାକଥିତ ବିଜ୍ଞମନ୍ୟ ଲୋକମାନଙ୍କର

ଚକ୍ଷୁଶୀଳ ପାଲଟିଥିଲେ । ମିଲିଟସ ଯିଏ ସକ୍ରେଟିସ୍‌ଙ୍କ ବିରୁଦ୍ଧରେ ଅଭିଯୋଗ ଆଣିଥିଲେ ସେ ନିମିତ୍ତ ମାତ୍ର ଥିଲେ, ଏହା ପଶ୍ଚାତରେ ଏଥେନ୍‌ସର ପ୍ରଭାବଶାଳୀ ରାଜନେତା ଓ ତଥାକଥିତ ମାନୀ, ଜ୍ଞାନୀ ଲୋକଙ୍କର ଦୃଢ଼ ସମର୍ଥନ ଥିଲା ଓ ସେମାନେ ସକ୍ରେଟିସ୍‌ଙ୍କର ମୃତ୍ୟୁ ବା ତାଙ୍କର ମୃତ୍ୟୁଦଣ୍ଡ ଚାହୁଁଥିଲେ । ପ୍ରକୃତରେ ବିଚାରାଳୟରେ ପ୍ରକୃତ ଅଭିଯୋଗ କଲାପରି ସେପରି କିଛି ଯଥାର୍ଥ କାରଣ ନଥିଲେ ମଧ୍ୟ କିଛି କପୋଳକଳ୍ପିତ କାରଣକୁ ନେଇ ତାଙ୍କ ପାଇଁ ଦଣ୍ଡବିଧାନ କରିବାକୁ ଅଭିଯୋଗକାରୀମାନେ ନିବେଦନ କରିଥିଲେ । ସେସମୟର ଏଥେନ୍‌ସର ପ୍ରଚଳିତ ନିୟମାନୁଯାୟୀ ଅଭିଯୋଗକାରୀ ଅଭିଯୁକ୍ତଙ୍କୁ କ'ଣ ଦଣ୍ଡ ଦିଆଯିବ ତାହା ମଧ୍ୟ କୋର୍ଟକୁ ନିବେଦନ କରିପାରିବେ ଓ ଅଭିଯୁକ୍ତ ବିରୁଦ୍ଧରେ ଦୋଷ ପ୍ରମାଣିତ ହେଲେ ଅଭିଯୁକ୍ତ ନିଜ ପାଇଁ କଣ ଦଣ୍ଡ ଚାହୁଁଛନ୍ତି ତାହା ବି ନିବେଦନ କରିପାରିବେ । ସକ୍ରେଟିସ୍ ଯଦି ବିଚାରାଳୟରେ ବିନୀତ ଭାବେ ଅତୀତରେ କରିଥିବା ଦେଶ ସେବା (ସୈନିକ ଭାବେ ଯୁଦ୍ଧରେ ଯୋଗ ଦେଇଥିବା) ବିଷୟ କହିଥାନ୍ତେ, ନିଜ ଦେଶକୁ ପ୍ରାଣ ଦେଇ ଭଲ ପାଆନ୍ତି ବୋଲି ବ୍ୟକ୍ତ କରିଥାନ୍ତେ, ନିଜର ଭୁଲ ପାଇଁ ଅନୁତପ୍ତ ବୋଲି ମାନିଥାନ୍ତେ ବା କିଛି ଜୋରିମାନା ଦେବାକୁ ରାଜି ହୋଇଥାନ୍ତେ ନତୁବା ଏଥେନ୍‌ସ ଛାଡି ଦେଇ ଦେଶାନ୍ତର ଗମନ କରିବାକୁ ମତ ଦେଇଥାନ୍ତେ ତେବେ ତାଙ୍କର ବିରୋଧୀମାନେ ପ୍ରାୟତଃ ସନ୍ତୁଷ୍ଟ ହୋଇଥାନ୍ତେ । କିନ୍ତୁ ସକ୍ରେଟିସ୍ ବିଚାର କଲେ ଯେ ଦଣ୍ଡ ବାଛିବାର, ଭୁଲ ସ୍ୱୀକାର କରିବାର ବା ଦେଶାନ୍ତର ହେବାକୁ କହିବାଦ୍ୱାରା ସେ ନିଜର ତ୍ରୁଟିକୁ ପରୋକ୍ଷରେ ସ୍ୱୀକାର କରୁଛନ୍ତି । କିନ୍ତୁ ସେ ଯେ କିଛି ଭୁଲ୍ କରିନାହାନ୍ତି, କାହା ପ୍ରତି କୌଣସି ଅନ୍ୟାୟ ଆଚରଣ ଚିନ୍ତା ବି କରିନାହାନ୍ତି ସେ କାହିଁକି ନିଜର ତ୍ରୁଟି ସ୍ୱୀକାର କରି ନିଜ ପ୍ରତି ଅନ୍ୟାୟ କରିବେ ! ବରଂ ଜୀବନ ସାରା ସେ ଲୋକଙ୍କର ଅଜ୍ଞତା ଦୂର କରିବାକୁ ପ୍ରୟାସ କରଛନ୍ତି ଓ ସମାଜକୁ ଉନ୍ନତ କରିବାକୁ ଚାହିଁଛନ୍ତି ତାଙ୍କର କାର୍ଯ୍ୟ ପାଇଁ ଦଣ୍ଡ ପରିବର୍ତ୍ତେ ସେ ସମ୍ମାନର ଅଧିକାରୀ । ସକ୍ରେଟିସ୍ ନିଜ ପାଇଁ ବିଚାରାଳାୟରେ ଲଢ଼ିଥିଲେ ଓ ତାଙ୍କ ବିରୁଦ୍ଧରେ ଅଣା ଯାଇଥିବା ଅଭିଯୋଗମାନ କିପରି ଆଧାରହୀନ ଓ ମିଥ୍ୟା ତାହା ଦୃଢ଼ ଭାବରେ ଉପସ୍ଥାପନ କରିଥିଲେ । ସକ୍ରେଟିସ୍‌ଙ୍କର ଯୁକ୍ତି, ଦୃଢ଼ତା ଓ ଅନମନୀୟତା ବିଚାରକଙ୍କୁ ବିରକ୍ତ କରିଥିଲା । ଶେଷରେ ବିଚାରପତି ମାନେ ସକ୍ରେଟିସ୍‌ଙ୍କୁ ମୃତ୍ୟୁଦଣ୍ଡ ଦିଆଯିବ କି ନାହିଁ ଲୋକଙ୍କ ପାଖରୁ ମତ ନେବାକୁ ଚାହିଁଲେ । ଲୋକଙ୍କ ପାଖରୁ ଭୋଟ ନିଆଗଲା ଓ ଅଧିକ ଲୋକ ମୃତ୍ୟୁଦଣ୍ଡ ସପକ୍ଷରେ ଭୋଟ ଦେବାରୁ ତାଙ୍କୁ ବିଚାରପତିମାନେ ପ୍ରାଣଦଣ୍ଡରେ ଦଣ୍ଡିତ କଲେ ।

ବାସ୍ତବପକ୍ଷେ ସକ୍ରେଟିସ୍ ନିଜ ଆଦର୍ଶ ଓ ନୀତିରେ ସର୍ବଦା ଅଟଳ ରହୁଥିଲେ ଯାହା ତାଙ୍କ ମୃତ୍ୟୁଦଣ୍ଡର କାରଣ ଥିଲା । ସକ୍ରେଟିସ୍‌ଙ୍କ ବିରୁଦ୍ଧରେ ଆସିଥିବା ଅଭିଯୋଗ (ଏଥେନ୍ସର ଦେବତାମାନଙ୍କୁ ମାନୁ ନାହାନ୍ତି) ରୁ ଏହା ଭାବିବା ଯଥାର୍ଥ ନୁହେଁ ଯେ ଏଥେନ୍‌ସରେ ଧାର୍ମିକ ଉଦାରତା ପରିବର୍ତ୍ତେ ମୌଳବାଦୀ ଦୃଷ୍ଟି ରହିଥିଲା । ଗ୍ରୀସ୍‌ରେ ଯଥେଷ୍ଟ ଧାର୍ମିକ ଉଦାରତା ରହିଥିଲା ଓ ଦାର୍ଶନିକମାନେ ଦେବତାମାନଙ୍କ ସଂପର୍କରେ ମୁକ୍ତ ଭାବରେ ମତ ପ୍ରକାଶ କରୁଥିଲେ । ସକ୍ରେଟିସ୍‌ଙ୍କର ରାଜନେତାମାନଙ୍କୁ ସମାଲୋଚନା ଓ ଯୁବକମାନେ ତାଙ୍କର ଶିକ୍ଷା ଦ୍ୱାରା କାଳେ ବିଦ୍ରୋହୀ ହେବେ ଓ ଦେଶର ଶାସନ ପଦ୍ଧତି ଆହ୍ୱାନର ସମ୍ମୁଖୀନ ହେବ ଏଥିପାଇଁ ଗଣତାନ୍ତ୍ରିକ ନେତାମାନେ

ଆଶଙ୍କିତ ହୋଇଥିଲେ । ସକ୍ରେଟିସ୍‌ଙ୍କ ବିରୁଦ୍ଧରେ ସୃଷ୍ଟି ହୋଇଥିବା ଅନ୍ଧବିଶ୍ୱାସ ଓ ବିଚାରପତିଙ୍କ ପାଖରେ ତାଙ୍କର ଅନମନୀୟତା ଯୋଗୁ ଜଣେ ମହାନ ବ୍ୟକ୍ତିଙ୍କୁ ମୃତ୍ୟୁଦଣ୍ଡ ଦିଆଗଲା ।

ମୃତ୍ୟୁଦଣ୍ଡ କାର୍ଯ୍ୟକାରୀ ହେବା ପୂର୍ବରୁ ସକ୍ରେଟିସ୍‌ଙ୍କୁ କାରାଗାରରେ ରଖାଗଲା । ସେ ତିରିଶ ଦିନ ବନ୍ଦୀଶାଳାରେ ରହିଲେ । ତାଙ୍କର କେତେକ ସମର୍ଥକ ଓ ବନ୍ଧୁ ତାଙ୍କୁ କାରାଗାରରେ ନିୟମିତ ଦେଖିବାକୁ ଯାଉଥିଲେ । ସେମାନେ ବନ୍ଦୀଶାଳାରୁ ତାଙ୍କୁ ମୁକ୍ତ କରି ବାହାରକୁ ପଠାଇଦେବାକୁ ଯୋଜନା କଲେ । କାରାଗାରରୁ ଜଣେ ଅଭିଯୁକ୍ତଙ୍କୁ ବାହାରକରି ପଠାଇଦେବା ଏତେ କଷ୍ଟକର ନଥିଲା । ବିଶେଷକରି ବନ୍ଦୀଶାଳାର ଜଗୁଆଳିମାନଙ୍କୁ ସାମାନ୍ୟ ଲୋଭ ଦେଖାଇ ଏହା କରିବା ସହଜ ଥିଲା । ପେରିକ୍ଲିସଙ୍କ ସାହାଯ୍ୟରେ ଆନାକ୍ସଗୋରାସଙ୍କୁ ସେହିପରି ବାହାର ରାଜ୍ୟକୁ କାରାଗାରରୁ ପଠାଇ ଦିଆ ଯାଇଥିଲା । ସକ୍ରେଟିସ୍‌ଙ୍କର ପ୍ରିୟ ଅନୁଗାମୀ କ୍ରିଟୋ ଏଥିପାଇଁ ସମସ୍ତ ଯୋଜନାକରି ସକ୍ରେଟିସ୍‌ଙ୍କୁ ନିବେଦନ କଲେ । ବିଶେଷକରି ଏଥେନ୍‌ସର ପଡୋଶୀ ରାଜ୍ୟ ଥେସାଲିକୁ ପଠାଇଦେବାକୁ ସବୁ ସେ ଆୟୋଜନ କରିଥିଲେ । ସକ୍ରେଟିସ୍ କ୍ରିଟୋଙ୍କର ଏହି ପ୍ରସ୍ତାବରେ ଆଦୌ ସମ୍ମତ ହେଲେ ନାହିଁ । ସକ୍ରେଟିସ୍ ଦମ୍ଭର ସହ ବିଚାରାଳୟରେ କହିଥିଲେ ଯେ ସେ ଜୀବନରେ କୌଣସି ଅପରାଧ କରିନାହାନ୍ତି ତେଣୁ ସେ କିଛି ଦଣ୍ଡ ପାଇବା ଠିକ୍ ନୁହେଁ । କ୍ରିଟୋଙ୍କ ଅନୁରୋଧରେ ତାଙ୍କୁ କହିଲେ ଯେ ମୃତ୍ୟୁକୁ ଭୟ କରି ସେ କୁଆଡେ ପଳାଇବାକୁ ଯଥାର୍ଥ ମନେକରୁନାହାନ୍ତି । ଆଇନକୁ ମାନିବା ତାଙ୍କର ନୈତିକ କର୍ତ୍ତବ୍ୟ । ସେ ଅପରାଧୀ ନ ହୋଇପାରନ୍ତି, କିନ୍ତୁ ଆଇନ ପ୍ରତି ତାଙ୍କର ସମସ୍ତ ସମ୍ମାନ ରହିଛି । ତାଙ୍କୁ ବିଚାରାଳୟ ମୃତ୍ୟୁଦଣ୍ଡ ଦେଇଛି, ତାକୁ ସେ ପାଳନ କରିବେ । ତିରିଶ ଦିନ କାରାଗାରରେ ଅତିବାହିତ କରିବା ପରେ ବିଷ ତାଙ୍କ ପାଇଁ କପ୍‌ରେ ଅଣାଗଲା ଓ ସେ ବିନା ସଙ୍କୋଚରେ ବିଷପାନ କଲେ । ପ୍ଲେଟୋ ସକ୍ରେଟିସ୍‌ଙ୍କର କାରାଗାରରେ କଟାଇଥିବା ଶେଷ ସମୟକୁ ତାଙ୍କର ଡାଏଲଗ୍ "ଫାଇଡୋ" (phaedo)ରେ ଭାବଗର୍ଭକ ଭାବରେ ବ୍ୟକ୍ତ କରିଛନ୍ତି । ହୁଏତ ଏଥିରେ ସାମାନ୍ୟ ଅତିରଂଜନ ରହିପାରେ, ତେବେ ସମସ୍ତ ତଥ୍ୟ ଗୁଡିକୁ ସେ ନିଖୁଣ ଭାବରେ ବ୍ୟକ୍ତ କରିଥିବା ମନେହୁଏ । ଫାଇଡୋ ଡାଏଲଗ୍‌ରୁ ସେହି ଅଂଶକୁ ଏଠାରେ ଅନୁବାଦ କରି ଦିଆଯାଇପାରେ ।

"ସକ୍ରେଟିସ୍ ନିଜ ବସିବା ସ୍ଥାନରୁ ଉଠି ଗାଧୋଇବାକୁ ଗଲେ ଓ କ୍ରିଟୋ ତାଙ୍କୁ ଅନୁସରଣ କଲେ, କିନ୍ତୁ ତାଙ୍କୁ ଅପେକ୍ଷା କରିବାକୁ ସେ କହିଲେ । ଆମେ ସମସ୍ତେ ତାଙ୍କୁ ଅପେକ୍ଷାକରି ଆମ ଭିତରେ କଥା ହେଲୁ । ସେ ଆମକୁ ଯାହା ସବୁ କହିଛନ୍ତି ଆମେ ତାକୁ ମନେ ପକାଇଲୁ । ତାଙ୍କ ବିୟୋଗ ଆମ ପାଇଁ କି ବିପର୍ଯ୍ୟୟ ଆଣିବ ଆମେ ଭାବୁଥିଲୁ । ତାଙ୍କ ବିୟୋଗରେ ଆମେ ଆମ ବାପାଙ୍କୁ ହରାଇବାକୁ ଯାଉଛୁ ଆମର ଏହା ହିଁ ଉପଲବ୍ଧି ହେଲା । ତାଙ୍କ ବ୍ୟତୀତ ଆମର ଅବଶିଷ୍ଟ ଜୀବନ ଆମ ପାଇଁ କିପରି କଷ୍ଟଦାୟକ ହେବ ଆମେ ତାହା ଭାବୁଥିଲୁ । ସେ ସ୍ନାନ କରି ଆସିବା ପରେ ତାଙ୍କର ତିନି ପୁଅ ଓ ପରିବାରର କିଛି ମହିଳା ତାଙ୍କୁ ଦେଖା କରିବାକୁ ଆସିଥିଲେ । ସେ ସେମାନଙ୍କୁ କିଛି କହିଲେ ଓ ସେମାନେ ଏଠାରୁ ଚାଲିଯିବାକୁ ଚାହିଁଲେ, ସେତେବେଳେ କ୍ରିଟୋ ସେଠାରେ ବି ଉପସ୍ଥିତ ଥିଲେ । ଏହାପରେ ସେ ଆମ ପାଖକୁ ଆସିଲେ । ସନ୍ଧ୍ୟା ନିକଟ ହୋଇ ଆସୁଥିଲା ଓ ସେ ବିଶେଷ କିଛି

କହିଲେ ନାହିଁ । ଏହାପରେ କାରାଗାରର ଦାୟିତ୍ୱରେ ଥିବା ପଦସ୍ଥ ଅଧିକାରୀ ସେଠାକୁ ଆସି କହିଲେ, 'ସକ୍ରେଟିସ୍, ମୁଁ ଅନ୍ୟମାନଙ୍କ ପାଖରେ ଯେଉଁ ଦୁର୍ବଳତା ଲକ୍ଷ୍ୟ କରିଛି ତାହା କେବେ ବି ଆପଣଙ୍କ ପାଖରେ ଦେଖିନାହିଁ । ସେମାନେ ମୋ ଉପରେ ରାଗନ୍ତି, ମୋତେ ଧିକ୍କାର କରନ୍ତି, କିନ୍ତୁ ଆପଣ ମୋତେ କେବେ ବି ଖରାପ ବ୍ୟବହାର ଦେଖାଇ ନାହାନ୍ତି । ମୁଁ ନିର୍ଦ୍ଦେଶାନୁଯାୟୀ ଯେତେବେଳେ ସେମାନଙ୍କୁ କପ୍‌ରୁ ବିଷପାନ କରିବାକୁ କହେ, ସେମାନେ ମୋତେ ଗାଳି ଦିଅନ୍ତି । କିନ୍ତୁ ଆପଣ ଏଠାରେ ଯେଉଁ ମାସଟିଏ ହେଲା ରହିଛନ୍ତି ମୁଁ ଆପଣଙ୍କ ପରି ଭଦ୍ର, ଶାନ୍ତ ଓ ବିନୀତ ବ୍ୟକ୍ତି କେବେ ଦେଖି ନାହିଁ । ଏଣୁ ମୋର ବିଶ୍ୱାସ ମୁଁ ଯଦି ଆପଣଙ୍କୁ ବିଷପାନ କରିବାକୁ କହିବି ଆପଣ ମୋ ଉପରେ ରାଗିବେ ନାହିଁ । ଆପଣଙ୍କୁ ମୁଁ ଶେଷ ବିଦାୟ ଦେବାକୁ ଆସିଛି । ଯାହା ଘଟିବାର ଅଛି ତାକୁ ଆମକୁ ପାଳନ କରିବାକୁ ହେବ' । ଏହା କହି ସେ ଲୋତକଭରା ଆଖିରେ ସକ୍ରେଟିସ୍‌ଙ୍କୁ ଚାହିଁ ରହିଲେ । ସକ୍ରେଟିସ୍ ତାଙ୍କୁ ମଧୁର ଭାବରେ ବିଦାୟ ଦେବାକୁ କହିଲେ ଓ ସେ ଯାହା ନିର୍ଦ୍ଦେଶ ଦେବେ ସେ ପାଳନ କରିବେ ବୋଲି ଜଣାଇଲେ । ଏହାପରେ ସେ ଆମ ଆଡକୁ ଦୃଷ୍ଟି ଫେରାଇ କହିଲେ, ଏହି ଅଧିକାରୀ ବହୁତ ଭଦ୍ର; ମୁଁ ଯେଉଁ ମାସଟିଏ ହେଲା ଏଠାରେ ରହିଛି ସେ ପ୍ରତ୍ୟହଃ ମୋତେ ଦେଖା କରିବାକୁ ଆସନ୍ତି ଓ ମୋ ସହ କଥା ହୁଅନ୍ତି । ସେ ବହୁତ ଭଲ ମଣିଷ । ସେ କେତେ ଆନ୍ତରିକତାର ସହ ମୋ ପାଇଁ ଦୁଃଖପ୍ରକାଶ କଲେ ଓ ତାଙ୍କର ଛଳ ଛଳ ଆଖିରେ ମୋତେ ବିଦାୟ ଦେବାକୁ କହିଲେ' । ଏହାପରେ ସେ କ୍ରିଟୋଙ୍କୁ ଡାକିଲେ ଓ କହିଲେ 'ତାଙ୍କ ନିର୍ଦ୍ଦେଶକୁ ପାଳନ କରିବାକୁ ହେବ । ବିଷପାତ୍ର ମୋତେ ଦିଅ ବା ଯଦି ଏହା ପ୍ରସ୍ତୁତ ହୋଇନାହିଁ, ଏହା ପ୍ରସ୍ତୁତ କର' ।

ଏହାପରେ କ୍ରିଟୋ ସକ୍ରେଟିସ୍‌ଙ୍କୁ କହିଲେ, "ସୂର୍ଯ୍ୟ ଅସ୍ତ ହୋଇନାହିଁ । ମୁଁ ଜାଣେ ଯେ ଅନ୍ୟମାନେ ବହୁ ବିଳମ୍ବରେ ବିଷପାନ କରିଛନ୍ତି । ତାଙ୍କୁ ଯେବେ ଏହା କୁହାଯାଇଛି, ସେମାନେ ତାକୁ ଡେରିରେ ପାଳନ କରନ୍ତି । ଅନ୍ୟ କେତେକ ଏପରିକି ଉପଭୋଗ କରିବା ପରି ଏହାକୁ ପାନ କରନ୍ତି । ସମୟ ବାକି ରହିଛି । ସେମାନଙ୍କୁ ତରତର କରିବା ଦରକାର ନାହିଁ" ।

ଏହା ଶୁଣିସାରି ସକ୍ରେଟିସ୍ କହିଲେ, "କ୍ରିଟୋ, ତୁମେ ଯେଉଁ ମାନଙ୍କ ବିଷୟରେ କହୁଛ, ସେମାନେ କିଛି କାରଣ ପାଇଁ ଏହା କରନ୍ତି । ସେମାନେ ଭାବନ୍ତି ଯେ ଏହାଦ୍ୱାରା ତାଙ୍କର ଉପକାର ହେବ । କିନ୍ତୁ ସାମାନ୍ୟ ବିଳମ୍ବ ପରେ ଏହା କରିବାଦ୍ୱାରା ମୋର କିଛି ଉପକାର ହେବ, ମୁଁ ଏହା ଭାବୁନାହିଁ । ସାମାନ୍ୟ ବିଳମ୍ବ ଦ୍ୱାରା ବରଂ ମୁଁ ନିଜକୁ ବିଦ୍ରୂପ କରିବି । ଜୀବନ ପ୍ରତି ଆହୁରି ଲୋଭ ରଖିବାର କ'ଣ ଉଦ୍ଦେଶ୍ୟ ରହିଛି ! ସମସ୍ତେ ନିଶ୍ଚୟ ବିଦାୟ ନେବେ, ସାମାନ୍ୟ ବିଳମ୍ବର କିଛି ଅର୍ଥ ନାହିଁ । ବରଂ ପଦସ୍ଥ ଅଧିକାରୀ ଯାହା କହୁଛନ୍ତି ତାହା ଶୀଘ୍ର ପାଳନ କର, ବିଳମ୍ବ କର ନାହିଁ" ।

ସକ୍ରେଟିସ୍‌ଙ୍କ ମୁହଁରୁ ଏହା ଶୁଣିବାପରେ ପାଖରେ ଛିଡା ହୋଇଥିବା ପିଲାଟିକୁ କ୍ରିଟୋ ନିର୍ଦ୍ଦେଶ ଦେଲେ । ପିଲାଟି ସାଙ୍ଗେ ସାଙ୍ଗେ ବାହାରି ଯାଇ ଯେ ବିଷପାନ କରାଇବେ ସେହି ଲୋକଙ୍କୁ ଡାକି ଆଣିଲା ଓ ସେ ଏକ କପରେ ଏହା ଆଣିକରି ଆସିଲେ । ସକ୍ରେଟିସ୍ ଲୋକଟିକୁ ଦେଖି କହିଲେ, "ପ୍ରିୟ ବନ୍ଧୁ । ଆପଣ ତ ଏ ବିଷୟରେ

ବେଶ୍ ଅଭିଜ୍ଞ; ମୁଁ କ'ଣ କରିବି ମୋତେ କୁହନ୍ତୁ" । ସେ ଉତ୍ତର ଦେଲେ, "ଆପଣ ଯେତେବେଳେ ଏହା ପାନ କରି ସାରିବେ, ସାମାନ୍ୟ ଚାଲିବେ । ଯେତେବେଳେ ଆପଣଙ୍କର ପାଦ ଓଜନିଆ ଲାଗିବ, ତାପରେ ଆପଣ ଶୋଇଯିବେ, ଠିକ୍ ଅଛି, ଏତିକି କରିବେ" । ଏହାପରେ ସେ ସକ୍ରେଟିସ୍‌ଙ୍କ ହାତକୁ ଏହା ଦେଲେ । ତାଙ୍କ ପାଖରେ ସାମାନ୍ୟ କିଛି ପ୍ରତିକ୍ରିୟା ବି ଦେଖାଯାଇ ନଥିଲା । ସେ ଲୋକଟିକୁ ପଚାରିଲେ ଆପଣ ଭଗବାନଙ୍କ ଉଦ୍ଦେଶ୍ୟରେ ଅର୍ପଣ କରି ଯେଉଁ ବିଷପାତ୍ରଟି ମୋ ହାତରେ ଦେଲେ ତାହା ଆଇନ ସମ୍ମତ ନା ନୁହେଁ? ଲୋକଟି ହଁ କରି କହିଲେ, "ସକ୍ରେଟିସ୍, ଆମେ ମାତ୍ର ଏତିକି ଦେଉ, ଏତିକି ପିଇବା ଯଥେଷ୍ଟ" । ଏହାପରେ ସକ୍ରେଟିସ୍ କହିଲେ, "ଠିକ୍ ଅଛି, ଆପଣ ଆଇନସମ୍ମତ କାର୍ଯ୍ୟ କରିଛନ୍ତି, ଆପଣଙ୍କୁ ଧନ୍ୟବାଦ ଯେ ଆପଣ ଏଠାରୁ ମୋର ସୁଖପ୍ରଦ ବିଦାୟ ପାଇଁ ଭଗବାନଙ୍କୁ ପ୍ରାର୍ଥନା କରିଛନ୍ତି । ମୁଁ ବି ପ୍ରାର୍ଥନା କରୁଛି ମୋର ବିଦାୟ ଏଠାରୁ ସୁଖପ୍ରଦ ହେଉ" । ଏହାପରେ ସେ ତତ୍‌କ୍ଷଣାତ୍ ଓ ଧୀର ଭାବରେ ପିଇବାକୁ ଲାଗିଲେ । ଏହି ସବୁ ଦୃଶ୍ୟରେ ଆମେ ନିଜକୁ ସମ୍ଭାଳି ପାରୁନଥିଲୁ, ସେ ଯେତେବେଳେ ପିଇବା ଶେଷ କଲେ, ମୁଁ କଷ୍ଟରେ ନିଜକୁ ନିୟନ୍ତ୍ରଣ କଲି । ତଥାପି ମୋ ଆଖିରୁ ଧାର ଧାର ଲୁହ ଗଡି ଚାଲିଥିଲା ଓ ମୋର ଆଖି ଲୁହରେ ଭରି ଯାଇଥିଲା । ପ୍ରକୃତରେ ମୁଁ ତାଙ୍କ ପାଇଁ କାନ୍ଦୁ ନଥିଲି, ମୁଁ ମୋ ପାଇଁ କାନ୍ଦୁଥିଲି । ଏପରି ଜଣେ ମହାନ୍ ବନ୍ଧୁଙ୍କ ସହ ମୁଁ ଯେ ଆଉ ମିଶିପାରିବି ନାହିଁ, ଏହା ହିଁ ମୋ ଆଖିର ଅମାନିଆ ଲୁହକୁ ବନ୍ଦ କରୁନଥିଲା । ମୋର ଦୁଃଖ ଦେଖି ସେ ବହୁତ ବି ଦୁଃଖ କରୁଥିଲେ । ଆପୋଲୋ ଡୋରସ ସେ ପର୍ଯ୍ୟନ୍ତ କାନ୍ଦୁଥିଲେ । ତାଙ୍କର ବିଳାପ ସମସ୍ତଙ୍କ ପ୍ରାଣକୁ ଭେଦ କରୁଥିଲା, କିନ୍ତୁ ସକ୍ରେଟିସ୍ ଆଦୌ ବିଚଳିତ ନ ରହି ଧୀର ଭାବରେ ଛିଡା ହେଲେ । କହିଲେ, "ମୋର ପ୍ରିୟ ବନ୍ଧୁଗଣ, ଆପଣମାନେ ଏପରି କାହିଁକି ଅଧୈର୍ଯ୍ୟ ହେଉଛନ୍ତି ! ମୁଁ ଏଥିପାଇଁ ପରିବାରର ଲୋକମାନଙ୍କୁ ପଠାଇଦେଲି । ମୁଁ ଶୁଣିଛି ଯେ ଭଲ ବେଳାରେ ମୃତ୍ୟୁବରଣ କରିବା ଶୁଭ । ଶାନ୍ତ ହୁଅନ୍ତୁ ଓ ନିଜକୁ ସମ୍ଭାଳନ୍ତୁ" ।

"ତାଙ୍କଠାରୁ ଏହା ଶୁଣିବାପରେ ଆମେ ଆମର କାନ୍ଦିବା ବନ୍ଦ କଲୁ ଓ ଲଜ୍ଜିତ ହେଲୁ । ଏହାପରେ ସେ ସାମାନ୍ୟ ଚାଲିଲେ । ଚାଲିବା ପରେ ତାଙ୍କୁ ବିଷପାନ କରାଇଥିବା ଲୋକଟିକୁ କହିଲେ, 'ଏବେ ମୋର ପାଦ ବହୁତ ଓଜନ ଲାଗୁଛି । ଲୋକଟି ତାଙ୍କୁ ଯେପରି କହିଥିଲେ ସେ ସେହିପରି ଶୋଇଗଲେ । ଲୋକଟି ତାଙ୍କୁ ଧରିନେଲେ । ସକ୍ରେଟିସ୍‌ଙ୍କର ପାଦକୁ ଚାପିଲେ ଓ ପଚାରିଲେ, କିଛି ଜାଣିପାରୁଛନ୍ତି କି ? ଏହାପରେ ସେ ତାଙ୍କର ଜଂଘକୁ ମଧ୍ୟ ଚାପିଲେ ଓ ଆମକୁ କହିଲେ ଯେ ସେ ଧୀରେ ଧୀରେ ଶୀତଳ ଓ କଠିନ ହେଉଛନ୍ତି । ଏହାପରେ ସକ୍ରେଟିସ୍ ନିଜକୁ ଛୁଇଁଲେ ଓ କହିଲେ ଯେତେବେଳେ ବିଷର ପ୍ରଭାବ ତାଙ୍କ ହୃଦୟକୁ ଆସିବ, ସେତେବେଳେ ସେ ଚିରନିଦ୍ରାରେ ଶୋଇଯିବେ । ତାଙ୍କର ତଳିପେଟ ପର୍ଯ୍ୟନ୍ତ ଦେହ ଶୀତଳ ହୋଇ ଯାଇଥିଲା । ତାଙ୍କର ଶେଷ କଥା ଥିଲା, "କ୍ରିଟୋ, ଆସ୍କୁଲାପିଅସଙ୍କ ପାଖରୁ ଆମେ ଏକ କୁକୁଡା ଆଣିଥିଲେ । ତାଙ୍କୁ ମନେପକାଇ ସେ'ଟା ଫେରାଇଦେବ" । କ୍ରିଟୋଙ୍କର ଉତ୍ତର ଥିଲା, "ଠିକ୍ ଅଛି, ମୁଁ ତାଙ୍କୁ ଦେଇଦେବି । ଆପଣ ଆଉ କ'ଣ କହିବେ" ?

ଏହି ପ୍ରଶ୍ନର ସେ କିଛି ଉତ୍ତର ଦେଲେ ନାହିଁ । ଏହାପରେ କ୍ଷଣିକ ପାଇଁ ତାଙ୍କ ଦେହରେ ଏକ କଂପନ ସୃଷ୍ଟିହେଲା ଓ ଶରୀର ନିଶ୍ଚଳ ହୋଇଗଲା । ଏହାପରେ ସେ ଲୋକଟି ତାଙ୍କ ଶରୀରକୁ ଆବୃତ କରିଦେଲେ । ତାଙ୍କର ଚକ୍ଷୁ ସ୍ଥିର ହୋଇଗଲା । କ୍ରିଟୋ ଏହା ଦେଖି ତାଙ୍କର ଚକ୍ଷୁ ଓ ପାଟିକୁ ବନ୍ଦ କରିଦେଲେ" ।

ପ୍ଲେଟୋ ତାଙ୍କ 'ଫାଇଡୋ' ଡାଏଲଗ୍‌ରେ ସକ୍ରେଟିସ୍‌ଙ୍କ କାରାଗାରର ଶେଷ ମୁହୂର୍ତ୍ତକୁ ଏହିପରି ବର୍ଣ୍ଣନା ଦେଇଛନ୍ତି । ଏହା ସହିତ ତାଙ୍କର ବିଚାର ସମୟରେ ତାଙ୍କ ବିରୁଦ୍ଧରେ ଅଭିଯୋଗମାନଙ୍କୁ ସେ ଯେପରି ଖଣ୍ଡନ କରିଥିଲେ ତାହା ମଧ୍ୟ ବେଶ୍ ହୃଦୟସ୍ପର୍ଶୀ ଥିଲା । ସକ୍ରେଟିସ୍‌ଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ସେ ଜୀବନରେ କୌଣସି ବ୍ୟକ୍ତି ପ୍ରତି କେବେ ଅନ୍ୟାୟ କରିନାହାନ୍ତି, ରାଷ୍ଟ୍ରପ୍ରତି ଅନ୍ୟାୟ କରିବା ତ ତାଙ୍କ ଚେତନା ବାହାରେ । ସେ ଯେହେତୁ କେବେ କିଛି ମନ୍ଦ କାର୍ଯ୍ୟ କରିନାହାନ୍ତି ତେଣୁ ନିଜର ଦୋଷ ସ୍ୱୀକାର କରିବା, ଅନୁତାପ କରିବା, ବିଚାରାଳୟରେ କ୍ଷମା ମାଗିବା ବା ନିଜ ଜୀବନ ରକ୍ଷା ପାଇଁ ଅନ୍ୟ କିଛି ପଦକ୍ଷେପ ନେବା ତାଙ୍କୁ ଯଥାର୍ଥ ମନେ ହୋଇନାହିଁ । ସେ ଯେକୌଣସି ପଦକ୍ଷେପ ନେଇଥିଲେ ହୁଏତ ମୃତ୍ୟୁଦଣ୍ଡ ପାଇନଥାନ୍ତେ, ତେବେ ସେପରି କିଛି କରି ସେ ନିଜ ବିବେକ ପାଖରେ ଦୋଷୀ ହେବାକୁ ଚାହିଁ ନାହାନ୍ତି । ତାଙ୍କର ତ୍ୟାଗ, ସତ୍ୟ, ନ୍ୟାୟ ପାଇଁ ଜୀବନବ୍ୟାପୀ ପ୍ରୟାସ, ଜ୍ଞାନାନ୍ୱେଷଣ ପାଇଁ ଅନୁସନ୍ଧିତ୍ସୁ ଦୃଷ୍ଟି ଓ ତାଙ୍କର ଜୀବନ ବ୍ୟାପୀ ନିର୍ଲୋଭ ଓ ସରଳ ଜୀବନ ତାଙ୍କୁ ଇତିହାସରେ ଅମର କରିଛି । ଏପରିକି କ୍ରିଟୋ ଜେଲ୍‌ରୁ ତାଙ୍କୁ ନେଇଯିବା ପାଇଁ ଯେତେ ଅନୁରୋଧ କଲେ ମଧ୍ୟ ସେ ସେଥିରେ ଆଦୌ ସମ୍ମତ ହୋଇ ନାହାନ୍ତି । ଜୀବନ ଅପେକ୍ଷା ଆଇନ ଓ ରାଷ୍ଟ୍ରର ନିଷ୍ପତ୍ତି (ତାହା ଯେତେ ଅନ୍ୟାୟ ହେଲେ ମଧ୍ୟ) କୁ ସେ ଅଧିକ ପ୍ରାଧାନ୍ୟ ଦେଇଛନ୍ତି । ଭୟ, ଛଳନା, ଅସତ୍ୟ ଓ ଯେକୌଣସି ପ୍ରକାରର ଅଶୋଭନୀୟତା ଠାରୁ ସେ ବହୁ ଊର୍ଦ୍ଧ୍ୱରେ ରହିଥିଲେ । ଏହା ହିଁ ଥିଲା ତାଙ୍କ ବ୍ୟକ୍ତିତ୍ୱର ମହତ୍ତ୍ୱ ।

ସକ୍ରେଟିସ୍‌ଙ୍କ ଜୀବନ ଥିଲା ପ୍ରକୃତରେ ଆଦର୍ଶସ୍ଥାନୀୟ । ମାନବ ସଭ୍ୟତାର ଇତିହାସରେ ସକ୍ରେଟିସ୍ ଥିଲେ ଏକ ଅଦ୍ୱିତୀୟ ବ୍ୟକ୍ତି । ତାଙ୍କ ଦର୍ଶନ ବିଷୟରେ ପ୍ଲେଟୋ ହିଁ ଲେଖିଛନ୍ତି । ସକ୍ରେଟିସ୍ ଯେପରି ଜଣେ ମହାତ୍ମା, ସେହିପରି ଜଣେ ଦାର୍ଶନିକ । ତେବେ ଦର୍ଶନ ସଂପର୍କରେ ସେ ତ କିଛି ଗ୍ରନ୍ଥ ଲେଖିନାହାନ୍ତି, ବରଂ ପ୍ଲେଟୋ ସକ୍ରେଟିସ୍‌ଙ୍କ ଦର୍ଶନକୁ ତାଙ୍କ ଡାଏଲଗ୍‌ରେ ଲେଖିଛନ୍ତି । ପ୍ଲେଟୋ ବି ତାଙ୍କ ଡାଏଲଗ୍‌ମାନଙ୍କୁ ବାଦ୍ ଦେଇ କେବଳ ଦର୍ଶନ ଗ୍ରନ୍ଥ କିଛି ଲେଖି ନାହାନ୍ତି । ପ୍ଲେଟୋଙ୍କ ଡାଏଲଗ୍ ମାନଙ୍କରୁ ତାଙ୍କର ଦର୍ଶନକୁ ସ୍ଥିର କରାଯାଇଛି । ଏଠାରେ ଏକ ସମସ୍ୟା ହେଉଛି ଯେ ଯେଉଁ ଭାବନାମାନ ସକ୍ରେଟିସ୍‌ଙ୍କ ଦର୍ଶନର ବିଷୟ ଓ କେଉଁ ଭାବନାମାନ ପ୍ଲେଟୋଙ୍କ ଦର୍ଶନର ଅବଦାନ ତାହା ବାହାର କରିବା ଜଟିଳ । ତେବେ ଗବେଷକ ଓ ଐତିହାସିକ ମାନେ ଏ କ୍ଷେତ୍ରରେ ନାନା ଅଧ୍ୟୟନ ଓ ଅନୁଶୀଳନ ଦ୍ୱାରା ପ୍ଲେଟୋଙ୍କ ଲେଖାରେ କେଉଁ ବିଚାରମାନ ତାଙ୍କ ନିଜର ଓ କେଉଁଗୁଡିକ ସକ୍ରେଟିସ୍‌ଙ୍କର ତାହାର ମାନଦଣ୍ଡ ନିରୂପଣ କରିଛନ୍ତି । ପ୍ଲେଟୋ ତାଙ୍କ ଡାଏଲଗ୍ ମାନଙ୍କର ପ୍ରଥମ ଭାଗରେ ମୁଖ୍ୟତଃ ସକ୍ରେଟିସ୍‌ଙ୍କର ଦର୍ଶନ ଓ ବ୍ୟକ୍ତିତ୍ୱ ବିଷୟରେ ଉଲ୍ଲେଖ କରିଛନ୍ତି । ଏହି ଦୃଷ୍ଟିରୁ ଗବେଷକ ମାନଙ୍କ ମତରେ ପ୍ଲେଟୋଙ୍କ ଡାଏଲଗ୍ – ଆପୋଲୋଜି, ମିନୋ, ଗର୍ଗିଆସ, ଫିଡୋ ଓ ସିଂପୋଜିୟମ ମାନଙ୍କରେ

ପ୍ଲେଟୋ ସକ୍ରେଟିସ୍‌ଙ୍କ ଦର୍ଶନ ଓ ବ୍ୟକ୍ତିତ୍ୱ ବିଷୟରେ ସୂଚନା ଦେଇଛନ୍ତି । ପ୍ଲେଟୋଙ୍କୁ ସକ୍ରେଟିସ୍ ନାନା ଭାବରେ ପ୍ରେରଣା ଦେଇଥିଲେ ବା ତାଙ୍କର ପ୍ରଥପ୍ରଦର୍ଶକ ଥିଲେ ବୋଲି କୁହାଯାଏ । ସକ୍ରେଟିସ୍ ଯଦିବା କୌଣସି ଶିଷ୍ୟ ଗ୍ରହଣ କରିନଥିଲେ ସେ ଥିଲେ ପ୍ଲେଟୋଙ୍କ ଦାର୍ଶନିକ ବିଚାରର ପ୍ରେରଣାଦାତା । ଗବେଷକମାନେ ପ୍ଲେଟୋଙ୍କ ଡାଏଲଗ୍‌ରୁ କେଉଁ ବିଚାରମାନ ସକ୍ରେଟିସ୍‌ଙ୍କର ଓ କେଉଁ ଦାର୍ଶନିକ ଭାବନାମାନ ତାଙ୍କର ତାହା ଦର୍ଶାଇଛନ୍ତି ଓ ଏହା ନେଇ ପ୍ରାୟତଃ କୌଣସି ବିଶେଷ ମତେଭେଦ ନାହିଁ । ସକ୍ରେଟିସ୍ ଓ ପ୍ଲେଟୋଙ୍କ ଦାର୍ଶନିକ ସିଦ୍ଧାନ୍ତ ଭିତରେ ବହୁ ସାମଂଜସ୍ୟ ରହିଛି । ଏହି ଦୁଇ ଦାର୍ଶନିକ ହିଁ ୟୁରୋପୀୟ ଦାର୍ଶନିକ ଜିଜ୍ଞାସାର ମୂଳ ଉତ୍ସ । ସକ୍ରେଟିସ୍‌ଙ୍କ ବିଷୟରେ ଏହି ସୂଚନାପରେ ଏବେ ତାଙ୍କ ଦାର୍ଶନିକ ସଦ୍ଧାନ୍ତ ବିଷୟରେ ବିଚାର କରିବା ।

### ୬.୨ ଜ୍ଞାନମୀମାଂସା

ପ୍ଲେଟୋଙ୍କର ଡାଏଲଗ୍, ଜେନୋଫୋନଙ୍କର ରଚନା ଓ ଆରିଷ୍ଟୋଟଲଙ୍କର କେତେକ ଆଲୋଚନାରୁ ସକ୍ରେଟିସ୍‌ଙ୍କ ଦାର୍ଶନିକ ବିଚାର ସଂପର୍କରେ କେତେକ ଗୁରୁତ୍ୱପୂର୍ଣ୍ଣ ସୂଚନା ମିଳିଥାଏ । ସକ୍ରେଟିସ୍ ଥିଲେ ଦାର୍ଶନିକ ଓ ଦର୍ଶନ ଥିଲା ତାଙ୍କ ପାଇଁ ଜୀବନର ଉତ୍କର୍ଷ ସାଧନର ମାର୍ଗ । ସେ ଯୁଗରେ ଜ୍ଞାନର ଶ୍ରେଣୀ ବିଭାଜନର ଭାବନା ନଥିଲା । ଯେକୌଣସି ମୌଳିକ ଆଲୋଚନା ଦର୍ଶନର ପରିସରଭୁକ୍ତ ଥିଲା । ଗ୍ରୀସ୍‌ରେ ଦାର୍ଶନିକ ଚର୍ଚ୍ଚା ଆରମ୍ଭ ହୋଇଥିଲା ଏହି ସବୁ ପ୍ରଶ୍ନରୁ ଯେ ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି କିପରି ହୋଇଛି, ବିଶ୍ୱର ପରମ ତତ୍ତ୍ୱ କ'ଣ ଇତ୍ୟାଦିରୁ । ଏହାପରେ ସଫିଷ୍ଟମାନେ ଦାର୍ଶନିକ ଚର୍ଚ୍ଚାର ଧାରା ପରିବର୍ତ୍ତନ କରି ମନୁଷ୍ୟର ସ୍ୱରୂପ ଓ ସମସ୍ୟା ଉପରେ ପ୍ରାଧାନ୍ୟ ଦେଲେ । ସକ୍ରେଟିସ୍ ସୃଷ୍ଟିମୀମାଂସା ସଂକ୍ରାନ୍ତୀୟ ପ୍ରଶ୍ନରୁ ଦୃଷ୍ଟି ଫେରାଇ ମନୁଷ୍ୟ ଜୀବନର ମହତ୍ତ୍ୱ ଓ ସାମାଜିକ ଶ୍ରେୟର ସ୍ୱରୂପ ସଂକ୍ରାନ୍ତରେ ଅଧ୍ୟୟନକୁ ତାଙ୍କ ଆଲୋଚନାର ପ୍ରସଙ୍ଗ କଲେ । ଜୀବନର ଉତ୍କର୍ଷ ସାଧନ ପାଇଁ ନୈତିକ ପ୍ରସଙ୍ଗ ଉପରେ ସେ ବିଭିନ୍ନ ଚର୍ଚ୍ଚାର ସୂତ୍ରପାତ କଲେ । ମନୁଷ୍ୟ କିପରି ଏକ ଉତ୍ତମ ଜୀବନର ଅଧିକାରୀ ହେବ ଓ ଉତ୍ତମ ଜୀବନ କହିଲେ ଆମେ ପ୍ରକୃତରେ କ'ଣ ବୁଝୁ ଏସବୁ ପ୍ରଶ୍ନ ସକ୍ରେଟିସ୍ ଉଠାଇଲେ । ମନୁଷ୍ୟ ପାଖରେ ରହିଥିବା କାମନା, ବାସନା ଜନିତ ଆବେଗ ଓ ନୈତିକ ଦୁର୍ବଳତାକୁ ସେ କିପରି ଅତିକ୍ରମ କରିପାରିବ ଏହା ବି ସକ୍ରେଟିସ୍‌ଙ୍କର ଉପଲବ୍ଧି ଥିଲା । ସଦ୍‌ଗୁଣର ଅଧିକାରୀ ହେବାକୁ ହେଲେ ମନ୍ଦ କ'ଣ ଓ ସଦ୍‌ଗୁଣ କ'ଣ ଏ ବିଷୟରେ ଜଣଙ୍କର ଜ୍ଞାନ ରହିବା ଆବଶ୍ୟକ । ଯେକୌଣସି ଜ୍ଞାନ ଅପେକ୍ଷା ସେ ନୈତିକ ଜ୍ଞାନକୁ ଜୀବନ ପାଇଁ ଅଧିକ ଉପଯୋଗୀ ମନେ କରୁଥିଲେ । ଜଣେ ଦାର୍ଶନିକ ଭାବରେ ଲୋକଙ୍କ ପାଖରୁ ସକଳ ଅଜ୍ଞତା ଦୂରକରି ଜନମାନସରେ ସଦ୍‌ଗୁଣର ବିକାଶକୁ ସେ ସର୍ବାଧିକ ଗୁରୁତ୍ୱ ପ୍ରଦାନ କରୁଥିଲେ । ତେବେ ତାଙ୍କର ସକଳ ନୈତିକ ଭାବଧାରା ଓ ବିଚାର ଏକ ଜ୍ଞାନମୀମାଂସୀୟ ସିଦ୍ଧାନ୍ତ ଉପରେ ବିକଶିତ ହୋଇଥିଲା । ଯଦିବା ସକ୍ରେଟିସ୍ ନିଜେ ତାଙ୍କ ସିଦ୍ଧାନ୍ତମାନଙ୍କୁ ଲେଖି ନାହାନ୍ତି ତାଙ୍କ ଉପରେ ପ୍ଲେଟୋ, ଜେନୋଫୋନ ଓ ଆରିଷ୍ଟୋଟଲ ଯେଉଁ ସବୁ ଭାବନାର ଅବତାରଣା କରିଛନ୍ତି ସେଥିରୁ ତାଙ୍କର ଜ୍ଞାନମୀମାଂସୀୟ ସିଦ୍ଧାନ୍ତର ଏକ ସ୍ୱଷ୍ଟ ଚିତ୍ର ମିଳିଥାଏ । ଦର୍ଶନ

ଚର୍ଚ୍ଚା ପରିସରରେ ଜ୍ଞାନମୀମାଂସା ଏକ ପ୍ରମୁଖ ଭିତ୍ତି ନେବା ଦେଖାଯାଏ । ଏହି ପରିପ୍ରେକ୍ଷୀରେ ସକ୍ରେଟିସ୍‌ଙ୍କ ଜ୍ଞାନମୀମାଂସା ଉପରେ ଏଠାରେ ତାଙ୍କ ବିଚାରକୁ ଅବତାରଣା କରାଯିବ ।

ଜ୍ଞାନମୀମାଂସା କ୍ଷେତ୍ରରେ ଜ୍ଞାନର ପ୍ରଣାଳୀ, ଉତ୍ସ, ବୈଧତା ଇତ୍ୟାଦି ପ୍ରସଙ୍ଗ ଉଠିଥାଏ । ଦର୍ଶନ ପରିସରରେ କୌଣସି ସିଦ୍ଧାନ୍ତ ନିର୍ମାଣ କରିବା ପାଇଁ ତର୍କଶୀଳତା ଓ କେତେକ ବିଚାରର ସାହାଯ୍ୟ ନିଆଯାଏ । ସକ୍ରେଟିସ୍‌ଙ୍କ ଆବିର୍ଭାବ ପୂର୍ବରୁ ଦର୍ଶନ ପରିସରରେ ଯେଉଁ ସବୁ ବୈଚାରିକ ସିଦ୍ଧାନ୍ତମାନ ସୃଷ୍ଟି ହୋଇଥିଲା ସେସବୁ ମଧ୍ୟ କେତେକ ତର୍କବିଧି ଆଧାରରେ ଗଢ଼ି ଉଠିଥିଲା । ଉଦାହରଣ ସ୍ୱରୂପ ଜେନୋ ଯେଉଁ ତର୍କବିଧି ପ୍ରଣାଳୀର ସାହାଯ୍ୟ ନେଇଥିଲେ ତାକୁ ବ୍ୟାଘାତାତ୍ମକ ପଦ୍ଧତି କୁହାଯାଏ । ଏ କ୍ଷେତ୍ରରେ ଏକ ସିଦ୍ଧାନ୍ତକୁ ଅସତ୍ୟ ପ୍ରମାଣ କରିବା ପାଇଁ ଏକ ବିପରୀତ ସିଦ୍ଧାନ୍ତକୁ ଯୁକ୍ତି ଆଧାରରେ ପ୍ରତିଷ୍ଠା କରିବାକୁ ହୁଏ । ଏକ ପକ୍ଷର ସିଦ୍ଧାନ୍ତକୁ ସ୍ୱୀକାର କରି ତର୍କ ସାହାଯ୍ୟରେ ତାହାର ଏକ ପ୍ରତିପକ୍ଷ ସିଦ୍ଧାନ୍ତ ନିର୍ମାଣ କରିବାଦ୍ୱାରା ସେ ସିଦ୍ଧାନ୍ତଟି ଅସତ୍ୟ ପ୍ରମାଣିତ ହୋଇଥାଏ । ସେହିପରି ସଫିଷ୍ଟମାନେ ମଧ୍ୟ ଯେକୌଣସି ପଦ୍ଧତି ପ୍ରୟୋଗ କରି ସେମାନଙ୍କର ଏକ ମତ ଉପସ୍ଥାପନ କରୁଥିଲେ । ସକ୍ରେଟିସ୍ ଏ ସବୁ ସହ ପରିଚିତ ଥିଲେ । ସକ୍ରେଟିସ୍ ତାଙ୍କ ବିଚାର ମଧ୍ୟ ଦେଇ ଯେଉଁ ତର୍କ ବିଧିର ଅବତାରଣା କରିଥିଲେ ତାହାକୁ ଦ୍ୱନ୍ଦ୍ୱତର୍କ ବା ଦ୍ୱନ୍ଦ୍ୱନ୍ୟାୟ (Dialectic) କୁହାଯାଏ । ବିଶେଷକରି ସତ୍ୟ କ'ଣ ଜାଣିବା ପାଇଁ ଓ ଅନ୍ୟମାନଙ୍କୁ ସେମାନଙ୍କର ଅଜ୍ଞତା ବିଷୟରେ ସଚେତନ କରିବାକୁ ସକ୍ରେଟିସ୍ ଦ୍ୱନ୍ଦ୍ୱନ୍ୟାୟର ପନ୍ଥା ଅବଲମ୍ବନ କରୁଥିଲେ । କୌଣସି ଆଲୋଚନା ପରିପ୍ରେକ୍ଷୀରେ ଜଣେ ଯେଉଁ ମତ ରଖୁଥିଲେ, କିଛି ପ୍ରଶ୍ନ ପରେ ସେ ଏକ ବିପରୀତ ମତ ଦେଉଥିଲେ । ଦୁଇଟି ପରସ୍ପର-ବିରୋଧୀ ମତ ଜଣଙ୍କର ଆଲୋଚନାରେ ଅଭିବ୍ୟକ୍ତ ହେଉଥିବାରୁ ଏ କ୍ଷେତ୍ରରେ ଚିନ୍ତନର ଆବଶ୍ୟକତା ରହିଥିବା ସକ୍ରେଟିସ୍ ଦର୍ଶାଉଥିଲେ । ଏକ ଦ୍ୱନ୍ଦ୍ୱ-ନ୍ୟାୟ ପ୍ରଣାଳୀରେ ଏପରି ଏକ ଜାଲରେ ପ୍ରତିପକ୍ଷକୁ ଛନ୍ଦି ଦିଆଯାଏ ଯେଉଁଥିରେ ସେ ଦ୍ୱନ୍ଦ୍ୱ ଭିତରେ ପଡେ । ସୁତରାଂ କୌଣସି ବିଷୟରେ ସତ୍ୟରେ ଉପନୀତ ନ ହେବା ପର୍ଯ୍ୟନ୍ତ ଏକ ତର୍କ ବଚନକୁ ଗ୍ରହଣ କରିବା ଯଥାର୍ଥ ନୁହେଁ ବୋଲି ସକ୍ରେଟିସ୍ ମତପୋଷଣ କରୁଥିଲେ । ଦ୍ୱନ୍ଦ୍ୱନ୍ୟାୟ କ୍ଷେତ୍ରରେ କୌଣସି ମତ କେତେ ଦୂର ଯଥାର୍ଥ ତାହା ନେଇ ଦ୍ୱନ୍ଦ୍ୱ ପ୍ରକାଶ କରାଯାଇ ତାକୁ ଖଣ୍ଡନ କରାଯାଏ । ସୁତରାଂ ଏ କ୍ଷେତ୍ରରେ ବିତର୍କ ଓ ଖଣ୍ଡନର ଭାବନା ଆସିଥାଏ । ସକ୍ରେଟିସ୍‌ଙ୍କ ବିରୁଦ୍ଧରେ ମିଲିଟସ୍ ଅଭିଯୋଗ ଆଣିଥିଲେ ଯେ ସେ ଗ୍ରୀସ୍‌ର ଦେବତାମାନଙ୍କୁ ସ୍ୱୀକାର କରୁନାହାନ୍ତି । ଏଣୁ ସକ୍ରେଟିସ୍ ଜଣେ ନାସ୍ତିକ ବ୍ୟକ୍ତି । ସକ୍ରେଟିସ୍ ଯେତେବେଳେ ତାଙ୍କ ବିରୁଦ୍ଧରେ ଆସିଥିବା ଅଭିଯୋଗ ନେଇ ମିଲିଟସ୍‌ଙ୍କୁ ପ୍ରଶ୍ନ ପଚାରିଲେ ମିଲିଟସ୍ ଉତ୍ତର ଦେଲେ ଯେ ସକ୍ରେଟିସ୍ ଜଣେ ଆଧ୍ୟାତ୍ମିକ ବ୍ୟକ୍ତି । ସକ୍ରେଟିସ୍ କହିଲେ ଯେ ଜଣେ ନାସ୍ତିକ ହେବା ଅର୍ଥ ଦେବତାଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରିବା । ଆଧ୍ୟାତ୍ମିକ ହେବାର ତାତ୍ପର୍ଯ୍ୟ ହେଉଛି ଦୈବୀଶକ୍ତିରେ ବିଶ୍ୱାସ କରିବା । ଦୈବୀ ଶକ୍ତିରେ ବିଶ୍ୱାସର ଅର୍ଥ ହେଉଛି ଦେବତାଙ୍କ ଉପରେ ଆସ୍ଥା ସ୍ଥାପନ କରିବା । ଦେବତାରେ ବିଶ୍ୱାସ ପୁନଶ୍ଚ ଦୈବୀ ଶକ୍ତିର ଅସ୍ତିତ୍ୱ ଉପରେ ଅବିଶ୍ୱାସ ପରସ୍ପରବିରୋଧୀ ମନେହୁଏ । ସୁତରାଂ ଦେବତାଙ୍କୁ ସ୍ୱୀକାର କରିବା ଓ ନାସ୍ତିକ ହେବା ଉଭୟ ସମ୍ଭବପର ନୁହେଁ । ମିଲିଟସ୍ ଯଦି ସକ୍ରେଟିସ୍‌ଙ୍କୁ

ଜଣେ ଆଧ୍ୟାତ୍ମିକ ବ୍ୟକ୍ତି କହିବେ ଓ ପୁନଶ୍ଚ ତାଙ୍କୁ ନାସ୍ତିକ ବୋଲି ଅଭିହିତ କରିବେ ତାଙ୍କର ଅଭିଯୋଗ ଯେ ଯଥାର୍ଥ ନୁହେଁ ଏହା ପ୍ରମାଣିତ ହେଉଛି । ପ୍ଲେଟୋଙ୍କର ବିଭିନ୍ନ ଡାଏଲଗ୍‌ରେ ସକ୍ରେଟିସ୍ ଦ୍ୱନ୍ଦ୍ୱନ୍ୟାୟ ପ୍ରକ୍ରିୟାରେ ବିଭିନ୍ନ ମତର ଅସତ୍ୟତା ପ୍ରକାଶ କରିବାରେ ସଫଳ ହୋଇଛନ୍ତି । ଗୋଟିଏ ମତକୁ ଅସତ୍ୟ ପ୍ରମାଣ କରିବା ପାଇଁ ଯେଉଁ ତର୍କଶୀଳ ପଦ୍ଧତିର ଆଶ୍ରୟ ନିଆଯାଏ ତାହାକୁ ସାଧାରଣତଃ ଦ୍ୱନ୍ଦ୍ୱନ୍ୟାୟ ପ୍ରଣାଳୀ ବୋଲି କୁହାଯାଏ ।

ପୂର୍ବରୁ ଆଲୋଚିତ ହୋଇଛି ଯେ ସକ୍ରେଟିସ୍ ସର୍ବଦା ନିଜର ଅଜ୍ଞତା ପ୍ରକାଶ କରୁଥିଲେ । ସେ ବିଭିନ୍ନ ଜନଗହଳିପୂର୍ଣ୍ଣ ସ୍ଥାନମାନଙ୍କୁ ଯାଉଥିଲେ ଓ ସମାଜର ସବୁ ବର୍ଗର ଲୋକମାନଙ୍କ ସହ ଆଲୋଚନାରେ ସଂପୃକ୍ତ ହେଉଥିଲେ । ସେ ସର୍ବଦା ଅନ୍ୟ ପାଖରୁ କୌଣସି ପ୍ରସଙ୍ଗରେ ଜାଣିବାକୁ ଚାହୁଁଥିଲେ । ଆଲୋଚନା ବେଳେ ଯଦି କେହି ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗର ଅବତାରଣା କରୁଥିଲେ ତାହା କ'ଣ ତାଙ୍କୁ ବୁଝାଇବାକୁ ସେ ନିବେଦନ କରୁଥିଲେ ବା ଆଲୋଚନାକୁ ସେହି ଦିଗରେ ପରିଚାଳିତ କରୁଥିଲେ । ମନେ କରାଯାଉ ଜଣେ ସାହସ ବିଷୟରେ କହିଲେ ଓ ସାହସ କହିଲେ କ'ଣ ବୁଝାଯାଏ ସକ୍ରେଟିସ୍ ପଚାରିଲେ । ଆଲୋଚକ ସାହସ ବିଷୟରେ ଅବତାରଣା କରିଥିବାରୁ ସେ ସାହସ କହିଲେ ଯାହା ବୁଝନ୍ତି ତାହା ବୁଝାଇଲେ । ଏହା ଶୁଣି ସକ୍ରେଟିସ୍ ବହୁତ ଆନନ୍ଦ ପ୍ରକାଶ କରୁଥିଲେ ଓ ତାଙ୍କ ମନରେ ଉଠୁଥିବା ଗୋଟିଏ ଦୁଇଟି ସନ୍ଦେହ ନେଇ ପ୍ରଶ୍ନ କରୁଥିଲେ । ଏହି ଆଲୋଚନା ଭିତରେ ସକ୍ରେଟିସ୍‌ଙ୍କୁ ସେ ଯାହା ବୁଝାଇଲେ ସେଥିରେ ରହୁଥିବା ବିରୋଧାଭାସ ବିଷୟ ସେ ତାଙ୍କ ଦୃଷ୍ଟିକୁ ଆଣୁଥିଲେ ଓ ଏ ବିଷୟରେ କିପରି ଅଧିକ ସ୍ୱଚ୍ଛତା ରହିପାରିବ ସେ ପାଇଁ ନିଜର ମତ ରଖୁଥିଲେ । ବସ୍ତୁତଃ ଏକ ଦ୍ୱନ୍ଦ୍ୱ-ନ୍ୟାୟ ପ୍ରକ୍ରିୟାରେ କୌଣସି ବିଷୟରେ ସଂଜ୍ଞା ବା ବ୍ୟାଖ୍ୟା ଦେଲା ସମୟରେ କିପରି ଅଧିକ ସ୍ୱଚ୍ଛତା ରହିପାରିବ ତାହା ହିଁ ସକ୍ରେଟିସ୍‌ଙ୍କର ପ୍ରୟାସ ରହିଥିଲା । କୌଣସି ସଂଜ୍ଞା କିପରି ସାର୍ବଜନୀନ ଭାବରେ ଗୃହୀତ ହେବ ଏହି ଉଦ୍ଦେଶ୍ୟରେ ସକ୍ରେଟିସ୍ ଦ୍ୱନ୍ଦ୍ୱନ୍ୟାୟ ପ୍ରଣାଳୀକୁ ପ୍ରୟୋଗ କରୁଥିଲେ । କୌଣସି ପ୍ରଶ୍ନ ଉପରେ ଆମର ଚିନ୍ତା ଓ ବ୍ୟାଖ୍ୟା କିପରି ତ୍ରୁଟିଶୂନ୍ୟ ହେବ ଓ ଆମର ପ୍ରଦତ୍ତ ସଂଜ୍ଞାର ଏକ ସାର୍ବଜନୀନ ଭିତ୍ତି ରହିବ, ଏହି ଉଦ୍ଦେଶ୍ୟରେ ସକ୍ରେଟିସ୍ ଦ୍ୱନ୍ଦ୍ୱନ୍ୟାୟ ପଦ୍ଧତିକୁ ସକାରାତ୍ମକ ଭାବରେ ପ୍ରୟୋଗ କରୁଥିଲେ ।

ପୁନଶ୍ଚ ପ୍ଲେଟୋଙ୍କ କେତେକ ଡାଏଲଗ୍‌ରେ ସକ୍ରେଟିସ୍ ଏକ ପ୍ରଣାଳୀର ପ୍ରୟୋଗ କରୁଥିଲେ ଯାହାକୁ ପ୍ରସବକରଣ ପ୍ରଣାଳୀ (midwifery method) ବୋଲି କୁହାଯାଏ । ମଣିଷ ଯେତେବେଳେ ନିଜ ଅଜ୍ଞତା ନେଇ ସଚେତନ ହୁଏ ତା ପାଖରେ ଜିଜ୍ଞାସାର ମନୋଭାବ ଆସିଥାଏ । ସକ୍ରେଟିସ୍ ଅନ୍ୟମାନଙ୍କୁ ଜ୍ଞାନାନ୍ୱେଷଣରେ ସାହାଯ୍ୟ କରିବା ପାଇଁ ସର୍ବଦା ପ୍ରୟାସ କରୁଥିଲେ । ଜ୍ଞାନ, ସତ୍ୟ, ନ୍ୟାୟ, ଉତ୍କର୍ଷ, ସଂଯମତା ଇତ୍ୟାଦି ବିଭିନ୍ନ ପ୍ରସଙ୍ଗ ଉପରେ ସେ ଲୋକମାନଙ୍କ ପାଖରୁ ଜାଣିବାକୁ ଚାହୁଁଥିଲେ । ଆଲୋଚନା ଭିତରେ ଯେତେବେଳେ ସକ୍ରେଟିସ୍ ଅନ୍ୟମାନଙ୍କର ତ୍ରୁଟି ଦେଖାଇ ଦେଉଥିଲେ ସେମାନେ ନିଜର ଦୁର୍ବଳତା ନେଇ ସଚେତନ ହେଉଥିଲେ ଓ ମାନସିକ ସ୍ତରରେ ଯନ୍ତ୍ରଣା ଅନୁଭବ କରୁଥିଲେ । ଜଣେ ମହିଳାଙ୍କର ଗର୍ଭବେଦନାର ମୋଚନ ପାଇଁ ଧାଈ ଉଦ୍ୟମ କରନ୍ତି । ସନ୍ତାନ ପ୍ରସବକରଣରେ ଧାଈଙ୍କର ଏକ ମୁଖ୍ୟ ଭୂମିକା ଥାଏ, ଯିଏ ଜଣେ ମହିଳାଙ୍କର ଗର୍ଭବେଦନାକୁ ଦୂର

କରିବାରେ ସହାୟକ ହୁଅନ୍ତି । ସକ୍ରେଟିସ୍ ସେହିପରି ନିଜକୁ ଜଣେ ଧାଈ ମନେ କରୁଥିଲେ । ନାରୀର ପ୍ରସବ ବେଦନା ନୁହେଁ, ଜଣେ ବ୍ୟକ୍ତିଙ୍କର ମାନସିକ ଯନ୍ତ୍ରଣା ଲାଘବ କରିବାରେ ସକ୍ରେଟିସ୍ ଉଦ୍ୟମ କରନ୍ତି । କୌଣସି ପ୍ରସଙ୍ଗ ଉପରେ ଜଣେ ଯେତେବେଳେ ମାନସିକ ଯନ୍ତ୍ରଣା ଭୋଗ କରୁଛନ୍ତି ଓ ନିଜର ବିଚାର ନେଇ ସ୍ପଷ୍ଟ ହୋଇପାରୁ ନାହାନ୍ତି, ସକ୍ରେଟିସ୍ ତାଙ୍କୁ ସାହାଯ୍ୟ କରନ୍ତି । ବୌଦ୍ଧିକ ସ୍ପଷ୍ଟତା ପାଇଁ ମାନସିକ ଗର୍ଭଯନ୍ତ୍ରଣା ଦୂର କରିବାରେ ସକ୍ରେଟିସ୍ ଧାଈ କାର୍ଯ୍ୟ କରନ୍ତି । ମାନସିକ ଗର୍ଭଯନ୍ତ୍ରଣାକୁ ଦୂର କରି ସକ୍ରେଟିସ୍ ଅନ୍ୟଠାରୁ ଯେଉଁ ଶିଶୁକୁ ପ୍ରସବ କରାନ୍ତି ସେଥିରେ ସତ୍ୟ ନିହିତ କି ନାହିଁ ତାହା ନେଇ ସେ ସଚେତନ କରାନ୍ତି । ଜଣେ ମହିଳା ଧାଈଙ୍କ ସାହାଯ୍ୟରେ ସନ୍ତାନ ପ୍ରସବ କରନ୍ତି । ସେହିପରି ମାନସିକ ବା ଆତ୍ମିକ ସ୍ତରରେ ବୌଦ୍ଧିକ ଯନ୍ତ୍ରଣା ଭୋଗ କରୁଥିବା ବ୍ୟକ୍ତିକୁ କିଛି ତତ୍ତ୍ୱ, ସିଦ୍ଧାନ୍ତ ବା ମତକୁ ଜନ୍ମ ଦେବାରେ ସକ୍ରେଟିସ୍ ସାହାଯ୍ୟ କରନ୍ତି । ଏକ ତତ୍ତ୍ୱ ପ୍ରକୃତରେ ସତ୍ୟ କି ନୁହଁ ତାହା ପର୍ଯ୍ୟାଲୋଚନା ଓ ବିଶ୍ଳେଷଣ ପରେ ସ୍ଥିର ହୋଇଥାଏ ।

ସକ୍ରେଟିସ୍ ନିଜକୁ ଧାଈ କହୁଥିଲେ ଓ ଏହି ପ୍ରକ୍ରିୟାକୁ ପ୍ରସବକରଣ ପ୍ରଣାଳୀ କୁହାଯାଏ । ସକ୍ରେଟିସ୍ଙ୍କ ମା' ଧାଈ ଥିଲେ । ସକ୍ରେଟିସ୍ ନିଜକୁ ଧାଈ କହିବାରେ ମା'ଙ୍କ ବୃତ୍ତି ପାଇଁ ଗର୍ବ ଅନୁଭବ କରନ୍ତି । ତେବେ ଜଣେ ଧାଈ ନିଜେ ଜନ୍ମ କରନ୍ତି ନାହିଁ ଜନ୍ମ କରାଇବାରେ ସାହାଯ୍ୟ କରନ୍ତି । ଏହି ଦୃଷ୍ଟିରୁ ସକ୍ରେଟିସ୍ଙ୍କ କାର୍ଯ୍ୟ ଓ ଧାଈର କାର୍ଯ୍ୟ ଭିତରେ ସାଦୃଶ୍ୟ ରହିଛି । ଧାଈ ଜନ୍ମ ଦିଅନ୍ତି ନାହିଁ, ସକ୍ରେଟିସ୍ କୌଣସି ସତ୍ୟକୁ ଜନ୍ମଦେବାରେ ମଧ୍ୟ ଅକ୍ଷମ ବୋଲି କହନ୍ତି । ସେ ସର୍ବଦା ନିଜକୁ ଅଜ୍ଞ କହିଥାନ୍ତି ଓ ଅନ୍ୟମାନଙ୍କ ପାଖରୁ ଜାଣିବାକୁ ଆଗ୍ରହ କରନ୍ତି । ସେ ଏପରି ମଧ୍ୟ କହିଛନ୍ତି ଯେ ସେ ଧାଈ କାର୍ଯ୍ୟ କରିବାକୁ ଈଶ୍ୱରଙ୍କ ଦ୍ୱାରା ପ୍ରେରିତ । ସକ୍ରେଟିସ୍ଙ୍କ ସହ ଯେଉଁମାନେ ଆଲୋଚନାରେ ସଂପୃକ୍ତ ହୁଅନ୍ତି ଧୀରେ ଧୀରେ ସେମାନେ ବିଚାର କ୍ଷେତ୍ରରେ ଯଥେଷ୍ଟ ଉନ୍ନତି ହାସଲ କରନ୍ତି ଓ ଏପରିକି ନିଜେ କୌଣସି ବିଷୟରେ ସତ୍ୟର ପଥଦ୍ରଷ୍ଟା ହୁଅନ୍ତି । ଯେଉଁ ଧାରାରେ ଅନ୍ୟ ପାଖରୁ ସତ୍ୟ ବା କୌଣସି ସିଦ୍ଧାନ୍ତ ପ୍ରକାଶ କରାଇବାରେ ଯେଉଁ ପ୍ରଣାଳୀ ସାହାଯ୍ୟ କରେ ତାହାକୁ ପ୍ରସବକରଣ ବା ଗର୍ଭମୋଚନ ପ୍ରଣାଳୀ କୁହାଯାଏ । ସକ୍ରେଟିସ୍ ଏହି ଭାବନାର ସୂତ୍ରପାତ କରିବାରେ ଥିଲେ ପଥ ପ୍ରଦର୍ଶକ ।

ସକ୍ରେଟିସ୍ଙ୍କର ଜ୍ଞାନମୀମାଂସା କ୍ଷେତ୍ରରେ ବଡ ଅବଦାନ ହେଉଛି ଜ୍ଞାନକୁ ବିଚାରଶୀଳ (reason ) ଆଧାରରେ ପ୍ରତିଷ୍ଠା କରିବା । ଜ୍ଞାନ ଯଦି ଆମର ବିଚାରଶୀଳତାର ଭିତ୍ତି ଉପରେ ନିର୍ମିତ ହୁଏ ତେବେ ଏହାର ସତ୍ୟତା ବସ୍ତୁନିଷ୍ଠ ହେବ ଓ ସାର୍ବଜନୀନ ହେବ । ସକଳ ଜ୍ଞାନକୁ ପ୍ରତ୍ୟୟ ଆଧାରରେ ବିକଶିତ କରାଯାଇପାରିବ । ସକ୍ରେଟିସ୍ଙ୍କ ପୂର୍ବରୁ ସଫିଷ୍ଟମାନେ ଜ୍ଞାନକୁ ପ୍ରତ୍ୟକ୍ଷ ଉପରେ ପ୍ରତିଷ୍ଠା କରିଥିଲେ । ଯାହା ଇନ୍ଦ୍ରିୟ ସାହାଯ୍ୟରେ ବ୍ୟକ୍ତି ଜାଣେ ତାହା ପ୍ରତ୍ୟକ୍ଷ । କ ଯେପରି ପ୍ରତ୍ୟକ୍ଷ କରନ୍ତି ତାହା ତାଙ୍କ ପାଇଁ ସତ୍ୟ, ଖ ଅନ୍ୟଭାବରେ ପ୍ରତ୍ୟକ୍ଷ କଲେ ତାହା ତାଙ୍କ ପାଇଁ ସତ୍ୟ, ଗ ଙ୍କର ପ୍ରତ୍ୟକ୍ଷ ଭିନ୍ନ ହେଲେ ତାହା ତାଙ୍କ ପାଇଁ ସତ୍ୟ । ସଫିଷ୍ଟମାନଙ୍କ ମତରେ ସତ୍ୟ ବ୍ୟକ୍ତିନିଷ୍ଠ ଓ ପରସ୍ପରଠାରୁ ଭିନ୍ନ । ସଫିଷ୍ଟ ମାନଙ୍କର ଏହି ବିଚାରକୁ ସକ୍ରେଟିସ୍ ପୂର୍ଣ୍ଣ ବିରୋଧ କରୁଥିଲେ, ବରଂ ସତ୍ୟକୁ କିପରି ସାର୍ବଜନୀନ, ବସ୍ତୁନିଷ୍ଠ ଓ ବିଚାରଶୀଳ ଭାବରେ ପ୍ରତିଷ୍ଠା କରାଯିବ ତାହା ନେଇ ଗମ୍ଭୀର ଭାବନା ବ୍ୟକ୍ତ କରୁଥିଲେ ।

ଏହି ପରିପ୍ରେକ୍ଷୀରେ ସକ୍ରେଟିସ୍‌ଙ୍କର ଭାବନା ଥିଲା ଯେ ସତ୍ୟ ସର୍ବଦା ପ୍ରତ୍ୟୟ (Concept) ଭିତ୍ତିକ । ତେବେ ପ୍ରଶ୍ନ ହେବ - ପ୍ରତ୍ୟୟ କହିଲେ କ'ଣ ବୁଝାଯାଏ ? ଆମେ ଯେତେବେଳେ ଆମ ଇନ୍ଦ୍ରିୟ ସାହାଯ୍ୟରେ ଏକ ବ୍ୟକ୍ତି, ଏକ ବୃକ୍ଷ, ଏକ ଗାଈ, ଏକ ଗୃହ ଇତ୍ୟାଦି ଯାହା କିଛିକୁ ଦେଖୁ ଏହା ହେଉଛି ପ୍ରତ୍ୟକ୍ଷ । ପ୍ରତ୍ୟକ୍ଷ ଜ୍ଞାନ ଇନ୍ଦ୍ରିୟ-ଆଧାରିତ ଓ ଅନୁଭୂତିମୂଳକ । ଆମେ ଯେତେବେଳେ ଆମ ଚକ୍ଷୁ ବନ୍ଦ କରି ଦେଖିଥିବା ଏକକ ବସ୍ତୁମାନଙ୍କ ଉପରେ ମାନସିକ ସ୍ତରରେ ଏହାକୁ ଭାବୁ, ସେତେବେଳେ ଏକକ ବସ୍ତୁମାନଙ୍କର ଏକ ଆକୃତିର ଚିତ୍ର ଆମ ମନ ଭିତରକୁ ଆସେ । ଏହି ମାନସିକ ଛବିଟିକୁ ଆମେ ଆକୃତି ବା ବସ୍ତୁର ପ୍ରତିନିଧି ଭାବିଥାଉ । ତେବେ ବିଶେଷ ବସ୍ତୁ ଯାହା ଆମ ଇନ୍ଦ୍ରିୟଦ୍ୱାରା ପ୍ରତ୍ୟକ୍ଷ ହୁଏ କିମ୍ବା ମାନସିକ କଳ୍ପନାଦ୍ୱାରା ତାର ଆକୃତିଟିକୁ ଭାବନାରେ ଅଣାଯାଏ ସେସବୁ ବିଶେଷର (particular) ସୂଚନା ଦିଏ । ତେବେ ଏହି ବିଶେଷ ବା ବ୍ୟକ୍ତିଗତ ବସ୍ତୁ ବାହାରେ ଆମେ ଏକ ସାମାନ୍ୟ ବା ସାର୍ବିକ ଭାବନାର ପରିକଳ୍ପନା କରିପାରିବା । ଯଦି କୁହାଯାଏ ମହାତ୍ମା ଗାନ୍ଧୀ ମରଣଶୀଳ, ଗୌତମ ବୁଦ୍ଧ ମରଣଶୀଳ, ଆମେ ସେତେବେଳେ ମହାତ୍ମା ଗାନ୍ଧୀ ବା ଗୌତମ ବୁଦ୍ଧଙ୍କୁ ଜଣେ ଜଣେ ବ୍ୟକ୍ତି ଭାବରେ ନେଇଥାଉ । କିନ୍ତୁ ଯଦି କୁହାଯାଏ- "ମନୁଷ୍ୟ ମରଣଶୀଳ" -ଏଠାରେ କୌଣସି ବ୍ୟକ୍ତିଙ୍କର କଥା କୁହାଯାଇ ନାହିଁ, ବରଂ ଏକ ମନୁଷ୍ୟ  ଶ୍ରେଣୀ ବିଷୟରେ କୁହାଯାଉଛି । ସେହିପରି ଯଦି କୁହାଯାଏ ଗଙ୍ଗା ଚିରସ୍ରୋତା, ମହାନଦୀ ଚିରସ୍ରୋତା, ତେବେ ଗଙ୍ଗା, ମହାନଦୀ ଏକ ଏକ ବିଶେଷ ନଦୀର ନାମକୁ ସୂଚାଇଥାଏ । କିନ୍ତୁ ଯଦି କୁହାଯାଏ – "ନଦୀମାନେ ଚିରସ୍ରୋତା", ତେବେ ନଦୀ ଏକ ଶ୍ରେଣୀର ସୂଚନା ଦେଇଥାଏ । ମନୁଷ୍ୟ, ନଦୀ, ଗାଈ, ରାଷ୍ଟ୍ର, ଟେବୁଲ ଇତ୍ୟାଦି ପଦମାନଙ୍କୁ ଶ୍ରେଣୀବାଚକ ବା ସାମାନ୍ୟ ପଦ କୁହାଯାଏ । ଏକ ସାମାନ୍ୟ ପଦକୁ "ପ୍ରତ୍ୟୟ" (concept) କୁହାଯାଏ । ସାଧାରଣତଃ ଏକ ସାମାନ୍ୟ ପଦର ଆଧାରରେ ଏକ ପ୍ରତ୍ୟୟ ସୃଷ୍ଟି ହୋଇଥାଏ । ମନୁଷ୍ୟ କହିଲେ ମନୁଷ୍ୟ ଶ୍ରେଣୀକୁ ବୁଝାଯାଏ, ନଦୀ କହିଲେ ନଦୀ ସମୂହକୁ ବୁଝାଯାଏ, ଗାଈ କହିଲେ ଏକ ଶ୍ରେଣୀର ସୂଚନା ମିଳେ, ସୁତରାଂ ଏସବୁକୁ ଆମେ ସାମାନ୍ୟ ପଦ କହିଥାଏ । ଏହି ସାମାନ୍ୟ ପ୍ରତ୍ୟୟ ଏହି ଭାବନାରୁ ଆସିଥାଏ ଯେ ସେହି ଶ୍ରେଣୀର ସମସ୍ତ ବ୍ୟକ୍ତିଙ୍କ ପାଖରେ କିଛି ମୌଳିକ ଲକ୍ଷଣ ସାଧାରଣ ଭାବରେ ରହିଥାଏ । ଧବଳତ୍ୱକୁ ଗାଈମାନଙ୍କ ପାଖରେ ଏକ ସାଧାରଣ ଓ ସାର୍ବଜନୀନ ଲକ୍ଷଣ ଭାବରେ ନିଆଯାଇ ପାରିବ ନାହିଁ । କେତେକ ଗାଈ ଧଳା ହୋଇପାରନ୍ତି, କିନ୍ତୁ ସବୁ ଗାଈ ଯେହେତୁ ଧଳା ରଙ୍ଗର ନୁହନ୍ତି ତେଣୁ ଧବଳତ୍ୱ ଗାଈମାନଙ୍କର ସାଧାରଣ ଓ ମୌଳିକ ଲକ୍ଷଣ ନୁହେଁ । ତେବେ ଯଦି କୁହାଯିବ ଯେ 'ଗାଈମାନେ ମେରୁଦଣ୍ଡୀ' ବା 'ଗାଈମାନେ ସ୍ତନ୍ୟପାୟୀ' ତେବେ ଏହି ଲକ୍ଷଣମାନ ଗାଈ ଶ୍ରେଣୀର ସମସ୍ତ ପ୍ରାଣୀଙ୍କ ପାଖରେ ଦେଖିବାକୁ ମିଳେ । ଯେତେବେଳେ ଏକ ଶ୍ରେଣୀର ସମସ୍ତ ବ୍ୟକ୍ତି ବିଶେଷଙ୍କୁ ନିଆଯିବ ଓ ସମସ୍ତଙ୍କ ପାଖରେ କୌଣସି ଲକ୍ଷଣ ସାଧାରଣ ଓ ସାର୍ବଜନୀନ ଭାବରେ ରହିବ, ସେତେବେଳେ ଏକ ପ୍ରତ୍ୟୟର ପରିକଳ୍ପନା ଆସିବ । ଯେତେବେଳେ ଏକ ଶ୍ରେଣୀର ସମସ୍ତ ବ୍ୟକ୍ତିବିଶେଷଙ୍କ ପାଖରେ କୌଣସି ଲକ୍ଷଣାର୍ଥ ସାଧାରଣ ଓ ସାର୍ବଜନୀନ ଭାବରେ ରହିବ ସେତେବେଳେ ଏକ ପ୍ରତ୍ୟୟ ସୃଷ୍ଟି ହେବ । ମନୁଷ୍ୟ, ଗାଈ, ବୃକ୍ଷ ବା ପ୍ରତ୍ୟେକ ଶ୍ରେଣୀବାଚକ ପଦ ଏକ ଏକ ପ୍ରତ୍ୟୟ । ଏକ ପ୍ରତ୍ୟୟ

ଭିତରେ ସେହି ଶ୍ରେଣୀର ସମସ୍ତ ବ୍ୟକ୍ତିବିଶେଷ ଅନ୍ତର୍ଭୁକ୍ତ ଯେଉଁମାନଙ୍କ ପାଖରେ କିଛି ଲକ୍ଷଣାର୍ଥ ସାଧାରଣ ଭାବେ ବିଦ୍ୟମାନ ।

ବିଚାରବୁଦ୍ଧି (reason) ସାହାଯ୍ୟରେ ଆମେ ପ୍ରତ୍ୟୟର ଭାବନା ଆଣିଥାଏ । ବିଚାରବୁଦ୍ଧି ଭାବନା ବିଷୟରେ ପ୍ରଥମେ ସ୍ପଷ୍ଟ ହେବା ଆବଶ୍ୟକ । ବିଚାରବୁଦ୍ଧି ସାହାଯ୍ୟରେ ଆମେ ତର୍କ ବା ଯୁକ୍ତି କରିଥାଉ ବୋଲି କେହି କହିପାରନ୍ତି । ଏକ ସିଦ୍ଧାନ୍ତରେ ଉପନୀତ ହେବାକୁ ତର୍କଶୀଳତାର ସାହାଯ୍ୟ ନିଆଯାଏ । ତେବେ ତର୍କଶୀଳତା (reasoning) ସମସ୍ତ ପ୍ରତ୍ୟୟ ପାଇଁ ବିନିଯୋଗ ହୋଇପାରେ । ସକଳ ତର୍କଶୀଳ ବା ତର୍କବୁଦ୍ଧୀୟ ପ୍ରକ୍ରିୟାକୁ ଦୁଇ ଶ୍ରେଣୀରେ ବିଭାଜନ କରାଯାଇପାରେ ଯଥା ଆରୋହ ଚିନ୍ତନ ଓ ଅବରୋହ ଚିନ୍ତନ । ଆରୋହ ଚିନ୍ତନ ପ୍ରକ୍ରିୟାରେ ଆମେ ବିଶେଷ ବସ୍ତୁମାନଙ୍କରୁ ଏକ ସାମାନ୍ୟ ପ୍ରତ୍ୟୟର ଭାବନା ଆଣିଥାଏ । ଏକ ସାମାନ୍ୟ ପ୍ରତ୍ୟୟ ବ୍ୟକ୍ତି ବା ବିଶେଷ ବସ୍ତୁମାନଙ୍କ ସଂପର୍କରେ ସୂଚନା ନ ଦେଇ ଏକ ଶ୍ରେଣୀ ବିଷୟରେ ସୂଚନାର ଅବତାରଣା କରିଥାଏ । ତେଣୁ ଏକ ସାମାନ୍ୟ ପଦ ହେଉଛି ଏକ ପ୍ରତ୍ୟୟ । ପ୍ରତ୍ୟୟମାନ ଆରୋହ ପ୍ରକ୍ରିୟାରେ ଗଠିତ ହୁଏ । ଆରୋହ ପଦ୍ଧତି ମାଧ୍ୟମରେ ଆମେ ଏକ ଶ୍ରେଣୀର ବିଶେଷ ବ୍ୟକ୍ତି ବା ବସ୍ତୁମାନଙ୍କୁ ଦେଖି ଏକ ସାମାନ୍ୟ ପ୍ରତ୍ୟୟର ପରିକଳ୍ପନା କରିଥାଏ । ଅପରପକ୍ଷରେ ଏକ ଅବରୋହ ପଦ୍ଧତିରେ ଆମେ ଏକ ସାମାନ୍ୟ ପ୍ରତ୍ୟୟକୁ ବ୍ୟକ୍ତିବିଶେଷ ପାଖରେ ପ୍ରୟୋଗ କରିବା ଦେଖାଯାଏ । ଅବରୋହ ପଦ୍ଧତି କ୍ଷେତ୍ରରେ ଆମେ ଏକ ସାର୍ବିକ ବା ସାମାନ୍ୟ ଭାବନାରୁ ବ୍ୟକ୍ତି ବା ବିଶେଷ କ୍ଷେତ୍ରକୁ ବା ଭାବନାକୁ ଆସିଥାଏ । ଆମେ କହୁ ଯେ ମହାତ୍ମା ଗାନ୍ଧୀ ମରଣଶୀଳ ଯେହେତୁ ସବୁ ମନୁଷ୍ୟ ମରଣଶୀଳ । 'ସବୁ ମନୁଷ୍ୟ ମରଣଶୀଳ' ବିଚାରରୁ 'ମହାତ୍ମା ଗାନ୍ଧୀ ମରଣଶୀଳ' ସିଦ୍ଧାନ୍ତକୁ ଆସିବା ଏକ ଅବରୋହ ତର୍କ ପଦ୍ଧତି । ସୁତରାଂ ଏକ ପ୍ରତ୍ୟୟ ଗଠନ କରିବାରେ ଆରୋହ ତର୍କଶୀଳ ପଦ୍ଧତି ସାହାଯ୍ୟ କରିଥାଏ, ଅଥଚ ଏକ ଅବରୋହ ତର୍କଶୀଳ ପଦ୍ଧତି ଏକ ପ୍ରତ୍ୟୟକୁ ବିଶେଷ କ୍ଷେତ୍ରରେ ପ୍ରୟୋଗ କରିବାରେ ସହାୟକ ହୋଇଥାଏ ।

ସକ୍ରେଟିସ୍ ସମସ୍ତ ଜ୍ଞାନର ଆଧାର ଭାବରେ ବିଚାରବୁଦ୍ଧିକୁ ଗ୍ରହଣ କରିଛନ୍ତି । ବିଚାରବୁଦ୍ଧି ସାହାଯ୍ୟରେ ଆମେ ପ୍ରତ୍ୟୟ ଲାଭ କରିଥାଏ ଓ ପ୍ରତ୍ୟୟ ହିଁ ଜ୍ଞାନର ଆଧାର ହୋଇଥାଏ । ସକ୍ରେଟିସ୍ ଏହି କ୍ଷେତ୍ରରେ ସଫିଷ୍ଟମାନଙ୍କ ମତଠାରୁ ସଂପୂର୍ଣ୍ଣ ଭିନ୍ନ ମତ ପୋଷଣ କରିଛନ୍ତି । ସଫିଷ୍ଟମାନଙ୍କ ମତରେ ସକଳ ଜ୍ଞାନର ଉତ୍ସ ହେଉଛି ଇନ୍ଦ୍ରିୟ-ପ୍ରତ୍ୟକ୍ଷ । ସକ୍ରେଟିସ୍‌ଙ୍କ ମତରେ ତର୍କଶୀଳତା ଓ ବିଚାରବୁଦ୍ଧି ହେଉଛି ମନୁଷ୍ୟର ସାର୍ବିକ ଲକ୍ଷଣ । ବିଚାରବୁଦ୍ଧି ଦ୍ୱାରା ଆମେ ଉପନୀତ ହେଉଥିବା ସିଦ୍ଧାନ୍ତ ସମସ୍ତଙ୍କ ପାଇଁ ସମାନ, ସୁତରାଂ ଏହାର ଏକ ସାର୍ବଜନୀନ ଭିତ୍ତି ରହିଛି । ବିଚାରବୁଦ୍ଧିଦ୍ୱାରା ଆମେ ଯେଉଁ ପ୍ରତ୍ୟୟ ଲାଭ କରିଥାଏ ଓ ପ୍ରତ୍ୟୟ ମାଧ୍ୟମରେ ସାର୍ବଜନୀନ ସିଦ୍ଧାନ୍ତରେ ଉପନୀତ ହୁଏ ତାହା ବସ୍ତୁନିଷ୍ଠ । ସକ୍ରେଟିସ୍‌ଙ୍କର ଏହି ମତ ସଫିଷ୍ଟ ବିଚାରଧାରାର ପରିପନ୍ଥୀ । ସଫିଷ୍ଟମାନଙ୍କ ମତରେ ଜ୍ଞାନ ବ୍ୟକ୍ତିନିଷ୍ଠ, ବ୍ୟକ୍ତି ଯାହା ତାର ଇନ୍ଦ୍ରିୟ ସାହାଯ୍ୟରେ ପ୍ରତ୍ୟକ୍ଷ କରେ ତାହା ତା ପାଇଁ ସତ୍ୟ ।

ସକ୍ରେଟିସ୍ ଏକ ପ୍ରତ୍ୟୟକୁ ସଂଜ୍ଞା ସହ ସଂଶ୍ଳିଷ୍ଟ କରିଛନ୍ତି । କୌଣସି ପଦର ସଂଜ୍ଞା ଦେବାକୁ ହେଲେ ସେହି ପଦଟି ଯେଉଁମାନଙ୍କ ପାଇଁ ପ୍ରଯୁଜ୍ୟ ସେହି ପଦର ବାଚ୍ୟାର୍ଥମାନଙ୍କ ମଧ୍ୟରେ ରହିଥିବା ସାଧାରଣ ଓ ମୌଳିକ ଲକ୍ଷଣର ସୂଚନା ଦେବାକୁ ହୁଏ । ସେହି ମୌଳିକ ଲକ୍ଷଣ ଏକ ପ୍ରତ୍ୟୟ । ଆମେ ଯଦି ମନୁଷ୍ୟର ସଂଜ୍ଞା ଦେବାକୁ ଚାହିଁବା ତେବେ ସବୁ ମନୁଷ୍ୟଙ୍କ ଭିତରେ ସାଧାରଣ ଭାବରେ ରହିଥିବା ଲକ୍ଷଣ ବା ଲକ୍ଷଣାର୍ଥକୁ ଉଲ୍ଲେଖ କରିବାକୁ ହେବ, ଯାହା ଏକ ପ୍ରତ୍ୟୟ । ଆମେ ମନୁଷ୍ୟକୁ ଭାଷା ଆଧାରରେ କିମ୍ବା ରଙ୍ଗ ଆଧାରରେ ସଂଜ୍ଞା ଦେବା ଯଥାର୍ଥ ହେବ ନାହିଁ । ସବୁ ମନୁଷ୍ୟ ଏକା ଭାଷା କହନ୍ତି ନାହିଁ, କିମ୍ବା ସମସ୍ତେ ଏକା ରଙ୍ଗର ନୁହନ୍ତି । ବସ୍ତୁନିଷ୍ଠ ମାନକ ସାହାଯ୍ୟରେ ଏକ ପଦର ସଂଜ୍ଞା ଦିଆଯାଇପାରେ, ଯାହା ସାଧାରଣତଃ ଏକ ପ୍ରତ୍ୟୟ । ଗାଈମାନେ ଧବଳ ପ୍ରାଣୀ କହିବା ଯଥାର୍ଥ ନୁହେଁ କିମ୍ବା ମନୁଷ୍ୟମାନେ ଓଡ଼ିଆ ଭାଷା କହୁଥିବା ବ୍ୟକ୍ତି ଯଥାର୍ଥ ନୁହେଁ । ଏକ ଶ୍ରେଣୀର ସଂଜ୍ଞା ଦେବା ଅର୍ଥ ସେହି ଶ୍ରେଣୀର ସମସ୍ତଙ୍କ ପାଖରେ ସାଧାରଣ ଭାବରେ ରହିଥିବା ଲକ୍ଷଣକୁ ସୂଚାଇବା । ଯେହେତୁ ପ୍ରତ୍ୟେକ ଗାଈ ଧଳା ରଙ୍ଗର ନୁହେଁ କିମ୍ବା ପ୍ରତ୍ୟେକ ମନୁଷ୍ୟ ଓଡ଼ିଆ ଜାଣେ ନାହିଁ ତେଣୁ ପୂର୍ବ ବର୍ଣ୍ଣନାକୁ ଗାଈର ବା ମନୁଷ୍ୟର ସଂଜ୍ଞା ଭାବେ ନିଆଯାଇ ପାରିବ ନାହିଁ । ସଂଜ୍ଞା ଭାଷାରେ ବ୍ୟକ୍ତ ହୋଇଥିବା ଏକ ପ୍ରତ୍ୟୟ । ଏକ ପଦର ସଂଜ୍ଞା ନିରୂପଣ କରିବା ଅର୍ଥ  ଆମେ ସତ୍ୟର ଏକ ବସ୍ତୁନିଷ୍ଠ ମାନକ ନିରୂପଣ କରିବାକୁ ବୁଝାଏ । ଆମେ ଯଦି ଜ୍ୟାମିତିରେ ଏକ ତ୍ରିଭୁଜର ସଂଜ୍ଞା ନିରୂପଣ କରିବାକୁ ଚାହିଁବା, ତେବେ ସେହି ସଂଜ୍ଞା ସହ ଯେକୌଣସି ଏକ ଜ୍ୟାମିତିକ ଚିତ୍ରକୁ ତୁଳନା କରି ତାହା ତ୍ରିଭୁଜ କି ନୁହଁ ତାହା ନିରୂପଣ କରି କହିପାରିବା । ଜଣେ ବ୍ୟକ୍ତି ତା ନିଜର ଭାବନା ବା ଅବବୋଧ ଅନୁଯାୟୀ ତ୍ରିଭୁଜର ସଂଜ୍ଞା ଦେଇ ପାରିବ ନାହିଁ । ସେହିପରି ଯେକୌଣସି ପଦ କ୍ଷେତ୍ରରେ ଏହା ପ୍ରଯୁଜ୍ୟ ହେବ । ଆମେ ମନୁଷ୍ୟର ଯେଉଁ ସଂଜ୍ଞା ଦେବା, ସେହି ସଂଜ୍ଞା ସହ ତୁଳନାକରି ଯେକୌଣସି ଏକ ପ୍ରାଣୀ ମନୁଷ୍ୟ କି ନୁହଁ ତାହା କହିପାରିବା । ସେହିପରି ଯେକୌଣସି ପଦ ପାଇଁ ଏହି ନିୟମ ପ୍ରଯୁଜ୍ୟ । ସଦ୍‌ଗୁଣ କ'ଣ ? ସଦ୍‌ଗୁଣର (virtue) ଏପରି ସଂଜ୍ଞା ନିରୂପିତ ହେବା ଆବଶ୍ୟକ ଯେପରି ଏହା ସହିତ ତୁଳନା କରି ଏକ ଗୁଣ ସଦ୍‌ଗୁଣ ହେବା ଯଥାର୍ଥ କି ନୁହଁ ଆମେ ସହଜରେ କହିପାରିବା । ସଫିଷ୍ଟମାନେ ମତପୋଷଣ କରିଥାନ୍ତି ଯେ 'ମୁଁ ଯାହା ଉଚିତ ମନେକରେ ତାହା ମୋ ପାଇଁ ଯଥାର୍ଥ । ମଁ ଯାହା କରିବାକୁ ଯଥାର୍ଥ ମନେକରେ ତାହା ମୋ ଦୃଷ୍ଟିରେ ସଦ୍‌ଗୁଣ । ଯାହା ଆପଣଙ୍କ ବିଚାରରେ ଠିକ୍, ତାହା ଆପଣଙ୍କ ପାଇଁ ଏକ ନୀତିପୂର୍ଣ୍ଣ କାର୍ଯ୍ୟ' । ଜଣେ ବ୍ୟକ୍ତିଙ୍କ ବ୍ୟକ୍ତିଗତ ଅନୁଭବ ଆଧାରରେ ସଦ୍‌ଗୁଣ ବା ନୀତିପୂର୍ଣ୍ଣ କାର୍ଯ୍ୟର ମାନଦଣ୍ଡ ବା ସଂଜ୍ଞା ସ୍ଥିର କରାଯାଇ ପାରିବ ନାହିଁ । ବରଂ ସଦ୍‌ଗୁଣର ସଂଜ୍ଞା ଏକ ବସ୍ତୁନିଷ୍ଠ ମାନକ ଆଧାରରେ ଦିଆଯିବା ଯଥାର୍ଥ ଯାହା ସାର୍ବଜନୀନ ଭାବେ ଗ୍ରହଣ ଯୋଗ୍ୟ ହେଉଥିବ । ସୁତରାଂ ଜ୍ଞାନମୀମାଂସା କ୍ଷେତ୍ରରେ ସକ୍ରେଟିସ୍ ଏହିସବୁ ପ୍ରସଙ୍ଗକୁ ଅବତାରଣା କରିଛନ୍ତି । ଜ୍ଞାନ ସହିତ ପ୍ରତ୍ୟୟ, ସଂଜ୍ଞା, ବସ୍ତୁନିଷ୍ଠ ମାନଦଣ୍ଡ ଓ ସାର୍ବଜନୀନତା ସଂଶ୍ଳିଷ୍ଟ । ଜ୍ଞାନକୁ ବ୍ୟକ୍ତିର ସମ୍ବେଦନ ଅଥବା ପ୍ରତ୍ୟକ୍ଷଣ ସହ ସଂଯୁକ୍ତ କରାଯାଇ ପାରିବ ନାହିଁ । ସତ୍ୟ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କ ପାଇଁ ପୃଥକ୍ ହୋଇଥିବାରୁ ତାହା ସତ୍ୟର ସଂଜ୍ଞା ହୋଇନପାରେ । ଜ୍ଞାନ ଅର୍ଥ ଯାହା ସାର୍ବଜନୀନ ଭାବେ ଓ ବସ୍ତୁନିଷ୍ଠ ଭାବେ ସତ୍ୟ; ଏହା ବୈୟକ୍ତିକ ବା ବ୍ୟକ୍ତିକୈନ୍ଦ୍ରିକ ନୁହେଁ । ବସ୍ତୁନିଷ୍ଠ ଜ୍ଞାନ ପ୍ରତ୍ୟୟ ଆଧାରିତ, ଅର୍ଥାତ୍ ଏହାକୁ ସଂଜ୍ଞା ବା

ପ୍ରତ୍ୟୟ ଆଧାରରେ ଦିଆଯିବା ସମ୍ଭବ । ସୁତରାଂ ଜ୍ଞାନମୀମାଂସା କ୍ଷେତ୍ରରେ ସକ୍ରେଟିସ୍ ଉପଯୁକ୍ତ ଭାବରେ ପ୍ରତ୍ୟୟ ନିରୁପଣ କରିବାକୁ ପ୍ରଯତ୍ନ କରିଛନ୍ତି । ସଦ୍‌ଗୁଣ କ'ଣ ? ନ୍ୟାୟ କହିଲେ . କ'ଣ ବୁଝାଏ ? ବିଜ୍ଞତାର ସ୍ୱରୂପ କ'ଣ ? ସୌନ୍ଦର୍ଯ୍ୟର ସଂଜ୍ଞା କ'ଣ ହୋଇପାରେ ? ଏସବୁ କହିବାର ତାତ୍ପର୍ଯ୍ୟ ଏସବୁ ପ୍ରତ୍ୟୟମାନଙ୍କର ଅର୍ଥ କ'ଣ ବା ଏ ସବୁର ସଂଜ୍ଞା କିପରି ଦିଆଯିବ ? ଏହିପରି ପ୍ରଶ୍ନ ଉତ୍‌ଥାପନ କରି ସେ ସତ୍ୟର ବସ୍ତୁନିଷ୍ଠ ମାନଦଣ୍ଡ ନିରୂପଣ କରିବାକୁ ଜୀବନସାରା ପ୍ରଯତ୍ନ କରିଛନ୍ତି ।

ପ୍ରତ୍ୟୟ ନିର୍ମାଣ କ୍ଷେତ୍ରରେ ସକ୍ରେଟିସ୍ ଆରୋହଣ ପ୍ରକ୍ରିୟାକୁ ପ୍ରାଧାନ୍ୟ ଦେଇଛନ୍ତି । ବାସ୍ତବ ଅନୁଭୂତି କ୍ଷେତ୍ରରେ ଆମେ କେତେକ ବ୍ୟବହାରକୁ ଉତ୍ତମ କହିଥାଉ । ଯେଉଁ ବ୍ୟବହାରକୁ ସମସ୍ତେ ଉତ୍ତମ କହିବେ ସେହି ଆଧାରରେ ଉତ୍ତମତାର ଏକ ସାର୍ବଜନୀନ ମାନ ନିରୂପଣ କରାଯାଇ ଏହାର ପ୍ରତ୍ୟୟଟିକୁ ସ୍ଥିର କରାଯିବ । ବିଭିନ୍ନ ଉତ୍ତମ ବ୍ୟବହାର କ୍ଷେତ୍ରରେ କ'ଣ ସାଧାରଣ ଲକ୍ଷଣ ରହିଛି ସେହି ସାଧାରଣ ଲକ୍ଷଣକୁ ଆଧାରକରି ଉତ୍ତମର ସଂଜ୍ଞା ସ୍ଥିର କରିବା ଯଥାର୍ଥ । ହୁଏତ ନୂତନ ଅନୁଭୂତି ଆଧାରରେ ଯଦି ଆମେ ଦେଖିବା ଯେ ଉତ୍ତମର ଯେପରି ସଂଜ୍ଞା ଦିଆଯାଇଛି ତାହା ଯଥାର୍ଥ ମନେ ହେଉ ନାହିଁ, ତେବେ ସେପରି ପରିସ୍ଥିତିରେ ଉତ୍ତମର ପ୍ରଚଳିତ ସଂଜ୍ଞାରେ ଆମେ ସଂଶୋଧନ କରିପାରିବା । ଏକ ପ୍ରତ୍ୟୟର ସଂଜ୍ଞା ସ୍ଥିର କରିବା ବେଶ୍ ଜଟିଳ ମନେହୁଏ ଓ ନୂତନ ପରିସ୍ଥିତି ଅନୁଯାୟୀ ବା ନୂତନ ଜ୍ଞାନ ଆଧାରରେ ଏକ ଭାବନାର ଅର୍ଥରେ ପରିବର୍ତ୍ତନ ବା ସଂଶୋଧନ କରାଯିବା ଯଥାର୍ଥ । ସତ୍ୟ ବିଷୟରେ ସ୍ପଷ୍ଟ ଜ୍ଞାନଲାଭ କରିବା ପାଇଁ ବିଭିନ୍ନ ପ୍ରତ୍ୟୟମାନଙ୍କର ଯଥାର୍ଥ ଅର୍ଥ ଜାଣିବା ଦରକାର । ଏଥିପାଇଁ ପ୍ରତ୍ୟୟମାନଙ୍କର କିପରି ସାର୍ବଜନୀନ ସଂଜ୍ଞା ପ୍ରଦାନ କରାଯାଇ ପାରିବ ଏହା ଦର୍ଶନ କ୍ଷେତ୍ରରେ ଥିଲା ତାଙ୍କର ବଡ ପ୍ରୟାସ । ଅଜ୍ଞତା, ଅସ୍ପଷ୍ଟତା ଓ ଦୁର୍ବୋଧତା ଦୂରୀକରଣ ପାଇଁ ପ୍ରତ୍ୟୟମାନଙ୍କର ଉପଯୁକ୍ତ ସଂଜ୍ଞା ଓ ଦୁର୍ବୋଧତା ଦୂରୀକରଣ ପାଇଁ ପ୍ରତ୍ୟୟମାନଙ୍କର ଉପଯୁକ୍ତ ସଂଜ୍ଞା ଯେ ଆମର ବୌଦ୍ଧିକ ଦିଗନ୍ତକୁ ନାନା ଦିଗରେ ପ୍ରସାରିତ କରିପାରିବ ଏହା ଥିଲା ତାଙ୍କର ଦର୍ଶନ କ୍ଷେତ୍ରକୁ ଏକ ମୌଳିକ ଅବଦାନ । ପ୍ରତ୍ୟୟମାନଙ୍କର ସଂଜ୍ଞା ନିରୁପଣ ସକ୍ରେଟିସ୍‌ଙ୍କ ଜ୍ଞାନମୀମାଂସାର ଥିଲା ମୁଖ୍ୟ ପ୍ରସଙ୍ଗ ।

## ୬.୩ ଆଚାର ମୀମାଂସା

ସକ୍ରେଟିସ୍ ତାଙ୍କର ଜ୍ଞାନମୀମାଂସା କ୍ଷେତ୍ରରେ ଦ୍ୱନ୍ଦ୍ୱ-ନ୍ୟାୟ ପ୍ରଣାଳୀ, ଗର୍ଭମୋଚନ ପଦ୍ଧତି, ପଦ ବା ପ୍ରତ୍ୟୟ ମାନଙ୍କର ସାର୍ବଜନୀନ ସଂଜ୍ଞା, ବିଚାରଶୀଳ ପଦ୍ଧତିର ପ୍ରାଧାନ୍ୟ ଓ ପ୍ରତ୍ୟୟ ନିର୍ମାଣ ଉପରେ ଗୁରୁତ୍ୱ ଦେଇଥିବା ମନେହୁଏ । ତେବେ ଏସବୁ ଚର୍ଚ୍ଚା ଜ୍ଞାନ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ମନେହେଲେ ବି ଏହା ପଶ୍ଚାତରେ ତାଙ୍କର ଏକ ମୌଳିକ ଲକ୍ଷ୍ୟ ରହିଥିଲା । ଏସବୁ କରିବାର ଉଦ୍ଦେଶ୍ୟ ଥିଲା ସମାଜରେ ସଦ୍‌ଗୁଣ ଓ ମାନବିକ ମୂଲ୍ୟବୋଧର ପ୍ରସାର । ଜ୍ଞାନ ତାଙ୍କ ଦୃଷ୍ଟିରେ ଥିଲା ଏକ ସାଧନ । ଏକ ସାଧନକୁ ଏକ ଲକ୍ଷ୍ୟ ଦିଗରେ ନିୟୋଜିତ କରାଯାଏ । ଲକ୍ଷ୍ୟ ହେଉଛି ସମାଜରେ ସଦ୍‌ଗୁଣର ପ୍ରସାର ଓ ଲୋକଚରିତ୍ରକୁ ଉନ୍ନତ କରିବା । ସମାଜରେ ଯଦି ସଦ୍‌ଗୁଣ ଓ ନୈତିକ ଜୀବନବୋଧର ପ୍ରସାର ହେବ ତେବେ ସମାଜ ଏକ ଉନ୍ନତ ସ୍ଥିତିକୁ ଯିବା ସହିତ ଜୀବନର

ଗୁଣାତ୍ମକ ମାନରେ ଉତ୍ତରଣ ଘଟିବ । ସାମାଜିକ ବିକାଶର ମୂଳାଧାର ହେଉଛି ଲୋକଙ୍କର ଜୀବନଦୃଷ୍ଟି ବା ନୈତିକ ଆଚରଣ । ନୈତିକ ଆଚରଣ ଓ ସଦ୍‌ଗୁଣର ବିକାଶ ସମାଜରେ ଯେତେ ବ୍ୟାପକ ହେବ, ସମାଜର ସାଂସ୍କୃତିକ ଓ ବୌଦ୍ଧିକ ବିକାଶ ସେତେ ପ୍ରଖର ହୋଇପାରିବ । ସୁତରାଂ ସକ୍ରେଟିସ୍‌ଙ୍କର ସ୍ୱପ୍ନ ଥିଲା ଏକ ସୁନ୍ଦର ଓ ନୀତିପୂର୍ଣ୍ଣ ସମାଜର ବିକାଶ । ସେହିପରି ଏକ ସମାଜର ବିକାଶ ପାଇଁ ଜ୍ଞାନ ହେଉଛି ସର୍ବଶ୍ରେଷ୍ଠ ପନ୍ଥା ବା ସାଧନ ।

ଏହି ପରିପ୍ରେକ୍ଷୀରେ ସକ୍ରେଟିସ୍ ସଦ୍‌ଗୁଣ ଓ ଜ୍ଞାନ ମଧ୍ୟରେ ଏକ ଏକତ୍ୱ ସ୍ଥାପନ କରିଥିଲେ । ସଦ୍‌ଗୁଣ ଓ ଉତ୍ତମତା ବିଷୟରେ ଜଣେ ପ୍ରଥମେ ସ୍ୱଚ୍ଛ ଧାରଣା ରଖିବା ଆବଶ୍ୟକ । ଜଣେ ସଦ୍‌ଗୁଣ ବିଷୟରେ ଜ୍ଞାନ ନ ରଖିଲେ ସେ ସଦ୍‌ଗୁଣ ପାଳନ କରିବାରେ ବ୍ରତୀ ହେବ ନାହିଁ । ଜଣେ ସତ୍ୟ ପଥରେ ଚାଲିବାକୁ ହେଲେ କିମ୍ବା ଏକ ନୀତିପୂର୍ଣ୍ଣ ଜୀବନର ଅଧିକାରୀ ହେବାକୁ ହେଲେ ସେ ପ୍ରଥମେ ସତ୍ୟ, ନୀତି, ଆଦର୍ଶ ଇତ୍ୟାଦି ନୈତିକ ଆଦର୍ଶ ସଂପର୍କରେ ସ୍ୱଚ୍ଛଧାରଣା ରଖିବା ଆବଶ୍ୟକ । ସଦ୍‌ଗୁଣ ବିଷୟରେ ଜଣେ ସ୍ୱଚ୍ଛ ହେଲେ ଯାଇ ସେ ନୀତିପୂର୍ଣ୍ଣ ପନ୍ଥାରେ ଜୀବନ ଅତିବାହିତ କରିବାକୁ ଆଗ୍ରହୀ ହେବ । ନୀତି, ନୈତିକତା, ମୂଲ୍ୟବୋଧ, ଆଦର୍ଶ, ମାନବିକତା, ନ୍ୟାୟ, ସମ୍ବେଦନଶୀଳତା ଇତ୍ୟାଦି ନୈତିକ ମୂଲ୍ୟଚୟ ବିଷୟରେ ଜଣଙ୍କର ପ୍ରତ୍ୟୟ ଯେତେ ସ୍ୱଚ୍ଛ ହେବ ସେ ନିଜ ଜୀବନଧାରାରେ ଏ ସବୁକୁ ପାଳନ କରିବାକୁ ପ୍ରୟାସୀ ହେବ । ଏସବୁ ବିଷୟରେ ଜଣଙ୍କର ଅବବୋଧ ନ ରହିଲେ ସେ ଏକ ନୀତିପୂର୍ଣ୍ଣ ଜୀବନ ପାଇଁ ପ୍ରେରଣା ପାଇପାରିବ ନାହିଁ ।

ସକ୍ରେଟିସ୍‌ଙ୍କର ଗଭୀର ଆତ୍ମବିଶ୍ୱାସ ଥିଲା ଯେ ସଦ୍‌ଗୁଣର ପ୍ରେରଣା ଜ୍ଞାନରୁ ଆସିଥାଏ । ଅର୍ଥାତ୍ ସକଳ ସଦ୍‌ଗୁଣର ଆଧାର ହେଉଛି ଜ୍ଞାନ ଓ ବୌଦ୍ଧିକ ସ୍ୱଚ୍ଛତା । ଯେଉଁ ବ୍ୟକ୍ତି ଅନ୍ୟାୟ୍ କାର୍ଯ୍ୟରେ ଲିପ୍ତ ହେଉଛନ୍ତି ତାର କାରଣ ହେଉଛି ସେ ନ୍ୟାୟ, ସଦ୍‌ଗୁଣ ବିଷୟରେ ସଚେତନ ନୁହନ୍ତି । ନ୍ୟାୟ, ନୈତିକତା ପାଇଁ ଆବଶ୍ୟକ ହେଉଛି ନୈତିକତା ସଂପର୍କରେ ବାସ୍ତବ ଜ୍ଞାନ । ଅଜ୍ଞତାରୁ ସମାଜରେ ଅନୈତିକତା ବ୍ୟାପିଥାଏ ବୋଲି ସକ୍ରେଟିସ୍ ମନେ କରୁଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ ଜ୍ଞାତସାରରେ ବା ଜାଣିଶୁଣି କେହି ଅନ୍ୟାୟ ବା ଅନୀତିମୂଳକ କାର୍ଯ୍ୟରେ ସଂପୃକ୍ତ ହୁଏ ନାହିଁ । ଜଣେ ଯଦି ନ୍ୟାୟ, ନୈତିକତା ସମ୍ବନ୍ଧରେ ସଚେତନ ନୁହେଁ ତେବେ ହୁଏତ ସେ ଜୀବନରେ ଏସବୁ ପାଳନ କରିବାରେ ଆଗ୍ରହୀ ହେବ ନାହିଁ । ସୁତରାଂ ନ୍ୟାୟ, ନୈତିକତା, ସଦ୍‌ଗୁଣ ଇତ୍ୟାଦି ମୂଲ୍ୟବୋଧ ମାନଙ୍କ ବିଷୟରେ ଲୋକମାନେ ସଚେତନ ହେବା ଆବଶ୍ୟକ । ଭଲ-ମନ୍ଦ, ନୀତି-ଅନୀତି, ନ୍ୟାୟ-ଅନ୍ୟାୟ ଇତ୍ୟାଦି ଭିତରେ ରହିଥିବା ପାର୍ଥକ୍ୟ ଲୋକମାନଙ୍କୁ ଶିକ୍ଷା ଦେବା ଦରକାର । ସକ୍ରେଟିସ୍ ଭାବୁଥିଲେ ଯେ ଯଦି ଜଣେ ମନ୍ଦ କାର୍ଯ୍ୟରେ ସଂପୃକ୍ତ ରହୁଛି, ତାର କାରଣ ହେଉଛି ସେ ଭଲ କାର୍ଯ୍ୟ ଓ ମନ୍ଦ କାର୍ଯ୍ୟ ମଧ୍ୟରେ ଥିବା ପାର୍ଥକ୍ୟ ଜାଣି ନାହିଁ । ଅଜ୍ଞତା ହିଁ ଅନୈତିକତାର ମୁଖ୍ୟ କାରଣ । ଏଣୁ ସକ୍ରେଟିସ୍ ଜୀବନସାରା ଲୋକମାନଙ୍କ ଭିତରେ ଭିଭିନ୍ନ ବିଷୟରେ ସ୍ୱଚ୍ଛତା ଆଣିବାକୁ ପ୍ରୟାସ କରୁଥିଲେ । ସେ ଭାବୁଥିଲେ ଯେ ଲୋକମାନଙ୍କ ମଧ୍ୟରେ ସତ୍ୟ ଓ ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀର ବିକାଶ ହେଲେ ଲୋକମାନେ ନୀତି, ନୈତିକତା ଓ ସଦ୍‌ଗୁଣ ବିଷୟରେ ସଚେତନ ହୋଇପାରିବେ । ଏହି ସଚେତନତାର ବିକାଶ ହେଲେ ସମାଜରେ ମନ୍ଦ ଓ ଭ୍ରଷ୍ଟାଚାରର ବିଲୋପ ହୋଇପାରିବ ।

ସୁତରାଂ ସକ୍ରେଟିସ୍ ନୈତିକତାକୁ ଜ୍ଞାନ ଉପରେ ପ୍ରତିଷ୍ଠା କରିବାକୁ ପ୍ରୟାସ କରିଥିଲେ । ନୈତିକତା ଓ ଜୀବନର ସକଳ ସଦ୍‌ଗୁଣକୁ ଜ୍ଞାନ ଉପରେ ପ୍ରତିଷ୍ଠା କରିବାକୁ ଚେଷ୍ଟା କରି ସଦ୍‌ଗୁଣକୁ ଜ୍ଞାନଠାରୁ ନିଷ୍ପନ୍ନ କରିବାକୁ ଚାହିଁଥିଲେ । ତାଙ୍କର ଗଭୀର ବିଶ୍ୱାସ ଥିଲା ଯେ ଜଣେ ଯଦି ଭଲ କ'ଣ, ମନ୍ଦ କ'ଣ ଜାଣିପାରିବ, ତେବେ ଭଲ କାର୍ଯ୍ୟରେ ବ୍ରତୀ ହେବ ଓ ମନ୍ଦ କାର୍ଯ୍ୟରୁ ନିବୃତ୍ତ ରହିବ । ସବୁ ଲୋକ ଭଲ ଚାହାନ୍ତି, ତେବେ ଭଲ କ'ଣ ଏ ବିଷୟରେ ଲୋକମାନେ ସ୍ପଷ୍ଟ ହୋଇପାରନ୍ତି ନାହିଁ । କୌଣସି ଲୋକ ମନ୍ଦ ଚାହେଁ ନାହିଁ କିମ୍ବା ମନ୍ଦର ବିକାଶ ହେଉ ଏହା ଆଶାକରେ ନାହିଁ । ତେବେ ଜଣେ ଯଦି ଭଲ କାର୍ଯ୍ୟରେ ସଂପୃକ୍ତ ହେଉ ନାହିଁ, ଏଥିରୁ ଏହା ସ୍ପଷ୍ଟ ହୁଏ ଯେ ସେ ଭଲ କ'ଣ ଭଲଭାବରେ ଜାଣେ ନାହିଁ । ତଥାପି ମଧ୍ୟ ଯଦି ଜଣେ ଭଲ କ'ଣ ମନ୍ଦ କ'ଣ ଭଲଭାବରେ ଜାଣି ସୁଦ୍ଧା, ମନ୍ଦ କାର୍ଯ୍ୟରେ ସଂପୃକ୍ତ ରହୁଛି ତଥାପି ମଧ୍ୟ ଅଜ୍ଞ ଲୋକଠାରୁ ସେ ଉନ୍ନତ ବୋଲି ଧରାଯିବ । କାରଣ ସେ ମନ୍ଦ କାର୍ଯ୍ୟରେ ଲିପ୍ତ ଥିଲେ ମଧ୍ୟ ସେ ଯେ ମନ୍ଦ କାର୍ଯ୍ୟ କରୁଛି ଏ ନେଇ ସେ ସଚେତନ । ଦୁଇ ଜଣ ମନ୍ଦ କାର୍ଯ୍ୟରେ ସଂପୃକ୍ତ ଥିଲେ ବି ଭଲ-ମନ୍ଦ ଭିତରେ ପାର୍ଥକ୍ୟ ରହିଥିବା ବିଷୟରେ ଅବଗତ ଥିବା ଲୋକଟି ଏ ବିଷୟରେ ଅଜ୍ଞ ଲୋକଠାରୁ ଉନ୍ନତ ବୋଲି ସକ୍ରେଟିସ୍ ମତପୋଷଣ କରିବେ ।

ସକ୍ରେଟିସ୍‌ଙ୍କର ଏହି ମତ ବା ସିଦ୍ଧାନ୍ତକୁ ଆରିଷ୍ଟୋଟଲ ସମାଲୋଚନା କରିଛନ୍ତି ଓ ତାଙ୍କ ମତର କେତେକ ତ୍ରୁଟି ଦର୍ଶାଇଛନ୍ତି । ଆରିଷ୍ଟୋଟଲଙ୍କ ମତରେ ସକ୍ରେଟିସ୍ ଭାବିଛନ୍ତି ଯେ ପ୍ରତ୍ୟେକ ବ୍ୟକ୍ତିର କାର୍ଯ୍ୟ ତାର ବିଚାରଦ୍ୱାରା ସର୍ବଦା ପ୍ରଭାବିତ ହୋଇଥାଏ । ସୁତରାଂ ଯଦି ଜଣେ ବୈଚାରିକ ସ୍ତରରେ ଭଲ ମନ୍ଦ ନେଇ ସ୍ପଷ୍ଟ ଧାରଣା ପୋଷଣ କରିପାରିବ, ତେବେ ସେ ସର୍ବଦା ଭଲ କାର୍ଯ୍ୟ କରିବ । କିନ୍ତୁ ବାସ୍ତବପକ୍ଷେ ମନୁଷ୍ୟ ପାଖରେ ଥିବା ବା ମନୁଷ୍ୟ ସ୍ୱଭାବରେ ରହିଥିବା ଅହେତୁକ ଦିଗକୁ ବିଚାରକୁ ନେଇନାହାନ୍ତି ବା ତା ଉପରେ ଗୁରୁତ୍ୱ ଦେଇନାହାନ୍ତି । କିନ୍ତୁ ବାସ୍ତବ ଅନୁଭୂତିରେ ଆମେ ଦେଖେ ଯେ ସମାଜର ଅଧିକାଂଶ ବ୍ୟକ୍ତି ପ୍ରବୃତ୍ତି ଓ ଆବେଗଦ୍ୱାରା ପରିଚାଳିତ ହୁଅନ୍ତି । ମଣିଷ ଭିତରେ ବିଚାର ବୁଦ୍ଧି ଯେପରି ରହିଛି ସେହିପରି କାମନା, ବାସନା ଓ ମନ୍ଦ ଆବେଗ ମଧ୍ୟ ରହିଛି । ମଣିଷର ଅନ୍ତରାତ୍ମା ଯେପରି ବିଚାରବୁଦ୍ଧି ଦ୍ୱାରା ପ୍ରଭାବିତ ସେହିପରି ମଧ୍ୟ କାମନା, ବାସନା ଓ ଆବେଗଦ୍ୱାରା ମଧ୍ୟ ପ୍ରଭାବିତ । ବରଂ ବେଳେ ବେଳେ ତାର କାମନା ଓ ଆବେଗ ତାର ଜୀବନଧାରାକୁ ଗଭୀର ଭାବରେ ନିୟନ୍ତ୍ରଣ କରିଥାଏ । ଆମର ସକଳ ଅନୁଭୂତିରେ ଆମେ ଦେଖିଥାଏ ଯେ ଲୋକମାନେ ଜାଣି ଶୁଣି ମନ୍ଦ କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି । ଲୋକମାନେ ଭଲ କ'ଣ ଜାଣି ମଧ୍ୟ ମନ୍ଦକାର୍ଯ୍ୟରୁ ନିବୃତ୍ତ ରହିପାରନ୍ତି ନାହିଁ । ଆରିଷ୍ଟୋଟଲଙ୍କର ଏହି ସମାଲୋଚନା ସଂପୂର୍ଣ୍ଣ ଯଥାର୍ଥ ମନେହୁଏ । ତେବେ ସକ୍ରେଟିସ୍ ଯେଉଁ ମତପୋଷଣ କରିଛନ୍ତି ତାହାର କାରଣ ହେଉଛି ସେ ଥିଲେ ସନ୍ଥ ବା ମହାତ୍ମା ସଦୃଶ ବ୍ୟକ୍ତି ଓ ତାଙ୍କର ଜୀବନ ଥିଲା ମାନବିକ ଦୁର୍ବଳତାର ଉର୍ଦ୍ଧ୍ୱରେ । ସେ ସର୍ବଦା ନିଜର ବିଚାର, ବିବେକ ଓ ଅନ୍ତରାତ୍ମାଦ୍ୱାରା ପରିଚାଳିତ ହେଉଥିଲେ । କୌଣସି ମନ୍ଦ ଆବେଗ ବା ବାସନାଦ୍ୱାରା ସେ ପ୍ରଭାବିତ ହେଉନଥିଲେ । ସେ ଯେହେତୁ ଭଲ କ'ଣ ଜାଣୁଥିଲେ ଓ ଆବେଗଦ୍ୱାରା କବଳିତ ହେଉନଥିଲେ ସେ ସର୍ବଦା ନିଜ ବିବେକର ରାସ୍ତାରେ ଚାଲୁଥିଲେ । ମନୁଷ୍ୟ ଭଲ କ'ଣ ଜାଣିବାପରେ କିପରି ମନ୍ଦ କାର୍ଯ୍ୟ କରିବ ସେ ଜାଣିପାରୁ ନଥିଲେ । ସୁତରାଂ ସେ ଭାବୁଥିଲେ ଯେ ଯଦି କେହି ମନ୍ଦ କାର୍ଯ୍ୟରେ ଲିପ୍ତ, ତାହାର ଅର୍ଥ ହେଉଛି ଭଲ-

ମନ୍ଦର ପାର୍ଥକ୍ୟ ନଜାଣିଥିବାରୁ ଏପରି କରୁଛି । ଅର୍ଥାତ୍ କେଉଁ କାର୍ଯ୍ୟ ଭଲ ଓ କେଉଁ କାର୍ଯ୍ୟ ମନ୍ଦ ଏହି ଜ୍ଞାନ ଅଭାବରୁ ଜଣେ ମନ୍ଦ କାର୍ଯ୍ୟରେ ସଂପୃକ୍ତ ହେଉଛି । ଆରିଷ୍ଟୋଟଲଙ୍କର ସମାଲୋଚନା ଏହି ପରିସ୍ଥିତିରେ ଯଥାର୍ଥ ମନେହୁଏ । ଆରିଷ୍ଟୋଟଲଙ୍କର ସମାଲୋଚନାକୁ ସ୍ୱୀକାର କଲେ ମଧ୍ୟ ସକ୍ରେଟିସ୍‌ଙ୍କ ମତରେ ସତ୍ୟତା ମଧ୍ୟ ରହିଛି, ଯଦିବା ଏହି ସତ୍ୟତା ସହଜରେ ଜଣା ପଡେ ନାହିଁ । ଆମେ କହିଥାଉ ଯେ ଜଣେ ବ୍ୟକ୍ତି ଯାହା ବିଶ୍ୱାସ କରନ୍ତି ସର୍ବଦା ସେପରି କରନ୍ତି ନାହିଁ । କିନ୍ତୁ ପ୍ରକୃତରେ ସେ କ'ଣ ବିଶ୍ୱାସ କରନ୍ତି ତାହା ଏକ ପ୍ରଶ୍ନବାଚୀ । ସେ କ'ଣ ବିଶ୍ୱାସ କରନ୍ତି ତାକୁ ଜାଣିହେବ କି ? ଅନେକ ବ୍ୟକ୍ତି ଆଧ୍ୟାତ୍ମିକ ଅଭିଳାଷ ନେଇ ପୂଜାସ୍ଥଳୀମାନଙ୍କୁ ଯାନ୍ତି । ଆଧ୍ୟାତ୍ମିକ ଲକ୍ଷ୍ୟ ପୂରଣ ଉଦ୍ଦେଶ୍ୟରେ ତାଙ୍କ ବିଶ୍ୱାସର ଈଶ୍ୱରଙ୍କୁ ପ୍ରାର୍ଥନା କରନ୍ତି । କିନ୍ତୁ ବାସ୍ତବ ଜୀବନରେ ଭୌତିକ ସୁଖ ସମ୍ଭୋଗରେ ସର୍ବଦା ସଂପୃକ୍ତ ରହିଥାନ୍ତି । ସେମାନେ ପୂଜା ସ୍ଥଳକୁ ଯିବା ସମୟରେ ଯାହା ଭାବନ୍ତି ତାହା ନିଜ ଜୀବନରେ ନା କରନ୍ତି ନା ବିଶ୍ୱାସ କରନ୍ତି । ଆଧ୍ୟାତ୍ମିକ ଲକ୍ଷ୍ୟ ପ୍ରାପ୍ତି ଜୀବନରେ ଭୌତିକ ଭୋଗବିଳାସଠାରୁ ଯେ ମହତ୍ତର ତାହା ସେମାନେ କହିଥାନ୍ତି ଓ ସେହି ଲକ୍ଷ୍ୟ ପାଇଁ ସେମାନେ ପୂଜାସ୍ଥଳକୁ ଯାନ୍ତି । ସେମାନେ ଯାହା କହନ୍ତି ବା ବିଶ୍ୱାସ କରନ୍ତି ତାହା ବାସ୍ତବ ଜୀବନରେ ପାଳନ କରନ୍ତି କି ? ସେମାନେ ଯାହା ବିଶ୍ୱାସ କରନ୍ତି ସେ ବିଷୟରେ ସେମାନଙ୍କୁ ଯଦି ଯଥାର୍ଥରେ ସଚେତନ କରାଯାଇ ପାରିବ, ତେବେ ସେମାନେ ବସ୍ତୁଗତ ଅଭିଳାଷ ପରିବର୍ତ୍ତେ ଆଧ୍ୟାତ୍ମିକ ଲକ୍ଷ୍ୟକୁ ପ୍ରାଧାନ୍ୟ ଦେବେ । ସକ୍ରେଟିସ୍ ଏହା ହିଁ ପ୍ରାୟ କଳ୍ପନା କରିଛନ୍ତି । ଅନେକ ବ୍ୟକ୍ତି ମହତ୍ତର ଲକ୍ଷ୍ୟ ଜୀବନରେ କାମନା କରନ୍ତି, କିନ୍ତୁ ସେହି ମହତ୍ତର ଲକ୍ଷ୍ୟ କ'ଣ ସେ ବିଷୟରେ ସମ୍ୟକ ଧାରଣା ପୋଷଣ କରିନଥାନ୍ତି । ଏହାହିଁ ବାସ୍ତବ ଜୀବନରେ ଘଟେ ବା ଅନେକ ଲୋକଙ୍କ ପାଖରେ ଏହା ସତ୍ୟ ମନେହୁଏ । ତେବେ କିଛି ଲୋକ ଜାଣିଶୁଣି ମନ୍ଦ କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି । ଏହିପରି ଦେଖିଲେ ବ୍ୟକ୍ତି ସ୍ୱଭାବରେ ବିବିଧତା ଦେଖାଯାଏ ।

ସକ୍ରେଟିସ୍ ସଦ୍‌ଗୁଣକୁ ଜ୍ଞାନ ସହ ସମାନ କରିଥିଲେ ଓ ସେମାନେ ଯେ ଅଭିନ୍ନ ଏହା ଭାବୁଥିଲେ । ସେହି ଦୃଷ୍ଟିରୁ ସେ ଭାବିଥିଲେ ଯେ ସଦ୍‌ଗୁଣ ଓ ଉତ୍ତମ ଚରିତ୍ର ସମସ୍ତଙ୍କୁ ଶିକ୍ଷା ଦିଆଯାଇପାରିବ । ସମାଜର ସାଧାରଣ ବିଶ୍ୱାସ ହେଉଛି ଯେ ସଦ୍‌ଗୁଣ ଶିକ୍ଷା ଦେବାର ବିଷୟ ନୁହେଁ । ପ୍ରତ୍ୟେକ ବ୍ୟକ୍ତି ଭିତରେ ମହତ୍ ସ୍ୱଭାବ ବା ସଦ୍‌ଗୁଣ ନାନା କାରଣ ଦେଇ ବିକଶିତ ହୋଇଥାଏ । ଏହା ମଧ୍ୟ ବିଶ୍ୱାସ କରାଯାଏ ଯେ ସଦ୍‌ଗୁଣ ଏକ ସହଜାତ ବିଷୟ । ପ୍ରତ୍ୟେକ ବ୍ୟକ୍ତି ନିଜର ସ୍ୱଭାବ ନେଇ ଜନ୍ମ ହୋଇଥାଏ । ବ୍ୟକ୍ତିମାନଙ୍କର ସ୍ୱଭାବ ପରସ୍ପରଠାରୁ ଭିନ୍ନ ଓ ପ୍ରତ୍ୟେକ ବ୍ୟକ୍ତିର ସ୍ୱଭାବ ତାର ଜନ୍ମରୁ ହିଁ ନିର୍ଦ୍ଦିଷ୍ଟ । ସେହିପରି ଏହା ମଧ୍ୟ ବିଶ୍ୱାସ କରାଯାଏ ଯେ ବ୍ୟକ୍ତିର ଉତ୍ତମ ସ୍ୱଭାବ ବା ସଦ୍‌ଗୁଣ ଓ ଚରିତ୍ର ତାର ବଂଶଗତ ସ୍ୱଭାବ, ପାରିବେଶିକ ବା ସାମାଜିକ ପ୍ରଭାବ ଓ ଶିକ୍ଷା ଦ୍ୱାରା ଗଢ଼ି ଉଠିଥାଏ । ସମାଜର ଏକ ସାଧାରଣ ବିଶ୍ୱାସ ହେଉଛି ଗଣିତ, ଇତିହାସ ଇତ୍ୟାଦି ଯେପରି ଶିକ୍ଷା ଦିଆଯାଇ ପାରିବ, ସେହିପରି ସଦ୍‌ଗୁଣ ଓ ଚରିତ୍ର ଶିକ୍ଷା ଦିଆଯାଇପାରିବ ନାହିଁ । ବଂଶାନୁଗତ ପ୍ରଭାବ, ସାମାଜିକ ପରିବେଶ ଓ ଶିକ୍ଷାଗତ ଯୋଗ୍ୟତା ବ୍ୟକ୍ତି ସ୍ୱଭାବକୁ କେତେକାଂଶରେ ପ୍ରଭାବିତ କରୁଥିଲେ ମଧ୍ୟ ଜଣେ ବ୍ୟକ୍ତିର ଚରିତ୍ର ବୟସ ବୃଦ୍ଧି ସହ ପରିବର୍ତ୍ତିତ ହୁଏ ନାହିଁ । ତେବେ ଏହାର ବିପରୀତ ମତଟି ହେଉଛି ନିରନ୍ତର ପ୍ରୟାସ, ଆତ୍ମ ନିୟନ୍ତ୍ରଣ

ପାଇଁ ପ୍ରଚେଷ୍ଟା ଓ ଭଲ ଦିଗରେ ଅଭିନିବେଶ କାରଣରୁ ଜୀବନ ଉନ୍ନତ ହୋଇପାରିବ । ଏଠାରେ ଦୁଇଟି ପୃଥକ୍ ମତ ରହିଛି । ଗୋଟିଏ ମତ ହେଉଛି ଯେ ଘୁଷୁରି ପ୍ରକୃତିକୁ ଯାହା କଲେ ମଧ୍ୟ ପରିବର୍ତ୍ତନ କରାଯାଇ ପାରିବ ନାହିଁ । ଠିକ୍ ସେହିପରି ମଣିଷର ସ୍ୱଭାବ, ଯାହା ଅପରିବର୍ତ୍ତନୀୟ ତାକୁ ପରିବର୍ତ୍ତନ କରିହେବ ନାହିଁ । କିନ୍ତୁ ସକ୍ରେଟିସ୍‌ଙ୍କର ମତ ହେଉଛି ଯେ ସଦ୍‌ଗୁଣର ଆଧାର ହେଉଛି ଜ୍ଞାନ ଓ ବିଚାରଶୀଳ ଦୃଷ୍ଟି । ସଦ୍‌ଗୁଣ ବିଷୟରେ ପ୍ରତ୍ୟେକ ବ୍ୟକ୍ତିକୁ ଶିକ୍ଷା ଦିଆଯାଇପାରେ । ଜ୍ଞାନ ବିଷୟରେ ଯେପରି ଆମେ ଅନ୍ୟକୁ ଅବଗତ କରାଇ ପାରିବା, ଠିକ୍ ସେହିପରି ସଦ୍‌ଗୁଣ ବିଷୟରେ ବି ଅନ୍ୟକୁ ଶିକ୍ଷା ଦେଇହେବ । ତେବେ ଏ କ୍ଷେତ୍ରରେ ସମସ୍ୟା ହେଉଛି ଉତ୍ତମ ଶିକ୍ଷକକୁ ବାହାର କରିବା । ଜଣେ ଉତ୍ତମ ଶିକ୍ଷକ ସଦ୍‌ଗୁଣ ବିଷୟରେ ସ୍ୱଷ୍ଟ ବିଚାର ରଖିଥିବା ଆବଶ୍ୟକ । ଯେ ସଦ୍‌ଗୁଣ ବିଷୟ ନେଇ ସ୍ୱଷ୍ଟ ଭାବନାର ଅଧିକାରୀ ସେ ହିଁ ଜଣେ ପ୍ରାଜ୍ଞ ବ୍ୟକ୍ତି । ଜୀବନର ସଦ୍‌ଗୁଣକୁ କେହି ଦାର୍ଶନିକ ଆବିଷ୍କାର କରିନାହାନ୍ତି । ଯଦି ସେହି ସଦ୍‌ଗୁଣର ଆବିଷ୍କାର କରାଯାଏ, ତେବେ ତାହାକୁ ଶିକ୍ଷା ଦିଆଯାଇପାରିବ । ସଦ୍‌ଗୁଣର ପ୍ରକୃତ ଶିକ୍ଷାଦ୍ୱାରା ଲୋକମାନଙ୍କର ଜୀବନଧାରାରେ ଓ ଚରିତ୍ରରେ ଗୁଣାତ୍ମକ ପରିବର୍ତ୍ତନ ସମ୍ଭବ ହେବ । ସମାଜର ସକଳ ବିକାଶ ଓ ଉନ୍ନତିର ମୂଳ ସୂତ୍ର ହେଉଛି ଲୋକଙ୍କ ଭିତରେ ସଦ୍‌ଗୁଣର ପ୍ରସାର । ଲୋକମାନେ ଯେତେ ଅଧିକ ସଦ୍‌ଗୁଣର ଅଧିକାରୀ ହେବେ, ଜୀବନର ମାନ ସେତେ ଉନ୍ନତ ହେବା ସହ ସମାଜର ସାଂସ୍କୃତିକ, ନୈତିକ ଓ ବୌଦ୍ଧିକ ଉତ୍ତରଣ ସମ୍ଭବପର ହେବ ।

ସକ୍ରେଟିସ୍‌ଙ୍କର ଅନ୍ୟ ଏକ ସିଦ୍ଧାନ୍ତ ହେଉଛି ସଦ୍‌ଗୁଣ ଏକ (virtue is one) ଅଟେ । ଆମେ ବିଭିନ୍ନ ପ୍ରକାର ସଦ୍‌ଗୁଣର ଭାବନା ସାଧାରଣତଃ କରିଥାଉ, ତେଣୁ ଏହା ସାଧାରଣରେ ଅନୁମାନ କରାଯାଏ ଯେ ସଦ୍‌ଗୁଣ ଅନେକ । କିନ୍ତୁ ସକଳ ସଦ୍‌ଗୁଣର ଉତ୍ସ ସମାନ, ତେଣୁ ସକଳ ସଦ୍‌ଗୁଣ ସ୍ୱରୂପରେ ଏକ । ସତ୍ୟବାଦିତା, ସହିଷ୍ଣୁତା, ସରଳତା, ସଂଯମତା, ସମ୍ବେଦନଶୀଳତା, ସମଭାବ, ସାବଧାନତା ଇତ୍ୟାଦି ସଦ୍‌ଗୁଣ ହେଲେ ମଧ୍ୟ ଏସବୁର ମୂଳ ଉତ୍ସ ହେଉଛି ସମାନ । ସେହି ଆଧାରଟି ହେଉଛି ପ୍ରଜ୍ଞା । ପ୍ରଜ୍ଞା ହେଉଛି ସକଳ ସଦ୍‌ଗୁଣର ଆଧାର । ଏହି ଦୃଷ୍ଟିରୁ ସକ୍ରେଟିସ୍ ସଦ୍‌ଗୁଣକୁ ଏକକ ଭାବରେ ଗ୍ରହଣ କରିଛନ୍ତି ।

ତେବେ ସକ୍ରେଟିସ୍‌ଙ୍କ ଯୁଗରେ ହେଉ କିମ୍ବା ସାଂପ୍ରତିକ ସମୟରେ ହେଉ ସଦ୍‌ଗୁଣ ଯେ ଅନେକ ଆମେ ଏହା ସ୍ୱୀକାର କରିଥାଏ । ପୁନଶ୍ଚ ଏହା ମଧ୍ୟ ଦେଖିଥାଏ ଯେ ଜଣେ ବ୍ୟକ୍ତି ପାଖରେ କେତେକ ସଦ୍‌ଗୁଣ ଥାଇପାରେ, କିନ୍ତୁ ପ୍ରତ୍ୟେକ ସଦ୍‌ଗୁଣ ସମାନ ବା ପୂର୍ଣ୍ଣ ଭାବରେ ରହିନପାରେ । ଜଣେ ଅହିଂସ, ସାଧୁ ପ୍ରକୃତିର ହୋଇପାରନ୍ତି କିନ୍ତୁ ସବୁ ସ୍ଥିତିରେ ସତ୍ୟବାଦୀ ନହୋଇପାରନ୍ତି । ସେହିପରି ଜଣେ ସହିଷ୍ଣୁ, ସମ୍ବେଦନଶୀଳ ଓ ଅତ୍ୟନ୍ତ ସାବଧାନ ହୋଇପାରନ୍ତି କିନ୍ତୁ ସବୁ ପରିସ୍ଥିତିରେ ସଂଯମୀ ହୋଇନପାରନ୍ତି । ଏହି ବାସ୍ତବ ଅନୁଭୂତି ପ୍ରସଙ୍ଗରେ ସକ୍ରେଟିସ୍ ଏହାକୁ ସ୍ଥୁଳ ସଦ୍‌ଗୁଣ ବୋଲି ଅଭିହିତ କରିବେ । ଲୋକମାନେ କେତେକ ବାହ୍ୟ ଆଚରଣ ପ୍ରତି ହୁଏତ ସମ୍ମାନ ରଖିପାରନ୍ତି କିନ୍ତୁ ସଦ୍‌ଗୁଣ ଯେପରି ଆତ୍ମାର ଏକ ମହନୀୟ ଶକ୍ତି ସେ ପ୍ରତି ପୂର୍ଣ୍ଣ ଉତ୍ସର୍ଗୀକୃତ ନ ହୋଇପାରନ୍ତି । ବାହ୍ୟ ସ୍ତରରେ ଆମେ କେତେକ ନୈତିକ ଶୃଂଖଳାକୁ ପାଳନ କରିଥାଏ, ଅନ୍ୟ କେତେକକୁ ସ୍ଥଳବିଶେଷରେ

ପାଳନ କରିନଥାଏ । ତେବେ ବାହ୍ୟିକ ନୈତିକ ଶୃଂଖଳା ଓ ଆତ୍ମିକ ସଦ୍‌ଗୁଣ ଭିତରେ ପାର୍ଥକ୍ୟ କରାଯାଇଥାଏ । ବାହ୍ୟିକ ସ୍ତରରେ କେତେକ ନୈତିକ ଆଚରଣକୁ ପାଳନ କରାଯାଏ, ଯେହେତୁ ଏହାକୁ ପାଳନ ନ କଲେ ସାମାଜିକ ସ୍ତରରେ ଅସମ୍ମାନିତ ହେବାର ସମ୍ଭାବନା ଥାଏ । କିନ୍ତୁ ଜୀବନର ବିଭିନ୍ନ ପରିସ୍ଥିତିରେ ଯେଉଁ ନୈତିକ ଆଚରଣକୁ ପାଳନ କରାଯାଏ ତାହା ପଶ୍ଚାତରେ ଏକ ମୂଳ ସଦ୍‌ଗୁଣ ରହିଥାଏ ଯାହା ପ୍ରତି ନିଷ୍ପାପର ଭାବରେ ବ୍ୟକ୍ତି ସମର୍ପିତ ରହିଥାଏ । ବ୍ୟକ୍ତିର ଅନ୍ତର୍ଦୃଷ୍ଟିରେ ଯିଏ ସଦ୍‌ଗୁଣର ମହତ୍ତ୍ୱ ସମ୍ବନ୍ଧରେ ବୈଚାରିକ ସ୍ୱଚ୍ଛତା ଲାଭ କରିଥାଏ, ସିଏ ଜୀବନର କେତେକ ପରିସ୍ଥିତିରେ ନୈତିକ ଆଚରଣ କରିବ ଓ ଅନ୍ୟ ପରିସ୍ଥିତିରେ କରିବ ନାହିଁ ଏପରି କରିନଥାଏ । ବିଭିନ୍ନ ପ୍ରକାରର ନୈତିକ ଆଦର୍ଶ ସମାଜରେ ରହିପାରେ ଓ ପ୍ରତ୍ୟେକ ନୈତିକ ଆଦର୍ଶକୁ ଏକ ସାଧନ ଭାବରେ ଏକ ଲକ୍ଷ୍ୟ ପାଇଁ କେହି ବିନିଯୋଗ କରିପାରନ୍ତି । କିନ୍ତୁ ସକ୍ରେଟିସ୍‌ଙ୍କ ଦୃଷ୍ଟିରେ ସଦ୍‌ଗୁଣ, ସାଧନ ନୁହେଁ, ସାଧ୍ୟ, ବିବିଧ ନୁହେଁ ଏହା ଏକ ।

ସକ୍ରେଟିସ୍‌ଙ୍କ ବିଚାରରେ ସକଳ ସଦ୍‌ଗୁଣର ମୂଳ ଉତ୍ସ ହେଉଛି ଜ୍ଞାନ ବା ଅନ୍ତର୍ଦୃଷ୍ଟି ଜନିତ ପ୍ରଜ୍ଞା । ଏହି ପ୍ରଜ୍ଞା ହିଁ ସକଳ ନୈତିକ ଆଦର୍ଶର ମୂଳ କେନ୍ଦ୍ର । ସକ୍ରେଟିସ୍‌ଙ୍କ ସମଗ୍ର ଦାର୍ଶନିକ ଦୃଷ୍ଟି କ୍ଷେତ୍ରରେ ଦୁଇଟି ପ୍ରସଙ୍ଗ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ମନେହୁଏ । ପ୍ରଥମ କଥାଟି ହେଉଛି ସକଳ ଜ୍ଞାନର ଆଧାର ହେଉଛି ପ୍ରତ୍ୟୟ (Concept) । ଦ୍ୱିତୀୟ ପ୍ରସଙ୍ଗଟି ହେଉଛି ସକଳ ନୈତିକ ଆଚରଣର ଆଧାର ହେଉଛି ତର୍କବୁଦ୍ଧି ଜନିତ ସ୍ୱଚ୍ଛତା । ସକ୍ରେଟିସ୍‌ଙ୍କ ଦ୍ୱିତୀୟ ସିଦ୍ଧାନ୍ତ କ୍ଷେତ୍ରରେ ବହୁ ଜଟିଳତା ଓ ସମାଲୋଚନା ରହିଛି ଓ ଏହା ଦର୍ଶନ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଭାବରେ ଚର୍ଚ୍ଚାର ପରିସରକୁ ଆସି ନାହିଁ । କିନ୍ତୁ ସକ୍ରେଟିସ୍‌ଙ୍କର ପ୍ରଥମ ପ୍ରସଙ୍ଗ-ସକଳ ଜ୍ଞାନର ଆଧାର ହେଉଛି ପ୍ରତ୍ୟୟ-ଦର୍ଶନ ପରିସରରେ ଏକ ଗମ୍ଭୀର ସିଦ୍ଧାନ୍ତ ଭାବେ ନାନା ଦିଗନ୍ତ ସୃଷ୍ଟି କରିଛି । ସକ୍ରେଟିସ୍‌ଙ୍କର ପ୍ରତ୍ୟୟ ସିଦ୍ଧାନ୍ତକୁ ଭିତ୍ତି କରି ପ୍ଲେଟୋଙ୍କର ଦର୍ଶନ ବିକଶିତ ହୋଇଛି ଓ ପ୍ଲେଟୋଙ୍କ ଦର୍ଶନର ବିଶ୍ଳେଷଣାତ୍ମକ ବ୍ୟାଖ୍ୟାନରୁ ଆରିଷ୍ଟୋଟଲଙ୍କ ଦର୍ଶନର ଭିତ୍ତି ପଡିଛି । ପରବର୍ତ୍ତୀ ପର୍ଯ୍ୟାୟରେ ପ୍ଲେଟୋ ଓ ଆରିଷ୍ଟୋଟଲଙ୍କ ଦାର୍ଶନିକ ଧାରାରୁ ପ୍ରତ୍ୟୟସତ୍ତାବାଦ, ଭାବବାଦ, ଅଧ୍ୟାତ୍ମବାଦ ଇତ୍ୟାଦି ଦାର୍ଶନିକ ସିଦ୍ଧାନ୍ତମାନ ବିକଶିତ ହୋଇଛି । ସକ୍ରେଟିସ୍, ପ୍ଲେଟୋ ଓ ଆରିଷ୍ଟୋଟଲ ଏହି ମହତ୍-ତ୍ରୟୀ ଦାର୍ଶନିକ ସଫିଷ୍ଟ ଜ୍ଞାନମୀମାଂସାକୁ ପ୍ରତ୍ୟାଖ୍ୟାନ କରିଛନ୍ତି । 'ସତ୍ୟ ଇନ୍ଦ୍ରିୟଜନ୍ୟ ଓ ବ୍ୟକ୍ତିନିଷ୍ଠ'- ସଫିଷ୍ଟମାନଙ୍କର ଏହି ବିଚାର ପରବର୍ତ୍ତୀ ଗ୍ରୀକ୍ ଦାର୍ଶନିକମାନଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହୋଇଛି । ସେହିପରି ସଫିଷ୍ଟ ଭାବଧାରାରେ ରହିଥିବା ନୈତିକ ବିଚାର ମଧ୍ୟ ସକ୍ରେଟିସ୍‌ଙ୍କଦ୍ୱାରା ଅଗ୍ରାହ୍ୟ ହୋଇଛି ।

ସଫିଷ୍ଟମାନଙ୍କ ପୂର୍ବରୁ ଯେଉଁ ଦାର୍ଶନିକ ଧାରାଟି ଗ୍ରୀସ୍‌ରେ ସୃଷ୍ଟି ହୋଇଥିଲା ତାହା ସକ୍ରେଟିସ୍‌ଙ୍କ ଆବିର୍ଭାବ ପରେ ନାନା ନୂତନ ଦିଗନ୍ତକୁ ସ୍ପର୍ଶ କଲା । ଦାର୍ଶନିକ ଜିଜ୍ଞାସାର ପ୍ରଥମ କାଳଟି ଥିଲା ବିଶ୍ୱାସର ଯୁଗ । ଦାର୍ଶନିକ ଅନୁଶୀଳନରେ ଯେଉଁ ତତ୍ତ୍ୱମୀମାଂସା ଓ ଆଚାରମୀମାଂସା ନେଇ ବିଚାର ବ୍ୟକ୍ତ ହୋଇଥିଲା ତାହାର ମୂଳ ଭିତ୍ତି ଥିଲା ପାରଂପରିକ ବିଶ୍ୱାସ । ଏହାପରେ ସଫିଷ୍ଟମାନେ ଦୃଶ୍ୟପଟକୁ ଆସିଲେ ଓ ସେମାନେ ସଂଶୟବାଦକୁ ଜନ୍ମଦେଲେ । ସମାଜର ପ୍ରଚଳିତ ନୀତି, ପରଂପରା ଓ ପ୍ରଭୁତ୍ୱକୁ ପ୍ରଶ୍ନ କଲେ । ସକ୍ରେଟିସ୍‌ଙ୍କ ଆବିର୍ଭାବ ପରେ ତର୍କଶୀଳ ବିଚାରର

ଯୁଗ ଆରମ୍ଭ ହେଲା । ସକ୍ରେଟିସ୍, ପ୍ଲେଟୋ ଓ ଆରିଷ୍ଟୋଟଲଙ୍କ ପରି ମହାମତି ଦାର୍ଶନିକମାନେ ଜ୍ଞାନର ଦିଗନ୍ତକୁ ନାନା ଦିଗରେ ବିସ୍ତାର କଲେ ।

ନୈତିକତା ପୃଷ୍ଠଭୂମିରେ ସକ୍ରେଟିସ୍‌ଙ୍କ ବିଚାରରେ ଯାହା ତ୍ରୁଟି ରହିଲେ ମଧ୍ୟ ସକ୍ରେଟିସ୍‌ଙ୍କର ଜୀବନ ଥିଲା ଅତ୍ୟନ୍ତ ଆଦର୍ଶ ସ୍ଥାନୀୟ । ଜୀବନ କିପରି କଲ୍ୟାଣମୟ ହୋଇପାରିବ ଏହି ଭାବନାରୁ ସେ ଦର୍ଶନ ଚର୍ଚ୍ଚାରେ ଜୀବନ ଅତିବାହିତ କରିଥିଲେ । ଅଜ୍ଞତା ହିଁ ସକଳ ଅନ୍ୟାୟର ମୂଳକାରଣ ଓ ଅଜ୍ଞତାକୁ ଦୂର କଲେ ଜୀବନ ମଙ୍ଗଳମୟ ହୋଇପାରିବ ଏହି ବିଶ୍ୱାସ ତାଙ୍କ ଚିନ୍ତାଧାରାକୁ ପ୍ରଭାବିତ କରିଥିଲା । ପାର୍ଥିବ ଭୋଗବିଳାସ ଉପରେ ଜୀବନର ସୁଖ ଓ ଉତ୍କର୍ଷ ନିର୍ଭର କରେ ନାହିଁ ଏହା ହିଁ ଥିଲା ତାଙ୍କର ବଡ ଉପଲବ୍‌ଧି । ଜୀବନସାରା ସତ୍ୟ, ନ୍ୟାୟ, ମାନବିକତା ପ୍ରତି ପ୍ରତିବଦ୍ଧତା ଥିଲା ତାଙ୍କ ଜୀବନଦର୍ଶନ । ସେ ଯଦିବା ମୌଖିକ ଆଲୋଚନା ଭିତରେ ତାଙ୍କର ଦାର୍ଶନିକ ଆଲୋଚନାକୁ ସୀମିତ ରଖିଥିଲେ, ତେବେ ତାଙ୍କର ଭାବଧାରାକୁ ଅନ୍ୟମାନେ ଉଲ୍ଲେଖ କରିଛନ୍ତି । ପ୍ଲେଟୋଙ୍କ ଡାଏଲଗ୍ ଭିତରୁ ସକ୍ରେଟିସ୍‌ଙ୍କର ସକଳ ବିଚାରକୁ ହିଁ ଗବେଷକମାନେ ଓ ଦାର୍ଶନିକମାନେ ରୂପ ଦେଇଛନ୍ତି । କୁହାଯାଏ ଯେ ପାଶ୍ଚାତ୍ୟ ସଭ୍ୟତାର ଅଧିକାଂଶ ମୂଲ୍ୟବୋଧ ଗ୍ରୀକ୍‌ମାନଙ୍କ ବିଚାରରୁ ପରିପୁଷ୍ଟ ହୋଇଛି । ତର୍କବୁଦ୍ଧିର ପ୍ରୟୋଗ, ବ୍ୟକ୍ତି ସ୍ୱାଧୀନତା, ଗଣତନ୍ତ୍ର, ଜ୍ଞାନାନ୍ୱେଷଣ ଇତ୍ୟାଦି ମୂଲ୍ୟଚୟ ପାଶ୍ଚାତ୍ୟ ଜଗତ ଗ୍ରୀସ୍‌ରୁ ଲାଭ କରିଛି । ଏହି କ୍ଷେତ୍ରରେ ସକ୍ରେଟିସ୍ ଯେ ଏକ ଆଲୋକବର୍ତ୍ତିକା ଏହା ନିଃସନ୍ଦେହ ମନେହୁଏ ।

## ୬.୪ କେତୋଟି ଗୌଣ -ସକ୍ରେଟିସୀୟ ଧାରା

ଜଣେ ଚିନ୍ତାନାୟକ ବା କ୍ରାନ୍ତିକାରୀ ବୁଦ୍ଧିଜୀବୀଙ୍କର ଦେହାନ୍ତ ପରେ ତାଙ୍କ ଚିନ୍ତାଧାରାର ପ୍ରଭାବ ବହୁ କ୍ଷେତ୍ରରେ ପଡିଥାଏ । ତାଙ୍କ ବୈଚାରିକ ଭାବମଣ୍ଡଳ ବିଭିନ୍ନ କ୍ଷେତ୍ରକୁ ପ୍ରସାରିତ ହୁଏ । ତାଙ୍କ ବିଚାରଧାରାରେ ପ୍ରଭାବିତ ହୋଇଥିବା ବ୍ୟକ୍ତିମାନେ ନିଜସ୍ୱ ଭାବନାରେ ନୂଆ ନୂଆ ଧାରାକୁ ଜନ୍ମଦିଅନ୍ତି । ଜଣେ ବିଶିଷ୍ଟ ଲେଖକ ବା ଦାର୍ଶନିକଙ୍କ ବିଚାରରୁ ପ୍ରେରଣା ପାଇ ତାଙ୍କର ଅନୁଗାମୀ ମାନେ କିଛି ନୂଆ ନୂଆ ଧାରା ସୃଷ୍ଟିକରନ୍ତି । ଏପରିକି ଜଣେ କ୍ରାନ୍ତିକାରୀ ବ୍ୟକ୍ତିତ୍ୱଙ୍କ ପାଖରେ ପରସ୍ପରଠାରୁ ପୃଥକ୍ ଥିବା ଭାବନା ମାନଙ୍କର ସମନ୍ୱୟ ବି ହୋଇଥିବା ସମ୍ଭବ । ଏହିପରି ଇତିହାସରେ କେତେ କେତେ ବ୍ୟକ୍ତିତ୍ୱଙ୍କୁ ଦେଖିବାକୁ ମିଳେ, ଯେଉଁମାନଙ୍କ ଚିନ୍ତାଧାରାରୁ ପ୍ରେରଣା ନେଇ ବିଭିନ୍ନ ଭାବଧାରାମାନ ଜନ୍ମ ନେଇଥାଏ । କାର୍ଲ ମାର୍କସ ଥିଲେ ଜଣେ ଯୁଗାନ୍ତକାରୀ ଚିନ୍ତାନାୟକ । ତାଙ୍କ ପରେ ତାଙ୍କର ଭାବଧାରା ସାହିତ୍ୟ, ରାଜନୀତି, ଅର୍ଥନୀତି ଇତ୍ୟାଦି ବହୁକ୍ଷେତ୍ରରେ ପ୍ରତିଫଳିତ ହେବା ଦେଖାଯାଏ । ତାଙ୍କ ବିଚାରଧାରାରୁ ପ୍ରେରଣା ନେଇ ସାହିତ୍ୟ କ୍ଷେତ୍ରରେ କେତେ କେତେ ସୃଜନଶୀଳ ଲେଖକ ନୂଆଢ଼ଙ୍ଗରେ ସାହିତ୍ୟମାନ ସୃଷ୍ଟି କଲେ । ସାଧାରଣ ଶ୍ରମଜୀବୀ ମଣିଷର ଜୀବନଯନ୍ତ୍ରଣା, ସ୍ୱପ୍ନ, ହତାଶା, ପରିବାରର ଦୁଃଖ, ଦୁର୍ଦ୍ଦଶା ସାହିତ୍ୟ ରଚନାରେ ସ୍ଥାନ ପାଇଲା । ଅର୍ଥନୀତି କ୍ଷେତ୍ରରେ ରହିଥିବା ପୁଂଜିବାଦ, ସାମନ୍ତବାଦ, ସାମ୍ରାଜ୍ୟବାଦ ଇତ୍ୟାଦି ବିରୁଦ୍ଧରେ ବୈଚାରିକ ଆଲୋଡନ ଆସିଲା । ପ୍ରକାରାନ୍ତରେ ଜନମଙ୍ଗଳକାରୀ ଯୋଜନାମାନ ଅର୍ଥନୈତିକ ବ୍ୟବସ୍ଥାରେ ପ୍ରାଧାନ୍ୟ ପାଇଲା । ସେହିପରି ରାଜନୈତିକ ସ୍ତରରେ ଗଣବିପ୍ଳବଦ୍ୱାରା ସମାଜବାଦୀ

ରାଷ୍ଟ୍ର ନିର୍ମାଣର ଭାବନା କେତେକ ଦେଶରେ ତୀବ୍ର ହୋଇଉଠିଲା । ସିଗ୍‌ମଣ୍ଡ ଫ୍ରଏଡ, ଚାର୍ଲସ ଡାରୱିନ,ବର୍ଣ୍ଣାଡ ସ'ଙ୍କ ବିଚାରଧାରା ବି ବହୁ କ୍ଷେତ୍ରକୁ ପ୍ରଭାବିତ କରିଥିବା ଜଣାଯାଏ । ସାହିତ୍ୟ, ଦର୍ଶନ, ବିଜ୍ଞାନ ଇତ୍ୟାଦି କ୍ଷେତ୍ରରେ ମୌଳିକ ଭାବନାର ସୂତ୍ରପାତ କରିଥିବା ପ୍ରଭାବଶାଳୀ ଚିନ୍ତକମାନେ ପରବର୍ତ୍ତୀ ପିଢ଼ିର ବୌଦ୍ଧିକ ଭାବମଣ୍ଡକୁ ଅନୁପ୍ରାଣିତ କରିଥିବାର କାହାଣୀ ସୁବିଦିତ । ଏପରି ମଧ ଦେଖାଯାଇଛି ଯେ ଜଣଙ୍କର ବିଚାର କ୍ଷେତ୍ରରେ ରହିଥିବା ଭିନ୍ନ ଭିନ୍ନ ପ୍ରସଙ୍ଗକୁ ନେଇ ତାକୁ ଭିନ୍ନ ଭିନ୍ନ ଦିଗରେ ପରବର୍ତ୍ତୀ ସମୟର ଚିନ୍ତାଶୀଳ ଲୋକମାନେ ବିକଶିତ କରାଇଛନ୍ତି । ଗୋଟିଏ ଗୌଣ ପ୍ରସଙ୍ଗରୁ ବି ଏକ ବିକଶିତ ଧାରା ସୃଷ୍ଟି ହେବାର ବିଭିନ୍ନ ଦୃଷ୍ଟାନ୍ତ ରହିଛି । ଜଣେ ପ୍ରଭାବଶାଳୀ ଚିନ୍ତକଙ୍କର କୌଣସି ଏକ ଭାବନାକୁ ଏକ ବ୍ୟାପକ ଭିତ୍ତି ଦିଆଯାଇଛି କିମ୍ବା ଏକ ଗମ୍ଭୀର ଦାର୍ଶନିକ ଭାବଧାରା ସୃଷ୍ଟି କରାଯାଇଛି ।

ସକ୍ରେଟିସ୍‌ଙ୍କ ଦେହାନ୍ତ ପରେ ଗ୍ରୀକ୍ ଚିନ୍ତାରାଜ୍ୟରେ ତାଙ୍କ ଭାବନାକୁ ନେଇ ଏହିପରି ଆଲୋଡନ ମାନ ସୃଷ୍ଟି ହୋଇଛି । ତେବେ ସକ୍ରେଟିସ୍‌ଙ୍କ ଚିନ୍ତାମାନସ ସାମଗ୍ରିକ ଭାବେ ଯାହାଙ୍କର ଦର୍ଶନକୁ ପ୍ରଭାବିତ କରିଛି ସେ ହେଉଛନ୍ତି ପ୍ଲେଟୋ । ପ୍ଲେଟୋ ଥିଲେ ସକ୍ରେଟିସ୍‌ଙ୍କର ଅନୁଗାମୀ, ଏପରିକି ସକ୍ରେଟିସ୍‌ଙ୍କର ଚିନ୍ତାଧାରାକୁ ସେ ତାଙ୍କ ଡାଏଲଗ୍‌ରେ ଜୀବନ୍ତ କରି ପ୍ରତିଫଳିତ କରିଥିଲେ । ସେହିପରି ଆଉ ତିନି ଜଣ ବ୍ୟକ୍ତି ଯେଉଁମାନେ ସକ୍ରେଟିସ୍‌ଙ୍କର ଅନୁଗାମୀ ଓ ଅନ୍ତରଙ୍ଗ ଥିଲେ ସେମାନେ ନିଜ ନିଜ ଧାରାରେ ଏକ ଏକ ଦାର୍ଶନିକ ଭାବଧାରାକୁ ଜନ୍ମ ଦେଲେ । ସେମାନେ ନିଜ ଭାବଧାରାର ପ୍ରେରଣାଦାତା ଭାବେ ସକ୍ରେଟିସ୍‌ଙ୍କୁ ଗ୍ରହଣ କରିଥିଲେ । ସେତିକି କେବଳ ନୁହେଁ, ସେମାନେ ଯେଉଁ ବିଚାର ମାନଙ୍କର ବିକାଶ କରାଇଲେ ତାହାର ମୂଳ ଉତ୍ସ ଯେ ସକ୍ରେଟିସ୍‌ଙ୍କ ପାଖରୁ ଆସିଛି ଏହା ମଧ ପ୍ରକାଶ କଲେ । ଏମାନେ ହେଲେ ଆଣ୍ଟିସ୍ଥେନିସ୍, ଆରିଷ୍ଟିପସ ଓ ଇଉକ୍ଲିଡ । ଆଣ୍ଟିସ୍ଥେନିସ୍ ସିନିକ୍ ଭାବଧାରା, ଆରିଷ୍ଟିପସ ସିରେନିକ ଭାବଧାରା ଓ ଇଉକ୍ଲିଡ ମୋଗାରିକ ବିଚାରଧାରା ମାନ ପ୍ରତିଷ୍ଠା କରିଥିଲେ ।

ସକ୍ରେଟିସ୍‌ଙ୍କର ଦାର୍ଶନିକ ଅବବୋଧ ଭିତରେ ଦୁଇଟି ମୌଳିକ ପ୍ରସଙ୍ଗର ଅବତାରଣା ହୋଇଥିବା ଦେଖାଯାଏ । ପ୍ରଥମରେ ପ୍ରତ୍ୟୟ ସିଦ୍ଧାନ୍ତ ଓ ଦ୍ୱିତୀୟରେ ଏକ ନୈତିକ ସିଦ୍ଧାନ୍ତ ସେ ମୁଖ୍ୟତଃ ଆଲୋଚନା କରିଛନ୍ତି । ଏହି ଯେଉଁ ଦୁଇ ସିଦ୍ଧାନ୍ତ ସେ ପ୍ରକାଶ କରିଛନ୍ତି ତାହା ଦର୍ଶନର ଇତିହାସରେ କ'ଣ ପ୍ରଭାବ ପକାଇଛି ତାହା ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ । ତେବେ ତାଙ୍କ ସମସାମୟିକ ଚିନ୍ତକ ମାନେ ଏହା ଉପରେ ସେତେ ପ୍ରାଧାନ୍ୟ ଦେଇନାହାନ୍ତି । ସେମାନେ ତାଙ୍କର ନୈତିକ ଆଦର୍ଶକୁ ବରଂ ବେଶି ଗୁରୁତ୍ୱ ଦେଇଛନ୍ତି । ନୈତିକ ପ୍ରସଙ୍ଗ ଉପରେ ସେମାନେ ଅଧିକ ଗୁରୁତ୍ୱ ଦେଇ ସେ ସଂପର୍କରେ ଅମୂର୍ତ୍ତୀୟ ଆଲୋଚନା ନକରି ତାହାର ବ୍ୟାବହାରିକ ଦିଗକୁ ବିଚାର କରିଛନ୍ତି । ସକ୍ରେଟିସ୍‌ଙ୍କ ଭାବଧାରାରେ ରହିଛି ଯେ ସଦ୍‌ଗୁଣ (virtue) ହେଉଛି ଜୀବନର ମୂଳ ଲକ୍ଷ୍ୟ । Virtue ଶବ୍ଦକୁ ସଦ୍‌ଗୁଣ, ଉତ୍କୃଷ୍ଟତା, ପ୍ରଜ୍ଞା ଇତ୍ୟାଦି ଅର୍ଥରେ ବ୍ୟବହାର କରାଯାଇଛି । Virtue, Excellence, Wisdom ଶବ୍ଦ ଗ୍ରୀକ୍‌ରେ ସମାନ ଅର୍ଥରେ ନିଆଯାଉଛି । ମୁଁ ଏଠାରେ virtue ଶବ୍ଦକୁ ସଦ୍‌ଗୁଣ ଅର୍ଥରେ ବ୍ୟବହାର କରିଛି । ବିଳାସ, ଭୌତିକ ସାଧନ, ଜ୍ଞାନ ଇତ୍ୟାଦି ସଦ୍‌ଗୁଣ ତୁଳନାରେ ମୂଲ୍ୟହୀନ । ସକ୍ରେଟିସ୍‌ଙ୍କ ପରେ ଯେଉଁମାନେ

ତାଙ୍କ ଭାବଧାରାକୁ ନେଇ କିଛି ଧାରା ମାନ ସୃଷ୍ଟି କରିଛନ୍ତି ସେମାନେ ସଦ୍‌ଗୁଣ ଯେ ଜୀବନର ଚରମ ଲକ୍ଷ୍ୟ ଏହା ଉପରେ ପ୍ରାଧାନ୍ୟ ଦେଇଛନ୍ତି । ସେମାନେ ନିଜ ନିଜ ଧାରାରେ ସକ୍ରେଟିସ୍‌ଙ୍କ ଏହି ବିଚାରକୁ ଭିନ୍ନ ଭିନ୍ନ ଭାବରେ ବିକଶିତ କରାଇ ଦାର୍ଶନିକ ମତର ସୂତ୍ରପାତ କରିଛନ୍ତି ।

ଯଦି କୁହାଯାଏ ଯେ ସଦ୍‌ଗୁଣ ହିଁ ଜୀବନର ଅନ୍ତିମ ଶ୍ରେୟ, ତେବେ ପ୍ରଶ୍ନ ହେବ-ସଦ୍‌ଗୁଣ କହିଲେ କ'ଣ ବୁଝାଯାଏ ? ସକ୍ରେଟିସ୍‌ଙ୍କ ମତରେ ସଦ୍‌ଗୁଣ ହେଉଛି ଜ୍ଞାନ (Virtue is knowledge) । ତେବେ ବିଶ୍ଳେଷଣ ଦ୍ୱାରା କୁହାଯାଇ ପାରିବ ଯେ ଏହା ସଦ୍‌ଗୁଣର ସଂଜ୍ଞା ନୁହେଁ । ଯଦି କୁହାଯାଏ ଯେ ସଦ୍‌ଗୁଣ ହେଉଛି ଜ୍ଞାନ, ତେବେ ପ୍ରଶ୍ନ ହେବ କେଉଁ ବିଷୟରେ ଜ୍ଞାନ ? ଏହି ଜ୍ଞାନ ଜ୍ୟୋତିର୍ବିଜ୍ଞାନ, ଗଣିତଶାସ୍ତ୍ର,ଇତିହାସ, ପଦାର୍ଥ ବିଜ୍ଞାନ ଇତ୍ୟାଦି ସଂପର୍କିତ ଜ୍ଞାନ ନୁହେଁ । ସାଂପ୍ରତିକ ପରିଭାଷାରେ ଗଣିତ, ବିଜ୍ଞାନ, ଇତିହାସ ଇତ୍ୟାଦି ଏହି ଜ୍ଞାନ ନୁହେଁ, ବରଂ ନୈତିକତା ହେଉଛି ସଦ୍‌ଗୁଣ ସମ୍ବନ୍ଧୀୟ ଜ୍ଞାନ । ପୁନଶ୍ଚ ଯଦି ସଦ୍‌ଗୁଣର ସଂଜ୍ଞା ହୁଏ ସଦ୍‌ଗୁଣ ଆଧାରିତ ଜ୍ଞାନ, ତେବେ ଏହା ଏକ ଚକ୍ରକ ସଂଜ୍ଞା ହୁଏ । ସଦ୍‌ଗୁଣକୁ ଜ୍ଞାନ କୁହାଯିବ ଓ ଜ୍ଞାନକୁ ସଦ୍‌ଗୁଣ ଭିତରେ ସୀମାବଦ୍ଧ ରଖାଯିବ ତେବେ ଏହା ଏକ ଚକ୍ରକ ସଂଜ୍ଞାର (circular definition) ଚିତ୍ର ଦେବ । ସେପରି କ୍ଷେତ୍ରରେ ସଦ୍‌ଗୁଣର ଏହା ଏକ ଉତ୍ତମ ବ୍ୟାଖ୍ୟା ହୋଇପାରିବ ନାହିଁ । ସକ୍ରେଟିସ୍ ସେପରି ଚକ୍ରକ ଆଧାରରେ ଏହାକୁ ଅବବୋଧ କରିଥିବା ମନେହୁଏ ନାହିଁ । ଯଦିବା ସେ ବେଳେବେଳେ ସଦ୍‌ଗୁଣକୁ ଜ୍ଞାନ କହିଛନ୍ତି କିନ୍ତୁ ପ୍ରକୃତରେ ସଦ୍‌ଗୁଣକୁ ସାଧାରଣ ଜ୍ଞାନ ଅର୍ଥରେ ଗ୍ରହଣ କରିନାହାନ୍ତି । ତାଙ୍କ ବିଚାରକୁ ହୁଏତ ଏପରି ଭ୍ରମାତ୍ମକ ଭାବରେ ବ୍ୟକ୍ତ କରାଯାଇଛି । ସେ ସଦ୍‌ଗୁଣକୁ ଜ୍ଞାନ କହୁନାହାନ୍ତି ବରଂ ସଦ୍‌ଗୁଣ ଯେ ଜ୍ଞାନ ଉପରେ ନିର୍ଭରଶୀଳ ଏହା ପ୍ରକାଶ କରୁଛନ୍ତି । ଅର୍ଥାତ୍ ସଦ୍‌ଗୁଣ ହେଉଛି ଯଥାର୍ଥ ଜ୍ଞାନ ବା ଜ୍ଞାନ ହିଁ ହେଉଛି ସଦ୍‌ଗୁଣ ଏପରି କହିବାଦ୍ୱାରା ଆମେ ଏକ ଚକ୍ରକ ସଂଜ୍ଞା ଭିତରେ ପ୍ରବେଶ କରିବା । ବରଂ ସଦ୍‌ଗୁଣର ଅର୍ଥ ସଦ୍‌ଗୁଣ ବିଷୟକ ଜ୍ଞାନକୁ ନିଆଯାଇପାରେ । ଅର୍ଥାତ୍ ସଦ୍‌ଗୁଣ ବିଷୟକ ଜ୍ଞାନ ଉପରେ ସଦ୍‌ଗୁଣର ଭାବନା ନିର୍ଭର କରେ ବୋଲି ଆମେ କହିପାରିବା । ଯଦି ଜଣେ ସଦ୍‌ଗୁଣ ବିଷୟରେ ସଚେତନ, ତେବେ ସେ ସଦ୍‌ଗୁଣର ଅଧିକାରୀ ହୋଇପାରିବ । ଏଠାରେ ସଦ୍‌ଗୁଣର କୌଣସି ସଂଜ୍ଞା ପ୍ରଦାନ କରାଯାଉ ନାହିଁ ବା ଏହାର ସଂଜ୍ଞା ନେଇ ଚର୍ଚ୍ଚା ହେଉ ନାହିଁ । ତେବେ ଆମ ପାଖରେ ସେହି ପ୍ରଶ୍ନ ରହୁଛି ସଦ୍‌ଗୁଣ କହିଲେ କ'ଣ ବୁଝାଏ । ସଦ୍‌ଗୁଣର ଯଥାର୍ଥ ଅର୍ଥଟି ସକ୍ରେଟିସ୍‌ଙ୍କ ବିଚାର ଭିତରୁ ସ୍ପଷ୍ଟ ହେଉ ନାହିଁ ।

ସକ୍ରେଟିସ୍‌ଙ୍କର ଦର୍ଶନ କଥୋପକଥନ ଶୈଳୀରେ ବିକଶିତ ହୋଇଥିଲା, ଏହା ପ୍ରଣାଳୀବଦ୍ଧ ବା ସୁସଂହତ ଭାବେ ପ୍ରକାଶ ପାଇନଥିଲା । ସାଧାରଣ ବାର୍ତ୍ତାଳାପ ଭିତରେ ଯାହା ପ୍ରକାଶ ପାଇଥାଏ, ସେଥିରୁ ଏକ ଶୃଂଖଳିତ ଓ ସୁଚିନ୍ତିତ ଦାର୍ଶନିକ ସିଦ୍ଧାନ୍ତ ନିର୍ମାଣ କରିବା ସହଜସାଧ୍ୟ ନୁହେଁ । ତେବେ ସକ୍ରେଟିସ୍ ଯେହେତୁ ଥିଲେ ଜଣେ ଅତି ପ୍ରତିଭାଶାଳୀ ତଥା ଅସାଧାରଣ ଧୀଶକ୍ତି ସଂପନ୍ନ ବ୍ୟକ୍ତି ସେ ଦର୍ଶନ ବିଷୟକ ଆଲୋଚନା କଥୋପକଥନ ଶୈଳୀରେ ବ୍ୟକ୍ତ କରିଥିଲେ । ସଦ୍‌ଗୁଣକୁ ଏକ ସୀମିତ ଅଭିବ୍ୟକ୍ତି ଭିତରେ ପ୍ରକାଶ କରିବା ସମ୍ଭବ ନୁହେଁ ବୋଲି ହୁଏତ ତାଙ୍କର ଉପଲବ୍ଧି ଥିଲା । ଜୀବନ ଏତେ ଘଟଣାବହୁଳ ଓ ଜୀବନର ଆହ୍ୱାନ ମାନ ଏତେ ବିସ୍ତୃତ ଯେ ସଦ୍‌ଗୁଣର

ଏକ ନିର୍ଦ୍ଦିଷ୍ଟ ବ୍ୟାଖ୍ୟାନ ଦେବା ସମ୍ଭବ ନୁହେଁ ବୋଲି ସେ ସମ୍ଭବତଃ ଭାବିଥିଲେ । ଯଦିବା ସବୁ କ୍ଷେତ୍ରରେ ସେ ଏକ ପ୍ରତ୍ୟୟର ସଂଜ୍ଞା ଉପରେ ପ୍ରାଧାନ୍ୟ ଦେଉଥିଲେ, ତେବେ ସଦ୍‌ଗୁଣ କ୍ଷେତ୍ରରେ ଏହାର ସଂଜ୍ଞା ସେ ତାଙ୍କର ଅନୁଗାମୀ ମାନଙ୍କ ବିଚାର ଉପରେ ଛାଡି ଦେଇଥିଲେ । ସୁତରାଂ ଏହାର ସଂଜ୍ଞା ନେଇ ତାଙ୍କର ଅନୁଗାମୀମାନଙ୍କ ମଧ୍ୟରେ ମତପାର୍ଥକ୍ୟ ରହିଥିଲା । ସେମାନେ ସମସ୍ତେ ବିଶ୍ୱାସ କରୁଥିଲେ ଯେ ସଦ୍‌ଗୁଣ ହିଁ ଜୀବନର ସର୍ବୋତ୍ତମ ଶ୍ରେୟ । ତେବେ କେଉଁ ପ୍ରକାର ଜୀବନ ବାସ୍ତବରେ ମହନୀୟ ସେ ନେଇ ସେମାନଙ୍କ ମଧ୍ୟରେ ମତଭେଦ ପ୍ରକାଶିତ ହୋଇଥିଲା । ଏହି ପୃଷ୍ଠଭୂମିରେ ଆମେ ତିନିଟି ମତର ଆଲୋଚନା କରିବା । ଏହି ତିନିଟି ବାଦ ବା ସ୍କୁଲ ସକ୍ରେଟିସ୍‌ଙ୍କ ଦର୍ଶନରୁ ଉଦ୍‌ଭବ ହୋଇଥିଲା ।

## (କ) ସିନିକ୍‌ବାଦ :-

ଆଣ୍ଟିସ୍ଥେନିସ୍ (ଖ୍ରୀ.ପୂ.୪୪୫-୩୬୫) ଥିଲେ ସିନିକ୍ ଧାରାର ପ୍ରବର୍ତ୍ତକ । ସିନିକ୍‌ମାନେ ସକ୍ରେଟିସ୍‌ଙ୍କର ମୂଳ ତତ୍ତ୍ୱ 'ସଦ୍‌ଗୁଣ'ର ନୈତିକ ଆଦର୍ଶକୁ ସ୍ୱୀକାର କରୁଥିଲେ । ଆଣ୍ଟିସ୍ଥେନିସ୍ (Antisthenes) ସଦ୍‌ଗୁଣ ଜ୍ଞାନ ଉପରେ ଆଧାରିତ ସକ୍ରେଟିସ୍‌ଙ୍କ ସିଦ୍ଧାନ୍ତକୁ ଗ୍ରହଣ କରିଥିଲେ । ଏହା ସହିତ ଆଣ୍ଟିସ୍ଥେନିସ୍ ଏହା ମଧ୍ୟ ବିଶ୍ୱାସ କରୁଥିଲେ ଯେ ଜ୍ଞାନକୁ ଶିକ୍ଷା ଦିଆଯାଇ ପାରିବ ଓ ଜ୍ଞାନ ହେଉଛି ଏକ । ସେ ପ୍ରଥମେ ସଫିଷ୍ଟ ଗର୍ଗିଆସଙ୍କର ଛାତ୍ର ଥିଲେ ଓ ପରେ ସେ ସକ୍ରେଟିସ୍‌ଙ୍କର ଶିଷ୍ୟ ଓ ତାଙ୍କର ଅନୁଗାମୀ ହେଲେ । ସକ୍ରେଟିସ୍‌ଙ୍କର ସ୍ୱାଧୀନ ଚରିତ୍ର, ମୌଳିକ ଦୃଷ୍ଟିଭଙ୍ଗୀ ଓ ବିଚାର ପ୍ରତି ସମର୍ପିତ ଭାବଦ୍ୱାରା ସେ ଗଭୀର ଭାବେ ପ୍ରଭାବିତ ହୋଇଥିଲେ ଓ ଅନ୍ୟ କେତେକ ବିଚାର କ୍ଷେତ୍ରରେ ତାଙ୍କର ସକ୍ରେଟିସ୍‌ଙ୍କ ସହ କିଛି ମତପାର୍ଥକ୍ୟ ରହିଥିଲା । ସକ୍ରେଟିସ୍‌ଙ୍କର କୌଣସି ବସ୍ତୁ ପ୍ରତି ପ୍ରଲୋଭନ ନଥିଲା ଓ ସେ କେବେ କୌଣସି ଭୌତିକ ସୁଖ ପାଇଁ ଆଶାୟୀ ନଥିଲେ । ତାଙ୍କ ଅନ୍ତର ଥିଲା ପବିତ୍ର ଓ ସେ ଥିଲେ ପ୍ରଜ୍ଞାର ସାଧକ । ସକ୍ରେଟିସ୍‌ଙ୍କର ଏହି ସ୍ୱାଧୀନ ଦୃଷ୍ଟିଭଙ୍ଗୀ ଓ ବାହ୍ୟିକ ଭୋଗବିଳାସ ପ୍ରତି ସଂପୂର୍ଣ୍ଣ ଉଦାସୀନତା ଆଣ୍ଟିସ୍ଥେନିସ୍ ଓ ଅନ୍ୟ ସିନିକ୍‌ଙ୍କ ପାଇଁ ଆଦର୍ଶର ବସ୍ତୁ ଥିଲା । ସକ୍ରେଟିସ୍‌ଙ୍କର ବିଚାରକୁ ବ୍ୟାଖ୍ୟା କରି ସିନିକ୍‌ମାନେ ମତ ଦେଲେ ଯେ ସମସ୍ତ ଭୌତିକ ସୁଖ ଓ ବ୍ୟକ୍ତିଗତ ସଂପତ୍ତିରୁ ମୁକ୍ତି ହିଁ ହେଉଛି ଯଥାର୍ଥ ସ୍ୱାଧୀନତା । ସେମାନେ ସଦ୍‌ଗୁଣର ସଂଜ୍ଞା ଦେଲେ ଯେ ଏହାର ତାତ୍ପର୍ଯ୍ୟ ହେଉଛି ସକଳ ପ୍ରକାରର କାମନା, ବାସନା ଓ ମାଲିକାନାରୁ ମୁକ୍ତ ରହିବା । ସବୁକିଛି ତ୍ୟାଗ ଓ ସକଳ ବର୍ଜନ ଯେ ଜୀବନର ମୂଳ ଲକ୍ଷ୍ୟ ଏହି ପ୍ରକାରର ଏକ ବୈରାଗ୍ୟବାଦକୁ ସିନିକ୍‌ମାନେ ଗ୍ରହଣ କଲେ । ସକ୍ରେଟିସ୍ ଜୀବନର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଜ୍ଞାନ ଭାବେ ନୈତିକ ଜ୍ଞାନକୁ ଗ୍ରହଣ କରୁଥିଲେ । ସକ୍ରେଟିସ୍‌ଙ୍କର ଏହି ଭାବଧାରାକୁ ସିନିକ୍‌ମାନେ ଏକ ନକାରାତ୍ମକ ଦିଗରେ ବ୍ୟାଖ୍ୟା କଲେ । ଯେକୌଣସି ପ୍ରକାରର ବୌଦ୍ଧିକତା, କଳାକୁ ସେମାନେ ନ୍ୟୂନ ଦୃଷ୍ଟିରେ ଦେଖିଲେ । ଏପରିକି ଅଜ୍ଞତା ସେମାନଙ୍କ ଦୃଷ୍ଟିରେ ଗୁରୁତ୍ୱପୂର୍ଣ୍ଣ ହେଲା । ସଦ୍‌ଗୁଣର ଅଧିକାରୀ ହେବା ଅର୍ଥ ଯଥାର୍ଥ ସୁଖର ଅଧିକାରୀ ହେବା । ଥରେ ସଦ୍‌ଗୁଣର ଅଧିକାରୀ ହେଲେ ଜଣେ ସକଳ ସୁଖ ପ୍ରାପ୍ତ ହୋଇ ପାରିବ । ସଦ୍‌ଗୁଣର ଅଧିକାରୀ ହେବାକୁ ଜୀବନରେ ଅନ୍ୟ କିଛିର କାମନା ଆବଶ୍ୟକ ନାହିଁ, କେବଳ ଜଣେ ସକ୍ରେଟିସ୍‌ଙ୍କର ଆତ୍ମବଳ

ଦରକାର । ଏହା କାର୍ଯ୍ୟରେ ପ୍ରତିଫଳିତ ହେବା ବିଧେୟ । ଏଥିପାଇଁ କୌଣସି ଅଧ୍ୟୟନ ବା ପ୍ରୟାସର ପ୍ରୟୋଜନିୟତା ନାହିଁ । ସିନିକ୍ ମାନଙ୍କ ଦୃଷ୍ଟିରେ ସଦ୍‌ଗୁଣର ତାତ୍ପର୍ଯ୍ୟ ହେଉଛି ସକଳ କାମନା, ବାସନା, ଆଶା, ପ୍ରତ୍ୟାଶା ଇତ୍ୟାଦିରୁ ମୁକ୍ତ ହେବା । ଇନ୍ଦ୍ରିୟ ନିଗ୍ରହ ଓ ବୈରାଗ୍ୟ ଭାବକୁ ହିଁ ସିନିକ୍‌ମାନେ ସଦ୍‌ଗୁଣର ଆଖ୍ୟା ଦେବା ମନେହୁଏ । ଏହିପରି ଦେଖିଲେ ସିନିକ୍‌ମାନେ ସଦ୍‌ଗୁଣର ଏକ ନକାରାତ୍ମକ ବ୍ୟାଖ୍ୟାନ ଦେଲେ । ଏପରିକି ନିଜର କୌଣସି ଗୃହ ଖଣ୍ଡେ ରହିବା ବା ସଂପତ୍ତି ରହିବା ଭାବନାରୁ ଅଧିକାଂଶ ସିନିକ୍ ମୁକ୍ତ ରହିଲେ । କର୍ମହୀନ, ବାସହୀନ ଭିକାରି ସଦୃଶ ସେମାନେ ବୁଲିବାକୁ ଉଚିତ ମନେ କଲେ । ଡାଓଜିନିସ୍ ଗୋଟିଏ କୁଣ୍ଡ ଭିତରେ ରହୁଥିଲେ ଓ ରାତିରେ ଶୋଉଥିଲେ ବୋଲି ଜଣାଯାଏ । ତାଙ୍କର କିଛି ବି ନଥିଲା । ଏହା ସତ୍ୟ ଯେ ସକ୍ରେଟିସ୍ ଯାହା ବିବେକଦ୍ୱାରା ଉଚିତ୍ ମନେ କରୁଥିଲେ ତାହା ପ୍ରତି ପ୍ରତିବଦ୍ଧ ଥିଲେ ଓ କୌଣସି ଆକର୍ଷଣ ବା ସମାଲୋଚନାକୁ ଗୁରୁତ୍ୱ ଦେଉନଥିଲେ । ତେବେ ସକ୍ରେଟିସ୍‌ଙ୍କର ଏହି ସ୍ୱାଧୀନତା ସର୍ବୋଚ୍ଚ ଲକ୍ଷ୍ୟ ନଥିଲା । ସେ କେବେ ସାଧାରଣ ଲୋକଙ୍କ ଦୃଷ୍ଟିକୋଣ ପ୍ରତି ବିତସ୍ପୃହ ନଥିଲେ । ତାଙ୍କର ଏହି ଭାବାଦର୍ଶକୁ ସିନିକ୍‌ମାନେ ଭ୍ରଷ୍ଟ ଭାବରେ ବ୍ୟାଖ୍ୟା କଲେ । ସେମାନେ ସାଧାରଣ ଜନମତକୁ ସାମାନ୍ୟ ପ୍ରାଧାନ୍ୟ ଦେଲେ ନାହିଁ ଓ ଜ୍ଞାନ, କଳା, ମାନବିକ ସୃଜନଶୀଳତାକୁ ଅତ୍ୟନ୍ତ ହେୟ ମନେ କଲେ । ଏପରିକି ଭିକାରି ଓ ଅଶୋଭନୀୟ ଜୀବନ ଧାରାକୁ ଅଧିକ ମହତ୍ତ୍ୱ ଦେଲେ ଓ ସାମାଜିକ କଟାକ୍ଷକୁ କର୍ଣ୍ଣପାତ କଲେ ନାହିଁ ।

ସେମାନେ ସଦ୍‌ଗୁଣକୁ ଏକ ମାତ୍ର ଆଦର୍ଶ ଭାବରେ ଗ୍ରହଣ କରି ତାହାର ଏକ ବିକୃତ ଅର୍ଥ କଲେ । ସେମାନଙ୍କ ଦୃଷ୍ଟିରେ ସଦ୍‌ଗୁଣକୁ ବାଦ୍ ଦେଇ ଅନ୍ୟ କିଛି ହିଁ ଭଲ ବା ମନ୍ଦ ନୁହେଁ । ଧନ, ସଂପତ୍ତି, ସୁଖ, ସମ୍ଭୋଗ, ସ୍ୱାଧୀନତା, ବିଳାସ ଇତ୍ୟାଦି କୌଣସି କିଛିର ମହତ୍ତ୍ୱ ହିଁ ନାହିଁ, ଏସବୁ ଯେ ଜୀବନ ପାଇଁ ଆବଶ୍ୟକ ତାହା ମଧ୍ୟ ନୁହେଁ । ସେହିପରି ଦାରିଦ୍ର୍ୟ, ଦୁଃଖ, ଯନ୍ତ୍ରଣା, ଅସୁସ୍ଥତା, ମୃତ୍ୟୁ ଇତ୍ୟାଦି ଜୀବନ ପାଇଁ ମନ୍ଦ ନୁହେଁ । ଭଲ-ମନ୍ଦ, ଶୁଭ-ଅଶୁଭ ଏସବୁ ପ୍ରତି ସିନିକ୍‌ମାନେ ସଂପୂର୍ଣ୍ଣ ବିତସ୍ପୃହ ରହିଥିଲେ । ନିଜର ସ୍ୱାଧୀନତାର ମୂଲ୍ୟ ନାହିଁ କିମ୍ବା ଦାସତ୍ୱଠାରୁ ଏହା ସେପରି ମହତ୍ତର ନୁହେଁ । ଯଦି ଜଣେ ଦାସ ସଦ୍‌ଗୁଣର ଅଧିକାରୀ ତେବେ ସେ ହିଁ ସାର୍ଥକ ଜୀବନର ଅଧିକାରୀ । ଯାହା ପାଖରେ ସଦ୍‌ଗୁଣ ରହିଛି ସେ ଯିଏ ବି ହଉ ସେ ମହାନ । ସେହି ବ୍ୟକ୍ତି ସଂପୂର୍ଣ୍ଣ ମୁକ୍ତ ଓ ସବୁଥିରେ ସ୍ୱାଧୀନ । ସଦ୍‌ଗୁଣର ସିନିକ୍‌ମାନେ ଏହିପରି ଅର୍ଥ କରିଛନ୍ତି । ଏତଦ୍‌ବ୍ୟତୀତ ଆତ୍ମହତ୍ୟା ବି ଏକ ଅପରାଧ ନୁହେଁ । ଜଣେ ନିଜର ଯନ୍ତ୍ରଣା ଓ କଷ୍ଟରୁ ଉଦ୍ଧାର ପାଇଁ ଆତ୍ମହତ୍ୟା କରେ ନାହିଁ, କାରଣ ଯନ୍ତ୍ରଣା ଓ କଷ୍ଟ ସିନିକ୍‌ମାନଙ୍କ ମତରେ ଅଶୁଭ ବା ମନ୍ଦ ନୁହେଁ । ବରଂ ଜଣେ ଜୀବନ ପ୍ରତି ବିତସ୍ପୃହ- ଏହି ଭାବନାରୁ ହିଁ ଆତ୍ମହତ୍ୟା କରିପାରେ । ସଦ୍‌ଗୁଣ ଓ ମନ୍ଦ କାର୍ଯ୍ୟ (vice) ଭିତରେ ଯେପରି ପାର୍ଥକ୍ୟ ରହିଛି ସେହିପରି ପ୍ରାଜ୍ଞ ଓ ମୂର୍ଖ ବ୍ୟକ୍ତି ଭିତରେ ମଧ୍ୟ ପାର୍ଥକ୍ୟ ରହିଛି । ସିନିକ୍‌ମାନେ ସବୁ ବ୍ୟକ୍ତିମାନଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରନ୍ତି ଯଥା ପ୍ରାଜ୍ଞ ଓ ନିର୍ବୋଧ । ଯେହେତୁ ସଦ୍‌ଗୁଣ ଅବିଭାଜ୍ୟ ଓ ଏକ, ସୁତରାଂ ଏହା ଜଣଙ୍କ ପାଖରେ ରହିପାରେ କିମ୍ବା ଜଣେ ଏଥିରୁ ମୁକ୍ତ ରହିପାରେ । ଯାହା ପାଖରେ ସଦ୍‌ଗୁଣ ଥାଏ ବା ଯିଏ ଏହାର ଅଧିକାରୀ ସେ ହେଉଛନ୍ତି ପ୍ରାଜ୍ଞ ଓ ଯାହା

ପାଖରେ ଏହା ନାହିଁ ସେ ହେଉଛନ୍ତି ନିର୍ବୋଧ । ସଦ୍‌ଗୁଣ ଯାହାଙ୍କ ପାଖରେ ରହିଛି ଅର୍ଥାତ୍ ଜଣେ ପ୍ରାଜ୍ଞ ବ୍ୟକ୍ତିଙ୍କ ପାଖରେ ସକଳ ଜ୍ଞାନ, ଉତ୍ତମ ସ୍ୱଭାବ, ସକଳ ପ୍ରଜ୍ଞା, ସମସ୍ତ ଶାନ୍ତି, ସକଳ ସୁଖ ରହିଛି । ସେ ହେଉଛନ୍ତି ପୂର୍ଣ୍ଣତାର ଅଧିକାରୀ । ଅପରପକ୍ଷରେ ଯାହାଙ୍କ ପାଖରେ ସଦ୍‌ଗୁଣ ନାହିଁ ଅର୍ଥାତ୍ ଯିଏ ନିର୍ବୋଧ ତାଙ୍କ ପାଖରେ ସକଳ ମନ୍ଦ, ସମସ୍ତ ଅଶୁଭ, ସମସ୍ତ ଦୁଃଖ ହିଁ ରହିଛି । ସେ ସକଳ ଅପୂର୍ଣ୍ଣତାର ଅଧିକାରୀ ।

ସିନିକ୍‌ମାନେ ସଦ୍‌ଗୁଣର ଏପରି ଯେଉଁ ବ୍ୟାଖ୍ୟାନ ଦେଲେ ସେଥିରୁ ଇନ୍ଦ୍ରିୟ-ନିଗ୍ରହ, ବୈରାଗ୍ୟ ଓ ଆତ୍ମସଂଯମତା ସେମାନଙ୍କ ପାଇଁ ଜୀବନର ସର୍ବଶ୍ରେଷ୍ଠ ଆଦର୍ଶ ହେଲା ଓ ସେହି ଭାବରେ ସେମାନେ ଜୀବନ ବଞ୍ଚିବାକୁ ଆଗ୍ରହୀ ହେଲେ । ଏହି ପ୍ରକାର ସଦ୍‌ଗୁଣର ଅଧିକାରୀ ହେଉଥିବା ବ୍ୟକ୍ତିକୁ ସଂସାରର କୌଣସି ସୁଖ ବା ଦୁଃଖ, ସମ୍ଭୋଗ ବା ଦାରିଦ୍ର୍ୟ ସ୍ପର୍ଶ କରିପାରିବ ନାହିଁ । ସେ ସମାଜର ନୀତି, ନିୟମ, ବିଧି ବିଧାନଠାରୁ ମଧ୍ୟ ଊର୍ଦ୍ଧ୍ୱରେ ରହିବ । ସିନିକ୍‌ବାଦର ପ୍ରତିଷ୍ଠାତା ଆଣ୍ଟିସ୍ଥେନିସ୍ ପାରଂପରିକ ଧର୍ମ, ବହୁଈଶ୍ୱରବାଦ, ଧାର୍ମିକ ପରଂପରା ଇତ୍ୟାଦିକୁ ବିଶ୍ୱାସ କରୁନଥିଲେ । କେବଳ ମାତ୍ର ଏକ ଈଶ୍ୱରରେ ସେ ବିଶ୍ୱାସ କରୁଥିଲେ । ସିନିକ୍‌ବାଦର ଆଉ ଜଣେ ପ୍ରବକ୍ତା ଡାଓଜିନିସ୍ (Diogenes) ଆଣ୍ଟିସ୍ଥେନିସ୍‌ଙ୍କୁ ସମାଲୋଚନା କରୁଥିଲେ ଯେ ସେ ନିଜେ ଆଦର୍ଶକୁ ପୂର୍ଣ୍ଣଭାବରେ ପାଳନ କରୁନାହାନ୍ତି । ଡାଓଜିନିସ୍ ଜଣେ ନିଃସ୍ୱ ବ୍ୟକ୍ତି ଭାବରେ ଏକ କୁଣ୍ଡ ଭିତରେ ରହୁଥିଲେ, ଏକ ପୂର୍ଣ୍ଣ ବୈରାଗୀର ଜୀବନ ଅତିବାହିତ କରୁଥିଲେ । ସେ ନିଜକୁ ଏକ "କୁକୁର" କହୁଥିଲେ ଓ ପଶୁମାନଙ୍କର ଜୀବନଶୈଳୀ ମନୁଷ୍ୟ ଅନୁକରଣ କରିବା ଯଥାର୍ଥ ବୋଲି କହୁଥିଲେ । ଡାଓଜିନିସ୍ ମୁକ୍ତ ପ୍ରେମରେ ବିଶ୍ୱାସ କରୁଥିଲେ ଓ ପାରିବାରିକ ବନ୍ଧନ ବ୍ୟବସ୍ଥାର ସମାଲୋଚକ ଥିଲେ । ରାଜନୈତିକ ସ୍ତରରେ ସେ ନିଜକୁ ଜଣେ ବିଶ୍ୱ ନାଗରିକ ବୋଲି ଘୋଷଣା କରୁଥିଲେ । ଆଣ୍ଟିସ୍ଥେନିସ୍‌ଙ୍କ ଭାବଧାରାକୁ ଡାଓଜିନିସ୍ ଆହୁରି ବିକଶିତ କରାଇଥିଲେ ଓ ଏକ ସକାରାତ୍ମକ ବୈରାଗ୍ୟବାଦର ପ୍ରବକ୍ତା ଥିଲେ ।

ସିନିକ୍‌ବାଦ ସକ୍ରେଟିସ୍‌ଙ୍କ ସଦ୍‌ଗୁଣର ଏକ ବ୍ୟାଖ୍ୟାନ ଅନୁଯାୟୀ ବିକଶିତ ହୋଇଥିଲା । ତେବେ ଆଣ୍ଟିସ୍ଥେନିସ୍ ସକ୍ରେଟିସ୍‌ଙ୍କର ପ୍ରତ୍ୟୟ ଭାବନାକୁ ସ୍ୱୀକାର କରୁନଥିଲେ । ସେ କେବଳ ସଦ୍‌ଗୁଣର ଏକ ନୂତନ ବ୍ୟାଖ୍ୟାନ ଦେଇ ତାହା ମାଧ୍ୟମରେ ଏକ ବୈରାଗ୍ୟବାଦର ପ୍ରବକ୍ତା ହୋଇଥିଲେ । ତାଙ୍କ ବୈରାଗ୍ୟବାଦକୁ ଏକ ଚରମ ସ୍ଥିତିକୁ ଡାଓଜିନିସ୍ ନେଇଥିଲେ ଓ ସେହି ଆଦର୍ଶରେ ବଞ୍ଚିବାକୁ ପ୍ରୟାସ କରିଥିଲେ । ଏହାର ଅବାସ୍ତବତା ଓ ଅତିଶୟତା ଯୋଗୁ ଏହା ବେଶି ଦିନ ଧରି ଏଥେନ୍‌ସରେ ତିଷ୍ଠି ରହିନଥିଲା ।

(ଖ) ସିରେନିକ୍‌ବାଦ :-

ଆରିଷ୍ଟିପସ୍ (ଖ୍ରୀ.ପୂ. ୪୩୫-ଖ୍ରୀ.ପୂ ୩୮୮/୩୮୯):-

ଆରିଷ୍ଟିପସ୍ (Aristippus) ଥିଲେ ସିରେନିକ୍ ଭାବଧାରାର ପ୍ରତିଷ୍ଠାତା । ତାଙ୍କର ଜନ୍ମ ସିରିନ୍‌ଠାରେ ହୋଇଥିଲା ଓ ପରେ ସେ ଏଥେନ୍‌ସରେ ଜୀବନର ବହୁ ବର୍ଷ ଅତିବାହିତ କରିଥିଲେ । ସେ ତାଙ୍କ ଭାବଧାରାକୁ ତାଙ୍କ ଜନ୍ମଭୂମି ନାମରେ ନାମିତ କରିଥିଲେ, ଫଳରେ ତାଙ୍କର ଅନୁଗାମୀମାନେ ଏହାକୁ ସିରେନିକ୍‌ବାଦ କହୁଥିଲେ ।

ଆରିଷ୍ଟିପସ୍ ସକ୍ରେଟିସ୍‌ଙ୍କ ଭାବଧାରାକୁ ଗ୍ରହଣ କରୁଥିଲେ ମଧ୍ୟ ଏଥିରେ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ କରିଥିଲେ । ସକ୍ରେଟିସ୍ ସଦ୍‌ଗୁଣକୁ ଜୀବନର ଶ୍ରେୟ ଭାବରେ ଗ୍ରହଣ କରି ସଦ୍‌ଗୁଣର ଅଧିକାରୀ ବ୍ୟକ୍ତି ସୁଖୀ ବୋଲି କହୁଥିଲେ । ସୁଖଲାଭ ଯେ ଜୀବନର ପରମ ଲକ୍ଷ୍ୟ ଏହା ଆରିଷ୍ଟିପସ୍ ବିଚାର କରୁଥିଲେ । ସଦ୍‌ଗୁଣ ଜୀବନରେ କାହିଁକି ଆବଶ୍ୟକ- ଏହି ପ୍ରଶ୍ନ ଉପରେ ସିରେନିକ୍‌ମାନେ ସୁଖଲାଭ ପାଇଁ ଏହା ଯେ ଆବଶ୍ୟକ ଏହା ଭାବୁଥିଲେ । ସେମାନେ ସଦ୍‌ଗୁଣର ଯେଉଁ ସଂଜ୍ଞା ଦେଲେ ତାହା ସକ୍ରେଟିସ୍‌ଙ୍କ ମତଠାରୁ ଭିନ୍ନ ଥିଲା । ସଦ୍‌ଗୁଣ ବ୍ୟକ୍ତି ଓ ସମାଜର ଉତ୍କର୍ଷ ଓ ଜ୍ଞାନ ପାଇଁ ଉଦ୍ଦିଷ୍ଟ ବୋଲି ସକ୍ରେଟିସ୍ ବିଚାର କରୁଥିଲେ । ସଦ୍‌ଗୁଣ ସୁଖରୁ କ୍ଷାନ୍ତ ପାଇଁ ଉଦ୍ଦିଷ୍ଟ ନଥିଲା । ନିଜର କର୍ତ୍ତବ୍ୟ କରିବା ଏକ ନୈତିକ କାର୍ଯ୍ୟ, ଏହାର ପରିଣାମ ଯଦି ବି କେଉଁ କ୍ଷେତ୍ରରେ ସୁଖପ୍ରଦ ନ ହୁଏ, ତେବେ ମଧ୍ୟ ଏହା କରଣୀୟ, କାରଣ ଏହା ଏକ କର୍ତ୍ତବ୍ୟ । ଅବଶ୍ୟ ସକ୍ରେଟିସ୍ ନୈତିକତାର ସ୍ପଷ୍ଟ ସଂଜ୍ଞା ପ୍ରଦାନ କରିନାହାନ୍ତି । ସେ ନୈତିକତା ବା ସଦ୍‌ଗୁଣକୁ ସୁଖର ମାର୍ଗ ବୋଲି ଦର୍ଶାଇଛନ୍ତି । ସକ୍ରେଟିସ୍‌ଙ୍କର ଏହି ଭାବଧାରାକୁ ଆରିଷ୍ଟିପସ୍ ସ୍ୱୀକାର କରି ଏହାର ଭିନ୍ନ ବ୍ୟାଖ୍ୟା କରିଛନ୍ତି । ଜୀବନର ଶ୍ରେୟ ହେଉଛି ସଦ୍‌ଗୁଣ, ସଦ୍‌ଗୁଣ ସୁଖ ପାଇଁ ଉଦ୍ଦିଷ୍ଟ । ସୁତରାଂ ଆରିଷ୍ଟିପସ୍‌ଙ୍କ ମତରେ ସୁଖ ହିଁ ହେଉଛି ଜୀବନର ଲକ୍ଷ୍ୟ । ତେବେ ସୁଖର ସ୍ୱରୂପ କ'ଣ ? ସିରେନିକ୍‌ମାନେ ସୁଖ ଅର୍ଥ ମୁଖ୍ୟତଃ ଇନ୍ଦ୍ରିୟସୁଖକୁ ଗ୍ରହଣ କରୁଥିଲେ । ସୁଖ ହିଁ ଜୀବନଧାରାର ଲକ୍ଷ୍ୟ, କାରଣ କେହି ସୁଖର ବିପରୀତ 'ଦୁଃଖ' କାମନା କରେ ନାହିଁ । ସୁଖକୁ ସୁତରାଂ ସିରେନିକ୍‌ମାନେ ମନୁଷ୍ୟ ଜୀବନର ପରମ ଲକ୍ଷ୍ୟ ବୋଲି ବିଚାରର ଅବତାରଣା କରିଥିଲେ । ଆରିଷ୍ଟିପସ୍‌ଙ୍କର ଏହି ଭାବଧାରାକୁ ପ୍ରୋଟାଗୋରାସଙ୍କ ପରି ସଫିଷ୍ଟମାନେ ମୁଖ୍ୟତଃ ପ୍ରଭାବିତ କରିଥିଲେ । ପ୍ରୋଟାଗୋରାସ ସତ୍ୟର ବସ୍ତୁନିଷ୍ଠ ଭିତ୍ତିକୁ ଅସ୍ୱୀକାର କରୁଥିଲେ ଓ ଅନ୍ୟ ସଫିଷ୍ଟମାନେ ପ୍ରୋଟାଗୋରାସଙ୍କର ଏହି ଭାବନାକୁ ନୈତିକତା କ୍ଷେତ୍ରରେ ପ୍ରୟୋଗ କରିଥିଲେ । ଯାହା ବ୍ୟକ୍ତିର ମାନଦଣ୍ଡରେ ଠିକ୍, ତାହା ବ୍ୟକ୍ତି ପାଇଁ ଯଥାର୍ଥ । ପ୍ରତ୍ୟେକ ବ୍ୟକ୍ତି ହିଁ ନୈତିକ ବିଚାରର ମାନଦଣ୍ଡ । ବ୍ୟକ୍ତିର ଇଚ୍ଛା ବିରୁଦ୍ଧରେ ତାହା ଉପରେ କୌଣସି ନୈତିକ ଆଦର୍ଶ ବା ବିଚାରକୁ ଲଦି ଦିଆଯାଇପାରିବ ନାହିଁ । ଆରିଷ୍ଟିପସ୍ ଏହି ଭାବନା ସହ ସୁଖର ଭାବନାକୁ ସଂଯୋଜିତ କଲେ । ସୁଖ ହିଁ ବ୍ୟକ୍ତି ଜୀବନର ମୁଖ୍ୟ ଅଭିପ୍ରାୟ । ବ୍ୟକ୍ତିର ଏହି ଅଭିପ୍ରାୟ ବିରୁଦ୍ଧରେ କୌଣସି ବାହ୍ୟିକ ନିୟମ ବା ନୈତିକତାକୁ ବଳପୂର୍ବକ ନ୍ୟସ୍ତ କରାଯାଇ ପାରିବ ନାହିଁ । ଯାହା ବ୍ୟକ୍ତିର ସୁଖ ପାଇଁ ଅଭିପ୍ରେତ, ତାକୁ ପ୍ରତିହତ କରାଯାଇ ପାରିବ ନାହିଁ । ଯେପର୍ଯ୍ୟନ୍ତ ବ୍ୟକ୍ତିର ସୁଖ ପାଇଁ କିଛି ଉଦ୍ଦିଷ୍ଟ ତାକୁ ବାରଣ ବା ନିବୃତ୍ତ କରିବା ପାଇଁ ତା ଉପରେ ପ୍ରତିବନ୍ଧକ କରିବା ଯଥାର୍ଥ ନୁହେଁ । ମନ୍ଦ, ଅଶୁଭ ବୋଲି କିଛି ନାହିଁ, ଯଦି ତାହା ବ୍ୟକ୍ତିର ସୁଖର କାରଣ ବା ସୁଖ ପାଇଁ ଅଭିପ୍ରେତ ହୁଏ ।

ଜୀବନରେ ସୁଖ ହିଁ ଶ୍ରେୟ, ସୁଖ ହିଁ ସବୁକିଛି ଏହି ପ୍ରକାରର ଏକ ଦର୍ଶନ ସିରେନିକ୍‌ମାନେ ପ୍ରଚାର କରିଥିଲେ । ତେବେ କେଉଁ ସୁଖ ପାଇଁ ସେମାନେ କହୁଛନ୍ତି ? ସୁଖକୁ ଯଦି ଆମେ ସ୍ଥୁଳ ଅର୍ଥରେ ନେବା ଓ ଇନ୍ଦ୍ରିୟ ସୁଖ ଭିତରେ ସୀମାବଦ୍ଧ ରଖିବା ତେବେ ଏହି ଦର୍ଶନ ଏକ ସ୍ଥୁଳ ଉପଯୋଗିତାବାଦରେ ପରିଣତ ହେବ । ସାଧାରଣତଃ ସ୍ଥୁଳ ସୁଖବାଦ ଓ ମାର୍ଜିତ ତଥା ବୌଦ୍ଧିକ ସୁଖବାଦ ମଧ୍ୟରେ ପାର୍ଥକ୍ୟ କରାଯାଏ । ସୁଖ ଭିତରେ ଗୁଣାତ୍ମକ ପାର୍ଥକ୍ୟ କରାଯିବା ଯଥାର୍ଥ । ସମସ୍ତ ପ୍ରକାର ସୁଖ ଏକା ପ୍ରକାରର ବା ଏକା ସ୍ତରର ବୋଲି କୁହାଯାଇ ପାରିବ ନାହିଁ ।

ସିରେନିକ୍‌ମାନେ ବୌଦ୍ଧିକ ସୁଖକୁ ସ୍ୱୀକାର କରୁଛନ୍ତି, ତେବେ ଇନ୍ଦ୍ରିୟ ସୁଖ ଯେ ଅଧିକ ପ୍ରଗାଢ଼ ଓ ଶକ୍ତିଶାଳୀ ଏହା ସେମାନେ ମତ ଦେଉଛନ୍ତି । ବିଚାରହୀନ ଭାବରେ କେବଳ ସୁଖ ପାଇଁ କଳ୍ପନା କରିବା ବା ସୁଖର ଅନୁସରଣ କରିବାଦ୍ୱାରା ମଣିଷ ଅତି ନୀଚ ସ୍ତରକୁ ଚାଲିଯିବ । ସୁଖର କାମନା ଭିତରେ ସଂଯମତା ଓ ସାବଧାନତା ରହିବା ଦରକାର । ଯେଉଁ ସୁଖ ସାମୟିକ ଓ ଯେଉଁ ସୁଖ ପାଇଁ ଭବିଷ୍ୟତରେ ଯନ୍ତ୍ରଣା ଜର୍ଜରିତ ହେବାକୁ ହେବ ତାହା ପରିହାର ଯୋଗ୍ୟ । ସକ୍ରେଟିସ୍ ସୁଖ ଓ ଆନନ୍ଦକୁ ପ୍ରାଧାନ୍ୟ ଦେଉଛନ୍ତି । ସଦ୍‌ଗୁଣକୁ ସେ ଜ୍ଞାନ ଓ ଉତ୍କର୍ଷ ସହ ସଂଶ୍ଳିଷ୍ଟ କରି ତାହା ମାଧ୍ୟମରେ ସୁଖ ଲାଭର କଥା କହିଛନ୍ତି । ଜ୍ଞାନୀଜନ ମାନେ ନିଜର ଇନ୍ଦ୍ରିୟ ଉପରେ ସଂଯମତା ରକ୍ଷା କରିବା ସହ ଏ ପ୍ରକାର ସୁଖରେ ବ୍ରତୀ ହେବେ ଯାହା ଭବିଷ୍ୟତରେ କୌଣସି ଦୁଃଖର କାରଣ ହେବ ନାହିଁ । କିନ୍ତୁ ସିରେନିକ୍ ମାନେ ସୁଖ ସହିତ ଜ୍ଞାନ, ସଂଯମତା, ଉତ୍କର୍ଷ ଇତ୍ୟାଦି ଭାବନାକୁ ସଂଶ୍ଳିଷ୍ଟ କରିନାହାନ୍ତି । ସିରେନିକ୍‌ମାନେ ଅବଶ୍ୟ ଭିନ୍ନ ଭିନ୍ନ ଭାବରେ ସୁଖର ବ୍ୟାଖ୍ୟା ଦେଇଛନ୍ତି ।

ଆରିଷ୍ଟିପସ୍‌ଙ୍କ ଭାବଧାରାରେ ସୁଖର ମହତ୍ତ୍ୱକୁ ପ୍ରାଧାନ୍ୟ ଦିଆଯାଇଛି ତେବେ ତାଙ୍କ ଦର୍ଶନରେ କେତେକ ପରସ୍ପରବିରୋଧୀ ଉପାଦାନ ରହିଛି । ଫଳରେ ଆରିଷ୍ଟିପସ୍‌ଙ୍କର ଅନୁଗାମୀ ମାନେ ଭିନ୍ନ ଭିନ୍ନ ଭାବରେ ତାଙ୍କ ବିଚାରକୁ ବ୍ୟାଖ୍ୟା କରିଛନ୍ତି । ଯେଉଁ ସ୍ତରରେ ଦୁଃଖ, ଯନ୍ତ୍ରଣା ରହିଛି ତାକୁ ସବୁ ପରିସ୍ଥିତିରେ ପରିହାର କରିବା ଆବଶ୍ୟକ । ଜଣେ ବୁଦ୍ଧିମାନ ବ୍ୟକ୍ତି ନିଜ ଉପରେ ସର୍ବଦା ନିୟନ୍ତ୍ରଣ ରଖିବା ଦରକାର, ନିଜର କାମନା ବାସନାକୁ ବିଚାରଶୀଳ ଦିଗରେ ପରିଚାଳିତ କରିବା ଉଚିତ ଯେପରି ତାହା ଅଧିକ ଦୁଃଖର କାରଣ ନ ହୁଏ । ସିରେନିକ୍ ଆଦର୍ଶରେ ବୁଦ୍ଧିମାନର ସଂସାର ହେଉଛି ତା ଚାରିପାଖର ସମାଜ । ବୁଦ୍ଧିମାନ ବ୍ୟକ୍ତି ସର୍ବଦା ତାର ସୁଖ, ଆନନ୍ଦ ପାଇଁ ଚିନ୍ତିତ ହେବା ଯଥାର୍ଥ । ସେ ନିଜର ବୁଦ୍ଧି ଓ ଦୂରଦୃଷ୍ଟି ସାହାଯ୍ୟରେ କ'ଣ ତା ପାଇଁ ସୁଖପ୍ରଦ ଓ କ'ଣ ନୁହେଁ ତାହା ନିଜେ ହିଁ ସ୍ଥିର କରିବ ।

ଆନିସେରିସ ଥିଲେ ଆରିଷ୍ଟିପସ୍‌ଙ୍କର ଅନୁଗାମୀ । ଆରିଷ୍ଟିପସ୍‌ଙ୍କ ସିରେନିକ୍ ଭାବଧାରାର ସେ ଥିଲେ ସମର୍ଥକ । ଆନିସେରିସଙ୍କ ମତରେ ସୁଖ ହିଁ ଜୀବନର କାମ୍ୟ । ତେବେ ଏହି ସୁଖ ପାରିବାରିକ ଜୀବନ ଓ ଆତ୍ମୀୟତା ଭିତରେ ବ୍ୟକ୍ତିକୁ ଅଧିକ ମିଳିଥାଏ । ସୁତରାଂ ସୁଖପୂର୍ଣ୍ଣ ପାରିବାରିକ ଜୀବନ ଓ ଅନ୍ୟମାନଙ୍କ ସହ ବନ୍ଧୁତ୍ୱପୂର୍ଣ୍ଣ ସମ୍ବନ୍ଧକୁ ସେ ସର୍ବାଧିକ ମୂଲ୍ୟ ଦେଉଥିଲେ । ଏଣୁ ଜଣେ ନିଜ ପରିବାର ପାଇଁ ବା ନିଜର ବନ୍ଧୁମାନଙ୍କ ପାଇଁ ଯେକୌଣସି ତ୍ୟାଗ ସ୍ୱୀକାର କରିବା ଯଥାର୍ଥ । ପାରିବାରିକ ଜୀବନରେ ଏହି ତ୍ୟାଗର ମନୋଭାବ ରହିଲେ ଜୀବନ ପ୍ରୀତିପଦ ହୋଇଥାଏ ବୋଲି ଆନିସେରିସ ବିଚାର କରିଥିଲେ । ହିଗିସିଆସ୍ ବି ଥିଲେ ସିରେନିକ୍ ଜୀବନ-ଦର୍ଶନର ବ୍ୟକ୍ତି । ତେବେ ହିଗିସିଆସ୍ ଥିଲେ ନୈରାଶ୍ୟବାଦୀ । ତାଙ୍କ ମତରେ ଜୀବନ ଦୁଃଖପୂର୍ଣ୍ଣ ଓ ମନୁଷ୍ୟ ଜୀବନରେ ଖୁବ୍ କମ୍ ସୁଖ ମିଳିଥାଏ । ଜୀବନର ବିଭିନ୍ନ ସ୍ତରରେ ମନୁଷ୍ୟକୁ ଦୁଃଖ, ପ୍ରତିବନ୍ଧକ ଓ ନୈରାଶ୍ୟର ସାମ୍ନା କରିବାକୁ ହୁଏ । ଏଣୁ ଆମେ ଆମର ଦୁଃଖକୁ କେତେ ପରିହାର କରିପାରିବା ସେ ପାଇଁ ଚେଷ୍ଟା କରିବା ଉଚିତ୍ । ଆଲେକ୍‌ଜାଣ୍ଡ୍ରିଆ ସହରରେ ତାଙ୍କ ଭାଷଣ ଲୋକମାନଙ୍କୁ ଏପରି ନୈରାଶ୍ୟବାଦ ଦିଗରେ ପ୍ରଭାବିତ

ଆରିଷ୍ଟିପସ୍ ସକ୍ରେଟିସ୍‌ଙ୍କ ଭାବଧାରାକୁ ଗ୍ରହଣ କରୁଥିଲେ ମଧ୍ୟ ଏଥିରେ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ କରିଥିଲେ । ସକ୍ରେଟିସ୍ ସଦ୍‌ଗୁଣକୁ ଜୀବନର ଶ୍ରେୟ ଭାବରେ ଗ୍ରହଣ କରି ସଦ୍‌ଗୁଣର ଅଧିକାରୀ ବ୍ୟକ୍ତି ସୁଖୀ ବୋଲି କହୁଥିଲେ । ସୁଖଲାଭ ଯେ ଜୀବନର ପରମ ଲକ୍ଷ୍ୟ ଏହା ଆରିଷ୍ଟିପସ୍ ବିଚାର କରୁଥିଲେ । ସଦ୍‌ଗୁଣ ଜୀବନରେ କାହିଁକି ଆବଶ୍ୟକ- ଏହି ପ୍ରଶ୍ନ ଉପରେ ସିରେନିକ୍‌ମାନେ ସୁଖଲାଭ ପାଇଁ ଏହା ଯେ ଆବଶ୍ୟକ ଏହା ଭାବୁଥିଲେ । ସେମାନେ ସଦ୍‌ଗୁଣର ଯେଉଁ ସଂଜ୍ଞା ଦେଲେ ତାହା ସକ୍ରେଟିସ୍‌ଙ୍କ ମତଠାରୁ ଭିନ୍ନ ଥିଲା । ସଦ୍‌ଗୁଣ ବ୍ୟକ୍ତି ଓ ସମାଜର ଉତ୍କର୍ଷ ଓ ଜ୍ଞାନ ପାଇଁ ଉଦ୍ଦିଷ୍ଟ ବୋଲି ସକ୍ରେଟିସ୍ ବିଚାର କରୁଥିଲେ । ସଦ୍‌ଗୁଣ ସୁଖରୁ କ୍ଷାନ୍ତ ପାଇଁ ଉଦ୍ଦିଷ୍ଟ ନଥିଲା । ନିଜର କର୍ତ୍ତବ୍ୟ କରିବା ଏକ ନୈତିକ କାର୍ଯ୍ୟ, ଏହାର ପରିଣାମ ଯଦି ବି କେଉଁ କ୍ଷେତ୍ରରେ ସୁଖପ୍ରଦ ନ ହୁଏ, ତେବେ ମଧ୍ୟ ଏହା କରଣୀୟ, କାରଣ ଏହା ଏକ  କର୍ତ୍ତବ୍ୟ । ଅବଶ୍ୟ ସକ୍ରେଟିସ୍ ନୈତିକତାର ସ୍ପଷ୍ଟ ସଂଜ୍ଞା ପ୍ରଦାନ କରିନାହାନ୍ତି । ସେ ନୈତିକତା ବା ସଦ୍‌ଗୁଣକୁ ସୁଖର ମାର୍ଗ ବୋଲି ଦର୍ଶାଇଛନ୍ତି । ସକ୍ରେଟିସ୍‌ଙ୍କର ଏହି ଭାବଧାରାକୁ ଆରିଷ୍ଟିପସ୍ ସ୍ୱୀକାର କରି ଏହାର ଭିନ୍ନ ବ୍ୟାଖ୍ୟା କରିଛନ୍ତି । ଜୀବନର ଶ୍ରେୟ ହେଉଛି ସଦ୍‌ଗୁଣ, ସଦ୍‌ଗୁଣ ସୁଖ ପାଇଁ ଉଦ୍ଦିଷ୍ଟ । ସୁତରାଂ ଆରିଷ୍ଟିପସ୍‌ଙ୍କ ମତରେ ସୁଖ ହିଁ ହେଉଛି ଜୀବନର ଲକ୍ଷ୍ୟ । ତେବେ ସୁଖର ସ୍ୱରୂପ କ'ଣ ? ସିରେନିକ୍‌ମାନେ  ସୁଖ ଅର୍ଥ ମୁଖ୍ୟତଃ ଇନ୍ଦ୍ରିୟସୁଖକୁ ଗ୍ରହଣ କରୁଥିଲେ । ସୁଖ ହିଁ ଜୀବନଧାରାର ଲକ୍ଷ୍ୟ, କାରଣ କେହି ସୁଖର ବିପରୀତ 'ଦୁଃଖ' କାମନା କରେ ନାହିଁ । ସୁଖକୁ ସୁତରାଂ ସିରେନିକ୍‌ମାନେ ମନୁଷ୍ୟ ଜୀବନର ପରମ ଲକ୍ଷ୍ୟ ବୋଲି ବିଚାରର ଅବତାରଣା କରିଥିଲେ । ଆରିଷ୍ଟିପସ୍‌ଙ୍କର ଏହି ଭାବଧାରାକୁ ପ୍ରୋଟାଗୋରାସଙ୍କ ପରି ସଫିଷ୍ଟମାନେ ମୁଖ୍ୟତଃ ପ୍ରଭାବିତ କରିଥିଲେ । ପ୍ରୋଟାଗୋରାସ ସତ୍ୟର ବସ୍ତୁନିଷ୍ଠ ଭିତ୍ତିକୁ ଅସ୍ୱୀକାର କରୁଥିଲେ ଓ ଅନ୍ୟ ସଫିଷ୍ଟମାନେ ପ୍ରୋଟାଗୋରାସଙ୍କର ଏହି ଭାବନାକୁ ନୈତିକତା କ୍ଷେତ୍ରରେ ପ୍ରୟୋଗ କରିଥିଲେ । ଯାହା ବ୍ୟକ୍ତିର ମାନଦଣ୍ଡରେ ଠିକ୍, ତାହା ବ୍ୟକ୍ତି ପାଇଁ ଯଥାର୍ଥ । ପ୍ରତ୍ୟେକ ବ୍ୟକ୍ତି ହିଁ ନୈତିକ ବିଚାରର ମାନଦଣ୍ଡ । ବ୍ୟକ୍ତିର ଇଚ୍ଛା ବିରୁଦ୍ଧରେ ତାହା ଉପରେ କୌଣସି ନୈତିକ ଆଦର୍ଶ ବା ବିଚାରକୁ ଲଦି ଦିଆଯାଇପାରିବ ନାହିଁ । ଆରିଷ୍ଟିପସ୍ ଏହି ଭାବନା ସହ ସୁଖର ଭାବନାକୁ ସଂଯୋଜିତ କଲେ । ସୁଖ ହିଁ ବ୍ୟକ୍ତି ଜୀବନର ମୁଖ୍ୟ ଅଭିପ୍ରାୟ । ବ୍ୟକ୍ତିର ଏହି ଅଭିପ୍ରାୟ ବିରୁଦ୍ଧରେ କୌଣସି ବାହ୍ୟିକ ନିୟମ ବା ନୈତିକତାକୁ ବଳପୂର୍ବକ ନ୍ୟସ୍ତ କରାଯାଇ ପାରିବ ନାହିଁ । ଯାହା ବ୍ୟକ୍ତିର ସୁଖ ପାଇଁ ଅଭିପ୍ରେତ, ତାକୁ ପ୍ରତିହତ କରାଯାଇ ପାରିବ ନାହିଁ । ଯେପର୍ଯ୍ୟନ୍ତ ବ୍ୟକ୍ତିର ସୁଖ ପାଇଁ କିଛି ଉଦ୍ଦିଷ୍ଟ ତାକୁ ବାରଣ ବା ନିବୃତ୍ତ କରିବା ପାଇଁ ତା ଉପରେ ପ୍ରତିବନ୍ଧକ କରିବା ଯଥାର୍ଥ ନୁହେଁ । ମନ୍ଦ, ଅଶୁଭ ବୋଲି କିଛି ନାହିଁ, ଯଦି ତାହା ବ୍ୟକ୍ତିର ସୁଖର କାରଣ ବା ସୁଖ ପାଇଁ ଅଭିପ୍ରେତ ହୁଏ ।

ଜୀବନରେ ସୁଖ ହିଁ ଶ୍ରେୟ, ସୁଖ ହିଁ ସବୁକିଛି ଏହି ପ୍ରକାରର ଏକ ଦର୍ଶନ ସିରେନିକ୍‌ମାନେ ପ୍ରଚାର କରିଥିଲେ । ତେବେ କେଉଁ ସୁଖ ପାଇଁ ସେମାନେ କହୁଛନ୍ତି ? ସୁଖକୁ ଯଦି ଆମେ ସ୍ଥୁଳ ଅର୍ଥରେ ନେବା ଓ ଇନ୍ଦ୍ରିୟ ସୁଖ ଭିତରେ ସୀମାବଦ୍ଧ ରଖିବା ତେବେ ଏହି ଦର୍ଶନ ଏକ ସ୍ଥୁଳ ଉପଯୋଗିତାବାଦରେ ପରିଣତ ହେବ । ସାଧାରଣତଃ ସ୍ଥୁଳ ସୁଖବାଦ ଓ ମାର୍ଜିତ ତଥା ବୌଦ୍ଧିକ ସୁଖବାଦ ମଧ୍ୟରେ ପାର୍ଥକ୍ୟ କରାଯାଏ । ସୁଖ ଭିତରେ ଗୁଣାତ୍ମକ ପାର୍ଥକ୍ୟ କରାଯିବା ଯଥାର୍ଥ । ସମସ୍ତ ପ୍ରକାର ସୁଖ ଏକା ପ୍ରକାରର ବା ଏକା ସ୍ତରର ବୋଲି କୁହାଯାଇ ପାରିବ ନାହିଁ ।

ସିରେନିକ୍‌ମାନେ ବୌଦ୍ଧିକ ସୁଖକୁ ସ୍ୱୀକାର କରୁଛନ୍ତି, ତେବେ ଇନ୍ଦ୍ରିୟ ସୁଖ ଯେ ଅଧିକ ପ୍ରଗାଢ଼ ଓ ଶକ୍ତିଶାଳୀ ଏହା ସେମାନେ ମତ ଦେଉଛନ୍ତି । ବିଚାରହୀନ ଭାବରେ କେବଳ ସୁଖ ପାଇଁ କଳ୍ପନା କରିବା ବା ସୁଖର ଅନୁସରଣ କରିବାଦ୍ୱାରା ମଣିଷ ଅତି ନୀଚ ସ୍ତରକୁ ଚାଲିଯିବ । ସୁଖର କାମନା ଭିତରେ ସଂଯମତା ଓ ସାବଧାନତା ରହିବା ଦରକାର । ଯେଉଁ ସୁଖ ସାମୟିକ ଓ ଯେଉଁ ସୁଖ ପାଇଁ ଭବିଷ୍ୟତରେ ଯନ୍ତ୍ରଣା ଜର୍ଜରିତ ହେବାକୁ ହେବ ତାହା ପରିହାର ଯୋଗ୍ୟ । ସକ୍ରେଟିସ୍ ସୁଖ ଓ ଆନନ୍ଦକୁ ପ୍ରାଧାନ୍ୟ ଦେଉଛନ୍ତି । ସଦ୍‌ଗୁଣକୁ ସେ ଜ୍ଞାନ ଓ ଉତ୍କର୍ଷ ସହ ସଂଶ୍ଲିଷ୍ଟ କରି ତାହା ମାଧ୍ୟମରେ ସୁଖ ଲାଭର କଥା କହିଛନ୍ତି । ଜ୍ଞାନୀଜନ ମାନେ ନିଜର ଇନ୍ଦ୍ରିୟ ଉପରେ ସଂଯମତା ରକ୍ଷା କରିବା ସହ ଏ ପ୍ରକାର ସୁଖରେ ବ୍ରତୀ ହେବେ ଯାହା ଭବିଷ୍ୟତରେ କୌଣସି ଦୁଃଖର କାରଣ ହେବ ନାହିଁ । କିନ୍ତୁ ସିରେନିକ୍ ମାନେ ସୁଖ ସହିତ ଜ୍ଞାନ, ସଂଯମତା, ଉତ୍କର୍ଷ ଇତ୍ୟାଦି ଭାବନାକୁ ସଂଶ୍ଲିଷ୍ଟ କରିନାହାନ୍ତି । ସିରେନିକ୍‌ମାନେ ଅବଶ୍ୟ ଭିନ୍ନ ଭିନ୍ନ ଭାବରେ ସୁଖର ବ୍ୟାଖ୍ୟା ଦେଇଛନ୍ତି ।

ଆରିଷ୍ଟିପସ୍‌ଙ୍କ ଭାବଧାରାରେ ସୁଖର ମହତ୍ତ୍ୱକୁ ପ୍ରାଧାନ୍ୟ ଦିଆଯାଇଛି ତେବେ ତାଙ୍କ ଦର୍ଶନରେ କେତେକ ପରସ୍ପରବିରୋଧୀ ଉପାଦାନ ରହିଛି । ଫଳରେ ଆରିଷ୍ଟିପସ୍‌ଙ୍କର ଅନୁଗାମୀ ମାନେ ଭିନ୍ନ ଭିନ୍ନ ଭାବରେ ତାଙ୍କ ବିଚାରକୁ ବ୍ୟାଖ୍ୟା କରିଛନ୍ତି । ଯେଉଁ ସ୍ତରରେ ଦୁଃଖ, ଯନ୍ତ୍ରଣା ରହିଛି ତାକୁ ସବୁ ପରିସ୍ଥିତିରେ ପରିହାର କରିବା ଆବଶ୍ୟକ । ଜଣେ ବୁଦ୍ଧିମାନ ବ୍ୟକ୍ତି ନିଜ ଉପରେ ସର୍ବଦା ନିୟନ୍ତ୍ରଣ ରଖିବା ଦରକାର, ନିଜର କାମନା ବାସନାକୁ ବିଚାରଶୀଳ ଦିଗରେ ପରିଚାଳିତ କରିବା ଉଚିତ ଯେପରି ତାହା ଅଧିକ ଦୁଃଖର କାରଣ ନ ହୁଏ । ସିରେନିକ୍ ଆଦର୍ଶରେ ବୁଦ୍ଧିମାନର ସଂସାର ହେଉଛି ତା ଚାରିପାଖର ସମାଜ । ବୁଦ୍ଧିମାନ ବ୍ୟକ୍ତି ସର୍ବଦା ତାର ସୁଖ, ଆନନ୍ଦ ପାଇଁ ଚିନ୍ତିତ ହେବା ଯଥାର୍ଥ । ସେ ନିଜର ବୁଦ୍ଧି ଓ ଦୂରଦୃଷ୍ଟି ସାହାଯ୍ୟରେ କ'ଣ ତା ପାଇଁ ସୁଖପ୍ରଦ ଓ କ'ଣ ନୁହେଁ ତାହା ନିଜେ ହିଁ ସ୍ଥିର କରିବ ।

ଆନିସେରିସ ଥିଲେ ଆରିଷ୍ଟିପସ୍‌ଙ୍କର ଅନୁଗାମୀ । ଆରିଷ୍ଟିପସ୍‌ଙ୍କ ସିରେନିକ୍ ଭାବଧାରାର ସେ ଥିଲେ ସମର୍ଥକ । ଆନିସେରିସଙ୍କ ମତରେ ସୁଖ ହିଁ ଜୀବନର କାମ୍ୟ । ତେବେ ଏହି ସୁଖ ପାରିବାରିକ ଜୀବନ ଓ ଆତ୍ମୀୟତା ଭିତରେ ବ୍ୟକ୍ତିକୁ ଅଧିକ ମିଳିଥାଏ । ସୁତରାଂ ସୁଖପୂର୍ଣ୍ଣ ପାରିବାରିକ ଜୀବନ ଓ ଅନ୍ୟମାନଙ୍କ ସହ ବନ୍ଧୁତ୍ୱପୂର୍ଣ୍ଣ ସମ୍ବନ୍ଧକୁ ସେ ସର୍ବାଧିକ ମୂଲ୍ୟ ଦେଉଥିଲେ । ଏଣୁ ଜଣେ ନିଜ ପରିବାର ପାଇଁ ବା ନିଜର ବନ୍ଧୁମାନଙ୍କ ପାଇଁ ଯେକୌଣସି ତ୍ୟାଗ ସ୍ୱୀକାର କରିବା ଯଥାର୍ଥ । ପାରିବାରିକ ଜୀବନରେ ଏହି ତ୍ୟାଗର ମନୋଭାବ ରହିଲେ ଜୀବନ ପ୍ରୀତିପଦ ହୋଇଥାଏ ବୋଲି ଆନିସେରିସ ବିଚାର କରିଥିଲେ । ହିଗିସିଆସ୍ ବି ଥିଲେ ସିରେନିକ୍ ଜୀବନ-ଦର୍ଶନର ବ୍ୟକ୍ତି । ତେବେ ହିଗିସିଆସ୍ ଥିଲେ ନୈରାଶ୍ୟବାଦୀ । ତାଙ୍କ ମତରେ ଜୀବନ ଦୁଃଖପୂର୍ଣ୍ଣ ଓ ମନୁଷ୍ୟ ଜୀବନରେ ଖୁବ୍ କମ୍ ସୁଖ ମିଳିଥାଏ । ଜୀବନର ବିଭିନ୍ନ ସ୍ତରରେ ମନୁଷ୍ୟକୁ ଦୁଃଖ, ପ୍ରତିବନ୍ଧକ ଓ ନୈରାଶ୍ୟର ସାମ୍ନା କରିବାକୁ ହୁଏ । ଏଣୁ ଆମେ ଆମର ଦୁଃଖକୁ କେତେ ପରିହାର କରିପାରିବା ସେ ପାଇଁ ଚେଷ୍ଟା କରିବା ଉଚିତ୍ । ଆଲେକ୍‌ଜାଣ୍ଡ୍ରିଆ ସହରରେ ତାଙ୍କ ଭାଷଣ ଲୋକମାନଙ୍କୁ ଏପରି ନୈରାଶ୍ୟବାଦ ଦିଗରେ ପ୍ରଭାବିତ

କରିଥିଲା ଯେ କେତେକ ଲୋକ ତାଙ୍କ ବକ୍ତୃତା ଶୁଣି ଆତ୍ମହତ୍ୟା କରିବାର କାହାଣୀ ରହିଛି । ତାଙ୍କୁ କୁହାଯାଉଥିଲା ମୃତ୍ୟୁର ପରାମର୍ଶଦାତା (Counsellor of death) ଫଳରେ ମିଶରର ସମ୍ରାଟ ଟଲେମୀ ଲେଗି ତାଙ୍କ ବକ୍ତୃତା ଉପରେ ପ୍ରତିବନ୍ଧକ ଲଗାଇଥିଲେ । ଆନିସେରିସ ସିରେନିକ୍ ଭାବଧାରାର ସକାରାତ୍ମକ ଦିଗର ପ୍ରବକ୍ତା ଥିବା ବେଳେ ହିଗିସିଆସ୍ ସିରେନିକ୍ ଦର୍ଶନର ନକାରାତ୍ମକ ଦିଗ ଉପରେ ଗୁରୁତ୍ୱ ଦେଉଥିଲେ । ଥିଓଡରସ ଥିଲେ ଅନ୍ୟ ଜଣେ ସିରେନିକ୍ ଭାବଧାରାର ବ୍ୟକ୍ତି । ଥିଓଡରସ ନିରୀଶ୍ୱରବାଦୀ ଥିଲେ ଓ ଗ୍ରୀକ୍ ସମାଜର ଦେବ ଦେବୀଙ୍କୁ ଅସ୍ୱୀକାର କରୁଥିଲେ । ସେ ସଫଳ ଜୀବନ ପାଇଁ ବାହ୍ୟିକ ପରିବେଶକୁ ପ୍ରାଧାନ୍ୟ ଦେଉଥିଲେ । ବ୍ୟକ୍ତିଗତ ସୁଖ ବା ତୃପ୍ତି କ୍ଷେତ୍ରରେ ସେ ନିରାସକ୍ତ ଥିଲେ । ମାନସିକ ଶାନ୍ତିକୁ ସେ ଯଥାର୍ଥ ସୁଖ ବୋଲି ମନେ କରୁଥିଲେ ଓ ପରିସ୍ଥିତି ଅନୁଯାୟୀ ଜୀବନକୁ ପରିଚାଳିତ କରିବା ଯଥାର୍ଥ ବୋଲି ଭାବୁଥିଲେ ।

ଆରିଷ୍ଟିପସ୍ ସିରେନିକ୍ ଜୀବନ ଦୃଷ୍ଟିର ପ୍ରବକ୍ତା ଓ ପ୍ରତିଷ୍ଠାତା ଥିଲେ ମଧ୍ୟ ବିଭିନ୍ନ ସିରେନିକ୍ ସମର୍ଥକ ଏହି ବିଚାରଧାରାକୁ ନାନା ଦିଗରେ ବ୍ୟାଖ୍ୟା କରିଥିଲେ । ଏହି ଭାବଧାରାକୁ କେତେକ ସୁଖବାଦୀ ଦର୍ଶନ ବୋଲି ଅଭିହିତ କରିଛନ୍ତି । ସମସ୍ତେ ଆରିଷ୍ଟିପସ୍‌ଙ୍କର ଆଂଶିକ ଅନୁଗାମୀ ହେଲେ ମଧ୍ୟ ସେମାନେ ଏକ ଦାର୍ଶନିକ ସ୍କୁଲ ପ୍ରତିଷ୍ଠା କରିନାହାନ୍ତି ବୋଲି ଗ୍ରୀକ୍ ଦର୍ଶନର ଐତିହାସିକ ମାନେ ମତ ଦେଇଛନ୍ତି । ତେବେ ସେମାନଙ୍କ ମଧ୍ୟରେ କିଛି ସାମଂଜସ୍ୟ ଯେ ରହିଥିଲା ଏହା କୁହାଯାଇପାରେ ।

### (ଗ) ମେଗାରିକ୍‌ବାଦ:-

ମେଗାରିକ୍‌ବାଦ ବା ମେଗାରିକ୍ ସ୍କୁଲର ପ୍ରତିଷ୍ଠାତା ଥିଲେ ଇଉକ୍ଲିଡ୍ । ଇଉକ୍ଲିଡ୍ (Euclid) ଥିଲେ ଏଥେନ୍‌ସ ପଡୋଶୀ ଜନରାଜ୍ୟ ମେଗରାର ଅଧିବାସୀ । ତେବେ ଏହି ଇଉକ୍ଲିଡ ଗଣିତଜ୍ଞ ଇଉକ୍ଲିଡ୍ ନୁହନ୍ତି । ଇଉକ୍ଲିଡ୍ ଥିଲେ ସକ୍ରେଟିସ୍‌ଙ୍କର ଅନୁଗାମୀ । କଥିତ ଅଛି ଯେ ଖ୍ରୀ.ପୂ. ୪୩୧, ୪୩୨ ସମୟକୁ ମେଗରାର ଅଧିବାସୀ ମାନଙ୍କର ଏଥେନ୍‌ସକୁ ଆସିବାରେ ବାରଣ ରହିଥିଲା । ତେବେ ଇଉକ୍ଲିଡ୍ ସନ୍ଧ୍ୟାରେ ନାରୀ ବେଶରେ ଆସି ସକ୍ରେଟିସ୍‌ଙ୍କ ପାଖରେ ପହଞ୍ଚୁଥିଲେ ଓ ତାଙ୍କ ସହ ଆଲୋଚନା କରି ଫେରୁଥିଲେ । ସକ୍ରେଟିସ୍‌ଙ୍କ ମୃତ୍ୟୁ ସମୟରେ ଇଉକ୍ଲିଡ୍ ଉପସ୍ଥିତ ଥିବା ପ୍ଲେଟୋଙ୍କ ଡାଏଲଗ୍‌ରେ ଉଲ୍ଲେଖ ରହିଛି । ସକ୍ରେଟିସ୍‌ଙ୍କ ଦେହାନ୍ତ ପରେ ପ୍ଲେଟୋ ଓ କେତେକ ସକ୍ରେଟିସ୍‌ଙ୍କ ଅନୁଗାମୀ ଇଉକ୍ଲିଡ୍‌ଙ୍କ ଘରେ ମେଗରାରେ ଅଶ୍ରୟ ନେଇଥିବା ଜଣାଯାଏ । ଇଉକ୍ଲିଡ୍ ଯେଉଁ ଦାର୍ଶନିକ ବିଚାରର ଅବତାରଣା କରିଥିଲେ ଓ ସେଥିରେ କେତେକ ଅନୁପ୍ରାଣିତ ହୋଇଥିଲେ ଯାହା "ମେଗାରିକ ସ୍କୁଲ" ଭାବରେ ଖ୍ୟାତ ।

ଇଉକ୍ଲିଡ୍‌ଙ୍କ ଦର୍ଶନରେ ସକ୍ରେଟିସ୍‌ଙ୍କ ଭାବଧାରା ଓ ଇଲୀୟ ଦାର୍ଶନିକ ପାର୍ମେନିଡୀସଙ୍କ ବିଚାରର ସମନ୍ୱୟ ହୋଇଥିବା ଜଣାଯାଏ । ସକ୍ରେଟିସ୍‌ଙ୍କର ଏକ ସିଦ୍ଧାନ୍ତ ଥିଲା 'ସଦ୍‌ଗୁଣ ହେଉଛି ଜ୍ଞାନ' (Virtue is knowledge) । ତେବେ କେଉଁ ଜ୍ଞାନ, ସେ ଜ୍ଞାନର ସ୍ୱରୂପ କ'ଣ ? ଏହି ପ୍ରଶ୍ନର ସମାଧାନ କ୍ଷେତ୍ରରେ ଇଉକ୍ଲିଡ୍‌ଙ୍କ ଭାବନାକୁ ପାର୍ମେନିଡୀସଙ୍କ ଦର୍ଶନ ପ୍ରଭାବିତ କରିଥିବା ଜଣାଯାଏ । ପାର୍ମେନିଡୀସଙ୍କ ବିଚାରରେ ପରମ ସତ୍ତା ଏକ ବୋଲି

ଭାବନା ରହିଥିଲା । ବିବିଧତା, ଗତିଶୀଳତା ବାସ୍ତବ ନୁହେଁ, ସେ ସବୁ ଭ୍ରମ ବୋଲି ଇଲୀୟ ଦାର୍ଶନିକମାନେ ମନେ କରୁଥିଲେ । ସେହିପରି ଇନ୍ଦ୍ରିୟ-ପ୍ରତିଭାତ ଜ୍ଞାନ ବାସ୍ତବ ନୁହଁ । ଯାହା ସତ୍ ତାହା ହିଁ ବାସ୍ତବ । ସଂଭୂତ ବା ବିକମିଙ୍ଗ୍ ସତ୍ ନୁହେଁ । ଯଦି ସଦ୍‌ଗୁଣକୁ ଜ୍ଞାନ ଭାବରେ ସ୍ୱୀକାର କରାଯିବ, ତେବେ ସେହି ଜ୍ଞାନ ହିଁ ହେବ ସତ୍‌ର ଜ୍ଞାନ । ସକ୍ରେଟିସ୍‌ଙ୍କ ବିଚାରରେ ଏକ ମୁଖ୍ୟ ଭାବନା ଥିଲା ଉତ୍କର୍ଷ ହିଁ ମଙ୍ଗଳ ବା ଶ୍ରେୟ । ସକ୍ରେଟିସ୍‌ଙ୍କ ପ୍ରତ୍ୟୟ "Good" କୁ ଆମ ପରିଭାଷାରେ ଉତ୍କର୍ଷ, ମଙ୍ଗଳ, ଶୁଭ ଇତ୍ୟାଦି ଅର୍ଥରେ ବ୍ୟବହାର କରାଯାଉଛି ଓ ଏଠାରେ ଆମେ ଉତ୍କର୍ଷ ଅର୍ଥରେ Good କୁ ବ୍ୟବହାର କରିବା । ସେହିପରି ପାର୍ମେନିଡୀସଙ୍କ ଦର୍ଶନରେ ଏକ ମୌଳିକ ପ୍ରତ୍ୟୟ ହେଉଛି Being ବା ସତ୍ । ଏହି ଦୁଇ ପ୍ରତ୍ୟୟକୁ (ଉତ୍କର୍ଷ ଓ ସତ୍) ଇଉକ୍ଲିଡ୍ ସଂଯୋଜିତ କରିଛନ୍ତି । ତାଙ୍କ ମତରେ ଉତ୍କର୍ଷ ହିଁ ସତ୍ । ଉତ୍କର୍ଷ, ସତ୍, ଈଶ୍ୱର, ମଙ୍ଗଳ, ଦେବତ୍ୱ ଇତ୍ୟାଦି ଏକ ପ୍ରତ୍ୟୟର ବିଭିନ୍ନ ଅଭିବ୍ୟକ୍ତି । ଯାହା ସତ୍ ତାହାର ବିପରୀତ ହେଉଛି ଅସତ୍ । ବହୁତ୍ୱ, ବିବିଧତ୍ୱ, ସଂଭୂତ ଇତ୍ୟାଦି ହେଉଛି ଅସତ୍ । ଅସତ୍ ହେଉଛି ଅଶୁଭ (evil) । ଯାହା ଅସତ୍ ବା ଅଶୁଭ ତାହା ଭ୍ରମ । ଅଶୁଭର ବାସ୍ତବ ସତ୍ତା ନାହିଁ । ସତ୍ ବା ଉତ୍କର୍ଷ ହେଉଛି ପରମ ସତ୍ୟ । ସକ୍ରେଟିସ୍ ସଦ୍‌ଗୁଣକୁ ଜ୍ଞାନ ଭାବରେ ଗ୍ରହଣ କଲା ବେଳେ ଜ୍ଞାନକୁ ଏଠାରେ ସତ୍ ଅର୍ଥରେ ନେଇଛନ୍ତି ବୋଲି ଇଉକ୍ଲିଡ୍ ଦର୍ଶାଇଛନ୍ତି । ସଦ୍‌ଗୁଣର ବିଭିନ୍ନ ଅଭିବ୍ୟକ୍ତି ହେଉଛି କରୁଣା, ସମ୍ବେଦନଶୀଳତା, ସଂଯମତା, ବିଜ୍ଞତା ଇତ୍ୟାଦି । ସତ୍ (Being) ଓ ସଦ୍‌ଗୁଣ (Virtue) ଭିତରେ ଇଉକ୍ଲିଡ୍ ମଧ୍ୟ ସମନ୍ୱୟ ଆଣିଛନ୍ତି ।

ଇଉକ୍ଲିଡ୍ ଇଲୀୟ ଦାର୍ଶନିକ ଜେନୋଙ୍କ ଭାବଧାରାର ମଧ୍ୟ ସୂଚନା ଦେଇଛନ୍ତି । ଜେନୋଙ୍କ ମତରେ ବିବିଧତା ଓ ଗତିଶୀଳତା କେବଳ ଅସତ୍ ନୁହଁନ୍ତି ସେମାନେ ଅସମ୍ଭବ, କାରଣ ସେମାନେ ପରସ୍ପର ବିରୋଧୀ । ଇଉକ୍ଲିଡ୍‌ଙ୍କ ପରବର୍ତ୍ତୀ ମେଗାରିକ ସ୍କୁଲର କେତେକ ଦାର୍ଶନିକ ଜେନୋଙ୍କ ଦ୍ୱନ୍ଦ୍ୱନ୍ୟାୟ ଆଧାରରେ ଦର୍ଶାଇଛନ୍ତି ଯେ ଅସତ୍ କେବଳ ଅସମ୍ଭବ ନୁହେଁ, ସକଳ ସମ୍ଭାବନା ସତ୍ ଭିତରେ ସଂଯୁକ୍ତ । ଯାହାର ସମ୍ଭାବନା ରହିଛି ତାହା ବାସ୍ତବ । ଯାହା ବାସ୍ତବ ତାହା ସତ୍ ।

ଇଉକ୍ଲିଡ୍‌ଙ୍କ ପରେ ମେଗାରିକ ସ୍କୁଲର ଦାର୍ଶନିକମାନେ ଇଲୀୟ ଦାର୍ଶନିକ ଧାରାରେ ବିଭିନ୍ନ ପ୍ରହେଳିକାମାନ ସୃଷ୍ଟି କଲେ । ଦ୍ୱନ୍ଦ୍ୱନ୍ୟାୟକୁ ବିଭିନ୍ନ କ୍ଷେତ୍ରରେ ପ୍ରୟୋଗ କରି ସେମାନେ ସେପରି କରିବା ଭିତରେ ଦାର୍ଶନିକ ଭାବନା କ୍ଷେତ୍ରରେ ଗମ୍ଭୀର ଚର୍ଚ୍ଚା ଭିତରୁ ଅପସରି ଗଲେ । ଏହା ସହିତ ସେମାନଙ୍କ ମଧ୍ୟରୁ କେତେକ ସଫିଷ୍ଟ ଭାବଧାରାରେ ସଂପୃକ୍ତ ହେବା ପ୍ଲେଟୋଙ୍କ ଡାଏଲଗ୍‌ରୁ ଜଣାପଡେ ।

ଉପସଂହାରରେ ଏହା କୁହାଯାଇପାରେ ଯେ ସକ୍ରେଟିସ୍‌ଙ୍କ ପରେ ତାଙ୍କ ଭାବଧାରାରୁ ତିନୋଟି ଧାରା ସୃଷ୍ଟି ହୋଇଥିଲା । ଆଣ୍ଟିସ୍ଥେନିସ୍ ସିନିକ୍‌ବାଦ, ଆରିଷ୍ଟିପସ୍ ସିରେନିକ୍‌ବାଦ ଓ ଇଉକ୍ଲିଡ୍ ମେଗାରିକ୍ ସ୍କୁଲର ଆରମ୍ଭ କରିଥିଲେ । ସିନିକ୍‌ମାନେ ସଦ୍‌ଗୁଣକୁ ଆଧାରକରି ବୈରାଗ୍ୟବାଦର ବିକାଶ କଲା ବେଳେ ସିରେନିକ୍‌ମାନେ ସୁଖବାଦୀ ଜୀବନଦର୍ଶନର ଭିତ୍ତି ପକାଇଥିଲେ । ଏହାପରେ ମେଗାରିକମାନେ ଦ୍ୱନ୍ଦ୍ୱନ୍ୟାୟ ଆଧାରରେ ପ୍ରହେଳିକା ମାନଙ୍କର ବିକାଶ କରିଥିଲେ । ଏସବୁକୁ ଗ୍ରୀକ୍ ଦର୍ଶନର ଐତିହାସିକ ମାନେ ଅର୍ଦ୍ଧ-ସକ୍ରେଟିସୀୟ (Semi-Socratics)

ଭାବଧାରା ଭାବେ ପ୍ରକାଶ କରିଛନ୍ତି । ସକ୍ରେଟିସ୍‌ଙ୍କ ଭାବଧାରାରୁ କିଛି ପ୍ରତ୍ୟୟକୁ ନିଜସ୍ୱ ଧାରାରେ ବ୍ୟାଖ୍ୟା କରି ସେମାନେ ଏକ ଏକ ସ୍କୁଲ ପ୍ରତିଷ୍ଠା କ୍ଷେତ୍ରରେ ଭୂମିକା ନେଇଛନ୍ତି । ତେବେ ଗ୍ରୀକ୍ ଦର୍ଶନରେ ଏହି ସ୍କୁଲମାନ ସେପରି କିଛି ଗୌରବାବହ ଭୂମିକା ନେଇ ନାହାନ୍ତି । ବରଂ ସକ୍ରେଟିସ୍‌ଙ୍କ ପରେ ଗ୍ରୀସ୍‌ରେ ଦୁଇ ମହାନ ପ୍ରତିଭାଙ୍କର ଆବିର୍ଭାବ ଘଟିଛି ଯେଉଁମାନେ ଗ୍ରୀକ୍ ଦର୍ଶନ ଇତିହାସରେ ନୁହଁ ବରଂ ମାନବଜାତିର ବୌଦ୍ଧିକ ଇତିହାସରେ କୀର୍ତ୍ତିସ୍ତମ୍ଭ ହୋଇ ରହିଛନ୍ତି । ସେମାନଙ୍କର ଚିନ୍ତାରାଜ୍ୟକୁ ମୌଳିକ ଅବଦାନ ଯୋଗୁ ସେମାନେ ଅମର କୀର୍ତ୍ତିର ଗୌରବ ଅର୍ଜନ କରିଛନ୍ତି । ସେହି ଦୁଇ ଜାଜ୍ୱଲ୍ୟମାନ ପ୍ରତିଭା ହେଲେ ପ୍ଲେଟୋ ଓ ଆରିଷ୍ଟୋଟଲ । ପରବର୍ତ୍ତୀ ପରିଚ୍ଛେଦ ମାନଙ୍କରେ ଆମେ ସେମାନଙ୍କର ଦର୍ଶନ ଉପରେ ଚର୍ଚ୍ଚା କରିବା ।

## ସପ୍ତମ ପରିଚ୍ଛେଦ
## ପ୍ଲେଟୋ

### ୭.୧ ଜୀବନୀ ଓ କୃତି

ପ୍ଲେଟୋ ଦର୍ଶନ ଇତିହାସରେ ଏକ ଜାଜ୍ୱଲ୍ୟମାନ ପ୍ରତିଭା । ଗ୍ରୀକ୍ ଦର୍ଶନ ଇତିହାସରେ ତାଙ୍କ ପୂର୍ବରୁ କେହି ଦର୍ଶନ ସଂପର୍କରେ ଏପରି ଶୃଂଖଳାବଦ୍ଧ ଓ ସୁସଂହତ ବିଚାରମାନଙ୍କର ଅବତାରଣା କରିନଥିଲେ । ଦର୍ଶନ ଇତିହାସରେ ପ୍ଲେଟୋ ହେଉଛନ୍ତି ପ୍ରଥମ ଚିନ୍ତାନାୟକ ଯିଏ ଦାର୍ଶନିକ ସିଦ୍ଧାନ୍ତମାନଙ୍କୁ ରୀତିବଦ୍ଧ ଧାରାରେ ପ୍ରକାଶ କରିଛନ୍ତି । ତାଙ୍କ ଚିନ୍ତାଧାରାକୁ ହେରାକ୍ଲାଇଟସ, ପାର୍ମେନିଡୀସ ଓ ସକ୍ରେଟିସ୍‌ଙ୍କ ପରି ଦାର୍ଶନିକମାନେ କେତେକାଂଶରେ ପ୍ରଭାବିତ କରିଥିଲେ ମଧ୍ୟ ପ୍ଲେଟୋ ଥିଲେ ଜଣେ ମୌଳିକ ଚିନ୍ତକ ଓ ଅନ୍ୟମାନେ ଯାହା କିଛି ଦାର୍ଶନିକ ଭାବନାର ଅବତାରଣା କରିଥିଲେ ତାର ଭିତ୍ତି ଉପରେ ସେ ଦର୍ଶନର ବିଶାଳ ପ୍ରାସାଦ ନିର୍ମାଣ କରିବାକୁ ପ୍ରଯତ୍ନ କରିଛନ୍ତି । ଦର୍ଶନ ଭାବରାଜ୍ୟକୁ ତାଙ୍କର ଅବଦାନ ଅତୁଳନୀୟ ।

ପ୍ଲେଟୋଙ୍କର ଜନ୍ମ ଖ୍ରୀ.ପୂ. ୪୨୭ ବା ୪୨୮ ରେ ହୋଇଥିବା ଐତିହାସିକ ମାନେ ସ୍ଥିର କରିଛନ୍ତି । ତାଙ୍କର ଜନ୍ମ ଏଥେନ୍‌ସର ଏକ ସଂଭ୍ରାନ୍ତ ପରିବାରରେ ହୋଇଥିଲା । ତାଙ୍କର ପିଲାଦିନର ନାମ ଥିଲା ଆରିଷ୍ଟୋକ୍ଲେସ । କିନ୍ତୁ ତାଙ୍କର ବିଶାଳ ଚେହେରା ଯୋଗୁ ସେ ପରେ ପ୍ଲେଟୋ ନାମରେ ପରିଚିତ ହେଲେ । ପିଲାବେଳେ ତାଙ୍କ ପିତା ଆରିଷ୍ଟୋନଙ୍କର ଦେହାନ୍ତ ହୋଇଥିଲା ଓ ତାଙ୍କ ମାଆ ପେରିକ୍ଟୋନୀ ଅନ୍ୟଜଣେ ବ୍ୟକ୍ତି ପ୍ୟାରିଲେଂପସଙ୍କୁ ବିବାହ କରିବା ଦ୍ୱାରା ପ୍ଲେଟୋଙ୍କ ଜୀବନ ସାବତ ବାପାଙ୍କ ଘରେ ଅତିବାହିତ ହୋଇଥିଲା । ପ୍ୟାରିଲେଂପସ ବି ଏକ ସଂଭ୍ରାନ୍ତ ବ୍ୟକ୍ତି ଥିଲେ । ସୁତରାଂ ପ୍ଲେଟୋଙ୍କ ବାଲ୍ୟ ଶିକ୍ଷା ତତ୍‌କାଳୀନ ଏଥେନ୍‌ସର ସୁନ୍ଦର ପରିବେଶରେ ସମାହିତ ହୋଇଥିଲା ବୋଲି ଅନୁମାନ କରାଯାଏ ।

ଦୀର୍ଘବର୍ଷର ପେଲୋପୋନେସୀୟ ଯୁଦ୍ଧରେ ଏଥେନ୍‌ସ ଯେଉଁ ସବୁ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲା ଓ ଏଥେନ୍‌ସର ପରାଜୟ ଘଟିଥିଲା ସେଥିରେ ପ୍ଲେଟୋ ସେ ସେସମୟର ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ପ୍ରତି ବିତସ୍ପୃହ ହୋଇଥିଲେ । ପୁନଶ୍ଚ ସେହି ଗଣତାନ୍ତ୍ରିକ ବ୍ୟବସ୍ଥାରେ ସକ୍ରେଟିସ୍ ମୃତ୍ୟୁଦଣ୍ଡ ପାଇଥିଲେ । ଗଣତାନ୍ତ୍ରିକ ବ୍ୟବସ୍ଥାରେ ଶାସକମାନଙ୍କ ମଧ୍ୟରେ ଏକ ଉତ୍ତମ, ଦକ୍ଷ ଓ ନ୍ୟାୟବନ୍ତ ନେତା ବାହାରିବା ସମ୍ଭବ ନୁହେଁ ବୋଲି ସେ ଭାବୁଥିଲେ । ଗଣତନ୍ତ୍ର ପରିବର୍ତ୍ତେ ସୁଦକ୍ଷ ଓ ବିଜ୍ଞଜନଙ୍କର ଶାସନ କିପରି ସମ୍ଭବପର ହୋଇପାରିବ ତାହା ତାଙ୍କ ଚିନ୍ତାମାନସକୁ ଗଭୀର ଭାବେ ପ୍ରଭାବିତ କରିଥିଲା । ସମାଜରେ କିପରି ସୁଦକ୍ଷ, ସକ୍ଷମ ଓ ବିଜ୍ଞଜନ ସୃଷ୍ଟି ହୋଇପାରିବେ ସେପାଇଁ ନିର୍ଦ୍ଦିଷ୍ଟ ପଦ୍ଧତି ନେଇ ସେ ଗମ୍ଭୀର ଚିନ୍ତା ପ୍ରକାଶ କରିଛନ୍ତି ।

ଭାବଧାରା ଭାବେ ପ୍ରକାଶ କରିଛନ୍ତି । ସକ୍ରେଟିସ୍‌ଙ୍କ ଭାବଧାରାରୁ କିଛି ପ୍ରତ୍ୟୟକୁ ନିଜସ୍ୱ ଧାରାରେ ବ୍ୟାଖ୍ୟା କରି ସେମାନେ ଏକ ଏକ ସ୍କୁଲ ପ୍ରତିଷ୍ଠା କ୍ଷେତ୍ରରେ ଭୂମିକା ନେଇଛନ୍ତି । ତେବେ ଗ୍ରୀକ୍ ଦର୍ଶନରେ ଏହି ସ୍କୁଲମାନ ସେପରି କିଛି ଗୌରବାବହ ଭୂମିକା ନେଇ ନାହାନ୍ତି । ବରଂ ସକ୍ରେଟିସ୍‌ଙ୍କ ପରେ ଗ୍ରୀସ୍‌ରେ ଦୁଇ ମହାନ ପ୍ରତିଭାଙ୍କର ଆବିର୍ଭାବ ଘଟିଛି ଯେଉଁମାନେ ଗ୍ରୀକ୍ ଦର୍ଶନ ଇତିହାସରେ ନୁହଁ ବରଂ ମାନବଜାତିର ବୌଦ୍ଧିକ ଇତିହାସରେ କୀର୍ତ୍ତିସ୍ତମ୍ଭ ହୋଇ ରହିଛନ୍ତି । ସେମାନଙ୍କର ଚିନ୍ତାରାଜ୍ୟକୁ ମୌଳିକ ଅବଦାନ ଯୋଗୁ ସେମାନେ ଅମର କୀର୍ତ୍ତିର ଗୌରବ ଅର୍ଜନ କରିଛନ୍ତି । ସେହି ଦୁଇ ଜାଜ୍ୱଲ୍ୟମାନ ପ୍ରତିଭା ହେଲେ ପ୍ଲେଟୋ ଓ ଆରିଷ୍ଟୋଟଲ । ପରବର୍ତ୍ତୀ ପରିଚ୍ଛେଦ ମାନଙ୍କରେ ଆମେ ସେମାନଙ୍କର ଦର୍ଶନ ଉପରେ ଚର୍ଚ୍ଚା କରିବା ।

## ସପ୍ତମ ପରିଚ୍ଛେଦ

## ପ୍ଲେଟୋ

### ୭.୧ ଜୀବନୀ ଓ କୃତି

ପ୍ଲେଟୋ ଦର୍ଶନ ଇତିହାସରେ ଏକ ଜାଜ୍ୱଲ୍ୟମାନ ପ୍ରତିଭା । ଗ୍ରୀକ୍ ଦର୍ଶନ ଇତିହାସରେ ତାଙ୍କ ପୂର୍ବରୁ କେହି ଦର୍ଶନ ସଂପର୍କରେ ଏପରି ଶୃଂଖଳାବଦ୍ଧ ଓ ସୁସଂହତ ବିଚାରମାନଙ୍କର ଅବତାରଣା କରିନଥିଲେ । ଦର୍ଶନ ଇତିହାସରେ ପ୍ଲେଟୋ ହେଉଛନ୍ତି ପ୍ରଥମ ଚିନ୍ତାନାୟକ ଯିଏ ଦାର୍ଶନିକ ସିଦ୍ଧାନ୍ତମାନଙ୍କୁ ରୀତିବଦ୍ଧ ଧାରାରେ ପ୍ରକାଶ କରିଛନ୍ତି । ତାଙ୍କ ଚିନ୍ତାଧାରାକୁ ହେରାକ୍ଲାଇଟସ, ପାର୍ମେନିଡୀସ ଓ ସକ୍ରେଟିସ୍‌ଙ୍କ ପରି ଦାର୍ଶନିକମାନେ କେତେକାଂଶରେ ପ୍ରଭାବିତ କରିଥିଲେ ମଧ୍ୟ ପ୍ଲେଟୋ ଥିଲେ ଜଣେ ମୌଳିକ ଚିନ୍ତକ ଓ ଅନ୍ୟମାନେ ଯାହା କିଛି ଦାର୍ଶନିକ ଭାବନାର ଅବତାରଣା କରିଥିଲେ ତାର ଭିତ୍ତି ଉପରେ ସେ ଦର୍ଶନର ବିଶାଳ ପ୍ରାସାଦ ନିର୍ମାଣ କରିବାକୁ ପ୍ରଯତ୍ନ କରିଛନ୍ତି । ଦର୍ଶନ ଭାବରାଜ୍ୟକୁ ତାଙ୍କର ଅବଦାନ ଅତୁଳନୀୟ ।

ପ୍ଲେଟୋଙ୍କର ଜନ୍ମ ଖ୍ରୀ.ପୂ. ୪୨୭ ବା ୪୨୮ ରେ ହୋଇଥିବା ଐତିହାସିକ ମାନେ ସ୍ଥିର କରିଛନ୍ତି । ତାଙ୍କର ଜନ୍ମ ଏଥେନ୍ସର ଏକ ସଂଭ୍ରାନ୍ତ ପରିବାରରେ ହୋଇଥିଲା । ତାଙ୍କର ପିଲାଦିନର ନାମ ଥିଲା ଆରିଷ୍ଟୋକ୍ଲେସ । କିନ୍ତୁ ତାଙ୍କର ବିଶାଳ ଚେହେରା ଯୋଗୁ ସେ ପରେ ପ୍ଲେଟୋ ନାମରେ ପରିଚିତ ହେଲେ । ପିଲାବେଳେ ତାଙ୍କ ପିତା ଆରିଷ୍ଟୋନଙ୍କର ଦେହାନ୍ତ ହୋଇଥିଲା ଓ ତାଙ୍କ ମାଆ ପେରିକ୍ଟୋନୀ ଅନ୍ୟଜଣେ ବ୍ୟକ୍ତି ପ୍ୟାରିଲେଂପସଙ୍କୁ ବିବାହ କରିବା ଦ୍ୱାରା ପ୍ଲେଟୋଙ୍କ ଜୀବନ ସାବତ ବାପାଙ୍କ ଘରେ ଅତିବାହିତ ହୋଇଥିଲା । ପ୍ୟାରିଲେଂପସ ବି ଏକ ସଂଭ୍ରାନ୍ତ ବ୍ୟକ୍ତି ଥିଲେ । ସୁତରାଂ ପ୍ଲେଟୋଙ୍କ ବାଲ୍ୟ ଶିକ୍ଷା ତତ୍‌କାଳୀନ ଏଥେନ୍ସର ସୁନ୍ଦର ପରିବେଶରେ ସମାହିତ ହୋଇଥିଲା ବୋଲି ଅନୁମାନ କରାଯାଏ ।

ଦୀର୍ଘବର୍ଷର ପେଲୋପୋନେସୀୟ ଯୁଦ୍ଧରେ ଏଥେନ୍ସ ଯେଉଁ ସବୁ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲା ଓ ଏଥେନ୍ସର ପରାଜୟ ଘଟିଥିଲା ସେଥିରେ ପ୍ଲେଟୋ ସେ ସେସମୟର ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ପ୍ରତି ବିତସ୍ପୃହ ହୋଇଥିଲେ । ପୁନଶ୍ଚ ସେହି ଗଣତାନ୍ତ୍ରିକ ବ୍ୟବସ୍ଥାରେ ସକ୍ରେଟିସ୍ ମୃତ୍ୟୁଦଣ୍ଡ ପାଇଥିଲେ । ଗଣତାନ୍ତ୍ରିକ ବ୍ୟବସ୍ଥାରେ ଶାସକମାନଙ୍କ ମଧ୍ୟରେ ଏକ ଉତ୍ତମ, ଦକ୍ଷ ଓ ନ୍ୟାୟବନ୍ତ ନେତା ବାହାରିବା ସମ୍ଭବ ନୁହେଁ ବୋଲି ସେ ଭାବୁଥିଲେ । ଗଣତନ୍ତ୍ର ପରିବର୍ତ୍ତେ ସୁଦକ୍ଷ ଓ ବିଜ୍ଞଜନଙ୍କର ଶାସନ କିପରି ସମ୍ଭବପର ହୋଇପାରିବ ତାହା ତାଙ୍କ ଚିନ୍ତାମାନସକୁ ଗଭୀର ଭାବେ ପ୍ରଭାବିତ କରିଥିଲା । ସମାଜରେ କିପରି ସୁଦକ୍ଷ, ସକ୍ଷମ ଓ ବିଜ୍ଞଜନ ସୃଷ୍ଟି ହୋଇପାରିବେ ସେପାଇଁ ନିର୍ଦ୍ଦିଷ୍ଟ ପଦ୍ଧତି ନେଇ ସେ ଗମ୍ଭୀର ଚିନ୍ତା ପ୍ରକାଶ କରିଛନ୍ତି ।

ପ୍ଲେଟୋଙ୍କୁ କୋଡିଏ ବର୍ଷ ବୟସରେ ସେ ସକ୍ରେଟିସ୍‌ଙ୍କର ସଂପର୍କରେ ଆସିଥିଲେ । ସେହି ସଂପର୍କଠାରୁ ସକ୍ରେଟିସ୍ ତାଙ୍କର ଆଦର୍ଶ ହେଲେ ଓ ସକ୍ରେଟିସ୍‌ଙ୍କର ପ୍ରଜ୍ଞା, ସାଧୁତା ଓ ନୀତିବାଦିତା ପ୍ଲେଟୋଙ୍କୁ ଜୀବନସାରା ପ୍ରଭାବିତ କରିଥିଲା । ଆଠବର୍ଷର ସଂପର୍କ ପରେ ସକ୍ରେଟିସ୍‌ଙ୍କର ଦେହାନ୍ତ ତାଙ୍କ ପାଇଁ ଏକ ଦାରୁଣ ଆଘାତପ୍ରଦ ଘଟଣା ଥିଲା । ତେବେ ସକ୍ରେଟିସ୍‌ଙ୍କର ମୃତ୍ୟୁ ସମୟରେ ସେ ନିଜର ଅସୁସ୍ଥତା ଯୋଗୁଁ ଉପସ୍ଥିତ ରହିପାରି ନଥିଲେ ବୋଲି ପ୍ଲେଟୋ ତାଙ୍କର ଏକ ଡାଏଲଗ୍‌ରେ ବ୍ୟକ୍ତ କରିଛନ୍ତି । ସକ୍ରେଟିସ୍‌ଙ୍କର ମହାନ ବ୍ୟକ୍ତିତ୍ୱ ଓ ପ୍ରଜ୍ଞା ପ୍ଲେଟୋଙ୍କୁ ସାରା ଜୀବନ ପ୍ରଭାବିତ କରିବା ଓ ତାଙ୍କ ପାଇଁ ପ୍ରେରଣାର ଉତ୍ସ ହେବା ପ୍ଲେଟୋଙ୍କ ଲେଖାରୁ ଜଣାପଡେ ।

ସକ୍ରେଟିସ୍‌ଙ୍କ ଦେହାନ୍ତ ପରେ ପରେ ଖ୍ରୀ.ପୂ. ୩୯୯ ରେ ସେ ଏଥେନ୍‌ସ ଛାଡି ବାହାରକୁ ଚାଲି ଯାଇଥିଲେ । କୁହାଯାଏ ଯେ ଗଣତନ୍ତ୍ରର ନେତୃବୃନ୍ଦ ସେ ସକ୍ରେଟିସ୍‌ଙ୍କର ଜଣେ ଦୃଢ଼ ସମର୍ଥକ ହୋଇଥିବାରୁ ତାଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖିବାକୁ ଆରମ୍ଭ କଲେ ଓ ଏଥେନ୍‌ସ ତାଙ୍କ ପାଇଁ ନିରାପଦ ସ୍ଥାନ ନୁହେଁ ବୋଲି ପ୍ଲେଟୋଙ୍କର ବନ୍ଧୁମାନେ ତାଙ୍କୁ ସୂଚନା ଦେଲେ । ତେଣୁ ସେ ପ୍ରଥମେ ମେଗରା ଯାଇ ସେଠାରେ ଦାର୍ଶନିକ ଇଉକ୍ଲିଡ୍‌ଙ୍କ ପାଖରେ କିଛି ଦିନ ଅତିବାହିତ କରିଥିଲେ । ମେଗାରାଠାରେ ଇଉକ୍ଲିଡ୍ ସକ୍ରେଟିସ୍ ଓ ପାର୍ମେନିଡୀସଙ୍କ ଦାର୍ଶନିକ ଭାବଧାରାକୁ ନେଇ ଏକ ଦର୍ଶନ ସ୍କୁଲ ଆରମ୍ଭ କରିଥିଲେ । ବିଭିନ୍ନ ଐତିହାସିକ ପ୍ଲେଟୋଙ୍କ ଭ୍ରମଣ ବିଷୟରେ ଭିନ୍ନ ଭିନ୍ନ ତଥ୍ୟ ଦେଇଛନ୍ତି । କୁହାଯାଏ ଯେ ପ୍ଲେଟୋ ଇଜିପ୍ଟ ଯାଇଥିଲେ । ଇଜିପ୍ଟରେ ଏକ ପ୍ରାଚୀନ ସଭ୍ୟତା ରହିଥିଲା, ତେବେ ଇଜିପ୍ଟର ସଂଭ୍ରାନ୍ତ ଶାସକ ମାନେ ଗ୍ରୀସ୍ ବିଷୟରେ ଭଲ ଧାରଣା ପୋଷଣ କରୁନଥିଲେ । ଗ୍ରୀସ୍ ଯେ ଏକ ଶିଶୁ ରାଷ୍ଟ୍ର ଓ ତାହାର କୌଣସି ଉନ୍ନତ ସଂସ୍କୃତି ବା ପରଂପରା ନାହିଁ ଏହା ଶୁଣି ସେ ବ୍ୟଥିତ ହୋଇଥିଲେ । ଇଜିପ୍ଟରୁ ଜଳପଥରେ ସେ ସିସିଲି ଯାଇଥିବା ଜଣାଯାଏ । ସିସିଲି ଏବଂ ଇଟାଲୀକୁ ଯାଇ ସେହି ସ୍ଥାନମାନଙ୍କର ସଭ୍ୟତା, ସଂସ୍କୃତି, ଜୀବନଧାରା ଓ ଲୋକଚରିତ୍ରକୁ ପ୍ରତ୍ୟକ୍ଷ ଭାବେ ଜାଣିବାକୁ ପ୍ରୟାସ କରିଥିଲେ । କୁହାଯାଏ ଦୀର୍ଘ ବାରବର୍ଷ ବିଭିନ୍ନ ଭୂଖଣ୍ଡକୁ ଯାଇ ଜୀବନ ପାଇଁ କେତେ କେତେ ଅନୁଭୂତି, ଜ୍ଞାନ ଓ ଭାବନା ନେଇ ପ୍ରାୟ ଚାଳିଶ ବର୍ଷ ବୟସ ବେଳକୁ ସେ ଏଥେନ୍‌ସକୁ ଫେରି ସେଠାରେ ଜୀବନର ଚାଳିଶ ବର୍ଷ ଅତିବାହିତ କରିଥିଲେ । ତେବେ ଇଟାଲୀ ଓ ସିସିଲି ଯାଇଥିବା ଅବସରରେ ଦାର୍ଶନିକ ପିଥାଗୋରାସଙ୍କ କେତେକ ଅନୁଗାମୀଙ୍କ ସହ ପରିଚିତ ହୋଇଥିଲେ । ସିସିଲିର ଶାସକ ଡାଓନିସିଅସଙ୍କ ସହ ତାଙ୍କର ପରିଚୟ ହୋଇଥିଲା । ତେବେ ପ୍ଲେଟୋଙ୍କ ସ୍ପଷ୍ଟବାଦିତା ଓ ନୈତିକ ଆଦର୍ଶ ନେଇ ତାଙ୍କର ଡାଓନିସିଅସଙ୍କ ସହ ଗଭୀର ମତପାର୍ଥକ୍ୟ ସୃଷ୍ଟି ହୋଇଥିଲା । ପ୍ଲେଟୋଙ୍କ ବିଷୟରେ ଏକ ମତ ରହିଛି ଯେ ଡାଓନିସିଅସଙ୍କ ସହ ତାଙ୍କର ମତପାର୍ଥକ୍ୟ ଯୋଗୁ ସେହି ଶାସକ ପ୍ଲେଟୋଙ୍କୁ ଜଣେ ଦାସ ଭାବରେ ଅନ୍ୟକୁ ବିକ୍ରି କରିବାର ଏକ ଷଡଯନ୍ତ୍ର କରିଥିଲେ । ତେବେ ପ୍ଲେଟୋଙ୍କର ଜଣେ ବନ୍ଧୁ ଅର୍ଥ ଦାନ କରି ତାଙ୍କୁ ମୁକ୍ତ କରିଥିଲେ ଓ ଏହି ପ୍ରତିଭାବାନ ଦାର୍ଶନିକଙ୍କୁ ଏଥେନ୍‌ସ ଯିବାକୁ ସାହାଯ୍ୟ କରିଥିଲେ ।

ଏଥେନ୍‌ସ ଫେରି ପ୍ଳେଟୋ ଖ୍ରୀ.ପୂ. ୩୮୭ ବେଳକୁ ତାଙ୍କର ଆକାଡେମୀ ପ୍ରତିଷ୍ଠା କରିଥିବା ଜଣାଯାଏ । ସମଗ୍ର ଇଉରୋପରେ ପ୍ଳେଟୋଙ୍କ ଆକାଡେମୀ ଥିଲା ଜ୍ଞାନଚର୍ଚ୍ଚାର ଏକ ମୁଖ୍ୟ ସ୍ଥଳୀ ଓ ଏହି ଦୃଷ୍ଟିରୁ ଏହାକୁ ଇଉରୋପର ପ୍ରଥମ ବିଶ୍ୱବିଦ୍ୟାଳୟ କୁହାଯାଏ । ତେବେ ପ୍ଳେଟୋଙ୍କ ଆକାଡେମୀ ପୂର୍ବରୁ ଆଉ ଜଣେ ବୁଦ୍ଧିଜୀବୀ ଆଇସୋକ୍ରଟସ୍ ବି ଏକ ଆକାଡେମୀ ସ୍ଥାପନ କରିଥିଲେ ମଧ ପ୍ଳେଟୋଙ୍କର ଆକାଡେମୀ ଜ୍ଞାନ ଚର୍ଚ୍ଚା, ଗବେଷଣା ଓ ଅଧ୍ୟୟନ ପରିବେଶ କ୍ଷେତ୍ରରେ ବହୁ ଉନ୍ନତ ଥିଲା । ସକ୍ରେଟିସ୍ ବଜାର, ଘାଟ ବୁଲି ଜ୍ଞାନ ଚର୍ଚ୍ଚା କରୁଥିଲେ, କିନ୍ତୁ ପ୍ଳେଟୋ ସେପରି ନ କରି ଏକ ସ୍ଥାନରେ ଶିକ୍ଷାନୁଷ୍ଠାନଟିଏ କରି ଛାତ୍ର, ଯୁବକ ଓ ସମଗ୍ର ଗ୍ରୀସ୍‌ର ଜ୍ଞାନାନ୍ୱେଷୀ ବିଦ୍ୟାର୍ଥୀମାନଙ୍କୁ ଆକୃଷ୍ଟ କରୁଥିଲେ । ତାଙ୍କର ବୌଦ୍ଧିକ ଅନୁଶୀଳନ ଓ ଅନ୍ୱେଷା ବିକାଶ କରିବା ପାଇଁ ଆକାଡେମୀ ଥିଲା ଏକ ପ୍ରକୃଷ୍ଟ କ୍ଷେତ୍ର । ଏଠିକାର ଶିକ୍ଷାର୍ଥୀମାନଙ୍କୁ ପ୍ଳେଟୋ ବହୁ ବିଷୟରେ ଶିକ୍ଷା ପ୍ରଦାନ କରୁଥିଲେ । ତେବେ ଯେଉଁ ବିଷୟରେ ଶିକ୍ଷା ଦେଉଥିଲେ ସେଥି ପାଇଁ କୌଣସି ନୋଟ୍ ପ୍ରସ୍ତୁତ କରୁନଥିଲେ; ବରଂ ତାଙ୍କର ଛାତ୍ରମାନେ ତାଙ୍କ ଅଧ୍ୟାପନାରୁ କିଛ ନୋଟ୍ କରୁଥିଲେ । ତେବେ ତାଙ୍କର ବକ୍ତବ୍ୟ ବା ନୋଟ୍ କିଛି ପ୍ରକାଶିତ ହୋଇନାହିଁ । କୁହାଯାଏ ପ୍ଳେଟୋ ଗଣିତ, ଜ୍ୟୋତିର୍ବିଜ୍ଞାନକୁ ବେଶି ପ୍ରାଧାନ୍ୟ ଦେଉଥିଲେ । ଗବେଷକଙ୍କ ମତରେ ଗ୍ରୀସ୍‌ର ନଗର ରାଷ୍ଟ୍ରମାନଙ୍କୁ ନେଇ ଏକ ସଂଯୁକ୍ତ ରାଷ୍ଟ୍ର ବା ସ୍ଥାୟୀ ସଂଘ ଗଠନ କରିବା ପାଇଁ ପ୍ଳେଟୋ ପରିକଳ୍ପନା କରିଥିଲେ ଓ ସେହି ଲକ୍ଷ୍ୟରେ ଏକ ସମ୍ବିଧାନର ଚିଠା ପାଇଁ ଯୋଜନା କରିଥିଲେ, କିନ୍ତୁ ତାହା ସମ୍ଭବ ହୋଇ ନଥିଲା ।

ପ୍ଳେଟୋ ଓ ଆଇସୋକ୍ରେଟସଙ୍କ ଆକାଡେମୀ ସ୍ଥାପନ କରିବା ପୂର୍ବରୁ ସଫିଷ୍ଟମାନେ ବିଭିନ୍ନ ନଗର ରାଜ୍ୟମାନଙ୍କୁ ଯାଇ ଶିକ୍ଷା ପାଇଁ ଆନ୍ତରିକତା ପ୍ରକାଶ କରୁଥିବା ପିଲାମାନଙ୍କୁ ବିଭିନ୍ନ ବିଷୟ ପଢ଼ାଉଥିଲେ । ତେବେ ଆକାଡେମୀ ଗଠନ ପରଠାରୁ ଏକ ସ୍ଥାୟୀ ଶିକ୍ଷାନୁଷ୍ଠାନ ଗଠନଦ୍ୱାରା ଗ୍ରୀସ୍‌ରେ ଏକ ବଡ ପରିବର୍ତ୍ତନର ସୂତ୍ରପାତ ହେଲା । ପ୍ଳେଟୋ ଶିକ୍ଷାର୍ଥୀ ମାନଙ୍କଠାରୁ କୌଣସି ଅର୍ଥ ଶିକ୍ଷା ପାଇଁ ନେଉନଥିଲେ ଓ ପ୍ଳେଟୋଙ୍କ ବ୍ୟତୀତ ଅନ୍ୟ କେତେକ ବ୍ୟକ୍ତି ନିଯୁକ୍ତ ହୋଇ ଶିକ୍ଷା ପ୍ରଦାନ କରୁଥିଲେ । ଗ୍ରୀସ୍‌ର ବିଭିନ୍ନ ନଗର ରାଷ୍ଟ୍ରମାନଙ୍କରୁ ବିଦ୍ୟାର୍ଥୀମାନେ ପ୍ଳେଟୋଙ୍କ ଆକାଡେମୀରେ ଛାତ୍ର ହେବାର ସୌଭାଗ୍ୟ ନେଇଥିଲେ । ବିଶିଷ୍ଟ ଦାର୍ଶନିକ ଆରିଷ୍ଟୋଟଲ ମଧ ପ୍ଳେଟୋଙ୍କ ଆକାଡେମୀରେ ଛାତ୍ର ହୋଇ ଅଧ୍ୟୟନ କରିଥିଲେ ।

ପ୍ଳେଟୋ ତାଙ୍କ ଆକାଡେମୀରେ ଯେଉଁ ସବୁ ବିଷୟ ଉପରେ ଶିକ୍ଷା ବା ବକ୍ତୃତା ଦେଇଥିଲେ ତାହାର କୌଣସି ଲିପିବଦ୍ଧ ଅଂଶ ନାହିଁ କିମ୍ବା ତାହା ପ୍ରକାଶ ପାଇନାହିଁ । ତେବେ ପ୍ଳେଟୋ ତାଙ୍କର ଭାବନା ଓ ବିଚାରମାନଙ୍କୁ ଡାଏଲଗ୍ ବା ସଂଳାପ ଆକାରରେ ଲେଖିଛନ୍ତି । ଏହି ଡାଏଲଗ୍‌ମାନ ବିଶ୍ୱ ସାହିତ୍ୟରେ ଏକ ଅମର କୃତି । ଏଗୁଡିକ ସେ ସମାଜର ସବୁ ବର୍ଗର ଲୋକମାନଙ୍କ ପାଇଁ ରଚନା କରୁଥିଲେ । ସକ୍ରେଟିସ୍ ତାଙ୍କ ଦର୍ଶନ ବିଷୟରେ କିଛି ଲେଖି ନାହାନ୍ତି ସେ କେବଳ ଲୋକମାନଙ୍କ ସହ କଥାବାର୍ତ୍ତା ଭିତରେ ତାଙ୍କ ଦାର୍ଶନିକ ଭାବନାମାନଙ୍କୁ ବ୍ୟକ୍ତ କରୁଥିଲେ । ପ୍ଳେଟୋ ବି କୌଣସି ସ୍ୱତନ୍ତ୍ର ଦାର୍ଶନିକ ଗ୍ରନ୍ଥ ରଚନା କରିନାହାନ୍ତି । ତାଙ୍କର ସମସ୍ତ ଲେଖା ସଂଳାପ ବା

ଡାଏଲଗ ମାଧ୍ୟମରେ ରଚିତ ହୋଇଛି । ପ୍ଲେଟୋ ଯେଉଁ ସଂଳାପ ଗ୍ରନ୍ଥ ଗୁଡ଼ିକ ଲେଖିଛନ୍ତି ତାହାର ସଂଖ୍ୟା ଛତିଶ ବୋଲି ଜଣାଯାଏ । ଅବଶ୍ୟ କେଉଁ ଗୁଡ଼ିକ ତାଙ୍କର ଲେଖା କି ନୁହଁ ସେ ନେଇ କେତେକ ବିବାଦ ରହିଥିଲା । ତେବେ ଗବେଷକମାନେ ଓ ଐତିହାସିକ ମାନେ ନାନା ଅନୁଶୀଳନ ଆଧାରରେ ତାଙ୍କ ସଂଳାପ ମାନଙ୍କର ସଂଖ୍ୟା ଛତିଶ ବୋଲି ସ୍ଥିର କରିଛନ୍ତି ।

ପ୍ଲେଟୋ ତାଙ୍କର ସଂଳାପ କୃତି ମାନଙ୍କରେ ଯେଉଁ ଚରିତ୍ର ମାନଙ୍କର ଅବତାରଣା କରିଛନ୍ତି ସେସବୁ ସମାଜର ବାସ୍ତବ ଚରିତ୍ର, ତେବେ ସେମାନେ ଯେଉଁ ସବୁ ପ୍ରଶ୍ନ ଉପରେ ଆଲୋଚନା କରିଛନ୍ତି ସେସବୁ ପ୍ଲେଟୋଙ୍କ ମାନସ ପ୍ରସୂତ । ଏହି ସଂଳାପ ଗ୍ରନ୍ଥଗୁଡ଼ିକରେ କେବଳ ଦର୍ଶନ ବିଷୟରେ ଆଲୋଚନା ହୋଇନାହିଁ, ଏଥିରେ ନାନା ମାନବୀୟ ପ୍ରସଙ୍ଗ, ସାମାଜିକ ବ୍ୟବସ୍ଥା, ନୈତିକ ପ୍ରଶ୍ନ ଇତ୍ୟାଦି ବହୁ ବିଷୟରେ ଆଲୋଚନା ହୋଇଛି । ଏଗୁଡ଼ିକ ଉଚ୍ଚମାନର ସାହିତ୍ୟ । ଭାଷାର ଚମତ୍କାରିତା, ସୁନ୍ଦର ବ୍ୟଙ୍ଗ, କଥୋପକଥନରେ ନାଟକୀୟତା ଓ ଭାବନାର ଗଭୀରତା ଏହି ସଂଳାପମାନଙ୍କୁ ଉଚ୍ଚକୋଟୀର ସାହିତ୍ୟ ଭାବେ ଗଢ଼ିତୋଳିଛି । ବିଭିନ୍ନ ରୂପକ, ଉପମା ଓ ବେଳେ ବେଳେ ମିଥ୍‌ମାନଙ୍କୁ ଆଲୋଚନା ଭିତରକୁ ଆଣି ତାଙ୍କର ଗଭୀର ଭାବନାମାନଙ୍କୁ କବିତ୍ୱ ଆକାରରେ ପ୍ରକାଶ କରିଛନ୍ତି । କୁହାଯାଏ ତାଙ୍କ ଆଦ୍ୟ ଯୌବନରେ ପ୍ଲେଟୋ କବି ଥିଲେ ଓ ଜଣେ କଳାକାର ମଧ୍ୟ ଥିଲେ । ଯଦିବା ତାଙ୍କ ଯୌବନ କାଳ ବିଷୟରେ ବିଶେଷ କିଛି ଜଣା ନାହିଁ, ତେବେ ଜୀବନର ଗୋଟିଏ ସମୟରେ ତାଙ୍କର କବିତା ପ୍ରତି ବହୁ ଆନ୍ତରିକତା ଥିବା ଜଣାଯାଏ । ଏପରି ମଧ୍ୟ କୁହାଯାଏ ଯେ ପରବର୍ତ୍ତୀ ସମୟରେ ପ୍ଲେଟୋ କବିତା-ବିଦ୍ୱେଷୀ ହୋଇ ଯାଇଥିଲେ । ଜଣେ ଦାର୍ଶନିକ ସାଧାରଣତଃ ବୌଦ୍ଧିକତା ଓ ତର୍କ ସାହାଯ୍ୟରେ ନିଜର ସିଦ୍ଧାନ୍ତମାନଙ୍କୁ ପ୍ରତିଷ୍ଠା କରନ୍ତି । ଦର୍ଶନ ଚର୍ଚ୍ଚା ଭିତରେ ଯୌକ୍ତିକତା, ତର୍କସଙ୍ଗତ ଅଭିବ୍ୟକ୍ତି ଓ ଗମ୍ଭୀର ବୌଦ୍ଧିକ ଆଲୋଚନାର ବିଷୟ ରହିଥାଏ । କିନ୍ତୁ କବିତା ଭିତରେ କଳ୍ପନା, ରସିକତା, ଶାବ୍ଦିକ ଚାତୁର୍ଯ୍ୟ ଓ ବର୍ଣ୍ଣନାର ଆଭା ରହିଥାଏ । ତେବେ ଏପରି ଦେଖାଯାଏ ଯେ କୌଣସି ଅମୂର୍ତ୍ତୀୟ (abstract) ପ୍ରସଙ୍ଗକୁ ବ୍ୟାଖ୍ୟା କରିବାକୁ ଭାଷା ପର୍ଯ୍ୟାପ୍ତ ମନେହୁଏ ନାହିଁ । ସେପରି ସ୍ଥଳେ ରୂପକ ବା ଏକ କାହାଣୀ ମାଧ୍ୟମରେ ଏକ ଜଟିଳ ଭାବନାକୁ ବା ଅମୂର୍ତ୍ତୀୟ ତତ୍ତ୍ୱକୁ ସରଳ କରି ପ୍ରକାଶ କରାଯାଏ । ଏହି ମାନଦଣ୍ଡରୁ ଦେଖିଲେ ପ୍ଲେଟୋଙ୍କର ଭାଷା କେତେକ ସଂଳାପରେ ବେଶ୍ କବିତ୍ୱପୂର୍ଣ୍ଣ କିନ୍ତୁ ଭାବନା ବେଶ୍ ଗମ୍ଭୀର । ଏକ ସୂକ୍ଷ୍ମ ସତ୍ୟ ପ୍ରକାଶ କରିବା ପାଇଁ ରୂପକ କେତେକ ସ୍ଥଳରେ ସହାୟକ ହୋଇଥାଏ । ଯଦିବା ପ୍ଲେଟୋ କେତେକ କ୍ଷେତ୍ରରେ ରୂପକ, ଅଳଙ୍କାର ଓ ମିଥ୍ ବା କାଳ୍ପନିକ କାହାଣୀ ମାନଙ୍କର ଆଶ୍ରୟ ନେଇଛନ୍ତି ତେବେ ଦାର୍ଶନିକ ପ୍ରସଙ୍ଗ ଯେ ଏକ ଯୁକ୍ତି ଆଧାରିତ ବୌଦ୍ଧିକ ଅବବୋଧ ଏହାକୁ ସର୍ବଦା ସ୍ୱୀକାର କରିଛନ୍ତି । ତାଙ୍କର ଏହି ସ୍ୱୀକାରୋକ୍ତିଠାରୁ ସେ ଯେତେବେଳେ ଦୂରେଇ ଯାଇ କୌଣସି କାଳ୍ପନିକ କାହାଣୀ ବା ଉପମାର ଆଶ୍ରୟ ନେଇଛନ୍ତି ଏହା ପଶ୍ଚାତରେ ଏକ ଗମ୍ଭୀର ତାତ୍ତ୍ୱିକ ସିଦ୍ଧାନ୍ତକୁ ସରଳ କରି ପ୍ରକାଶ କରିବାର ଆଭିମୁଖ୍ୟ ରହିଛି ।

ପ୍ଲେଟୋଙ୍କର ଡାଏଲଗ୍‌ମାନଙ୍କର ରଚନାକାଳ ପ୍ରାୟ ପଚାଶ ବର୍ଷ ଧରି ଚାଲିଥିଲା ବୋଲି ଗବେଷକମାନେ ମତ ଦେଇଥାନ୍ତି । ଏହି ଦୀର୍ଘଦିନରେ ତାଙ୍କର ସୃଜନ ସାମର୍ଥ୍ୟ ବିଭିନ୍ନ ଭାବରେ ପ୍ରଭାବିତ ହୋଇଥିବା ସମ୍ଭବ । ଜଣେ ସ୍ରଷ୍ଟାଙ୍କର କୀର୍ତ୍ତିରାଜି ଭିତରେ ସମୟର ବ୍ୟବଧାନର ପ୍ରଭାବ ରହିବା ଏକ ସାଧାରଣ ଉପଲବ୍ଧି । ସେ କେଉଁ ସମୟରେ ଓ କେଉଁ କ୍ରମାନ୍ୱୟରେ ତାଙ୍କର ସଂଳାପ ସକଳକୁ ସୃଷ୍ଟି କରିଥିଲେ ତାହାର ଚିତ୍ର ଅସ୍ପଷ୍ଟ । ଏପରିକି ତାଙ୍କର ତିନିଟି ଡାଏଲଗ ଫାଇଡୋ, ସିଂପୋସିୟମ, ରିପବ୍ଲିକ କିଏ କାହାପରେ ଲେଖାଯାଇଛି ସେ ନେଇ ବିଭିନ୍ନ ମତପାର୍ଥକ୍ୟ ଗବେଷକ ଓ ଐତିହାସିକ ମାନଙ୍କ ମଧ୍ୟରେ ରହିଛି । ଏହିପରି କେତେକ ବିବାଦୀୟ ମତକୁ ଏଠାରେ ଆଲୋଚନା କରିବା ଆବଶ୍ୟକ ହିଁ ନାହିଁ । ତେବେ ତାଙ୍କର ସଂଳାପମାନଙ୍କ ସଂପର୍କରେ ଗବେଷକ ଓ ଐତିହାସିକ ମାନଙ୍କ ମତରେ ଯେଉଁ ସବୁଥିରେ ସହମତି ରହିଛି ସେସବୁ ବିଷୟରେ କେତେକ ସାମାନ୍ୟ ସୂଚନା ଏଠାରେ ଅବତାରଣା କରାଯାଇପାରେ ।

ପ୍ଲେଟୋଙ୍କର ସଂଳାପମାନଙ୍କୁ ତିନୋଟି ମୁଖ୍ୟ ଶ୍ରେଣୀରେ ବିଭକ୍ତ କରାଯାଏ । ପ୍ଲେଟୋଙ୍କ ଜୀବନର ତିନୋଟି ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ ସହ ସେସବୁକୁ ସଂଯୋଜିତ କରିବା ପାଇଁ ସେପରି କରିବା ଜଣାଯାଏ । ପ୍ରଥମ ପର୍ଯ୍ୟାୟରେ ସେ ଯେଉଁ ସଂଳାପମାନ ଲେଖିଥିଲେ ତାହା ସକ୍ରେଟିସ୍‌ଙ୍କ ଦେହାନ୍ତ ଏବଂ ପ୍ଲେଟୋଙ୍କର ମେଗରାକୁ ଯିବା ପର୍ଯ୍ୟନ୍ତ ସମୟର କୃତି । ଏଥିରୁ କେତେକ ସକ୍ରେଟିସ୍‌ଙ୍କ ମୃତ୍ୟୁ ପୂର୍ବରୁ ଲେଖା ଯାଇଥିଲା । ପ୍ରଥମ ପର୍ଯ୍ୟାୟର ଡାଏଲଗ୍‌ମାନଙ୍କ ମଧ୍ୟରେ ଯେଉଁ ଗୁଡିକୁ ଅନ୍ତର୍ଭୁକ୍ତ କରାଯାଏ ସେଗୁଡିକ ହେଲା ଆପୋଲୋଜି, କ୍ରିଟୋ, ଇଉଥିଫ୍ରନ, ଲାଚସ, ଇଅନ, ପ୍ରୋଟାଗୋରାସ, ଚାର୍ମିଡେସ୍, ଲାଇସିସ, ରିପବ୍ଲିକ୍ । ଏହି ଡାଏଲଗ୍ ମାନଙ୍କ ମଧ୍ୟରେ ପ୍ରୋଟାଗୋରାସ ଓ ରିପବ୍ଲିକ ବୃହତ୍, ବିଚାର କ୍ଷେତ୍ରରେ କିଛିଟା ଜଟିଳ ଏବଂ ଅନେକାଂଶରେ ବିକଶିତ । ପ୍ରଥମ ପର୍ଯ୍ୟାୟର ଅନ୍ୟାନ୍ୟ ଡାଏଲଗ୍‌ମାନ ସଂକ୍ଷିପ୍ତ ଓ ସରଳ । ଏହି ସବୁ ସଂଳାପମାନଙ୍କରେ ସକ୍ରେଟିସ୍‌ଙ୍କର ଭାବଧାରା ପ୍ରତିଫଳିତ । ଏହି ପର୍ଯ୍ୟନ୍ତ ପ୍ଲେଟୋଙ୍କର ନିଜସ୍ୱ ବିଚାରଧାରା ପ୍ରାୟ ବିକଶିତ ହେବା ଜଣାଯାଏ ନାହିଁ । ତେବେ ସେ କେବଳ ସକ୍ରେଟିସ୍‌ଙ୍କ ଭାବଧାରାକୁ ଯେ ଅନୁକରଣ କରୁଥିଲେ, ଏହା କୁହାଯାଇ ପାରିବ ନାହିଁ । ଯଦିବା ସେ ସକ୍ରେଟିସ୍‌ଙ୍କ ଭାବନାରାଜିକୁ ବ୍ୟକ୍ତ କରୁଥିଲେ ତେବେ ସେଥିରେ ଯଥେଷ୍ଟ ନୂତନତା ଓ ମୌଳିକତା ମଧ୍ୟ ବ୍ୟକ୍ତ ହୋଇଥିଲା । ସକ୍ରେଟିସ୍‌ଙ୍କ ଦାର୍ଶନିକ ଭାବଧାରାକୁ ସେ ବ୍ୟକ୍ତ କରିବା ବେଳେ ତାହାକୁ ଯେଉଁ ସାହିତ୍ୟିକ ରୂପରେ ପ୍ରକାଶ କରୁଥିଲେ ତାହା ଭିତରେ ପ୍ଲେଟୋଙ୍କ ବର୍ଣ୍ଣନାଶୈଳୀ ବେଶ୍ ଅଭିନବ ଥିଲା । ସକ୍ରେଟିସ୍‌ଙ୍କର କେତେକ ଜଣାଶୁଣା ବକ୍ତବ୍ୟ ବା ଅଭିବ୍ୟକ୍ତିର ପରିପ୍ରକାଶ ହୋଇଥିବା ଦେଖାଯାଏ । ସଦ୍‌ଗୁଣ  ହିଁ ଜ୍ଞାନ, ସଦ୍‌ଗୁଣ ଏକକ ମାତ୍ର ଓ ଏହା ଶିକ୍ଷା ଦିଆଯାଇ ପାରିବ; ସବୁ ମଣିଷ ଜୀବନରେ ମଙ୍ଗଳ ଚାହାନ୍ତି, କିନ୍ତୁ ମଙ୍ଗଳ ବିଷୟରେ ଲୋକମାନେ ଭିନ୍ନ ଭିନ୍ନ ଧାରଣା ପୋଷଣ କରନ୍ତି ଓ ସବୁ ଲୋକଙ୍କର ମଙ୍ଗଳ ଜନିତ ଧାରଣା ସମାନ ନୁହେଁ; ଜଣେ ଲୋକ ଜ୍ଞାତ ସାରରେ ଭୁଲ କରିବା ଅଜ୍ଞାତସାରରେ ଭୁଲ କରିବାଠାରୁ ଭଲ, କାରଣ ସେ ଅନ୍ତତଃ ଠିକ୍ ଭୁଲ୍ ନେଇ ଧାରଣା ରଖିପାରିଛି ଇତ୍ୟାଦି ବିଚାରମାନ ସକ୍ରେଟିସ୍‌ଙ୍କର ଯାହାର ଅଭିବ୍ୟକ୍ତି ପ୍ଲେଟୋଙ୍କ ସଂଳାପମାନଙ୍କରେ ବ୍ୟକ୍ତ ହୋଇଥିବା

ଦେଖାଯାଏ । ସକ୍ରେଟିସ୍ ତାଙ୍କର ଅନ୍ୟମାନଙ୍କ ସହ ବାର୍ତ୍ତାଳାପ ସମୟରେ ଅନ୍ୟମାନଙ୍କଠାରୁ ବିଜ୍ଞତା, ସଦ୍‌ଗୁଣ, ସଂଯମତା ଇତ୍ୟାଦି କହିଲେ କ'ଣ ପ୍ରକୃତରେ ବୁଝାଯାଏ ତାହା ଜାଣିବାକୁ ଚାହୁଁଥିଲେ । ପ୍ଲେଟୋ ତାଙ୍କର ଏହି ସଂଳାପ ମାନଙ୍କରେ ଏହିପରି ଅନେକ ପ୍ରଶ୍ନର ଅବତାରଣା କରିଛନ୍ତି । ପ୍ଲେଟୋଙ୍କର ଆଦ୍ୟ ଡାଏଲଗ୍ ମାନଙ୍କରେ ଗମ୍ଭୀର ଦାର୍ଶନିକ ପ୍ରସଙ୍ଗ ଉପରେ ଚର୍ଚ୍ଚା ଅପେକ୍ଷା ସକ୍ରେଟିସ୍‌ଙ୍କ ପ୍ରସଙ୍ଗ ଓ ଆଲୋଚନା ଅଧିକ ପ୍ରାଧାନ୍ୟ ପାଇଛି । ଏଥିରେ ସାହିତ୍ୟିକ ସୌନ୍ଦର୍ଯ୍ୟ ମଧ୍ୟ ବ୍ୟକ୍ତ ହୋଇଛି । ଏଣୁ ଏଗୁଡିକ ପାଠକ ମହଲରେ ଅଧିକ ଗ୍ରହଣୀୟ । ଦାର୍ଶନିକ ପ୍ଲେଟୋ ଓ ସାହିତ୍ୟିକ ପ୍ଲେଟୋ ଭିତରେ ତୁଳନା କଲାବେଳେ ସାହିତ୍ୟିକ ପ୍ଲେଟୋ ସାଧାରଣ ପାଠକକୁ ଅଧିକ ସ୍ପର୍ଶ କରନ୍ତି । ଆପୋଲୋଜି, କ୍ରିଟୋ ସଂଳାପ ମାନଙ୍କର ବର୍ଣ୍ଣନାଶୈଳୀ, ଭାଷା, ବ୍ୟଙ୍ଗ ଓ ମାର୍ମିକ ଅଭିବ୍ୟକ୍ତି ପାଠକ ପ୍ରାଣକୁ ଗଭୀର ଭାବରେ ଛୁଇଁ ଥାଏ ।

ପ୍ଲେଟୋଙ୍କର ଭ୍ରମଣ ଅବଧିରେ ସେ ଯେଉଁ ଡାଏଲଗ୍‌ମାନ ରଚନା କରିଥିଲେ ତାହାକୁ ଦ୍ୱିତୀୟ ପର୍ଯ୍ୟାୟରେ ସଂଯୁକ୍ତ କରାଯାଏ । ସକ୍ରେଟିସ୍‌ଙ୍କର ପ୍ରଭାବ ସହ ଇଲୀୟ ଦାର୍ଶନିକମାନଙ୍କର ଯେଉଁ ବୈଚାରିକ ଭାବଧାରା ପ୍ଲେଟୋଙ୍କୁ ପ୍ରଭାବିତ କରିଥିଲା ତାହାର ପରିଣାମରୁ ତାଙ୍କର ନିଜସ୍ୱ ଚିନ୍ତାଧାରା ରୂପ ନେଇଥିଲା । ମେଗରାରେ ରହିବା ସମୟ ଓ ପରେ ଅନ୍ୟ ସ୍ଥାନକୁ ଭ୍ରମଣରେ ଯିବା ଅବସରରେ ତାଙ୍କ ଦାର୍ଶନିକ ସିଦ୍ଧାନ୍ତମାନ ରୂପ ନେଇଥିଲା । ଏହାଥିଲା ତାଙ୍କ ଦର୍ଶନ ବିକାଶର ସୃଜନ କାଳ । ପ୍ଲେଟୋଙ୍କ ଦର୍ଶନର ମୂଳ ତତ୍ତ୍ୱ ଥିଲା ତାଙ୍କ ଆଇଡିଆ ସିଦ୍ଧାନ୍ତ (Theory of Ideas), ତାଙ୍କର ସକଳ ବିଚାର, ଭାବନା ଓ ସିଦ୍ଧାନ୍ତ ତାଙ୍କ ଆଇଡିଆ ତତ୍ତ୍ୱକୁ ନେଇ ବିକଶିତ ହୋଇଥିଲା । ଇଲୀୟ ଦର୍ଶନରେ ଯେଉଁ ସତ୍‌ର ପରିକଳ୍ପନା ରହିଛି, ସେଥିରୁ ପ୍ଲେଟୋଙ୍କ ଆଇଡିଆ ସିଦ୍ଧାନ୍ତ ଏକ ଭିନ୍ନ ଦିଗରେ ବିକଶିତ ହେବା ଦେଖାଯାଏ । ଏହି କାଳରେ ପ୍ଲେଟୋଙ୍କର ଦାର୍ଶନିକ ଭାବନା ମାନଙ୍କର ଭିତ୍ତି ପଡିଥିଲା । ତାଙ୍କର ଦର୍ଶନ ଏହି ସମୟରେ ଦୃଢ଼ ଭିତ୍ତି ନେବା ସହ ଦାର୍ଶନିକ ଚିନ୍ତନ କ୍ଷେତ୍ରରେ ଏକ ଅଭ୍ୟୁଦୟର ଯୁଗ ଆରମ୍ଭ ହୋଇଥିଲା । ପ୍ଲେଟୋଙ୍କ ଡାଏଲଗ୍ ମାନଙ୍କର ପ୍ରଥମ କାଳରେ ଯେଉଁ ସାହିତ୍ୟିକି ଶୈଳୀ ଓ ବ୍ୟଙ୍ଗର ପ୍ରକାଶ ହୋଇଥିଲା ତାହା ଦ୍ୱିତୀୟ ପର୍ଯ୍ୟାୟରେ ଅପସରି ଗଲା । ଏହି ସମୟର ଡାଏଲଗ୍ ମାନଙ୍କରେ କୌଣସି ଘଟଣା ଓ ହାସ୍ୟରସାତ୍ମକ ଅଭିବ୍ୟକ୍ତି ସ୍ଥାନ ପାଇଲା ନାହିଁ । ସାହିତ୍ୟିକ ଶୈଳୀ ସ୍ଥାନରେ ଯୁକ୍ତିଶୀଳତା, ତର୍କସଂଗତ ବିଚାର ଓ ଗମ୍ଭୀର ଦାର୍ଶନିକ ପ୍ରସଙ୍ଗ ଆଲୋଚନାର ମୁଖ୍ୟ ପ୍ରସଙ୍ଗ ହେଲା । ଏହି ଦ୍ୱିତୀୟ ପର୍ଯ୍ୟାୟର ଡାଏଲଗ୍ ମାନଙ୍କ ମଧ୍ୟରେ ଗର୍ଗିଆସ, ମେନୋ, ଇଉଥିଡେମସ, ହିପିଆସ-୧ , ହିପିଆସ-୨ , କ୍ରାଟିଲସ, ମେନୋକ୍ସନସ ଇତ୍ୟାଦି କୃତିମାନ ଉଲ୍ଲେଖନୀୟ । 'ଗର୍ଗିଆସ୍' ସଂଳାପରେ ସେ ଅନ୍ୟ ମତର ଖଣ୍ଡନ ପାଇଁ ପ୍ରୟାସ କରିଥିଲେ, ତେଣୁ ଏହା ଥିଲା ଅନେକାଂଶରେ ନକାରାତ୍ମକ । 'ସଫିଷ୍ଟମାନଙ୍କର ମତ ଯେ ସଦ୍‌ଗୁଣ ବ୍ୟକ୍ତିଗତ ସୁଖ ସହ ସଂଶ୍ଳିଷ୍ଟ, ଓ ବିଭିନ୍ନ ବ୍ୟକ୍ତିଙ୍କ ପାଇଁ ନୈତିକ ଆଦର୍ଶ ଭିନ୍ନ ଭିନ୍ନ ହେବା ସମ୍ଭବ' – ଏହି ମତକୁ ଏଥିରେ ନାନା ଭାବରେ ଖଣ୍ଡନ କରାଯାଇଛି । ସଫିଷ୍ଟମାନେ ଯେପରି ସଦ୍‌ଗୁଣକୁ ସୁଖ ସହ ସମାନ କରିଛନ୍ତି ତାହାର ସମାଲୋଚନା ଏହି ଡାଏଲଗ୍‌ରେ ପ୍ଲେଟୋ କରିଛନ୍ତି । ସଦ୍‌ଗୁଣର ଏକ ବସ୍ତୁନିଷ୍ଠଭିତ୍ତି ରହିଛି ଓ ଏହା ବ୍ୟକ୍ତିକୈନ୍ଦ୍ରିକ ନୁହେଁ ଏହା ପ୍ଲେଟୋ ଦର୍ଶାଇବାକୁ

ଚାହିଁଛନ୍ତି । ସେହିପରି ପ୍ଲେଟୋ ତାଙ୍କ ସଂଳାପ ଥିଏଟେଟସରେ ସଫିଷ୍ଟ ମତକୁ ଖଣ୍ଡନ କରିଛନ୍ତି । ସଫିଷ୍ଟମାନଙ୍କ ମତରେ ଜ୍ଞାନ ବ୍ୟକ୍ତିଗତ ସମ୍ବେଦନର ବସ୍ତୁ ଓ ଏହା ବ୍ୟକ୍ତିକୈନ୍ଦ୍ରିକ- ଏହି ମତକୁ ପ୍ଲେଟୋ ଯୁକ୍ତିଦ୍ୱାରା ଖଣ୍ଡନ କରିବାକୁ ପ୍ରୟାସ କରିଛନ୍ତି । ସତ୍ୟ ଯେ ବସ୍ତୁନିଷ୍ଠ ଓ ଜ୍ଞାନର ଆଧାର ଯୁକ୍ତିଶୀଳତା ଓ ଏହାର ଏକ ସାର୍ବଜନୀନ ଆଧାର ରହିଛି ପ୍ଲେଟୋ ଏହି ଭାବଧାରାକୁ ପ୍ରତିଷ୍ଠା କରିବାକୁ ଚାହିଁଛନ୍ତି । ପ୍ଲେଟୋଙ୍କ ଆଇଡିଆ ସିଦ୍ଧାନ୍ତ ସହିତ ସତ୍ ଓ ଅସତ୍‌ର କ'ଣ ସମ୍ବନ୍ଧ ରହିଛି ସେ ପ୍ରସଙ୍ଗ ଉପରେ ଏହି ସଂଳାପ ମାନଙ୍କରେ ଆଲୋଚନା କରିଛନ୍ତି । ମୁଖ୍ୟତଃ ପ୍ଲେଟୋଙ୍କ ଦାର୍ଶନିକ ଭାବନା ମାନଙ୍କର ବିକାଶର ଦ୍ୱିତିୟ ପର୍ଯ୍ୟାୟରେ ଲେଖିଥିବା ଡାଏଲଗ୍‌ମାନଙ୍କରେ ହୋଇଛି ।

ତୃତୀୟ ପର୍ଯ୍ୟାୟରେ ଯେଉଁ ସଂଳାପମାନଙ୍କୁ ଅନ୍ତର୍ଭୁକ୍ତ କରାଯାଏ ସେଗୁଡିକ ପ୍ଲେଟୋ ତାଙ୍କ ଜୀବନର ଶେଷଭାଗରେ ରଚନା କରିଥିଲେ ଓ ସେଥିରେ ଚିନ୍ତାଧାରାର ପକ୍ୱତା ରହିଥିବା ଦେଖାଯାଏ । ଏହି ସମୟ ଭିତରେ ସେ ତାଙ୍କ ବିଚାର ନେଇ ଅଧିକ ପରିପକ୍ୱତା ଲାଭ କରିଥିଲେ ଓ ସୁବିଚାରିତ ଭାବରେ ତାଙ୍କର ଚିନ୍ତାଧାରାକୁ ବିକଶିତ କରାଇଥିଲେ । ତାଙ୍କର ସୁବିଚାରିତ ତତ୍ତ୍ୱମାନଙ୍କୁ ସେ ବିଭିନ୍ନ କ୍ଷେତ୍ରରେ ପ୍ରୟୋଗ କରିଥିଲେ । ପ୍ରଥମ ପର୍ଯ୍ୟାୟରେ ରହିଥିବା ସଂଳାପ ମାନଙ୍କରେ ସରଳତା ଓ ସାବଲୀଳତା ରହିଥିଲା । ପ୍ରଥମ କାଳର ସଂଳାପମାନଙ୍କରେ ଥିଲା ସାହିତ୍ୟିକ ବର୍ଣ୍ଣନାର ବିଭବ, ଦ୍ୱିତୀୟ ପର୍ଯ୍ୟାୟର ସଂଳାପମାନଙ୍କରେ ରହିଥିଲା ବୌଦ୍ଧିକ ବିଶ୍ଳେଷଣ ଓ ତର୍କସଂଗତ ଅଭିବ୍ୟକ୍ତି ଓ ତୃତୀୟ ଭାଗର ସଂଳାପ ମାନଙ୍କରେ ଏ ଉଭୟର ସମନ୍ୱୟ ଘଟିଥିଲା । ଦ୍ୱିତୀୟ ଭାଗର ସଂଳାପ ମାନଙ୍କରେ ସେ ତାଙ୍କ ଦାର୍ଶନିକ ବିଚାରର୍ ମୌଳିକ ତତ୍ତ୍ୱ "ଆଇଡିଆ ସିଦ୍ଧାନ୍ତ"ର ଯେଉଁ ବ୍ୟାଖ୍ୟାନ ଦେଇଥିଲେ ଏହି ଅବବୋଧ ଯେ ଦୃଢ଼ ଭାବରେ ପ୍ରତିଷ୍ଠାଲାଭ କରିଛି ଏହା ପ୍ଲେଟୋ ବିଶ୍ୱାସ କରୁଥିଲେ । ସୁତରାଂ ଏହି ବିଶ୍ୱାସରୁ ସେ ତାଙ୍କ "ଆଇଡିଆ ସିଦ୍ଧାନ୍ତ" କୁ ତାଙ୍କ ଦର୍ଶନର ଅନ୍ୟାନ୍ୟ କ୍ଷେତ୍ରରେ ଓ ଚିନ୍ତାଧାରାର ବିଭିନ୍ନ ସ୍ତରରେ ପ୍ରୟୋଗ କରିଥିଲେ । ଦ୍ୱିତୀୟ ପର୍ଯ୍ୟାୟରେ ସେ ଯେଉଁ ସବୁ ଡାଏଲଗ୍ ମାନ ସୃଷ୍ଟି କରିଥିଲେ ସେଥିରେ ଆଇଡିଆ ସିଦ୍ଧାନ୍ତକୁ ଯୁକ୍ତିଶୀଳ ଆଧାରରେ ପ୍ରତିଷ୍ଠା କରିବାକୁ ଗମ୍ଭୀର ଭାବରେ ପ୍ରୟାସ କରି ସଫଳ ହୋଇଛନ୍ତି ବୋଲି ଭାବୁଥିଲେ । ଏଣୁ ତୃତୀୟ ଭାଗର ଡାଏଲଗ୍ ମାନଙ୍କରେ ସେହି ସିଦ୍ଧାନ୍ତର ବାସ୍ତବ ପ୍ରୟୋଗ କରିବାକୁ ତାଙ୍କର ପ୍ରଚେଷ୍ଟା ହୋଇଥିଲା । ଏହି ସମୟର ଡାଏଲଗ୍ ମାନଙ୍କ ମଧ୍ୟରେ ସିଂପୋସିଅମ, ଫାଇଡୋ, ରିପବ୍ଲିକ୍, ଫାଏଡ୍ରସ ଇତ୍ୟାଦି ମୁଖ୍ୟ ଥିଲା । ସିଂପୋସିଅମ ସଂଳାପରେ ସୌନ୍ଦର୍ଯ୍ୟ ଓ ପ୍ରେମର ଚମତ୍କାର ବର୍ଣ୍ଣନା ଦେବା ସହ ଏସବୁ ଭାବନାକୁ ଆଇଡିଆ ସିଦ୍ଧାନ୍ତ ସହ ସଂଯୋଜିତ କରିବା ପରିଲକ୍ଷିତ ହୁଏ । ଫିଲେବସ ସଂଳାପରେ ନୀତିଶାସ୍ତ୍ର ବା ଆଚାର ସଂହିତାର ବ୍ୟାଖ୍ୟାନ ପୃଷ୍ଠଭୂମିରେ ସେ ମଧ୍ୟ ଆଇଡିଆ ସିଦ୍ଧାନ୍ତକୁ ଏଥିରେ ସଂପୃକ୍ତ କରିବା ଦେଖାଯାଏ । ଆତ୍ମାର ଅମରତ୍ୱ ନେଇ ସେ ଯେଉଁ ଭାବନାର ଅବତାରଣା କରିଛନ୍ତି ତାହା ସହ ମଧ୍ୟ ଆଇଡିଆ ସିଦ୍ଧାନ୍ତକୁ ସଂଶ୍ଲିଷ୍ଟ କରିଛନ୍ତି । ଏହା ଫାଇଡୋ ସଂଳାପରେ ଆଲୋଚିତ ହୋଇଛି । ମୋଟ ଉପରେ ସେ ତାଙ୍କର ଆଇଡିଆ ସିଦ୍ଧାନ୍ତକୁ ତାଙ୍କର ନୀତି-ଦର୍ଶନ, ସମାଜ-ଦର୍ଶନ, ଶିକ୍ଷା-ଦର୍ଶନ, ସମାଜ-ବିଜ୍ଞାନ, ଭୌତିକ-ବିଜ୍ଞାନ ଇତ୍ୟାଦି ବିଭିନ୍ନ ବୌଦ୍ଧିକ

କ୍ଷେତ୍ରରେ ପ୍ରୟୋଗ କରିଛନ୍ତି ଓ ଏସବୁ ତୃତୀୟ ପର୍ଯ୍ୟାୟର ଡାଏଲଗ୍ ମାନଙ୍କରେ କରାଯାଇଛି । ଏତଦ୍‌ବ୍ୟତୀତ ତୃତୀୟ ଭାଗର ସଂଳାପ ମାନଙ୍କରେ ପ୍ଲେଟୋ ତାଙ୍କ ଆଇଡିଆ ସିଦ୍ଧାନ୍ତକୁ ସୁବିଚାର ଭାବରେ ବିଭିନ୍ନ ବୌଦ୍ଧିକ କ୍ଷେତ୍ରରେ ପ୍ରୟୋଗ କରିଛନ୍ତି । ଗୋଟିଏ ତାତ୍ତ୍ୱିକ ସିଦ୍ଧାନ୍ତକୁ ପ୍ରତିଷ୍ଠା କରିବା ପରେ ପ୍ଲେଟୋ ତାର ପ୍ରୟୋଗକୁ ବିଭିନ୍ନ ସ୍ତରରେ କରି ତାଙ୍କ ସିଦ୍ଧାନ୍ତକୁ ସାର୍ବଜନୀନ ଭିତ୍ତି ଦେବାକୁ ଉଦ୍ୟମ ଆରମ୍ଭ କରିଛନ୍ତି । ସୁତରାଂ ଏହି ଭାଗର ଡାଏଲଗ୍ ମାନଙ୍କ ମଧ୍ୟରେ ତାଙ୍କ ବିଚାରର ଯେ ପରିପକ୍ୱତା ଆସିଛି ଏହା ଦାର୍ଶନିକ ସମୀକ୍ଷକ ମାନେ ମତ ଦେଇଛନ୍ତି ।

ପ୍ଲେଟୋ ତାଙ୍କର ସକଳ ଭାବନା, ଦାର୍ଶନିକ ମତ ଓ ବିଭିନ୍ନ ପ୍ରସଙ୍ଗ ଉପରେ ବିଚାରମାନଙ୍କୁ ତାଙ୍କର ଡାଏଲଗ୍ ବା ସଂଳାପ ଭିତରେ ବ୍ୟକ୍ତ କରିଛନ୍ତି ଓ ଏହି ସଂଳାପମାନଙ୍କୁ ସେ ଦୀର୍ଘ ପଚାଶ ବର୍ଷ ଧରି ରଚନା କରିବାରେ ବ୍ରତୀ ହୋଇଛନ୍ତି । ତାଙ୍କର ଏହି ଦୀର୍ଘ ବୌଦ୍ଧିକ ସାଧନାକୁ ତିନିଟି ଭାଗରେ ବିଭକ୍ତ କରାଯାଇଛି । ତେବେ ପ୍ରତ୍ୟେକ ଭାଗ ବା କାଳର ରଚନା ଅନ୍ୟ ଭାଗ ସହିତ ସଂଯୋଜିତ ଓ ସେମାନଙ୍କ ମଧ୍ୟରେ ସେପରି କିଛି ଦୃଢ଼ ପ୍ରାଚୀର ନାହିଁ । ତାଙ୍କର ପ୍ରତ୍ୟେକ ଭାଗର ଚିନ୍ତା, ଚେତନା ଓ ଭାବଧାରା ଅନ୍ୟ ଭାଗକୁ ମଧ୍ୟ ପ୍ରସାରିତ ହୋଇଯାଇଛି । ତାଙ୍କର ସକଳ ସିଦ୍ଧାନ୍ତ ଓ ଅନୁଶୀଳନ କ୍ଷେତ୍ରରେ ଏକ ବୈଚାରିକ ଐକ୍ୟ ଦେଖିବାକୁ ମିଳେ । ତାଙ୍କର ଯେଉଁ ମୌଳିକ ଦର୍ଶନ "ଆଇଡିଆ ସିଦ୍ଧାନ୍ତ" ରହିଛି ତାହା ତାଙ୍କ ଚିନ୍ତାଧାରାର ସବୁ କ୍ଷେତ୍ରରେ ପ୍ରତିଫଳିତ ହୋଇଛି ଓ ତାଙ୍କର ସମସ୍ତ ସର୍ଜନାତ୍ମକ କୃତିକୁ ଏକ ବୈଚାରିକ ସୂତ୍ରରେ ସୁସଂହତ କରିଛି । ତେବେ ପ୍ଲେଟୋଙ୍କ ଉପରେ ଯେଉଁମାନେ ପାଣ୍ଡିତ୍ୟପୂର୍ଣ୍ଣ ଗ୍ରନ୍ଥମାନ ଲେଖିଛନ୍ତି ସେମାନେ ତାଙ୍କ ସଂଳାପମାନଙ୍କୁ ଗୋଟିଏ ପରେ ଗୋଟିଏ ଆଲୋଚନା କରିଛନ୍ତି ଓ ପ୍ରତ୍ୟେକ ସଂଳାପରେ ବ୍ୟକ୍ତ ହୋଇଥିବା ଭାବନାକୁ ଦର୍ଶାଇଛନ୍ତି । ତେବେ ପ୍ଲେଟୋଙ୍କ ଦର୍ଶନ ମଧ୍ୟ ଏକ ସୁବ୍ୟବସ୍ଥିତ ଓ ସୁସଂହତ ବିଚାରର ଅଭିବ୍ୟକ୍ତି । ତାଙ୍କ ଦାର୍ଶନିକ ଭାବଧାରା କୌଣସି ଏକକ ଡାଏଲଗ୍‌ରେ ବ୍ୟକ୍ତ ହୋଇ ନାହିଁ, ବରଂ ତାଙ୍କର ସିଦ୍ଧାନ୍ତମାନ ବିଭିନ୍ନ ଡାଏଲଗ୍‌ରେ ପରିବ୍ୟାପ୍ତ ବା overlap ହୋଇରହିଛି । ତାଙ୍କ ଦର୍ଶନ ମଧ୍ୟ ଏକନିଷ୍ଠ ବା ସୁସଂହତ ଧାରାରେ ପ୍ରକାଶ ପାଇ ନାହିଁ । ତାଙ୍କର କୌଣସି ଏକ ସିଦ୍ଧାନ୍ତ ଏକ ଡାଏଲଗ୍‌ରେ ରହିଛି ଓ ସେହି ସିଦ୍ଧାନ୍ତ ସଂକ୍ରାନ୍ତୀୟ ଯୁକ୍ତିମାନ ଅନ୍ୟ ଡାଏଲଗ୍‌ରେ ବିକଶିତ ହୋଇଛି । ଏପରି ମଧ୍ୟ ହୋଇଛି ଯେ ଏକ ଡାଏଲଗ୍‌ର ଶେଷରେ ସିଦ୍ଧାନ୍ତ ବ୍ୟକ୍ତ ହୋଇଛି ଓ ସିଦ୍ଧାନ୍ତ ସଂକ୍ରାନ୍ତୀୟ ଯୁକ୍ତିମାନ କ୍ରମାନ୍ୱୟରେ ନ ରହି ବିକ୍ଷିପ୍ତ ଭାବରେ ଡାଏଲଗ୍‌ରେ ସ୍ଥାନପାଇଛି । ସୁତରାଂ ପ୍ଲେଟୋଙ୍କ ଦାର୍ଶନିକ ସିଦ୍ଧାନ୍ତ ଉପରେ ଯେଉଁମାନେ ଲେଖିଛନ୍ତି କିମ୍ବା ଗ୍ରୀକ୍ ଦର୍ଶନର ଇତିହାସକାରମାନେ ଦାର୍ଶନିକ ମାନଦଣ୍ଡରୁ ତାଙ୍କର ବିଚାରକୁ ସୁସଂହତ ଭାବରେ ପ୍ରକାଶ କରିବାକୁ ପ୍ରୟାସ କରିଛନ୍ତି, ସେମାନେ ବିଭିନ୍ନ ଡାଏଲଗ୍‌ମାନଙ୍କରେ ବ୍ୟକ୍ତ ହୋଇଥିବା ପ୍ଲେଟୋଙ୍କର ଦାର୍ଶନିକ ବିଚାରମାନଙ୍କୁ ଏକତ୍ରିତ କରି ଦର୍ଶନ-ପରିଭାଷାରେ ପରିବେଷଣ କରିଛନ୍ତି । ଏହି ଦୃଷ୍ଟିରୁ ତାଙ୍କ ଦର୍ଶନକୁ ଯେଉଁ ତିନୋଟି ମୁଖ୍ୟ ଭାଗରେ ବିଭକ୍ତ କରାଯାଇଛି ତାହା ହେଲା- ଜ୍ଞାନତତ୍ତ୍ୱ (Dialectic), ବସ୍ତୁତତ୍ତ୍ୱ (Physics) ଓ ନୀତିତତ୍ତ୍ୱ (Ethics) । ଜ୍ଞାନତତ୍ତ୍ୱ ଭିତରେ ଜ୍ଞାନମୀମାଂସା ଓ ତତ୍ତ୍ୱମୀମାଂସାକୁ ସଂପୃକ୍ତ

କରାଯାଇଛି । ପ୍ଲେଟୋଙ୍କର ତତ୍ତ୍ୱମୀମାଂସା ତାଙ୍କର ଆଇଡିଆ ସିଦ୍ଧାନ୍ତ (Theory of Ideas) କୁ ନେଇ ବିକଶିତ ହୋଇଛି । ତାଙ୍କର ବସ୍ତୁତତ୍ତ୍ୱ ଭିତରେ ବାସ୍ତବ ଜଗତରେ ରହିଥିବା ବା ସ୍ଥାନ ଓ କାଳ (Space and Time) ଦ୍ୱାରା ସର୍ତ୍ତବଦ୍ଧ ହେଉଥିବା ବିଷୟମାନଙ୍କୁ ସେ ଚର୍ଚ୍ଚା କରିଛନ୍ତି । ଏହି ପରିପ୍ରେକ୍ଷୀରେ ସେ ଆତ୍ମାର ଅସ୍ତିତ୍ୱ ସଂପର୍କରେ ମଧ୍ୟ ବ୍ୟାଖ୍ୟା କରିଛନ୍ତି ଯେହେତୁ କାଳଦ୍ୱାରା ଏହା ନିୟନ୍ତ୍ରିତ । ନୀତିତତ୍ତ୍ୱ ଭିତରେ ସେ ରାଜନୀତି, ନାଗରିକ ଶୃଂଖଳା, ନୈତିକ ଆଚରଣ ଓ ବ୍ୟକ୍ତିର ନୈତିକ କର୍ତ୍ତବ୍ୟ ବିଷୟରେ ତାଙ୍କ ବିଚାରର ଅବତାରଣା କରିଛନ୍ତି । ଏସବୁ ପ୍ରସଙ୍ଗମାନ ବିଭିନ୍ନ ସଂଳାପମାନଙ୍କରେ ବିକ୍ଷିପ୍ତ ହୋଇ ରହିଛି । ଦାର୍ଶନିକ ପ୍ରସଙ୍ଗମାନଙ୍କୁ ବାଦ୍ ଦେଇ ଅନ୍ୟ କେତେକ ବିଷୟର ସେ ଅବତାରଣା ମଧ୍ୟ କରିଛନ୍ତି । ତେବେ କେତେକ ଡାଲଲଗ୍‌ରେ ଏପରି ହୋଇଛି ଯେ ଗୋଟିଏ ମୁଖ୍ୟ ପ୍ରସଙ୍ଗ ଏକ ବା ଏକାଧିକ ଡାଏଲଗ୍‌ରେ ମୁଖ୍ୟ ଆଲୋଚ୍ୟ ପ୍ରସଙ୍ଗ ହୋଇ ରହିଛି ।

ପ୍ଲେଟୋଙ୍କ ସମସ୍ତ ଡାଏଲଗ୍ ବିଶ୍ୱ ସାହିତ୍ୟର ଏକ ଅମୂଲ୍ୟ କୀର୍ତ୍ତି । ସେପରି ମଧ୍ୟ କେତେକ ପ୍ଲେଟୋ ଓ ଦର୍ଶନ ସମାର୍ଥବୋଧକ ବୋଲି ମତ ଦିଅନ୍ତି । ପ୍ଲେଟୋ ଅଟନ୍ତି ଦର୍ଶନ ଓ ଦର୍ଶନ ଅଟେ ପ୍ଲେଟୋ ବୋଲି କୁହାଯାଇଛି । ତେବେ ପ୍ଲେଟୋଙ୍କର ସମସ୍ତ ଡାଏଲଗ୍‌ମାନଙ୍କ ମଧ୍ୟରେ ଯାହାକୁ ସମସ୍ତେ ଶୀର୍ଷସ୍ଥାନ ଦେଇଥାନ୍ତି ତାହା ହେଲା ତାଙ୍କର "ରିପବ୍ଲିକ୍" । ଅନେକଙ୍କ ବିଚାରରେ ପ୍ଲେଟୋଙ୍କ ରିପବ୍ଲିକ୍ ହେଉଛି ତାଙ୍କର ସ୍ୱୟଂ ପରିପୂର୍ଣ୍ଣଏକ ନିବନ୍ଧ (Comprehensive treatise) । ଏହି ଗ୍ରନ୍ଥରେ ଜ୍ଞାନମୀମାଂସା, ତତ୍ତ୍ୱମୀମାଂସା, ଧର୍ମ-ଚର୍ଚ୍ଚା; କଳା, ନୀତିସିଦ୍ଧାନ୍ତ, ମନୋବିଜ୍ଞାନ, ଶିକ୍ଷା-ଶାସ୍ତ୍ର, ରାଜନୀତି ଇତ୍ୟାଦି ବହୁ ବିଷୟରେ ଚର୍ଚ୍ଚା ହୋଇଛି । ଏହା ସହିତ ରିପବ୍ଲିକ୍‌ରେ ସାମ୍ୟବାଦ, ନାରୀ-ସ୍ୱାଧୀନତା, ଜନ୍ମ ନିୟନ୍ତ୍ରଣ, ସୁପ୍ରଜନନର ପରିକଳ୍ପନା ଇତ୍ୟାଦି ପ୍ରସଙ୍ଗ ଉପରେ ଆଲୋଚନା କରାଯାଇଛି । ଏହିପରି ବହୁ ମାନଦଣ୍ଡରୁ ପ୍ଲେଟୋଙ୍କ ରିପବ୍ଲିକ ଏକ ସର୍ବକାଳୀନ ଉପାଦେୟ ଗ୍ରନ୍ଥ ।

ପ୍ଲୋଟୋଙ୍କର ବ୍ୟକ୍ତିଗତ ଜୀବନ କ'ଣ ଥିଲା ସେ ବିଷୟରେ ବିଶେଷ ତଥ୍ୟ ନାହିଁ । ତେବେ ସେ ଜୀବନରେ ଅବିବାହିତ ଥିଲେ ଓ ତାଙ୍କ ଆକାଡେମୀରେ ଚାରି ଦଶନ୍ଧି ଧରି ଅଧ୍ୟାପନା କରିଥିଲେ । ଏହି ପ୍ରତିଭାଙ୍କର ଦେହାବସାନ ପରିଣତ ବୟସରେ ଖ୍ରୀ.ପୂ. ୩୪୮ରେ ହୋଇଥିବା ଜଣାଯାଏ ।

### ୭.୨ ଜ୍ଞାନମୀମାଂସା

ପ୍ଲେଟୋଙ୍କର ଜ୍ଞାନ ସମ୍ବନ୍ଧୀୟ ବିଶ୍ଳେଷଣ କୌଣସି ଗୋଟିଏ ଡାଏଲଗ୍‌ରେ ସୁସଂହତ ବା ରୀତିବଦ୍ଧ ଭାବରେ ହୋଇନାହିଁ । ପ୍ଲେଟୋଙ୍କ ରଚିତ ଥିଏଟେଟସ (Theaetetus) ଡାଏଲଗ୍‌ରେ ଜ୍ଞାନ ସମସ୍ୟା ସଂପର୍କରେ କିଛି ଆଲୋଚନା କରାଯାଇଛି । ତେବେ ଏହାର ଆଭିମୁଖ୍ୟ ପ୍ରାୟ ନକାରାତ୍ମକ, କାରଣ ଜ୍ଞାନ କ'ଣ ନୁହଁ ତାହା ପ୍ଲେଟୋ ଏହି ଡାଏଲଗ୍‌ରେ ଦର୍ଶାଇବାକୁ ପ୍ରୟାସ କରିଛନ୍ତି । ଏହା ସହିତ ତାଙ୍କର ରିପବ୍ଲିକ ଗ୍ରନ୍ଥରେ ସେ ଜ୍ଞାନ ସମ୍ବନ୍ଧରେ କିଛି ସୂଚନା ମଧ୍ୟ ଦେଇଛନ୍ତି । ଜ୍ଞାନ ବିଷୟରେ କିଛି ସ୍ପଷ୍ଟ ଧାରଣା ଓ ଏହାର ସ୍ତରଭେଦ ନେଇ ସେ ରିପବ୍ଲିକରେ କିଛି ସିଦ୍ଧାନ୍ତର ଅବତାରଣା କରିଛନ୍ତି । ଏହି ପରିପ୍ରେକ୍ଷୀରେ ଭ୍ରମାତ୍ମକ ଜ୍ଞାନକୁ ସେ ଥିଏଟେଟସରେ ସମାଲୋଚନା

କରିଛନ୍ତି ଓ ରିପବ୍ଲିକରେ ଜ୍ଞାନର ସ୍ୱରୂପ ବିଷୟରେ ତାଙ୍କର ମତ ରଖିଛନ୍ତି । ସୁତରାଂ ଭ୍ରମାତ୍ମକ ଜ୍ଞାନ ସଂପର୍କରେ ସେ ଯେଉଁ ସମାଲୋଚନା କରିଛନ୍ତି ପ୍ରଥମେ ତାହାର ଆଲୋଚନା କରିବାପରେ ପ୍ଲେଟୋଙ୍କର ବାସ୍ତବ ଜ୍ଞାନର ସ୍ୱରୂପ ଓ ଲକ୍ଷଣ ନେଇ ଆମେ ଆଲୋଚନା ସ୍ତରକୁ ଆସିବା । ଯଦି ବା ପ୍ଲେଟୋଙ୍କର ରିପବ୍ଲିକ୍ ବାସ୍ତବ ଜ୍ଞାନର ସ୍ୱରୂପ ବିଷୟରେ କିଛି ମତ ରହିଛି, ରିପବ୍ଲିକ୍ ପ୍ଲେଟୋଙ୍କର ଜ୍ଞାନମୀମାଂସା ସମ୍ବନ୍ଧୀୟ ଚର୍ଚ୍ଚାର ପୁସ୍ତକ ନୁହେଁ । ରିପବ୍ଲିକରେ ଜ୍ଞାନ ସଂପର୍କୀୟ ଯାହା କେତେକ ପ୍ରଶ୍ନର ଅବତାରଣା ହୋଇଛି । ତେବେ ଥିଏଟେଟସ ଡାଲଏଗରେ ଜ୍ଞାନ ସମ୍ବନ୍ଧୀୟ ପ୍ରଶ୍ନର ମୁଖ୍ୟ ଆଲୋଚନା ରହିଛି ଯଦିବା ଏଠାରେ ପ୍ଲେଟୋ ଜ୍ଞାନ କ'ଣ ନୁହଁ ତାହାର ଏକ ବିସ୍ତୃତ ଚିତ୍ର ଦେଇଛନ୍ତି ।

ପ୍ଲେଟୋଙ୍କର ଜ୍ଞାନମୀମାଂସା ସଂପର୍କରେ ଆଲୋଚନା କରିବାରେ ଅନ୍ୟ ଏକ ସମସ୍ୟା ମଧ୍ୟ ରହିଛି । ଏହାର କାରଣ ହେଉଛି ପ୍ଲେଟୋଙ୍କ ଜ୍ଞାନମୀମାଂସା ଓ ତାଙ୍କର ତତ୍ତ୍ୱମୀମାଂସା ପ୍ରାୟତଃ ସଂଯୁକ୍ତ ହୋଇ ରହିଛି । ଦର୍ଶନ ଇତିହାସର ବିକାଶଧାରାର ବହୁ ପରେ ଦର୍ଶନ କ୍ଷେତ୍ରରେ ଜ୍ଞାନମୀମାଂସା, ତତ୍ତ୍ୱମୀମାଂସା, ଆଚାରମୀମାଂସା, ସୌନ୍ଦର୍ଯ୍ୟଶାସ୍ତ୍ର, ତର୍କଶାସ୍ତ୍ର, ମୂଲ୍ୟମୀମାଂସା ଇତ୍ୟାଦି ଯେପରି ବିଶେଷ ବିଭାଗ ମାନ ବିକଶିତ ହେଲା ତାହା ସେହି ଅତୀତରେ ନଥିଲା । ସୁତରାଂ ପ୍ଲେଟୋଙ୍କ କ୍ଷେତ୍ରରେ ଜ୍ଞାନମୀମାଂସା (epistemology) ଓ ସତ୍ତାମୀମାଂସା (ontology) ପ୍ରଶ୍ନମାନଙ୍କ ଭିତରେ ପାର୍ଥକ୍ୟ କରିବା ଜଟିଳ ମନେହୁଏ । ଜ୍ଞାନମୀମାଂସା ଓ ସତ୍ତାମୀମାଂସା ପ୍ରଶ୍ନମାନ ପରସ୍ପର ସହ ମିଶିକରି ରହିବା ଦେଖାଯାଏ । ତେବେ ପ୍ଲେଟୋଙ୍କ ଦର୍ଶନରୁ ଆମେ ଏହାକୁ ପୃଥକ୍ କରି ଆଲୋଚନା କରିବାକୁ ପ୍ରୟାସ କରିବା ।

ପ୍ଲେଟୋଙ୍କ ସତ୍ତାମୀମାଂସା ଓ ତତ୍ତ୍ୱମୀମାଂସା (metaphysics) କ୍ଷେତ୍ରରେ ତାଙ୍କର ଆଇଡିଆ ସିଦ୍ଧାନ୍ତ ଏକ ମୌଳିକ ଓ ମୁଖ୍ୟ ଆଲୋଚ୍ୟ ବିଷୟ । ତେବେ ଏହି ପ୍ରସଙ୍ଗ ମାନ ତାଙ୍କର ଜ୍ଞାନମୀମାଂସା ଉପରେ ଆଧାରିତ । ସୁତରାଂ ପ୍ରଥମ ପ୍ରଶ୍ନ ହେଉଛି ଜ୍ଞାନ କହିଲେ କ'ଣ ବୁଝାଯାଏ ? ସେହିପରି ସତ୍ୟର ସ୍ୱରୂପ କିପରି ନିର୍ଣ୍ଣୟ କରାଯିବ ? ଏହି ପ୍ରସଙ୍ଗରେ ଜ୍ଞାନ ବା ସତ୍ୟ କ'ଣ ନୁହଁ ସେ ବିଷୟରେ ତାଙ୍କ ମନ୍ତବ୍ୟ ବ୍ୟକ୍ତ କରିଛନ୍ତି । ବିଶେଷକରି ଜ୍ଞାନର ସ୍ୱରୂପ ନେଇ ରହିଥିବା କେତେକ ମିଥ୍ୟା ମତକୁ ସେ ପ୍ରଥମେ ଖଣ୍ଡନ କରିଛନ୍ତି । ପ୍ଲେଟୋଙ୍କ ମତରେ ଭ୍ରମାତ୍ମକ ମତ ମାନଙ୍କର ନିରାକରଣ କରାଗଲେ ସତ୍ୟର ବାସ୍ତବ ସ୍ୱରୂପ ସ୍ପଷ୍ଟ ହୋଇପାରିବ । ପ୍ରଥମତଃ ପ୍ଲେଟୋଙ୍କ ଆବିର୍ଭାବ ପୂର୍ବରୁ ଏକ ବିଶ୍ୱାସ ରହିଥିଲା ଯେ ଆମର ଜ୍ଞାନର ଆଧାର ହେଉଛି ଇନ୍ଦ୍ରିୟ ପ୍ରତ୍ୟକ୍ଷ । ଜ୍ଞାନର ଆଧାର ଯେ ପ୍ରତ୍ୟକ୍ଷ ଏହି ବିଚାର ପ୍ରୋଟାଗୋରାସ ଓ କେତେକ ସଫିଷ୍ଟ ପ୍ରକାଶ କରିଥିଲେ । ପ୍ରଥମେ ଏହି ମତକୁ ପ୍ଲେଟୋ ଖଣ୍ଡନ କରିବାକୁ ଉଦ୍ୟମ କରିଛନ୍ତି । ପ୍ଲେଟୋଙ୍କ ମତରେ ଜ୍ଞାନ ପ୍ରତ୍ୟକ୍ଷ ଜନିତ ବୋଲି ଗ୍ରହଣ କଲେ ଏହା ବ୍ୟକ୍ତିକୈନ୍ଦ୍ରିକ ହୋଇଯିବ । ଯାହା ପ୍ରତ୍ୟେକ ବ୍ୟକ୍ତିକୁ ସତ୍ୟ ପ୍ରତିଭାତ ହେବ ତାହା ତା ପାଇଁ ସତ୍ୟ ବୋଲି ଗ୍ରହଣ କଲେ ବହୁ ଜଟିଳ ସମସ୍ୟା ଆସିବ । ଆମର ପ୍ରତ୍ୟକ୍ଷାନୁଭୂତିରେ ଆମେ ଦେଖେ ଗୋଟିଏ ବସ୍ତୁ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କୁ

ପୃଥକ୍ ଦେଖାଯାଏ । ସେହିପରି ଏକ ବସ୍ତୁ ଜଣଙ୍କୁ ଓଜନିଆ ଲାଗିପାରେ, ସେହି ବସ୍ତୁ ଅନ୍ୟଜଣଙ୍କୁ ହାଲୁକା ଲାଗିପାରେ । ଗୋଟିଏ ଆଲୁଅରେ କୌଣସି ବସ୍ତୁ ନୀଳ ଦେଖାଯାଏ ଅନ୍ୟ ଏକ ସ୍ଥିତିରେ ସମାନ ବସ୍ତୁଟି ଧଳା ଦେଖାଯାଏ, ଅନ୍ଧକାର ଭିତରେ ଏକ ବସ୍ତୁ କଳା ଜଣାଯାଏ । ଗୋଟିଏ ପଟୁ ଦେଖିଲେ ଏକ ବସ୍ତୁ ବର୍ଗକ୍ଷେତ୍ର ପରି ଜଣାପଡେ, ଅନ୍ୟ ପଟୁ ସେହି ବସ୍ତୁଟି ଏକ ଚତୁର୍ଭୁଜ ଜଣା ପଡିପାରେ ଓ ଏକ ଭିନ୍ନ କ୍ଷେତ୍ରରୁ ଦେଖିଲେ ସେହି ବସ୍ତୁଟି ଏକ ରମ୍ବସ ମନେହୁଏ । ତେବେ ଏହି ବିଭିନ୍ନ ସମ୍ବେଦନ ଭିତରୁ କେଉଁ ପ୍ରତ୍ୟକ୍ଷଟି ଠିକ୍ କିପରି କହିହେବ ? ଯଦି ପ୍ରତ୍ୟକ୍ଷ ବା ସମ୍ବେଦନ (impression) କୁ ଜ୍ଞାନର ଆଧାର ଭାବରେ ଗ୍ରହଣ କରାଯିବ, ତେବେ କେଉଁ ସମ୍ବେଦନ ଯଥାର୍ଥ ଓ କେଉଁଟି ଯଥାର୍ଥ ନୁହଁ ତାହା ନିର୍ଣ୍ଣୟ କରିବା ସହଜ ସାଧ୍ୟ ହେବ କି ? ପ୍ରତ୍ୟକ୍ଷକୁ ଜ୍ଞାନର ମାନଦଣ୍ଡ କଲେ ଏହି ସମସ୍ୟାର ସମାଧାନ କରିହେବ ନାହିଁ, କାରଣ କେତେକ ପ୍ରତ୍ୟକ୍ଷକୁ ଅସ୍ୱୀକାର କରିବା ଓ ଅନ୍ୟ ପ୍ରତ୍ୟକ୍ଷକୁ ସ୍ୱୀକାର କରିବା ଯଥାର୍ଥ ମନେ ହେବ ନାହିଁ ।

ପ୍ରତ୍ୟକ୍ଷ କ୍ଷେତ୍ରରେ କୁହାଯାଏ ଯେ ଜ୍ଞାନ ବ୍ୟକ୍ତିନିଷ୍ଠ, ତେଣୁ ଯାହା ଜଣଙ୍କୁ ଯେପରି ପ୍ରତିଭାତ ହେଉଛି ତାହା ତା ପାଇଁ ସତ୍ୟ । ଭବିଷ୍ୟ ଘଟଣା ନେଇ ଏପରି ପରିକଳ୍ପନା ଅନେକ କରାଯାଏ । ଯେ ଯେପରି କଳ୍ପନା କରୁଛନ୍ତି ସତ୍ୟର ଅର୍ଥ ତାଙ୍କ ପାଇଁ ସେଇଆ ହିଁ ହେବ । ଏପରି ହେଲେ ସତ୍ୟର କୌଣସି ଅର୍ଥ ହିଁ ରହିବ ନାହିଁ । ଭିନ୍ନ ଭିନ୍ନ ଲୋକଙ୍କର ପରିକଳ୍ପନା ଭିନ୍ନ ହୋଇପାରେ । ତାହେଲେ କାହାକୁ ସତ୍ୟ ଧରାଯିବ ? ଏହି ଉଦାହରଣଟିକୁ ବିଚାର କରାଯାଉ । କ କୁ ପ୍ରତିଭାତ ହେଉଛି ଆଗାମୀ ଦିନରେ କରୋନା ମହାମାରୀର ରୂପନେବ । ଖ କୁ ପ୍ରତିଭାତ ହେଉଛି ଯେ ଏହା ଖୁବ୍ ଅଳ୍ପଦିନରେ ନିୟନ୍ତ୍ରିତ ହୋଇଯିବ । ଗ ର ମନେହେଉଛି ଯେ ଆଗାମୀ ଦୁଇ ମାସ ମଧ୍ୟରେ କରୋନାର ପ୍ରତିଷେଧକ ପ୍ରସ୍ତୁତ ହୋଇଯିବ, ଘ କୁ ଅନୁଭବ ହେଉଛି ଏହାର ପ୍ରତିଷେଧକ ବାହାରିବା ପୂର୍ବରୁ ଏହା ସମଗ୍ର ପୃଥିବୀରେ ବହୁ ମାନବଜୀବନ ନେଇ ସାରିଥିବ । ଏହିପରି ବିଭିନ୍ନ ବ୍ୟକ୍ତି ଗୋଟିଏ ପ୍ରସଙ୍ଗ ଉପରେ ନାନାମତ ରଖିପାରନ୍ତି । ଜ୍ଞାନକୁ ବ୍ୟକ୍ତିନିଷ୍ଠ କହିବା ଦ୍ୱାରା ଏହି ସମସ୍ୟାର ସମାଧାନ ହୋଇପାରିବ ନାହିଁ । ସତ୍ୟ ଯଦି ବ୍ୟକ୍ତିଗତ ଉପଲବ୍ଧି ବା କଳ୍ପନାର ବସ୍ତୁ ହୁଏ ତେବେ ସତ୍ୟର କୌଣସି ମାନଦଣ୍ଡ ରହିପାରିବ ନାହିଁ । ପ୍ଲେଟୋ ଅନେକାନ୍ତବାଦକୁ ଗ୍ରହଣ କରୁନାହାନ୍ତି ।

ଯଦି ପ୍ରତ୍ୟକ୍ଷକୁ ସତ୍ୟର ମାନକ ଭାବେ ନିଆଯିବ ଓ ପ୍ରତ୍ୟେକ ବ୍ୟକ୍ତିର ଉପଲବ୍ଧି ତା ପାଇଁ ସତ୍ୟର ମାଧ୍ୟମ ହେବ, ତେବେ ଗୁରୁତର ସମସ୍ୟା ଆସିବ । ମନୁଷ୍ୟର ପ୍ରତ୍ୟକ୍ଷ କରିବାର ସାମର୍ଥ୍ୟ ରହିଛି । କେବଳ ମନୁଷ୍ୟର ପ୍ରତ୍ୟକ୍ଷ କରିବାର ଯେ ଶକ୍ତି ରହିଛି ତା ନୁହେଁ, ଅନ୍ୟାନ୍ୟ ପ୍ରାଣୀମାନଙ୍କର ବି ପ୍ରତ୍ୟକ୍ଷ କରିବାର ସାମର୍ଥ୍ୟ ରହିଛି । ଯେ ଯେପରି ପ୍ରତ୍ୟକ୍ଷ କରୁଛି, ଯଦି ତାହା ସତ୍ୟ ହୁଏ, ତେବେ ମନୁଷ୍ୟ ଓ ଇତର ପ୍ରାଣୀମାନଙ୍କ ମଧ୍ୟରେ କୌଣସି ଭେଦଭାବ ରହିବ କି ? ଇତର ପ୍ରାଣୀ ହେଉ ବା ମନୁଷ୍ୟ ହେଉ, ସମସ୍ତ ଜୀବଙ୍କର ଇନ୍ଦ୍ରିୟ ଅନୁଭବର ଶକ୍ତି ରହିଛି । ସେହି ଦୃଷ୍ଟିରୁ ସମସ୍ତେ ସମାନ ବୋଲି ବା ସମସ୍ତଙ୍କର ସତ୍ୟ ଉପଲବ୍ଧି ସମାନ ବୋଲି କହିବା ଅବାନ୍ତର ମନେହୁଏ ।

ମନୁଷ୍ୟ ବ୍ୟକ୍ତି ସବୁର ମାନଦଣ୍ଡ ଓ ପ୍ରତ୍ୟେକର ପ୍ରତ୍ୟକ୍ଷ ସତ୍ୟ କୁହାଗଲେ ସକଳ ଶିକ୍ଷା, ପ୍ରମାଣ, ସିଦ୍ଧାନ୍ତ, ଆଲୋଚନା ଇତ୍ୟାଦି ଅର୍ଥଶୂନ୍ୟ ହୋଇଯିବ । ଯଦି ସକଳ ପ୍ରତ୍ୟକ୍ଷକୁ ସମାନ ଓ ସତ୍ୟ ବୋଲି ଧରାଯିବ, ଜଣେ ଶିଶୁର ପ୍ରତ୍ୟକ୍ଷ ତା'ର ଶିକ୍ଷକମାନଙ୍କର ପ୍ରତ୍ୟକ୍ଷ ସହ ସମାନ ବୋଲି ଧରାଯିବ । ସେପରି ସ୍ଥଳେ କିଏ କାହିଁକି କାହାକୁ ଶିକ୍ଷା ଦେବେ ? ଯଦି ସମସ୍ତେ ସତ୍ୟକୁ ନିଜ ପ୍ରତ୍ୟକ୍ଷ ଆଧାରରେ ଜାଣିବାକୁ ସମର୍ଥ, ତେବେ ଶିକ୍ଷା, ପ୍ରମାଣ, ଆଲୋଚନା ଇତ୍ୟାଦିର କୌଣସି ମହତ୍ତ୍ୱ ରହିବ ନାହିଁ ।

ପ୍ରୋଟାଗୋରାସଙ୍କ ନିଜସ୍ୱ ସିଦ୍ଧାନ୍ତ ତାଙ୍କ ମାନଦଣ୍ଡରେ ମିଥ୍ୟା ପ୍ରମାଣିତ ହେଉଛି । ପ୍ରୋଟାଗୋରାସଙ୍କ ମତରେ, 'ଯାହା ମୋ ପାଇଁ ସତ୍ୟ ପ୍ରତିଭାତ ହେଉଛି ତାହା ମୋ ପାଇଁ ସତ୍ୟ' । ସେପରି ସ୍ଥଳେ ପ୍ଲେଟୋ କହିବେ ଯେ ଯଦି ପ୍ରୋଟାଗୋରାସଙ୍କ ସିଦ୍ଧାନ୍ତ ତାଙ୍କ (ପ୍ଲେଟୋ) ପାଇଁ ମିଥ୍ୟା ପ୍ରତିଭାତ ହେଉଛି ତେବେ ତାହା ତାଙ୍କ ପାଇଁ ମିଥ୍ୟା । ଏହିପରି ସିଦ୍ଧାନ୍ତକୁ ପ୍ରୋଟାଗୋରାସ ମାନିବାକୁ ବାଧ୍ୟ, କାରଣ ଏହା ହିଁ ହେଉଛି ତାଙ୍କ ଦ୍ୱାରା ପ୍ରଚାରିତ ସିଦ୍ଧାନ୍ତ ।

ଏହି ମତବାଦ ସତ୍ୟର ବସ୍ତୁନିଷ୍ଠତା ସିଦ୍ଧାନ୍ତର ପରିପନ୍ଥୀ । ଯଦି ସତ୍ୟର କୌଣସି ବସ୍ତୁନିଷ୍ଠ ମାନଦଣ୍ଡ ରହିବ ନାହିଁ ତେବେ ସତ୍ୟର କୌଣସି ଅର୍ଥ ହିଁ ରହିବ ନାହିଁ । ଗୋଟିଏ କଥା ଏକ ସମୟରେ ସତ୍ୟ ଓ ମିଥ୍ୟା ହେବ । ଏକ ସମୟରେ ଯାହା ଆପଣଙ୍କ ପାଇଁ ସତ୍ୟ ହେବ, ତାହା ମୋ ପାଇଁ ମିଥ୍ୟା ହେବ । ଯାହା ଏକ ସମୟରେ କ ପାଇଁ ସତ୍ୟ, ତାହା ସେହି ସମୟରେ ଖ ପାଇଁ ମିଥ୍ୟା ହେବ, କାରଣ ସେମାନଙ୍କର ପ୍ରତ୍ୟକ୍ଷ ପରସ୍ପରଠାରୁ ଭିନ୍ନ ହେବା ସମ୍ଭବ । ସୁତରାଂ ଏକ ବଚନ ସତ୍ୟ ମିଥ୍ୟା କହିବାର କିଛି ଅର୍ଥ ହିଁ ରହିବ ନାହିଁ । ଯଦି ଏକ ବଚନ କାହା ପାଇଁ ସତ୍ୟ ଓ କାହା ପାଇଁ ମିଥ୍ୟା ହେବ, ଏହା ସତ୍ୟ କି ମିଥ୍ୟା କହିବାର କିଛି ମାନେ ହିଁ ରହିବ ନାହିଁ । ମୁଁ ଯାହା ପ୍ରତ୍ୟକ୍ଷ କରୁଛି ଯଦି ତାହା ମୋ ପାଇଁ ସତ୍ୟ, ତାହେଲେ ସତ୍ୟ ଓ ମିଥ୍ୟାର ଭେଦଭାବ ଅପ୍ରାସଙ୍ଗିକ ହୋଇଯିବ । କାରଣ ଏଠାରେ ମୋର ପ୍ରତ୍ୟକ୍ଷକୁ କେବଳ ଏକ ନୂତନ ପରିଭାଷା ଦିଆଯାଉଛି, ଏହା ସତ୍ୟ ମିଥ୍ୟା ଭିତରେ କୌଣସି ପାର୍ଥକ୍ୟ କରୁନାହିଁ ।

ସମସ୍ତ ପ୍ରତ୍ୟକ୍ଷ କ୍ଷେତ୍ରରେ, ପ୍ରତ୍ୟକ୍ଷ ବ୍ୟତୀତ ଅନ୍ୟାନ୍ୟ ପ୍ରସଙ୍ଗ ବି ସଂଯୁକ୍ତ ରହିଥାଏ । ମନେ କରାଯାଉ ମୁଁ ଏକ ବକ୍ତବ୍ୟ ଦେଲି-"ମୋ ସମ୍ମୁଖରେ ରହିଥିବା ବସ୍ତୁଟି ହେଉଛି ଏକ ଧୂସର ରଙ୍ଗର ଆଲମିରା" । ଏହା ଭାବିବା ସ୍ୱାଭାବିକ ଯେ ମୁଁ ମୋର ପ୍ରତ୍ୟକ୍ଷଦ୍ୱାରା ଯାହା ଦେଖୁଛି ତାହା ହିଁ ବ୍ୟକ୍ତ କରୁଛି । ତେବେ ଏହି ବାକ୍ୟଟି ଉଚାରଣ କରିବା ପୂର୍ବରୁ ମୁଁ ଏହା ବିଷୟରେ ଚିନ୍ତା କରିଛି । ମୁଁ ମୋ ସମ୍ମୁଖର ବସ୍ତୁଟିକୁ ଆଲମିରା କହିବାଦ୍ୱାରା ମୁଁ ମାନସିକ ସ୍ତରରେ ଏହାକୁ ଶ୍ରେଣୀକରଣ କରିଛି । ମୁଁ ଏହାକୁ ଆଲମିରା କହିବା ଦ୍ୱାରା ଏହାକୁ ଟେବୁଲ, ଫ୍ୟାନ, ଚଉକି, ପୁସ୍ତକ ଇତ୍ୟାଦିଠାରୁ ପୃଥକ୍ କରିଛି ଓ ଏହାକୁ ଆଲମିରା ଶ୍ରେଣୀରେ ଅନ୍ତର୍ଭୁକ୍ତ କରିଛି । ସୁତରାଂ ମୁଁ ଏହାକୁ ଆଲମିରା କହିବା ଦ୍ୱାରା ଏହାକୁ ଅନ୍ୟମାନଙ୍କ ସହ ତୁଳନା କରିଛି ଓ ଏହାକୁ ଏକ ଶ୍ରେଣୀରେ ସଂପୃକ୍ତ କରିଛି ।

ବସ୍ତୁଟି ମୋର ବହୁବିଧ ସମ୍ବେଦନର ଏକ ସମ୍ମିଳିତ ଅଭିବ୍ୟକ୍ତି । ଏହା ଧୂସର ରଙ୍ଗର, ଉଚ୍ଚତା ବିଶିଷ୍ଟ, ଦ୍ୱାରଯୁକ୍ତ, ଲୌହନିର୍ମିତ ଇତ୍ୟାଦି ମୋର ସମ୍ବେଦନମାନଙ୍କୁ ନେଇ ମୁଁ ଏହାକୁ ଆଲମିରା ନାମିତ କରିଛି । ମୁଁ ପୂର୍ବରୁ ଆଲମିରା ଦେଖିଛି, ପୂର୍ବର ସେହି ସମ୍ବେଦନ ସହ ବର୍ତ୍ତମାନର ସମ୍ବେଦନମାନଙ୍କୁ ତୁଳନା କରି ଏହି ବସ୍ତୁଟିକୁ ଆଲମିରା କହୁଛି । ମୁଁ ଏହାକୁ ଆଲମିରା କହୁଛି ଓ ଏପରି କହିବାଦ୍ୱାରା ଏହାକୁ ଟେବୁଲ, ବହି, ଖଟ, ଖାତାଠାରୁ ପୃଥକ୍ କରୁଛି; ଆଲମିରାର ସମ୍ବେଦନକୁ ମୁଁ ଟେବୁଲ, ଖଟ.... ଇତ୍ୟାଦିର ସମ୍ବେଦନଠାରୁ ପୃଥକ୍ କରିପାରୁଛି । ମୁଁ ଏହାକୁ ଆଲମିରା କହିବା ପୂର୍ବରୁ ବର୍ତ୍ତମାନର ମୋର ସମ୍ବେଦନକୁ ପୂର୍ବର ସମ୍ବେଦନ ସହ ତୁଳନା କରୁଛି ଓ ସମ୍ବେଦନମାନଙ୍କ ମଧ୍ୟରେ ସାମଂଜସ୍ୟ ଓ ପୃଥକତା ପ୍ରତିଷ୍ଠା କରୁଛି । ଏହାକୁ ଧୂସର ରଙ୍ଗର କହିବା ବେଳେ ମୁଁ ଧୂସର ରଙ୍ଗକୁ ଅନ୍ୟ ରଙ୍ଗ ଯଥା କଳା, ନାଲି, ହଳଦିଆ... ଇତ୍ୟାଦିଠାରୁ ପୃଥକ୍ କରୁଛି ଓ ଧୂସର ରଙ୍ଗର ବସ୍ତୁ ସହ ମୋର ବର୍ତ୍ତମାନର ସମ୍ବେଦନକୁ ସଂଯୋଜିତ କରୁଛି । ତେବେ ମୋର ଇନ୍ଦ୍ରିୟ ମାଧ୍ୟମରେ ଏହି ତୁଳନା, ଶ୍ରେଣୀକରଣ, ପୃଥକୀକରଣ ଇତ୍ୟାଦି ମୁଁ କରିବା ସମ୍ଭବ ନୁହେଁ । ପ୍ରତ୍ୟେକ ଇନ୍ଦ୍ରିୟ ଜନିତ ସମ୍ବେଦନ ଏକ ବିଚ୍ଛିନ୍ନ ଅନୁଭୂତି । ଏକ ବିଚ୍ଛିନ୍ନ ଅନୁଭୂତି ବା ସମ୍ବେଦନ ନିଜର ଊର୍ଦ୍ଧ୍ୱକୁ ଯାଇପାରିବ ନାହିଁ । ଏକ ନିର୍ଦ୍ଦିଷ୍ଟ ସମ୍ବେଦନକୁ ଅନ୍ୟ ସମ୍ବେଦନ ସହ ସଂଯୁକ୍ତ କରିବା, ଏହାକୁ ଅନ୍ୟଠାରୁ ପୃଥକ୍ କରିବା, ଅନ୍ୟ ଅନୁଭୂତି ସହ ଏହାକୁ ତୁଳନା କରିବା କାର୍ଯ୍ୟ ମୁଁ ମୋର ମନ ସାହାଯ୍ୟରେ ହିଁ କରିଥାଏ । ମୁଁ ଇନ୍ଦ୍ରିୟ ମାଧ୍ୟମରେ ସମ୍ବେଦନ ପାଏ, କିନ୍ତୁ ସମ୍ବେଦନମାନଙ୍କୁ ସଂଯୋଜିତ କରିବା,ପୃଥକ୍ କରିବା ଇତ୍ୟାଦି କାର୍ଯ୍ୟ ମନଦ୍ୱାରା ନିର୍ବାହ କରେ । ଅର୍ଥାତ୍ ପୃଥକ୍ ସମ୍ବେଦନମାନଙ୍କୁ ଏକତ୍ର କରିବା, ତୁଳନା କରିବା ଇତ୍ୟାଦି ଇନ୍ଦ୍ରିୟ ସାହାଯ୍ୟରେ ହୋଇନଥାଏ, ମନ ସାହାଯ୍ୟରେ ହୋଇଥାଏ । ବିଭିନ୍ନ ଇନ୍ଦ୍ରିୟ ମାଧ୍ୟମରେ ପ୍ରାପ୍ତ ହେଉଥିବା ସମ୍ବେଦନମାନଙ୍କୁ ଏକାଠି କରିବା, ପୃଥକ୍ କରିବା, ତୁଳନା କରିବା ବା ସେମାନଙ୍କୁ ସଂଗଠିତ କରି ଶ୍ରେଣୀକରଣ କରିବା କାର୍ଯ୍ୟ ମାନସିକ ସ୍ତରରେ ହୋଇଥାଏ । ଯେତେବେଳେ ବିଭିନ୍ନ ଇନ୍ଦ୍ରିୟଦ୍ୱାରା ପ୍ରାପ୍ତ ସମ୍ବେଦନମାନଙ୍କ ମଧ୍ୟରେ ଏହା କରିବାକୁ ହୁଏ ସେତେବେଳେ ତାହା ମାନସିକ ସ୍ତରରେ ସଂଘଟିତ ହୋଇଥାଏ । ଗୋଟିଏ ପେଣ୍ଡୁ ବା ବଲକୁ ନିଜ ହାତର ଆଙ୍ଗୁଳିଦ୍ୱାରା ସ୍ପର୍ଶକରି ଏହା ଏକ ପେଣ୍ଡୁ ଓ ଗୋଲାକାର ବୋଲି ମଧ୍ୟ କୁହାଯାଏ । ତେବେ ଏକ ସ୍ପର୍ଶ ଜନିତ ଅନୁଭୂତି ଏକ ଦୃଶ୍ୟ ଜନିତ ସମ୍ବେଦନଠାରୁ ପୃଥକ୍ । ତଥାପି ବସ୍ତୁଟିକୁ ସ୍ପର୍ଶକରି କିମ୍ବା ଦେଖିକରି ଏହା ଗୋଲାକାର ବୋଲି ମୁଁ କହିଥାଏ ବା ସେମାନଙ୍କୁ ଏକତ୍ର କରିଥାଏ । ଦୁଇ ପୃଥକ୍ ସମ୍ବେଦନକୁ ଏକାଠି କରିବା ବା ସେମାନଙ୍କୁ ଅଲଗା କରିବା କେବଳ ଇନ୍ଦ୍ରିୟଦ୍ୱାରା ହୋଇପାରେ ନାହିଁ । କାରଣ ଆଖିଦ୍ୱାରା ମୁଁ ଅନୁଭବ କରେ ନାହିଁ କିମ୍ବା ଅଙ୍ଗୁଳି ସାହାଯ୍ୟରେ କିଛି ବସ୍ତୁକୁ ଦେଖେ ନାହିଁ । ସୁତରାଂ ଏହା ମନଦ୍ୱାରା କରାଯାଏ ଯାହା ଇନ୍ଦ୍ରିୟ ଊର୍ଦ୍ଧ୍ୱରେ କାର୍ଯ୍ୟ କରିଥାଏ । ସୁତରାଂ ମାନସିକ କ୍ରିୟା ଇନ୍ଦ୍ରିୟ ଜନିତ ସମ୍ବେଦନ ଊର୍ଦ୍ଧ୍ୱରେ କାର୍ଯ୍ୟ କରିଥାଏ । ସମ୍ବେଦନମାନଙ୍କୁ ତୁଳନା କରିବା, ସେମାନଙ୍କୁ ପରସ୍ପର ସହ ସଂଯୋଜିତ କରିବା, ପରସ୍ପରଠାରୁ ପୃଥକ୍ କରିବା ଇତ୍ୟାଦି କାର୍ଯ୍ୟ ଇନ୍ଦ୍ରିୟଦ୍ୱାରା ହୋଇନଥାଏ ବରଂ ଏହା ମନ, ବୁଦ୍ଧି ମାଧ୍ୟମରେ କରାଯାଏ । ପ୍ରତ୍ୟେକ ଜ୍ଞାନ କ୍ଷେତ୍ରରେ ବୁଦ୍ଧି (intellect) ର ଭୂମିକା ରହିଥାଏ । ଏହା ଏକ

ଆଲମିରା, ଏହାର ରଙ୍ଗ ଧୂସର ଇତ୍ୟାଦି ସାଧାରଣ ବଚନମାନଙ୍କୁ ପ୍ରକାଶ କରିବା କ୍ଷେତ୍ରରେ ବି ବୁଦ୍ଧିର ଆବଶ୍ୟକତା ରହିଥାଏ । ସୁତରାଂ ଜ୍ଞାନ କେବଳ ଇନ୍ଦ୍ରିୟ-ସମ୍ବେଦନ ମାଧ୍ୟମରେ ହୋଇଥାଏ ବୋଲି ଯାହା ସଫିଷ୍ଟମାନେ ବିଚାର କରୁଥିଲେ ତାହା ଯଥାର୍ଥ ନୁହେଁ ବୋଲି ପ୍ଲେଟୋ ଦର୍ଶାଇଛନ୍ତି । ଅତି ସାଧାରଣ ବଚନ ପ୍ରକାଶ କରିବା କ୍ଷେତ୍ରରେ ମଧ୍ୟ ବୁଦ୍ଧି ଆବଶ୍ୟକ ହୋଇଥାଏ ।

ଇନ୍ଦ୍ରିୟ ସମ୍ବେଦନ ଯାହାକୁ ପ୍ରତ୍ୟକ୍ଷ କୁହାଯାଉଛି ତାହାକୁ ଜ୍ଞାନ କୁହାଯାଇ ପାରିବ ନାହିଁ । ସଫିଷ୍ଟମାନେ ପ୍ରତ୍ୟକ୍ଷକୁ ଜ୍ଞାନ ବୋଲି ମନେ କରୁଥିଲେ, ସେହିମତକୁ ପ୍ଲେଟୋ ନାନା ଭାବରେ ସମାଲୋଚନା କରିଛନ୍ତି । ସେହିପରି ଏକ ମତ (opinion) କୁ ମଧ୍ୟ ଜ୍ଞାନ ଭାବରେ ନିଆଯାଇ ପାରିବ ନାହିଁ । ଏକ ମତ ଯେ ଜ୍ଞାନ ଏହାକୁ ମଧ୍ୟ ପ୍ଲେଟୋ ସମାଲୋଚନା କରିଛନ୍ତି । ଏକ ମତ ହୁଏତ ଭ୍ରମାତ୍ମକ ହୋଇପାରେ କିମ୍ବା ଯଥାର୍ଥ ମଧ୍ୟ ହୋଇପାରେ । ଏକ ଭ୍ରମାତ୍ମକ ମତ (wrong opinion) ତ ଜ୍ଞାନ ନୁହେଁ, ଏକ ଯଥାର୍ଥ ମତକୁ ବି ଜ୍ଞାନର ସ୍ଥାନ ଦିଆଯାଇ ପାରିବ ନାହିଁ । ମନେ କରାଯାଉ ଜଣେ କହିଲେ ଯେ ଓଡିଶାର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ୧ ୯ ୯ ୯ ରେ ଯେଉଁପରି ଏକ ସାମୁଦ୍ରିକ ମହାବାତ୍ୟା ହୋଇଥିଲା ସେହିପରି ଏକ ମହାବାତ୍ୟା ୨ ୦ ୯ ୯ ରେ ହେବ । ଏହାକୁ ଏକ ଆଧାରହୀନ ମତ ବୋଲି ନିଆଯିବ । ଯଦିବି ସେପରି କିଛି ଘଟଣା ଘଟେ ଏହାକୁ ଜ୍ଞାନ କୁହାନଯାଇ ବରଂ ଏକ ବିଶ୍ୱାସ ବୋଲି ଅତିବେଶିରେ କୁହାଯାଇପାରିବ । ଯେ ଏପରି ଭବିଷ୍ୟତବାଣୀ କରନ୍ତି ତାଙ୍କ ଭବିଷ୍ୟତବାଣୀକୁ ଜ୍ଞାନର ଭୂମିକା ଦିଆଯାଇ ପାରିବ ନାହିଁ । ଜଣେ ଯଦି କୁହନ୍ତି ଯେ ତାଙ୍କର ଅନ୍ତଃପ୍ରଜ୍ଞାଦ୍ୱାରା ସେ ଏକ ଭବିଷ୍ୟତ ଘଟଣାକୁ ଜାଣିପାରୁଛନ୍ତି ତେବେ ଏହାକୁ ଏକ ବିଶ୍ୱାସ ବା ଅତିବେଶିରେ ଏକ ମତ ବୋଲି ନିଆଯିବ । ଯଦି ଜଣଙ୍କର ମତଟି ଠିକ୍ ହୁଏ ଏହାକୁ ହୁଏତ ଯଥାର୍ଥ ମତର ସ୍ୱୀକୃତି ଦିଆଯାଇପାରେ । ତେବେ ଜ୍ଞାନ ଓ ଯଥାର୍ଥ ମତ ମଧ୍ୟରେ ପାର୍ଥକ୍ୟ ରହିଛି । ଜଣେ ଯାହା ନିର୍ଦ୍ଦିଷ୍ଟ ଭାବରେ ଜାଣନ୍ତି ତାହା ଜ୍ଞାନ ଓ ଯାହା ଜ୍ଞାନ ତାହା ସତ୍ୟ ହୋଇଥାଏ ଓ ଏହା କାହିଁକି ସତ୍ୟ, ତାହାର କାରଣ ଜଣାଥାଏ । 'କରୋନା ଏକ ମହାମାରୀ ସଂକ୍ରାମକ ରୋଗ' କହିବା ଯଥାର୍ଥ କାରଣ ଏହା କିପରି ମହାମାରୀ ତାହାର କାରଣ ଜଣାଅଛି । କିନ୍ତୁ ଏକ ଭବିଷ୍ୟବାଣୀ ବା ଜଣଙ୍କର ବ୍ୟକ୍ତିଗତ ଅନୁଭୂତି କିମ୍ବା କଳ୍ପନାକୁ ଜ୍ଞାନ ବୋଲି ନିଆଯାଇ ପାରିବ ନାହିଁ । ଏକ ଭବିଷ୍ୟବାଣୀ ଯଦି ବି କାକତାଳିକ ନ୍ୟାୟରେ ସତ୍ୟ ହୁଏ ତେବେ ବି ଏହା ଜ୍ଞାନ ନୁହେଁ, କାରଣ ଏହା କାହିଁକି ଘଟିବ ତାହାର କୌଣସି କାରଣ ନଥାଏ । ସୁତରାଂ ଏକ ଜ୍ଞାନ କ୍ଷେତ୍ରରେ ପୂର୍ଣ୍ଣ ଅବବୋଧ ଓ ଯୁକ୍ତିସଂଗତ କାରଣ ରହିବା ଦରକାର । କେବଳ ଏକ କଳ୍ପନା, ଏକ ଆବେଗିକ ଅନୁମାନ, ଏକ ପ୍ରାକୃତିକ ଉପଲବ୍ଧି ବା ବ୍ୟକ୍ତିଗତ ଅନ୍ତଃପ୍ରଜ୍ଞା ଜନିତ ଭାବନାକୁ ଜ୍ଞାନର ଭୂମିକା ଦିଆଯାଇ ପାରିବ ନାହିଁ । ବସ୍ତୁତଃ ଯାହାକୁ ଜ୍ଞାନ କୁହାଯିବ ତାହା ବିଚାର ବା ତର୍କବୁଦ୍ଧି ଉପରେ ପର୍ଯ୍ୟବସିତ ହେବା ଆବଶ୍ୟକ, ବିଶ୍ୱାସ ଉପରେ ନୁହଁ । ମନଛୁଆଁ ଭାଷଣ, ଭାବଗର୍ଭକ ବାଗ୍ମିତା, ପ୍ରବର୍ତ୍ତନା ବା ପାଣ୍ଡିତ୍ୟଦ୍ୱାରା ଏକ ମତକୁ ପ୍ରସାର କରାଯାଇପାରେ, ତେବେ ତାହା ଉପଯୁକ୍ତ ବିଚାର ଉପରେ ଆଧାରିତ ନଥିଲେ ତାହା ଜ୍ଞାନ ହୋଇପାରିବ ନାହିଁ । ଜଣେ ନିଜର ଭାବଗର୍ଭକ ଭାଷଣ ମାଧ୍ୟମରେ ଲୋକମାନଙ୍କୁ ପ୍ରଭାବିତ କରିପାରନ୍ତି, କିନ୍ତୁ ଯଦି ତାହା ଯୁକ୍ତିସଂଗତ

ବିଚାରଦ୍ୱାରା ସମର୍ଥିତ ନୁହେଁ ତାହା ଜ୍ଞାନର ସ୍ଥାନ ନେଇପାରିବ ନାହିଁ । ଏକ ଯଥାର୍ଥ ମତ ଏହି ଦୃଷ୍ଟିରୁ ଜ୍ଞାନଠାରୁ ପୃଥକ୍ । ଶବ୍ଦ ଚାତୁରୀ, ଭାବପ୍ରବଣ କଳାପରି କୌଣସି ବାଗ୍ମିତା ଜନମାନସକୁ ଉତ୍ତେଜିତ ବା ପ୍ରଭାବିତ କରିବା ପରି ବକ୍ତବ୍ୟମାନ କେବଳ ମତ ବା ଧାରଣା ହୋଇପାରନ୍ତି, କିନ୍ତୁ ସେଗୁଡିକ ବିଚାରଦ୍ୱାରା ସମର୍ଥିତ ନ ହେଲେ କେବଳ ଅପ୍ରମାଣିତ ବିଶ୍ୱାସ । ଏକ ମତ ସତ୍ୟ ବା ମିଥ୍ୟା ହେବାର ସମ୍ଭାବନା ରଖେ । କନ୍ତୁ ଜ୍ଞାନ ସର୍ବଦା ସତ୍ୟ ହୋଇଥାଏ । ଜ୍ଞାନ ଓ ମତ ଭିତରେ ପ୍ଲେଟୋ ଏହିପରି ପାର୍ଥକ୍ୟ କରିଛନ୍ତି । ବସ୍ତୁତଃ ପ୍ରତ୍ୟକ୍ଷ, ବିଶ୍ୱାସ, ମତ, ବ୍ୟକ୍ତିଗତ ଉପଲବ୍ଧି ଇତ୍ୟାଦିକୁ ନିଜସ୍ୱ ମାନଦଣ୍ଡରେ ଜ୍ଞାନର ସ୍ଥାନ ଦିଆଯାଇ ପାରିବ ନାହିଁ, ଏହା ପ୍ଲେଟୋ ତାଙ୍କର ଡାଏଲଗ୍ ଥିଏଟେଟସ୍‌ରେ ଦର୍ଶାଇଛନ୍ତି ।

କ’ଣ ଜ୍ଞାନ ନୁହେଁ ତାହାର ବ୍ୟାଖ୍ୟା ପରେ ପ୍ଲେଟୋ ଜ୍ଞାନର ସ୍ୱରୂପ ଓ ଲକ୍ଷଣ ବିଷୟରେ ଆଲୋଚନା କରିଛନ୍ତି । ସେ ପ୍ରଥମେ ଜ୍ଞାନର ନକାରାତ୍ମକ ଦିଗ ଉପରେ ପ୍ରାଧାନ୍ୟ ଦେଇ ପରେ ଏହାର ପ୍ରକୃତ ସ୍ୱରୂପ ଉପରେ ଧ୍ୟାନ ଦେଇଛନ୍ତି । ତେବେ ଏହି କ୍ଷେତ୍ରରେ ପ୍ଲେଟୋଙ୍କର ଜ୍ଞାନମୀମାଂସା ସକ୍ରେଟିସ୍‌ଙ୍କର ଭାବନାଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଛି । ସକ୍ରେଟିସ୍‌ଙ୍କର ମତ ଥିଲା ଯେ ଜ୍ଞାନ ପ୍ରତ୍ୟୟଭିତ୍ତିକ ବା ପ୍ରତ୍ୟୟ ଆଧାରିତ । ପ୍ଲେଟୋ ବି ସେହି ମତକୁ ଗ୍ରହଣ କରିଛନ୍ତି । ପ୍ରତ୍ୟୟ (concept) ହେଉଛି ଏକ ସଂଜ୍ଞା ସଦୃଶ । ଏକ ସଂଜ୍ଞା ସ୍ଥିର ଓ ଅପରିବର୍ତ୍ତନୀୟ । କୌଣସି ବିଷୟର ସଂଜ୍ଞା ଦିଆଯିବା ବେଳେ ତାହା ଯଥାର୍ଥ ହୋଇଥିଲେ ତାହା ସାର୍ବଜନୀନ ହୋଇଥାଏ । ଏକ ପ୍ରତ୍ୟୟ ଏହି ମାନଦଣ୍ଡରୁ ହେଉଛି ଏକ ସଂଜ୍ଞା, ଯାହା ଅପରିବର୍ତ୍ତନୀୟ ଓ ସାର୍ବଜନୀନ ଭାବରେ ଗୃହୀତ । ଏହା ବ୍ୟକ୍ତିଗତ ଅବବୋଧ, ମତ ବା ପ୍ରତ୍ୟକ୍ଷ ଉପରେ ନିର୍ଭର କରିନଥାଏ । ଏକ ପ୍ରତ୍ୟୟ ଜନିତ ଜ୍ଞାନ ସର୍ବଦା ବସ୍ତୁନିଷ୍ଠ ଓ ସତ୍ୟ । ସୁତରାଂ ପ୍ଲେଟୋଙ୍କ ମତରେ ଯାହା ଜ୍ଞାନ ତାହା ସତ୍ୟ, ବସ୍ତୁନିଷ୍ଠ ଓ ସାର୍ବଜନୀନ । କୌଣସି ପ୍ରସଙ୍ଗ ଉପରେ ଯଥାର୍ଥ ଜ୍ଞାନ ପାଇଁ ସେହି ପ୍ରତ୍ୟୟଟିକୁ ପ୍ରଥମେ ବୁଝିବାକୁ ହେବ । ତାହାର ସଂଜ୍ଞା କ’ଣ ହୋଇ ପାରିବ ତାହାକୁ ଉପଯୁକ୍ତ ବିଚାରଦ୍ୱାରା ସ୍ଥିର କରାଯିବା ଆବଶ୍ୟକ । ସେହି ସଂଜ୍ଞାଟି ସାର୍ବଜନୀନ ଭାବେ ଗୃହୀତ କି ନୁହଁ ତାହାକୁ ଅନୁଶୀଳନ କରିବାକୁ ହେବ । ଏହି ସବୁ ଲକ୍ଷଣକୁ ଆଧାରକରି ପ୍ରତ୍ୟୟମାନଙ୍କର ସାର୍ବଜନୀନ ସଂଜ୍ଞା ନିରୂପଣ କରିବା ଦ୍ୱାରା ଜ୍ଞାନର ଦିଗନ୍ତ ବିସ୍ତାରିତ ହୋଇପାରିବ । ଜ୍ଞାନ କ୍ଷେତ୍ରରେ ବସ୍ତୁନିଷ୍ଠତା, ସତ୍ୟତା ଓ ସାର୍ବଜନୀନତା ରହିବା ଯଥାର୍ଥ ମନେହୁଏ । ଏହି ପ୍ରକାର ଜ୍ଞାନ ଆମର ବିଚାର ଓ ତର୍କବୁଦ୍ଧି ଉପରେ ହିଁ ଆଧାରିତ । ସୁତରାଂ ତର୍କବୁଦ୍ଧି (reason) ହେଉଛି ଜ୍ଞାନର ମୌଳିକ ଉତ୍ସ । ତର୍କବୁଦ୍ଧି ଦ୍ୱାରା ସ୍ଥିରୀକୃତ ଜ୍ଞାନର ଏହି ଲକ୍ଷଣ ହିଁ ରହିପାରିବ । ଏହି କ୍ଷେତ୍ରରେ ସକ୍ରେଟିସ୍‌ଙ୍କ ଜ୍ଞାନମୀମାଂସା ଓ ପ୍ଲେଟୋଙ୍କ ଜ୍ଞାନମୀମାଂସା ଭିତରେ ଅନେକ ସାମଂଜସ୍ୟ ରହିବା ପରିଲକ୍ଷିତ ହୁଏ । ମୋଟ ଉପରେ କହିଲେ ଜ୍ଞାନ ପ୍ରତ୍ୟୟଭିତ୍ତିକ, ବିଚାର ସମର୍ଥିତ, ବସ୍ତୁନିଷ୍ଠ, ସତ୍ୟ ଓ ସାର୍ବଜନୀନ । ସକ୍ରେଟିସ୍ ଯେପରି ପ୍ରତ୍ୟୟମାନଙ୍କର ସଂଜ୍ଞା ଉପରେ ପ୍ରାଧାନ୍ୟ ଦେଉଥିଲେ ପ୍ଲେଟୋ ମଧ୍ୟ ସଂଜ୍ଞାକୁ ସେହପରି ଗୁରୁତ୍ୱ ପ୍ରଦାନ କରିଛନ୍ତି । କାରଣ ଏକ ଯଥାର୍ଥ ସଂଜ୍ଞାର ଏହି ସବୁ ଲକ୍ଷଣମାନ ରହିବା ଅବଶ୍ୟମ୍ଭାବୀ ମନେହୁଏ । ପ୍ଲେଟୋ ବି ଜ୍ଞାନକୁ ପ୍ରତ୍ୟୟ ଉପରେ ଆଧାରିତ କରିଛନ୍ତି କାରଣ ପ୍ରତ୍ୟୟମାନ ଆମ ବିଚାରଦ୍ୱାରା ଉଦ୍‌ଭବ ହୋଇଥାନ୍ତି ।

ପ୍ଲେଟୋ ଜ୍ଞାନ କ୍ଷେତ୍ରରେ ସକ୍ରେଟିସ୍‌ଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ ମଧ୍ୟ ପ୍ଲେଟୋ ନିଜର ଜ୍ଞାନମୀମାଂସା ଆଧାରରେ ଏକ ତତ୍ତ୍ୱମୀମାଂସାର ବିକାଶ କରିଛନ୍ତି । ପ୍ଲେଟୋଙ୍କ ତତ୍ତ୍ୱମୀମାଂସା ହୁଏତ ଅଣସକ୍ରେଟିସୀୟ ମନେ ହୋଇପାରେ । ଉଭୟଙ୍କର ଜ୍ଞାନମୀମାଂସା କ୍ଷେତ୍ରରେ ମୌଳିକ ସାମଂଜସ୍ୟ ରହିଲେ ବି ପ୍ଲେଟୋ ତାଙ୍କର ଜ୍ଞାନ ସମ୍ବନ୍ଧୀୟ ବିଶ୍ଳେଷଣକୁ ନେଇ ଏକ ତତ୍ତ୍ୱମୀମାଂସା (metaphysics) ର ଅବତାରଣା କରିଛନ୍ତି । ଦର୍ଶନ କ୍ଷେତ୍ରରେ ଏକ ମୌଳିକ ପ୍ରଶ୍ନ ବହୁ ସମୟରେ ଦାର୍ଶନିକ ଜିଜ୍ଞାସା ଭିତରେ ଉଦ୍‌ଭବ ହୋଇଛି । ସେହି ପ୍ରଶ୍ନ ହେଉଛି - ଏହି ବିଶ୍ୱର ମୌଳିକ ତତ୍ତ୍ୱ କ'ଣ ? ଅଧିକାଂଶ ଦାର୍ଶନିକ ଏହି ପ୍ରଶ୍ନକୁ ନିଜସ୍ୱ ଧାରାରେ ବିଶ୍ଳେଷଣକରି ସେମାନଙ୍କର ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତର ଅବତାରଣା କ୍ଷେତ୍ରରେ ପ୍ରୟାସୀ ହୋଇଛନ୍ତି । ତାଙ୍କର ଜ୍ଞାନମୀମାଂସା ଏକ ତତ୍ତ୍ୱମୀମାଂସାକୁ ଉତ୍ତରିତ ହୋଇଛି । ଆମେ ଏହାପରେ ପ୍ଲେଟୋଙ୍କ ତତ୍ତ୍ୱମୀମାଂସାର ଆଲୋଚନା କରିବା ।

### ୭.୩. ତତ୍ତ୍ୱମୀମାଂସା

#### (କ) ଶୁଦ୍ଧସତ୍ତାର ସିଦ୍ଧାନ୍ତ (Theory of Ideas)

ସକ୍ରେଟିସ୍ ତାଙ୍କର ଜ୍ଞାନ ମୀମାଂସା କ୍ଷେତ୍ରରେ ପ୍ରତ୍ୟୟ (concept) କୁ ପ୍ରାଧାନ୍ୟ ଦେଇଛନ୍ତି ଓ ପ୍ରତ୍ୟୟମାନଙ୍କର ସଂଜ୍ଞା ନିରୂପଣକୁ ଦର୍ଶନ ଚର୍ଚ୍ଚାର ପ୍ରଧାନ ଆଭିମୁଖ୍ୟ କରିଛନ୍ତି । ପ୍ଲେଟୋ ବି ସକ୍ରେଟିସ୍‌ଙ୍କ ବିଚାରକୁ ଗ୍ରହଣ କରି ତାଙ୍କର ଜ୍ଞାନମୀମାଂସାରେ ପ୍ରତ୍ୟୟମାନଙ୍କର ସଂଜ୍ଞା ଦ୍ୱାରା ଜ୍ଞାନ ସାର୍ବଜନୀନ, ସତ୍ୟ ଓ ବସ୍ତୁନିଷ୍ଠ ହୋଇପାରିବ ବୋଲି ଭାବିଛନ୍ତି । ତେବେ ପ୍ଲେଟୋ ତାଙ୍କର ଜ୍ଞାନମୀମାଂସା ସାହାଯ୍ୟରେ ଏକ ତତ୍ତ୍ୱମୀମାଂସାର ମୂଳଭିତ୍ତି ପକାଇଛନ୍ତି । ସକ୍ରେଟିସ୍ ପ୍ରତ୍ୟୟମାନଙ୍କର ସଂଜ୍ଞା ପ୍ରଦାନକୁ ଏକ ନିୟାମକ ପ୍ରକ୍ରିୟା ବୋଲି ଗ୍ରହଣ କରିବାବେଳେ ପ୍ଲେଟୋ ଏହା ଦ୍ୱାରା ଏକ ତତ୍ତ୍ୱମୀମାଂସୀୟ ସତ୍ତାବାଦର ବିକାଶ କରିଛନ୍ତି । ପ୍ରତ୍ୟୟ ମାନଙ୍କର ଯଥା ଯଥ ସଂଜ୍ଞା ପ୍ରଦାନ ଦ୍ୱାରା ପ୍ରତ୍ୟୟମାନଙ୍କର ବସ୍ତୁନିଷ୍ଠତା ପ୍ରତିଷ୍ଠିତ ହୋଇପାରିବ ବୋଲି ପ୍ଲେଟୋ ଭାବିଛନ୍ତି । ପ୍ରତ୍ୟୟମାନ କେବଳ ମାନସିକ ସ୍ତରର ଭାବନା ନୁହନ୍ତି, ସେମାନଙ୍କର ବାସ୍ତବତା ବା ସତ୍ତାତ୍ୱ ରହିଛି ବୋଲି ପ୍ଲେଟୋ ବିଚାର କରିଛନ୍ତି । ପ୍ରତ୍ୟୟମାନଙ୍କୁ ବସ୍ତୁନିଷ୍ଠ ସତ୍ତା ଭାବରେ ପ୍ରତିଷ୍ଠା କରିବା ପ୍ଲେଟୋଙ୍କ ଦର୍ଶନର ଏକ ମୁଖ୍ୟ ଆଭିମୁଖ୍ୟ ହୋଇଛି ।

ପ୍ଲେଟୋ ଭାବନା ସହ ସ୍ଥିତି ବା ଅସ୍ତିତ୍ୱର ସମ୍ବନ୍ଧ ଉପରେ ପ୍ରାଧାନ୍ୟ ଦେଇଛନ୍ତି । ଅର୍ଥାତ୍ ସାମଂଜସ୍ୟ ଆଧାରିତ ସତ୍ୟସିଦ୍ଧାନ୍ତ (correspondence theory of truthy) ପ୍ଲେଟୋ ସ୍ୱୀକାର କରି ତାହାରି ଭିତ୍ତି ଉପରେ ତାଙ୍କର ଜ୍ଞାନମୀମାଂସାର ଭିତ୍ତି ଦୃଢ଼ କରିଛନ୍ତ । ଯାହା ବାସ୍ତବରେ ରହିଛି ତାହା ସହ ଆମ ଭାବନାର ସାମଂଜସ୍ୟ ରହିବା ଆବଶ୍ୟକ । ମୁଁ ସମ୍ମୁଖରେ ଦେଖୁଥିବା ବୃକ୍ଷଟି ଯଦି ବାସ୍ତବରେ ରହିଛି, ତେବେ ମୋର ବୃକ୍ଷ ଭାବନାଟି ଏହି ମୁହୂର୍ତ୍ତରେ ସତ୍ୟ, ନହେଲେ ମୋର ଭାବନା ମିଥ୍ୟା ବା ଏକ ଭ୍ରମ । ଯାହା ବାସ୍ତବରେ ରହିଛି ତାହାର ଭାବନା ମନରେ ପୋଷଣ କଲେ ଭାବନାଟି ସତ୍ୟ ହେବା ସମ୍ଭବ । ଯଦି ଏକ ଭାବନାର ଅନୁରୂପ ବସ୍ତୁ ବାସ୍ତବରେ ନାହିଁ,

ତେବେ ଭାବନାଟି ଅସତ୍ୟ । ସେହି ଜ୍ଞାନ ସତ୍ୟ ଯେଉଁ ଜ୍ଞାନ ବାସ୍ତବତା ସହ ସାମଂଜସ୍ୟ ରଖିଥାଏ । ବାସ୍ତବତା ସହ ସାମଂଜସ୍ୟ ରଖୁନଥିବା ଧାରଣା ବା ଭାବନା ସତ୍ୟ ହୋଇପାରିବ ନାହିଁ । ଏହି ଆଧାର ଉପରେ ପ୍ଲେଟୋ ପ୍ରତ୍ୟୟମାନଙ୍କୁ ବାସ୍ତବତା ସହ ସମ୍ବନ୍ଧିତ କରିବାକୁ ପ୍ରୟାସ କରିଛନ୍ତି । ପ୍ଲେଟୋ ପ୍ରତ୍ୟୟ-ଜ୍ଞାନକୁ ଯଥାର୍ଥ ଜ୍ଞାନର ମାନ୍ୟତା ଦେଇଛନ୍ତି । ଯଦି ଏକ ପ୍ରତ୍ୟୟ ବାସ୍ତବ ଜ୍ଞାନ ଦେବାକୁ ଉଦ୍ଦିଷ୍ଟ, ତେବେ ସେହି ପ୍ରତ୍ୟୟ ବାସ୍ତବ କ୍ଷେତ୍ରରେ ବସ୍ତୁନିଷ୍ଠ ସାମଂଜସ୍ୟ ରକ୍ଷା କରୁଥିବା ଆବଶ୍ୟକ । ସୁତରାଂ ଆମର ମାନସିକ ଚିନ୍ତା ବାହାରେ ସାଧାରଣ ପ୍ରତ୍ୟୟ ମାନଙ୍କର ଅସ୍ତିତ୍ୱ ଥିବା ଦରକାର । କୌଣସି ପ୍ରତ୍ୟୟକୁ ସତ୍ୟ ଜ୍ଞାନ ବୋଲି ଗ୍ରହଣ କରିବା ଅଥଚ ସେହି ପ୍ରତ୍ୟୟ ସହ ସାମଂଜସ୍ୟ ଥିବା କୌଣସି ସତ୍ତା ନଥିବା ଏକ ବିରୋଧାଭାସ ବୋଲି ପ୍ଲେଟୋ ବିଚାର କରିଛନ୍ତି । କୌଣସି ବାସ୍ତବ ବସ୍ତୁର ପ୍ରତ୍ୟୟକୁ ନେଇ ବିଚାର ବ୍ୟକ୍ତ କରିବା ଅଥଚ ସେପରି କୌଣସି ବସ୍ତୁନିଷ୍ଠ ସତ୍ତା ନଥିବା ଏକ ବିରୋଧାଭାସ । ବାହ୍ୟ ଜଗତରେ ଥିବା କିଛି ସତ୍ତାକୁ ନେଇ କେହି ମନ ଭିତରେ ଏକ ପ୍ରତ୍ୟୟର ପରିକଳ୍ପନା କରିପାରିବ ।

ପ୍ଲେଟୋ ବିଚାର କରିଛନ୍ତି ଯେ ଯଦି ପ୍ରତ୍ୟୟଗତ ଜ୍ଞାନ ସତ୍ୟ, ତେବେ ଆମର ଇନ୍ଦ୍ରିୟଗତ ସମ୍ବେଦନ ନିଶ୍ଚୟ ମିଥ୍ୟା । ଆମେ ଇନ୍ଦ୍ରିୟଦ୍ୱାରା ଏକ ଶ୍ରେଣୀର ବିଭିନ୍ନ ବସ୍ତୁ ବା ବ୍ୟକ୍ତିମାନଙ୍କୁ ଦେଖିଥାଉ । ଆମେ ଚତୁଃପାର୍ଶ୍ୱରେ ଆମ ଅନୁଭୂତିରେ ବିଭିନ୍ନ ଶ୍ରେଣୀର ପ୍ରାଣୀ ବା ବସ୍ତୁମାନଙ୍କୁ ଦେଖୁ । ଉଦାହରଣ ସ୍ୱରୂପ ଆମେ ବହୁତ ଗାଈମାନଙ୍କ ବିଷୟରେ ଚିନ୍ତା କଲା ବେଳେ ଆମେ ଗାଈର ଏକ ପ୍ରତ୍ୟୟ ଆଣିଥାଉ । ଯଦି ଆମ ଚିନ୍ତାରେ ଆସୁଥିବା ଗାଈର ପ୍ରତ୍ୟୟଟି (କିମ୍ବା ସେହିପରି ଯେକୌଣସି ପ୍ରତ୍ୟୟ) ସତ୍ୟ, ତେବେ ଆମ ଇନ୍ଦ୍ରିୟ ସମ୍ବେଦନ (sensation) ସାହାଯ୍ୟରେ ଆସୁଥିବା ଅନୁଭୂତି ସତ୍ୟ ନୁହଁ । ଯଦି ଆମେ ପ୍ରତ୍ୟୟ ଆଧାରିତ ଜ୍ଞାନକୁ ସତ୍ୟ ବୋଲି ଗ୍ରହଣ କରିବା, ତେବେ ଇନ୍ଦ୍ରିୟ ଆଧାରିତ ସମ୍ବେଦନ ସତ୍ୟ ହୋଇପାରିବ ନାହିଁ । ଆମେ ବିଭିନ୍ନ ଗାଈମାନଙ୍କୁ ଦେଖୁ, କିନ୍ତୁ ଗାଈ ବିଷୟରେ ଯେଉଁ ପ୍ରତ୍ୟୟଟି ଆମ ମନରେ ଆସିଥାଏ ତାହା ସତ୍ୟ ହେଲେ, ଆମେ ଦେଖିଥିବା ବିଶେଷ(particular) ଗାଈ ମାନଙ୍କର ସମ୍ବେଦନ ସତ୍ୟର ଭିତ୍ତି ନେଇପାରିବ ନାହିଁ । ପ୍ଲେଟୋ ସର୍ବଦା ଏକ ଶ୍ରେଣୀର ପ୍ରତ୍ୟୟକୁ ପ୍ରାଧାନ୍ୟ ଦେଇଛନ୍ତି ।

ଏହି ପ୍ରଶ୍ନକୁ ଏକ ଭିନ୍ନ ଦୃଷ୍ଟିରୁ ବିଚାର କରାଯାଇପାରେ । ମନେ କରାଯାଉ ଜଣେ ପ୍ରଶ୍ନ କଲେ- ସୌନ୍ଦର୍ଯ୍ୟ କହିଲେ କ'ଣ ବୁଝାଏ ? ଜଣେ ଉତ୍ତର ଦେଲେ- ସଂସାରରେ ଅନେକ ସୁନ୍ଦର ବସ୍ତୁ ଅଛନ୍ତି । ଫୁଲ ଦେଖିବାକୁ ସୁନ୍ଦର, ଏକ ପ୍ରାକୃତିକ ଝରଣାର ଦୃଶ୍ୟ ସୁନ୍ଦର, ଏକ ପୂର୍ଣ୍ଣମୀ ରାତିର ଆକାଶ ବେଶ୍ ସୁନ୍ଦର, କୋମଳ ଶିଶୁମାନଙ୍କର ଦରୋଟି ମୁଖ ବେଶ୍ ସୁନ୍ଦର ଇତ୍ୟାଦି ଇତ୍ୟାଦି । ପ୍ରଶ୍ନକର୍ତ୍ତା ଏହା ଶୁଣି କହିଲେ ଯେ କେଉଁ ବସ୍ତୁମାନ ସୁନ୍ଦର ସେ ପଚାରୁ ନାହାନ୍ତି, ତାଙ୍କ ପ୍ରଶ୍ନ ହେଉଛି ସୌନ୍ଦର୍ଯ୍ୟ କ'ଣ ? ସେ କେବଳ ଏକକ ଜିନିଷ ଜାଣିବାକୁ ଚାହୁଁଛନ୍ତି । ଯଦି ସୌନ୍ଦର୍ଯ୍ୟ ଫୁଲରେ ନିହିତ, ତେବେ ସୌନ୍ଦର୍ଯ୍ୟ ଏକ ନିର୍ମଳ ପୂର୍ଣ୍ଣମୀ ରାତି ହୋଇପାରିବ ନାହିଁ; କାରଣ ଫୁଲ ଓ ଜହ୍ନରାତି ସମାନ ବସ୍ତୁ ନୁହଁ । ସୌନ୍ଦର୍ଯ୍ୟ ଭାବନାଦ୍ୱାରା ଆମେ ଏକକ ପ୍ରତ୍ୟୟକୁ ବୁଝୁ, ଆମେ ବିଭିନ୍ନ ବସ୍ତୁକୁ

ବୁଝେ ନାହିଁ । ଏହାର କାରଣ ଆମେ ଏସବୁ ପାଇଁ ଏକ ଶବ୍ଦକୁ ବ୍ୟବହାର କରୁଛୁ । ଏଠାରେ ତେଣୁ ପ୍ରଶ୍ନ ହେଉଛି ସୌନ୍ଦର୍ଯ୍ୟ ପ୍ରକୃତରେ କ'ଣ, ଯାହା ଅସଂଖ୍ୟ ସୁନ୍ଦର ବସ୍ତୁଠାରୁ ଭିନ୍ନ । ହୁଏତ କେହି କହିପାରନ୍ତି ଯେ, ସୁନ୍ଦର ବସ୍ତୁମାନଙ୍କୁ ଛାଡି ସଂସାରରେ ସୌନ୍ଦର୍ଯ୍ୟ ବୋଲି କିଛି କଥା ନାହିଁ । ଆମେ ଯଦିବା ସୌନ୍ଦର୍ଯ୍ୟ ନାମରେ ଏକକ ଶବ୍ଦ ବ୍ୟବହାର କରୁଛେ, ତେବେ ବିଭିନ୍ନ ସୁନ୍ଦର ବସ୍ତୁମାନଙ୍କ ଭିତରେ ବିଭିନ୍ନ ସୌନ୍ଦର୍ଯ୍ୟ ଅନ୍ତର୍ନିହିତ ହୋଇରହିଛି । ଏହାର ଉତ୍ତରରେ ପୁନଶ୍ଚ କହିହେବ ଯେ ଯଦିବା ବିଭିନ୍ନ ସୁନ୍ଦର ବସ୍ତୁମାନଙ୍କ ଭିତରେ ସୌନ୍ଦର୍ଯ୍ୟ ଅନ୍ତର୍ନିହିତ ହୋଇ ରହିଛି ଅର୍ଥାତ୍ ଆପଣ ଯେହେତୁ ସବୁ ସୁନ୍ଦର ବସ୍ତୁମାନଙ୍କ ଭିତରେ ସୌନ୍ଦର୍ଯ୍ୟ ରହିଛି ବୋଲି ଭାବୁଛନ୍ତି, ତେଣୁ ସୌନ୍ଦର୍ଯ୍ୟ ପରସ୍ପର ସହ ସମାନ । ତେବେ ସକଳ ସୌନ୍ଦର୍ଯ୍ୟ ସମାନ ବୋଲି କିପରି କହି ହେବ ? ସକଳ ସୌନ୍ଦର୍ଯ୍ୟ ସମାନ ବୋଲି ଆପଣ କିପରି ଭାବୁଛନ୍ତି ? ଆପଣ ଯାହା ସବୁ ଦେଖୁଛନ୍ତି ଓ ସେମାନଙ୍କୁ ସୁନ୍ଦର କହୁଛନ୍ତି, ଏଠାରେ ତ ପରସ୍ପର ସହ ତୁଳନାର ପ୍ରସଙ୍ଗ ଆସୁଛି । ତୁଳନାତ୍ମକ ବ୍ୟାପାର ଏକ ମାନସିକ ବା ବୌଦ୍ଧିକ ପ୍ରକ୍ରିୟା, ଆମେ ଇନ୍ଦ୍ରିୟ ସାହାଯ୍ୟରେ ତୁଳନା କରେ ନାହିଁ । ଆପଣଙ୍କ ମନରେ ସୌନ୍ଦର୍ଯ୍ୟର ଏକ ଭାବନା ବା ପ୍ରତ୍ୟୟ ରହିଛି । ସେହି ଭାବନା ସହ ଆପଣ ବିଭିନ୍ନ ସୁନ୍ଦର ବସ୍ତୁକୁ ତୁଳନା କରୁଛନ୍ତି ଓ ଆପଣଙ୍କ ମନ ଭିତରର ଭାବନା ସହ ତୁଳନା ପରେ ଅନ୍ୟ ବସ୍ତୁମାନଙ୍କୁ ଆପଣ ସୁନ୍ଦର କହୁଛନ୍ତି । ଆପଣଙ୍କ ମନ ଭିତରେ ରହିଥିବା ସୌନ୍ଦର୍ଯ୍ୟ ଭାବନା ସହ ଆପଣ ଏକକ ବସ୍ତୁମାନଙ୍କୁ ତୁଳନା କରି ଯେଉଁ ସାମଂଜସ୍ୟ ପାଉଛନ୍ତି ସେହି ଆଧାରରେ ବିଭିନ୍ନ ଏକକ ବସ୍ତୁମାନଙ୍କୁ ସୁନ୍ଦର ଆଖ୍ୟା ଦେଉଛନ୍ତି । ଅର୍ଥାତ୍ ଆପଣଙ୍କ ମନ ଭିତରେ ସୌନ୍ଦର୍ଯ୍ୟର ଏକ ଭାବନା ଥିବାରୁ ଆପଣ ତାହା ସହିତ ତୁଳନା କରି ଓ ସାମଂଜସ୍ୟ ପାଇ ଅନ୍ୟ ବସ୍ତୁମାନଙ୍କୁ ସୁନ୍ଦର ବୋଲି ଅଭିହିତ କରୁଛନ୍ତି । ଆପଣଙ୍କ ମନ ଭିତରେ ଥିବା ସୌନ୍ଦର୍ଯ୍ୟ ଭାବନାର ବାହ୍ୟ ବସ୍ତୁ ସହ ସାମଂଜସ୍ୟ ରହିଛି କିମ୍ବା ରହି ନାହିଁ । ଯଦି ଆପଣଙ୍କ ଭାବନା ସହ ବାହାରର କିଛି ସାମଂଜସ୍ୟ ନାହିଁ, ତେବେ ସୌନ୍ଦର୍ଯ୍ୟ ବିଷୟରେ ଆପଣଙ୍କର ଏହା ଏକ ଉଦ୍‌ଭାବନ ବା ଆପଣଙ୍କ ମନରୁ ଏହା ସୃଷ୍ଟି ହୋଇଛି । ଯଦି ସାମଂଜସ୍ୟ ରହିଛି ଓ ବାହାରର ବସ୍ତୁ ମାନଙ୍କୁ ଆପଣ ନିଜ ମନର ଭାବନା ସହ ତୁଳନା କରି ବାହାରର ବସ୍ତୁମାନଙ୍କୁ ସୁନ୍ଦର ବୋଲି ଅଭିହିତ କରୁଛନ୍ତି, ଆପଣ ସଫିଷ୍ଟମାନଙ୍କର ବିଚାରକୁ ସମର୍ଥନ ଦେଉଛନ୍ତି । ଆପଣ ନିଜସ୍ୱ ଭାବନାରେ ବସ୍ତୁମାନଙ୍କୁ ମୂଲ୍ୟାୟନ କରି ଆପଣଙ୍କ ମାନଦଣ୍ଡରୁ ସେଗୁଡିକ ସୁନ୍ଦର ବା ସୁନ୍ଦର ନୁହଁ ତାହା ନିର୍ଦ୍ଧାରିତ କରୁଛନ୍ତି । ସୁତରାଂ ଏହା କୁହାଯାଇ ପାରେ ଯେ ଆପଣଙ୍କ ମନ ଭିତରେ ସୌନ୍ଦର୍ଯ୍ୟର ଭାବନା ନାହିଁ । ବରଂ ସୌନ୍ଦର୍ଯ୍ୟ ବୋଲି ଏକ ସ୍ୱତନ୍ତ୍ର ସତ୍ତା ରହିଛି । ଆପଣଙ୍କ ମନ ଭିତରେ ରହିଥିବା ଭାବନା କେବଳ ସୌନ୍ଦର୍ଯ୍ୟର ଏକ ପ୍ରତିଲିପି ମାତ୍ର । ଆପଣଙ୍କ ମସ୍ତିଷ୍କ ବାହାରେ ସୌନ୍ଦର୍ଯ୍ୟର ସ୍ଥିତି ରହିଛି ଯାହା ସକଳ ସୁନ୍ଦର ବସ୍ତୁମାନଙ୍କ ଠାରୁ ଭିନ୍ନ ।

ସୌନ୍ଦର୍ଯ୍ୟ ବିଷୟରେ ଯାହା କୁହାଗଲା ତାହା ଅନ୍ୟ ସମ୍ବନ୍ଧରେ ମଧ୍ୟ କୁହାଯାଇପାରିବ । ଉତ୍କୃଷ୍ଟତା, ନ୍ୟାୟ, ମନୁଷ୍ୟତ୍ୱ, ଗୁରୁତ୍ୱ, ଧବଳତ୍ୱ, ପଶୁତ୍ୱ ଇତ୍ୟାଦି ସମ୍ବନ୍ଧରେ ଏହା କୁହାଯିବ ଯେ ଏସବୁ ପ୍ରତ୍ୟୟମାନଙ୍କର ସ୍ୱତନ୍ତ୍ର ସ୍ଥିତି ରହିଛି । ସଂସାରରେ ଅନେକ ଧଳା ରଙ୍ଗର ବସ୍ତୁ ରହିଛି, ତେବେ ଧବଳତ୍ୱ ଏକ ପ୍ରତ୍ୟୟ ଓ ଏହାର ସ୍ୱତନ୍ତ୍ର

ସ୍ଥିତି ରହିଛି, ଯେହେତୁ ସବୁ ଧଳା ରଙ୍ଗର ବସ୍ତୁ ମାନଙ୍କ ପ୍ରତି ଏହା ପ୍ରୟୋଗ ହୋଇପାରୁଛି । ସେହିପରି ଅନେକ ମାନବୀୟ କାର୍ଯ୍ୟକୁ ନ୍ୟାୟପୂର୍ଣ୍ଣ କୁହାଯାଏ, କିନ୍ତୁ ନ୍ୟାୟ (Justice) ଏକକ ଭାବନା ଭାବେ ସମସ୍ତ ନ୍ୟାୟପୂର୍ଣ୍ଣ କାର୍ଯ୍ୟକୁ ସୂଚାଇଥାଏ । ତେଣୁ ନ୍ୟାୟର ସ୍ୱତନ୍ତ୍ର ଅସ୍ତିତ୍ୱ ରହିଛି । ଧବଳତ୍ୱ ସମସ୍ତ ବିଶେଷ ଧଳା ରଙ୍ଗର ବସ୍ତୁ ମାନଙ୍କଠାରୁ ଭିନ୍ନ, ନ୍ୟାୟ ସମସ୍ତ ନ୍ୟାୟପୂର୍ଣ୍ଣ ବିଶେଷ ଘଟଣା ମାନଙ୍କଠାରୁ ପୃଥକ୍ । ପ୍ରତ୍ୟେକ ଧଳା ବସ୍ତୁ ଧବଳତ୍ୱର ପ୍ରତିଲିପି, ପ୍ରତ୍ୟେକ ନ୍ୟାୟପୂର୍ଣ୍ଣ କାର୍ଯ୍ୟ ନ୍ୟାୟର ପ୍ରତିଲିପି ଇତ୍ୟାଦି ଇତ୍ୟାଦି ।

ପ୍ଲେଟୋଙ୍କ ଦର୍ଶନରେ ପ୍ରତ୍ୟେକ ଶ୍ରେଣୀବାଚକ ଶବ୍ଦର ସମସ୍ତ ବ୍ୟକ୍ତିବିଶେଷଙ୍କ ମଧ୍ୟରେ ଯେଉଁ ମୌଳିକ ଗୁଣ ସାଧାରଣ ଭାବରେ ରହିଛି ତାହା ଏକ ପ୍ରତ୍ୟୟ । ମନୁଷ୍ୟ ଶ୍ରେଣୀରେ ଅସଂଖ୍ୟ ବ୍ୟକ୍ତି ବିଶେଷ ରହିଛନ୍ତି । କିନ୍ତୁ ସମସ୍ତ ବିଶେଷଙ୍କ ପାଖରେ ମନୁଷ୍ୟତ୍ୱ ରହିଥିବାରୁ ସେମାନେ ସମସ୍ତେ ମନୁଷ୍ୟ ଭାବେ ପରିଚିତ ହେଉଛନ୍ତି । ମନୁଷ୍ୟତ୍ୱ ଏକ ପ୍ରତ୍ୟୟ ଯାହାର ସ୍ୱତନ୍ତ୍ର ଅସ୍ତିତ୍ୱ ରହିଛି । ଅସଂଖ୍ୟ ଗାଇମାନଙ୍କ ମଧ୍ୟରେ ଯେଉଁ ମୌଳିକ ଲକ୍ଷଣ ସାଧାରଣ ଭାବେ ରହିଛି ତାହା ହେଲା ଗାଇତ୍ୱ । ଗାଇତ୍ୱ ଏକ ପ୍ରତ୍ୟୟ ଭାବରେ ବସ୍ତୁନିଷ୍ଠ ଭାବରେ ରହିଛି । ସେହିପରି ଧବଳତ୍ୱ, ପଶୁତ୍ୱ, ଟେବୁଲତ୍ୱ, ବୃକ୍ଷତ୍ୱ ଇତ୍ୟାଦି । ଏକ ଶ୍ରେଣୀରେ ଅନେକ ବିଶେଷ ରହିପାରନ୍ତି, କିନ୍ତୁ ସକଳ ବିଶେଷ ଯେଉଁ ଏକକ ପ୍ରତ୍ୟୟର ପ୍ରତିଲିପି ସେହି ଏକକ ପ୍ରତ୍ୟୟ ହେଉଛି ଏକ ସତ୍ତା । ଦାର୍ଶନିକ ପରିଭାଷାରେ ଏହି ଏକକ ପ୍ରତ୍ୟୟମାନଙ୍କୁ Idea, Univerasal, Form, Essence  କୁହାଯାଏ । ଏସବୁ ସମାର୍ଥବୋଧକ ଭାବେ ବ୍ୟବହୃତ ହେବା ଦେଖାଯାଏ । ଏହି ଭାବନା ବା ପ୍ରତ୍ୟୟକୁ ବୁଝିବାପାଇଁ ଭିନ୍ନ ଭିନ୍ନ ଦାର୍ଶନିକ ଏକ ନିର୍ଦ୍ଦିଷ୍ଟ ପଦ ବ୍ୟବହାର କରିଛନ୍ତି । ପ୍ଲେଟୋ ଏହି ଭାବନା କ୍ଷେତ୍ରରେ Idea (ଆଇଡିଆ) ଶବ୍ଦ ବ୍ୟବହାର କଲାବେଳେ ଆରିଷ୍ଟୋଟଲ Form  ଶବ୍ଦ ବ୍ୟବହାର କରିଛନ୍ତି । ଓଡିଆରେ ଏହି ଭାବନାକୁ ବୁଝାଇବା ପାଇଁ ଆମେ 'ଆଇଡିଆ' (Idea)ବା 'ଶୁଦ୍ଧସତ୍ତା' ଶବ୍ଦ ବ୍ୟବହାର କରିବା ।

ମନୁଷ୍ୟ, ଗାଇ, ଟେବୁଲ, ଫୁଲ, ପୁସ୍ତକ ଇତ୍ୟାଦି ପରି ମୂର୍ତ୍ତ ବସ୍ତୁ ହୁଅନ୍ତୁ କିମ୍ବା ସୌନ୍ଦର୍ଯ୍ୟ, ନ୍ୟାୟ, ପଶୁତ୍ୱ, ଉତ୍କର୍ଷ ଇତ୍ୟାଦି ପରି ଅମୂର୍ତ୍ତ ଭାବନା ହୁଅନ୍ତୁ ଏସବୁ ଗୋଟିଏ ଗୋଟିଏ ଆଇଡିଆ । ମନୁଷ୍ୟ ଅନେକ, କିନ୍ତୁ ମନୁଷ୍ୟ ଆଇଡିଆ ଏକ, ଗାଇ ଅନେକ କିନ୍ତୁ ଗାଇ ଆଇଡିଆ ଏକ, ଟେବୁଲ ଅନେକ କିନ୍ତୁ ଟେବୁଲ ଆଇଡିଆ ଏକ । ସେହିପରି ସୌନ୍ଦର୍ଯ୍ୟ ଆଇଡିଆ ଏକ କିନ୍ତୁ ସୁନ୍ଦର ବସ୍ତୁ ଅନେକ, ନ୍ୟାୟ ଆଇଡିଆ ଏକ ଯଦିବା ନ୍ୟାୟପୂର୍ଣ୍ଣ କାର୍ଯ୍ୟ ଅନେକ, ଉତ୍କର୍ଷ ଆଇଡିଆ ଏକ କିନ୍ତୁ ଉତ୍ତମ ଘଟଣା ଅନେକ । ଯେଉଁ ପ୍ରାଣୀମାନଙ୍କୁ ଆମେ ଗାଈ କହୁଛେ ଗାଈ ଶ୍ରେଣୀର ସେମାନେ ସମସ୍ତେ ବିଶେଷ । ସେହିପରି ଯେଉଁ ବସ୍ତୁମାନଙ୍କୁ ଆମେ ଟେବୁଲ କହୁଛେ ସେ ସମସ୍ତେ ଟେବୁଲ ଶ୍ରେଣୀର ବିଶେଷ । ଯେଉଁମାନଙ୍କୁ ଆମେ ଗାଈ କହୁଛେ ଅର୍ଥାତ୍ ଗାଈ ବିଶେଷମାନଙ୍କରୁ 'ଗାଈ ଆଇଡିଆ' ସୃଷ୍ଟି ହେଉଛି ଯାହା ସମସ୍ତ ଗାଈମାନଙ୍କର ମୌଳିକ ଓ ସାଧାରଣ ଗୁଣ । ସେହିପରି ସକଳ ଟେବୁଲ ବିଶେଷଙ୍କ ପାଖରୁ ଟେବୁଲ ଆଇଡିଆ ଆସୁଛି ଯାହା ସମସ୍ତ ଟେବୁଲମାନଙ୍କ ପାଖରେ ରହିଥିବା ମୌଳିକ ଓ

ସାଧାରଣ ଲକ୍ଷଣ । ଗାଈ, ଟେବୁଲ କ୍ଷେତ୍ରରେ ଯାହା କୁହାଗଲା ତାହା ଯେକୌଣସି ଏକ ଶ୍ରେଣୀବାଚକ ପଦ ସଂପର୍କରେ କୁହାଯାଇ ପାରିବ । ଏକ ଶ୍ରେଣୀର ସକଳ ବିଶେଷ ମାନ ଏକ ନାମରେ ପରିଚିତ ବା ନାମିତ ହୁଅନ୍ତି କାରଣ ସେମାନଙ୍କ ପାଖରେ କିଛି ମୌଳିକ ଲକ୍ଷଣ ସାଧାରଣ ଭାବେ ରହିଥାଏ । ସେହି ମୌଳିକ ଗୁଣ ହିଁ ହେଉଛି ସେହି ଶ୍ରେଣୀର ଆଇଡିଆ ବା ଶୁଦ୍ଧ ସତ୍ତା । ଏକ ଶ୍ରେଣୀର ଶୁଦ୍ଧସତ୍ତାର ଅନେକ ପ୍ରତିଲିପି ଥାଇପାରନ୍ତି । ଏକ ଶ୍ରେଣୀର ଯେତେ ବାଚ୍ୟାର୍ଥ ବା ବିଶେଷ ରହିଛନ୍ତି ସେ ସମସ୍ତ ହେଲେ ଶ୍ରେଣୀର ଶୁଦ୍ଧସତ୍ତାର ପ୍ରତିଲିପି । ପ୍ଲେଟୋଙ୍କ ଦର୍ଶନରେ ଆଇଡିଆ ବା ଶୁଦ୍ଧସତ୍ତା ମାନଙ୍କୁ ପରମ ତତ୍ତ୍ୱ ଭାବରେ ଗ୍ରହଣ କରାଯାଇଛି । ଆଇଡିଆ ବା ଶୁଦ୍ଧସତ୍ତା ସକଳ ହେଲେ ବିଶ୍ୱର ପରମ ସତ୍ତା ବା ତତ୍ତ୍ୱ । ପ୍ଲେଟୋ ଆଇଡିଆ ମାନଙ୍କର ସ୍ୱରୂପ କିପରି ବ୍ୟାଖ୍ୟା କରିଛନ୍ତି ତାହା ଆମେ ଏହାପରେ ଆଲୋଚନା କରିବା ।

ପ୍ଲେଟୋଙ୍କ ମତରେ ପ୍ରତ୍ୟେକ ଆଇଡିଆ ବା ଶୁଦ୍ଧସତ୍ତା ହେଉଛି ଏକ ଦ୍ରବ୍ୟ । ଦ୍ରବ୍ୟ ଶବ୍ଦ ସାଧାରଣ ପରିଭାଷାରେ ବ୍ୟବହୃତ ହୁଏ ଓ ଦର୍ଶନରେ ଏକ ବୈଷୟିକ ଅର୍ଥରେ ପ୍ରୟୋଗ ହୋଇଥାଏ, ଯଦିବା ଏହି ବୈଷୟିକ ଅର୍ଥଟି ଏହାର ସାଧାରଣ ଅର୍ଥରୁ ଆସିଥାଏ । ସାଧାରଣ ପ୍ରୟୋଗରେ ବସ୍ତୁମାନଙ୍କୁ ଦ୍ରବ୍ୟ କୁହାଯାଏ । ସୁନା, ରୂପା, ଜଳ, ମାଟି, କାଠ, ପଥର ଇତ୍ୟାଦି ବସ୍ତୁମାନଙ୍କୁ ଦ୍ରବ୍ୟ କୁହାଯାଏ । ପ୍ରତ୍ୟେକ ଦ୍ରବ୍ୟର କେତେକ ଗୁଣ ବା ଲକ୍ଷଣ ଥାଏ । କଠିନତା, ଉଜ୍ଜ୍ୱଳତା ସୁନାର ଗୁଣ । ତରଳତା, ଶୀତଳତା ଜଳର ଲକ୍ଷଣ । ଗୁଣମାନ ବସ୍ତୁ ବ୍ୟତୀତ ରହିବା ସମ୍ଭବ ନୁହେଁ । କୌଣସି ଗୁଣ ଦ୍ରବ୍ୟକୁ ଛାଡି ସ୍ୱତନ୍ତ୍ର ଭାବରେ କେଉଁଠାରେ ରହେ ନାହିଁ । କଠିନତାର ନିଜସ୍ୱ ସ୍ଥିତି ନାହିଁ, ଏହା ଏକ ଦ୍ରବ୍ୟର ଗୁଣ ମାତ୍ର । କୌଣସି ଦ୍ରବ୍ୟ କଠିନ, ଦ୍ରବ୍ୟକୁ ଛାଡି କଠିନତାର ସ୍ଥିତି ନାହିଁ । ତେବେ ଗୁଣମାନ ଦ୍ରବ୍ୟ ଉପରେ ନିର୍ଭର କରୁଥିଲେ ବି ଦ୍ରବ୍ୟମାନ ଗୁଣ ଉପରେ ନିର୍ଭର କରନ୍ତି ନାହିଁ । ଏହି ଭାବନା ଦାର୍ଶନିକ ପ୍ରୟୋଗ କ୍ଷେତ୍ରରେ ଅଧିକ ସୁସଂହତ ଭାବେ ହୋଇଥିବା ଦେଖାଯାଏ । ଦାର୍ଶନିକ ପରିଭାଷାରେ ଦ୍ରବ୍ୟର ଅସ୍ତିତ୍ୱ ବା ସତ୍ତା ସ୍ୱସ୍ଥିତ । ଏହାର ଅସ୍ତିତ୍ୱ ଅନ୍ୟ କାହା ଉପରେ ନିର୍ଭର କରେ ନାହିଁ । ଦ୍ରବ୍ୟର ଅସ୍ତିତ୍ୱ ନିଜ ଉପରେ ହିଁ ନିର୍ଭରଶୀଳ । ଯାହା ସ୍ୱସ୍ଥିତ, ସ୍ୱନିର୍ଦ୍ଧାରିତ ତାହା ହେଉଛି ଦ୍ରବ୍ୟ । ଏହା ଅନ୍ୟ କିଛିର ଅସ୍ତିତ୍ୱ ପାଇଁ ଆଧାର ହୋଇପାରେ, କିନ୍ତୁ ଅନ୍ୟ କାହାର ଆଧାର ଉପରେ ଏହାର ଅସ୍ତିତ୍ୱ ନିର୍ଭର କରେ ନାହିଁ । ଖ୍ରୀଷ୍ଟଧର୍ମ ପରି କେତେକ ଧର୍ମରେ ବିଶ୍ୱାସ ରହିଛି ଯେ ଈଶ୍ୱର ପୃଥିବୀକୁ ସୃଷ୍ଟି କରିଛନ୍ତି, କିନ୍ତୁ ଈଶ୍ୱରଙ୍କର କେହି ସ୍ରଷ୍ଟା ନାହାନ୍ତି, ଈଶ୍ୱର ସ୍ୱସୃଷ୍ଟ ଓ ସବୁ କିଛିର ମୂଳ କାରଣ, ସେ କୌଣସି କାରଣର କାର୍ଯ୍ୟ ନୁହନ୍ତି । ଏହି ଦୃଷ୍ଟିରୁ ଈଶ୍ୱର ହେଉଛନ୍ତି ଦ୍ରବ୍ୟ (Substance), କିନ୍ତୁ ପୃଥିବୀ ଦ୍ରବ୍ୟ ନୁହେଁ, କାରଣ ପୃଥିବୀ ଈଶ୍ୱରଙ୍କ ଦ୍ୱାରା ସୃଷ୍ଟ । ସେହିପରି ଭାବାଦର୍ଶବାଦୀ (Idealist) ମାନଙ୍କ ମତରେ ମନ ହେଉଛି ଏକ ସ୍ୱସ୍ଥିତ ସତ୍ତା । ସକଳ ବସ୍ତୁ ନିଜର ଅସ୍ତିତ୍ୱ ପାଇଁ ମନ ଉପରେ ନିର୍ଭରଶୀଳ । ସେପରି ସ୍ଥଳେ ମନ ହେଉଛି ଦ୍ରବ୍ୟ କିନ୍ତୁ ବସ୍ତୁ ଦ୍ରବ୍ୟ ନୁହେଁ ଯେହେତୁ ଏହା ଅନ୍ୟ ଉପରେ ନିର୍ଭରଶୀଳ । ଏହି ବୈଷୟିକ ଅର୍ଥରେ ପ୍ଲେଟୋଙ୍କର ଆଇଡିଆ ହେଉଛି ଦ୍ରବ୍ୟ । ସେମାନଙ୍କ ଅସ୍ତିତ୍ୱ କାହା ଉପରେ ନିର୍ଭର କରେ ନାହିଁ । ସେମାନଙ୍କୁ ପରମ ସତ୍ତା ଭାବରେ ନିଆଯାଇପାରିବ । ସେମାନଙ୍କର ଅସ୍ତିତ୍ୱର କାରଣ

ସେମାନେ ନିଜେ ବା ଅନ୍ୟ ଭାବରେ କହିଲେ ଆଇଡିଆ ବା ଶୁଦ୍ଧସତ୍ତାମାନେ ସ୍ୱସ୍ଥିତ । ଆଇଡିଆମାନେ ବିଶ୍ୱର ପ୍ରଥମ ତତ୍ତ୍ୱ ବା ଆଦି ସିଦ୍ଧାନ୍ତ ।

ଆଇଡିଆ ବା ଶୁଦ୍ଧସତ୍ତା ସକଳ ହେଉଛନ୍ତି ସାର୍ବଜନୀନ । କୌଣସି ଆଇଡିଆ ଏକ ବିଶେଷ ସତ୍ତା ନୁହେଁ । ଆମେ ଯେତେବେଳେ 'ଗାଇ ଆଇଡିଆ' ବିଷୟରେ କହିଥାଏ ସେତେବେଳେ କୌଣସି ନିର୍ଦ୍ଦିଷ୍ଟ ଗାଈର ସୂଚନା ଦିଏ ନାହିଁ । ଏହା ସମସ୍ତ ଗାଇମାନଙ୍କୁ ବା ଗାଇ ସାମାନ୍ୟ ପଦ (general term) କୁ ବୁଝାଇଥାଏ । ଏହା ସାର୍ବଜନୀନ ଗାଇକୁ ବୁଝାଏ । ସେହିପରି 'ମନୁଷ୍ୟ ଆଇଡିଆ' କହିଲେ ନିର୍ବିଶେଷ ଓ ସାର୍ବିକ ମନୁଷ୍ୟଙ୍କୁ ଦର୍ଶାଯାଏ । ପ୍ରତ୍ୟେକ ଆଇଡିଆ, ଏକ ସାର୍ବିକ ଭାବନାର ଚିତ୍ର ପ୍ରଦାନ କରେ ।

ଆଇଡିଆ ମାନ ବସ୍ତୁ ବା ବାଚ୍ୟାର୍ଥକୁ ନ ବୁଝାଇ ପ୍ରତ୍ୟୟ ବା ଚିନ୍ତାକୁ ବୁଝାଏ । ଅର୍ଥାତ୍ କୌଣସି ଆଇଡିଆ ବସ୍ତୁନିର୍ଦ୍ଦେଶାତ୍ମକ ନୁହଁ ବରଂ ଚିନ୍ତା ଦ୍ୟୋତକ । ଯଦି ସାର୍ବିକ ଗାଇ ବା ସାମାନ୍ୟ-ମନୁଷ୍ୟର କେଉଁଠି ସ୍ଥିତି ରହିଥାନ୍ତା, ଆମେ ତାହାକୁ ବାହାର କରିବାକୁ ପ୍ରୟାସ କରନ୍ତେ । ସେପରି ହେଲେ ଏସବୁ ସାର୍ବିକ ହେବା ପରିବର୍ତ୍ତେ ବିଶେଷ ସତ୍ତାଦ୍ୟୋତକ ହୁଅନ୍ତେ । ତେବେ ଆଇଡିଆମାନଙ୍କୁ ଚିନ୍ତା ଦ୍ୟୋତକ କହିବା ବେଳେ ଦୁଇଟି ତ୍ରୁଟି ଉଦ୍‌ଭବ ହେବାର ସମ୍ଭାବନା ରହିଥାଏ । ଏହା ଚିନ୍ତାଦ୍ୟୋତକ କହିବା ଦ୍ୱାରା କେହି ଭାବିପାରନ୍ତି ଯେ ଏହା ମୋର, ଆପଣଙ୍କର ବା ଅନ୍ୟ କୌଣସି ବ୍ୟକ୍ତିଙ୍କର ଭାବନା ହୋଇପାରେ । ଏପରି ମଧ୍ୟ କେହି ଭାବିପାରନ୍ତି ଯେ ସେସବୁ ଈଶ୍ୱରଙ୍କ ଚେତନାର ବିଷୟ । ଏ ଉଭୟ ଅନୁମାନକୁ ପ୍ଲେଟୋ ଅସ୍ୱୀକାର କରିଛନ୍ତି । ଆମର ପ୍ରତ୍ୟୟମାନ ବରଂ ଆଇଡିଆ ମାନଙ୍କର ପ୍ରତିଲିପି ବା ନମୁନା ମାତ୍ର । ଆମର ପ୍ରତ୍ୟୟକୁ ଆଇଡିଆ ସହ ସମାନ କରିବା ଉଦ୍‌ଭଟ ବୋଲି ପ୍ଲେଟୋ ବିଚାର କରିଛନ୍ତି । ଏକ ସମୁଦ୍ରର ଭାବନାକୁ ସମୁଦ୍ର ସହ ସମାନ କରିବା ଯେପରି ଅବାସ୍ତବ, ସେହିପରି ଆମର ଆଇଡିଆ ଜନିତ ଭାବନାକୁ ଆଇଡିଆ ସହ ସମାନ କରିବା ଅବାନ୍ତର । ସେହିପରି ଆଇଡିଆମାନଙ୍କୁ ଈଶ୍ୱରୀୟ ଚେତନାର ବସ୍ତୁ ମଧ୍ୟ କହିବା ଯଥାର୍ଥ ନୁହେଁ । ଯଦି ବି ଆଳଙ୍କାରିକ ଭାବରେ ଏପରି କେହି  କହିପାରନ୍ତି, ତେବେ ସକଳ ଆଇଡିଆମାନଙ୍କର ସମଷ୍ଟି ଏକ ଈଶ୍ୱରୀୟ ଚେତନାର ଚିତ୍ର ଦିଏ କହିବା ଏକ କାବ୍ୟିକ ପରିପ୍ରକାଶ ମାତ୍ର । ଆଇଡିଆମାନଙ୍କୁ ମାନବୀୟ ଭାବନା କିମ୍ବା ଈଶ୍ୱରୀୟ ଭାବନା କହିବା ଯଥାର୍ଥ ନୁହେଁ । ଏହି ତ୍ରୁଟିର କାରଣ ହେଉଛି ଯେ ଏକ ଚିନ୍ତାର ଭାବନା ଆଣିବା ବେଳେ କାହାର ଚିନ୍ତା ପ୍ରଶ୍ନଟି ଉଠିଥାଏ । ଜଣେ ଚିନ୍ତକଙ୍କୁ ନ ନେଇ ଏକ ଚିନ୍ତାର ଭାବନା ସାଧାରଣରେ ଅସମ୍ଭବ ମନେହୁଏ ।  ଏହି କାରଣରୁ ଏହି ତ୍ରୁଟି ସୃଷ୍ଟି ହେବାର ସମ୍ଭାବନା ଥାଏ । ତେବେ ଆଇଡିଆମାନଙ୍କୁ ବ୍ୟକ୍ତିନିଷ୍ଠ ଭାବନା ଭାବେ ନିଆଯିବ ନାହିଁ । ସେପରି କହିଲେ ଅସ୍ତିତ୍ୱ ଥିବା କୌଣସି ବ୍ୟକ୍ତିର ଭାବନା ଆସିବ । ବରଂ ଆଇଡିଆମାନ ବସ୍ତୁନିଷ୍ଠ । ସେଗୁଡିକର ସ୍ୱତନ୍ତ୍ର ଅସ୍ତିତ୍ୱ ରହିଛି । ପ୍ଲେଟୋ ଯେଉଁ ଅର୍ଥରେ ଆଇଡିଆ କହୁଛନ୍ତି ସେଗୁଡିକ କୌଣସି ବ୍ୟକ୍ତିର ଭାବନା ନୁହେଁ, ବରଂ ସେମାନେ ହେଉଛନ୍ତି ସାର୍ବିକ, ବସ୍ତୁନିଷ୍ଠ ଭାବନା । ପ୍ଲେଟୋଙ୍କର ଶୁଦ୍ଧସତ୍ତା କୌଣସି ବ୍ୟକ୍ତି ବା ବ୍ୟକ୍ତିମାନଙ୍କର ମାନସିକ ଧାରଣା ନୁହେଁ, ବରଂ ସେସବୁ ବ୍ୟକ୍ତିଠାରୁ ସଂପୂର୍ଣ୍ଣ ସ୍ୱତନ୍ତ୍ର ।

ପ୍ରତ୍ୟେକ ଶୁଦ୍ଧସତ୍ତା ଏକ ଏକତ୍ୱର ସୂଚନା ଦିଏ । ବହୁତ୍ୱ ଭିତରେ ପ୍ରତ୍ୟେକ ଶୁଦ୍ଧସତ୍ତା ଏକ ଏକକ ମାତ୍ର । ଗାଈ ସଂଖ୍ୟା ଅସଂଖ୍ୟ ହୋଇପାରେ କିନ୍ତୁ ଗାଈର ଶୁଦ୍ଧସତ୍ତା ଏକ, ସେହିପରି ମନୁଷ୍ୟ, ଗଛ, ଟେବୁଲ ମାନଙ୍କର ସଂଖ୍ୟା ଅଗଣିତ ହୋଇପାରେ କିନ୍ତୁ ସେମାନଙ୍କର ପ୍ରତ୍ୟେକଙ୍କର ଶୁଦ୍ଧ ସତ୍ତା ଏକ ଏକ । ହୁଏତ ଜଣେ କଳ୍ପନା କରିପାରନ୍ତି ଯେ ସୌନ୍ଦର୍ଯ୍ୟ ବିଭିନ୍ନ ପ୍ରକାରର ହୋଇପାରେ, କିନ୍ତୁ ସବୁ ସୌନ୍ଦର୍ଯ୍ୟ ମଧ୍ୟରେ ଯାହା ସାଧାରଣ ତାହା ହିଁ ସୌନ୍ଦର୍ଯ୍ୟର ଶୁଦ୍ଧସତ୍ତା । ସେହିପରି ନ୍ୟାୟର ଭିନ୍ନ ଭିନ୍ନ ଦିଗନ୍ତ ରହିପାରେ । ତେବେ ସମସ୍ତ ଶ୍ରେଣୀର ନ୍ୟାୟ ମଧ୍ୟରେ ଯାହା ସାଧାରଣ ତାହା ହିଁ ଅନୁଶୀଳନ କରିବାକୁ ହେବ । ସମସ୍ତ ପ୍ରକାରର ନ୍ୟାୟ ମଧ୍ୟରେ ଯାହା ସାଧାରଣ ଓ ମୌଳିକ ତାହା ହିଁ ହେବ ନ୍ୟାୟର ଶୁଦ୍ଧସତ୍ତା ବା ଆଇଡିଆ ।

ପ୍ରତ୍ୟେକ ଶୁଦ୍ଧସତ୍ତା ଅକ୍ଷୟ ଓ ଅପରିବର୍ତ୍ତନୀୟ । ଏକ ଶୁଦ୍ଧସତ୍ତାର ପରିକଳ୍ପନା କଲା ବେଳେ ତାହାର ପ୍ରତ୍ୟୟଟିର ସଂଜ୍ଞା ନିରୂପଣ କରିବାକୁ ହୁଏ । ପ୍ରତ୍ୟୟ ଓ ସଂଜ୍ଞା ସମାନ ଭାବନାକୁ ବୁଝାଏ । ସଂଜ୍ଞାର ପରିବର୍ତ୍ତନ ହୁଏ ନାହିଁ ଓ ଏହା ଅପରିବର୍ତ୍ତନୀୟ । କୌଣସି ସାମାନ୍ୟ ପଦର ସଂଜ୍ଞା ଦେବା ବେଳେ ସେହି ଶ୍ରେଣୀର ସମସ୍ତଙ୍କ ପାଖରେ ସେହି ଲକ୍ଷଣ ରହିଛି କି ନାହିଁ ତାହା ଦେଖିବାକୁ ହୁଏ । ଯଦି କୌଣସି ପଦର ସଂଜ୍ଞାରେ ଅବିରତ ପରିବର୍ତ୍ତନ ହେଉଥାଏ ତେବେ ସେହି ସଂଜ୍ଞା ନିରର୍ଥକ ମନେହୁଏ । ଆମେ ମନୁଷ୍ୟର ଯେଉଁ ସଂଜ୍ଞା ସ୍ଥିର କରିବା ତାହା ମନୁଷ୍ୟ ଶ୍ରେଣୀର ସମସ୍ତ ବ୍ୟକ୍ତିଙ୍କ ପ୍ରତି ପ୍ରଯୁଜ୍ୟ ହେଉଥିବ, ଯଦି ଏକ ସଂଜ୍ଞା ଏକ ଶ୍ରେଣୀର ସମସ୍ତଙ୍କ ପାଇଁ ପ୍ରଯୋଗ ହୋଇପାରୁ ନାହିଁ, ତେବେ ତାହା ଯଥାର୍ଥ ସଂଜ୍ଞା ନୁହେଁ । ସଂଜ୍ଞା ସାଧାରଣତଃ ସ୍ଥିର ଓ ସ୍ଥାୟୀ । ଏହା ଏକ ଶୁଦ୍ଧସତ୍ତାର ଶାବ୍ଦିକ ପରିପ୍ରକାଶ ମାତ୍ର । ଏକ ଶୁଦ୍ଧସତ୍ତା ବା ଆଇଡିଆକୁ ଭାଷାରେ ବ୍ୟକ୍ତ କରିବା ପାଇଁ ଆମେ ଏହାର ସଂଜ୍ଞା ଦେଇଥାଏ । ସେହି ସଂଜ୍ଞା ସ୍ଥାୟୀ ଓ ଅପରିବର୍ତ୍ତନୀୟ ହେବା ଆବଶ୍ୟକ । ଯେହେତୁ ଶୁଦ୍ଧସତ୍ତାର ପରିବର୍ତ୍ତନ ନାହିଁ ତେଣୁ ଏହାର ସଂଜ୍ଞାର ମଧ୍ୟ ପରିବର୍ତ୍ତନ ସମ୍ଭବ ନୁହେଁ । ମନୁଷ୍ୟ ବ୍ୟକ୍ତିମାନଙ୍କର ଜନ୍ମ ମୃତ୍ୟୁ ରହିଛି । କିନ୍ତୁ ମନୁଷ୍ୟ-ଆଇଡିଆର ଉତ୍ପତ୍ତି ବା ବିନାଶ ନାହିଁ । ସେହିପରି କୌଣସି ସୁନ୍ଦର ବସ୍ତୁ ଏବେ ରହିଛି, ପରେ ନଥାଇପାରେ । ସୁନ୍ଦର ବସ୍ତୁ ମାନଙ୍କର ଉତ୍ପତ୍ତି ଓ ବିଲୟ ରହିଛି କିନ୍ତୁ ସୌନ୍ଦର୍ଯ୍ୟ- ଶୁଦ୍ଧସତ୍ତାର ଉତ୍ପତ୍ତି ବା କ୍ଷୟ ନାହିଁ । ଏହା ଚିରନ୍ତନ, ଅପରିବର୍ତ୍ତନୀୟ ଓ ଅକ୍ଷୟ । ଏକ ମନୁଷ୍ୟ-ଆଇଡିଆ ହେଉ, ସୌନ୍ଦର୍ଯ୍ୟ- ଆଇଡିଆ ହେଉ ବା ଯେକୌଣସି ଶ୍ରେଣୀର ଶୁଦ୍ଧସତ୍ତା ହେଉ ସେମାନେ ଚିରନ୍ତନ ଓ ଅକ୍ଷୟ । ମନୁଷ୍ୟ ବ୍ୟକ୍ତିବିଶେଷଙ୍କର ଜନ୍ମ-ମୃତ୍ୟୁ ରହିଛି, ସୁନ୍ଦର ବସ୍ତୁମାନଙ୍କର ଉତ୍ପତ୍ତି ଓ ଅବକ୍ଷୟ ରହିଛି କିନ୍ତୁ ମନୁଷ୍ୟ-ଆଇଡିଆ ବା ସୌନ୍ଦର୍ଯ୍ୟ-ଆଇଡିଆ ବା ଅନ୍ୟ ଯେକୌଣସି ଆଇଡିଆର ଆରମ୍ଭ ନାହିଁ, କ୍ଷୟ ନାହିଁ ବା ସମାପ୍ତି ନାହିଁ । ସଂସାରରୁ ସବୁ ମଣିଷ କ୍ଷୟ ବା ଧ୍ୱଂସ ହୋଇଗଲେ ମନୁଷ୍ୟ-ଶୁଦ୍ଧସତ୍ତାର କିଛି କ୍ଷୟ ହେବ ନାହିଁ । ପୃଥିବୀରୁ ବାଘ ବଂଶର ଲୋପ ପାଇଗଲେ ମଧ୍ୟ ବାଘ-ଶୁଦ୍ଧସତ୍ତାର କିଛି ପରିବର୍ତ୍ତନ ହେବ ନାହିଁ । ଏକ ଶ୍ରେଣୀର ବ୍ୟକ୍ତି ବିଶେଷଙ୍କର ପରିବର୍ତ୍ତନ, କ୍ଷୟ, ଧ୍ୱଂସ ଇତ୍ୟାଦି ସହ ସେହି ଶ୍ରେଣୀର ଶୁଦ୍ଧସତ୍ତା ବା ଆଇଡିଆର କୌଣସି କ୍ଷୟ ବା ବିଲୁପ୍ତି ହେବ ନାହିଁ । ଏହା ସର୍ବଦା ଅକ୍ଷୟ, ଚିରନ୍ତନ ଓ ଅପରିବର୍ତ୍ତନୀୟ ରହିବ ।

ଶୁଦ୍ଧସତ୍ତା ଏକ ଶ୍ରେଣୀର ସମସ୍ତଙ୍କର ସାରତତ୍ତ୍ୱ । ଯେକୌଣସି ପଦର ସଂଜ୍ଞା ଦେବା ବେଳେ ଏକ ବସ୍ତୁର ସାରତତ୍ତ୍ୱକୁ ଉଲ୍ଲେଖ କରିବାକୁ ପଡିଥାଏ । ତ୍ରିଭୁଜର ସଂଜ୍ଞା ଦେବା ବେଳେ କୁହାଯାଏ ଏହା ଏକ ତିନିବାହୁ ବିଶିଷ୍ଟ କ୍ଷେତ୍ର । ମନୁଷ୍ୟର ସଂଜ୍ଞା ଦେବା ବେଳେ କୁହାଯାଏ ମନୁଷ୍ୟ ଏକ ବିଚାରଶୀଳ ପ୍ରାଣୀ । କେଉଁ ମନୁଷ୍ୟର କେଶ କହରା ବା କଳା, କାହାର ନାକ ଚେପ୍ଟା ବା ତୀକ୍ଷ୍ଣ, କିଏ ଦେଖିବାକୁ କଳା, ଗୋରା ବା ସାବନା, ଏସବୁ ମନୁଷ୍ୟର ଆକସ୍ମିକ ଗୁଣ, ଏହା ସହିତ ମନୁଷ୍ୟ ସଂଜ୍ଞାର କୌଣସି ସଂପର୍କ ହିଁ ନାହିଁ । ଏକ ସଂଜ୍ଞା ଏକ ଶ୍ରେଣୀର ସମସ୍ତ ବାଚ୍ୟାର୍ଥ ପାଖରେ ରହିବା ଆବଶ୍ୟକ ।

ପ୍ରତ୍ୟେକ ଶୁଦ୍ଧସତ୍ତା ନିଜସ୍ୱ କ୍ଷେତ୍ରରେ ଏକ ଉତ୍କର୍ଷ । ଏହାର ଉତ୍କର୍ଷ ଯୋଗୁ ଏହା ଏକ ପରମତତ୍ତ୍ୱ । ଉତ୍କୃଷ୍ଟତା ହିଁ ଏହାର ପରମ ତତ୍ତ୍ୱର ପ୍ରତିଫଳନ । ମନୁଷ୍ୟର ଶୁଦ୍ଧସତ୍ତା ନିଜସ୍ୱ ସ୍ୱରୂପରେ ଏକ ପରମ ତତ୍ତ୍ୱ ଓ ସର୍ବୋତ୍କୃଷ୍ଟ । ବ୍ୟକ୍ତିଗତ ଭାବରେ ମନୁଷ୍ୟମାନଙ୍କ ଭିତରେ ପାର୍ଥକ୍ୟ, ବୈଷମ୍ୟ ରହିପାରେ । କୌଣସି ବ୍ୟକ୍ତି ପରିପୂର୍ଣ୍ଣତା ବା ସର୍ବଶ୍ରେଷ୍ଠତା ଅର୍ଜନ କରିପାରିବ ନାହିଁ, କିନ୍ତୁ ମନୁଷ୍ୟ ଆଇଡିଆ ଭିତରେ ସକଳ ଉତ୍କୃଷ୍ଟତା ଓ ପରିପୂର୍ଣ୍ଣତା ରହିବା ଅବଶ୍ୟମ୍ଭାବୀ । ମନୁଷ୍ୟ ଆଇଡିଆ ପାଖରେ ରହିଥିବା ଗୁଣ ବା ଲକ୍ଷଣ ବ୍ୟକ୍ତି ହାସଲ କରିପାରିବ ନାହିଁ, ତେଣୁ ବ୍ୟକ୍ତି ପରିପୂର୍ଣ୍ଣ ହୋଇପାରିବ ନାହିଁ । ଏକ ଶୁଦ୍ଧ ସତ୍ତା ପାଖରେ ଯେଉଁ ପରିପୂର୍ଣ୍ଣତା ରହିବ ତାହା ବ୍ୟକ୍ତି ପାଖରେ ରହିବା କେବେ ସମ୍ଭବପର ହେବ ନାହିଁ ।

ପୁନଶ୍ଚ ଆଇଡିଆ ମାନ ଦେଶାତୀତ ଓ କାଳାତୀତ । ସେମାନେ ଯେ ଦେଶାତୀତ ଏହା ନିଃସନ୍ଦେହ । ସେମାନେ ଯଦି କୌଣସି ସ୍ଥାନରେ ରହିଥାନ୍ତେ, ତେବେ ସେମାନଙ୍କୁ ଆମେ ଜାଣି ପାରନ୍ତେ ବା ଆବିଷ୍କାର କରିପାରନ୍ତେ । ସେପରି ହେଲେ ସେମାନେ ବିଶେଷ ହୋଇ ଥାନ୍ତେ ଏବଂ ସାର୍ବିକ ହୋଇନଥାନ୍ତେ । ଆଇଡିଆମାନେ ଯେହେତୁ ସାର୍ବିକ ସେମାନେ କୌଣସି ସ୍ଥାନରେ ରହିବା ସମ୍ଭବ ନୁହେଁ । ଏଣୁ ସେମାନେ ସ୍ଥାନାତୀତ ହେବା ଅବଶ୍ୟମ୍ଭାବୀ । ସେମାନେ ମଧ୍ୟ ସମୟାତୀତ । ସେମାନେ ଅପରିବର୍ତ୍ତନୀୟ ଓ ଚିରନ୍ତନ ହୋଇଥିବାରୁ ସେମାନେ ସମୟର ସୀମା ଭିତରେ ଆବଦ୍ଧ ନୁହନ୍ତି । ସେମାନେ ସ୍ଥାନ ଓ ସମୟର ଅତୀତ ହୋଇଥିବାରୁ ସେମାନେ କେବଳ ତର୍କବୁଦ୍ଧି ମାଧ୍ୟମରେ ଜ୍ଞେୟ ହୋଇପାରିବେ । ସେମାନେ ଆମ ଅନୁଭୂତି ବା ପର୍ଯ୍ୟବେକ୍ଷଣର ବିଷୟ ନୁହନ୍ତି । ସେମାନେ ଯେ ପରିବର୍ତ୍ତିତ ହେଉନାହାନ୍ତି ଏହା ଆମର ବିଚାର ଓ ବୁଦ୍ଧି ଦ୍ୱାରା ଜାଣିପାରିବା । ସେମାନେ ସବୁ ସମୟରେ ଯେ ସମାନ ତାହା ନୁହଁ, ସମୟ ସେମାନଙ୍କ ପାଖରେ ପ୍ରଯୁଜ୍ୟ ନୁହେଁ ବା ଅପ୍ରାସଙ୍ଗିକ । ମୋଟ ଉପରେ କହିଲେ ଆଇଡିଆ ବା ଶୁଦ୍ଧସତ୍ତାମାନେ ସ୍ଥାନ ଓ କାଳର ଊର୍ଦ୍ଧ୍ୱରେ ବୋଲି ପ୍ଲେଟୋ ବର୍ଣ୍ଣାଇଛନ୍ତି ।

ଆମର ବିଚାର ଓ ତର୍କବୁଦ୍ଧି ମାଧ୍ୟମରେ ଆମେ ଶୁଦ୍ଧସତ୍ତା ମାନଙ୍କୁ ଜାଣିବାରେ ସମର୍ଥ ହୋଇଥାଏ । ତେଣୁ ସମସ୍ତ ଶୁଦ୍ଧସତ୍ତାମାନ ଯେ ତର୍କଣା-ଆଧାରିତ ଏହା କୁହାଯାଇପାରେ । ଏକ ଶ୍ରେଣୀୟ ବିଭିନ୍ନ ବିଶେଷଙ୍କ ପାଖରେ ରହିଥିବା ସାଧାରଣ ଲକ୍ଷଣକୁ ଆମେ ଆରୋହାତ୍ମକ ତର୍କପଦ୍ଧତି ଦ୍ୱାରା ଜାଣିବାକୁ ସମର୍ଥ ହୋଇଥାଉ । ଆରୋହାତ୍ମକ ବିଚାର ପଦ୍ଧତି ମାଧ୍ୟମରେ ଏକ ଶ୍ରେଣୀର ବ୍ୟକ୍ତି ବିଶେଷମାନଙ୍କ ପାଖରେ କ'ଣ ଲକ୍ଷଣ ସାଧାରଣ ଭାବେ ରହିଛି

ତାହା ଜ୍ଞେୟ ହୋଇଥାଏ । ଏକ ଶ୍ରେଣୀର ସକଳ ବିଶେଷଙ୍କର ଶୁଦ୍ଧସତ୍ତାକୁ ପ୍ଲେଟୋ ଏକ, ଅକ୍ଷୟ, ପରମସତ୍ତା, ସ୍ଥାନ-କାଳର ଉର୍ଦ୍ଧ୍ୱ, ଅପରିବର୍ତ୍ତନୀୟ ବୋଲି ପରିକଳ୍ପନା କରିଛନ୍ତି । ଏହା ତର୍କଣା ମାଧ୍ୟମରେ ସେ ସ୍ଥିର କରିଛନ୍ତି ଓ ଏ କ୍ଷେତ୍ରରେ କୌଣସି ରହସ୍ୟବାଦ, ଅନ୍ତଃପ୍ରଜ୍ଞାର ଭାବନା ଆଣି ନାହାନ୍ତି । ଶୁଦ୍ଧସତ୍ତାକୁ ଜାଣିବା ପାଇଁ ଆମ ବିଚାରବୁଦ୍ଧି ଯେ ଆଧାର ଏହା ପ୍ଲେଟୋ ଭାବିଛନ୍ତି । ପ୍ଲେଟୋ ଏଠାରେ ରହସ୍ୟବାଦକୁ ପରିହାର କରିଛନ୍ତି ।

ଗ୍ରୀସ୍‌ର ବିଶିଷ୍ଟ ଗଣିତଜ୍ଞ ପିଥାଗୋରାସଙ୍କ ସଂଖ୍ୟା ତତ୍ତ୍ୱ ସହ ପ୍ଲେଟୋ ଶୁଦ୍ଧସତ୍ତା ମାନଙ୍କୁ ସଂଯୁକ୍ତ କରିଥିବା ଜଣାଯାଏ । ଅବଶ୍ୟ ପ୍ଲେଟୋଙ୍କର କୌଣସି ସଂଳାପରେ ଏହାର ଉଲ୍ଲେଖ ନାହିଁ, ତେବେ ଏହା ଆରିଷ୍ଟୋଟଲଙ୍କ ଲେଖାରୁ ଜଣାଯାଏ । ସମ୍ଭବତଃ ପ୍ଲେଟୋ ତାଙ୍କ ଜୀବନକାଳର ଶେଷ ଆଡକୁ ଏହା କରିଛନ୍ତି ଫଳରେ ସେ ଏ ବିଷୟ ତାଙ୍କ ଡାଏଲଗ୍‌ରେ ଉଲ୍ଲେଖ କରିନାହାନ୍ତି । ପ୍ଲେଟୋଙ୍କ ଆକାଡେମୀରେ ଆରିଷ୍ଟୋଟଲ ଛାତ୍ର ଥିବା ସମୟରେ ସେ ଏହା ତାଙ୍କ ପାଖରୁ ଶୁଣିଥିବା ଅନୁମାନ କରାଯାଏ, ଯେହେତୁ ଆରିଷ୍ଟୋଟଲ ଏହା ଲେଖାରେ ପ୍ରକାଶ କରିଛନ୍ତି । ତେବେ ପ୍ଲେଟୋଙ୍କ ଦାର୍ଶନିକ ସିଦ୍ଧାନ୍ତ କ୍ଷେତ୍ରରେ ଯେଉଁ ସରଳ ଭାବାଦର୍ଶବାଦ ବ୍ୟକ୍ତ ହୋଇଛି ତାହା ଏହାଦ୍ୱାରା ବାଧାପ୍ରାପ୍ତ ହେବା ସମାଲୋଚକମାନେ ଦର୍ଶାଇଛନ୍ତି । ପିଥାଗୋରାସ (ଖ୍ରୀ.ପୂ. ୫୮୨- ଖ୍ରୀ.ପୂ.୫୦୦) ଥିଲେ ବିଶ୍ୱବିଖ୍ୟାତ ଗଣିତଜ୍ଞ ଓ ତାଙ୍କର ଭାବଧାରାର ପ୍ରଭାବ ପ୍ଲେଟୋଙ୍କ ଉପରେ ପଡିଥିବା ଅନୁମାନ । ତେବେ ପ୍ଲେଟୋଙ୍କର ଭାବଧାରା ପିଥାଗୋରାସଙ୍କ ଭାବନାର ପ୍ରଭାବରୁ କିଛିଟା ପଶ୍ଚାଦ୍‌ଗାମୀ ହୋଇଥିବା କୁହାଯାଏ । କାରଣ ପ୍ଲେଟୋ ପିଥାଗୋରାସଙ୍କ ଗାଣିତିକ ରହସ୍ୟବାଦଦ୍ୱାରା ପ୍ରଭାବିତ ହେବା ଦ୍ୱାରା ପ୍ଲେଟୋଙ୍କ ଦର୍ଶନରେ ସାମାନ୍ୟ ଅସଙ୍ଗତି ସୃଷ୍ଟି ହୋଇଛି ।

ପ୍ଲେଟୋଙ୍କର ଆଇଡିଆ ସିଦ୍ଧାନ୍ତରୁ ଏହା ସ୍ପଷ୍ଟ ମନେହୁଏ ଯେ ମାନବୀୟ ଅନୁଭୂତି ଓ ଜ୍ଞାନର ଆଧାର ଭାବରେ ସେ ପ୍ରତ୍ୟକ୍ଷ ଓ ତର୍କବୁଦ୍ଧି ଉଭୟକୁ ପ୍ରାଧାନ୍ୟ ଦେଇଛନ୍ତି । ପୃଥିବୀର ବସ୍ତୁ ସକଳ ବିଷୟରେ ଆମେ ଇନ୍ଦ୍ରିୟ-ପ୍ରତ୍ୟକ୍ଷ ମାଧ୍ୟମରେ ଜାଣିବାକୁ ସମର୍ଥ ହୋଇଥାଏ, କିନ୍ତୁ ଶୁଦ୍ଧସତ୍ତା ବା ଆଇଡିଆ ମାନଙ୍କୁ ଜାଣିବାକୁ ଆମେ ତର୍କବୁଦ୍ଧିର ସାହାଯ୍ୟ ନେଇଥାଏ । ଶୁଦ୍ଧସତ୍ତା ପାଖରେ ଯେଉଁ ଲକ୍ଷଣ ରହିବା ଜଣାଯାଏ ତାହାର ବିପରୀତ ଲକ୍ଷଣମାନ ଇନ୍ଦ୍ରିୟଲବ୍ଧ ଜ୍ଞାନ ପାଖରେ ରହିବା ଦେଖାଯାଏ । ଶୁଦ୍ଧସତ୍ତା ସକଳ ହେଉଛନ୍ତି ପରମ ତତ୍ତ୍ୱ ବା ପରମାର୍ଥିକ ସତ୍ତା । ଅପରପକ୍ଷରେ ଇନ୍ଦ୍ରିୟ ଗ୍ରାହ୍ୟ ବସ୍ତୁ ହେଉଛି ବାସ୍ତବ ସତ୍ତା (absolute unreality) ବା ଅସତ୍ । ତେବେ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁମାନଙ୍କର ଯାହା କିଛି ବାସ୍ତବତା ରହିଛି ତାହା କେବଳ ଶୁଦ୍ଧସତ୍ତା ବା ଆଇଡିଆମାନଙ୍କ ସହ ସମ୍ବନ୍ଧରୁ ହୋଇଛି । ଯଦି ଶୁଦ୍ଧସତ୍ତା ସତ୍ ହୁଏ ତେବେ ଇନ୍ଦ୍ରିୟଗ୍ରାହ୍ୟ ଜ୍ଞାନ ଅସତ୍ ହେବ । ଇନ୍ଦ୍ରିୟଗ୍ରାହ୍ୟ ଜ୍ଞାନର ବସ୍ତୁମାନ ସତ୍ ଓ ଅସତ୍ ମଧ୍ୟରେ ସ୍ଥାନିତ ହେବେ । ସେମାନେ ଯେହେତୁ ଆଇଡିଆମାନଙ୍କର ପ୍ରତିଲିପି, ସେମାନେ କିଛି ସତ୍, ପୁନଶ୍ଚ ଯେହେତୁ ସେମାନେ ପରିବର୍ତ୍ତନଶୀଳ ଓ କ୍ଷୟଶୀଳ ତେଣୁ ସେମାନେ କିଛି ଅସତ୍ । ବାହ୍ୟ ଜଗତର ବସ୍ତୁମାନ ଏହି ଦୃଷ୍ଟିରୁ ଉଭୟ ସତ୍ ଓ ଅସତ୍ । ସେମାନେ ଆଇଡିଆରେ ଭାଗ ନେଉଥିବାରୁ ସତ୍, ତେବେ ଏହି ସତ୍ ଆଇଡିଆମାନଙ୍କର ସତ୍‌ଠାରୁ ସଂପୂର୍ଣ୍ଣ ଭିନ୍ନ । ଆଇଡିଆମାନ ସର୍ବଦା ସାର୍ବିକ, ଇନ୍ଦ୍ରିୟଲବ୍ଧ ବସ୍ତୁମାନ ସର୍ବଦା

ବିଶେଷ ବା ବ୍ୟକ୍ତିସୂଚକ । ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁମାନ ଅସଂଖ୍ୟ, କିନ୍ତୁ ଆଇଡିଆ ବା ଶୁଦ୍ଧସତ୍ତା ସର୍ବଦା ଏକ । ଆଇଡିଆମାନ ସ୍ଥାନ ଓ କାଳର ଅତୀତ, ଇନ୍ଦ୍ରିହଗ୍ରାହ୍ୟ ବସ୍ତୁ ସକଳ ସ୍ଥାନ ଓ କାଳଦ୍ୱାରା ସୀମାବଦ୍ଧ । ଆଇଡିଆମାନ ଚିରନ୍ତନ ଓ ଅକ୍ଷୟ, ଇନ୍ଦ୍ରିୟ ଗ୍ରାହ୍ୟ ବସ୍ତୁ ସକଳ ପରିବର୍ତ୍ତନଶୀଳ ଓ କ୍ଷୟଶୀଳ । ଏହିପରି ଦେଖିବାକୁ ଗଲେ ଆମର ତର୍କବୁଦ୍ଧି ବା ତର୍କଣାଦ୍ୱାରା ଆମେ ଯେଉଁ ଶୁଦ୍ଧ ସତ୍ତାର ପରିକଳ୍ପନା କରୁ ତାହା ଆମ ଇନ୍ଦ୍ରିୟଲବ୍ଧ ଅନୁଭୂତିଠାରୁ ସଂପୂର୍ଣ୍ଣ ଭିନ୍ନ । ସେମାନଙ୍କ ମଧ୍ୟରେ ରହିଥିବା ଲକ୍ଷଣ ମାନ ପରସ୍ପରର ବିପରୀତ ଓ ପରସ୍ପରଠାରୁ ସଂପୂର୍ଣ୍ଣ ଭିନ୍ନ । ସେମାନଙ୍କ ଭିତରେ ରହିଥିବା ସମ୍ବନ୍ଧର କାରଣ ହେଉଛି ବସ୍ତୁସକଳ ସେମାନଙ୍କ ଆଇଡିଆରେ ଅଂଶଗ୍ରହଣ କରନ୍ତି । ସକଳ ଗାଈ ଗାଈ-ଶୁଦ୍ଧସତ୍ତାରେ ଅଂଶଗ୍ରହଣ କରୁଥିବାରୁ ସେମାନେ ଗାଈ ଶୁଦ୍ଧସତ୍ତାର ପ୍ରତିଲିପି, ମନୁଷ୍ୟମାନେ ମନୁଷ୍ୟ-ଶୁଦ୍ଧସତ୍ତାରେ ଅଂଶଗ୍ରହଣ କରୁଥିବାରୁ ସେମାନେ ମନୁଷ୍ୟ ଶୁଦ୍ଧସତ୍ତାର ପ୍ରତିଲିପି, ଟେବୁଲମାନ ଟେବୁଲ-ଶୁଦ୍ଧସତ୍ତାର ପ୍ରତିଲିପି, ଗୋଲାପମାନେ ଗୋଲାପ-ଶୁଦ୍ଧସତ୍ତାର ପ୍ରତିଲିପି ଇତ୍ୟାଦି । ଆଇଡିଆମାନେ ସଂପୂର୍ଣ୍ଣ ଭାବେ ସତ୍, ଚିରନ୍ତନ ଓ ସାର୍ବିକ । ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁମାନ ଅସତ୍, ପରିବର୍ତ୍ତନଶୀଳ, ସ୍ଥାନ-କାଳଦ୍ୱାରା ସୀମାବଦ୍ଧ ଓ ବିଶେଷ ।

ହେରାକ୍ଲାଇଟସଙ୍କ ଦର୍ଶନରେ କୁହାଯାଇଛି ଯେ ପୃଥିବୀର ସବୁକିଛି ପରିବର୍ତ୍ତନଶୀଳ, କୌଣସି କିଛି ସ୍ଥାୟୀ ନୁହେଁ । ସଂଭବନ ହେଉଛି ସଂସାରର ଏକମାତ୍ର ଧର୍ମ । ପ୍ଲେଟୋ ଏହି ଭାବନାକୁ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁମାନଙ୍କ ପ୍ରତି ପ୍ରୟୋଗ କରିଛନ୍ତି । ଆଇଡିଆ ମାନ ସ୍ଥାୟୀ, ଇନ୍ଦ୍ରିୟଜନ୍ୟ ବସ୍ତୁମାନ ଅସ୍ଥାୟୀ; ଆଇଡିଆମାନ ଅପରିବର୍ତ୍ତନୀୟ, ବସ୍ତୁସକଳ ପରିବର୍ତ୍ତନଶୀଳ । ଏହି ଦୃଷ୍ଟିରୁ ପରିବର୍ତ୍ତନଶୀଳ ବସ୍ତୁମାନଙ୍କ ବିଷୟରେ କୌଣସି ଜ୍ଞାନ ସମ୍ଭବ ନୁହେଁ । ଯାହା ମୁହୂର୍ତ୍ତକୁ ମୁହୂର୍ତ୍ତକ ବଦଳୁଥାଏ ସେହି ବସ୍ତୁମାନ ଜ୍ଞାନର ଆଧାର ହୋଇପାରିବେ ନାହିଁ । ଯାହା ସ୍ଥାୟୀ ଭାବରେ ରହିଛି, ଯାହାର ପରିବର୍ତ୍ତନ ନାହିଁ ତାହା ହିଁ ଜ୍ଞାନ ପାଇଁ ଭିତ୍ତି ହୋଇପାରିବ । ଏହି ମାନଦଣ୍ଡରୁ ଆଇଡିଆ ବା ଶୁଦ୍ଧସତ୍ତା ହିଁ ଜ୍ଞାନ ପାଇଁ ଆଧାର ହେବ, ଯେହେତୁ ସେସବୁ ସ୍ଥିର, ସ୍ଥାୟୀ ଓ ଅପରିବର୍ତ୍ତନୀୟ ।

ଏହି ଭାବଧାରାକୁ ଗ୍ରହଣ କରିବାଦ୍ୱାରା ଆଧୁନିକ ଜଗତର ଜ୍ଞାନସକଳ ନିରର୍ଥକ ହେବ କି ? ଆମେ ପ୍ରକୃତିର ବହୁ କ୍ଷେତ୍ର ଉପରେ ନର୍ଭରଯୋଗ୍ୟ ଓ ସତ୍ୟ-ଜ୍ଞାନ ଲାଭ କରିବାରେ ସମର୍ଥ ହୋଇପାରିଛେ । ସଂସାରରେ ବହୁତ କିଛି ଆସେ, ସମୟର ସ୍ରୋତରେ ଅନେକ ବିଲୀନ ହୋଇଯାଏ । ତେବେ ବହୁ ବସ୍ତୁ ଦୀର୍ଘକାଳ ସ୍ଥାୟୀ ହୋଇ ରହିବା ଦେଖାଯାଏ । ତେଣୁ ପ୍ରକୃତି ବିଷୟରେ ଆମେ ନିଶ୍ଚିତ ଦୃଢ଼ ଜ୍ଞାନ ଲାଭକରିପାରିବା ନାହିଁ କାହିଁକି ? ନଦ, ନଦୀ, ପାହାଡ଼, ପର୍ବତ, ସମୁଦ୍ର ଏସବୁ ତ ସ୍ଥାୟୀ ପରି ଦୀର୍ଘକାଳରୁ ପୃଥିବୀ ପୃଷ୍ଠରେ ରହିଛନ୍ତି, ହୁଏତ ସେଥିରେ ପରିବର୍ତ୍ତନ ହେଉଛି, ତଥାପି ସେମାନେ ଆପେକ୍ଷିକ ଭାବରେ ସ୍ଥାୟୀ ଯଦିବା ସେସବୁ ଚିରନ୍ତନ ଭାବରେ ସ୍ଥାୟୀ ନ ହୋଇପାରନ୍ତି । ପ୍ଲେଟୋଙ୍କ ବିରୁଦ୍ଧରେ ଏହି ସମାଲୋଚନା ନିରାଧାର ନୁହେଁ । ଏପରିକି ପ୍ଲେଟୋ ବାହ୍ୟ ଜଗତ ବିଷୟରେ ଜ୍ଞାନର ମହତ୍ତ୍ୱ ନେଇ ସଚେତନ ଥିଲେ । ତେବେ ପ୍ଲେଟୋଙ୍କ ବିରୁଦ୍ଧରେ କରାଯାଉଥିବା ସମାଲୋଚନା କେତେକାଂଶରେ ଭ୍ରମାତ୍ମକ । ଇନ୍ଦ୍ରିୟ ଆଧାରିତ ବସ୍ତୁ ଜଗତ ବିଷୟରେ କହିବା ବେଳେ ପ୍ଲେଟୋ ଆମର ସମ୍ବେଦନ କ୍ଷେତ୍ରରେ ଏକ ପାର୍ଥକ୍ୟ କରୁଛନ୍ତି । ଇନ୍ଦ୍ରିୟ ଆଧାରରେ ଲାଭ କରୁଥିବା ସମ୍ବେଦନମାନଙ୍କୁ ଦୁଇ

ଶ୍ରେଣୀରେ ବିଭକ୍ତ କରାଯାଇପାରେ । ଇନ୍ଦ୍ରିୟ ଜନିତ ସମ୍ବେଦନ ଅନାବୃତ ହୋଇପାରେ । ଏହି ଅନାବୃତ ସମ୍ବେଦନ (bare sensation) କ୍ଷେତ୍ରରେ କୌଣସି ଚିନ୍ତାମୂଳକ ଉପାଦାନ ସଂଯୁକ୍ତ ନଥାଏ । ଏହି ପ୍ରକାରର ସମ୍ବେଦନ ବସ୍ତୁଜଗତ ବିଷୟରେ ଜ୍ଞାନଦେବାକୁ ସମର୍ଥ ନୁହେଁ । ପରନ୍ତୁ ଯେଉଁ ସମ୍ବେଦନ ସହ ଚିନ୍ତାମୂଳକ ଉପାଦାନ ସଂଯୁକ୍ତ ହୋଇଥାଏ ତାହା ଜ୍ଞାନର ଆଧାର ହୋଇପାରେ । ସମସ୍ତ ଭୌତିକ ବିଜ୍ଞାନ ଅନାବୃତ ସମ୍ବେଦନ ସହ ସଂଶ୍ଳିଷ୍ଟ ନୁହେଁ, ବରଂ ଭୌତିକ ବିଜ୍ଞାନ ସହ ସମ୍ବେଦନ ଓ ମାନସିକ କ୍ରିୟା ସଂଯୁକ୍ତ ହୋଇ ରହିଥାଏ । ଯଦି ଆମେ ଅନାବୃତ ସମ୍ବେଦନ ବିଷୟକୁ ନେବା ତେବେ ତାହା ସର୍ବଦା ପରିବର୍ତ୍ତିତ ହେଉଥାଏ । ଅନାବୃତ ସମ୍ବେଦନ କ୍ଷେତ୍ରରେ କୌଣସି ସ୍ଥିରତା, ନିର୍ଦ୍ଦିଷ୍ଟତା ନ ଥାଏ, ତେଣୁ ଏହା କୌଣସି ଜ୍ଞାନର ଆଧାର ହୋଇପାରେ ନାହିଁ । ଅନାବୃତ ସମ୍ବେଦନ ଏକ ସ୍ରୋତ ବା ଧାରା ଯାହା ସହ କୌଣସି ସ୍ଥାୟିତ୍ୱ ସଂଯୁକ୍ତ ନୁହେଁ, ସୁତରାଂ ତାହା ଜ୍ଞାନର ଆଧାର ହୁଏ ନାହିଁ ।

କିନ୍ତୁ ଯେଉଁ ସମ୍ବେଦନ ସହ ପୃଥକୀକରଣ, ତୁଳନା, ଶ୍ରେଣୀକରଣ, ସଂଯୋଗ ଇତ୍ୟାଦି ସଂଶ୍ଳିଷ୍ଟ ହୁଏ ତାହା ଜ୍ଞାନର ଆଧାର ହୋଇଥାଏ । ଆମେ ଏକ ପର୍ବତକୁ ଦେଖିଲେ ଆମର ଅନେକ ସମ୍ବେଦନ ଆସେ । ଏହାର ସବୁଜିମା, ଆଲୋକ, ବାଦଲ ଦ୍ୱାରା ଆଚ୍ଛାଦିତ ଅବସ୍ଥା, ବର୍ଷା ସମୟର ଦୃଶ୍ୟ, ସକାଳ ଓ ମଧ୍ୟାହ୍ନର ଚିତ୍ର ପରିବର୍ତ୍ତିତ ହେଉଥାଏ । ଗୋଟିଏ ପଟୁ ପର୍ବତଟି ଯେପରି ଦୃଶ୍ୟମାନ ହୁଏ ଅନ୍ୟ ଦିଗରୁ ଦେଖିଲେ ସେପରି ଦେଖାଯାଏ ନାହିଁ । ତେବେ ପର୍ବତଟିର ସ୍ଥାୟିତ୍ୱରୁ ପ୍ରତୀୟମାନ ହୁଏ ଯେ ଆମର ଏହି ଭିନ୍ନ ଭିନ୍ନ ସମ୍ବେଦନ ଗୋଟିଏ ପର୍ବତର ପ୍ରତ୍ୟୟରୁ ହିଁ ସୃଷ୍ଟି ହେଉଛି । ଆମେ ଦେଖୁଥିବା ପର୍ବତ ଯେ ସ୍ଥାୟୀ ଓ ସ୍ଥିର ହୋଇ ରହିଛି ଏହା ଇନ୍ଦ୍ରିୟ ସାହାଯ୍ୟରେ ନୁହଁ ବରଂ ଆମର ବୁଦ୍ଧିଦ୍ୱାରା ଆମେ ଜାଣିବାକୁ ସମର୍ଥ ହେଉଛେ । ଆମର ସକଳ ସମ୍ବେଦନକୁ ଏକତ୍ର କରିବା, ସେମାନଙ୍କ ଭିତରେ ତୁଳନା କରିବା, ସେମାନଙ୍କର ଆଧାର ଉପରେ ପର୍ବତଟିର ସାମଗ୍ରିକ ଚିତ୍ର ଲାଭକରିବା କାର୍ଯ୍ୟ ଆମର ବିଚାରଶକ୍ତି ଓ ବୁଦ୍ଧିଦ୍ୱାରା ସମାହିତ ହୋଇଥାଏ । ସୁତରାଂ ଏସବୁ କ୍ଷେତ୍ରରେ ସମ୍ବେଦନ ଓ ତର୍କବୁଦ୍ଧିର ସମନ୍ୱୟ ଘଟୁଛି । ପ୍ଲେଟୋଙ୍କ ଭାଷାରେ କହିଲେ ଆମେ ପର୍ବତଟିକୁ ଜାଣିବାକୁ ସମର୍ଥ ହେଉଛେ କାରଣ ପର୍ବତର ଶୁଦ୍ଧସତ୍ତା ସହ ଏହା ଅଂଶଗ୍ରହଣ କରୁଛି । ଅର୍ଥାତ୍ ପର୍ବତ-ଶୁଦ୍ଧସତ୍ତାର ଏହା ଏକ ପ୍ରତିଲିପି ମାତ୍ର । ସୁତରାଂ କେବଳ ସମ୍ବେଦନ ମାଧ୍ୟମରେ କୌଣସି ଜ୍ଞାନ ସମ୍ଭବ ହୁଏ ନାହିଁ । ଅମିଶ୍ରିତ ସମ୍ବେଦନ ଏକ ପ୍ରବାହ ମାତ୍ର । ବରଂ ସମ୍ବେଦନ ସହ ବିଚାର, ବୁଦ୍ଧିର ସଂଯୋଗ ଦ୍ୱାରା ଜ୍ଞାନ ଯେ ସମ୍ଭବ ହୋଇଥାଏ, ଏହା ପ୍ଲେଟୋଙ୍କ ଭାବନାର ନିହିତାର୍ଥ ଅଟେ ।

ପ୍ଲେଟୋଙ୍କ ଆଇଡିଆ ତତ୍ତ୍ୱର ନିର୍ମାଣ କ୍ଷେତ୍ରରେ ଗ୍ରୀସ୍‌ରେ ପ୍ଲେଟୋଙ୍କ ପୂର୍ବରୁ ବିକଶିତ ହୋଇଥିବା ଅନ୍ୟ ଦାର୍ଶନିକ ମତର ପ୍ରଭାବ ରହିଥିବା ମନେହୁଏ । ଇଲୀୟ ଦର୍ଶନରେ ବିକଶିତ ହୋଇଥିବା ସତ୍ ବା ପରମତତ୍ତ୍ୱ, ହେରାକ୍ଲାଇଟସଙ୍କ ଦର୍ଶନର ସଂଭବନ ଓ ସକ୍ରେଟିସଙ୍କ ଦର୍ଶନର ପ୍ରତ୍ୟୟ ଭାବନା ପ୍ଲେଟୋଙ୍କୁ ପ୍ରଭାବିତ କରିଥିଲା । ସେ ହେରାକ୍ଲାଇଟସଙ୍କ ପରିବର୍ତ୍ତନ ବା ସଂଭବନକୁ ସମ୍ବେଦନ ସହ ସଂଶ୍ଳିଷ୍ଟ କରିଛନ୍ତି । ହେରାକ୍ଲାଇଟସ ସବୁକିଛି ଯେ ସଂସାରରେ ପରିବର୍ତ୍ତନଶୀଳ ଏହା ଭାବୁଥିଲେ । ସେ ସତ୍ (Being) କୁ ସ୍ୱୀକାର ନକରି ସଂଭବନ (Becoming)

କୁ ମୌଳିକ ଭାବନା ଭାବେ ନେଇଥିଲେ । ତାଙ୍କର ଏହି ଭାବନାକୁ ପ୍ଲେଟୋ ସମ୍ବେଦନର ପୃଥିବୀ (World of sense) ପାଖରେ ପ୍ରୟୋଗ କରିଥିଲେ । ଇଲୀୟ ଦର୍ଶନରେ ମୂଳ ସତ୍ତା ବା ପରମ ତତ୍ତ୍ୱର ଭାବନା ଚିନ୍ତାରାଜ୍ୟକୁ ଆସିଛି । ପ୍ଲେଟୋ ଇଲୀୟ ଦାର୍ଶନିକ ପାର୍ମେନିଡୀସଙ୍କ ପରମ ତତ୍ତ୍ୱର ଭାବନାକୁ ନେଇ ଏହାକୁ ତାଙ୍କର ଶୁଦ୍ଧସତ୍ତା ବିଚାର ସହ ସଂଶ୍ଳିଷ୍ଟ କରିଛନ୍ତି । ସେହିପରି ସକ୍ରେଟିସ୍‌ଙ୍କ ବିଚାରରୁ ପ୍ଲେଟୋ ପ୍ରତ୍ୟୟର ଭାବନାକୁ ନେଇଛନ୍ତି । ପ୍ଲେଟୋ ଯେଉଁ ତତ୍ତ୍ୱମୀମାଂସାର ଭିତ୍ତି ପକାଇଛନ୍ତି ସେଥିରେ ଆଇଡିଆ ବା ଶୁଦ୍ଧସତ୍ତାକୁ ପ୍ରମୁଖ ସ୍ଥାନ ଦେଇଛନ୍ତି । ସକ୍ରେଟିସ୍‌ଙ୍କ ପ୍ରତ୍ୟୟକୁ ସେ ଶୁଦ୍ଧସତ୍ତାରେ ରୂପାନ୍ତରିତ କରି ତାହା ସହ ପାର୍ମେନିଡୀସଙ୍କ ତତ୍ତ୍ୱକୁ ସଂଯୁକ୍ତ କରିଛନ୍ତି । ପ୍ଲେଟୋଙ୍କ ପୂର୍ବରୁ ହେରାକ୍ଲାଇଟସ୍, ପାର୍ମେନିଡୀସ ଓ ସକ୍ରେଟିସ୍ ଯେଉଁ ଦାର୍ଶନିକ ବିଚାରର ଅବତାରଣା କରିଛନ୍ତି ସେସବୁ ଭାବନା ପ୍ଲେଟୋଙ୍କ ଦର୍ଶନରେ ନୂତନ ରୂପରେ ବ୍ୟକ୍ତ ହୋଇଛି । ଏହିପରି ଦେଖିଲେ ପ୍ଲେଟୋଙ୍କର ତତ୍ତ୍ୱମୀମାଂସାର ଭିତ୍ତି ତାଙ୍କ ପୂର୍ବବର୍ତ୍ତୀ ଦାର୍ଶନିକମାନଙ୍କ ବିଚାରରୁ ଉପାଦାନ ନେଇ ସୁଦୃଢ଼ ହୋଇଛି ।

(ଖ) ଶୁଦ୍ଧସତ୍ତା ଓ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ

ଆମେ ଇନ୍ଦ୍ରିୟ ସାହାଯ୍ୟରେ ବହୁ ବିଷୟକୁ ପ୍ରତ୍ୟକ୍ଷ କରୁ । ଆମର ଇନ୍ଦ୍ରିୟ ସମ୍ବେଦନ ଆମକୁ ବସ୍ତୁମାନଙ୍କ ବିଷୟରେ ଅନୁଭୂତି ଦେଇଥାଏ । କୌଣସି ସମ୍ବେଦନ ଯଦି ଅମିଶ୍ରିତ ପ୍ରବାହ ହୋଇଥାଏ, ହୁଏତ ତାହା ଆମକୁ ପ୍ରକୃତି ବିଷୟରେ ଜ୍ଞାନ ଦିଏ ନାହିଁ । ପରନ୍ତୁ ଆମର ଅନେକ ସମ୍ବେଦନ ମାଧ୍ୟମରେ ଆମେ ବସ୍ତୁମାନଙ୍କ ବିଷୟରେ ଜାଣିବାକୁ ପାଇଥାଏ । ସମ୍ବେଦନ ଜନିତ ପ୍ରତ୍ୟକ୍ଷଦ୍ୱାରା ବସ୍ତୁମାନ ଜ୍ଞେୟ ହୋଇଥାନ୍ତି । ଆମେ ଆମ ଚତୁଃପାର୍ଶ୍ୱରେ ରହିଥିବା ଘର, ଗଛ, ରାସ୍ତା, ବିଭିନ୍ନ ପ୍ରାଣୀ ଇତ୍ୟାଦି ବସ୍ତୁମାନଙ୍କୁ ଦେଖୁ । ପ୍ଲେଟୋଙ୍କ ମତରେ ସେମାନଙ୍କ ମଧ୍ୟରେ ଶୁଦ୍ଧସତ୍ତା ରହିଥିବାରୁ ସେମାନେ ଆମର ପ୍ରତ୍ୟକ୍ଷ ହୁଅନ୍ତି । ତେବେ ଏଠାରେ ପ୍ରଶ୍ନ ହୁଏ- ଇନ୍ଦ୍ରିୟ ପ୍ରତ୍ୟକ୍ଷ ଜନିତ ବସ୍ତୁ ଓ ଶୁଦ୍ଧସତ୍ତା ମଧ୍ୟରେ କ'ଣ ସମ୍ବନ୍ଧ ରହିଛି ? ଅର୍ଥାତ୍ ବସ୍ତୁ ଓ ଶୁଦ୍ଧସତ୍ତା କିପରି ସମ୍ବନ୍ଧିତ ? ଶୁଦ୍ଧସତ୍ତା ପ୍ଲେଟୋଙ୍କ ମତରେ ହେଉଛି ପରମ ସତ୍ତା ବା ପରମ ତତ୍ତ୍ୱ । ସେହି କାରଣରୁ ଶୁଦ୍ଧସତ୍ତା ବସ୍ତୁମାନଙ୍କୁ ବ୍ୟାଖ୍ୟା କରିବାକୁ ପ୍ଲେଟୋ ପ୍ରୟାସ କରିଛନ୍ତି । ଗାଈ, ମଣିଷ, ବୃକ୍ଷ, ଟେବୁଲ ଇତ୍ୟାଦି ଏକ ଏକ ଶ୍ରେଣୀ । ପ୍ରତ୍ୟେକ ଶ୍ରେଣୀର ଏକ ଶୁଦ୍ଧସତ୍ତା ବା ଆଇଡିଆ ରହିଛି ଓ ଏକ ଶ୍ରେଣୀର ବାଚ୍ୟାର୍ଥ ଭିତରେ ଅନେକ ବିଶେଷ (particular) ରହିଛନ୍ତି । ବିଶେଷମାନ ହେଉଛନ୍ତି ଏକ ଶ୍ରେଣୀର ପ୍ରତିଲିପି । ବିଶେଷମାନ ତାଙ୍କ ଶୁଦ୍ଧସତ୍ତାରେ ଅଂଶଗ୍ରହଣ କରନ୍ତି । ଗାଈମାନେ ଗାଈ-ଶୁଦ୍ଧସତ୍ତାର ପ୍ରତିଲିପି, କାରଣ ପ୍ରତ୍ୟେକ ଗାଈ ଗାଈ-ଶୁଦ୍ଧସତ୍ତାରେ ଅଂଶଗ୍ରହଣ (participate) କରେ । ଏକ ଶ୍ରେଣୀର ଶୁଦ୍ଧସତ୍ତାରେ ସେହି ଶ୍ରେଣୀର ବିଶେଷମାନେ ଅଂଶଗ୍ରହଣ କରନ୍ତି ଓ ବିଶେଷମାନେ ଶୁଦ୍ଧସତ୍ତାର ପ୍ରତିଲିପି ମାତ୍ର । ପ୍ରତ୍ୟେକ ମନୁଷ୍ୟ ମନୁଷ୍ୟ-ଶୁଦ୍ଧସତ୍ତାର ପ୍ରତିଲିପି କିମ୍ବା ଇମିଟେସନ ଅଥବା କପି । ଯେପର୍ଯ୍ୟନ୍ତ ଏକ ଶ୍ରେଣୀର ବିଶେଷମାନ ଶ୍ରେଣୀର ଶୁଦ୍ଧସତ୍ତା ସହ ସାମଂଜସ୍ୟ ରକ୍ଷା କରନ୍ତି ସେମାନେ ବାସ୍ତବ, ଯେଉଁ କ୍ଷେତ୍ରରେ ସେମାନେ ପୃଥକ୍ ସେମାନେ ଅବାସ୍ତବ । ଅନ୍ୟ ଭାବରେ କହିଲେ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁମାନେ ଶୁଦ୍ଧସତ୍ତାର କ୍ଷୀଣ, ଅସ୍ପଷ୍ଟ ଓ ଦୁର୍ବଳ ପ୍ରତିଲିପି ମାତ୍ର । ପ୍ଲେଟୋଙ୍କ ମତରେ ବିଶେଷମାନ ଶୁଦ୍ଧସତ୍ତାର ଅପୂର୍ଣ୍ଣ, ଅସ୍ପଷ୍ଟ ଛାୟା ମାତ୍ର ।

ଶୁଦ୍ଧସତ୍ତାମାନ ପରମତତ୍ତ୍ୱ ଭାବେ ବାସ୍ତବ କିନ୍ତୁ ବିଶେଷମାନେ ଛାଇ ସଦୃଶ ଓ ଅର୍ଦ୍ଧବାସ୍ତବ । ପ୍ଲେଟୋ ବହୁ ସମୟରେ ବିଶେଷମାନଙ୍କର ଅଂଶଗ୍ରହଣ ବିଷୟ କହିଛନ୍ତି । ଏକ ଶ୍ରେଣୀର ବସ୍ତୁସକଳ ଶ୍ରେଣୀର ଶୁଦ୍ଧସତ୍ତାରେ ଅଂଶଗ୍ରହଣ କରିଛନ୍ତି ତେଣୁ ସେମାନେ ଶୁଦ୍ଧସତ୍ତାର ପ୍ରତିଲିପି । ସମସ୍ତ ଧଳା ପଦାର୍ଥମାନ ଧବଳ ଶୁଦ୍ଧସତ୍ତାରେ ଅଂଶଗ୍ରହଣ କରନ୍ତି, ସମସ୍ତ ବୃକ୍ଷମାନ ବୃକ୍ଷ-ଶୁଦ୍ଧସତ୍ତାରେ ଭାଗ ନିଅନ୍ତି, ସମସ୍ତ ସୁନ୍ଦର ଜିନିଷମାନ ସୌନ୍ଦର୍ଯ୍ୟ-ଶୁଦ୍ଧସତ୍ତାରେ ଅଂଶଗ୍ରହଣ କରନ୍ତି ଇତ୍ୟାଦି । ବସ୍ତୁତଃ ଧବଳତ୍ୱ (ଧଳା ବସ୍ତୁମାନଙ୍କର ଶୁଦ୍ଧସତ୍ତା) ଧଳା ବସ୍ତୁମାନଙ୍କର କାରଣ, ବୃକ୍ଷତ୍ୱ ସକଳ ବୃକ୍ଷମାନଙ୍କର ବ୍ୟାଖ୍ୟାର କାରଣ ଓ ସୌନ୍ଦର୍ଯ୍ୟ ସକଳ ସୁନ୍ଦର ବସ୍ତୁମାନଙ୍କର କାରଣ । ସମସ୍ତ ବସ୍ତୁମାନଙ୍କ ବିଷୟରେ ଏହା କୁହାଯାଇପାରେ ଯେ ସେମାନଙ୍କର ଶୁଦ୍ଧସତ୍ତା ସେମାନଙ୍କ ଅସ୍ତିତ୍ୱର କାରଣ । ଏହି ଦୃଷ୍ଟିରୁ ସମସ୍ତ ଶୁଦ୍ଧସତ୍ତା ଅନୁଭବାତୀତ ବା ଇନ୍ଦ୍ରିୟାତୀତ (transcendent) ଓ ଅନ୍ତର୍ବର୍ତ୍ତୀ (immanent) । ଶୁଦ୍ଧସତ୍ତା ଅନୁଭବାତୀତ, କାରଣ ଏହି ସତ୍ତା ବାସ୍ତବ ଓ ଏହା ସହ ସକଳ ବିଶେଷମାନ ଅଂଶଗ୍ରହଣ କରୁଥିଲେ ମଧ୍ୟ ଏହାର ଅସ୍ତିତ୍ୱ ବିଶେଷମାନଙ୍କଠାରୁ ପୃଥକ୍ ଓ ଇନ୍ଦ୍ରିୟାତୀତ । ସେହିପରି ଶୁଦ୍ଧସତ୍ତା ଅନ୍ତର୍ବର୍ତ୍ତୀ କାରଣ ଏହା ସମସ୍ତ ବିଶେଷଙ୍କ ମଧ୍ୟରେ ପ୍ରତିଫଳିତ । ସଂସାରରୁ ସମସ୍ତ ମନୁଷ୍ୟ ଲୋପ ପାଇଗଲେ ମଧ୍ୟ ମନୁଷ୍ୟର ଶୁଦ୍ଧସତ୍ତା ତଥାପି ବାସ୍ତବ ହୋଇ ରହିବ । ସେହିପରି ମନୁଷ୍ୟମାନଙ୍କର ଆବିର୍ଭାବପୂର୍ବରୁ ମନୁଷ୍ୟର ଶୁଦ୍ଧସତ୍ତା ରହିଥିଲା । ଅର୍ଥାତ୍ ଯଦିବି ଏପରି ଏକ ସମୟ ଥିଲା ଯେତେବେଳେ କୌଣସି ମନୁଷ୍ୟ ସଂସାରରେ ନଥିଲେ, ସେତେବେଳେ ମଧ୍ୟ ମନୁଷ୍ୟର ଶୁଦ୍ଧସତ୍ତା ବା ଆଇଡିଆର ଅସ୍ତିତ୍ୱ ରହିଥିଲା । ମନୁଷ୍ୟ ସଂପର୍କରେ ଯାହା କୁହାଯାଉଛି, ତାହା ଯେକୌଣସି ଶ୍ରେଣୀ ବିଷୟରେ କୁହାଯାଇ ପାରିବ ।

ଶୁଦ୍ଧସତ୍ତା ମାନଙ୍କର ସ୍ୱରୂପ କ'ଣ ବା ସେମାନେ କେତେ ପ୍ରକାର ହୋଇପାରିବେ ? ବସ୍ତୁ ବା ଶାରୀରିକ ସ୍ଥିତି ଥିବା ପଦାର୍ଥ ଯଥା ବୃକ୍ଷ, ନଦୀ, ତାରା, ଗାଈ, ମନୁଷ୍ୟ, କାଉ ଇତ୍ୟାଦିର ଶୁଦ୍ଧସତ୍ତା ରହିଛି, ବିଭିନ୍ନ ଗୁଣ ଯଥା ସବୁଜ, ଓଜନ, ମିଠା, ବାସ୍ନା, କୋମଳ ଇତ୍ୟାଦିର ଶୁଦ୍ଧସତ୍ତା ମଧ୍ୟ ରହିଛି । ପ୍ରାକୃତିକ ବସ୍ତୁମାନଙ୍କ ପରି ନିର୍ମିତ ବସ୍ତୁ ଯଥା ସାଇକେଲ, ଲୁଗା, ଜୋତା, ଖଟ, ଟେବୁଲ ମାନଙ୍କର ବି ଶୁଦ୍ଧସତ୍ତା ରହିଛି । ନୈତିକ ଅମୂର୍ତ୍ତ ଭାବନା ଯଥା ନ୍ୟାୟ, ଉତ୍କର୍ଷ, ସୌନ୍ଦର୍ଯ୍ୟ, ସତ୍ୟ ଇଦ୍ୟାଦି ମାନଙ୍କର ବି ଶୁଦ୍ଧସତ୍ତା ରହିବା ସମ୍ଭବ । ସେହିପରି କୁତ୍ସିତ, ଅନ୍ୟାୟ, ପାପ,ଘୃଣ୍ୟର ବି ଶୁଦ୍ଧସତ୍ତା ରହିପାରିବ । ଏପରିକି ନିକୃଷ୍ଟ ଜିନିଷ ଯଥା ମଳ, ଚୁଳ, ଅଶ୍ଳୀଳ, ଆବର୍ଜନା ଇତ୍ୟାଦି ଅପ୍ରୀତିକର ପଦାର୍ଥମାନଙ୍କର ବି ଶୁଦ୍ଧସତ୍ତା ସମ୍ଭବପର । ଏପରି ନିକୃଷ୍ଟ ଜିନିଷମାନଙ୍କର ଶୁଦ୍ଧସତ୍ତା ରହିଛି ବୋଲି ପ୍ଲେଟୋଙ୍କ ଡାଏଲଗ୍ 'ପାର୍ମେନିଡୀସ' ରେ ଉଲ୍ଲେଖ ରହିଛି । ପାର୍ମେନିଡୀସ ଏ ସବୁ ନିକୃଷ୍ଟ ପଦାର୍ଥମାନଙ୍କର ଆଇଡିଆ ଅଛି କି ବୋଲି ସକ୍ରେଟିସ୍‌ଙ୍କୁ ପ୍ରଶ୍ନ କରିଛନ୍ତି । ଏହି ପ୍ରଶ୍ନର ଉତ୍ତରରେ ତରୁଣ ସକ୍ରେଟିସ୍ ଯଦିବି ମନା କରିଛନ୍ତି, ତେବେ ତାଙ୍କୁ ସଂଶୋଧନ କରି ପାର୍ମେନିଡୀସ କହିଛନ୍ତି ଯେ ଯେତେବେଳେ ତାଙ୍କର (ସକ୍ରେଟିସ୍‌ଙ୍କର) ଦର୍ଶନରେ ଉତ୍ତମ ପ୍ରବେଶ ଘଟିବ ସେତେବେଳେ ସେ ସବୁକୁ ସେ ଅସ୍ୱୀକାର କରିବେ ନାହିଁ । ସୌନ୍ଦର୍ଯ୍ୟ, ଉତ୍କର୍ଷ, ମଙ୍ଗଳ ଇତ୍ୟାଦି ମହତ୍ତର ଭାବନା ମାନଙ୍କ କ୍ଷେତ୍ରରେ ଯେତେବେଳେ ଶୁଦ୍ଧସତ୍ତା ରହିବ, ସେହିପରି

ନିକୃଷ୍ଟ ଜିନିଷମାନଙ୍କ କ୍ଷେତ୍ରରେ ବି ସେମାନଙ୍କର ଚରମ ସ୍ଥିତିରେ ଶୁଦ୍ଧସତ୍ତା ରହିପାରିବ । ଯେଉଁଠି ଏକ ପ୍ରତ୍ୟୟ (concept) ନିର୍ମାଣ କରାଯିବା ସମ୍ଭବ, ସେ କ୍ଷେତ୍ରରେ ଶୁଦ୍ଧସତ୍ତାର ଭାବନା ରହିପାରିବ । ଅର୍ଥାତ୍ ଯେଉଁ କ୍ଷେତ୍ରରେ ଏକ ଶ୍ରେଣୀ ଓ ତାହାର ବାଚ୍ୟାର୍ଥ ସମ୍ଭବ, ସେ କ୍ଷେତ୍ରରେ ପ୍ରତ୍ୟୟ ରହିପାରିବ । ଯେଉଁଠି ପ୍ରତ୍ୟୟ ହୋଇପାରିବ, ସେଠାରେ ଶୁଦ୍ଧସତ୍ତା ରହିବା ଅବଶ୍ୟମ୍ଭାବୀ ।

ଇଲୀୟ ଦର୍ଶନରେ ଦେଖାଯାଇଛି ଯେ ପରମସତ୍ତା ସର୍ବଦା ସତ୍, ଏଥିରେ ଅସତ୍ ରହିପାରିବ ନାହିଁ । ସେହିପରି ପରମତତ୍ତ୍ୱ ସର୍ବଦା ଏକ, ଏଥିରେ ବିବିଧତାର ସ୍ଥାନ ନାହିଁ । ସେମାନେ ଯେହେତୁ ସକଳ ଅସତ୍ ଓ ବିବିଧତାକୁ ପରମ ତତ୍ତ୍ୱ ପାଖରେ ଅସ୍ୱୀକାର କଲେ ସେମାନେ ପୃଥିବୀରେ ଥିବା ସକଳ ବସ୍ତୁ ବା ବିବିଧତାକୁ ବ୍ୟାଖ୍ୟା କରିବାରେ ଅସମର୍ଥ ହୋଇନାହାନ୍ତି । ପରିଣାମତଃ ସେମାନେ ବିବିଧତାପୂର୍ଣ୍ଣ ପୃଥିବୀକୁ ଅସ୍ୱୀକାର କରିଛନ୍ତି । ପ୍ଲେଟୋଙ୍କ ଦର୍ଶନରେ ସେହି ସମସ୍ୟା ମଧ୍ୟ ଆସୁଛି । ଅସତ୍ – ସତ୍ ମଧ୍ୟରେ କ'ଣ ସଂପୂର୍ଣ୍ଣ ବହିଷ୍କରଣ ରହିଛି ? ପରମ (Absolute) କ'ଣ ସଂପୂର୍ଣ୍ଣ ଭାବେ ଏକ ଅମୂର୍ତ୍ତୀୟ ଭାବନା ଯାହାର ବିବିଧତା ସହ କିଛି ସମ୍ବନ୍ଧ ନାହିଁ ? ଯେଉଁ ଦାର୍ଶନିକ ସିଦ୍ଧାନ୍ତ କେବଳ ଏକ ପରମର ପରିକଳ୍ପନା କରି ସକଳ ବିବିଧତାର ବହିଷ୍କରଣ କରିଥାଏ, ତାହା ଏକ ଏକତତ୍ତ୍ୱବାଦୀ ଦର୍ଶନ ହୋଇଥାଏ । ପ୍ଲେଟୋ କ'ଣ ଏକ ଏକତତ୍ତ୍ୱବାଦୀ ଦର୍ଶନ ଦେଇଛନ୍ତି ନା ପ୍ଲେଟୋଙ୍କ ଦର୍ଶନ ଏକ ବହୁତତ୍ତ୍ୱବାଦୀ ବିଚାର ? ଅଥବା ପ୍ଲେଟୋଙ୍କ ଦର୍ଶନରେ ଏକତତ୍ତ୍ୱବାଦ ଓ ବହୁତତ୍ତ୍ୱବାଦର ସମନ୍ୱୟ ହୋଇଛି ? ପ୍ଲେଟୋଙ୍କ ଡାଏଲଗ୍ "ସଫିଷ୍ଟ" ଓ "ପାର୍ମେନିଡୀସ" ରେ ଏହି ପ୍ରସଙ୍ଗର ଆଲୋଚନା ହୋଇଛି ।

ପ୍ଲେଟୋ ସତ୍ ଓ ଅସତ୍ ଭିତରେ ସମ୍ବନ୍ଧ ବିଷୟକୁ ଅମୂର୍ତ୍ତୀୟ ଭାବରେ ବିଶ୍ଳେଷଣ କରିଛନ୍ତି । ସେହିପରି ଏକତ୍ୱ ଓ ବିବିଧତ୍ୱ ମଧ୍ୟରେ ସମ୍ବନ୍ଧ ପ୍ରସଙ୍ଗ ବି ଆଣିଛନ୍ତି । ଯାହା ପରମ ତାହା ଏକ ନା ଅନେକ, ତାହା ସତ୍ ନା ଅସତ୍ ତାହା ପ୍ଲେଟୋଙ୍କ ଶୁଦ୍ଧସତ୍ତା କ୍ଷେତ୍ରରେ ମଧ୍ୟ ଆଲୋଚନାର ପ୍ରସଙ୍ଗ ହୋଇପାରିବ । ପ୍ଲେଟୋ ତାଙ୍କ ଦର୍ଶନରେ ଶୁଦ୍ଧସତ୍ତା ବା ଆଇଡିଆମାନଙ୍କୁ ପରମ ବୋଲି ସ୍ୱୀକାର କରିଛନ୍ତି । ପ୍ଲେଟୋ ଇଲୀୟମାନଙ୍କର ଅମୂର୍ତ୍ତୀୟ ସିଦ୍ଧାନ୍ତକୁ ଗ୍ରହଣ କରିନାହାନ୍ତି । ଏକ ଏକକ ତତ୍ତ୍ୱ ଭିତରେ ବିବିଧତା ରହିପାରିବ । ବହୁତ୍ୱ ଓ ଏକତ୍ୱ ପରସ୍ପର ସହ ସମ୍ବନ୍ଧିତ ହୋଇପାରିବେ ଓ ପ୍ରତ୍ୟେକରେ ଅନ୍ୟର ଭାବନା ବି ସଂଶ୍ଳିଷ୍ଟ ହେବା ସମ୍ଭବ । ଗୋଟିକୁ ଅନ୍ୟଟିରୁ ବାଦ୍ ଦେଇ ଚିନ୍ତା କରିହେବ ନାହିଁ । କୌଣସି ଅଂଶ ନ ଥାଇ ଯେପରି ଏକ ସମଗ୍ରର ଭାବନା କରିବା ସମ୍ଭବ ନୁହେଁ, ସେହିପରି ଅନେକକୁ ବାଦ୍ ଦେଇ ଏକର ପରିକଳ୍ପନା ଅସମ୍ଭବ ହେବ ଅଥବା ଅତ୍ୟନ୍ତ ଅମୂର୍ତ୍ତୀୟ ହେବ । କାରଣ ଏକ ବା ଅନେକର ସଂଜ୍ଞା କିପରି ଦେଇହେବ ? ଏକର ସଂଜ୍ଞା ହେବ ଯାହା ଅନେକ ନୁହେଁ, ଅନେକର ସଂଜ୍ଞା ହେବ ଯାହା ଏକ ନୁହେଁ । ଅନେକକୁ ପୃଷ୍ଠଭୂମିରେ ନ ରଖିଲେ ଏକର ଅର୍ଥକୁ ଚିନ୍ତା କରିହେବ ନାହିଁ । ସେହିଦୃଷ୍ଟିରୁ ଏକର ଭାବନା ଭିତରେ ଅନେକର ଭାବନା ମଧ୍ୟ ଅନ୍ତର୍ନିହିତ ହୋଇରହିଛି ଓ ଅନେକକୁ ବାଦ୍ ଦେଇ ଏକର ଭାବନା କରିବା ସମ୍ଭବ ନୁହେଁ । ସୁତରାଂ ଏକ ଅମୂର୍ତ୍ତୀୟ ଏକର ପରିକଳ୍ପନା ଅଜ୍ଞେୟ ଓ ଅଚିନ୍ତନୀୟ ହେବ । ଏହାର କାରଣ ହେଉଛି ଯେ କୌଣସି ଏକ ଭାବନା ବା ବଚନ ପ୍ରକାଶ କଲାବେଳେ ଏକ ବିଧେୟ ଉଦ୍ଦେଶ୍ୟ ପ୍ରତି ପ୍ରୟୋଗ

ହେବା ଅନିବାର୍ଯ୍ୟ ମନେହୁଏ । ଆମେ ଯାହା ଭାବିବା ତାହାକୁ ଏକ ବାକ୍ୟ ବା ବଚନ ଭାବରେ ବ୍ୟକ୍ତ କଲେ ଯାଇ ତାହା କୌଣସି ବିଷୟରେ ଜ୍ଞାନ ଦେଇପାରିବ । ଏକ ବାକ୍ୟ ବା ବଚନ କ୍ଷେତ୍ରରେ ଏକ ବିଧେୟକୁ ଏକ ଉଦ୍ଦେଶ୍ୟ ପ୍ରତି ପ୍ରୟୋଗ କରିବାକୁ ହେବ । କେବଳ ଏକ ବିଧେୟ କୌଣସି ଜ୍ଞାନ ଦେବ ନାହିଁ । ବିଧେୟନ (predication) ପାଇଁ ଏକ ଉଦ୍ଦେଶ୍ୟ ଅବଶ୍ୟମ୍ଭାବୀ ମନେହୁଏ । ସୁତରାଂ ଏଠାରେ ଅର୍ଥାତ୍ ବିଧେୟନ କ୍ଷେତ୍ରରେ ଉଦ୍ଦେଶ୍ୟ ଓ ବିଧେୟ ଦ୍ୱୈତଭାବନା ରହିବା ସୁନିଶ୍ଚିତ ବୋଧହୁଏ ।

ଏକ ଅତି ସରଳ ବାକ୍ୟର ଉଦାହରଣ ନିଆଯାଉ । ମନେ କରାଯାଉ ଜଣେ "ଏକ" କୁ ସ୍ୱୀକାର କରିବାକୁ ଚାହିଁଲେ । ତାଙ୍କର ସ୍ୱୀକାରୋକ୍ତିଟି ହେବ "ଏକ ଅଛି" (The One is) । ଏଠାରେ ଦୁଇଟି କଥା ମଧ୍ୟ ଆସୁଛି ଯଥା 'ଏକ' ଓ 'ଅଛି' । ଏହାର ତାତ୍ପର୍ଯ୍ୟ ହେବ "ଏକ ହିଁ ସତ୍" । ଏଠାରେ ଏକକୁ ସ୍ୱୀକାର କରିବା ପାଇଁ ଦୁଇଟି ବିଷୟର ଅବତାରଣା କରାଯାଉଛି ଯଥା ଏକ ଓ ସତ୍ । ଏହି ବାକ୍ୟର ତାତ୍ପର୍ଯ୍ୟ ହେଉଛି ଏହି ଦୁଇଟି ଅଭିବ୍ୟକ୍ତି ସମାନ । ଅର୍ଥାତ୍ ଏକକ ପ୍ରତ୍ୟୟକୁ ସ୍ୱୀକାର କରିବା ପାଇଁ ଦୁଇଟି ବିଷୟକୁ ଅବତାରଣା କରିବାକୁ ହେଉଛି । ଯାହା ପ୍ରସଙ୍ଗରେ କହିଲେ ମଧ୍ୟ ଦୁଇଟି ଭାବନାର ଅବତାରଣା ହେଉଛି । ଯେକୌଣସି ଦାର୍ଶନିକ ଭାବଧାରାରେ କୌଣସି ଏକ ପରମ ତତ୍ତ୍ୱର ଅବତାରଣା କରିବା ପାଇଁ ହେଲେ ସେହି ଭାବନା ବିଷୟରେ କିଛି ସଦର୍ଥକ ଭାବରେ କୁହାଯାଇ ପାରିବ ନାହିଁ । ଇଲୀୟ ଦର୍ଶନ ହେଉ, ଅଦ୍ୱୈତ ବେଦାନ୍ତ ହେଉ ବା ସ୍ପିନୋଜାଙ୍କ ଦର୍ଶନ ହେଉ ସେମାନେ ଏକତତ୍ତ୍ୱକୁ ଗ୍ରହଣ କରିବା ପରିପ୍ରେକ୍ଷୀରେ ସେ ପ୍ରସଙ୍ଗରେ କେବଳ ନକାରାତ୍ମକ ବା ନଞର୍ଥକ ବିଧେୟ ପ୍ରକାଶ କରିଛନ୍ତି । ଏହା କ'ଣ ନୁହେଁ ତାହା ହିଁ କୁହାଯାଇଛି, ତାହାର ସଦର୍ଥକ ଅଭିବ୍ୟକ୍ତି ସମ୍ଭବ ହେଉନାହିଁ । ସ୍ପିନୋଜାଙ୍କ ଦ୍ରବ୍ୟ କ୍ଷେତ୍ରରେ ହେଉ ବା ଶଙ୍କରଙ୍କ ବ୍ରହ୍ମ କ୍ଷେତ୍ରରେ ହେଉ କେବଳ ନକାରାତ୍ମକ ଅଭିବ୍ୟକ୍ତି ଦିଆଯାଇଛି । ବ୍ରହ୍ମଙ୍କ ବିଷୟରେ କୁହାଯାଏ ବ୍ରହ୍ମ ଅପରିବର୍ତ୍ତନୀୟ, ଅସ୍ପଷ୍ଟ, ଅକ୍ଷୟ 'ନେତି', 'ନେତି' । ସ୍ପିନୋଜାଙ୍କ ଦର୍ଶନରେ ଦ୍ରବ୍ୟ ବିଷୟରେ ବି ସେହି ଭାବନା ରହିଛି । ତେବେ ଏକ ନଞର୍ଥକ ବିଧେୟ କ୍ଷେତ୍ରରେ ମଧ୍ୟ ଦ୍ୱୈତ ଭାବନା ନିହିତ ରହିଛି । କାରଣ ଏକ ନକାରାତ୍ମକ ବିଧେୟନରୁ ଏକ ସକାରାତ୍ମକ ତାତ୍ପର୍ଯ୍ୟ ମଧ୍ୟ ଆସିଥାଏ । କୌଣସି ବିଷୟର ଅସ୍ୱୀକରଣ ଦ୍ୱାରା ଏହାର ବିପରୀତ ଭାବନାର ସ୍ୱୀକରଣ ସ୍ୱୀକୃତ ହୋଇଥାଏ । କ ଅସ୍ପଷ୍ଟ କହିବାର ତାତ୍ପର୍ଯ୍ୟ ହେବ କ ସ୍ୱସ୍ଥିତ । ଖ ଅଚଳ କହିବାର ଅର୍ଥ ହେବ ଖ ସ୍ଥିର । ଗ ଅକ୍ଷୟ କହିବାର ଅର୍ଥ ହେବ ଗ ଚିରନ୍ତନ । ସୁତରାଂ ଏକ ଏକକର ପରିକଳ୍ପନା ଭିତରେ ଅନେକର ଭାବନା ବ୍ୟକ୍ତ ହେବା ସ୍ୱାଭାବିକ । ଏକର ଭାବନାରୁ ଅନେକର ଭାବନା ବା ଅନେକର ପ୍ରତ୍ୟୟରୁ ଏକର ପ୍ରତ୍ୟୟ ପୂର୍ଣ୍ଣରୂପେ ବହିଷ୍କରଣ କରିହେବ ନାହିଁ । ଅନେକର ଅର୍ଥ ଅନେକ ଏକର ସମଷ୍ଟି । ଏକତ୍ୱର ଭାବନାରେ ଅନେକତ୍ୱର ଭାବନା ଓ ଅନେକତ୍ୱର ଭାବନା ଭିତରେ ଏକତ୍ୱର ଭାବନା ନିହିତ । ଏକତ୍ୱ ସହ ବହୁତ୍ୱ ଓ ବହୁତ୍ୱ ସହ ଏକତ୍ୱର ଭାବନା ସଂଶ୍ଳିଷ୍ଟ । ପରମର ଭାବନା ଏକ ଅମୂର୍ତ୍ତ ଏକକ ନୁହେଁ କିମ୍ବା ଏକ ଅମୂର୍ତ୍ତ ବହୁତ୍ୱ ନୁହେଁ । ବହୁତ୍ୱ ଭିତରେ ଏହା ଏକତ୍ୱର ଅଭିବ୍ୟକ୍ତି ।

ପୁନଶ୍ଚ ପ୍ଲେଟୋଙ୍କ ମତରେ ସତ୍ ସଂପୂର୍ଣ୍ଣଭାବେ ଅସତ୍‌କୁ ବହିଷ୍କରଣ କରିପାରିବ ନାହିଁ । ସେମାନେ ଏକ ଓ ଅନେକ, ସେମାନେ ପରସ୍ପର ସହ ସମ୍ବନ୍ଧଯୁକ୍ତ ଓ ପ୍ରତ୍ୟେକ ଅନ୍ୟର ସହାୟକ । କୌଣସିର ସତ୍ ତାର ବିପରୀତର ଅସତ୍ ସହ ସମାନ । ଆଲୋକ ଯଦି ସତ୍, ତେବେ ଅନ୍ଧକାର ଅସତ୍ । ଆଲୋକ ଓ ଅନ୍ଧକାର ପରସ୍ପରର ଆପେକ୍ଷିକ । ଆଲୋକ ଓ ଅନ୍ଧାର ଯେପରି ପରସ୍ପରର ଆପେକ୍ଷିକ, ସେହିପରି ସତ୍ ଓ ଅସତ୍ ପରସ୍ପର ସହ ସମ୍ବନ୍ଧିତ । ସକଳ ସତ୍‌ରେ ଅସତ୍ ସଂପୃକ୍ତ ।

ଏହି ନିୟମମାନ ଶୁଦ୍ଧସତ୍ତା ସିଦ୍ଧାନ୍ତ କ୍ଷେତ୍ରରେ ପ୍ରୟୋଗ ହୋଇପାରିବ । ପ୍ଲେଟୋ ଶୁଦ୍ଧସତ୍ତାମାନଙ୍କୁ ପରମ ତତ୍ତ୍ୱ ଭାବରେ ଗ୍ରହଣ କରିଛନ୍ତି । ଶୁଦ୍ଧସତ୍ତା ଅନେକ, ସୁତରାଂ ପରମ ତତ୍ତ୍ୱ ମଧ୍ୟ ବହୁବିଧ । ତେବେ ଶୁଦ୍ଧସତ୍ତା ସକଳ ପରସ୍ପରଠାରୁ ବିଚ୍ଛିନ୍ନ ନୁହନ୍ତି ବରଂ ସେମାନେ ଏକ ସୁସଂହତ ଓ ଶୃଂଖଳିତ ବ୍ୟବସ୍ଥାର ଅଂଶ । ଶୁଦ୍ଧସତ୍ତାମାନ ଏକ ଶ୍ରେଣୀବଦ୍ଧ ବ୍ୟବସ୍ଥାର ଅଂଶବିଶେଷ । ପ୍ଲେଟୋଙ୍କ ମତରେ ଏକ ଶ୍ରେଣୀର ସମସ୍ତ ବିଶେଷ ବା ବାଚ୍ୟାର୍ଥଙ୍କ ମଧ୍ୟରେ  ଯେପରି ଏକ ସାଧାରଣ ଗୁଣ ରହିଛି ଯାହାକୁ ଶୁଦ୍ଧସତ୍ତା କୁହାଯାଉଛି ଓ ଏହି ଶୁଦ୍ଧସତ୍ତା ସମଗ୍ର ଶ୍ରେଣୀ ଉପରେ ନିୟନ୍ତ୍ରଣ ରକ୍ଷା କରୁଛି ଠିକ୍ ସେହିପରି ବିଭିନ୍ନ ଶୁଦ୍ଧସତ୍ତା ମାନଙ୍କୁ ଏକ ଉଚ୍ଚତର ଶୁଦ୍ଧସତ୍ତା ନିୟନ୍ତ୍ରଣ କରୁଛି । ଶୁଦ୍ଧସତ୍ତାମାନ ଉଚ୍ଚରୁ ଉଚ୍ଚତର ଭାବରେ ଶ୍ରେଣୀବଦ୍ଧ ଭବେ ସୁସଂହତ ହୋଇ ରହିଛନ୍ତି । ଏହାକୁ ଉଦାହରଣଦ୍ୱାରା ବ୍ୟାଖ୍ୟା କରାଯାଇପାରେ । ସଂସାରରେ ବିଭିନ୍ନ ରଙ୍ଗର ବସ୍ତୁ ରହିଛନ୍ତି । ପ୍ରତ୍ୟେକ ଶ୍ରେଣୀର ରଙ୍ଗ ପାଇଁ ଏକ ଶୁଦ୍ଧସତ୍ତା ରହିଛି । ଧଳାବସ୍ତୁମାନଙ୍କର ଶୁଦ୍ଧସତ୍ତା ହେଉଛି ଧବଳତ୍ୱ । ସବୁଜ ରଙ୍ଗର ବସ୍ତୁମାନଙ୍କର ଶୁଦ୍ଧସତ୍ତା ହେଉଛି ସବୁଜିମା ବା ସବୁଜତ୍ୱ । ଧବଳତ୍ୱ, ସବୁଜିମା, ରକ୍ତବର୍ଣ୍ଣତା ଇତ୍ୟାଦି ଶୁଦ୍ଧସତ୍ତାମାନ ରଙ୍ଗ ଶୁଦ୍ଧସତ୍ତାର ଅଙ୍ଗବିଶେଷ । ଯେତେ ମିଠା ବସ୍ତୁ ସଂସାରରେ ରହିଛି ସେମାନଙ୍କର ଶୁଦ୍ଧସତ୍ତା ହେଉଛି ମଧୁରତ୍ୱ । ମଧୁରତ୍ୱ, ଅମ୍ଳତ୍ୱ, ତିକ୍ତତ୍ୱ ଇତ୍ୟାଦି ଶୁଦ୍ଧସତ୍ତାମାନ ସ୍ୱାଦର ଶୁଦ୍ଧସତ୍ତା ଭିତରେ ଅନ୍ତର୍ଗତ । ରଙ୍ଗ ଜନିତ ଶୁଦ୍ଧସତ୍ତା, ସ୍ୱାଦଜନିତ ଶୁଦ୍ଧସତ୍ତା, ସ୍ପର୍ଶଜନିତ ଶୁଦ୍ଧସତ୍ତା ଗୁଣଜନିତ ଶୁଦ୍ଧସତ୍ତାରେ ଅନ୍ତର୍ନିହିତ । ଅର୍ଥାତ୍ ଗୁଣଜନିତ ଶୁଦ୍ଧସତ୍ତା (Idea of quality) ରଙ୍ଗଜନିତ ଶୁଦ୍ଧସତ୍ତା, ସ୍ୱାଦଜନିତ ଶୁଦ୍ଧସତ୍ତା, ସ୍ପର୍ଶଜନିତ ଶୁଦ୍ଧସତ୍ତା ଉପରେ ରହିବ । ଶୁଦ୍ଧସତ୍ତାମାନ ଏହି କ୍ରମରେ ଏକ ଉଚ୍ଚରୁ ଉଚ୍ଚତର ଓ ଉଚ୍ଚତମ ଶ୍ରେଣୀବିନ୍ୟାସରେ ସଜ୍ଜିତ ହେବେ । ସମସ୍ତ ଶୁଦ୍ଧସତ୍ତାମାନ ଏହି କ୍ରମରେ ଏକ ପିରାମିଡ ଗଠନ କରିବେ । ସମସ୍ତଙ୍କ ଶୀର୍ଷରେ ରହିଥିବା ଶୁଦ୍ଧସତ୍ତା ହେଉଛି ପରମ ତତ୍ତ୍ୱ । ଏହି ପରମ ତତ୍ତ୍ୱକୁ ପ୍ଲେଟୋ ଶୁଦ୍ଧତମ ସତ୍ତା ବା ଶୁଭମୟ (Good), ବୋଲି ଗ୍ରହଣ କରିଛନ୍ତି । ଏହି ଶୁଦ୍ଧତମ ବା ଶୁଭମୟ ସତ୍ତା ଅନ୍ୟ ସକଳ ଶୁଦ୍ଧସତ୍ତାର ଶୀର୍ଷରେ ଅବସ୍ଥିତ, ଯାହା ଶୁଦ୍ଧସତ୍ତା ମାନଙ୍କ ଭିତରେ ଓ ସମଗ୍ର ବିଶ୍ୱରେ ସର୍ବୋଚ୍ଚ ସତ୍ତା ବା ତତ୍ତ୍ୱ । ପ୍ରତ୍ୟେକ ଶ୍ରେଣୀର ଏକ ଶୁଦ୍ଧସତ୍ତା ରହିଛି, ଶୁଦ୍ଧସତ୍ତାମାନଙ୍କ ଭିତରେ ଏକ ଶ୍ରେଣୀଗତ ସଂହତି ଅଛି ଓ ସର୍ବୋଚ୍ଚ ଶୀର୍ଷରେ ଶୁଭମୟ ବା Good  ରହିଛି । ପ୍ରତ୍ୟେକ ଶୁଦ୍ଧସତ୍ତା ବହୁତ୍ୱ ଭିତରେ ଏକ, ସେହିପରି ବହୁ ଶୁଦ୍ଧସତ୍ତା ମଧ୍ୟରେ ଶୁଭମୟ ହେଉଛି ଏକ । ଅର୍ଥାତ୍ ଶୁଭମୟ ଯାହା ଶୁଦ୍ଧତମ ସତ୍ତା ତାହା ଏକ ଓ ଏହା ପରମ ତତ୍ତ୍ୱ ।

ପ୍ରତ୍ୟେକ ଶୁଦ୍ଧସତ୍ତା ସ୍ୱରୂପରେ ସତ୍ ଓ ଏହା ସହିତ ଅସତ୍ ସଂଶ୍ଲିଷ୍ଟ ହୋଇରହିଛି । କାରଣ ପ୍ରତ୍ୟେକ ଶୁଦ୍ଧସତ୍ତା କେତେକ ଶୁଦ୍ଧସତ୍ତାମାନଙ୍କ ସହ ସଂଯୁକ୍ତ ହୋଇପାରିବ ଓ ଅନ୍ୟ କେତେକ ଶୁଦ୍ଧସତ୍ତାମାନଙ୍କ ସହ ସଂଯୁକ୍ତ ହୋଇପାରିବ ନାହିଁ । ପ୍ରତ୍ୟେକ ଭୌତିକ ବସ୍ତୁ ଗତିର ଶୁଦ୍ଧସତ୍ତା ଓ ସ୍ଥିରତାର ଶୁଦ୍ଧସତ୍ତା ସହ ସଂଯୁକ୍ତ ହୋଇପାରିବ । କିନ୍ତୁ ଗତିର ଶୁଦ୍ଧସତ୍ତା ଓ ସ୍ଥିରତାର ଶୁଦ୍ଧସତ୍ତା ପରସ୍ପର ସହ ସଂଯୁକ୍ତ ହୋଇପାରିବେ ନାହିଁ । ସୁତରାଂ ସ୍ଥିରତାର ଶୁଦ୍ଧସତ୍ତା ନିଜ କ୍ଷେତ୍ରରେ ସତ୍ କିନ୍ତୁ ଗତିର ଶୁଦ୍ଧସତ୍ତା ସହ ଅସତ୍ । ସ୍ଥିରତା ସତ୍ ହେଲେ ଗତିଶୀଳତା ଅସତ୍ । ଶୁଦ୍ଧସତ୍ତାମାନ ନିଜସ୍ୱ ସ୍ୱରୂପରେ ସତ୍; ତେବେ ଯେଉଁ ଶୁଦ୍ଧସତ୍ତାମାନଙ୍କ ସହ ସେମାନଙ୍କର ସଂଯୋଗ ସମ୍ଭବପର ନୁହେଁ ସେମାନଙ୍କ ପାଇଁ ସେମାନେ ଅସତ୍ ।

ପ୍ଲେଟୋ ଶୁଦ୍ଧସତ୍ତାମାନଙ୍କର ଯେଉଁ ସିଦ୍ଧାନ୍ତ ବ୍ୟକ୍ତ କରିଛନ୍ତି ତାହାକୁ କେତେକ ବି ପ୍ଲେଟୋଙ୍କ ଦ୍ୱନ୍ଦ୍ୱନ୍ୟାୟ ବୋଲି ଅଭିହିତ କରିଛନ୍ତି । ତାଙ୍କ ଶୁଦ୍ଧସତ୍ତା ସିଦ୍ଧାନ୍ତକୁ ବିଶ୍ୱ ସହିତ କେତେକ ସମାନ କରିଛନ୍ତି ବା ସେମାନଙ୍କ ଭିତରେ ତାଦାତ୍ମ୍ୟ ପ୍ରତିଷ୍ଠା କରିଛନ୍ତି । ଏହାକୁ ମଧ୍ୟ କେତେକ ଏକ ସଙ୍କୁଚିତ ଅର୍ଥରେ ବ୍ୟାଖ୍ୟା କରିଛନ୍ତି । କେଉଁ ଶୁଦ୍ଧସତ୍ତାମାନ କାହା ସହିତ ସଂଯୁକ୍ତ ହୋଇପାରିବେ ଓ କେଉଁ ଶୁଦ୍ଧସତ୍ତାମାନ କାହା ସହିତ ସଂଯୁକ୍ତ ହୋଇପାରିବେ ନାହିଁ ତାହା ପ୍ଲେଟୋଙ୍କ ଦର୍ଶନର ଉଦ୍ଦେଶ୍ୟ ବୋଲି ଏହାର ଏକ ସଂକୀର୍ଣ୍ଣ ଅର୍ଥ ବି କରାଯାଏ । ପ୍ଲେଟୋଙ୍କ ଦାର୍ଶନିକ ସିଦ୍ଧାନ୍ତକୁ ଏକ ଦ୍ୱନ୍ଦ୍ୱନ୍ୟାୟଭିତ୍ତିକ ଜ୍ଞାନମୀମାଂସା କହିବାର ଲକ୍ଷ୍ୟ ହେଉଛି କେଉଁ ଶୁଦ୍ଧସତ୍ତାମାନ କାହା ସହିତ ସଂଯୁକ୍ତ ହୋଇପାରିବେ ଓ କାହା ସହିତ ସଂଯୁକ୍ତ ହୋଇପାରିବେ ନାହିଁ ତାହାର ଚିତ୍ର ଦେବାକୁ ଉଦ୍ଦିଷ୍ଟ । ଶୁଦ୍ଧସତ୍ତାମାନଙ୍କର ସଂଯୋଗ ଓ ଅମିଶ୍ରଣର ଚିତ୍ର ଏଥିରେ ରହିଥିବାରୁ ଏହାକୁ ଦ୍ୱନ୍ଦ୍ୱନ୍ୟାୟ କୁହାଯାଉଛି । ମୋଟଉପରେ ଶୁଦ୍ଧସତ୍ତାମାନଙ୍କ ସମ୍ବନ୍ଧର ବିଶ୍ଳେଷଣ ପ୍ଲେଟୋଙ୍କ ଦର୍ଶନର ଏକ ମୁଖ୍ୟ ଆଭିମୁଖ୍ୟ ବୋଲି କେତେକ ମତ ଦେଇଛନ୍ତି ।

ପ୍ଲେଟୋଙ୍କ ମତରେ ଦାର୍ଶନିକ ଅନୁସନ୍ଧିତ୍ସାଦ୍ୱାରା ଆମେ ଏହିପ୍ରକାର ଜ୍ଞାନ ଲାଭକରିଥାଏ । ତାଙ୍କ ମତରେ ସକଳ ଶୁଦ୍ଧସତ୍ତା ବା ଆଇଡିଆମାନଙ୍କୁ ଜାଣିବା, ପ୍ରତ୍ୟେକର ଅନ୍ୟ ସହ ସମ୍ବନ୍ଧକୁ ନିର୍ଣ୍ଣୟ କରିବା ଦର୍ଶନର ଏକ ମୁଖ୍ୟ ଆଭିମୁଖ୍ୟ । ଏ କ୍ଷେତ୍ରରେ ଦୁଇଟି ପଦ୍ଧତିକୁ ଅନୁସରଣ କରାଯାଏ । ପ୍ରଥମ ପଦକ୍ଷେପରେ ପ୍ରତ୍ୟୟମାନଙ୍କୁ ନିର୍ମାଣ କରାଯାଏ । ଏଠାରେ ପ୍ରତ୍ୟେକ ଶୁଦ୍ଧସତ୍ତା କିମ୍ବା ଆଇଡିଆକୁ ସ୍ୱତନ୍ତ୍ର ଭାବରେ ବୋଧଗମ୍ୟ କରିବାକୁ ହୋଇଥାଏ । ଏହି କ୍ଷେତ୍ରରେ ଆରୋହ ପଦ୍ଧତିର ସାହାଯ୍ୟ ନିଆଯାଏ । ଏକ ଶ୍ରେଣୀରେ ସଂପୃକ୍ତ ଥିବା ବିଶେଷମାନଙ୍କୁ ନିର୍ଦ୍ଧାରିତ କରିବାକୁ ହୁଏ ଓ ଏକ ଶ୍ରେଣୀର ବାଚ୍ୟାର୍ଥ ଭିତରେ ସମସ୍ତଙ୍କ ପାଖରେ କେଉଁ ଲକ୍ଷଣ ସାଧାରଣ ଭାବରେ ନିହିତ ରହିଛି ତାକୁ ବୁଝିବାକୁ ଚେଷ୍ଟା କରାଯାଏ । ଏକ ଶ୍ରେଣୀବାଚକ ଶବ୍ଦ କେଉଁ ବିଶେଷମାନଙ୍କ ପ୍ରତି ପ୍ରୟୋଗ ହୋଇପାରିବ ତାହା ଆରୋହ ପଦ୍ଧତିରେ ସ୍ଥିର କରିବାକୁ ପଡେ । ଦ୍ୱିତୀୟ ପଦକ୍ଷେପରେ ଶୁଦ୍ଧସତ୍ତାମାନଙ୍କ ମଧ୍ୟରେ କିପରି ପାରସ୍ପରିକ ସମ୍ବନ୍ଧ ରହିଛି ତାହାକୁ ସ୍ଥିର କରାଯାଇ ପାରେ । ଏ କ୍ଷେତ୍ରରେ ଦୁଇଟି ପ୍ରକ୍ରିୟାକୁ ପ୍ରୟୋଗ କରାଯାଏ, ଯଥା ଶ୍ରେଣୀକରଣ ପଦ୍ଧତି ଓ ବିଭାଜନ ପଦ୍ଧତି । ଶ୍ରେଣୀକରଣ ଓ ବିଭାଜନ ପଦ୍ଧତିଦ୍ୱାରା ନିମ୍ନତର ଶୁଦ୍ଧସତ୍ତାମାନଙ୍କୁ ଉଚ୍ଚତର ଶୁଦ୍ଧସତ୍ତା ଭିତରେ ଅନ୍ତର୍ଭୁକ୍ତ କରାଯାଏ ଓ ଏ କ୍ଷେତ୍ରରେ ଦୁଇ ବିପରୀତ ପଦ୍ଧତିର ଆଶ୍ରୟ

ନିଆଯାଏ । ନିମ୍ନତର ଶୁଦ୍ଧସତ୍ତା ଯଥା ଧବଳତ୍ୱ, ଲାଲତ୍ୱ, ପୀତତ୍ୱ ଇତ୍ୟାଦିକୁ ନେଇ ସେସବୁକୁ ଏକ ଉଚ୍ଚତର ଶୁଦ୍ଧସତ୍ତା ରଙ୍ଗ ଭିତରେ ସଂଯୁକ୍ତ କରାଯାଏ । ଏଠାରେ ଶ୍ରେଣୀକରଣ ପଦ୍ଧତିର ପ୍ରୟୋଗ ହୁଏ । କିମ୍ବା ଏପରି ମଧ୍ୟ ହୋଇପାରେ ଯେ ପ୍ରଥମେ ରଙ୍ଗର ଶୁଦ୍ଧସତ୍ତାକୁ ସ୍ଥିର କରି ତାହା ଅଧୀନରେ କେଉଁ ନିମ୍ନତର ଶୁଦ୍ଧସତ୍ତାମାନ ରହିପାରିବ ତାହା ନିର୍ଣ୍ଣୟ କରାଯାଇପାରିବ । ରଙ୍ଗ ଶୁଦ୍ଧସତ୍ତାକୁ ନେଇ ସେହି ଶ୍ରେଣୀରେ କିପରି ଲାଲ, ସବୁଜ, ହଳଦିଆ ଇତ୍ୟାଦି ଶୁଦ୍ଧସତ୍ତାମାନ ଆସିବେ ତାହା ବି କରାଯାଇ ପାରିବ । ଏହି ପ୍ରକ୍ରିୟାକୁ ବିଭାଜନ ପଦ୍ଧତି କୁହାଯାଏ । ଶ୍ରେଣୀକରଣ ପ୍ରକ୍ରିୟାରେ ନିମ୍ନରୁ ଉଚ୍ଚ ଓ ଉଚ୍ଚତର ଶ୍ରେଣୀ ଭିତରକୁ ପ୍ରବେଶ କରାଯାଏ । ବିଭାଜନ ପ୍ରକ୍ରିୟାରେ ଉଚ୍ଚରୁ ନିମ୍ନ ଓ ନିମ୍ନତର ସ୍ତରକୁ ଆସିବାକୁ ହୁଏ । ଶ୍ରେଣୀକରଣ ଏକ ଉର୍ଦ୍ଧ୍ୱଗାମୀ କ୍ରିୟା ଅଥଚ ବିଭାଜନ ଏକ ନିମ୍ନଗାମୀ ପ୍ରକ୍ରିୟା । ତେବେ ବିଭାଜନ କ୍ଷେତ୍ରରେ ମଧ୍ୟ ଦୁଇଟି ଧାରାକୁ ଅବଲମ୍ବନ କରାଯାଇପାରେ । ରଙ୍ଗକୁ ଲାଲ, ସବୁଜ, କଳା, ପୀତ ଇତ୍ୟାଦିରେ ବିଭାଜନ କରାଯାଇପାରିବ । ଅଥବା ଏ କ୍ଷେତ୍ରରେ ଦ୍ୱିକୋଟିକ ବିଭାଜନ ପଦ୍ଧତି ପ୍ରୟୋଗ ହୋଇପାରିବ । ରଙ୍ଗକୁ ଲାଲ ଓ ଅଲାଲ, ଅଲାଲକୁ ସବୁଜ ଓ ଅସବୁଜ, ଅସବୁଜକୁ କଳା ଓ ଅକଳା ଇତ୍ୟାଦି ଧାରାରେ ମଧ୍ୟ କରାଯିବା ସମ୍ଭବ । ଏହି ପ୍ରକ୍ରିୟାକୁ ଦ୍ୱିକୋଟିକ ବିଭାଜନ (Division by dichotomy) କୁହାଯାଏ । ପ୍ଲେଟୋ ଦ୍ୱିକୋଟିକ ବିଭାଜନ ଧାରାକୁ ଅଧିକ ପ୍ରାଧାନ୍ୟ ଦେଇଛନ୍ତି । ଏହି ଧାରା ଦୀର୍ଘ ଓ ବିରକ୍ତିକର ହେଲେ ମଧ୍ୟ ଏହା ଶୃଂଖଳିତ ଓ ପୂର୍ଣ୍ଣାଙ୍ଗ ମନେହୁଏ ।

ପ୍ଲେଟୋଙ୍କ ଦର୍ଶନର ମୁଖ୍ୟ ଆଭିମୁଖ୍ୟ ଥିଲା ଶୁଦ୍ଧସତ୍ତାମାନଙ୍କୁ ଶ୍ରେଣୀକରଣ କରି ସେମାନଙ୍କୁ ସୁସଂହତ ଭାବେ ପ୍ରକାଶ କରିବା । ତେବେ ଏହା ସେ ଯଥାର୍ଥ ଭାବରେ କରିବାରେ ସଫଳ ହୋଇନାହାନ୍ତି, ସେ କେବଳ ଏହି କ୍ଷେତ୍ରରେ ଅନେକ ଉଦାହରଣର ଅବତାରଣା କରିଛନ୍ତି । ଅବଶ୍ୟ ଶୁଦ୍ଧସତ୍ତା ମାନଙ୍କର ସଂଖ୍ୟା ଅସୀମ ଓ ଅପରିମିତ ହୋଇଥିବାରୁ ସେମାନଙ୍କର ସୁସଂହତ ଉପସ୍ଥାପନ ଅସମ୍ଭବ ମନେହୁଏ । ଏହାକୁ ସାମଗ୍ରିକ ଭାବେ ଶ୍ରେଣୀକରଣ କରି ପ୍ରକାଶ କରିବା ସହଜ ନୁହେଁ । ଶୁଦ୍ଧସତ୍ତାମାନଙ୍କ ମଧ୍ୟରେ ସର୍ବୋତ୍ତମ ଓ ସର୍ବୋଚ୍ଚ ଶୁଦ୍ଧସତ୍ତାକୁ ସେ "ଶୁଭମୟ" ବା ଗୁଡ୍ ବୋଲି ଅଭିହିତ କରିଛନ୍ତି । ଶୁଦ୍ଧସତ୍ତାମାନଙ୍କ ମଧ୍ୟରେ ସର୍ବୋଚ୍ଚ ସ୍ଥାନରେ "ଶୁଭମୟ" ରହିଥିବାରୁ ଏହାକୁ ସେ ପରମ ତତ୍ତ୍ୱ ଭାବରେ ନେଇଛନ୍ତି । ଏହା ଯେହେତୁ ପରମ ସତ୍ତା, ତେଣୁ ସକଳ ଶୁଦ୍ଧସତ୍ତାମାନଙ୍କର ଏହା ଆଧାର ହୋଇପାରିବ । ତେବେ ଶୁଭମୟରୁ ଅନ୍ୟ ସକଳ ଶୁଦ୍ଧସତ୍ତାମାନଙ୍କୁ ଉଦ୍ଭୂତ କରିବାକୁ ପ୍ଲେଟୋ ପ୍ରୟାସ କରିନାହାନ୍ତି । ପରମ ସତ୍ତା ଶୁଭମୟରୁ ଶୁଦ୍ଧସତ୍ତା ମାନଙ୍କୁ ନିଷ୍ପନ୍ନ କରିବା ପାଇଁ ଉଦ୍ୟମ ନ କରିବା ତାଙ୍କ ଦର୍ଶନର ଏକ ବଡ ଦୁର୍ବଳତା କହିବାକୁ ହେବ । ସେ କେବଳ ସର୍ବୋତ୍ତମ ଶୁଦ୍ଧସତ୍ତା ଭାବରେ ଶୁଭମୟକୁ ସ୍ୱୀକାର କରିନେଇଛନ୍ତି । ତେବେ ସର୍ବୋଚ୍ଚ ଶୁଦ୍ଧସତ୍ତା ଭାବରେ ସେ କାହିଁକି ଶୁଭମୟ ବା Good କୁ ସ୍ୱୀକାର କରିଛନ୍ତି ତାର କାରଣ ଦିଆଯାଇପାରେ । ପ୍ଲେଟୋଙ୍କ ଦର୍ଶନରେ ପ୍ରତ୍ୟେକ ଶୁଦ୍ଧସତ୍ତା ନିଜସ୍ୱ ସ୍ତରରେ ପରିପୂର୍ଣ୍ଣ (perfect) । ଯେତେ ଶୁଦ୍ଧସତ୍ତା ରହିଛନ୍ତି ସମସ୍ତଙ୍କ ମଧ୍ୟରେ ପରିପୂର୍ଣ୍ଣତା ସାଧାରଣ ଭାବେ ନିହିତ ରହିଛି । ଯେପରି ସମସ୍ତ ସୁନ୍ଦର ବସ୍ତୁମାନଙ୍କ ମଧ୍ୟରେ ସୌନ୍ଦର୍ଯ୍ୟତା ସାଧାରଣ ଭାବେ ତଥା ମୌଳିକ ଭାବେ ବିଦ୍ୟମାନ ରହିଛି, କିମ୍ବା ସକଳ

ମନୁଷ୍ୟମାନଙ୍କ ମଧ୍ୟରେ ମନୁଷ୍ୟତ୍ୱ ସାଧାରଣ ଭାବେ ରହିଛି ସେହିପରି ସକଳ ଶୁଦ୍ଧସତ୍ତାମାନଙ୍କ ମଧ୍ୟରେ ପରିପୂର୍ଣ୍ଣତା ସାଧାରଣ ଭାବେ ରହିଛି । ସୁତରାଂ ସକଳ ଶୁଦ୍ଧସତ୍ତାମାନଙ୍କର ମୌଳିକ ଓ ସାଧାରଣ ଲକ୍ଷଣ ପରିପୂର୍ଣ୍ଣ ହୋଇଥିବାରୁ ସକଳ ଶୁଦ୍ଧସତ୍ତାମାନଙ୍କ ଶୀର୍ଷରେ ସେ ଶୁଭମୟ ବା Good କୁ ରଖିଛନ୍ତି । ଶୁଭମୟ ହେଉଛି ପରମ ସତ୍ତା ଯାହାର ସ୍ୱରୂପ ହେଉଛି ସକଳ ପରିପୂର୍ଣ୍ଣତା (perfection) । ପୁନଶ୍ଚ ପ୍ରତ୍ୟେକ ଶୁଦ୍ଧସତ୍ତାକୁ ପ୍ଲେଟୋ ଦ୍ରବ୍ୟ (Substance) ବୋଲି ଭାବିଛନ୍ତି । ଯେହେତୁ ପ୍ରତ୍ୟେକ ଶୁଦ୍ଧସତ୍ତା ଏକ ଦ୍ରବ୍ୟ, ତେଣୁ ସର୍ବୋଚ୍ଚ ଶୁଦ୍ଧସତ୍ତା ହେଉଛି ପରମ ଦ୍ରବ୍ୟ ବା ଦ୍ରବ୍ୟ-ଶୁଦ୍ଧସତ୍ତା । ସେ ଶୁଦ୍ଧସତ୍ତାର ଯେଉଁ ଲକ୍ଷଣ ଓ ସ୍ୱରୂପର ପରିକଳ୍ପନା କରିଛନ୍ତି ତାହାର ଏକ ତାର୍କିକ ପରିଣତି ସ୍ୱରୂପ ସେ ଏକ ଶୁଦ୍ଧତମ ଶୁଦ୍ଧସତ୍ତାକୁ ସ୍ୱୀକାର କରିଛନ୍ତି । ଏହି ଶୁଦ୍ଧତମ ଶୁଦ୍ଧସତ୍ତା ହେଉଛି ଶୁଭମୟ ବା Good । ଏହା ଦ୍ରବ୍ୟମାନଙ୍କ ମଧ୍ୟରେ ପରମ ଓ ସ୍ୱରୂପରେ ପରିପୂର୍ଣ୍ଣ । ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତମାନ ପରିକଳ୍ପନାତ୍ମକ (speculative) ଓ ଏକ ପରିକଳ୍ପନାତ୍ମକ ସିଦ୍ଧାନ୍ତ କ୍ଷେତ୍ରରେ ବହୁ ଅସ୍ପଷ୍ଟତା ଓ ଦୁର୍ବୋଧତା ରହିବା ସ୍ୱାଭାବିକ ।

ପ୍ଲେଟୋ ଯେଉଁପରି ଭାବରେ ତାଙ୍କର ଶୁଦ୍ଧସତ୍ତା ଭାବନା ନେଇ ଶୁଭମୟର ପରିକଳ୍ପନା କରିଛନ୍ତି ସେଥିରୁ ଏହା ପ୍ରତୀୟମାନ ହେଉଛି ଯେ ତାଙ୍କର ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତ ଭିତରେ ପ୍ରୟୋଜନବାଦ (Teleology) ର ପ୍ରତିଫଳନ ହୋଇଛି । ପ୍ରତ୍ୟେକ ଶୁଦ୍ଧସତ୍ତା ସ୍ୱରୂପରେ ପରିପୂର୍ଣ୍ଣ । ତେବେ ସେ ଶୁଦ୍ଧସତ୍ତାମାନଙ୍କୁ ଏକ ସୁସଂହତ ଧାରାରେ ସମନ୍ୱିତ କରାଇ ଶୀର୍ଷତମ ସ୍ଥାନରେ ଶୁଭମୟକୁ ସ୍ଥାନିତ କରିଛନ୍ତି । ପ୍ରତ୍ୟେକ ଶୁଦ୍ଧସତ୍ତା ଅଧୀନରେ ଅନେକ ବିଶେଷ ବସ୍ତୁମାନ ଆସିଥାନ୍ତି । ସକଳ ପୀତବର୍ଣ୍ଣର ବସ୍ତୁମାନଙ୍କୁ ପୀତ-ଶୁଦ୍ଧସତ୍ତା ମାଧ୍ୟମରେ ଓ ସୁନ୍ଦର ବସ୍ତୁମାନଙ୍କୁ ସୌନ୍ଦର୍ଯ୍ୟ-ଶୁଦ୍ଧସତ୍ତା ଦ୍ୱାରା ବ୍ୟାଖ୍ୟା କରିବାକୁ ପ୍ଲେଟୋ ପ୍ରୟାସ କରିଛନ୍ତି । ପ୍ଲେଟୋଙ୍କ ମତରେ ଶୁଦ୍ଧସତ୍ତାମାନ ତାତ୍ତ୍ୱିକ ଦୃଷ୍ଟିରୁ ବାସ୍ତବ ଓ ଚିରନ୍ତନ, ପରନ୍ତୁ ସେମାନଙ୍କ ବିଶେଷମାନ କ୍ଷଣସ୍ଥାୟୀ ଓ ଅବାସ୍ତବ । ବିଶେଷମାନ ସେମାନଙ୍କ ଶୁଦ୍ଧସତ୍ତାର ପ୍ରତିଲିପି ବା ନକଲ ମାତ୍ର । ପ୍ରୟୋଜନବାଦର ତାତ୍ପର୍ଯ୍ୟ ହେଉଛି ଯେତେବେଳେ ଏକ ଲକ୍ଷ୍ୟ ଦିଗରେ କୌଣସି କିଛିର ପରିକଳ୍ପନା କରାଯାଏ । ଏକ ଲକ୍ଷ୍ୟରେ ପହଞ୍ଚିବା ପାଇଁ ଯଦି କିଛି ଅବଧାରିତ ହୋଇଛି ତେବେ ତାହା ପଶ୍ଚାତରେ ଉଦ୍ଦେଶ୍ୟ ବା ପ୍ରୟୋଜନ ରହିଛି । ପ୍ଲେଟୋଙ୍କ ଦାର୍ଶନିକ ଅନୁଶୀଳନ କ୍ଷେତ୍ରରେ ଏହି ପ୍ରୟୋଜନବାଦ ବା ଉଦ୍ଦେଶ୍ୟବାଦର ଚିତ୍ର ରହିଛି । ବିଶେଷକରି ପ୍ଲେଟୋଙ୍କ ରିପବ୍ଲିକରେ ତାଙ୍କ ଆଦର୍ଶ ଜନରାଜ୍ୟର ଚିତ୍ର ରହିଛି । କେତେକ ହୁଏତ ପରିକଳ୍ପନା କରନ୍ତି ଯେ ପ୍ଲେଟୋଙ୍କ ପ୍ରସ୍ତାବିତ ଆଦର୍ଶ ଜନରାଜ୍ୟ କେବଳ ଏକ କଳ୍ପନା ଯାହା ସଂପୂର୍ଣ୍ଣ ରୂପେ ଅବାସ୍ତବ ଓ ଅସମ୍ଭବ । କିନ୍ତୁ ପ୍ଲେଟୋଙ୍କ ମାନଦଣ୍ଡରେ ଏହା ଯଥାର୍ଥ ନୁହେଁ । ତାଙ୍କ ସମୟରେ ଯେଉଁ ଜନରାଜ୍ୟ ସମୂହ ଗ୍ରୀସ୍‌ରେ ରହିଥିଲା ସେମାନେ ବରଂ ପ୍ଲେଟୋଙ୍କ ବିଚାର ପରିପ୍ରେକ୍ଷୀରେ ଅବାସ୍ତବ ଓ କ୍ଷଣସ୍ଥାୟୀ । ସେମାନେ ଅବାସ୍ତବ କାରଣ ସେମାନେ ତାଙ୍କ ଆଦର୍ଶ ଜନରାଜ୍ୟଠାରୁ ପୃଥକ୍ । ଆଦର୍ଶ ଜନରାଜ୍ୟ ବାସ୍ତବରେ ରହିଥିବା ଜନରାଜ୍ୟର ଭିତ୍ତି ବା ଆଧାର । ଏଥେନ୍‌ସ,ସ୍ପାର୍ଟା ପ୍ରଭୃତି ରାଜ୍ୟମାନ ଆଦର୍ଶ ଜନରାଜ୍ୟ ଦିଗରେ ଅଭିପ୍ରେତ । ଏକ ଆଦର୍ଶ ରାଜ୍ୟ କେଉଁଠି ବାସ୍ତବ ରୂପ ନେଇ ନାହିଁ, କିନ୍ତୁ ସ୍ୱରୂପରେ ବା କଳ୍ପନାରେ ଆଦର୍ଶ ରାଜ୍ୟ ପରିପୂର୍ଣ୍ଣ । ସେହି ଲକ୍ଷ୍ୟ ସାଧନ ଦିଗରେ ବାସ୍ତବ ରାଜ୍ୟମାନ ଅଗ୍ରଗତି

କରୁଛନ୍ତି । ସୁତରାଂ ଏହି କ୍ଷେତ୍ରରେ ପ୍ଲେଟୋଙ୍କର ଉଦ୍ଦେଶ୍ୟବାଦର ଚିତ୍ରଟି ସୁସ୍ପଷ୍ଟ । ଏକ ପରିକଳ୍ପିତ ଆଦର୍ଶ ରାଜ୍ୟ ମାନବ ସଭ୍ୟତାରେ କେବେ ସୃଷ୍ଟି ହୋଇନାହିଁ । ତେବେ ଏକ ଲକ୍ଷ୍ୟ ପୋଷଣ କରିବା ଓ ସେହି ଲକ୍ଷ୍ୟ ପୂରଣ ଦିଗରେ ଅଗ୍ରସର ହେବା ସପ୍ରୟୋଜନର ସୂଚନା ବହନ କରେ । ଯାହା ଲକ୍ଷ୍ୟ ସେହି ଦିଗରେ ଆରମ୍ଭରୁ ହିଁ ପ୍ରୟାସର ସୂତ୍ରପାତ ହୁଏ । ସୁତରାଂ କୁହାଯାଏ ବାସ୍ତବତାରେ ଓ ଆଦର୍ଶ କ୍ଷେତ୍ରରେ ଆରମ୍ଭରେ ଲକ୍ଷ୍ୟ ନିହିତ ଥାଏ । ଲକ୍ଷ୍ୟ ନଥିଲେ ଆରମ୍ଭ ସମ୍ଭବ ହୁଏ ନାହିଁ । ପ୍ଲେଟୋ ଏହି ବିଶ୍ୱାସ ଆଧାରରେ ତାଙ୍କର ସିଦ୍ଧାନ୍ତ ନିର୍ମାଣ କରିଛନ୍ତି । ମନୁଷ୍ୟକୁ ବୁଝାଇବାକୁ ମନୁଷ୍ୟର ଏକ ଆଦର୍ଶ ପ୍ରତିରୂପ ସେ ଚିନ୍ତା କରିଛନ୍ତି । ବସ୍ତୁଜଗତର ପ୍ରତ୍ୟେକ ବିଷୟକୁ ସେ ଏକ ଶୁଦ୍ଧସତ୍ତା ମାଧ୍ୟମରେ ବ୍ୟାଖ୍ୟା କରିବାର ଭାବନା ଦେଇଛନ୍ତି । ପ୍ରତ୍ୟେକ କିଛିକୁ ଏକ ପୂର୍ଣ୍ଣତାର ଭାବନା ମାଧ୍ୟମରେ ବୁଝାଇବାକୁ ବିଚାରର ସେ ଅବତାରଣା କରିଛନ୍ତି । ପୁନଶ୍ଚ କୌଣସି ବିଷୟର ବ୍ୟାଖାନ ପାଇଁ ସେ କିଛି ଯାନ୍ତ୍ରିକ କାରଣର ପରିକଳ୍ପନା କରିନାହାନ୍ତି ବରଂ ଏକ ବିଚାରଶୀଳ ପଦ୍ଧତି ଦେଇଛନ୍ତି । ଏହି ଦୃଷ୍ଟିରୁ ତାଙ୍କର ତତ୍ତ୍ୱମୀମାଂସା ବା ଶୁଦ୍ଧସତ୍ତା ସିଦ୍ଧାନ୍ତ ଭିତରେ ଉଦ୍ଦେଶ୍ୟବାଦ ବା ପ୍ରୟୋଜନବାଦର ଚିତ୍ର ସ୍ପଷ୍ଟଭାବରେ ପ୍ରତିଫଳିତ ହୋଇଛି । ତାଙ୍କ ବିଚାରର ପ୍ରୟୋଜନବାଦ ତାଙ୍କ ଶୁଭମୟ ବା Good  କଳ୍ପନାରେ ସୁନ୍ଦର ଭାବେ ପ୍ରକାଶ ପାଇଛି । ସେ ଯେଉଁ ଶୁଦ୍ଧସତ୍ତାର ପରିକଳ୍ପନା କରିଛନ୍ତି ସେଥିରେ ମଧ୍ୟ ପ୍ରୟୋଜନବାଦର ଚିତ୍ର ରହିଛି । ମୋଟ ଉପରେ ପ୍ଲେଟୋଙ୍କ ଦର୍ଶନ କ୍ଷେତ୍ରରେ ପ୍ରୟୋଜନବାଦର ପ୍ରତିଫଳନ ଘଟିଛି ।

ପ୍ଲେଟୋଙ୍କ ଦର୍ଶନରେ ଯେଉଁ ତତ୍ତ୍ୱମୀମାଂସାର ଅବତାରଣା ହୋଇଛି ସେହି ସିଦ୍ଧାନ୍ତରୁ ବହୁ ଧାରା ପରବର୍ତ୍ତୀ ସମୟରେ ସୃଷ୍ଟି ହୋଇଛି । ଏକ ସମୟରେ ପରମ ସତ୍ତା,ଜଗତ ଓ ସତ୍‌ର ସ୍ୱରୂପକୁ ବ୍ୟାଖ୍ୟା କରିବା ଦର୍ଶନ ପରିସରରେ ମୁଖ୍ୟ ଆଲୋଚ୍ୟ ପ୍ରସଙ୍ଗ ଥିଲା । ପ୍ଲେଟୋଙ୍କ ଜ୍ଞାନମୀମାଂସା ଓ ତତ୍ତ୍ୱମୀମାଂସର ବହୁ ଦୁର୍ବଳତା ରହିଥିଲେ ମଧ୍ୟ ଏହାର ବହୁ  ସୁଦୂରପ୍ରସାରୀ ପ୍ରଭାବ ଦର୍ଶନ ଇତିହାସରେ ରହିବା ଅନସ୍ୱୀକାର୍ଯ୍ୟ ।

(ଗ)     ଶୁଦ୍ଧସତ୍ତା ଓ ଈଶ୍ୱର ।

ପ୍ଲେଟୋଙ୍କ ଈଶ୍ୱର ପ୍ରତୀତି କ'ଣ ଥିଲା ? ସେ ତାଙ୍କର କେତେକ ଡାଏଲଗ୍ ମାନଙ୍କରେ 'ଈଶ୍ୱର'ଙ୍କୁ ଏକକ ଭାବରେ ପୁଣି ବହୁ ଭାବରେ ପ୍ରୟୋଗ କରୁଥିଲେ । ସେ ଏକେଶ୍ୱରବାଦ ବିଷୟରେ କେଉଁଠି କିପରି ଆଲୋଚନା କରିଛନ୍ତି ପୁନଶ୍ଚ ବହୁଈଶ୍ୱରବାଦର ଭାବନା ମଧ୍ୟ ବ୍ୟକ୍ତ କରିଛନ୍ତି । ପ୍ଲେଟୋଙ୍କ ସମୟକୁ ଗ୍ରୀସ୍‌ରେ ସାଧାରଣ ବିଶ୍ୱାସରେ ବହୁଈଶ୍ୱରବାଦର ଭାବନା ରହିଥିଲା । ତେବେ ଦାର୍ଶନିକ ଅବବୋଧରେ ପ୍ରାୟତଃ ଏକେଶ୍ୱରବାଦର ଭାବନା ମଧ୍ୟ ବ୍ୟକ୍ତ ହେଉଥିଲା । ଈଶ୍ୱର ସବୁର ସ୍ରଷ୍ଟା, ନିୟନ୍ତକ ଓ ଜଗତର ଶାସକ ବୋଲି ପରିକଳ୍ପନା ମଧ୍ୟ ପ୍ରକାଶ ପାଉଥିଲା । ଏହା ସହିତ ଈଶ୍ୱର ସତ୍ ଓ ସେ ପ୍ରତ୍ୟେକ ବ୍ୟକ୍ତିର କର୍ମ ଓ ଜୀବନ ଉପରେ ସଜାଗ ଦୃଷ୍ଟି ରଖିଥିବା ଭାବନା ମଧ୍ୟ ବ୍ୟକ୍ତ ହେଉଥିଲା । ଏସବୁ ବିଶ୍ୱାସ ବ୍ୟତୀତ ଏଠାରେ ମୁଖ୍ୟ ଆଲୋଚ୍ୟ ପ୍ରସଙ୍ଗ ହେଉଛି ପ୍ଲେଟୋଙ୍କ ସର୍ବୋଚ୍ଚ ଶୁଦ୍ଧସତ୍ତା ଶୁଭମୟ ବା Good  ସହ ଈଶ୍ୱରଙ୍କ ସଂପର୍କ କ'ଣ ହେବ ? ପ୍ଲେଟୋଙ୍କ ଦର୍ଶନ ପୃଷ୍ଠଭୂମିରେ ଏହା ଗୃହୀତ ଯେ ଶୁଦ୍ଧସତ୍ତା ମାନ ହେଉଛନ୍ତି  ପରମ, ସତ୍ୟ ଓ ବାସ୍ତବ ।   ପୁନଶ୍ଚ ଶୁଦ୍ଧସତ୍ତା

ମାନଙ୍କ ଶୀର୍ଷରେ ରହିଛି ଶୁଭମୟ (Good) ଯାହା ପ୍ଲେଟୋଙ୍କ ବିଚାରରେ ହେଉଛି ପରମ ତତ୍ତ୍ୱ । ଏଣୁ ଈଶ୍ୱର ଓ ଶୁଭମୟ ମଧ୍ୟରେ କ'ଣ ସଂପର୍କ ରହିଛି ତାହା ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ । ଯଦି ଶୁଭମୟଠାରୁ ଈଶ୍ୱରଙ୍କୁ ପୃଥକ୍ କରାଯିବ, ତେବେ ତିନୋଟି ସମ୍ଭାବନାର ପ୍ରସଙ୍ଗ ଆସିବ । ପ୍ରଥମରେ ଈଶ୍ୱରଙ୍କୁ ଶୁଭମୟର କାରଣ ଭାବରେ ନିଆଯିବ, ଅର୍ଥାତ୍ ଈଶ୍ୱର ଶୁଭମୟର ଆଧାର ହେବେ । ଯଦି ଈଶ୍ୱରଙ୍କୁ ଶୁଭମୟର କାରଣ ଭାବରେ ପରିକଳ୍ପନା କରାଯିବ, ତେବେ ଶୁଭମୟକୁ ପ୍ଲେଟୋ ତାଙ୍କ ଦର୍ଶନରେ ଯେଉଁ ସ୍ଥାନ ଦେଇଛନ୍ତି ତାହା ଅର୍ଥହୀନ ହୋଇଯିବ । ପ୍ଲେଟୋଙ୍କ ଦର୍ଶନରେ ପ୍ରତ୍ୟେକ ଶୁଦ୍ଧସତ୍ତା ପରିପୂର୍ଣ୍ଣ ଓ ପ୍ରତ୍ୟେକ ଏକ ଦ୍ରବ୍ୟ (Substance) ବୋଲି ପରିକଳ୍ପନା ରହିଛି । ଶୁଭମୟ ବା ଗୁଡ୍‌କୁ ପୂର୍ଣ୍ଣତମ (perfect) ଦ୍ରବ୍ୟ ଓ ପରମ ତତ୍ତ୍ୱ ଭାବରେ ପରିକଳ୍ପନା କରାଯାଇଛି । ଏହାକୁ ଅନ୍ୟ ଉପରେ ନିର୍ଭରଶୀଳ କରିବାର ଅର୍ଥ ପ୍ଲେଟୋଙ୍କ ସକଳ ସିଦ୍ଧାନ୍ତ ଅର୍ଥହୀନ ହୋଇଯିବ । ପ୍ରତ୍ୟେକ ଶୁଦ୍ଧସତ୍ତା ସ୍ୱସ୍ଥିତ, ସ୍ୱୟଂସଂପୂର୍ଣ୍ଣ ବୋଲି ପ୍ଲେଟୋ ଯେଉଁ ପରିକଳ୍ପନା କରିଛନ୍ତି ତାହା ପ୍ରାସଙ୍ଗିକତା ହରାଇବ । କାରଣ ଏହି ସମ୍ଭାବନାକୁ ସ୍ୱୀକାର କଲେ ଶୁଭମୟ ଈଶ୍ୱରଙ୍କ ଦ୍ୱାରା ସୃଷ୍ଟ ବୋଲି ଗୃହୀତ ହେବ ଯାହା ପ୍ଲେଟୋଙ୍କ ସମଗ୍ର ବିଚାରର ପରିପନ୍ଥୀ ହେବ । ସୁତରାଂ ଶୁଭମୟ ଈଶ୍ୱରଙ୍କ ଉପରେ ନିର୍ଭରଶୀଳ ହେବ ନାହିଁ ।

ଦ୍ୱିତୀୟ ସମ୍ଭବନାଟି ହେବ ଈଶ୍ୱର ତାଙ୍କର ସ୍ଥିତି ପାଇଁ ଶୁଭମୟ ଉପରେ ନିର୍ଭର କରିବେ । ଯଦି ଈଶ୍ୱରଙ୍କର ଅସ୍ତିତ୍ୱ ଶୁଭମୟରୁ ନିଷ୍ପନ୍ନ ବୋଲି ଗ୍ରହଣ କରାଯିବ, ତେବେ ଈଶ୍ୱର ଭାବନାଟି ନିରର୍ଥକ ମନେ ହେବ । ଯଦି ଈଶ୍ୱରଙ୍କ ସ୍ଥିତିକୁ ଅନ୍ୟ ଉପରେ ନିର୍ଭରଶୀଳ କରାଯିବ, ତେବେ ଈଶ୍ୱରଙ୍କ ଭାବନା ଅର୍ଥହୀନ ହୋଇଯିବ । ସାଧାରଣ ଅବବୋଧରେ ଗ୍ରହଣ କରାଯାଏ ଯେ ଈଶ୍ୱର ସର୍ବୋଚ୍ଚ ସତ୍ତା ଓ ସ୍ୱସ୍ଥିତ । ଈଶ୍ୱରଙ୍କୁ ଅନ୍ୟ ଉପରେ ନିର୍ଭର କରାଇବା ଦ୍ୱାରା ଈଶ୍ୱର ଭାବନା ନିରର୍ଥକ ମନେହେବ । ସୁତରାଂ ଈଶ୍ୱରଙ୍କୁ ଶୁଭମୟ ଉପରେ ନିର୍ଭର କରାଯାଇ ପାରିବ ନାହିଁ ।

ତୃତୀୟ ସମ୍ଭାବନାଟି ହେବ ଈଶ୍ୱର ଓ ଶୁଭମୟ ଉଭୟ ପରସ୍ପରର ପରିପୂରକ ହେବେ ଓ ଉଭୟଙ୍କୁ ମୌଳିକ ଓ ଆଦ୍ୟ ଶକ୍ତି ଭାବରେ ଗ୍ରହଣ କରାଯିବ । ପ୍ରତ୍ୟେକକୁ ଯଦି ପରମତତ୍ତ୍ୱ ଭାବରେ ସ୍ୱୀକାର କରାଯିବ, ତେବେ ପ୍ଲେଟୋଙ୍କ ଦର୍ଶନ ଏକ ଦ୍ୱୈତବାଦୀ ସିଦ୍ଧାନ୍ତରେ ପରିଣତ ହେବ । ଈଶ୍ୱର ଓ ଶୁଭମୟ ପ୍ରତ୍ୟେକ ଯଦି ଚିରନ୍ତନ,ଶାଶ୍ୱତ ସତ୍ତା ଓ ସତ୍ ହେବେ ତେବେ ପ୍ଲେଟୋଙ୍କ ଦର୍ଶନ କେବଳ ଦ୍ୱୈତବାଦୀ ହେବ ନାହିଁ, ଏ କ୍ଷେତ୍ରରେ ବହୁ ଅସଙ୍ଗତି ଆସିବ । ଦୁଇଟି ସ୍ୱାଧୀନ ଓ ପରମ ତତ୍ତ୍ୱକୁ ଗ୍ରହଣ କଲେ ସେମାନଙ୍କ ସଂବଂଧ ନେଇ ବହୁ ବିରୋଧାଭାସ ସୃଷ୍ଟି ହେବ ।

ସୁତରାଂ ଈଶ୍ୱର ଓ ଶୁଭମୟକୁ ପରସ୍ପରଠାରୁ ପୃଥକ୍ କଲେ ଯେଉଁ ତିନିଟି ସମ୍ଭାବନାର ପ୍ରସଙ୍ଗ ଆସୁଛି,ପ୍ରତ୍ୟେକଟି କ୍ଷେତ୍ରରେ ବହୁ ଜଟିଳତା ରହୁଛି । ତେଣୁ ଏହି ସମ୍ଭାବନାକୁ ବାଦ୍ ଦେଇ ଅନ୍ୟ ସମ୍ଭାବନାଟି ହେବ ଈଶ୍ୱର ଓ ଶୁଭମୟ ପରସ୍ପର ସହ ସମାନ ହେବେ । ଅର୍ଥାତ୍ ଈଶ୍ୱର ଓ ଶୁଭମୟ ପରସ୍ପର ସହ ଅଭିନ୍ନ । ସେମାନଙ୍କୁ ଅଭିନ୍ନ କରିବାର ଭାବନା ପ୍ଲେଟୋଙ୍କ ଡାଏଲଗ୍ ଫିଲେବସରେ ଥିବା ସୂଚନା ମିଳେ । ତେବେ ଈଶ୍ୱର

ଓ ଶୁଭମୟ ଯଦି ଅଭିନ୍ନ ହୁଅନ୍ତି ତେବେ ଈଶ୍ୱରଙ୍କୁ ଏକ ବ୍ୟକ୍ତିସତ୍ତା ବୋଲି ସ୍ୱୀକାର କରାଯାଇ ପାରିବ ନାହିଁ । ଏଠାରେ ଈଶ୍ୱରଙ୍କୁ ଅବ୍ୟକ୍ତିକ ବୋଲି ଗ୍ରହଣ କରାଯିବ । ଯେହେତୁ କୌଣସି ଶୁଦ୍ଧସତ୍ତା ବ୍ୟକ୍ତି ନୁହେଁ ଓ ଶୁଭମୟ ହେଉଛି ସର୍ବୋତ୍ତମ ଶୁଦ୍ଧସତ୍ତା, ତାହା ମଧ୍ୟ ବ୍ୟକ୍ତି ହେବ ନାହିଁ । ଶୁଭମୟ ସହିତ ଈଶ୍ୱରଙ୍କୁ ସମାନ କରିବାର ଅର୍ଥ ହେବ, ଈଶ୍ୱର କେବଳ ଏକ ଆଳଙ୍କାରିକ ଅଭିବ୍ୟକ୍ତି ହେବ । ଶୁଦ୍ଧସତ୍ତାମାନଙ୍କୁ ବାସ୍ତବ ତଥା ପରମ ତତ୍ତ୍ୱ ଭାବେ ନେବାଫଳରେ ଈଶ୍ୱରଙ୍କୁ ନିର୍ବୈୟକ୍ତିକ ଭାବରେ କଳ୍ପନା କରାଯିବ । ଏହା ହିଁ ହେବ ପ୍ଲେଟୋଙ୍କ ଶୁଦ୍ଧସତ୍ତା ସିଦ୍ଧାନ୍ତର ତାର୍କିକ ପରିଣତି ।

ଏସବୁ ସତ୍ତ୍ୱେ ପ୍ଲେଟୋ ତାଙ୍କ ଡାଏଲଗ୍ ମାନଙ୍କରେ ସମାଜରେ ପ୍ରଚଳିତ ଥିବା ବିଶ୍ୱାସ ସଂପର୍କରେ କେତେକ ସ୍ଥାନରେ ଉଲ୍ଲେଖ କରିଛନ୍ତି । ତେବେ ସେ କେବଳ ଏ ସବୁକୁ କଳ୍ପନା ଭାବରେ ନେଇଛନ୍ତି । ପ୍ଲେଟୋଙ୍କ ଡାଏଲଗ୍‌ରେ ବିଭିନ୍ନ ମିଥ୍‌ର ବର୍ଣ୍ଣନା ରହିଛି । ସୁତରାଂ ଈଶ୍ୱରଙ୍କ ସଂପର୍କରେ ଯାହା ପ୍ଲେଟୋ ବ୍ୟକ୍ତ କରିଛନ୍ତି ସେସବୁକୁ କେବଳ ମିଥ୍ ଭାବରେ ନିଆଯିବ ।

(ଘ) ଆତ୍ମା ଓ ଅମରତ୍ୱ

ପ୍ଲେଟୋଙ୍କର ତତ୍ତ୍ୱମୀମାଂସାରେ ଏକ ଦ୍ୱୈତବାଦର ଚିତ୍ର ରହିଛି । ସେ ଇନ୍ଦ୍ରିୟାନୁଭୂତି ଜଗତ ବାହାରେ ଏକ ଶୁଦ୍ଧସତ୍ତାର ଜଗତର ପରିକଳ୍ପନା କରିଛନ୍ତି । ସେ ତାଙ୍କ ଶୁଦ୍ଧସତ୍ତାମାନଙ୍କୁ ପରମତତ୍ତ୍ୱ, ବାସ୍ତବ ଓ ପରିପୂର୍ଣ୍ଣ ଭାବରେ ଗ୍ରହଣ କରି ଆମ ଇନ୍ଦ୍ରିୟାନୁଭୂତି ଜଗତର ବସ୍ତୁମାନଙ୍କୁ କେବଳ ପ୍ରତିରୂପ ଭାବେ ନେଇଛନ୍ତି । ଶୁଦ୍ଧସତ୍ତା ଜଗତର ଉପାଦାନମାନଙ୍କୁ ଆମେ ଆମ ବିଚାର ମାଧ୍ୟମରେ ଜାଣିବାକୁ ସମର୍ଥ ହୋଇଥାଏ,ଇନ୍ଦ୍ରିୟ ଜନିତ ପ୍ରତ୍ୟକ୍ଷ ଆଧାରରେ ନୁହେଁ । ପ୍ଲେଟୋଙ୍କ ତତ୍ତ୍ୱମୀମାଂସା କ୍ଷେତ୍ରରେ ଯେପରି ଏକ ଦ୍ୱୈତବାଦର ଚିତ୍ର ରହିଛି, ସେହିପରି ତାଙ୍କର ମନୁଷ୍ୟର ଅଧ୍ୟୟନ କ୍ଷେତ୍ରରେ ମଧ୍ୟ ଏକ ଦ୍ୱୈତବାଦର ଭାବନା ରହିଛି । ଏହାକୁ କେତେକ ପ୍ଲେଟୋଙ୍କ ମନୋବୈଜ୍ଞାନିକ ଦ୍ୱୈତବାଦ କହିଛନ୍ତି । ଏହାନୁଯାୟୀ ପ୍ରତ୍ୟେକ ବ୍ୟକ୍ତିର ଶରୀର ରହିଛି ଓ ଶରୀରକୁ ନିୟନ୍ତ୍ରଣ କରୁଥିବା ଆତ୍ମା ରହିଛି । ସେ ଆତ୍ମାର ସଂଜ୍ଞା ବାବଦରେ ଡାଏଲଗ୍ "ଲ" ରେ କହିଛନ୍ତି- "ଏହା ହେଉଛି ସ୍ୱ-ପ୍ରେରିତ ଗତିଶୀଳତା" । ଏହା ଶରୀରକୁ ଗତିଶୀଳ କରାଇବା ସହ ଏହା ଶରୀର ଅପେକ୍ଷା ମହତ୍ତର ଅଟେ । ତେବେ ପ୍ଲେଟୋ ଆତ୍ମା ସଂପର୍କରେ ତାଙ୍କର ବିଭିନ୍ନ ଡାଏଲଗ୍ ବା ସଂଳାପମାନଙ୍କରେ ସୂଚନା ଦେଇଛନ୍ତି । ଲ, ଟିମାଅସ, ଫେଡୋ, ରିପବ୍ଲିକ ସଂଳାପମାନଙ୍କରେ ଆତ୍ମା ସଂପର୍କରେ ଭିନ୍ନ ଭିନ୍ନ ଆଲୋଚନାର ଅବତାରଣା ହୋଇଛି । ଏସବୁକୁ ଆଧାରକରି ତାଙ୍କର ଆତ୍ମା ସମ୍ବନ୍ଧୀୟ ବିଚାରକୁଏକ ସୈଦ୍ଧାନ୍ତିକ ଭିତ୍ତି ଦିଆଯାଇଛି ।

ପ୍ଲେଟୋଙ୍କ ଦର୍ଶନରେ ବିଭିନ୍ନ ମିଥ୍‌ର ବର୍ଣ୍ଣନା ରହିଛି । ସେହିପରି ବିଶ୍ୱାତ୍ମା (World-Soul) ର ମଧ୍ୟ ଏକ ପରିକଳ୍ପନା ରହିଛି । ବିଶ୍ୱାତ୍ମା ସହ ଆତ୍ମା ଭାବନାର ସାମଂଜସ୍ୟ ରହିବା ଦେଖାଯାଏ । ଆତ୍ମାର ସ୍ୱରୂପ ସଂକ୍ରାନ୍ତରେ ପ୍ଲେଟୋ ମତ ଦେଇଛନ୍ତି ଯେ ଶରୀର ଗତିଶୀଳ ହେବାର ଏହା କାରଣ ଓ ଏଥିରେ ମଣିଷର ବିଚାରଶକ୍ତି ନିହିତ ରହିଥାଏ । ଶୁଦ୍ଧସତ୍ତାର ପୃଥିବୀ ଓ ଇନ୍ଦ୍ରିୟାନୁଭୂତିର ପୃଥିବୀ ଉଭୟ ସହ ଆତ୍ମାର ସଂବଂଧ ରହିପାରିଛି । ଆତ୍ମା

ଶରୀରର ଏକ ଉପଜାତ ସତ୍ତା ନୁହଁ, ବରଂ ଏହା ଏକ ସ୍ୱତନ୍ତ୍ର ସତ୍ତା । ସୁତରାଂ ବ୍ୟକ୍ତି ହେଉଛି ଶରୀର ଓ ଆତ୍ମାର ସମନ୍ୱୟ । ସେହିପରି ଆତ୍ମା ଶରୀର ମଧ୍ୟସ୍ଥ ଏକସଂହତି ସ୍ଥାପନକାରୀ ଶକ୍ତି ମଧ୍ୟ ନୁହେଁ, ଯାହା କେତେକ ପରିକଳ୍ପନା କରିଥାନ୍ତି । ପ୍ଲେଟୋ ଆତ୍ମାକୁ ଶରୀର, ଶରୀରର ଉପଜାତ (epiphenomenon) କିମ୍ବା ଶରୀରର ସଂହତି ଶକ୍ତି ଭାବରେ ନେଇନାହାନ୍ତି ।

ପ୍ଲେଟୋଙ୍କ ମତରେ ଆତ୍ମାର ଦୁଇଟି ଅଂଶ ରହିଛି ଯଥା ବିଚାରଶୀଳ (reason) ଭାଗ ଓ ଅବିଚାରଶୀଳ (irrational) ଭାଗ । ପୁନଶ୍ଚ ଅବିଚାରଶୀଳ ଭାଗକୁ ପ୍ଲେଟୋ ଦୁଇଭାଗରେ ବିଭକ୍ତ କରିଛନ୍ତି ଯଥା ଶୁଦ୍ଧ ଓ ଅଶୁଦ୍ଧ (noble and ignoble) । ତେଣୁ ପ୍ଲେଟୋଙ୍କ ମତରେ ମନୁଷ୍ୟ ଆତ୍ମାର ତିନିଟି ଅଂଶ ରହିଛି ଯାଥା ବିଚାରଶୀଳ ଭାଗ, ଶୁଦ୍ଧ ଭାଗ ଓ ଅଶୁଦ୍ଧ ଭାଗ । ଆତ୍ମାର ଉତ୍କର୍ଷ ଅଂଶଟି ହେଲା ବିଚାରଶୀଳ ଭାଗ । ମନୁଷ୍ୟ ନିଜର ବିଚାରଶକ୍ତିଦ୍ୱାରା ଶୁଦ୍ଧସତ୍ତାମାନଙ୍କୁ ଜାଣିବାକୁ ସମର୍ଥ । ଏହି ଭାଗଟି ସରଳ ଓ ଅବିଭାଜ୍ୟ । ଅର୍ଥାତ୍ ମନୁଷ୍ୟ ଯେଉଁ ସାମର୍ଥ୍ୟଦ୍ୱାରା ଶୁଦ୍ଧସତ୍ତା ବା ଆଇଡିଆମାନଙ୍କୁ ଜାଣିବାକୁ ସମର୍ଥ ତାହା ହେଲା ଆତ୍ମାର ବିଚାରଶୀଳ ଦିଗ । ଏହି ଦିଗଟି ସରଳ ଓ ଅବିଭାଜ୍ୟ । ଏକ ବସ୍ତୁର ବିଘଟନ ବା ଧ୍ୱଂସସାଧନ ଅର୍ଥ ତାହାକୁ ଛିନ୍ନ ଭିନ୍ନ କରିବା । ତେବେ ଆତ୍ମାର ବିଚାରଶୀଳ ଅଂଶଟି ସରଳ ଓ ଅବିଭାଜ୍ୟ ହୋଇଥିବାରୁ ଏହାର ଧ୍ୱଂସସାଧନ ସମ୍ଭବ ନୁହେଁ । ଯେହେତୁ ଏହି ଅଂଶର କ୍ଷୁଦ୍ରାଂଶ ନାହିଁ ଓ ଏହା ସରଳତମ, ତେଣୁ ଏହା କେବେ ବି ନଷ୍ଟ ହେବ ନାହିଁ । ଏହା ଅକ୍ଷୟ ଓ ଅମର । ତେବେ ଆତ୍ମାର ଅବିଚାରଶୀଳ ଅଂଶଟି ଯେହେତୁ ବିଭାଜ୍ୟ ତେଣୁ ଏହାର ବିଲୟ ସଂଭବ । ଏହାର ଯେଉଁ ଦୁଇଟି ଅଂଶ ରହିଛି ତାହା ହେଲା ଶୁଦ୍ଧ ଓ ଅଶୁଦ୍ଧ । ଶୁଦ୍ଧ ଅଂଶରେ ସାହସ,ପ୍ରେମ ଓ ମହତ୍ତର ଆବେଗ ରହିଥାଏ । ଅପରପକ୍ଷରେ ଅଶୁଦ୍ଧ ଅଂଶରେ ଇନ୍ଦ୍ରିୟ ଜନିତ କାମନା, ବାସନା ରହିଥାଏ । ଶୁଦ୍ଧ ଭାଗ ବିଚାରଶୀଳ ଅଂଶ ସହିତ ସମ୍ବନ୍ଧିତ ଥିବାରୁ ମହତ୍ତର ଆବେଗମାନ ଏ କ୍ଷେତ୍ରରେ ରହିଥାଏ । ଆବେଗ କେବେ ବିଚାର ନୁହେଁ ତେବେ ଆବେଗ ଭଲ ବା ମନ୍ଦ ହୋଇପାରେ । ମନୁଷ୍ୟର କାମନା, ବାସନା ତାର ଆବେଗରୁ ଆସେ, ତେବେ ଆବେଗ ସ୍ଥଳ ବିଶେଷରେ ଭଲ ହୋଇଥାଏ ବା ମନ୍ଦ ହୋଇଥାଏ । ପ୍ଲେଟୋଙ୍କ ମତରେ ବିଚାରର ସ୍ଥଳ ହେଉଛି ମନୁଷ୍ୟର ମୁଣ୍ଡ ବା ମସ୍ତିଷ୍କ, ଶୁଦ୍ଧ ଭାଗର ସ୍ଥାନ ହେଉଛି ମନୁଷ୍ୟର ଛାତି ବା ହୃଦୟ ଓ ଅଶୁଦ୍ଧ ଭାଗର ସ୍ଥିତି ହେଉଛି ଶରୀରର ନିମ୍ନାଂଶ । ଆତ୍ମାର ଏହି ଯେଉଁ ତିନିଟି ଅଂଶର କଳ୍ପନା ପ୍ଲେଟୋ କରିଛନ୍ତି ତାହା କେବଳ ମନୁଷ୍ୟ ପାଇଁ ପ୍ରଯୁଜ୍ୟ । ଅର୍ଥାତ୍ ମନୁଷ୍ୟ ଆତ୍ମାର ଏହି ତିନୋଟି ଅଂଶ ରହିଛି । ମନୁଷ୍ୟେତର ପ୍ରାଣୀମାନଙ୍କ ମଧ୍ୟରେ ଶେଷ ଦୁଇଟି ଅଂଶ ରହିଛି, ସେମାନଙ୍କ ପାଖରେ ବିଚାର ଅଂଶ ନାହିଁ । ଉଦ୍‌ଭିଦମାନଙ୍କ ପାଖରେ କେବଳ ତୃତୀୟ ଅଂଶଟି ରହିଛି । ମନୁଷ୍ୟ ଅନ୍ୟ ପ୍ରାଣୀମାନଙ୍କଠାରୁ ଭିନ୍ନ କାରଣ ମନୁଷ୍ୟ ପାଖରେ ହିଁ ବିଚାର ଶକ୍ତି ରହିଛି, ଯାହା ଅନ୍ୟମାନଙ୍କ ପାଖରେ ନାହିଁ । ଏହି ପୃଷ୍ଠଭୂମିରେ ଏହା କୁହାଯାଇପାରେ ଯେ ପ୍ଲେଟୋ ଯେତେବେଳେ ଆତ୍ମାର ଅଂଶ ବା ଭାଗ ବିଷୟ କହୁଛନ୍ତି ଏହାକୁ କୌଣସି ଶାରୀରିକ କିମ୍ବା ଭୌତିକ ଅର୍ଥରେ କହୁନାହାନ୍ତି । କାରଣ ଆତ୍ମା ସ୍ୱରୂପରେ ଅଭୌତିକ । ଏଠାରେ ଆତ୍ମାର ଯେଉଁ ତିନିଟି ଅଂଶର କଥା କୁହାଯାଉଛି ପ୍ଲେଟୋ ତାହାକୁ ପ୍ରକାର୍ଯ୍ୟ (function) ଅର୍ଥରେ ହିଁ କହୁଛନ୍ତି ।

ଅର୍ଥାତ୍ ଆତ୍ମାର "ଅଂଶ"କୁ କେବଳ ଏକ ଆଳଙ୍କାରିକ ଅର୍ଥରେ ନିଆଯାଉଛି, ଏହାର ତାତ୍ପର୍ଯ୍ୟ ହେଉଛି କାର୍ଯ୍ୟ। କୋପ୍ଲେଷ୍ଟୋନ ପ୍ଲେଟୋଙ୍କ ପ୍ରସଙ୍ଗରେ ଲେଖିଛନ୍ତି – "Plato regarded the three parts as forms or functions or principles of action, not as parts in the material serise" (ପୃଷ୍ଠା ୨୦୮)।

ପ୍ଲେଟୋ ଆତ୍ମାର ବିଚାରଶୀଳ ଅଂଶର ଅମରତ୍ୱକୁ ଶୁଦ୍ଧସତ୍ତା ସହ ସଂଯୋଜିତ କରିଛନ୍ତି। ଏହା କରିବା ପାଇଁ ସେ ସ୍ମୃତି ଓ ଜନ୍ମାନ୍ତରବାଦର ସାହାଯ୍ୟ ନେଇଛନ୍ତି। ପ୍ଲେଟୋଙ୍କ ମତରେ ଜନ୍ମ ପୂର୍ବରୁ ଆତ୍ମା ଅଶରୀରୀ ଅବସ୍ଥାରେ ଶୁଦ୍ଧସତ୍ତାମାନଙ୍କର ଜ୍ଞାନଲାଭ କରିଥାଏ, ଯାହା ପରେ ତାର ସ୍ମୃତିକୁ ଆସେ। ଏଠାରେ "ଜ୍ଞାନ" କୁ ପ୍ଲେଟୋ ଏକ ସ୍ୱତନ୍ତ୍ର ଓ ସଙ୍କୁଚିତ ଅର୍ଥରେ ପ୍ରୟୋଗ କରୁଛନ୍ତି। ଆମର ସକଳ ଜ୍ଞାନ ସ୍ମୃତିଭିତ୍ତିକ ନୁହେଁ। ଜ୍ଞାନ କ୍ଷେତ୍ରରେ ସଂଶ୍ଳିଷ୍ଟ ଥିବା ଇନ୍ଦ୍ରିୟାନୁଭୂତି ସ୍ମୃତି ନୁହେଁ। "ମୋ ସମ୍ମୁଖରେ ରହିଥିବା ଆଲମିରାଟି ଧୂସର ରଙ୍ଗର" କହିବା ବେଳେ ଏହା ଏକ ସ୍ମୃତି ନୁହେଁ, ଏହା ବର୍ତ୍ତମାନ ମୋର ଏକ ପ୍ରତ୍ୟକ୍ଷାନୁଭୂତି। ଯାହା ଇନ୍ଦ୍ରିୟାନୁଭୂତି ଜନିତ ପ୍ଲେଟୋ ତାହାକୁ ଜ୍ଞାନ ଭିତରେ ସଂଯୁକ୍ତ କରିବେ ନାହିଁ। ପ୍ଲେଟୋ ଜ୍ଞାନ ବିଷୟରେ କହିବା ବେଳେ ବିଚାରଶୀଳତା ମାଧ୍ୟମରେ ଉପଲବ୍ଧ ଭାବନାକୁ ନେଇଥାନ୍ତି। ସେ ଏହାକୁ କେବଳ ଶୁଦ୍ଧସତ୍ତା ଜନିତ ଅବବୋଧ ବୋଲି ଭାବିଛନ୍ତି। ପ୍ଲେଟୋଙ୍କ ମତରେ ଆତ୍ମାର ଅଶରୀରୀ ଅସ୍ତିତ୍ୱ ସମୟରେ ତାହା ଯେଉଁ ଶୁଦ୍ଧସତ୍ତାମାନଙ୍କୁ ଅନୁଭବ କରିଥାଏ, ସେହି ସ୍ମୃତି ହିଁ ଜ୍ଞାନ। ଆତ୍ମା ଅଶରୀରୀ ସ୍ଥିତିରେ ଜନ୍ମ ନେବା ପୂର୍ବରୁ ଶୁଦ୍ଧସତ୍ତା ମାନଙ୍କୁ ଜାଣିବାର ଅବକାଶ ପାଇଥାଏ ଓ ଏହା ତାର ସ୍ମୃତିରେ ରହିଥାଏ। ସେହି ସ୍ମୃତିକୁ ପ୍ଲେଟୋ ଏଠାରେ ଜ୍ଞାନର ଆଖ୍ୟା ଦେଇଛନ୍ତି।

ପ୍ଲେଟୋ ଏହିପରି ଏକ ସିଦ୍ଧାନ୍ତ ନିର୍ମାଣ କରିବା କ୍ଷେତ୍ରରେ ଦୁଇଟି କାରଣର ଅବତାରଣା କରିଛନ୍ତି। ପ୍ରଥମରେ, ଇନ୍ଦ୍ରିୟାନୁଭୂତି ସାହାଯ୍ୟରେ ଶୁଦ୍ଧସତ୍ତାମାନଙ୍କ ବିଷୟରେ  ଜ୍ଞାନ ସମ୍ଭବ ନୁହେଁ। ଏହାର କାରଣ ହେଉଛି ଏକ ଶୁଦ୍ଧ ସତ୍ତା ଏକ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ ପାଖରେ କେବେହେଲେ ବିଶୁଦ୍ଧ ଭାବରେ ଅଭିବ୍ୟକ୍ତ ହୋଇନଥାଏ। ଏହା ସର୍ବଦା ବରଂ ମିଶ୍ର ଭାବରେ ପରିପ୍ରକାଶିତ ହୋଇଥାଏ। ବିଶୁଦ୍ଧ ଭାବରେ ସୌନ୍ଦର୍ଯ୍ୟ ଅଭିବ୍ୟକ୍ତ ନଥାଏ, ଆମେ ଇନ୍ଦ୍ରିୟ ସାହାଯ୍ୟରେ ଯେଉଁ ସୁନ୍ଦର ବସ୍ତୁମାନଙ୍କୁ ଦେଖୁ ବୋଲି ଭାବୁ ତାହା ମିଶ୍ର ବସ୍ତୁ। ସୌନ୍ଦର୍ଯ୍ୟ ବିଷୟରେ କେବଳ ବିଚାର ମାଧ୍ୟମରେ ଜାଣିବା ସମ୍ଭବ ହୋଇଥାଏ। ଦ୍ୱିତୀୟ କାରଣଟି ଅଧିକ ମହତ୍ତ୍ୱପୂର୍ଣ୍ଣ ମନେହୁଏ। ଆମର ପୂର୍ବ ସ୍ମୃତିଦ୍ୱାରା ଆମେ ଶୁଦ୍ଧସତ୍ତାମାନଙ୍କୁ ଜାଣିବା କ୍ଷେତ୍ରରେ ପ୍ଲେଟୋ ଯାହା କହିଛନ୍ତି ତାହା ବେଶ୍ କୌତୂହଳପୂର୍ଣ୍ଣ।ତାଙ୍କ ମତରେ ଗଣିତ ସମ୍ବନ୍ଧୀୟ ଜ୍ଞାନ ଆମ ମନରେ ସହଜାତ (innate)। ଗଣିତ ବିଷୟକ ଜ୍ଞାନ ନା ଆମ ଇନ୍ଦ୍ରିୟାନୁଭୂତିରେ ଜାଣୁ ନା ଏହା ଆମକୁ କେହି ଶିକ୍ଷା ଦିଅନ୍ତି। ଆଧୁନିକ କାଳରେ ହ୍ୟୁମ, କାଣ୍ଟଙ୍କ ପରି ଦାର୍ଶନିକମାନେ ବିଶ୍ଳେଷଣାତ୍ମକ ଓ ସଂଶ୍ଳେଷଣାତ୍ମକ ଜ୍ଞାନ ଭିତରେ ଯେଉଁ ପାର୍ଥକ୍ୟ ଦର୍ଶାଇଛନ୍ତି ସେହି ପ୍ରକାର ଏକ ଅନୁରୂପ ବିଚାର ପ୍ଲେଟୋ ସେ ଯୁଗରେ ସୂଚାଇଥିଲେ। ସକଳ ବୈଚାରିକ ଜ୍ଞାନକୁ ପ୍ଲେଟୋ ବିଶ୍ଳେଷଣାତ୍ମକ ଓ ସକଳ ଇନ୍ଦ୍ରିୟାନୁଭୂତିମୂଳକ ଜ୍ଞାନକୁ ସଂଶ୍ଳେଷଣାତ୍ମକ ବୋଲି ଦର୍ଶାଇଥିଲେ। ଅନ୍ୟ ଭାବରେ କହିଲେ ପ୍ରାଗନୁଭବିକ ଜ୍ଞାନ  କ୍ଷେତ୍ରରେ ଧ୍ରୁବତା ଓ ଅନିବାର୍ଯ୍ୟତା ରହିଥାଏ ଓ ସକଳ ଅନୁଭବପରକ ଜ୍ଞାନ କ୍ଷେତ୍ରରେ ସମ୍ଭାବନା ଥାଇପାରେ

କିନ୍ତୁ ଅନିବାର୍ଯ୍ୟତା ନଥାଏ । ଏହି ପୃଷ୍ଠଭୂମିରେ ପ୍ରାଗନୁଭବିକ ଜ୍ଞାନ ସମ୍ବନ୍ଧୀୟ ଏକ ଉଦାହରଣ ନେଇ ଏହାକୁ ବ୍ୟାଖ୍ୟା କରାଯାଇପାରେ । ଯେତେବେଳେ ୨+୩=୫ କୁହାଯାଏ, ଏହାର ଅର୍ଥ କେବଳ ନୁହେଁ ଯେ ଦୁଇଟି ବସ୍ତୁ ସହ ତିନିଟି ବସ୍ତୁର ସଂଯୋଗ ହେଲେ ପାଞ୍ଚଟି ବସ୍ତୁ ହେବ । ଏଠାରେ ତଥ୍ୟମୂଳକ ଅଭିବ୍ୟକ୍ତି ସହ ଏକ ବିଶ୍ଳେଷଣାତ୍ମକ (analytic) ବା ଆବଶ୍ୟିକ (necessary) ବଚନର ଅବତାରଣା କରାଯାଇଛି । ଦୁଇ ସହ ତିନି ମିଶିଲେ ଯେ ପାଞ୍ଚ ହୁଏ ତାହା ନୁହେଁ, ଏହା ହେବା ଅବଶ୍ୟମ୍ଭାବୀ ଓ ଏହା ଅନ୍ୟ କିଛି ହୋଇ ପାରିବ ନାହିଁ । ଏହା ଅନ୍ୟ କିଛି ହେବା କଳ୍ପନା ବି କରାଯାଇ ପାରିବ ନାହିଁ । ଏହା ପାଇଁ କୌଣସି ପରୀକ୍ଷା ଆବଶ୍ୟକ ନାହିଁ, ବରଂ ଏ କ୍ଷେତ୍ରରେ ସୁନିଶ୍ଚିତତା ରହିଛି । କାଉ ମାନେ କଳା, ଜଳ ନିମ୍ନଗାମୀ, ଗାଈମାନେ ତୃଣଭୋଜୀ ଇତ୍ୟାଦି ବଚନମାନ ସଂଶ୍ଳେଷଣାତ୍ମକ କାରଣ ସେସବୁର ସତ୍ୟତା ଆମ ଅନୁଭୂତି ଉପରେ ନିର୍ଭରକରେ । ଏକ ସଂଶ୍ଳେଷଣାତ୍ମକ ବଚନର ସତ୍ୟ ବା ମିଥ୍ୟା ସତ୍ୟାପନଦ୍ୱାରା ସ୍ଥିର ହୋଇଥାଏ, ଯେହେତୁ ଏସବୁ ତଥ୍ୟଭିତ୍ତିକ । ସଂଶ୍ଳେଷଣାତ୍ମକ ବଚନ ସୁନିଶ୍ଚିତ ହୋଇନପାରେ । କାଉମାନେ ନୀଳ କହିବାରେ କୌଣସି ତାର୍କିକ ବିରୋଧାଭାସ ନାହିଁ କାରଣ ଏହା ପୃଥିବୀର କେଉଁ କୋଣରେ ସତ୍ୟ ହୋଇପାରେ । କିନ୍ତୁ 'ଦୁଇ ଓ ତିନି ମିଶି ପାଞ୍ଚ ହେବ ନାହିଁ' କହିବାରେ ବିରୋଧାଭାସ ରହିଛି । ଯେକୌଣସି ଏକ ଗାଣିତିକ ତର୍କବଚନ କ୍ଷେତ୍ରରେ ଅନିବାର୍ଯ୍ୟତା ରହିଥାଏ । ଯେପରି ଆମେ କହିପାରିବା ଯେ ଏକ ତ୍ରିଭୁଜର ତିନିକୋଣର ସମଷ୍ଟି ଦୁଇ ସମକୋଣ ହେବ । ଏହା ଅନ୍ୟଥା ହୋଇପାରିବ ନାହିଁ, ଏହା ଅନ୍ୟ କିଛି ଚିନ୍ତାକରିବା ଅର୍ଥ ଏକ ବିରୋଧାଭାସରେ ଉପନୀତ ହେବା । ଏକ ବିଶ୍ଳେଷଣାତ୍ମକ ବଚନର ବିପରୀତ ସର୍ବଦା ଏକ ବରୋଧାଭାସ, ପରନ୍ତୁ ଏକ ସଂଶ୍ଳେଷଣାତ୍ମକ ବଚନର ବିପରୀତ ମିଥ୍ୟା ହୋଇପାରେ, ଏଥିରେ ତାର୍କିକ ବିରୋଧାଭାସ ରହିପାରିବ ନାହିଁ ।

ଆଧୁନିକ କାଳର ଦାର୍ଶନିକମାନେ ବିଶ୍ଳେଷଣାତ୍ମକ ଓ ସଂଶ୍ଳେଷଣାତ୍ମକ ବଚନ ମଧ୍ୟରେ ଯେଉଁ ପ୍ରକାରର ପାର୍ଥକ୍ୟ କରିଛନ୍ତି ପ୍ଲେଟୋ ସେପରି କରିନାହାନ୍ତି । ତେବେ ସେ ଦର୍ଶାଇଛନ୍ତି ଯେ ଗାଣିତିକ ଜ୍ଞାନ କୌଣସି ଅନୁଭୂତି କିମ୍ବା ଶିକ୍ଷାଦାନ ପଦ୍ଧତିରେ ଲାଭ କରାଯାଇ ପାରିବ ନାହିଁ । ପ୍ଲେଟୋଙ୍କ ମତରେ ଏହି ଜ୍ଞାନ ଜନ୍ମରୁ ବ୍ୟକ୍ତି ପାଖରେ ରହିଛି । ପୂର୍ବ ସ୍ଥିତିରୁ ଏହି ଜ୍ଞାନକୁ ଜଣେ ସ୍ମୃତି ଭିତରକୁ ଆଣିପାରିବ । ଏହି କ୍ଷେତ୍ରରେ ଯୁକ୍ତି କରାଯାଇ ପାରିବ ଯେ ହୁଏତ ଗାଣିତିକ ଜ୍ଞାନ ଅନୁଭୂତିଦ୍ୱାରା ଉପଲବ୍ଧ ହୋଇପାରିବ ନାହିଁ, ତେବେ ଏହାକୁ ଶିକ୍ଷା କରାଯାଇ ପାରିବ । ଜଣେ ନିଜର ଅଭିଜ୍ଞତାରୁ ଅନ୍ୟ ଜଣଙ୍କୁ ଶିକ୍ଷାଦେଇ ପାରିବେ । ଯଦି ଏହି ଜ୍ଞାନ ପିଲାମାନଙ୍କ ପାଖରେ ସହଜାତ ଭାବରେ ରହିଛି, ତେବେ ପିଲାମାନଙ୍କୁ ଗଣିତ ଶିକ୍ଷା କାହିଁକି ଦିଆଯିବ, ସେମାନେ ତ ଏହା ନିଜ ମନରୁ ଜାଣିପାରିବେ । ଏହି କ୍ଷେତ୍ରରେ ପ୍ଲେଟୋଙ୍କର ଉତ୍ତର ରହିବ ଯେ ଯେତେବେଳେ ଜଣେ ଶିକ୍ଷକ ଏକ ଜ୍ୟାମିତିକ ଉପପାଦ୍ୟ ପିଲାଙ୍କୁ ବୁଝାଉଛନ୍ତି, ଜଣେ ପିଲା ପ୍ରତ୍ୟକ୍ଷ ଭାବରେ ଶିକ୍ଷକ କ'ଣ କହିବାକୁ ଚାହୁଁଛନ୍ତି ତାହା ସହଜରେ ବୁଝିପାରୁଛି । କିନ୍ତୁ ଯେତେବେଳେ ଜଣେ ଶିକ୍ଷକ କହୁଛନ୍ତି ଯେ କପିଳାସର ମନୋରମ ଝରଣା ଢେଙ୍କାନାଳ ଜିଲ୍ଲାରେ ରହିଛି ସେତେବେଳେ ଛାତ୍ର ଜଣଙ୍କ ଶିକ୍ଷକଙ୍କ କଥାକୁ ବିଶ୍ୱାସ କରିବ କିମ୍ବା ନିଜେ କପିଳାସ ଯାଇ ଏହାର

ସତ୍ୟତା ପରୀକ୍ଷା କରିବ । ଏହି କ୍ଷେତ୍ରରେ ଏକ ବ୍ୟକ୍ତିଙ୍କ ପାଖରୁ ଜ୍ଞାନ ଅନ୍ୟ ବ୍ୟକ୍ତିଙ୍କ ପାଖକୁ ଆସୁଛି ଯାହା ଛାତ୍ରଙ୍କ ମନରେ ପୂର୍ବରୁ ସ୍ଥାନ ପାଇ ନାହିଁ । କିନ୍ତୁ ଗାଣିତିକ ଜ୍ଞାନ କ୍ଷେତ୍ରରେ ଛାତ୍ରଙ୍କ ମନରେ ଭାବନା ସହଜାତ ଭାବରେ ରହିଛି, ଶିକ୍ଷା ପ୍ରକ୍ରିୟାରେ କେବଳ ତାଙ୍କୁ ତାଙ୍କ ସ୍ମୃତିରେ ରହିଥିବା ପୂର୍ବ ଧାରଣାକୁ ଉଜ୍ଜୀବିତ କରାଯାଇ ପାରୁଛି । ସେ କେବଳ ନିଜ ମନର ସ୍ମୃତିରୁ ଏହି ଭାବନାକୁ ଆଣିବା ପାଇଁ ଶିକ୍ଷକ ତାଙ୍କୁ ମନେ ପକାଉଛନ୍ତି ।

ପ୍ଳେଟୋ ତାଙ୍କ ଡାଏଲଗ୍ "ମେନୋ" ରୁ ସ୍ମୃତି ବିଷୟରେ ଏକ ତଥ୍ୟମୂଳକ ଘଟଣାର ଅବତାରଣା କରିଛନ୍ତି । ଏହି ଡାଏଲଗରେ ଜଣେ ଦାସ (slave) ଙ୍କର ପୁଅଟି ସହ ଥରେ ସକ୍ରେଟିସ୍ କଥା ହେଉଛନ୍ତି, ଯେଉଁ ପିଲାଟି ଗଣିତ ବିଷୟରେ କିଛି ଜାଣେ ନାହିଁ । ସକ୍ରେଟିସ୍ ପିଲାଟିକୁ ବର୍ଗକ୍ଷେତ୍ର କହିଲେ କ'ଣ ବୁଝାଯାଏ ତାହା ପଚାରିଛନ୍ତି । ପିଲାଟିକୁ କୌଶଳପୂର୍ଣ୍ଣ କିଛି ପ୍ରଶ୍ନ ପଚାରିବା ଭିତରେ ପିଲାଟି ପାଖରୁ ବର୍ଗକ୍ଷେତ୍ର ସଂପର୍କରେ କିଛି ଉତ୍ତର ପାଇଛନ୍ତି । ସକ୍ରେଟିସ୍ ପିଲାଟିକୁ ବର୍ଗକ୍ଷେତ୍ରର ସ୍ୱରୂପ ବିଷୟରେ କିଛି କହିନାହାନ୍ତି, ସେ କେବଳ ପ୍ରଶ୍ନ କରିଛନ୍ତି । ପିଲାଟି ସକ୍ରେଟିସ୍‌ଙ୍କ କୌଶଳପୂର୍ଣ୍ଣ ପ୍ରଶ୍ନର ଉତ୍ତର ଦେଇଛି । ସେ ପୂର୍ବରୁ ବର୍ଗକ୍ଷେତ୍ର ବିଷୟରେ କିଛି ଅନୁଭୂତି ପାଇନାହିଁ । ସେ କେବଳ ତା'ର ସ୍ମୃତିରୁ ଉତ୍ତର ଦେଇଛି ବୋଲି ପ୍ଳେଟୋ ଦର୍ଶାଇଛନ୍ତି । ପ୍ଳେଟୋ ଏଠାରେ କହିବାକୁ ଚାହୁଁଛନ୍ତି ଯେ ପିଲାଟିର ଉତ୍ତର ତାର ପୂର୍ବ ସ୍ମୃତିରୁ ଆସିଛି । ଏଠାରେ ପ୍ରଶ୍ନ ଉଠିବ ଯଦି ଏହି ଜ୍ଞାନ ଆମ ସ୍ମୃତି ଭିତରେ ରହିଛି, ଆମେ କାହିଁକି ତତ୍‌କ୍ଷଣାତ୍ ଏହା ମନେ ପକାଇପାରୁ ନାହେଁ ? ବରଂ ଗଣିତ ବିଷୟରେ କଷ୍ଟ କରି ଅଧ୍ୟୟନ କରିବାକୁ ହେଉଛି । ପ୍ଳେଟୋଙ୍କର ଉତ୍ତର ହେବ ଯେ ଶୁଦ୍ଧସତ୍ତାର ଜଗତରୁ ଆତ୍ମା ଆସି ଶରୀର ଭିତରେ ଆବଦ୍ଧ ହେବାଦ୍ୱାରା ଇନ୍ଦ୍ରିୟଜନିତ ପ୍ରଭାବରୁ ସ୍ମୃତି ଅବରୁଦ୍ଧ ହୋଇଯାଇଛି । ପରିଣାମତଃ ଆତ୍ମାରୁ ଏହା ବିସ୍ମରଣ ହୋଇଛି କିମ୍ୱା ଏ ବିଷୟରେ ଅତି କ୍ଷୀଣ ବା ଅସ୍ପଷ୍ଟ ଧାରଣା ରହିଛି । ସେହି ଦୃଷ୍ଟିରୁ ଏହାକୁ ଶିକ୍ଷା ଦେବାକୁ ହେଉଛି କିମ୍ୱା ବିସ୍ମୃତ ହୋଇଥିବା ଭାବନାକୁ ପୁନଶ୍ଚ ମନ ଭିତରକୁ ଆଣିହେଉଛି । ଏହି ବିଷୟରେ ସ୍ମୃତିକୁ ପୁଣି ଉଜ୍ଜୀବିତ କରିବାକୁ ଶିକ୍ଷାର ଆବଶ୍ୟକତା ରହିଛି ।

ଆତ୍ମାର ପୁନର୍ଜନ୍ମ ସଂପର୍କରେ ପ୍ଳେଟୋ ବିଭିନ୍ନ ସଂଳାପ ଭିତରେ ଭିନ୍ନ ଭିନ୍ନ କଥା ପ୍ରକାଶ କରିଛନ୍ତି । ସେ ପିଥାଗୋରାସଙ୍କ ପାଖରୁ ପୁନର୍ଜନ୍ମର ଭାବନା ଗ୍ରହଣ କରି ଏହାକୁ ଭିନ୍ନ ଭାବରେ ବ୍ୟକ୍ତ କରିଛନ୍ତି । ତେବେ ଅନେକ କ୍ଷେତ୍ରରେ କେବଳ କଳ୍ପନା ବା ମିଥ୍‌ର ସେ ଉଦାହରଣ ଦେଇଛନ୍ତି । ଆତ୍ମା ସଂପର୍କୀୟ ତାଙ୍କର ଭାବନାକୁ ସରଳରେ କହିଲେ ପ୍ଳେଟୋ ଆତ୍ମା ଅମର ଓ ଜନ୍ମ ପୂର୍ବରୁ ଏହାର ସ୍ଥିତି ରହିଥିଲା ବୋଲି ଉଲ୍ଲେଖ କରିଛନ୍ତି । ଜନ୍ମ ପୂର୍ବରୁ ଆତ୍ମା ଶୁଦ୍ଧସତ୍ତାର ପୃଥିବୀରେ ରହିଥିଲା । ଏହା ଅଶରୀରୀ ଓ ଆନନ୍ଦମୟ ସ୍ଥିତିରେ ଥିଲା ଓ ଶୁଦ୍ଧସତ୍ତାମାନଙ୍କୁ ସ୍ଥିର ଭାବରେ ଅନୁଧ୍ୟାନ କରୁଥିଲା । ତେବେ ଯେହେତୁ ଆତ୍ମାର ଇନ୍ଦ୍ରିୟ-ଲବ୍‌ଧ ଜଗତ ସହିତ ସଂପର୍କ ଥିଲା, ଏହା ଶରୀର ନେଇ ଜନ୍ମହେଲା । ଜୀବନକାଳ ଭିତରେ ଜଣେ ଯଦି ଉତ୍ତମ ଜୀବନ ନିର୍ବାହ କରିଛି, ଶୁଦ୍ଧସତ୍ତାମାନଙ୍କ ବିଷୟରେ ଜ୍ଞାନ ପାଇଁ ପ୍ରୟାସୀ ହୋଇଛି ଓ ଦାର୍ଶନିକ ଜିଜ୍ଞାସାରେ ବ୍ରତୀ ହୋଇଛି ତେବେ ଦେହାନ୍ତ ପରେ ଆତ୍ମା ତାର ସ୍ୱସ୍ଥାନ ଶୁଦ୍ଧସତ୍ତାର ସଂସାରକୁ ପ୍ରତ୍ୟାବର୍ତ୍ତନ କରିଯିବ । ସେଠାରେ ବହୁଦିନ ଅତିବାହିତ କରି ପୁନଶ୍ଚ ସେ

ସଂସାରରେ ଜନ୍ମଗ୍ରହଣ କରିବ । ଯଦି ଜୀବନକାଳ ମଧ୍ୟରେ ଜଣେ ବିଭିନ୍ନ ମନ୍ଦ କାର୍ଯ୍ୟରେ ପ୍ରବୃତ୍ତ ହୋଇଥାଏ, ତେବେ ସେ ମୃତ୍ୟୁପରେ ଦଣ୍ଡ ପାଇବ ଓ ଏକ ନିକୃଷ୍ଟ ପ୍ରାଣୀ ଭାବରେ ଜନ୍ମ ନେବ । ଜଣେ ବ୍ୟକ୍ତି ତାଠାରୁ ନ୍ୟୂନ ଜଣେ ବ୍ୟକ୍ତି ବା ଇତର ପ୍ରାଣୀ ଭାବେ ଜନ୍ମନେବ ।

ଆତ୍ମାର ସ୍ୱରୂପ, ଅମରତ୍ୱ ଓ ପୁନର୍ଜନ୍ମ ପ୍ରସଙ୍ଗରେ ପ୍ଲେଟୋ ବିଭିନ୍ନ ଡାଏଲଗ ମାନଙ୍କରେ ଯେଉଁ ସବୁ ବିଶ୍ୱାସ ବା ପ୍ରସଙ୍ଗର ଅବତାରଣା କରିଛନ୍ତି, ସେସବୁ ପ୍ରାୟ କଳ୍ପନା ବା ମିଥ୍ । ଏସବୁ ମିଥ୍ ହେଲେ ମଧ୍ୟ କେତେକ କ୍ଷେତ୍ରରେ ଆତ୍ମାର ଅମରତ୍ୱ ନେଇ ସେ କିଛି ଯୁକ୍ତିର ଅବତାରଣା କରିଛନ୍ତି । ଏପରି କିଛି ଯୁକ୍ତିର ବିଚାର କରାଯାଉ ।

ଫାଇଡୋ ସଂଳାପରେ ସକ୍ରେଟିସ୍‌ଙ୍କର ଏକ ଯୁକ୍ତି ହେଉଛି ବିପରୀତରୁ ବିପରୀତ ଉଦ୍‌ଭବ ହେବା ଆମେ ଦେଖୁ । ଜାଗ୍ରତ ଅବସ୍ଥାରୁ ନିଦ୍ରା, ନିଦ୍ରାରୁ ଜାଗ୍ରତ ଅବସ୍ଥା, ବଳଶାଳୀ ଅବସ୍ଥାରୁ ଦୁର୍ବଳ ଅବସ୍ଥା ସୃଷ୍ଟିହେବା ଜଣାଯାଏ । ସେହିପରି ଜୀବନ ଓ ମୃତ୍ୟୁ ପରସ୍ପର ବିପରୀତ । ଜୀବିତ ଅବସ୍ଥାରୁ ମୃତ୍ୟୁ ଅବସ୍ଥା ଆସିବା ଯେପରି ସତ୍ୟ, ସେହିପରି ମୃତ୍ୟୁ ଅବସ୍ଥାରୁ ଜୀବନର ଆବିର୍ଭାବ ହେବା ସମ୍ଭବ । ଏହି ଯୁକ୍ତିରେ ଦୁଇଟି ବିଷୟକୁ ସ୍ୱୀକାର କରିନିଆଯାଇଛି, ଯଥା ଜନ୍ମ-ମୃତ୍ୟୁର ଚକ୍ର ରହିଛି ଓ ବିପରୀତରୁ ବିପରୀତ ସୃଷ୍ଟି ହୁଏ । ଏ ଦୁଇଟି ଯାକ ଅନୁମାନ କେବଳ କଳ୍ପନା । ଶରୀରରୁ ଯଦି ବି କିଛି ଆତ୍ମା ମୃତ୍ୟୁ ଯୋଗୁ ବିଚ୍ଛିନ୍ନ ହୋଇଯାଏ ବୋଲି ସ୍ୱୀକାର କରାଯାଏ, ତେବେ ଶରୀର ବିହୀନ ଆତ୍ମାର ସ୍ଥିତି କ'ଣ ହୁଏ ତାହା ବିଷୟରେ କିଛି କହିହେବ ନାହିଁ । ଏହି ବିଶ୍ୱାସରୁ ଅନ୍ୟ ଏକ ବିଷୟକୁ ଗ୍ରହଣ କରାଯାଏ ଯେ ଜନ୍ମ-ମୃତ୍ୟୁର ଚକ୍ର ରହିଛି । ତେବେ ବଞ୍ଚିଥିବା ସମୟରେ କୌଣସି ବ୍ୟକ୍ତି ସଂସାରରେ ତାର ପୂର୍ବ ଜନ୍ମର କୌଣସି ସ୍ମୃତି ମନେ ରଖିବାର ତଥ୍ୟ ନାହିଁ । ସୁତରାଂ ଏଥିରେ କେବଳ ଆତ୍ମାର ଅସ୍ତିତ୍ୱ ରହିଥିବା ଏକ କଳ୍ପନାର ଚିତ୍ର ରହିଛି ।

ଶୁଦ୍ଧସତ୍ତା ଯେପରି ଏକ ପରିପୂର୍ଣ୍ଣ ସ୍ଥିତିରେ ରହେ ବୋଲି କଳ୍ପନା କରାଯାଇଛି, ସେହିପରି ଆତ୍ମା ବି ଏକ ପରିପୂର୍ଣ୍ଣ ସ୍ଥିତିରେ ଜନ୍ମପୂର୍ବରୁ ରହିଥାଏ ବୋଲି ଅନୁମାନ କରାଯାଇଛି । ଗାଣିତିକ ବଚନମାନ ପ୍ରାଗନୁଭବିକ, କିନ୍ତୁ ଏହାର ଅର୍ଥ ନୁହେଁ ଯେ ସେସବୁ ସହଜାତ । ସକ୍ରେଟିସ୍‌ଙ୍କର ଦାସ ପିଲାଟି ପାଖରୁ ବର୍ଗକ୍ଷେତ୍ର ବିଷୟରେ ସୂଚନା ପାଇବା ବୋଲି ପ୍ଲେଟୋ ଯେଉଁ ଉଲ୍ଲେଖ କରିଛନ୍ତି କିମ୍ବା ସକଳ ଗାଣିତିକ ଜ୍ଞାନ ସହଜାତ ବୋଲି ଯାହା ଧରିନେଇଛନ୍ତି ତାହା ଅଯୌକ୍ତିକ ଓ ଆଧୁନିକ ଦାର୍ଶନିକ ଜିଜ୍ଞାସାରେ ଭ୍ରମାତ୍ମକ । ଏହି ଯୁକ୍ତିରୁ କେବଳ ଏତିକି ହୁଏତ କୁହାଯାଇପାରେ ଯେ ବ୍ୟକ୍ତିର ଜନ୍ମ ପୂର୍ବରୁ ତାର ଆତ୍ମା ରହିଥିଲା, କିନ୍ତୁ ମୃତ୍ୟୁପରେ ଯେ ଆତ୍ମା ନାମରେ ଏକ ସତ୍ତା ରହିବ, ତାହା ଏହି ଯୁକ୍ତିରୁ ନିଷ୍କର୍ଷ ହେଉନାହିଁ ।

ପ୍ଲେଟୋ ଭାବୁଥିଲେ ଯେ ଶୁଦ୍ଧସତ୍ତା ଯେପରି ପଦାର୍ଥଠାରୁ ପୃଥକ୍, ସେହିପରି ଆତ୍ମା ଶରୀରଠାରୁ ପୃଥକ୍ । ଆତ୍ମାର ବିଚାରଶୀଳ ଅଂଶଟି ଅମର କାରଣ ଏହା ଶୁଦ୍ଧସତ୍ତାର ବାସ୍ତବ ପୃଥିବୀରେ ବିଚରଣ କରିଥାଏ । ଯେତେବେଳ ପର୍ଯ୍ୟନ୍ତ ଆତ୍ମା ଶରୀର ଭିତରେ ଆବଦ୍ଧ ରହିଛି ଇନ୍ଦ୍ରିୟମାନଙ୍କର ପ୍ରତିବନ୍ଧକରୁ ସେ ମୁକ୍ତ ହୋଇପାରିବ ନାହିଁ ଓ

ଶୁଦ୍ଧସତ୍ତା ମାନଙ୍କୁ ସ୍ପଷ୍ଟ ଭାବରେ ଜାଣିପାରିବ ନାହିଁ । ସୁତରାଂ ଆତ୍ମା ମୃତ୍ୟୁପରେ ଶୁଦ୍ଧସତ୍ତାମାନଙ୍କର ସଂସାରରେ ରହି ସେମାନଙ୍କୁ ନିଜର ବିଚାରଦ୍ୱାରା ଅବଗତ ହେବ । ପ୍ଲେଟୋଙ୍କ ତତ୍ତ୍ୱମୀମାଂସୀୟ ପରିକଳ୍ପନାରେ ରହିଥିବା ଶୁଦ୍ଧସତ୍ତାର ରାଜ୍ୟ ଯେପରି ଏକ କଳ୍ପନା ଓ ତାର୍କିକ ଅସଙ୍ଗତିରୁ ଉଦ୍‌ଭବ, ସେହିପରି ଆତ୍ମାର ବିଚାରଶୀଳ ଅଂଶର ଅଶରୀରୀ ସ୍ଥିତି ଏକ କଳ୍ପନା ଓ ମିଥ୍ ଉପରେ ଆଧାରିତ ।

ପ୍ଲେଟୋ ବିଭିନ୍ନ ଡାଏଲଗମାନଙ୍କରେ ବିଭିନ୍ନ ଚରିତ୍ର ମାଧ୍ୟମରେ ଓ ବିଶେଷକରି ସକ୍ରେଟିସ୍‌ଙ୍କ ମାଧ୍ୟମରେ ଆତ୍ମାର ଅମରତ୍ୱ ଓ ଜୀବନ-ମୃତ୍ୟୁ ଚକ୍ର ନେଇ ବିଭିନ୍ନ ମିଥ୍ ବା କାଳ୍ପନିକ କାହାଣୀର ଅବତାରଣା କରିଛନ୍ତି । ଦୈହିକ ସୁଖ, ସମ୍ଭୋଗ ଓ ଆସକ୍ତି ଭିତରେ ମଗ୍ନ ରହୁଥିବା ବ୍ୟକ୍ତି ସଂସାରରେ ବାରମ୍ବାର ଜନ୍ମ ନେଉଥାଏ । କୌଣସି ଆତ୍ମସଂଯମ ରକ୍ଷାକରି ନଥିବା ଲୋଭୀ, ଲଂପଟ ଓ ମଦ୍ୟପମାନେ ମୃତ୍ୟୁପରେ ଗଧ, ଘୁଷୁରି ଜାତୀୟ ପ୍ରାଣୀ ଭାବେ ଜନ୍ମ ନେଇଥାନ୍ତି । ଯେଉଁମାନେ ଶୋଷଣକାରୀ, ଅତ୍ୟାଚାରୀ, ଅନ୍ୟାୟୀ ଓ ହିଂସ୍ରକ ସ୍ୱଭାବର ସେହି ବ୍ୟକ୍ତିମାନେ ପରଜନ୍ମରେ ବାଘ, ଭାଲୁ, ଚିଲ ଜାତୀୟ ପ୍ରାଣୀଭାବରେ ଜନ୍ମ ହୋଇଥାନ୍ତି । ତେବେ ଯେଉଁମାନେ ଦୈହିକ ସୁଖ, ଆସକ୍ତି ଠାରୁ ଦୂରରେ ରହି ଉତ୍ତମ ସ୍ୱଭାବ, ପରୋପକାର, ଆତ୍ମସଂଯମ ପରି ଗୁଣମାନଙ୍କୁ ମହତ୍ତ୍ୱ ଦେଇ ସେହି ଧାରାରେ ଜୀବନ ବଞ୍ଚିବାକୁ ପ୍ରୟାସୀ ହୁଅନ୍ତି ସେମାନେ ମନୁଷ୍ୟ ହୋଇ ଜନ୍ମନିଅନ୍ତି । କିନ୍ତୁ ଯେଉଁମାନେ ସତ୍ୟାନୁରାଗୀ, ପ୍ରଜ୍ଞାପ୍ରେମୀ, ଜୀବନରେ ଉତ୍କର୍ଷ ସାଧନରେ ବ୍ରତୀ ହୋଇଥାନ୍ତି ସେମାନେ ପ୍ରାୟତଃ ଦାର୍ଶନିକ ବୋଲି ସକ୍ରେଟିସ୍ ବିଶ୍ୱାସ କରୁଥିଲେ । ସେମାନେ ମୃତ୍ୟୁପରେ ଶୁଦ୍ଧ ଅବସ୍ଥାରେ ଶୁଦ୍ଧସତ୍ତାର ଜଗତରେ ଅବସ୍ଥାନ କରି ଆତ୍ମାର ଉତ୍କର୍ଷ ସାଧନ କରିପାରିବେ ।

ଏହିପରି ଦେଖିଲେ ପ୍ଲେଟୋ ଆତ୍ମାର ଅମରତ୍ୱ ନେଇ ବିଭିନ୍ନ ସଂଳାପ ମାନଙ୍କରେ ଅନେକ ମିଥ୍, କଳ୍ପନା ସବୁ ଅବତାରଣା କରିଛନ୍ତି । ଯେଉଁଠି ବି କିଛି ଯୁକ୍ତିର ଅବତାରଣା କରିଛନ୍ତି ସେସବୁ ବିଭିନ୍ନ ତାର୍କିକ ଅସଂଗତିଦ୍ୱାରା ଆକ୍ରାନ୍ତ । ତେବେ ତାଙ୍କ ତତ୍ତ୍ୱମୀମାଂସା ସହ ସମତାଳ ରକ୍ଷାକରି ସେ ଆତ୍ମା ସଂପର୍କୀୟ କେତେ କେତେ ଭାବନାର ବିଚାର ଦେଇଛନ୍ତି । ସେସବୁ ଯୁକ୍ତିର ଯାହା ସବୁ ଅସଙ୍ଗତି ଥିଲେ ମଧ୍ୟ ତାର ସାହିତ୍ୟିକ ଓ ନୈତିକ ମୂଲ୍ୟ ରହିଛି । ପ୍ଲେଟୋ ଥିଲେ ଏକ ପ୍ରାଜ୍ଞ ବ୍ୟକ୍ତି ଓ ନାନା ବିଷୟ ଉପରେ ସେ ତାଙ୍କର ବିଚାର ବ୍ୟକ୍ତ କରିଛନ୍ତି । ସେହିପରି ତାଙ୍କ ଦାର୍ଶନିକ ଅବବୋଧ ଭିତରେ ଆତ୍ମା, ଆତ୍ମାର ଅମରତ୍ୱ, ଶୁଦ୍ଧସତ୍ତାର ଜଗତ ଇତ୍ୟାଦି ଅନେକ ବିଷୟର ସେ ଅବତାରଣା କରିଛନ୍ତି । ଏହାର ଦାର୍ଶନିକ ମୂଲ୍ୟ ଯାହା ଥାଉ ନା ନାହିଁ ଏହାର କାବ୍ୟିକ ଓ ନୈତିକ ମୂଲ୍ୟ ରହିଛି । ପ୍ଲେଟୋଙ୍କର ତତ୍ତ୍ୱମୀମାଂସା କିପରି ତାଙ୍କର ଆଚାର ମୀମାଂସାକୁ ରୂପ ଦେଇଛି ଏବେ ଆମେ ଆଲୋଚନା କରିବା ।

### ୭.୪- ଆଚାରମୀମାଂସା

ପ୍ଲେଟୋଙ୍କର ଆଚାରମୀମାଂସା ବା ନୈତିକ ସିଦ୍ଧାନ୍ତକୁ ଆତ୍ମପୂର୍ଣ୍ଣତାବାଦ କୁହାଯାଏ । ଏହାର ଆଭିମୁଖ୍ୟ ହେଉଛି ମନୁଷ୍ୟର ସର୍ବୋଚ୍ଚ ଶୁଭ ଲାଭକରିବା, ଯାହାଦ୍ୱାରା ବାସ୍ତବ ଆନନ୍ଦର ଉପଲବ୍ଧି ହୋଇପାରିବ । ମନୁଷ୍ୟ ଜଣେ ବିଚାରଶୀଳ ଓ ନୀତିମାନ ବ୍ୟକ୍ତି ଭାବେ ନିଜର ଉତ୍କର୍ଷ ସାଧନ କରିବାକୁ ସେ ପ୍ରାଧାନ୍ୟ ଦେଇଛନ୍ତି । ତା

ଆତ୍ମାର ଉତ୍କର୍ଷ ସାଧନ କରି ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଏକ ସୁସଂହତ ବିକାଶ ନେଇ ସେ ଗମ୍ଭୀର ଚିନ୍ତା ବ୍ୟକ୍ତ କରିଛନ୍ତି । ଏକ ଉତ୍ତମ ଜୀବନକୁ ସେ ଏକ ମିଶ୍ରଣ ବୋଲି ସୂଚିତ କରିଛନ୍ତି । ମହୁ ସହ ଜଳର ଯଥାର୍ଥ ଆନୁପାତିକ ମିଶ୍ରଣ ଯେପରି ଏକ ସୁଖପ୍ରଦ ପାନୀୟ ହୋଇଥାଏ, ସେହିପରି ସୁଖପ୍ରଦ ଅନୁଭୂତି ଓ ବୌଦ୍ଧିକ ଉତ୍କର୍ଷର ସମନ୍ୱୟ ଜୀବନକୁ ଶୁଭମୟ କରିଥାଏ । ସକ୍ରେଟିସ୍‌ଙ୍କ ବିଚାର ସଦ୍‌ଗୁଣ ହିଁ ଜ୍ଞାନ ଓ ସଦ୍‌ଗୁଣ ଶିକ୍ଷା ଦିଆଯାଇ ପାରିବ ଭାବନାକୁ ପୂର୍ଣ୍ଣଭାବେ ପ୍ଲେଟୋ ସମର୍ଥନ କରୁଥିଲେ । ସକ୍ରେଟିସ୍‌ଙ୍କ ପରି ତାଙ୍କର ମଧ୍ୟ ଗଭୀର ବିଶ୍ୱାସ ଥିଲା ଯେ କୌଣସି ବ୍ୟକ୍ତି ଜ୍ଞାତସାରରେ ଓ ଜାଣିଶୁଣି ମନ୍ଦ କାର୍ଯ୍ୟରେ ସଂପୃକ୍ତ ହୁଏ ନାହିଁ । ପ୍ଲେଟୋ ତାଙ୍କର ଜ୍ଞାନମୀମାଂସା ଓ ତତ୍ତ୍ୱମୀମାଂସାର ସମନ୍ୱୟରେ ତାଙ୍କର ନୈତିକ ସିଦ୍ଧାନ୍ତର ବିକାଶ କରିଥିବା ମନେହୁଏ ।

ପ୍ଲେଟୋ ତାଙ୍କର ଜ୍ଞାନମୀମାଂସାର ବିକାଶ କରିବା ପୂର୍ବରୁ ପ୍ରଥମେ ଜ୍ଞାନ ସମ୍ବନ୍ଧରେ ତାଙ୍କ ବିଚାରରେ କେତେକଙ୍କ ପାଖରେ ରହିଥିବା ଭ୍ରମାତ୍ମକ ସିଦ୍ଧାନ୍ତକୁ ସମାଲୋଚନା କରିଥିଲେ । ସତ୍ୟ କ'ଣ ନୁହଁ ତାହା ପ୍ରଥମେ ଦର୍ଶାଇବା ପରେ ସେ ଉପଯୁକ୍ତ ଜ୍ଞାନର ଆଧାର ଓ ଲକ୍ଷଣ ବିଷୟରେ ନିଜର ସିଦ୍ଧାନ୍ତ ଦେଇଥିଲେ । ସେହିପରି ଆଚାରମୀମାଂସା କ୍ଷେତ୍ରରେ ସେ ପ୍ରଥମେ ତାଙ୍କ ବିଚାରରେ ଅନ୍ୟମାନଙ୍କର ଭ୍ରମପୂର୍ଣ୍ଣ ନୈତିକ ସିଦ୍ଧାନ୍ତକୁ ସମାଲୋଚନା କରି ତାପରେ ସଦ୍‌ଗୁଣର ସ୍ୱରୂପ ବିଷୟରେ ବିଶଦ ଆଲୋଚନା କରିଛନ୍ତି । ସଦ୍‌ଗୁଣ (virtue) ସୁଖ ସହ ସମାନ ବୋଲି କେତେକ ଭାବିଥାନ୍ତି । ସେହିପରି ସଦ୍‌ଗୁଣକୁ କେତେକ ଯଥାର୍ଥ କାର୍ଯ୍ୟ ବୋଲି ମନେ କରିଥାନ୍ତି । ସଫିଷ୍ଟମାନେ ଜ୍ଞାନକୁ ପ୍ରତ୍ୟକ୍ଷ ଓ ସଦ୍‌ଗୁଣକୁ ସୁଖ ବୋଲି ମନେ କରୁଥିଲେ । ପ୍ଲେଟୋ ଜ୍ଞାନ ଯେ ପ୍ରତ୍ୟକ୍ଷ-ଭିତ୍ତିକ ଏହାକୁ ସମାଲୋଚନା କରିବା ସହ ସଦ୍‌ଗୁଣ ଯେ ସୁଖ-ଆଧାରିତ ଏହି ଭାବନାକୁ ମଧ୍ୟ ପ୍ରତ୍ୟାଖ୍ୟାନ କରିଛନ୍ତି । ସଫିଷ୍ଟମାନେ ବ୍ୟକ୍ତିକୁ ଯାହା ସତ୍ୟ ପ୍ରତୀତ ହୁଏ ତାହା ବ୍ୟକ୍ତି ପାଇଁ ସତ୍ୟ ବୋଲି ମନେ କରୁଥିଲେ । ସେହିପରି ସେମାନେ ଏହା ମଧ୍ୟ ସ୍ୱୀକାର କରୁଥିଲେ ଯେ ବ୍ୟକ୍ତି ପ୍ରତି ଯାହା ଯଥାର୍ଥ ତାହା ହିଁ ବ୍ୟକ୍ତିମାନଦଣ୍ଡରୁ ଠିକ୍ । ଯାହା ବ୍ୟକ୍ତି ପ୍ରତି ସୁଖପ୍ରତ ତାହା ହିଁ ଉପଯୁକ୍ତ । ଅର୍ଥାତ୍ ସେମାନେ ସଦ୍‌ଗୁଣକୁ ବ୍ୟକ୍ତିର ସୁଖ ବୋଲି ସଦ୍‌ଗୁଣର ସଂଜ୍ଞା ଦେଉଥିଲେ । ପ୍ରତ୍ୟକ୍ଷ ହିଁ ଜ୍ଞାନ ଓ ସୁଖ ହିଁ ସଦ୍‌ଗୁଣ ଏହି ଦୁଇ ସିଦ୍ଧାନ୍ତକୁ ପ୍ଲେଟୋ ଗମ୍ଭୀର ଭାବରେ ସମାଲୋଚନା କରିଛନ୍ତି । ଆମେ ଏଠାରେ ତାଙ୍କ ସମାଲୋଚନାକୁ ପ୍ରଥମେ ସୂଚାଇ ତା'ପରେ ପ୍ଲେଟୋଙ୍କ ମତକୁ ଆଲୋଚନା କରିବା ।

ପ୍ଲେଟୋଙ୍କ ମତରେ ବ୍ୟକ୍ତିର ପ୍ରତ୍ୟକ୍ଷ ଯଦି ଜ୍ଞାନର ଆଧାର ହୁଏ (ଯାହା ସଫିଷ୍ଟମାନଙ୍କର ମତ) ତେବେ ଜ୍ଞାନର କୌଣସି ବସ୍ତୁନିଷ୍ଠ ମାନଦଣ୍ଡ ରହିବ ନାହିଁ । ସେହିପରି ବ୍ୟକ୍ତିର ସୁଖ ଯଦି ସଦ୍‌ଗୁଣର ମାନକ ହୁଏ ତେବେ ସଦ୍‌ଗୁଣର କୌଣସି ବସ୍ତୁନିଷ୍ଠ ଆଧାର ରହିପାରିବ ନାହିଁ । ଏହି ମତର ତାତ୍ପର୍ଯ୍ୟ ହେବ ଯେ କୌଣସି କିଛି ସ୍ୱରୂପରେ ଉତ୍ତମ ନୁହେଁ । କ ପାଇଁ କିଛି ଉତ୍ତମ ହୋଇପାରେ, ଖ ପାଇଁ ଅନ୍ୟ କିଛି ଉତ୍ତମ ହୋଇପାରେ ଓ ଗ ପାଇଁ ଅନ୍ୟ କିଛି ଭଲ ମନେହୁଏ । ଯାହା କ ପାଇଁ ଉତ୍ତମ ତାହା ଖ ପାଇଁ ମନ୍ଦ ହୋଇପାରେ, ଯାହା ଖ ପାଇଁ ଭଲ, ତାହା ଅନ୍ୟ ପାଇଁ ମନ୍ଦ ହେବା ସମ୍ଭବ । ତାହାର ତାତ୍ପର୍ଯ୍ୟ ସମସ୍ତଙ୍କ ପାଇଁ କିଛି ଉତ୍ତମ ନୁହଁ । ଏ କ୍ଷେତ୍ରରେ ସକଳ ନୀତି ନୈତିକତା ଆପେକ୍ଷିକ ହୋଇଯିବ । ନୈତିକ ଅଦର୍ଶ ଯଦି ଆପେକ୍ଷିକ ହୋଇଯାଏ, ତେବେ ନୈତିକ

ଆଦର୍ଶର କୌଣସି ବସ୍ତୁନିଷ୍ଠ ଭିତ୍ତି ରହିପାରିବ ନାହିଁ । ପ୍ଲେଟୋ କିନ୍ତୁ ନୈତିକ ଆଦର୍ଶର ଯେ ସାର୍ବଜନୀନ ଭିତ୍ତି ରହିଛି ଏହା ଗ୍ରହଣ କରୁଥିଲେ ।

ନୈତିକତାକୁ ସଫିଷ୍ଟମାନେ ବ୍ୟକ୍ତିକୈନ୍ଦ୍ରିକ ମନେ କରନ୍ତି । ନୈତିକତା ବ୍ୟକ୍ତିକୈନ୍ଦ୍ରିକ ହେଲେ ନୀତି ଅନୀତି ଭିତରେ କିଛି ପାର୍ଥକ୍ୟ ରହିବ ନାହିଁ । ସେପରି ସ୍ଥଳେ ଯାହା ବ୍ୟକ୍ତି ପାଇଁ ସୁଖପ୍ରଦ, ତାହା ବ୍ୟକ୍ତି ପାଇଁ ଭଲ ବା ଶୁଭ । ଜଣଙ୍କର ସୁଖ ଅନ୍ୟ ଜଣଙ୍କର ଦୁଃଖର କାରଣ ହୋଇପାରେ । ଯାହା କ ପାଇଁ ଭଲ, ତାହା ଖ ପାଇଁ ମନ୍ଦ ହେଲେ ଭଲ ଓ ମନ୍ଦ ଭିତରେ କିଛି ପାର୍ଥକ୍ୟ କରିହେବ କି ? ବ୍ୟକ୍ତି ନିର୍ବିଶେଷରେ ଭଲ ଓ ମନ୍ଦର ମାନଦଣ୍ଡ ରହିବା ଆବଶ୍ୟକ । ଭଲର କିଛି ମାନଦଣ୍ଡ ନ ରହିଲେ ଭଲ ଓ ମନ୍ଦ ସମାନ ହୋଇଯିବ ।

ଆମର ଇଚ୍ଛା ବା କାମନା ପୂରଣ ହେଲେ ଆମେ ସୁଖର ଅନୁଭୂତି ପାଇଥାଏ । ତେବେ ଇଚ୍ଛା ବା କାମନା ବ୍ୟକ୍ତିର ଅନୁଭବ ମାତ୍ର । ସଫିଷ୍ଟମାନେ ଯେଉଁ ଧାରାରେ ନୈତିକତାର ବ୍ୟାଖ୍ୟା କରନ୍ତି ତାହା ନୈତିକତାକୁ ଅନୁଭବ ଉପରେ ପ୍ରତିଷ୍ଠା କରେ । ନୈତିକତାର ଆଧାର ବ୍ୟକ୍ତିଗତ ଅନୁଭୂତି ହୋଇପାରିବ ନାହିଁ । ପ୍ଲେଟୋଙ୍କ ମତରେ ନୈତିକତା ସମସ୍ତଙ୍କ ପାଇଁ କର୍ତ୍ତବ୍ୟ ହେବା ଆବଶ୍ୟକ । ସେପରି ହେବାକୁ ହେଲେ ଏହାର ଆଧାର ବିଚାର ବା ବୌଦ୍ଧିକତା ଉପରେ ପ୍ରତିଷ୍ଠିତ ହେବା ଦରକାର । ତାହାହେଲେ ଯାଇ ଏହାର ସାର୍ବଜନୀନ ଭିତ୍ତି ରହିବ । ନୈତିକତାକୁ ବ୍ୟକ୍ତିଗତ ଅନୁଭୂତିର ଆଧାର ଉପରେ ପ୍ରତିଷ୍ଠା କଲେ ଏହା ମୂଲ୍ୟହୀନ ହୋଇଯିବ ।

ପ୍ଲେଟୋଙ୍କ ବିଚାରରେ ନୈତିକତା ନିଜସ୍ୱ ସ୍ୱରୂପରେ ମହୀୟାନ ହେବା ଆବଶ୍ୟକ । ଏହାର ସ୍ୱତଃମୂଲ୍ୟ ରହିବା ଦରକାର । ସଦ୍‌ଗୁଣ ସ୍ୱରୂପରେ ଉତ୍ତମ, ଏହା ଅନ୍ୟ ଲକ୍ଷ୍ୟପାଇଁ ସାଧନ ହେବା ଯଥାର୍ଥ ନୁହେଁ । ନୈତିକତାର ଲକ୍ଷ୍ୟ ନୈତିକତା ଭିତରେ ଅନ୍ତର୍ନିହିତ ହେବା ଉଚିତ, ଏହା କୌଣସି ବାହ୍ୟ ଲକ୍ଷ୍ୟ ଦିଗରେ ଅଭିପ୍ରେତ ହେବା ଠିକ୍ ନୁହେଁ । ଆମେ ନୀତିପୂର୍ଣ୍ଣ ଭାବରେ କାର୍ଯ୍ୟ କରିବା ଆବଶ୍ୟକ, କାରଣ ନୈତିକତା ସାଧନ ନୁହେଁ ଏହା ସାଧ୍ୟ । ଯାହା କର୍ତ୍ତବ୍ୟ ତାହା କରଣୀୟ । ସୁତରାଂ ସଦ୍‌ଗଣର ସ୍ୱତଃମୂଲ୍ୟ ରହିଛି । ଏହାକୁ ସାଧନମୂଲ୍ୟ ଉପରେ ପର୍ଯ୍ୟବସିତ କଲେ ଏହାର ମହତ୍ତ୍ୱ ରହିବ ନାହିଁ । ସଫିଷ୍ଟ ଭାବଧାରାରେ ନୈତିକତା, ସଦ୍‌ଗୁଣ ବା କର୍ତ୍ତବ୍ୟର କେବଳ ସାଧନ ମୂଲ୍ୟ ରହିଛି । ଏହାର ସ୍ୱତଃମୂଲ୍ୟ ନାହିଁ । ପ୍ଲେଟୋ ନୈତିକତାକୁ ସାଧଭାବରେ ଗ୍ରହଣ କରନ୍ତି, ସୁତରାଂ ସଫିଷ୍ଟମାନଙ୍କର ବିଚାରକୁ ସେ ସମାଲୋଚନା କରିଛନ୍ତି ।

ପ୍ଲେଟୋଙ୍କ ମତରେ ସଦ୍‌ଗୁଣ ସୁଖ ନୁହେଁ କିମ୍ବା ଏହା କେବଳ ଠିକ୍ କାର୍ଯ୍ୟ ନୁହେଁ । ଏକ ଭୁଲ୍ ଆଧାର ଉପରେ ଯେପରି ଏକ ଯଥାର୍ଥ ମତ ରହିପାରେ, ଠିକ୍ ସେହିପରି ଏକ ଭ୍ରମାତ୍ମକ ଆଧାର ଉପରେ ଏକ ଠିକ୍ କାର୍ଯ୍ୟ କରାଯାଇପାରେ । ସଦ୍‌ଗୁଣ ବିଷୟରେ ଏକ ସ୍ୱଷ୍ଟ ଧାରଣା ରଖିବା ପାଇଁ କେଉଁ କାର୍ଯ୍ୟ ଠିକ୍ ତାହା କେବଳ ଜାଣିବା ଯଥେଷ୍ଟ ନୁହେଁ, କିନ୍ତୁ ଏହା କାହିଁକି ଠିକ୍ ତାହା ଜାଣିବା ଆବଶ୍ୟକ । ଉତ୍ତମ ମୂଲ୍ୟବୋଧ କ'ଣ ସେ ବିଷୟରେ ଏକ ବୌଦ୍ଧିକ ସ୍ୱଷ୍ଟତା ରହିଲେ ପ୍ରକୃତରେ ସଦ୍‌ଗୁଣ କେଉଁ ଉତ୍ତମ କାର୍ଯ୍ୟକୁ ବୁଝାଏ ତାହା ବୁଝିହେବ । ଏହି ପୃଷ୍ଠଭୂମିରେ ଦାର୍ଶନିକ ସଦ୍‌ଗୁଣ (philosophic virtue) ଓ ପାରଂପରିକ ସଦ୍‌ଗୁଣ (customary virtue) ଭିତରେ

କ'ଣ ପାର୍ଥକ୍ୟ ରହିଛି ତାହା ପ୍ଲେଟୋ ଦର୍ଶାଇଛନ୍ତି । ତାଙ୍କ ମତରେ ଦାର୍ଶନିକ ସଦ୍‌ଗୁଣ ଯୁକ୍ତିଶୀଳ ଆଧାର ଉପରେ ପର୍ଯ୍ୟବସିତ । ଏହା କେଉଁ ନିୟମ ବା ସିଦ୍ଧାନ୍ତ ଭିତ୍ତିକ ତାର ସ୍ପଷ୍ଟ ଚିତ୍ର ଏଥିରେ ରହିଥାଏ । ପାରଂପରିକ ସଦ୍‌ଗୁଣ ଉତ୍ତମ କାର୍ଯ୍ୟ ହେଲେ ମଧ୍ୟ ତାହାର ଆଧାର ଭିନ୍ନ । ସମାଜର ପରଂପରା, ପ୍ରଥା, ଉତ୍ତମ ପ୍ରୋତ୍ସାହନ, ସମ୍ବେଦନଶୀଳ ଅନୁଭୂତି, ଆବେଗିକ ଉତ୍ତମତା ଇତ୍ୟାଦି ମଧ୍ୟ ସମାଜରେ ସଦ୍‌ଗୁଣ ପ୍ରସାର ପାଇଁ ସହାୟତା କରିଥାନ୍ତି । ସାଧାରଣତଃ ସମାଜରେ ଦେଖାଯାଏ ଯେ ଅନେକ ବ୍ୟକ୍ତି ଯେଉଁପରି କାର୍ଯ୍ୟ କରନ୍ତି, ଅନ୍ୟମାନେ ସେମାନଙ୍କୁ ଅନୁକରଣ କରନ୍ତି । ସମାଜରେ ଯେହେତୁ କିଛି ବ୍ୟକ୍ତି ଉତ୍ତମ ବ୍ୟବହାର ଦେଖାନ୍ତି, ସାମାଜିକ ଶୃଂଖଳା ମାନନ୍ତି ଅନ୍ୟମାନେ ସେମାନଙ୍କ ପଦାଙ୍କ ଅନୁଧାବନ କରନ୍ତି । ସମାଜର ପ୍ରଚଳିତ ବିଧି, ବ୍ୟବସ୍ଥା, ନୀତି, ନିୟମକୁ ବହୁ ଲୋକ ମାନନ୍ତି । ଏହାକୁ ପ୍ଲେଟୋ ପାରଂପରିକ ସଦ୍‌ଗୁଣ କହିଛନ୍ତି । ଅନେକ ଲୋକ ଯାହା କରନ୍ତି ସେସବୁ ସମାଜ ପାଇଁ ହିତକାରୀ ହୋଇପାରେ, ତେବେ ସେମାନେ ଏପରି କରିବା ପଶ୍ଚାତରେ ଥିବା କାରଣ ବିଷୟରେ ସଚେତନ ନଥାନ୍ତି । ପିଂପୁଡିମାନେ ବା ମହୁମାଛିମାନେ ଯେପରି ସଂଘବଦ୍ଧ ଭାବରେ କାର୍ଯ୍ୟକରନ୍ତି, ଅନେକ ବ୍ୟକ୍ତି ସମାଜରେ ସେହିପରି କାର୍ଯ୍ୟକରିବା ଦେଖାଯାଏ । ଏହା ହିଁ ସମାଜର ଏକ ପ୍ରଚଳିତ ଧାରା ଯେ ବହୁ ଲୋକ ଯେଉଁ ରାସ୍ତାରେ ଯା'ନ୍ତି, ଅନ୍ୟମାନେ ସେହି ରାସ୍ତା ଅବଲମ୍ବନ କରନ୍ତି । ଏପରିକି ଗ୍ରୀକ୍ ସମାଜର ବହୁ ରାଜନୀତିଜ୍ଞ ଓ ବୁଦ୍ଧିମାନ ଲୋକ ମଧ୍ୟ ଦାର୍ଶନିକ ସଦ୍‌ଗୁଣ ବିଷୟରେ କୌଣସି ଧାରଣା ପୋଷଣ କରନ୍ତି ନାହିଁ ବୋଲି ପ୍ଲେଟୋ ଉଲ୍ଲେଖ କରିଛନ୍ତି । ଆମେ ଭାଷା ମାଧ୍ୟମରେ ଆମ ମନର ଭାବନା, ଆବେଗ ଓ ସଂଳାପ ଅନ୍ୟ ପାଖରେ ବ୍ୟକ୍ତ କରିଥାଏ । ଆମେ ଠିକ୍ ଭାବରେ ଭାଷା ମାଧ୍ୟମରେ ଅନ୍ୟ ସହ ସଂପର୍କ କଲେ ମଧ୍ୟ, ଭାଷାର ବ୍ୟାକରଣ ଗତ ନିୟମ ବିଷୟରେ ସଚେତନ ନ ଥାଉ । ଠିକ୍ ସେହିପରି ସଦ୍‌ଗଣକୁ ଅନୁକରଣ କରିବା ଓ ସଦ୍‌ଗୁଣ ପଶ୍ଚାତର କାରଣ ଜାଣିବା ଦୁଇଟି ପୃଥକ୍ ବିଷୟ ।

ସକଳ ସଦ୍‌ଗୁଣ, ମାନବିକ ମୂଲ୍ୟବୋଧ, ନୈତିକ ଆଦର୍ଶଚୟ ବିଷୟରେ କେତେକ ଅନୁଶୀଳନ କରିଥାନ୍ତି । ଜୀବନରେ କ'ଣ ଶ୍ରେୟ ? ଏହି ସକଳ ନୈତିକ ପ୍ରସଙ୍ଗ ନୀତିଶାସ୍ତ୍ରର ପରିସରରେ ଆଲୋଚିତ ହୋଇଥାଏ । ନୈତିକ କାର୍ଯ୍ୟର ସ୍ୱତଃମୂଲ୍ୟ ରହିଛି ନା ତାହାର କେବଳ ସାଧନ-ମୂଲ୍ୟ ରହିଛି ? ଉତ୍ତମତା, ମହନୀୟତା, ଉତ୍କୃଷ୍ଟତା ଇତ୍ୟାଦି ଆଦର୍ଶମାନ କାହିଁକି ଉତ୍ତମ ? 'ଉତ୍ତମ' କହିଲେ ଯଥାର୍ଥରେ କ'ଣ ବୁଝାଯାଏ ? ଜୀବନର ଚରମ ଲକ୍ଷ୍ୟ ବା ପରମାର୍ଥ କହିଲେ କ'ଣ ଭାବନା ପ୍ରକାଶ ପାଏ ? ନୀତିଶାସ୍ତ୍ର ବା ଆଚାରମୀମାଂସା ପରିସରରେ ଏହି ସବୁ ପ୍ରଶ୍ନର-ଗମ୍ଭୀର ଚର୍ଚ୍ଚା ହେବା ଦେଖାଯାଏ ।

ଉପରେ ସୂଚିତ ପ୍ରସଙ୍ଗ ଉପରେ ପ୍ଲେଟୋଙ୍କ ମତ ଚର୍ଚ୍ଚା କରିବା ପୂର୍ବରୁ ଏ କ୍ଷେତ୍ରରେ କିଛି ସତର୍କତା ଆବଶ୍ୟକ । ପ୍ଲେଟୋ ନୈତିକ ପ୍ରସଙ୍ଗ ଉପରେ ଆଲୋଚନା କରିବା ସମୟରେ ଏହାର ଲକ୍ଷ୍ୟକୁ ସୁଖ ବୋଲି କହିବା ଦେଖାଯାଏ । ଅର୍ଥାତ୍ ନୈତିକ ଆଚରଣ କ୍ଷେତ୍ରରେ ସୁଖର ପ୍ରସଙ୍ଗ ସେ ଅବତାରଣା କରିବା ଜଣାଯାଏ । ଏଥିରୁ ହୁଏତ ଅନୁମାନ କରାଯାଏ ଯେ ପ୍ଲେଟୋ ହେଉଛନ୍ତି ଉପଯୋଗିତାବାଦୀ । ବେଂଥାମ ଓ ମିଲ୍ ଆଧୁନିକ

ଯୁଗରେ ଉପଯୋଗିତାବାଦ (utilitarianism) ର ପ୍ରବର୍ତ୍ତକ । ଉପଯୋଗିତାବାଦ ଅନୁଯାୟୀ ନୈତିକତାର ଚରମ ଲକ୍ଷ୍ୟ ହେଉଛି ସୁଖ ପ୍ରାପ୍ତି । ଏହାନୁସାରେ ଯେଉଁ କାର୍ଯ୍ୟର ପରିଣାମ ସୁଖପ୍ରଦ ତାହା ଯଥାର୍ଥ, ନଚେତ୍ ତାହା ଯଥାର୍ଥ ନୁହେଁ । ଉପଯୋଗିତାବାଦ ଆଧୁନିକ କାଳରେ ଏକ ନୈତିକ ମାନକ ଭାବେ ସ୍ୱୀକୃତ । ତେବେ ଏହି ଦୃଷ୍ଟିରୁ ପ୍ଲେଟୋ ଆଦୌ ଉପଯୋଗିତାବାଦୀ ନଥିଲେ, ଏପରିକି ତାଙ୍କ ଦାର୍ଶନିକ ଭାବଧାରା ଉପଯୋଗିତାବାଦକୁ ପୂର୍ଣ୍ଣଭାବରେ ଅସ୍ୱୀକାର କରେ । ଆଧୁନିକ ଉପଯୋଗିତାବାଦକୁ ସେ ବରଂ ସଫିଷ୍ଟ ଦର୍ଶନ ସହ ସମାନ କରି ଏହାକୁ ସମାଲୋଚନା କରିବେ । ସଫିଷ୍ଟ ଦର୍ଶନ ଓ ମିଲ୍‌ଙ୍କ ଉପଯୋଗିତାବାଦ ମଧ୍ୟରେ ସାମଂଜସ୍ୟ ରହିଛି ଓ ପାର୍ଥକ୍ୟ ମଧ୍ୟ ରହଛି । ସଫିଷ୍ଟମାନେ ସଦ୍‌ଗୁଣକୁ ସୁଖ ସହିତ ସମାନ କରିଛନ୍ତି, ତେବେ ସେମାନେ କେବଳ ବ୍ୟକ୍ତିଗତ ସୁଖ ଉପରେ ପ୍ରାଧାନ୍ୟ ଦେଇଛନ୍ତି । ମିଲ୍ ସୁଖକୁ ପ୍ରାଧାନ୍ୟ ଦେଇଥିଲେ ମଧ୍ୟ ଜନସମୁଦାୟର ସୁଖ ବିଷୟ ଅବତାରଣା କରିଛନ୍ତି । ସେହି କାର୍ଯ୍ୟ ନୈତିକ ମାନଦଣ୍ଡରୁ ଯଥାର୍ଥ ଯାହା ବହୁ ବ୍ୟକ୍ତିଙ୍କୁ ଅଧିକ ସୁଖ ଦେବାକୁ ଉଦ୍ଦିଷ୍ଟ । ସଫିଷ୍ଟମାନଙ୍କ ମତଠାରୁ ଏହି ମତର ଗୁଣାତ୍ମକ ମୂଲ୍ୟ ବହୁତ ଅଧିକ । ତେବେ ସଫିଷ୍ଟମାନଙ୍କ ପରି ଏହି ମତ ବି ନୈତିକତାକୁ ବୌଦ୍ଧିକତା ଉପରେ ନିର୍ମାଣ ନକରି କେବଳ ଅନୁଭୂତି ଉପରେ ପ୍ରତିଷ୍ଠା କରିଛି । ସେହିପରି ମିଲ୍‌ଙ୍କ ମତ ନୈତିକତାର ସ୍ୱତଃମୂଲ୍ୟକୁ ଗୁରୁତ୍ୱ ନ ଦେଇ ଏହାକୁ ସାଧନ ମୂଲ୍ୟ ଦେଇଛି । ମିଲ୍ ନୈତିକତାର ଲକ୍ଷ୍ୟ ସୁଖ  ବୋଲି ଯେପରି ଗ୍ରହଣ କରିଛନ୍ତି, ପ୍ଲେଟୋଙ୍କ ଭାଷା ମଧ୍ୟ ସେହିପରି ଅବବୋଧ ମନେହୁଏ । ପ୍ଲେଟୋ ବି ସୁଖକୁ ଗୁରୁତ୍ୱ ଦେଇଛନ୍ତି । ତେବେ ସୁଖ କହିଲେ ପ୍ରକୃତରେ କ'ଣ ବୁଝାଏ ? ସୁଖର ସ୍ୱରୂପକୁ କିପରି ସ୍ଥିର କରାଯିବ ? ମିଲ୍ ଯେଉଁ ଅର୍ଥରେ ସୁଖକୁ ନେଉଛନ୍ତି ପ୍ଲେଟୋ କ'ଣ ସେହି ଅର୍ଥରେ ସୁଖକୁ ଗ୍ରହଣ କରୁଛନ୍ତି ନା ଭିନ୍ନ ଅର୍ଥରେ ?

ପ୍ରକୃତରେ ମିଲ୍ ଯେଉଁ ଅର୍ଥରେ ସୁଖକୁ ଗ୍ରହଣ କରୁଛନ୍ତି ତାହାକୁ ତୃପ୍ତି କୁହାଯାଇପାରିବ । ସୁଖ ବା ତୃପ୍ତିକୁ ଆନନ୍ଦଠାରୁ ପୃଥକ୍ କରିହେବ । ଜଣଙ୍କର ଇଚ୍ଛା ପୂରଣ ହେଲେ ଜଣେ ସେଥିରୁ ତୃପ୍ତି ବା ସୁଖ ପାଇଥାଏ । ଜଣଙ୍କର  ଇଚ୍ଛା ବା କାମନା ପୂରଣ ହେଲେ ସେ ସୁଖଲାଭ କରିବା ଏକ ସାଧାରଣ ଅନୁଭବ । ଜଣଙ୍କର ଇଚ୍ଛା ମହତ୍ତର ହୋଇପାରେ କିମ୍ବା ନିମ୍ନତର ହୋଇପାରେ ତାହା ପୂରଣ ଦ୍ୱାରା ଜଣେ ସୁଖଲାଭ କରିବା ଏକ ସାଧାରଣ କଥା । ପ୍ଲେଟୋ କିନ୍ତୁ ଏହି ଅର୍ଥରେ ସୁଖ (pleasure) କୁ ଗ୍ରହଣ କରୁ ନାହାନ୍ତି, ସେ ସୁଖ କହିଲେ ଆନନ୍ଦ (happiness) ହିଁ ବୁଝୁଛନ୍ତି । ଜୀବନର ଏକ ସୁସଂହତ ଶ୍ରେୟସାଧନକୁ ପ୍ଲେଟୋ ଆନନ୍ଦ ଭାବରେ ଗ୍ରହଣ କରିବେ । ଜଣେ ବ୍ୟକ୍ତିର ଆତ୍ମା ଯେଉଁ ଶ୍ରେୟର ଅଧିକାରୀ ହେବା ଆବଶ୍ୟକ, ସେ ଯଦି ସେହି ଲକ୍ଷ୍ୟ ଦିଗରେ ଜୀବନ ଅତିବାହିତ କରନ୍ତି ତେବେ ତାଙ୍କୁ ଏକ ସଫଳ ବ୍ୟକ୍ତି ବୋଲି କହିହେବ । ଜଣେ ନିଜ ଜୀବନଧାରାରେ ନ୍ୟାୟବାନ, ନୀତିମାନ ଓ ଆଦର୍ଶବାନ ହେଲେ ସେ ଆନନ୍ଦର ଅଧିକାରୀ ବୋଲି ପ୍ଲେଟୋ ମତପୋଷଣ କରିବେ । ଯେଉଁ ବ୍ୟକ୍ତିମାନେ ଜୀବନରେ ସତ୍ୟ, ନ୍ୟାୟ ପଥରେ ରହି ଜୀବନ ଅତିବାହିତ କରିଛନ୍ତି, ସେମାନେ ଯେତେ ପ୍ରତିବନ୍ଧକ, ଦୁଃଖ ଓ ମନ୍ଦର ସମ୍ମୁଖୀନ୍ ହେଲେ ମଧ୍ୟ ସେମାନେ ସଫଳ ଜୀବନର ଅଧିକାରୀ । ସେମାନଙ୍କ ଜୀବନରେ ସୁଖ, ତୃପ୍ତି ନ ଥାଇପାରେ ବରଂ ତାର ବିପରୀତ ପରିସ୍ଥିତି ଥାଇପାରେ ତଥାପି ସେମାନେ ଯେ ପ୍ରକୃତରେ ସୁଖ ଓ

ଆନନ୍ଦର ଅଧିକାରୀ ଏହା କୁହାଯାଇପାରେ । କାରଣ ସେମାନେ ଜବନର ପରମାର୍ଥ ଦିଗରେ ଜୀବନ ଅତିବାହିତ କରିଛନ୍ତି । ପ୍ଲେଟୋ ଏହିଦୃଷ୍ଟିରୁ ଜୀବନର ପରମାର୍ଥ (summum bonum) କୁ ସୁଖ ବା ଆନନ୍ଦ ଭାବରେ ଗ୍ରହଣ କରୁଛନ୍ତି । ପରମାର୍ଥ ହିଁ ଜୀବନର ସର୍ବଶ୍ରେଷ୍ଠ ଆନନ୍ଦ । ସୁତରାଂ ପ୍ଲେଟୋ ଯେତେବେଳେ ସୁଖ ବା ଆନନ୍ଦ ବିଷୟରେ କହୁଛନ୍ତି ସେ ଏହାକୁ ପରମାର୍ଥ ଅର୍ଥରେ ହିଁ ଗ୍ରହଣ କରୁଛନ୍ତି । ତେବେ ପ୍ରଶ୍ନ ହେବ-ପରମାର୍ଥ କହିଲେ କ'ଣ ? ପରମାର୍ଥ କୁହନ୍ତୁ ବା ଆନନ୍ଦ କୁହନ୍ତୁ ଏହାଦ୍ୱାରା ପ୍ଲେଟୋ କ'ଣ ବୁଝୁଛନ୍ତି ?

ପ୍ଲେଟୋଙ୍କର ଉତ୍ତର ଭିତରେ ତାଙ୍କ ନୀତିଶାସ୍ତ୍ରର ସିଦ୍ଧାନ୍ତ ସଂଶ୍ଳିଷ୍ଟ । ପ୍ଲେଟୋଙ୍କ ଚିନ୍ତାଧାରା ଭିତରେ ଥିବା ଦୁଇଟି ପୃଥକ୍ ଦୃଷ୍ଟିଭଙ୍ଗୀ ଏ କ୍ଷେତ୍ରରେ ବିଚାର୍ଯ୍ୟ । ପ୍ଲେଟୋଙ୍କ ଦର୍ଶନରେ ସେ ଶୁଦ୍ଧସତ୍ତାକୁ ବହୁ ପ୍ରାଧାନ୍ୟ ଦେଇଛନ୍ତି ଓ ଶୁଦ୍ଧସତ୍ତାକୁ ପରମ ତତ୍ତ୍ୱ ଭାବରେ ଗ୍ରହଣ କରିଛନ୍ତି । ତାଙ୍କ ମତରେ ଯାହା ଇନ୍ଦ୍ରିୟାନୁଭୂତିର ବସ୍ତୁ ତାହା ଅବାସ୍ତବ ଓ ତାହା ଶୁଦ୍ଧସତ୍ତାମାନଙ୍କୁ ଜାଣିବା ପାଇଁ ଆତ୍ମାର ପ୍ରତିବନ୍ଧକ । ଶୁଦ୍ଧସତ୍ତାମାନଙ୍କୁ ସେମାନଙ୍କ ସ୍ୱରୂପରେ ଅବବୋଧ କରିବା ପାଇଁ ଇନ୍ଦ୍ରିୟ ଜନିତ ବସ୍ତୁ ବାଧା ସୃଷ୍ଟି କରିଥାଏ । ତେଣୁ ଇନ୍ଦ୍ରିୟାନୁଭୂତିର ପୃଥିବୀ ହେଉଛି ସ୍ୱରୂପରେ ମନ୍ଦ ବା ଅଶୁଭ (evil) । ସୁତରାଂ ଇନ୍ଦ୍ରିୟାନୁଭୂତି ସଂସାରରୁ ସଂପର୍କ ଛିନ୍ନ କରି, ଜାଗତିକ ଘଟଣାବଳୀରୁ ନିଜକୁ ପ୍ରତ୍ୟାହାର କରି ଓ ଏପରିକି ଇନ୍ଦ୍ରିୟର ସୌନ୍ଦର୍ଯ୍ୟାନୁଭୂତିରୁ ନିଜକୁ ଦୂରେଇ ନେଇ ଦାର୍ଶନିକ ବିଷୟ ଉପରେ ମନନଶୀଳ ହେବାକୁ ସେ ଯଥାର୍ଥ ସଦ୍‌ଗୁଣ ବୋଲି ଅଭିହିତ କରିବେ । ଦାର୍ଶନିକ ଚିନ୍ତନ ଓ ଅନୁଶୀଳନ ହେଉଛି ଜୀବନର ପରମାର୍ଥ ଓ ଶ୍ରେୟ ।

ଏ କ୍ଷେତ୍ରରେ ଦ୍ୱିତୀୟ ସମ୍ଭାବନାଟିଏ ମଧ୍ୟ ରହିପାରେ । ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁଜଗତ ବିଷୟରେ ଏହା କୁହାଯାଇପାରେ ଯେ ପ୍ରତ୍ୟେକ ବସ୍ତୁ ଏକ ଶୁଦ୍ଧସତ୍ତାର ପ୍ରତିଲିପି (copy) ଓ ପ୍ରତ୍ୟେକ ବସ୍ତୁ ତାର ଶୁଦ୍ଧସତ୍ତାରେ ଅଂଶଗ୍ରହଣ କରିଥାଏ । ବାସ୍ତବ ଜଗତ ହେଉଛି ଆଦର୍ଶ ବା ଶୁଦ୍ଧସତ୍ତା ଜଗତ (World of Ideas ) ର ଅଭିବ୍ୟକ୍ତି । ଶୁଦ୍ଧସତ୍ତା ଜଗତ ବିଷୟରେ ଜାଣିବାର ଆଧାର ହେଉଛି ବାସ୍ତବ ଜଗତ । ଯଦି ବାସ୍ତବ ଜଗତ ଆଦର୍ଶ ଜଗତକୁ ଜାଣିବାର ପ୍ରବେଶ ଦ୍ୱାର, ତେବେ ଏହି ବାସ୍ତବ ଜଗତ ବି ଅନେକ ମୂଲ୍ୟ ବହନ କରେ । ସୁତରାଂ ବାସ୍ତବ ଜଗତ ହେଉଛି ଆମ ଇନ୍ଦ୍ରିୟାନୁଭୂତିର ଜଗତ । ଏହି ଜଗତର ଘଟଣାବଳୀ, ସୌନ୍ଦର୍ଯ୍ୟ ଓ ଆମେ ବଞ୍ଚୁଥିବା ଜୀବନ ବି ଆମ ପାଇଁ ଅର୍ଥ ରଖେ ।

ପ୍ଲେଟୋଙ୍କ ଚିନ୍ତାଧାରାରେ ଏହିପରି ଅସଂଗତି ରହିଛି । ଶୁଦ୍ଧସତ୍ତାମାନଙ୍କୁ ପରମ ତତ୍ତ୍ୱ ଭାବରେ ଗ୍ରହଣ କଲାପରେ ବି ସେଠାରୁ ଦୁଇ ପ୍ରକାରର ଜୀବନଦୃଷ୍ଟି ଆସିପାରେ । ଏହି ଦୁଇ ପ୍ରକାର ଦୃଷ୍ଟିଭଙ୍ଗୀ ଭିତରେ ଅସଂଗତି ରହିବା ସ୍ୱାଭାବିକ ମନେହୁଏ ।

ଏହି ଦୁଇ ଅସଂଗତି ଭିତରେ କୁହାଯାଇପାରେ ଯେ ପ୍ଲେଟୋ ଥିଲେ ଯଥେଷ୍ଟ ଉଦାର ଓ ଦୃଷ୍ଟିଭଙ୍ଗୀରେ ବେଶ୍ ମାନବିକ । ଏଣୁ ସଂସାର ପ୍ରତି ଏକ ବୈରାଗ୍ୟ ଭାବ ଆଣି କେବଳ ଦାର୍ଶନିକ ଅନୁଶୀଳନ ଭିତରେ ଜୀବନ ଅତିବାହିତ କରିବା ତାଙ୍କର ଆଭିମୁଖ୍ୟ ନ ଥିଲା । ବୈରାଗ୍ୟ ଜୀବନଦୃଷ୍ଟି ଓ ସ୍ୱାର୍ଥପରତାର ଦର୍ଶନ ସେ ପ୍ରସାର

କରିନାହାନ୍ତି । ସେହିପରି କେବଳ ଏକ ସୁଖବାଦୀ ଜୀବନ ଧାରାକୁ (utilitarian view of life) ସେ ବି ଗୁରୁତ୍ୱ ଦେଉ ନଥିଲେ । ସଫିଷ୍ଟ ସୁଖବାଦୀ ଭାବଧାରାର ସେ ଥିଲେ ସମାଲୋଚକ । ସେ ନା ଥିଲେ ବୈରାଗ୍ୟବାଦୀ ନା ଥିଲେ ସ୍ୱାର୍ଥପର ସୁଖବାଦୀ, ବରଂ ସେ ଗ୍ରୀକ୍ ମାନଙ୍କର ଜୀବନାଦର୍ଶ ପ୍ରତି ଅଙ୍ଗୀକାର ଥିଲେ । ଜୀବନର ଉତ୍କର୍ଷ ଓ ସମାଜର ସର୍ବାଙ୍ଗୀନ ବିକାଶ ଥିଲା ଗ୍ରୀକ୍ ଜାତିର ମୂଲ୍ୟବୋଧ । ବ୍ୟକ୍ତି ଭିତରେ ରହିଥିବା ସକଳ ସାମର୍ଥ୍ୟର ଉପଯୁକ୍ତ ବିକାଶ ଥିଲା ସେମାନଙ୍କ ଆଦର୍ଶ । ଗ୍ରୀକ୍‌ମାନେ ଥିଲେ ଏକ ପ୍ରାଣପ୍ରାଚୁର୍ଯ୍ୟ ଭରା ଜାତି ଓ ସେହି ଆଦର୍ଶର ପ୍ଲେଟୋ ଥିଲେ ସମର୍ଥକ ।

ପ୍ଲେଟୋ ଜୀବନର ଯେଉଁ ପରମାର୍ଥର ପରିକଳ୍ପନା କରିଥିଲେ ତାହା କେବଳ ଏକ ଶ୍ରେୟ ହାସଲ ପାଇଁ ଉଦ୍ଦିଷ୍ଟ ନଥିଲା । ଏହା ଥିଲା ବିଭିନ୍ନ ଶ୍ରେୟ ବା ଉତ୍କର୍ଷର ସମନ୍ୱିତ ଅଭିବ୍ୟକ୍ତି । ପ୍ରଥମ ଓ ଗୁରୁତ୍ୱପୂର୍ଣ୍ଣ ଶ୍ରେୟ ଥିଲା ଶୁଦ୍ଧସତ୍ତାମାନଙ୍କ ବିଷୟରେ ସମୁଚିତ ଜ୍ଞାନ । ଦାର୍ଶନିକ ଦୃଷ୍ଟି ନେଇ ଶୁଦ୍ଧସତ୍ତାମାନଙ୍କୁ ଜାଣିବାର ଆଭିମୁଖ୍ୟକୁ ସେ ପ୍ରାଧାନ୍ୟ ଦେଇଥିଲେ । ଦ୍ୱିତୀୟରେ ଇନ୍ଦ୍ରିୟଗ୍ରାହ୍ୟ ଜଗତରେ ଶୁଦ୍ଧସତ୍ତାମାନେ କିପରି ପ୍ରତିଫଳିତ ହୋଇଛନ୍ତି ସେ ବିଷୟରେ ଅବବୋଧ ରହିବା ଆବଶ୍ୟକ । ସଂସାରରେ ବ୍ୟକ୍ତ ହୋଇଥିବା ସଂହତି, ଶୃଂଖଳା ଓ ସୌନ୍ଦର୍ଯ୍ୟ ତଥା ମାନବିକ ସଂପର୍କ ଭିତରେ ଥିବା ପ୍ରେମ, ଦରଦ ଇତ୍ୟାଦି ବିଷୟରେ ଗମ୍ଭୀର ଭାବେ ବୁଝିବା ଦରକାର । ତୃତୀୟରେ ବିଭିନ୍ନ ବିଷୟରେ ଜ୍ଞାନ ଓ କଳାର ବିକାଶ ମଧ୍ୟ ଜୀବନ ପାଇ ଅର୍ଥ ରଖେ । ଚତୁର୍ଥରେ ଯାହା ସବୁ ମନ୍ଦ, କୁତ୍ସିତ ସେସବୁକୁ ବାଦ୍ ଦେଇ ଶୁଦ୍ଧ, ମାର୍ଜିତ ଓ ପ୍ରୀତିମୟ ସୁଖରେ ସଂପୃକ୍ତ ହେବା ବି ଜୀବନ ପାଇଁ ଆବଶ୍ୟକ । ପ୍ଲେଟୋ ଜୀବନର ଶ୍ରେୟ ବା ପରମାର୍ଥ କ୍ଷେତ୍ରରେ ଚାରିଟି ଲକ୍ଷ୍ୟକୁ ପ୍ରାଧାନ୍ୟ ଦେଇଛନ୍ତି ।

ଏତଦ୍‌ବ୍ୟତୀତ ସଦ୍‌ଗୁଣ ସଂପର୍କରେ ଏକ ସ୍ୱତନ୍ତ୍ର ସିଦ୍ଧାନ୍ତ ପ୍ଲେଟୋ ଅବତାରଣା କରିଛନ୍ତି । ସେ ଦାର୍ଶନିକ ସଦ୍‌ଗୁଣ ଓ ପାରଂପରିକ ସଦ୍‌ଗୁଣ ଭିତରେ ପାର୍ଥକ୍ୟ କରିଥିବା ପୂର୍ବରୁ ଦର୍ଶାଯାଇଛି । ଏ କ୍ଷେତ୍ରରେ ସେ ଦାର୍ଶନିକ ସଦ୍‌ଗୁଣକୁ ଅଧିକ ପ୍ରାଧାନ୍ୟ ଦେଇଛନ୍ତି । ତେବେ ପାରଂପରିକ ସଦ୍‌ଗୁଣକୁ ସାଧନ କରି ଜଣେ ଦାର୍ଶନିକ ସଦ୍‌ଗୁଣର ଅଧିକାରୀ ହୋଇପାରିବ ବୋଲି ପରିକଳ୍ପନା କରିଛନ୍ତି । ଦାର୍ଶନିକ ବା ବୌଦ୍ଧିକ ସଦ୍‌ଗୁଣ ଜଣେ ପ୍ରାଥମିକ ଅବସ୍ଥାରେ ହାସଲ କରିବା ସମ୍ଭବ ନୁହେଁ । ତେବେ ଏହି ଲକ୍ଷ୍ୟ ହାସଲ ପାଇଁ ସେ ପାରଂପରିକ ସଦ୍‌ଗୁଣକୁ ମାଧ୍ୟମ କରି ପାରିବ । ଯାହା ପାଖରେ ବୌଦ୍ଧିକ ବା ତର୍କବୁଦ୍ଧୀୟ ସାମର୍ଥ୍ୟର ଯଥେଷ୍ଟ ବିକାଶ ହୋଇ ନାହିଁ ତାଙ୍କ ପାଖରେ ପାରଂପରିକ ଆଦର୍ଶ ବିଷୟ ପ୍ରଥମେ ସ୍ଥାନ ପାଇବା ଦରକାର । ଉତ୍ତମ ଅଭ୍ୟାସ, ପାରଂପରିକ ଜୀବନଶୈଳୀ ଓ ସମାଜର ପ୍ରଚଳିତ ମୂଲ୍ୟବୋଧ ପ୍ରଥମେ ତାଙ୍କ ବ୍ୟକ୍ତିତ୍ୱର ଅଂଶ ହେବା ଆବଶ୍ୟକ । ଏହା ମାଧ୍ୟମରେ ତାଙ୍କ ପାଖରେ ବୌଦ୍ଧିକ ସାମର୍ଥ୍ୟ ବୃଦ୍ଧି ପାଇପାରିବ । ବୌଦ୍ଧିକ ସାମର୍ଥ୍ୟର ଅଧିକାରୀ ହେବା ପରେ ସେ ଦାର୍ଶନିକ ସଦ୍‌ଗୁଣକୁ ଜୀବନର ଶ୍ରେୟ ଭାବରେ ନେଇପାରିବେ ।

ସକ୍ରେଟିସ୍ ସଦ୍‌ଗୁଣ ଯେ ଏକ ଏହା ଦର୍ଶାଇଛନ୍ତି । ପ୍ଲେଟୋ ତାଙ୍କ ରଚନାର ଆରମ୍ଭ ଦିନମାନଙ୍କରେ ସକ୍ରେଟିସ୍‌ଙ୍କର ଏହି ମତକୁ ଗ୍ରହଣ କରୁଥିଲେ । ପରବର୍ତ୍ତୀ ସମୟରେ ତାଙ୍କର ଉପଲବ୍ଧି ହେଲା ଯେ ମନୁଷ୍ୟ

ସାମର୍ଥ୍ୟର ପ୍ରତ୍ୟେକ କ୍ଷେତ୍ରର ମହତ୍ତ୍ୱ ରହିଛି ଓ ପ୍ରତ୍ୟେକ ସାମର୍ଥ୍ୟର ଉପଯୁକ୍ତ ବିକାଶ ଏକ ଉତ୍କର୍ଷ ହାସଲ କରିପାରିବ । ତେବେ ପ୍ଲେଟୋ ସଦ୍‌ଗୁଣ ବା ଉତ୍କର୍ଷର ଏକତ୍ୱକୁ ପରିହାର କରିନାହାନ୍ତି କିନ୍ତୁ ବହୁବିଧ ସଦ୍‌ଗୁଣ ଭିତରେ ଯେ ଏକତ୍ୱ ରହିପାରିବ ଏହା ଗ୍ରହଣ କରିଛନ୍ତି । ବିଭିନ୍ନ ସଦ୍‌ଗୁଣମାନଙ୍କ ମଧ୍ୟରେ ଏକତ୍ୱ ରହିବାରେ କିଛି ଅସଂଗତି ନାହିଁ । ପ୍ଲେଟୋ ଚାରିଟି ପ୍ରମୁଖ ସଦ୍‌ଗୁଣର ବର୍ଣ୍ଣନା ଦେଇଛନ୍ତି । ଆତ୍ମାର ଯେଉଁ ତିନିଟି ଅଂଶ ବିଷୟରେ ପ୍ଲେଟୋ ଆଲୋଚନା କରିଛନ୍ତି ଏ ପ୍ରତ୍ୟେକଙ୍କ ପାଇଁ ଏକ ଏକ ଓ ପରେ ଏହି ତିନି ଗୁଣ ଭିତରେ ଏକ ସମନ୍ୱୟକାରୀ ଗୁଣ ଭାବେ ଅନ୍ୟ ଏକ ଗୁଣକୁ ନେଇଛନ୍ତି । ଆତ୍ମାର ଯେଉଁ ତିନିଟି ଅଂଶର ପ୍ଲେଟୋ କଳ୍ପନା କରିଛନ୍ତି ଯଥା ବିଚାରଶୀଳ ଅଂଶ ତଥା ଶୁଦ୍ଧ ଓ ଅଶୁଦ୍ଧ ଅଂଶ । ବିଚାରଶୀଳ ଅଂଶର ଉତ୍କର୍ଷ ହେଲା ପ୍ରଜ୍ଞା । ଶୁଦ୍ଧ ଭାଗର ଉତ୍କର୍ଷ ହେଲା ସାହସ ଓ ଅଶୁଦ୍ଧ ବା କାମନା ଅଂଶର ଉତ୍କର୍ଷ ହେଲା ଆତ୍ମସଂଯମ । ଆତ୍ମାର ବିଚାରଶୀଳ ଅଂଶଟି ଅମର, ପରନ୍ତୁ ଅବିଚାରଶୀଳ ଅଂଶଟି ମରଣଶୀଳ । ବ୍ୟକ୍ତିର ମୃତ୍ୟୁ ସହ ତାହାର ସାହସ ଓ ଆତ୍ମସଂଯମର ବି ଅବସାନ ବା ବିନାଶ ଘଟିଥାଏ । ତେବେ ଆତ୍ମାର ତିନି ଅଂଶର ସଦ୍‌ଗୁଣ ବା ଉତ୍କର୍ଷ ହେଲା ପ୍ରଜ୍ଞା, ସାହସ ଓ ଆତ୍ମସଂଯମ । ଏହି ତିନିଗୁଣର ଏକତ୍ୱ ଚତୁର୍ଥ ଗୁଣରେ ସମନ୍ୱିତ ହୋଇଥାଏ, ତାହା ହେଉଛି ନ୍ୟାୟ । ନ୍ୟାୟ ହେଉଛି ସଂହତି ଓ ସମନ୍ୱୟ ରକ୍ଷାକାରୀ ସଦ୍‌ଗୁଣ । ଯେତେବେଳେ ଆତ୍ମାର ଅଂଶମାନ ନିଜ ସଦ୍‌ଗୁଣର ଉତ୍କର୍ଷ ସାଧନ ଦିଗରେ ବ୍ରତୀ ହୁଅନ୍ତି ତାହାର ପରିଣାମ ସ୍ୱରୂପ ଚତୁର୍ଥ ସଦ୍‌ଗୁଣ ନ୍ୟାୟ ସେମାନଙ୍କୁ ସଂଯୋଜିତ କରି ତାହାର ସୁଫଳ ବ୍ୟକ୍ତିକୁ ଦେଇଥାଏ । ତେବେ ମୋଟ ଉପରେ ପ୍ରଜ୍ଞା, ସାହସ, ଆତ୍ମସଂଯମ ଓ ନ୍ୟାୟ ଏହି ଚାରିଟି ସଦ୍‌ଗୁଣକୁ ଚାରିଟି ଶ୍ରେଷ୍ଠ ସଦ୍‌ଗୁଣ (cardinal virtue) ଭାବରେ ପ୍ଲେଟୋ ଗ୍ରହଣ କରିଛନ୍ତି ।

ପ୍ଲେଟୋଙ୍କ ନୈତିକ ସିଦ୍ଧାନ୍ତର ଏହି ଆଲୋଚନା ପରିପ୍ରେକ୍ଷୀରେ ସାମାଜିକ ଜୀବନରେ ଏହାର ଉପଯୋଗିତା ନେଇ ସଂକ୍ଷିପ୍ତ ସୂଚନା ଦିଆଯାଇପାରେ । ପ୍ଲେଟୋ ଯେଉଁ ସମୟରେ ରହିଥିଲେ ଓ ସେସମୟରେ ଗ୍ରୀକ୍ ସମାଜର ଯେଉଁ ସାମାଜିକ ଆଦର୍ଶ ରହିଥିଲା ସେ ସେଥିରୁ ମୁକ୍ତ ହୋଇପାରି ନଥିଲେ । ଏହି ପୃଷ୍ଠଭୂମିରେ ସାମାଜିକ ଗୁରୁତ୍ୱ ବହନ କରୁଥିବା କେତେକ ବିଷୟରେ ପ୍ଲେଟୋଙ୍କ ଦୃଷ୍ଟିଭଙ୍ଗୀର ସଂକ୍ଷିପ୍ତ ସୂଚନା ଦିଆଯାଇପାରେ । ସାମାଜିକ ଜୀବନରେ ଗୁରୁତ୍ୱ ବହନ କରୁଥିବା କେତେକ ମାନବୀୟ ସମସ୍ୟା ଉପରେ ପ୍ଲେଟୋଙ୍କର ଦୃଷ୍ଟିଭଙ୍ଗୀ କ'ଣ ଥିଲା ତାହାର କେତୋଟି ବିଷୟ ଉପରେ ଆମେ ସାମାନ୍ୟ ଆଲୋଚନା କରିବା । ପ୍ଲେଟୋଙ୍କ ସମୟରେ ଗ୍ରୀକ୍ ସମାଜରେ ଲିଙ୍ଗଗତ ଭେଦଭାବ ରହିଥିଲା । ପ୍ଲେଟୋ ମଧ୍ୟ ମହିଳାମାନେ ପୁରୁଷମାନଙ୍କ ତୁଳନାରେ ନ୍ୟୂନ ବୋଲି ବିଶ୍ୱାସ କରୁଥିଲେ । ନାରୀ ଯେ ପୁରୁଷ ସହିତ ସବୁ କ୍ଷେତ୍ରରେ ସମାନ ଓ ସେମାନେ ପରସ୍ପରର ଅନୁପୂରକ ଏହି ଭାବନା ପ୍ଲେଟୋଙ୍କର ନଥିଲା । ସେ ନିଜ ଯୁଗର ବିଚାରଠାରୁ ଉର୍ଦ୍ଧ୍ୱକୁ ଯାଇପାରି ନଥିଲେ । ବରଂ ମହିଳାମାନଙ୍କ ଭିତରେ ରହିଥିବା ନାରୀସୁଲଭ ଭାବ ଯେ ପୁରୁଷମାନଙ୍କ ପାଖରେ ନାହିଁ ଏହା ସେଯୁଗର ଚିନ୍ତା ଚେତନାରେ ସ୍ଥାନ ପାଇନଥିଲା । ପୁରୁଷ ଓ ନାରୀ ଭିତରେ ରହିଥିବା ପାର୍ଥକ୍ୟ ଯେ ପରିମାଣାତ୍ମକ ସେ ଏହା ଭାବୁଥିଲେ । ତେବେ ଆଧୁନିକ ସମୟରେ ବିଚାର କରାଯାଏ ନାରୀ ପୁରୁଷ ଭିତରେ ପାର୍ଥକ୍ୟ କେବଳ ଶାରୀରିକ । ନୈତିକ ବା ଆଧ୍ୟାତ୍ମିକ

ମାନଦଣ୍ଡରୁ ସେମାନଙ୍କ ଭିତରେ ରହିଥିବା ଗୁଣ ସମାନ ହେଲେ ବି ମହିଳାମାନେ ପୁରୁଷ ମାନଙ୍କଠାରୁ ନ୍ୟୂନ ବୋଲି ପ୍ଲେଟୋ ଭାବୁଥିଲେ । ତେବେ ପୁରୁଷମାନେ ଯେଉଁ ଶିକ୍ଷା ପାଇବେ, ମହିଳାମାନେ ମଧ୍ୟ ସେହି ସମାନ ଶିକ୍ଷା ପାଇବାକୁ ଯୋଗ୍ୟ; ପ୍ଲେଟୋ ମହିଳାମାନଙ୍କୁ ଶିକ୍ଷାରୁ ବଞ୍ଚିତ କରିନାହାନ୍ତି । ଯଦିବା ସେମାନଙ୍କୁ ଶିକ୍ଷାର ଶୀର୍ଷକୁ ନେବାରେ କେତେକ ପ୍ରତିବନ୍ଧକ ରହିଛି । ପ୍ଲେଟୋ ମହିଳା ମାନଙ୍କର ଶିକ୍ଷା ପାଇଁ ଉଦାର ଥିଲେ ଓ ଏପରିକି ମହିଳା ମାନଙ୍କୁ ଦେଶରକ୍ଷା ପାଇଁ ଆବଶ୍ୟକ ମିଲିଟାରୀ ଶିକ୍ଷା ଦେବାର ସମର୍ଥକ ଥିଲେ ।

ନାରୀ, ପୁରୁଷ ଯେହେତୁ ପରସ୍ପରର ଅନୁପୂରକ ବିବାହ ଦ୍ୱାରା ସେମାନେ ପରସ୍ପରର ଅନୁଗାମୀ ହୋଇ ଜୀବନ ବଞ୍ଚିବାର ମୂଲ୍ୟବୋଧ ପ୍ଲେଟୋଙ୍କ ସମୟରେ ସୃଷ୍ଟି ହୋଇନଥିଲା । ସେ ମହିଳା ମାନଙ୍କୁ ପୁରୁଷମାନଙ୍କ ତୁଳନାରେ ନ୍ୟୂନ ମନେ କରୁଥିଲେ, ତେଣୁ ସେମାନେ ପରସ୍ପରର ସହଗାମୀ ହେବା ବିଷୟ ପ୍ଲେଟୋ ଚିନ୍ତା ବି କରିନଥିଲେ । ସନ୍ତାନ ଜନ୍ମ କରି ପରିବାର କରିବା ବିବାହର ମୁଖ୍ୟ ଉଦ୍ଦେଶ୍ୟ ବୋଲି ପ୍ଲେଟୋ ଭାବୁଥିଲେ । ପୁରୁଷର ପ୍ରାକୃତିକ ସହଯୋଗୀ ନାରୀ ନୁହଁ, ପରୁଷ ବୋଲି ପ୍ଲେଟୋ ଭାବୁଥିଲେ । ବିବାହ ବନ୍ଧନ ଏକ ଆଧ୍ୟାତ୍ମିକ ସମ୍ବନ୍ଧ । ଏହା ସହିତ ସହଯୋଗୀ ବା ସହଭାଗୀ ହେବାର ଭାବନା ସେ ଯୁଗର ବିଚାର କ୍ଷେତ୍ରକୁ ଆସିନଥିଲା । ସନ୍ତାନ କରିବା, ପରିବାର କରିବା ବିବାହ ବନ୍ଧନର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଏହା କେବଳ ଗ୍ରୀକ୍ ସମାଜ ନୁହେଁ, ଏହା  ଥିଲା ଅଧିକାଂଶ ସମାଜର ଆଦର୍ଶ । ପ୍ଲେଟୋ ଏହି କ୍ଷେତ୍ରରେ ସାମାଜିକ ଆଦର୍ଶଠାରୁ ଆଗକୁ ଯାଇପାରି ନଥିଲେ ।

ପ୍ଲେଟୋଙ୍କ ସମୟରେ ଗ୍ରୀକ୍ ସମାଜରେ ଦାସତ୍ୱ ପ୍ରଥା ରହିଥିଲା । ପ୍ଲେଟୋ ଦାସତ୍ୱ ପ୍ରଥାକୁ ବାରଣ କରିନାହାନ୍ତି । ତେବେ ସେ ଏହାକୁ ଯଥାର୍ଥ ବୋଲି ମଧ୍ୟ କହିନାହାନ୍ତି । କାରଣ ଏହି ପ୍ରଥା ଯେ ଅମାନବିକ ଏ ବିଷୟ ମଧ୍ୟ ଗ୍ରୀକ୍ ସାମାଜିକ ମୂଲ୍ୟବୋଧ କ୍ଷେତ୍ରକୁ ଆସିନଥିଲା । ଏହି ବ୍ୟବସ୍ଥା ଯେ ସାମାଜିକ ସହାବସ୍ଥାନର ଅଙ୍ଗ ଏହା ସେସମୟର ଯୁଗଚେତନା ଥିଲା ଯାହା ପ୍ଲେଟୋ ଗ୍ରହଣ କରିଥିଲେ । ତେବେ ଏ କ୍ଷେତ୍ରରେ ପ୍ଲେଟୋଙ୍କର ଏକ ମାନବିକ ଦିଗର ସୂଚନା ମିଳେ । ଦାସମାନଙ୍କ ପ୍ରତି ନ୍ୟାୟପୂର୍ଣ୍ଣ ଓ ମାନବିକ ବ୍ୟବହାରକୁ ସେ ପ୍ରାଧାନ୍ୟ ଦେଉଥିବା ଜଣାଯାଏ । ଦାସମାନଙ୍କୁ ସେ ସମୟରେ ସମ୍ଭବତଃ ନିଷ୍ଠୁର ବ୍ୟବହାର କରାଯାଉଥିଲା । ତେଣୁ ସେମାନଙ୍କ ପ୍ରତି କିଛି ସମ୍ବେଦନଶୀଳତା ପ୍ରକାଶ କରିଛନ୍ତି । ଦୃଢ଼ ହେବା ଓ ମାନବିକ ହେବା ଉଭୟକୁ ଗୁରୁତ୍ୱଦେବା ଭିତରେ ସେ କିଛି ଭାବପ୍ରବଣତା ବ୍ୟକ୍ତ କରିନାହାନ୍ତି । ତେବେ ଦାସମାନଙ୍କ ପ୍ରତି ତାଙ୍କର ଯେ କିଛି ଅନୁକଂପା ଥିଲା ଏହା ଜଣାଯାଏ ।

ନାରୀପୁରୁଷ ସମ୍ବନ୍ଧ, ମହିଳାମାନଙ୍କ ଶିକ୍ଷା, ବିବାହ, ଦାସପ୍ରଥା ଇତ୍ୟାଦି ସାମାଜିକ ସମସ୍ୟା ପ୍ରତି ପ୍ଲେଟୋ ନିଜ ସମୟର ପ୍ରଥାଠାରୁ ବିଶେଷ ଉର୍ଦ୍ଧ୍ୱକୁ ଯାଇପାରି ନାହାନ୍ତି, ଯଦିବା ସ୍ଥଳ ବିଶେଷରେ କିଛି ମାନବିକ ଉଦାରତା ପ୍ରତି ପ୍ରାଧାନ୍ୟ ଦେଇଛନ୍ତି । ତେବେ ଗୋଟିଏ କ୍ଷେତ୍ରରେ ତାଙ୍କର ମାନବିକ ସମ୍ବେଦନର ଚିତ୍ର ସ୍ପଷ୍ଟ ଭାବରେ ଦେଖିବାକୁ ମିଳେ । ସେତେବେଳର ସାମାଜିକ ବିଶ୍ୱାସ ଥିଲା ଯେ ଜଣେ ନିଜର ପ୍ରିୟ ଲୋକଙ୍କ ପ୍ରତି ଉତ୍ତମ

ବ୍ୟବହାର ଓ ଶତ୍ରୁମାନଙ୍କ ପ୍ରତି ମନ୍ଦ ଆଚରଣ ବା ନିଷ୍ଠୁରତା ଦେଖାଇବା ଆବଶ୍ୟକ । ଏହି ଭାବନାକୁ ପ୍ଲେଟୋ ବିରୋଧ କରିଛନ୍ତି । କୌଣସି ସ୍ଥିତିରେ ମନ୍ଦ ଆଚରଣ ବା ନିଷ୍ଠୁରତାକୁ ସେ ସମର୍ଥନ କରିନାହାନ୍ତି । ମନ୍ଦ ଆଚରଣ କୌଣସି ପରିସ୍ଥିତିରେ ଏକ ମାନବିକ କାର୍ଯ୍ୟ ନୁହେଁ ବୋଲି ସେ ଗ୍ରହଣ କରୁଥିଲେ । ମିତ୍ର, ଶତ୍ରୁ ନିର୍ବିଶେଷରେ ସମସ୍ତଙ୍କ ପ୍ରତି ଉତ୍ତମ ବ୍ୟବହାରକୁ ସେ ପ୍ରାଧାନ୍ୟ ଦେଉଥିଲେ । ବରଂ ଶତ୍ରୁମାନଙ୍କ ପ୍ରତି ଉତ୍ତମ ବ୍ୟବହାର ପ୍ରଦର୍ଶନ କରି ସେମାନଙ୍କୁ ବନ୍ଧୁରେ ପରିଣତ କରିବାକୁ ସେ ଉଚିତ ମନେ କରୁଥିଲେ । ମନ୍ଦକୁ ମନ୍ଦ ନୁହେଁ ବରଂ ଭଲଦ୍ୱାରା ପରିବର୍ତ୍ତନ କରିବା ତାଙ୍କ ନୈତିକ ଚେତନାର ଏକ ମହତ୍ତ୍ୱପୂର୍ଣ୍ଣ ଅବଦାନ । 'ଯେସାକୁ ତେସା' ପରିବର୍ତ୍ତେ ସମସ୍ତଙ୍କ ପ୍ରତି ମାନବିକ ଆଚରଣ ଏକ ଖ୍ରୀଷ୍ଟୀୟାନ ମୂଲ୍ୟବୋଧ । ଏହା ଖ୍ରୀଷ୍ଟୀୟାନ ଆଦର୍ଶ ହୋଇପାରେ, ତେବେ ପ୍ଲେଟୋ ଯେ ଏହି ମାନବୀୟତାର ଆଦର୍ଶ ବ୍ୟକ୍ତ କରିଛନ୍ତି ଏହା ତାଙ୍କ ନୀତିଶାସ୍ତ୍ରର ଏକ ବିଶେଷ ବାର୍ତ୍ତା । ପ୍ରେମ ଓ ବନ୍ଧୁତା ଯେ ମାନବୀୟତାର ଦୁଇ ମହନୀୟ ଆଦର୍ଶ ଏହାର କିଛି ଝଲକ ପ୍ଲେଟୋଙ୍କ କେତେକ ଡାଏଲଗ୍‌ରେ ଦେଖିବାକୁ ମିଳେ ।

### ୭.୫ ରାଜନୈତିକ ଦର୍ଶନ

ପ୍ଲେଟୋଙ୍କ ରାଜନୈତିକ ଦର୍ଶନ ତାଙ୍କ ନୈତିକ ସିଦ୍ଧାନ୍ତର ଏକ ବିସ୍ତାରିତ ଦିଗ । ବ୍ୟକ୍ତି ପାଇଁ ପ୍ରଜ୍ଞା ଓ ଆନନ୍ଦର ଜୀବନକୁ ସେ ଉଚ୍ଚ ମୂଲ୍ୟ ଦେଇଛନ୍ତି । ତେବେ ବ୍ୟକ୍ତିମାନଙ୍କର ସଂଘବଦ୍ଧ ସାମାଜିକ ଜୀବନ ହେଉଛି ଜନରାଜ୍ୟ (City State) । ଏକ ଜନରାଜ୍ୟ ବା ରାଷ୍ଟ୍ରର ଉତ୍କର୍ଷ କିପରି ଶୀର୍ଷକୁ ଯାଇପାରିବ ସେ ବିଷୟରେ ପ୍ଲେଟୋ ଗମ୍ଭୀର ଚିନ୍ତା ପ୍ରକଟ କରିଛନ୍ତି । କେଉଁ ପ୍ରକାରର ବ୍ୟବସ୍ଥା ଏକ ଜନରାଜ୍ୟକୁ ନ୍ୟାୟ ଉପରେ ଆଧାରିତ କରିବା ସହ ପ୍ରତ୍ୟେକ ବ୍ୟକ୍ତିର ଅନ୍ତର୍ନିହିତ ସାମର୍ଥ୍ୟର ଉପଯୁକ୍ତ ବିକାଶ ପାଇଁ ପରିବେଶ ଦେଇପାରିବ ତାହା ପ୍ଲେଟୋଙ୍କ ପାଇଁ ଅନୁଶୀଳନର ପ୍ରସଙ୍ଗ ହୋଇଛି । ବିଶେଷ କରି ତାଙ୍କର ତିନିଟି ଡାଏଲଗ୍ ରିପବ୍ଲିକ, ଷ୍ଟେଟସମ୍ୟାନ ଓ ଲଅଜରେ ସେ ଏ ବିଷୟରେ ତାଙ୍କ ବିଚାର ଦେଇଛନ୍ତି । ବ୍ୟକ୍ତି ପାଇଁ ଯେପରି କେତେକ ନୈତିକ ବିଧାନର ସେ ପରିକଳ୍ପନା କରିଛନ୍ତି ସେହିପରି ସଂଘବଦ୍ଧ ଜୀବନ ପାଇଁ ସେ ଆଦର୍ଶର ଏକ ସମ୍ଭାବ୍ୟ ଚିତ୍ରପଟ ବ୍ୟକ୍ତ କରିଛନ୍ତି । ପ୍ଲେଟୋଙ୍କ ଦର୍ଶନରେ ଶୁଦ୍ଧସତ୍ତାକୁ ପରମ ମୂଲ୍ୟ ଦିଆଯାଇଛି । ସେହି ଶୁଦ୍ଧସତ୍ତା ଆଧାରରେ ସେ ଏକ ଆଦର୍ଶ ରାଷ୍ଟ୍ରର ଭିତ୍ତି ନିର୍ମାଣ କରିଛନ୍ତି ଯାହାକି ସକଳ ବାସ୍ତବ ଜନରାଜ୍ୟମାନଙ୍କ ପାଇଁ ଆଧାର ହୋଇପାରିବ । ପୁନଶ୍ଚ ଏହି ଜନରାଜ୍ୟ ବିଚାରଶୀଳତା ଉପରେ ନିର୍ମାଣ କରାଯିବ, କାରଣ ପ୍ଲେଟୋଙ୍କ ଚିନ୍ତାମାନସରେ ବିଚାରବୁଦ୍ଧି (reason) କୁ ଶ୍ରେଷ୍ଠ ସ୍ଥାନ ଦିଆଯାଇଛି ।

ଏକ ରାଷ୍ଟ୍ରର ଆବଶ୍ୟକତା କାହିଁକି ରହିଛି ? ଏହାର ଅର୍ଥ ନୁହେଁ ରାଷ୍ଟ୍ର ଇତିହାସରେ କିପରି ଗଢ଼ିଛଠିଛି । ଦାର୍ଶନିକର ପ୍ରଶ୍ନ ଏକ କାର୍ଯ୍ୟ-କାରଣ ଜନିତ ପ୍ରଶ୍ନ ନୁହେଁ, ବରଂ ଏହାର ଏକ ତର୍କସଂଗତ ବ୍ୟାଖ୍ୟାନର ବିଶ୍ଳେଷଣ । ଏହା ଏକ ସାର୍ବଜନୀନ ଉପଲବ୍ଧି ଯେ କୌଣସି ବ୍ୟକ୍ତି ଜୀବନରେ ସ୍ୱୟଂସଂପୂର୍ଣ୍ଣ ନୁହେଁ । ଜୀବନଧାରଣ ପାଇଁ ମନୁଷ୍ୟକୁ ଅନ୍ୟ ଉପରେ ନିର୍ଭର କରିବାକୁ ହୁଏ । ଏହି ପାରସ୍ପରିକ ନିର୍ଭରଶୀଳତାରୁ ହିଁ ସମାଜ ଓ ରାଷ୍ଟ୍ର ଗଢ଼ିଉଠିଛି ।

ସକ୍ରେଟିସ୍‌ଙ୍କ ପରି ପ୍ଲେଟୋ ଏହା ମଧ୍ୟ ବିଶ୍ୱାସ କରିଛନ୍ତି ଯେ ଜୀବନର ଲକ୍ଷ୍ୟ ହେଉଛି ପ୍ରଜ୍ଞା, ସଦ୍‌ଗୁଣ ଓ ଉତ୍କର୍ଷ । କୌଣସି ବ୍ୟକ୍ତି ଏକ ସମାଜ ବା ରାଷ୍ଟ୍ରର ବିନା ସାହାଯ୍ୟରେ ଏହା ହାସଲ କରିପାରିବ ନାହିଁ । ଜଣେ ଆଦର୍ଶବାନ ବା ଜ୍ଞାନୀ ହେବା ପାଇଁ ଏକ ସମାଜର ଆବଶ୍ୟକତା ରହିଥାଏ । ସମାଜ ହିଁ ବ୍ୟକ୍ତିକୁ ଶିକ୍ଷା ଦିଏ । ଜଣେ ଆଦର୍ଶ ବ୍ୟକ୍ତି ଯେପରି ଜ୍ଞାନଦ୍ୱାରା ପରିଚାଳିତ ହୁଏ, ସହିପରି ଏକ ଆଦର୍ଶ ରାଷ୍ଟ୍ର ଜ୍ଞାନ ଦ୍ୱାରା ପରିଚାଳିତ ହେବା ଆବଶ୍ୟକ । ଏକ ଆଦର୍ଶ ନଗରରାଷ୍ଟ୍ର ବା ଜନରାଜ୍ୟ ଗଠନ ପାଇଁ ଶାସକମାନଙ୍କୁ ଦାର୍ଶନିକ ହେବାକୁ ହେବ । କାରଣ ଦାର୍ଶନିକମାନେ ହିଁ ହେଉଛନ୍ତି ପ୍ରଜ୍ଞାପ୍ରେମୀ ବ୍ୟକ୍ତିତ୍ୱ । ବ୍ୟକ୍ତିଗତ ଅନୁଭୂତିରୁ ପ୍ଲେଟୋ ଜାଣିଥିଲେ ଯେ ସକ୍ରେଟିସ୍ ଥିଲେ ଏଥେନ୍‌ସର ସବୁଠାରୁ ଜ୍ଞାନୀ ଓ ଗୁଣୀ ବ୍ୟକ୍ତି । କିନ୍ତୁ ସତ୍ୟ ଓ ଆଦର୍ଶ ପାଇଁ ଏହି ଦାର୍ଶନିକ ମୃତ୍ୟୁକୁ ବରଣ କରିନେଲେ । ପ୍ଲେଟୋ ଏପରି ଏକ ଆଦର୍ଶ ଜନରାଜ୍ୟର ପରିକଳ୍ପନା କଲେ ଯେଉଁଠି ଦାର୍ଶନିକ ସମାଜର ସର୍ବୋଚ୍ଚ ଆସନରେ ପ୍ରତିଷ୍ଠିତ ହୋଇପାରିବ । ଦାର୍ଶନିକ ନିଜର ମୌଳିକ ଚିନ୍ତା, ମାନବିକ ମୂଲ୍ୟବୋଧ ପ୍ରତି ପ୍ରତିବଦ୍ଧତା ଓ ପ୍ରତିଭା ପାଇଁ ରାଷ୍ଟ୍ରର ଶୀର୍ଷରେ ରହିଲେ ଆଦର୍ଶ ଜନରାଜ୍ୟ ବା ରିପବ୍ଲିକ୍ ରୂପ ନେଇପାରିବ । ପୁନଶ୍ଚ ପ୍ଲେଟୋ ତାଙ୍କ ସମସାମୟିକ ଗ୍ରୀକ୍ ସମାଜରେ ଶାସକମାନଙ୍କର ସ୍ୱାର୍ଥସାଧନ ଓ ଲୋକଚରିତ୍ରରେ ଯେଉଁ ଅନୈତିକତାକୁ ହୃଦୟଙ୍ଗମ କରିଥିଲେ ସେହି କାରଣରୁ ବି ସେ ଏକ ସୁନ୍ଦର ରିପବ୍ଲିକ୍‌ର ରୂପରେଖ ଆଙ୍କିବାକୁ ପରିକଳ୍ପନା କରିଥିଲେ । ସ୍ୱାର୍ଥସାଧନ ଓ ବ୍ୟକ୍ତିଗତ ପ୍ରତିଦ୍ୱନ୍ଦ୍ୱିତାରୁ ସମାଜକୁ ମୁକ୍ତ କରି ଏକ ଉତ୍କର୍ଷ ବ୍ୟବସ୍ଥା ପ୍ରତିଷ୍ଠା ପାଇଁ ସେ ଚାହିଁଥିଲେ । ଏକ ଆଦର୍ଶ ଜନରାଜ୍ୟର ପ୍ରତିଷ୍ଠାଦ୍ୱାରା ପ୍ରତ୍ୟେକ ବ୍ୟକ୍ତି ଯେ ମଙ୍ଗଳ ଓ ଆନନ୍ଦର ଅଧିକାରୀ ହୋଇପାରିବ ଏହା ତାଙ୍କର ବିଶ୍ୱାସ ଥିଲା । ଅଜ୍ଞତା ଓ ସ୍ୱାର୍ଥାନ୍ଧତା ଏହା ଦ୍ୱାରା ସମାଜରୁ ଦୂର ହୋଇ ପାରିବ ବୋଲି ପ୍ଲେଟୋ ଗ୍ରହଣ କରୁଥିଲେ ।

ଏକ ଆଦର୍ଶ ଜନରାଜ୍ୟ ବିଚାର ବୁଦ୍ଧିଦ୍ୱାରା ପରିଚାଳିତ ହେବା ଯଥାର୍ଥ ବୋଲି ପ୍ଲେଟୋ ଗ୍ରହଣ କରୁଥିଲେ । ଏହି ଜନରାଜ୍ୟର ସକଳ ବିଧି ବିଧାନ ଓ ବ୍ୟବସ୍ଥା ବିଚାରସଙ୍ଗତ ହେବା ଦରକାର । ଏହା ପ୍ରସ୍ତୁତ କରିବାରେ ଦାର୍ଶନିକମାନେ ମୁଖ୍ୟ ଭୂମିକା ନେଇପାରିବେ । ସମାଜର ଶାସକ ବର୍ଗର ଲୋକମାନେ ଏଣୁ ସମାଜର ସବୁଠାରୁ ପ୍ରାଜ୍ଞ ଦାର୍ଶନିକ ମାନେ ହେବା ଆବଶ୍ୟକ । ତେବେ ଯେହେତୁ ପ୍ରଜ୍ଞାବାନ ଦାର୍ଶନିକମାନଙ୍କର ସଂଖ୍ୟା ନଗଣ୍ୟ ବା ସୀମିତ,ତେଣୁ ସମାଜରେ ଏକ ବୁଦ୍ଧିଜୀବୀ ଗୋଷ୍ଠୀ (ପ୍ଲେଟୋ ସେମାନଙ୍କୁ ଆରିଷ୍ଟୋକ୍ରାଟ ବା ସଂଭ୍ରାଂତ ଶ୍ରେଣୀ କହୁଥିଲେ) ସୃଷ୍ଟି କରିବାକୁ ହେବ । ଏହି ସଂଭ୍ରାଂତ ଗୋଷ୍ଠୀଟି ଜନ୍ମ ଦ୍ୱାରା କିମ୍ବା ସମ୍ପତ୍ତିର ଅଧିକାରୀଦ୍ୱାରା ସଂଭ୍ରାଂତ ବ୍ୟକ୍ତି ଭାବରେ ପରିଚିତ ହେବେ ନାହିଁ । ପରନ୍ତୁ ସମାଜର ଏକ ବୁଦ୍ଧିମାନ ଗୋଷ୍ଠୀକୁ ବାଛିବାକୁ ହେବ, ଯେଉଁମାନେ ନିଜର ବୁଦ୍ଧିମତାଦ୍ୱାରା ଜନରାଜ୍ୟର ପରିଚାଳନା ଦାୟିତ୍ୱରେ ରହିପାରିବେ । ସମାଜର ଯେଉଁ ବ୍ୟକ୍ତିମାନେ ବୁଦ୍ଧି, ବିଚାର ଓ ପ୍ରଜ୍ଞାର ଅଧିକାରୀ ହୋଇଥିବେ ସେମାନେ ହିଁ ନଗରରାଷ୍ଟ୍ରର ଶାସନଭାର ନିୟନ୍ତ୍ରଣ କରିବେ । ତେଣୁ ରାଷ୍ଟ୍ରର ପ୍ରଥମ ପରିଚାଳନାତ୍ମକ ସିଦ୍ଧାନ୍ତ (operative principle) ଭାବେ ପ୍ଲେଟୋ ବିଚାରବୁଦ୍ଧିକୁ ପ୍ରଥମ ସ୍ଥାନ ଦେଇଛନ୍ତି । ସେହିପରି ନଗରରାଜ୍ୟର ଦ୍ୱିତୀୟ ପରିଚାଳନାତ୍ମକ ସିଦ୍ଧାନ୍ତ ଭାବେ ସେ ତେଜ ବା ଶକ୍ତି (force) କୁ ଗ୍ରହଣ କରିଛନ୍ତି । ସମାଜର ଯେହେତୁ ଅଧିକାଂଶ ନାଗରିକ ସାଧାରଣ ମଣିଷ ଓ ଏତେ ବୁଦ୍ଧିମାନ ବା ବିଚାରଶୀଳ

ନୁହନ୍ତି ସେମାନେ ଯେ ଶୃଂଖଳିତ ଭାବରେ ସମସ୍ତ ବିଧିବିଧାନକୁ ଗ୍ରହଣ କରିବେ ଏହା ଆଶା କରାଯାଇ ନପାରେ । ସେ ଦୃଷ୍ଟିରୁ ସମାଜରେ ଏକ ସୈନିକ ଗୋଷ୍ଠୀ ରହିବେ । ଏହି ଗୋଷ୍ଠୀଟି ହେବ ରାଷ୍ଟ୍ରର ସତର୍କ ପ୍ରହରୀ । ସେମାନଙ୍କୁ ପ୍ଲେଟୋ ନଗରରକ୍ଷୀ କହିଛନ୍ତି । ଏହି ଶ୍ରେଣୀରେ ସମାଜର ଶକ୍ତିଶାଳୀ, ନିର୍ଭୀକ ଓ ତେଜୀୟାନ ବ୍ୟକ୍ତିମାନେ ରହିବେ । ଏମାନେ ରାଷ୍ଟ୍ରର ସୈନ୍ୟବାହିନୀ ଭାବରେ କାର୍ଯ୍ୟ କରିବେ । ବାହ୍ୟ ଆକ୍ରମଣ ବେଳେ ସେମାନେ ସୈନିକ ଭାବେ ଯୁଦ୍ଧ କରିବେ ଓ ଅନ୍ୟ ସମୟରେ ଆଭ୍ୟନ୍ତରୀଣ ଶାନ୍ତି ଶୃଂଖଳାର ଦାୟିତ୍ୱ ନେବେ । ନଗରରକ୍ଷୀମାନଙ୍କୁ ପ୍ଲେଟୋ ଜଗୁଆଳ କୁକୁର (Watch dog) ବୋଲି ଚିତ୍ରଣ କରିଛନ୍ତି । ନଗର ରକ୍ଷୀମାନେ ବାହାରର ଶତ୍ରୁମାନଙ୍କ ପ୍ରତି ନିଷ୍ଠୁର ଓ ନିଜ ରାଜ୍ୟର ଜନଗଣଙ୍କ ପ୍ରତି କୋମଳ ରହିବେ । ଜଗୁଆଳ କୁକୁରମାନେ ଯେପରି ପରଲୋକ ଓ ପାଳକ ଭିତରେ ପାର୍ଥକ୍ୟ କରିପାରନ୍ତି ସେହିପରି ନଗରରକ୍ଷୀମାନେ ଶତ୍ରୁ ଓ ମିତ୍ର ମଧ୍ୟରେ ପାର୍ଥକ୍ୟ କରିପାରିବେ । ନଗରରାଷ୍ଟ୍ରର ତୃତୀୟ ଶ୍ରେଣୀଟି ହେବେ ସାଧାରଣ ଜନତା ବା ସମାଜର ଶ୍ରମଜୀବୀ କୁଶଳୀ ଶ୍ରେଣୀ । ସମାଜର ସକଳ କୃଷକ, କାରିଗର, ଶ୍ରମିକ, ଚିକିତ୍ସାକାରୀ, ସେବାକାରୀ ଇତ୍ୟାଦି ଏହି ଶ୍ରେଣୀରେ ଅନ୍ତର୍ଭୁକ୍ତ ରହିବେ । ଏହିମାନେ ସମାଜର ଶ୍ରମଜୀବୀ ଗୋଷ୍ଠୀ । ଯେଉଁ ସିଦ୍ଧାନ୍ତ ଦ୍ୱାରା ଏହି ଗୋଷ୍ଠୀଟି ପରିଚାଳିତ ହେବେ ତାହା ହେଲା ଶ୍ରମ । ପ୍ଲେଟୋ ବିଚାରବୁଦ୍ଧି, ତେଜ ଓ ଶ୍ରମକୁ ତିନିଟି ପରିଚାଳନାତ୍ମକ ସିଦ୍ଧାନ୍ତ ଭାବରେ ସ୍ୱୀକାର କରିଛନ୍ତି । ସେ ଯେଉଁ ତିନିଟି ପରିଚାଳନାତ୍ମକ ସିଦ୍ଧାନ୍ତର ଅବତାରଣା କରିଛନ୍ତି ତାହାକୁ ଆଧାରକରି ସମାଜରେ ତିନି ଶ୍ରେଣୀର ବ୍ୟକ୍ତି ରହିବେ । ଦାର୍ଶନିକ-ଶାସକ ମାନଙ୍କ ପାଖରେ ବିଚାର, ସୈନିକ ଗୋଷ୍ଠୀ ପାଖରେ ତେଜ ଓ ଗଣଙ୍କ ପାଖରେ ଶ୍ରମ ସନ୍ନିବିଷ୍ଟ ହୋଇ ରହିବ । ପ୍ଲେଟୋ ଯେପରି ମାନବାତ୍ମାର ତିନିଟି ଅଂଶ ଦର୍ଶାଇଛନ୍ତି, ଜନରାଷ୍ଟ୍ରର ମଧ୍ୟ ସେହିପରି ତିନିଟି ମୁଖ୍ୟ କାର୍ଯ୍ୟଧାରାର ବ୍ୟାଖ୍ୟା କରିଛନ୍ତି । ଆତ୍ମାର ବିଚାରଶୀଳ ଦିଗ ସହ ଦାର୍ଶନିକ-ଶାସକ ମାନଙ୍କର, ଆତ୍ମାର ଶୁଦ୍ଧାଂଶସହ ନଗରରକ୍ଷକ ମାନଙ୍କର ଓ ଆତ୍ମାର କ୍ଷୁଧାଂଶ ସହ ଗଣମାନଙ୍କର ସାମଂଜସ୍ୟ ରହିବା ଦେଖାଯାଏ । ପ୍ଲେଟୋ ତାଙ୍କ ନୀତିଶାସ୍ତ୍ରରେ ଯେଉଁ ଚାରିଟି ଶ୍ରେଷ୍ଠ ସଦ୍‌ଗୁଣର ବର୍ଣ୍ଣନା ପ୍ରଦାନ କରିଛନ୍ତି ତାହା ସହ ଏହି ବ୍ୟାଖ୍ୟାର ପୂର୍ଣ୍ଣ ସଂହତି ରହିଛି । ଦାର୍ଶନିକ-ଶାସକ ମାନଙ୍କର ସଦ୍‌ଗୁଣ ହେଉଛି ପ୍ରଜ୍ଞା, ନଗରରକ୍ଷକ ଶ୍ରେଣୀର ସଦ୍‌ଗୁଣ ହେଉଛି ସାହସ ଓ ସାଧାରଣ ଜନଗଣଙ୍କର ସଦ୍‌ଗୁଣ ହେଉଛି ସଂଯମତା । ପ୍ରଜ୍ଞା, ସାହସ ଓ ସଂଯମତାର ସୁସଂହତ ସହଯୋଗ ହେଲେ ନ୍ୟାୟ ଆସିପାରିବ ବୋଲି ପ୍ଲେଟୋ ଭାବିଛନ୍ତି । ଏକ ନ୍ୟାୟପୂର୍ଣ୍ଣ ସମାଜ ଗଠନ ପ୍ଲେଟୋଙ୍କର ଆଭିମୁଖ୍ୟ ଥିଲା । ନ୍ୟାୟର ଭିତ୍ତି ଉପରେ ସମାଜର ସ୍ଥିତି ଓ ବିକାଶ ସୁଦୃଢ଼ ହେଲେ ତାହା ଏକ ଆଦର୍ଶ ଜନରାଜ୍ୟ ବା ନଗରରାଷ୍ଟ୍ର (republic) ହୋଇପାରିବ ।

ନଗରରାଷ୍ଟ୍ରର ଦାର୍ଶନିକମାନେ ରାଷ୍ଟ୍ରର ପରିଚାଳନା ସହ ଜ୍ଞାନବିଜ୍ଞାନର ଚର୍ଚ୍ଚାରେ ସଂପୃକ୍ତ ରହିବେ । ଦାର୍ଶନିକମାନେ ପରସ୍ପର ମଧ୍ୟରେ ପାଳିକରି ଶାସନକାର୍ଯ୍ୟ ପରିଚାଳନା କରିବେ ଓ ଅନ୍ୟ ସମୟରେ ଶୁଦ୍ଧସତ୍ତା ମାନଙ୍କର ବିଶ୍ଳେଷଣରେ ସଂପୃକ୍ତ ରହିବେ । ନଗରରକ୍ଷକ ମାନେ ନଗରରାଷ୍ଟ୍ରକୁ ସୁରକ୍ଷା ପ୍ରଦାନ କରିବା ସହ ନଗରରାଷ୍ଟ୍ରରେ ଶାନ୍ତି ଶୃଙ୍ଖଳା କାର୍ଯ୍ୟରେ ନିୟୋଜିତ ରହିବେ । ସମାଜରେ ଦାର୍ଶନିକ-ଶାସକ ମାନଙ୍କର ଆଦର୍ଶ,

ନୀତି ଓ ନିୟମ ମାନଙ୍କୁ ନଗରରକ୍ଷକମାନେ ସମାଜରେ ପ୍ରତିଷ୍ଠା ଦିଗରେ କାର୍ଯ୍ୟ କରିବେ । ସମାଜର ଦାର୍ଶନିକ-ଶାସକ, ନଗରରକ୍ଷକ ମାନଙ୍କୁ ବାଦ୍ ଦେଇ ଆଉ ଯେଉଁ ଜନଗୋଷ୍ଠୀ ରହିଲେ ସେମାନେ କୃଷି, ବ୍ୟବସାୟ, ବାଣିଜ୍ୟ, ବିଭିନ୍ନ ପ୍ରକାରର କାରିଗରୀ କୌଶଳ କାର୍ଯ୍ୟରେ ସଂପୃକ୍ତ ରହିବେ । ସମାଜରେ ଏହିପରି ଏକ ବୃତ୍ତିଗତ ବିଭାଜନ ରହିବ ଓ ଉପର ଦୁଇ ଶ୍ରେଣୀର ଲୋକ ବ୍ୟବସାୟ, କୃଷି ବା କାରିଗରୀ ଶ୍ରେଣୀର କାର୍ଯ୍ୟରେ ସଂପୃକ୍ତ ରହିବେ ନାହିଁ । ତେବେ ଏଠାରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ହେଉଛି କୌଣସି ବ୍ୟକ୍ତି ତାର ବୃତ୍ତି ବା ସାମାଜିକ ପରିଚୟ ନିଜ ପାରିବାରିକ ସ୍ଥିତି ଅନୁଯାୟୀ ସ୍ଥିର କରିପାରବ ନାହିଁ । ଏହା ମଧ୍ୟ ଜନ୍ମ ଆଧାରରେ ସ୍ଥିର ହେବ ନାହିଁ । ଜଣେ ନାଗରିକର ସାମାଜିକ ସ୍ଥିତି ଓ ବୃତ୍ତି ନଗରରାଷ୍ଟ୍ରର ବିଚାରକଙ୍କ ଉପରେ ନ୍ୟସ୍ତ ରହିବ । ବ୍ୟକ୍ତିର ସାମର୍ଥ୍ୟ, ଶିକ୍ଷା, ବୁଦ୍ଧି, ଯୋଗ୍ୟତାକୁ ପରୀକ୍ଷାକରି ଏହା ସ୍ଥିର କରାଯିବ । ଯେଉଁ କାର୍ଯ୍ୟ କରିବାକୁ ବ୍ୟକ୍ତି ସର୍ବାଧିକ ଯୋଗ୍ୟ ବିବେଚିତ ହେବ, ଜଣେ ସେହି କାର୍ଯ୍ୟ କରିବ । ତାହା କରିବାଦ୍ୱାରା ସେ ନଗରରାଜ୍ୟର ସର୍ବୋତ୍କୃଷ୍ଟ ସେବା କରିପାରିବ । ସମାଜର ସବୁ ନାଗରିକ ନିଜର ଯୋଗ୍ୟତା ଓ ସାମର୍ଥ୍ୟ ଅନୁଯାୟୀ ସମାଜକୁ ସର୍ବୋତ୍କୃଷ୍ଟ ସେବା ପ୍ରଦାନ କରିବାଦ୍ୱାରା ସମାଜର ଉତ୍କର୍ଷ ଶୀର୍ଷକୁ ଯାଇପାରିବ ।

ପ୍ଲେଟୋଙ୍କର ଅନ୍ୟ ଏକ ବିଚାର ଥିଲା ଅତ୍ୟନ୍ତ ବିପ୍ଳବାତ୍ମକ । ଦାର୍ଶନିକ-ଶାସକ ଓ ନଗରରକ୍ଷକ ମାନଙ୍କର ବ୍ୟକ୍ତିଗତ ସଂପତ୍ତି ରହିବ ନାହିଁ । ପୁରୁଷ ନାରୀ ନିର୍ବିଶେଷରେ ନିଜର ପ୍ରତିଭା ନେଇ ନାଗରିକମାନେ ରାଷ୍ଟ୍ରଦ୍ୱାରା ନିୟୋଜିତ ବିଚାରକମାନଙ୍କ ଦ୍ୱାରା ଶାସକ ବା ରକ୍ଷକ ଶ୍ରେଣୀ ଭାବରେ ମନୋନୀତ ହେବେ । ତେବେ ଏମାନେ କୌଣସି ବ୍ୟକ୍ତିଗତ ସଂପତ୍ତି ରଖିପାରିବେ ନାହିଁ, ସେମାନଙ୍କ ଜୀବନର ଆବଶ୍ୟକତା ରାଷ୍ଟ୍ର ପୂରଣ କରିବ । ପୁନଶ୍ଚ ଦାର୍ଶନିକ,  ଶାସକ ଓ ନଗରରକ୍ଷକମାନଙ୍କର ବ୍ୟକ୍ତିଗତ ପରିବାର ମଧ୍ୟ ରହିବ ନାହିଁ । ବ୍ୟକ୍ତିଗତ ସଂପତ୍ତି ଓ ପରିବାର ହିଁ ବ୍ୟକ୍ତି ଭିତରେ ସ୍ୱାର୍ଥପରତାର ମନୋଭାବ ଆଣିଥାଏ । ସମାଜର ଉଚ୍ଚଶ୍ରେଣୀରୁ ବିବାହ ବ୍ୟବସ୍ଥାର ଉଚ୍ଛେଦଦ୍ୱାରା ଜନ୍ମନିୟନ୍ତ୍ରଣ କରିବା ସମ୍ଭବ ହେବ । ପ୍ଲେଟୋ ଜନ୍ମନିରୋଧକୁ ସମର୍ଥନ କରୁନଥିଲେ କିନ୍ତୁ ଜନ୍ମନିୟନ୍ତ୍ରଣ ବିଷୟ କହୁଥିଲେ । ଦାର୍ଶନିକମାନେ ଓ ରକ୍ଷକ ଶ୍ରେଣୀର ବ୍ୟକ୍ତିମାନେ ସ୍ୱଇଚ୍ଛାରେ ବିବାହ କରିପାରିବେ ନାହିଁ । ତେବେ ନାରୀ-ପୁରୁଷମାନଙ୍କ ମଧ୍ୟରେ ଅସ୍ଥାୟୀ ବିବାହ ପ୍ରଚଳନ କରାଯିବ । ବଂଶବୃଦ୍ଧି ପାଇଁ ଓ ସମାଜରେ ଉତ୍କୃଷ୍ଟ ମଣିଷମାନଙ୍କର ଜନ୍ମ ପାଇଁ ସେମାନେ ବିବାହ କରିବେ ଓ ସନ୍ତାନ ଜନ୍ମ କରିବେ । ବୁଦ୍ଧିମାନ, ଶକ୍ତିମାନ ବ୍ୟକ୍ତିମାନଙ୍କର ରୂପଗୁଣସଂପନ୍ନା ମହିଳାମାନଙ୍କର ମିଳନଦ୍ୱାରା ଯେଉଁ ସନ୍ତାନ ମାନ ଜନ୍ମ ହେବେ ସେମାନେ ସୁନ୍ଦର ଓ ପ୍ରତିଭାବାନ ହେବେ । ତେବେ ସେମାନଙ୍କର ବିବାହ ଓ ସନ୍ତାନ ଜନ୍ମ ରାଷ୍ଟ୍ରର ନିର୍ଦ୍ଦେଶରେ ସଂପନ୍ନ ହେବ । ବଳଶାଳୀ ଯୁବକମାନେ ଯେଉଁ ମହିଳାମାନଙ୍କ ସହ ମିଶିବେ ବା ଯେଉଁମାନଙ୍କୁ ପ୍ରେମ କରିବେ ସେମାନେ ବିବାହ କରିବେ, କିନ୍ତୁ ଏହି ବିବାହ ସାରା ଜୀବନ ପାଇଁ ନୁହେଁ । ଏମାନଙ୍କ ପାଖରୁ ଯେଉଁ ସନ୍ତାନମାନେ ଜନ୍ମ ହେବେ ସେମାନଙ୍କୁ ନଗରରାଷ୍ଟ୍ର ପାଳନ କରିବ ଓ କିଏ କାହାର ସନ୍ତାନ ତାହା ଗୋପନୀୟ ରଖାଯିବ । ଦଂପତିମାନେ ସମସ୍ତେ ଏକତ୍ର ରହିବେ ଓ ସେମାନେ ଯଦି ସନ୍ତାନ ଜନ୍ମ କରନ୍ତି ସବୁ ସନ୍ତାନ ମାନେ ଏକତ୍ର ପାଳିତ ହେବେ । ଯେଉଁ ପିଲାମାନେ ବିକଳାଙ୍ଗ,

ରୁଗ୍ଣ ବା ବୁଦ୍ଧିହୀନ ଜଣାପଡିବେ ସେମାନଙ୍କୁ ଗୁପ୍ତରେ ମାରି ଦିଆଯିବ । ପ୍ଲେଟୋଙ୍କ ନଗରରାଜ୍ୟରେ ପାରିବାରିକ ସାମ୍ୟବାଦର ଏହି ଯେଉଁ ପରିକଳ୍ପନା କରାଯାଇଛି ତାହା ଅଭିନବ ମନେହୁଏ । ଜନରାଜ୍ୟର ନଗରରକ୍ଷକମାନଙ୍କୁ ଶୁଦ୍ଧ ଓ ନିଷ୍ଠାବାନ ରଖିବା ପାଇଁ ସେମାନଙ୍କ ପାଖରେ ଯେପରି ଲୋଭ, କ୍ଷୁଧା ପ୍ରବେଶ ନକରିବ ସେଥିପାଇଁ ପ୍ଲେଟୋ ଏପରି ସବୁ ବ୍ୟବସ୍ଥା କରିଛନ୍ତି । ତେବେ ସମାଜର ଶ୍ରମଜୀବୀ, କୃଷକ ଓ କାରିଗର ମାନଙ୍କର ବ୍ୟକ୍ତିଗତ ସଂପତ୍ତି ଓ ପାରିବାରିକ ଜୀବନ ରହିବ । ସେମାନଙ୍କ ପାଖରେ କ୍ଷୁଧାର ପ୍ରାବଲ୍ୟ ରହିଥିବାରୁ ଅର୍ଥାତ୍ କ୍ଷୁଧା ସେମାନଙ୍କ ଆତ୍ମାର ଲକ୍ଷଣ ହୋଇଥିବାରୁ ସେମାନଙ୍କୁ ପରିବାର କରିବା ଓ ବ୍ୟକ୍ତିଗତ ସଂପତ୍ତିର ଅଧିକାରୀ ହେବାରେ କୌଣସି ପ୍ରତିବନ୍ଧକ ନାହିଁ ।

ଏକ ଆଦର୍ଶ ଜନରାଜ୍ୟର ପ୍ରତିଷ୍ଠା ଥିଲା ପ୍ଲେଟୋଙ୍କ ରାଜନୈତିକ ଦର୍ଶନର ମୁଖ୍ୟ ଆଭିମୁଖ୍ୟ । ପ୍ଲେଟୋଙ୍କର ବିଶ୍ୱାସ ଥିଲା ଯେ ପ୍ରତ୍ୟେକ ନାଗରିକର ଅନ୍ତର୍ନିହିତ ମାନସିକ ଶକ୍ତିର ପୂର୍ଣ୍ଣ ବିକାଶ କରାଇବା ରାଷ୍ଟ୍ରର ନୈତିକ କର୍ତ୍ତବ୍ୟ । ଏହା ସହିତ ଆଦର୍ଶ ଜନରାଜ୍ୟର ମୂଳଭିତ୍ତି ହେବ ନ୍ୟାୟ । ବ୍ୟଷ୍ଟି ଜୀବନରେ ଓ ଗୋଷ୍ଠୀ ଜୀବନରେ ନ୍ୟାୟର ଯେତେ ଅଧିକ ଅଭିବ୍ୟକ୍ତି ଘଟିବ ତାହା ପାଇଁ ପ୍ଲେଟୋ ବିଚାର ବ୍ୟକ୍ତ କରିଛନ୍ତି । ଏକ ଆଦର୍ଶ ସମାଜ ପାଇଁ ଲକ୍ଷ୍ୟ, ସମାଜ ପାଇଁ ଆଲୋକ ବର୍ତ୍ତିକା । ହୁଏତ ଏକ ଆଦର୍ଶ ସଂପୂର୍ଣ୍ଣ ଭାବରେ ବାସ୍ତବତାରେ ପରିଣତ ନ ହୋଇପାରେ, ତେବେ ସେଥିପାଇଁ ଏହା ମୂଲ୍ୟହୀନ ନୁହେଁ । ମଣିଷକୁ ଉଚ୍ଚତର ସୋପାନକୁ ଉତ୍ତରଣ କରିବା କ୍ଷେତ୍ରରେ ପ୍ରେରଣା ଦେବା ଆଦର୍ଶର ଲକ୍ଷ୍ୟ । ତେବେ ଆଦର୍ଶର ସଫଳ ରୂପାୟନ ପାଇଁ ପ୍ଲେଟୋ ଯେଉଁ ପନ୍ଥା ମାନ ପରିକଳ୍ପନା କରିଥିଲେ ସେଥିରେ ଜନରାଜ୍ୟର ଶିକ୍ଷାବ୍ୟବସ୍ଥା ଏକ ମୁଖ୍ୟ ସ୍ଥାନ ନେଇଥିଲା । ସମାଜରେ କିପରି ଶିକ୍ଷା ଦିଆଗଲେ ପରିକଳ୍ପିତ ଆଦର୍ଶ ଦିଗରେ ଅଗ୍ରଗତି କରିହେବ ତାହା ବିଷୟରେ ସଂକ୍ଷିପ୍ତ ସୂଚନା ଦିଆଯାଇପରେ ।

ସମାଜର ସମସ୍ତ ପିଲାମାନଙ୍କୁ ଅଳ୍ପ ବୟସରୁ ଆଣି ଶିଶୁ ପାଳନ କେନ୍ଦ୍ରରେ ରଖାଯିବ । ସେମାନେ ସେମାନଙ୍କ ପିତା ମାତାଙ୍କର ନ ହୋଇ ରାଷ୍ଟ୍ରର ନାଗରିକ ହେବେ । ପିତା ମାତାଙ୍କର ଶିଶୁମାନଙ୍କ ସହିତ କିଛି ସମ୍ବନ୍ଧ ରହିବ ନାହିଁ ଓ ଏପରିକି ପିତା ମାତା ତାଙ୍କ ପିଲାମାନଙ୍କୁ ଚିହ୍ନିବାର ସୁଯୋଗ ଦିଆଯିବ ନାହିଁ । ପିଲାମାନଙ୍କୁ ରାଷ୍ଟ୍ର ଆୟୋଜିତ ପାଳନ କେନ୍ଦ୍ରରେ ରଖାଯାଇ ଶିକ୍ଷା ଦିଆଯିବ । ପିଲାମାନଙ୍କୁ ଅଠର ବର୍ଷ ବୟସ ପର୍ଯ୍ୟନ୍ତ ସମସ୍ତଙ୍କୁ ସମାନ ଭାବରେ ପଢ଼ାଇବା ସହ ସଂଗୀତ ବିଷୟରେ ଶିକ୍ଷା ଦିଆଯିବ । ପ୍ଲେଟୋ ସଂଗୀତକୁ ପ୍ରାଧାନ୍ୟ ଦେଇଥିଲେ । ଆଖିକୁ ସୁନ୍ଦର ଓ କାନକୁ ମଧୁର ସଂଗୀତ ଶୁଣାଇ ପ୍ରକୃତିର ସୌନ୍ଦର୍ଯ୍ୟକୁ ପ୍ରତ୍ୟେକଙ୍କ ଆତ୍ମା ପାଖରେ ପହଞ୍ଚାଇବା ଥିଲା ସଂଗୀତ ଶିକ୍ଷା ଦେବାର ମୁଖ୍ୟ ଆଭିମୁଖ୍ୟ । ଏହା ସହିତ ସାଧାରଣ ଜୀବନରେ ଆବଶ୍ୟକ ହେଉଥିବା ବିଜ୍ଞାନ ସଂପର୍କରେ ସମସ୍ତଙ୍କୁ ଶିକ୍ଷା ଦିଆଯିବ । ବିଜ୍ଞାନ ବ୍ୟକ୍ତି ଭିତରେ ଅନୁସନ୍ଧିତ୍ସୁ ମନୋଭାବ ଓ ଚିନ୍ତା କରିବାର ସାମର୍ଥ୍ୟ ସୃଷ୍ଟି କରିଥାଏ । ଦୁଇବର୍ଷ ସବୁ ପିଲାଙ୍କୁ ସାମରିକ ପ୍ରଶିକ୍ଷଣ ଦିଆଯିବ । ସେମାନେ ଏହାଦ୍ୱାରା ଦେଶରକ୍ଷା ସମ୍ବନ୍ଧରେ ଶିକ୍ଷା ପାଇବା ସହ ସାହସୀ ଓ ସଂଯମୀ ହୋଇପାରିବେ । ଏହିପରି କୋଡିଏ ବର୍ଷ ପର୍ଯ୍ୟନ୍ତ ସମସ୍ତଙ୍କୁ ଶିକ୍ଷା ଦିଆଯିବା ପରେ ବିଭିନ୍ନ ପରୀକ୍ଷା ଦ୍ୱାରା ପ୍ରତିଭାବାନ ଛାତ୍ରମାନଙ୍କୁ ବଛା ଯିବ ଓ ଏହାପରେ ଦଶବର୍ଷ ସେମାନଙ୍କୁ ବିଜ୍ଞାନ

ସଂପର୍କରେ ଓ ଗଣିତ ସମ୍ବନ୍ଧରେ ଶିକ୍ଷା ପ୍ରଦାନ କରାଯିବ । ତିରିଶ ବର୍ଷରେ ଯେଉଁମାନେ ପ୍ରତିଭାର ପରିଚୟ ଦେବେ ସେମାନେ ଦର୍ଶନ ଓ ଡାଇଲେକ୍ଟିକ ବିଷୟରେ ଶିକ୍ଷା ନେବେ । ବିଭିନ୍ନ ସ୍ତରରେ ପରୀକ୍ଷା ଓ ମନୋନୟନ ଦ୍ୱାରା ଯେଉଁମାନେ ତିରିଶ ବର୍ଷରେ ପରୀକ୍ଷାରେ ସଫଳକାମୀ ହୋଇ ତାପରେ ପାଞ୍ଚବର୍ଷ ଦର୍ଶନ, ତର୍କଶାସ୍ତ୍ର, ନୀତିଶାସ୍ତ୍ର ଅଧ୍ୟୟନ କରିବେ ସେମାନେ ହେବେ ସମାଜର ସବୁଠାରୁ ବିଜ୍ଞଜନ । ସେମାନେ ଏହାପରେ ପନ୍ଦର ବର୍ଷ କାଳ ସାଧାରଣ କ୍ଷେତ୍ରରେ ବିଭିନ୍ନ ଦାୟିତ୍ୱ ନିର୍ବାହ କରିବେ । ବିଭିନ୍ନ ମାନବିକ ସମସ୍ୟା, ରାଷ୍ଟ୍ରର ଜନଗଣଙ୍କର ସ୍ଥିତି ଓ ଚରିତ୍ର ଇତ୍ୟାଦି ବିଷୟରେ ପାରଦର୍ଶିତା ହାସଲ କରିବା ପରେ ପଚାଶ ବର୍ଷରେ ଜଣେ ଦାର୍ଶନିକ-ଶାସକ ହୋଇ ପାରିବେ । ଏହିପରି ପଇଁତିରିଶ ବର୍ଷର ଅଧ୍ୟୟନ ଓ ପନ୍ଦର ବର୍ଷର ଲୋକଙ୍କର ସେବା ପରେ ଜଣେ ଦାର୍ଶନିକ- ଶାସକ ହେବାର ଯୋଗ୍ୟତା ହାସଲ କରିପାରିବ । ଦାର୍ଶନିକମାନେ ରିପବ୍ଲିକ୍‌ର ଶାସକ ହେଲେ ସାମାଜିକ ବିକାଶ ଓ ନୈତିକ ଉତ୍କର୍ଷ ଦିଗରେ ରାଷ୍ଟ୍ର ଅଗ୍ରଗାମୀ ହୋଇପାରିବ । ପ୍ଲେଟୋଙ୍କର ବିଚାର ଥିଲା ଯେ ଦାର୍ଶନିକ ମାନଙ୍କର ଜୀବନ ସର୍ବୋତ୍କୃଷ୍ଟ । ନ୍ୟାୟ ଅନ୍ୟାୟ ଓ ମାନବିକ ପ୍ରକୃତି ଉପରେ ସେମାନେ ହେଉଛନ୍ତି ତତ୍ତ୍ୱଜ୍ଞ । ପ୍ଲେଟୋଙ୍କ ଭାବନାନୁଯାୟୀ ଆଦର୍ଶ ଜନରାଜ୍ୟ ବିଚାରବୁଦ୍ଧିଦ୍ୱାରା ପରିଚାଳିତ ହେଲେ ଏହା ଉନ୍ନତିର ଶୀର୍ଷକୁ ଯାଇପାରିବ । ବିଚାରଦ୍ୱାରା ଏକ ଜନରାଜ୍ୟ ପରିଚାଳିତ ନ ହେଲେ ଶକ୍ତି ଓ ସ୍ୱାର୍ଥ ତା'ର ସ୍ଥାନ ନେବ ଓ ସେପରି ହେଲେ ସମାଜରେ ଅନ୍ୟାୟ ଓ ବିଶୃଂଖଳା ଦେଖାଦେବ । ଏହାଫଳରେ ସମାଜରେ କ୍ଷୟଶୀଳତାର ପରିବେଶ ଆସିବ ।

ପ୍ଲେଟୋଙ୍କ ଦର୍ଶନ ଅପେକ୍ଷା ତାଙ୍କ ରାଜନୈତିକ ଦର୍ଶନ ଓ ଆଦର୍ଶ ଜନରାଜ୍ୟ ବା ରିପବ୍ଲିକ୍‌ର ପରିକଳ୍ପନା ଅଧିକ ସମାଲୋଚିତ ହୋଇଆସିଛି । ପ୍ଲେଟୋ ତାଙ୍କର ରାଜନୈତିକ ବିଚାର ବିଭିନ୍ନ ଡାଏଲଗ୍‌ରେ ଆଲୋଚନା କରିଥିଲେ ବି ତାଙ୍କ ରିପବ୍ଲିକ୍ ଏ ସଂପର୍କରେ ସବୁଠାରୁ ବହୁ ଚର୍ଚ୍ଚିତ ପୁସ୍ତକ । ଏଥିରେ ପ୍ରତିଫଳିତ ଆଦର୍ଶ ହିଁ ପ୍ଲେଟୋଙ୍କ ରାଜନୈତିକ ଦର୍ଶନର ମୂଳସୂତ୍ର । ପ୍ଲେଟୋଙ୍କ ଆବିର୍ଭାବ ସମୟକୁ ଏଥେନ୍‌ସରେ ଯେଉଁ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ଥିଲା ତାହା ଫଳରେ ସେଠାରେ ସଂଘବଦ୍ଧ ନିଷ୍ପତ୍ତି, ଉଦାରଭାବ ଓ ପ୍ରତ୍ୟକ୍ଷ ଗଣତନ୍ତ୍ରର ବ୍ୟବସ୍ଥା ରହିଥିଲା । ଏହାର ପରିଣାମରୁ କଳା, ଦର୍ଶନ ଓ ସାହିତ୍ୟ ପରି ସୃଜନଶୀଳ କ୍ଷେତ୍ରଗୁଡ଼ିକର ସେଠାରେ ସୁନ୍ଦର ବିକଶିତ ହୋଇଥିଲା । ପ୍ଲେଟୋ ଗଣତାନ୍ତ୍ରିକ ବ୍ୟବସ୍ଥାର ଥିଲେ କଟୁ ସମାଲୋଚକ ଓ ସୃଜନଶୀଳ ସ୍ରଷ୍ଟାମାନଙ୍କର ସ୍ୱାଧୀନତାକୁ ମଧ୍ୟ ସହ୍ୟ କରିପାରି ନଥିଲେ । ପ୍ଲେଟୋ ଯେଉଁ ଆଦର୍ଶ ଜନରାଜ୍ୟର ପରିକଳ୍ପନା କରିଥିଲେ ସେହି ରିପବ୍ଲିକ୍ ଏକ ରୁଦ୍ଧ ସମାଜର ଚିତ୍ର ଦିଏ । ରାଷ୍ଟ୍ରାନୁମୋଦିତ ସାହିତ୍ୟ ଓ ଖେଳ ବ୍ୟତୀତ ଅନ୍ୟ କୌଣସି ସୃଜନଶୀଳ ବିକାଶର ସେ ବିରୋଧୀ ଥିଲେ । ଯେକୌଣସି ସାମାଜିକ ସମସ୍ୟା ଉପରେ ଏଥେନ୍‌ସ ଓ ଅନ୍ୟାନ୍ୟ ନଗରରାଷ୍ଟ୍ରମାନଙ୍କରେ ଶାସକ ଓ ସାଧାରଣ ଲୋକ ଏକତ୍ର ବିଚାର କରି ସମସ୍ୟାର ସମାଧାନ କରୁଥିଲେ । ପ୍ଲେଟୋଙ୍କ ରିପବ୍ଲିକ୍‌ରେ ସାଧାରଣ ଜନତା କୌଣସି ରାଷ୍ଟ୍ରୀୟ ସମସ୍ୟା ଉପରେ ମୁଣ୍ଡ ନ ପୂରାଇ କେବଳ ଶାସକମାନଙ୍କର ନିର୍ଦ୍ଦେଶ ପାଳନ କରିବାକୁ ନିର୍ଦ୍ଦେଶ ଦିଆଯାଇଛି । କେବଳ ଦାର୍ଶନିକମାନଙ୍କୁ ଛାଡ଼ିଦେଲେ

ଅନ୍ୟମାନଙ୍କର କୌଣସି ବିଷୟରେ ଗମ୍ଭୀର ଚିନ୍ତା କରିବାର ସାମର୍ଥ୍ୟ ନାହିଁ ବୋଲି ପ୍ଲେଟୋ ଯାହା ଭାବୁଥିଲେ ତାହା ମନୁଷ୍ୟ ଜୀବନକୁ ଯାନ୍ତ୍ରିକ ଓ ବୈଚିତ୍ର୍ୟହୀନ କରିଦେବା ମନେହୁଏ । ଅନ୍ୟମାନଙ୍କୁ ନିକୃଷ୍ଟ ବୋଲି ବିବେଚନା କରିବା ମାନବିକତା ପ୍ରତି ଏକ ଅମର୍ଯ୍ୟାଦା ବୋଲି ଅନେକ ପ୍ଲେଟୋଙ୍କୁ ସମାଲୋଚନା କରିଥାନ୍ତି । ସେହିପରି ସାଧାରଣ ଜନଗଣଙ୍କ ପାଖରେ ବିଚାର ବୁଦ୍ଧିର ଅଭାବ ଦର୍ଶାଇ ବୃତ୍ତିଗ୍ରହଣ, ବିବାହ ଓ ସନ୍ତାନଜନ୍ମ କ୍ଷେତ୍ରରେ ରାଷ୍ଟ୍ର ହିଁ ସବୁଲୋକଙ୍କୁ ନିର୍ଦ୍ଦେଶ ଦେବ ବୋଲି ପ୍ଲେଟୋ ଦର୍ଶାଇଛନ୍ତି । ପ୍ରତ୍ୟେକ ବିଷୟରେ ରାଷ୍ଟ୍ରର ନିର୍ଦ୍ଦେଶକୁ ଅପେକ୍ଷା କରିବା ଓ ରାଷ୍ଟ୍ରନାୟକ ସବୁ ବିଷୟରେ ନର୍ଦ୍ଦେଶ ଦେବା ବାସ୍ତବ ବା ଗ୍ରହଣୀୟ ମନେହୁଏ ନାହିଁ ।

ପ୍ଲେଟୋଙ୍କର ଉପଲବ୍ଧି ଥିଲା ଯେ ଏଥେନ୍ସରେ ଆଇନର ଅପପ୍ରୟୋଗ କରି ସକ୍ରେଟିସ୍‌ଙ୍କୁ ହତ୍ୟା କରାଯାଇଛି । ସେଥିପାଇଁ ଦାର୍ଶନିକ-ଶାସକକୁ ପ୍ଲେଟୋ ଆଇନର ଉର୍ଦ୍ଧ୍ୱରେ ରଖିବାକୁ ପ୍ରୟାସ କରିଛନ୍ତି । ଏଠାରେ ସକ୍ରେଟିସ୍‌ଙ୍କ ବ୍ୟକ୍ତିତ୍ୱ ଓ ପ୍ଲେଟୋଙ୍କ ବ୍ୟକ୍ତିତ୍ୱ ଭିତରେ ପାର୍ଥକ୍ୟ ଜାଣିହୁଏ । ସକ୍ରେଟିସ୍ ମୃତ୍ୟୁଦଣ୍ଡ ପାଇବାକୁ ଯୋଗ୍ୟ ନୁହନ୍ତି ଓ ତାଙ୍କ ବିରୁଦ୍ଧରେ ଆସିଥିବା ଅଭିଯୋଗ ମିଥ୍ୟା ବୋଲି ସକ୍ରେଟିସ୍ ଯୁକ୍ତି କରିଥିଲେ ମଧ୍ୟ ସେ ଆଇନକୁ ସମ୍ମାନ କରି ବନ୍ଦୀଶାଳାରୁ ଚାଲିଯିବାକୁ ଚାହିଁ ନଥିଲେ । ପ୍ରତ୍ୟେକ ବ୍ୟକ୍ତି ଆଇନକୁ ମାନି ଚଳିବା ବ୍ୟକ୍ତିର ନୈତିକ କର୍ତ୍ତବ୍ୟ ବୋଲି ସେ ଭାବିଥିଲେ । କିନ୍ତୁ ପ୍ଲେଟୋ ଦାର୍ଶନିକ ଶାସକର କାର୍ଯ୍ୟରେ ଆଇନ ପ୍ରତିବନ୍ଧକ ବୋଲି ବିଚାର କରି ଆଇନକୁ ନିନ୍ଦା କରିଛନ୍ତି । ପ୍ଲେଟୋ ଏହା ମଧ୍ୟ ଭାବିଛନ୍ତି ଯେ ରାଷ୍ଟ୍ରାନୁମୋଦିତ ଧର୍ମ ବ୍ୟତୀତ ଅନ୍ୟ କୌଣସି ଧର୍ମକୁ ସ୍ୱାଧୀନତା ଦିଆଯାଇ ପାରିବ ନାହିଁ । ଦାର୍ଶନିକ-ଶାସକ ଯେଉଁ ଧର୍ମ ଭାବନାକୁ ସ୍ୱୀକୃତି ଦେବେ ତାହା ହିଁ ଗ୍ରହଣ ଯୋଗ୍ୟ । ସେପରି ହେଲେ ଅନେକ ସ୍ୱାଧୀନ ଚିନ୍ତକ ଯେ ମୃତ୍ୟୁଦଣ୍ଡ ପାଇବାକୁ ଯୋଗ୍ୟ ହେବେ ଏହିପରି ଏକ ପରିଣାମକୁ ପ୍ଲେଟୋ ଚିନ୍ତା କରିନାହାନ୍ତି । ପ୍ଲେଟୋଙ୍କ ଆଦର୍ଶ ଜନରାଜ୍ୟରେ ବହୁ ମୁକ୍ତଚିନ୍ତକ ଦାର୍ଶନିକଙ୍କୁ ମୃତ୍ୟୁବରଣ କରିବାକୁ ପଡିବ । ପୁନଶ୍ଚ ଶାସକମାନେ ସ୍ୱାର୍ଥପର ଓ ଧନଲୋଭୀ ହେବା ରାଷ୍ଟ୍ର ପାଇଁ ଅହିତକର ବୋଲି ପ୍ଲେଟୋ ଯାହା ଭାବିଛନ୍ତି ତାହା ନିଶ୍ଚିତ ଏକ ନୈତିକ ବିଚାରଶୀଳ ସିଦ୍ଧାନ୍ତ । ଏହାକୁ ଦୂର କରିବା ଉଦ୍ଦେଶ୍ୟରେ ସେ ଯେଉଁ ପରିବାରର ଜାତୀୟକରଣ ବିଷୟ କଳ୍ପନା କରିଛନ୍ତି ତାହା କେବେହେଲେ ସଭ୍ୟତାରେ ଏକ ଗ୍ରହଣ ଯୋଗ୍ୟ ସମ୍ଭାବନା ନୁହେଁ । ବରଂ ଏହାଦ୍ୱାରା ସମାଜରେ ନାନା ଅଶାନ୍ତି ଓ ବିଭ୍ରାଟ ଯେ ସୃଷ୍ଟି ହେବ ଏହା ଅନେକ ସମାଲୋଚକ ଦର୍ଶାଇଛନ୍ତି ।

ପ୍ଲେଟୋଙ୍କ ଦର୍ଶନ ଓ ଆଦର୍ଶ ଜନରାଜ୍ୟରେ କେତେକ ଅସଂଗତି ଓ ଦୁର୍ବଳତା ଥିଲେ ମଧ୍ୟ ତାଙ୍କର ରିପବ୍ଲିକ ଯେ ବିଶ୍ୱସାହିତ୍ୟରେ ଏକ ଅମୂଲ୍ୟ କୃତି ଏହା ଅନସ୍ୱୀକାର୍ଯ୍ୟ ।

### ୭.୬ ପ୍ଲେଟୋଙ୍କ ଦର୍ଶନର ସମୀକ୍ଷା

ୟୁରୋପୀୟ ଦର୍ଶନ ଜଗତକୁ ପ୍ଲେଟୋଙ୍କର ଅବଦାନ ଅତୁଳନୀୟ । ତାଙ୍କର ଭବ୍ୟ ବ୍ୟକ୍ତିତ୍ୱ, ଜୀବନବ୍ୟାପୀ ଜ୍ଞାନଚର୍ଚ୍ଚାରେ ସଂପୃକ୍ତି ଓ ରାଜନୈତିକ ବିଚାରର ଗଭୀର ପ୍ରଭାବ କେବଳ ଗ୍ରୀସ୍ ନୁହେଁ ସମଗ୍ର ଇଉରୋପୀୟ ଚିନ୍ତାମାନସକୁ ପ୍ରଭାବିତ କରିଥିବା ମନେହୁଏ । ଜୀବନର ମଧ୍ୟ ଭାଗରେ ସେ ଏଥେନ୍ସରେ ପ୍ରତିଷ୍ଠା କରିଥିବା

ଏକାଡେମୀକୁ ପ୍ରଥମ ୟୁରୋପୀୟ ବିଶ୍ୱବିଦ୍ୟାଳୟ କୁହାଯାଏ । ପ୍ଲେଟୋଙ୍କର ଦେହାନ୍ତ ଖ୍ରୀ.ପୂ. ୩୪୮ ରେ ହେବା ପରେ ମଧ୍ୟ ତାଙ୍କ ଏକାଡେମୀ ଜ୍ଞାନଚର୍ଚ୍ଚାର କେନ୍ଦ୍ର ଥିଲା । ପ୍ଲେଟୋଙ୍କ ଦର୍ଶନକୁ ପ୍ରସାର କରିବାରେ ଏଠାରେ ଅଧ୍ୟୟନ କରୁଥିବା ବିଦ୍ୟାର୍ଥୀମାନଙ୍କର ମୁଖ୍ୟ ଭୂମିକା ରହିଥିଲା । ୟୁରୋପୀୟ ଦର୍ଶନ ଓ ବୌଦ୍ଧିକ ସଂସ୍କୃତିକୁ ଜାଣିବାରେ ପ୍ଲେଟୋଙ୍କ ଅବଦାନ ବହୁ ସାହାଯ୍ୟ କରିଥାଏ ବୋଲି କୁହାଯାଏ । ବିଂଶ ଶତାବ୍ଦୀର ଜଣେ ବିଶିଷ୍ଟ ଦାର୍ଶନିକ ଏ.ଏନ. ହ୍ୱାଇଟହେଡ୍‌ଙ୍କ ମତରେ ସମଗ୍ର ଇଉରୋପୀୟ ଦର୍ଶନ ପରଂପରା ପ୍ଲେଟୋଙ୍କ ରଚନାର ପାଦଟୀକା । ପ୍ଲେଟୋଙ୍କ ସମର୍ଥକ ହୁଅନ୍ତୁ ବା ସମାଲୋଚକ ହୁଅନ୍ତୁ ସମସ୍ତେ ତାଙ୍କ ଅବଦାନର ମହତ୍ତ୍ୱକୁ ଗ୍ରହଣ କରିଛନ୍ତି ।

ପ୍ଲେଟୋ ଯେଉଁ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତ ସବୁର ବିକାଶ କରିଥିଲେ ତାହା ଦର୍ଶନ ଜଗତରେ ବହୁ ଦିଗନ୍ତର ବିକାଶରେ ସହାୟକ ହୋଇଥିଲା । ଏପରିକି ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଯେତେବେଳେ ତତ୍ତ୍ୱମୀମାଂସା ବିରୋଧୀ ସ୍ୱର ଦର୍ଶନ କ୍ଷେତ୍ରରେ ଦୃଢ଼ ଭିତ୍ତି ନେଲା, ସେତେବେଳେ ମଧ୍ୟ ତାର ଉତ୍ସ ପ୍ଲେଟୋଙ୍କ ଦର୍ଶନରୁ ଆରମ୍ଭ ହୋଇଥିବା କୁହାଗଲା । ପ୍ଲେଟୋଙ୍କ ଦର୍ଶନରେ ତାଙ୍କ ଚିନ୍ତାର ସାରତତ୍ତ୍ୱ ତାଙ୍କ ଶୁଦ୍ଧସତ୍ତା ସିଦ୍ଧାନ୍ତ (Theory of Ideas) ମଧ୍ୟ ଦେଇ ବିକଶିତ ହୋଇଥିଲା । ତାଙ୍କ ନୈତିକ ସିଦ୍ଧାନ୍ତ, ରାଜନୈତିକ ବିଚାର ଓ ଅନ୍ୟାନ୍ୟ ବୌଦ୍ଧିକ ଅବଦାନର ମୂଳଭିତ୍ତି ତାଙ୍କ ଶୁଦ୍ଧସତ୍ତା ସିଦ୍ଧାନ୍ତରୁ ବିକଶିତ ବା ନିଷ୍ପନ୍ନ ହୋଇଥିବା କୁହାଯାଏ । ପ୍ଲେଟୋଙ୍କ ସାମଗ୍ରିକ ଚିନ୍ତମାନସ ତାଙ୍କର ଏହି ସିଦ୍ଧାନ୍ତକୁ କେନ୍ଦ୍ର କରି ବିକଶିତ ହୋଇଥିଲା । ତାଙ୍କର ଏହି ଭାବଧାରା ବିଷୟରେ କିଛି ବିଶ୍ଳେଷଣାତ୍ମକ ଟୀପ୍ପଣି ଏଠାରେ ଦିଆଯାଇପାରେ । ପ୍ଲେଟୋଙ୍କ ଶୁଦ୍ଧସତ୍ତା ସିଦ୍ଧାନ୍ତ ସଂପୂର୍ଣ୍ଣ ଭାବରେ ତାଙ୍କ ବିଚାରରୁ ଉଦ୍‌ଭବ ହୋଇନଥିଲା, ଏହା ପୃଷ୍ଠଭୂମିରେ ଇଲୀୟ ଦାର୍ଶନିକ ପାର୍ମେନିଡୀସ୍, ହେରାକ୍ଲାଇଟସ୍ ଓ ସକ୍ରେଟିସ୍‌ଙ୍କ ବିଚାରର ପ୍ରଭାବ ରହିଥିବା ଜଣାଯାଏ । ପାର୍ମେନିଡୀସ୍ ପ୍ରଥମେ ଇନ୍ଦ୍ରିୟାନୁଭୂତି ଓ ବିଚାରଶୀଳତା ମଧ୍ୟରେ ପାର୍ଥକ୍ୟର ଅବତାରଣା କରିଥିଲେ । ପାର୍ମେନିଡୀସ୍ ଦର୍ଶାଇଥିଲେ ଯେ ଇନ୍ଦ୍ରିୟାନୁଭୂତି ଜନିତ ଜ୍ଞାନ ଭ୍ରମାତ୍ମକ ଓ ଯେଉଁ ଜ୍ଞାନ ବିଚାରବୁଦ୍ଧି ମାଧ୍ୟମରେ ଉତ୍ପନ୍ନ ହୁଏ ତାହା ହିଁ ବାସ୍ତବ । ତାପରେ ହେରାକ୍ଲାଇଟସ୍ ଓ ଏପରିକି ଡେମୋକ୍ରିଟସ୍ ମଧ୍ୟ ବିଚାରବୁଦ୍ଧି ଜନିତ ଜ୍ଞାନକୁ ପ୍ରାଧାନ୍ୟ ଦେଇଥିବା ମନେହୁଏ । ତେବେ ସଫିଷ୍ଟ ମାନଙ୍କର ଆବିର୍ଭାବ ପରେ ଇନ୍ଦ୍ରିୟ ଜନିତ ଜ୍ଞାନ ଓ ବିଚାରବୁଦ୍ଧି ଜନିତ ଜ୍ଞାନ ଭିତରେ କରାଯାଉଥିବା ପାର୍ଥକ୍ୟକୁ ଅସ୍ୱୀକାର କରି ସକଳ ଜ୍ଞାନର ଭିତ୍ତି ଭାବେ ସମ୍ବେଦନ (sensation) କୁ ଗ୍ରହଣ କଲେ । ସଫିଷ୍ଟମାନଙ୍କର ଏହି ମତକୁ ସକ୍ରେଟିସ୍ ସମାଲୋଚନା କରି ଜ୍ଞାନ ପ୍ରତ୍ୟୟଦ୍ୱାରା ସୃଷ୍ଟି ହୁଏ ଓ ପ୍ରତ୍ୟୟମାନଙ୍କୁ ବିଚାରବୁଦ୍ଧିଦ୍ୱାରା ଅବବୋଧ କରିହେବ ବୋଲି ମତ ଦେଲେ । ଏହାପରେ ପ୍ଲେଟୋ ସକ୍ରେଟିସଙ୍କ ଭାବନାକୁ ସମର୍ଥନ କରି ପ୍ରତ୍ୟୟ କେବଳ ଆମ ବୌଦ୍ଧିକ ଅବବୋଧର ପ୍ରସଙ୍ଗ ନୁହେଁ ଏହାର ତାତ୍ତ୍ୱିକ ସତ୍ତା ରହିଥିବା ଦର୍ଶାଇଲେ । ପ୍ଲେଟୋ ପ୍ରତ୍ୟୟମାନଙ୍କୁ ତାତ୍ତ୍ୱିକ ସତ୍ତା ଭାବରେ ଗ୍ରହଣ କରି ତାଙ୍କର ଶୁଦ୍ଧସତ୍ତା ସିଦ୍ଧାନ୍ତର ବିକାଶ କଲେ । ବିଶ୍ୱର ବ୍ୟାଖ୍ୟା କରିବା ପାଇଁ ଆଭିମୁଖ୍ୟ ରଖୁଥିବା ଏକ ଦାର୍ଶନିକ ବିଚାର ନିଜସ୍ୱ ଧାରାରେ କୌଣସି ପରମ ତତ୍ତ୍ୱର ପରିକଳ୍ପନା କରି ତାହାର ଭିତ୍ତି ଉପରେ ବିଶ୍ୱର ବ୍ୟାଖ୍ୟା କରିବାକୁ

ପ୍ରୟାସ କରିଥାଏ । ଏହି ପରମ-ତତ୍ତ୍ୱକୁ ଏକ ଦାର୍ଶନିକ ବ୍ୟାଖ୍ୟାନ କ୍ଷେତ୍ରରେ ପରମ (Absolute) ଭାବେ ସ୍ୱୀକାର କରାଯାଏ । ଏହି ପରମକୁ ବିଚାରଶୀଳତା, ପ୍ରତ୍ୟୟ, ସତ୍ତା, ପରମାର୍ଥ ଇତ୍ୟାଦି ପରିଭାଷାରେ ପ୍ରକାଶ କରାଯାଇପାରେ । ପ୍ଲେଟୋ ଯେଉଁ ସିଦ୍ଧାନ୍ତର ଭିତ୍ତି ପକାଇଥିଲେ ତାହାକୁ ଦାର୍ଶନିକ ପରିଭାଷାରେ ପ୍ରତ୍ୟୟବାଦ (idealism) କୁହାଯାଏ । ସମସ୍ତ ପ୍ରତ୍ୟୟବାଦୀମାନେ ପରମ ଯେ ବିଚାରଶୀଳତା (reason) ଏହା ସ୍ୱୀକାର କରିଥାନ୍ତି । ପ୍ଲେଟୋଙ୍କ ପ୍ରତ୍ୟୟବାଦ ପରେ ପ୍ରତ୍ୟୟବାଦ ବିଭିନ୍ନ ଦିଗରେ ବିକଶିତ ହୋଇଛି, ତେବେ ସମସ୍ତ ପ୍ରତ୍ୟୟବାଦୀମାନେ ବିଚାରଶୀଳତାକୁ ମୁଖ୍ୟ ସ୍ଥାନ ଦେଇଛନ୍ତି । ପ୍ଲେଟୋଙ୍କ ଦର୍ଶନରେ ପରମ ହେଉଛି ଶୁଦ୍ଧସତ୍ତା ଯାହା ବିଚାରଶୀଳ ତତ୍ତ୍ୱ ଉପରେ ବିକଶିତ ହୋଇଛି ।

ତତ୍ତ୍ୱମୀମାଂସୀୟ ପରିକଳ୍ପନା ଭିତରେ ଯେଉଁ ସିଦ୍ଧାନ୍ତକୁ ପରମ ଭାବରେ ସ୍ୱୀକାର କରାଯାଏ ତାହା ପ୍ରାୟତଃ ଦୁଇଟି ମୁଖ୍ୟ ଉଦ୍ଦେଶ୍ୟ ପୂରଣ କରୁଥିବା ଆବଶ୍ୟକ । ଯାହାକୁ ପରମ ତତ୍ତ୍ୱ ଭାବରେ ଗ୍ରହଣ କରାଯିବ ତାହା ଜଗତକୁ ବ୍ୟାଖ୍ୟା କରିପାରୁଥିବ । ଅର୍ଥାତ୍ ସେହି ପରମତତ୍ତ୍ୱରୁ ବାସ୍ତବ ଜଗତକୁ ନିଗମନ କରାଯାଉଥିବ । ଏତଦ୍‌ବ୍ୟତୀତ ତାହା ଜଗତକୁ ବ୍ୟାଖ୍ୟା କରିବା ସହିତ ନିଜକୁ ମଧ୍ୟ ବ୍ୟାଖ୍ୟା କରୁଥିବ । ନିଜେ ନିଜକୁ ବ୍ୟାଖ୍ୟା କରିବା ପାଇଁ ଏହାର ବହିର୍ଗତ କୌଣସି ତତ୍ତ୍ୱର ଆବଶ୍ୟକତା ନ ଥିବ । ମୋଟ ଉପରେ ଯାହାକୁ ପ୍ରଥମ ବା ପରମ ତତ୍ତ୍ୱ ଭାବେ ସ୍ୱୀକାର କରାଯିବ ତାହା ନିଜର ବ୍ୟାଖ୍ୟାନ ସହ ଜଗତର ମଧ୍ୟ ବ୍ୟାଖ୍ୟାନ କରୁଥିବ । ଯାହାକୁ ପରମ ତତ୍ତ୍ୱ ଭାବରେ ନିଆଯିବ ତାହା ପରମ ରହସ୍ୟ ନ ହୋଇଥିବା ଆବଶ୍ୟକ । କାରଣ ଜଗତକୁ ଯଦି ଏକ ରହସ୍ୟ ଭାବରେ ଉପସ୍ଥାପନ କରାଯିବ, ଏହା ସେପରି ଅର୍ଥପୂର୍ଣ୍ଣ ହେବ ନାହିଁ । ପରମ ତତ୍ତ୍ୱ ପାଖରେ ଏହାର ଯେଉଁ ମାନଦଣ୍ଡ ନିଆଗଲା, ସେହି ମାନଦଣ୍ଡରେ ପ୍ଲେଟୋଙ୍କର ଶୁଦ୍ଧସତ୍ତା ସିଦ୍ଧାନ୍ତ କେତେଦୂର ଯଥାର୍ଥ ବିଚାର କରାଯାଉ । ଅର୍ଥାତ୍ ଶୁଦ୍ଧସତ୍ତା ସିଦ୍ଧାନ୍ତ ଜଗତକୁ ବ୍ୟାଖ୍ୟା କରିବାକୁ ସମର୍ଥ କି, ଯଦି ବି ସମର୍ଥ ବୋଲି ଗ୍ରହଣ କରାଯାଏ, ଏହା ସହିତ ନିଜକୁ ନିଜେ ବ୍ୟାଖ୍ୟା କରିପାରିବ କି - ଏଠାରେ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ମନେହୁଏ ।

ଶୁଦ୍ଧସତ୍ତାମାନ ଜଗତକୁ ବ୍ୟାଖ୍ୟା କରୁଛନ୍ତି କି ? ଜଗତର ଇନ୍ଦ୍ରିୟ ଗ୍ରାହ୍ୟ ବସ୍ତୁ ସକଳ ଯଥା ଗାଈ, ଗଛ, ଗୋଲାପ, ନଦୀ, ନର, ନଗର ଇତ୍ୟାଦି ସେମାନଙ୍କ ଶୁଦ୍ଧସତ୍ତା ମାନଙ୍କ ଦ୍ୱାରା ବ୍ୟାଖ୍ୟାନ ହେଉଛନ୍ତି କି ? ଶୁଦ୍ଧସତ୍ତା ଓ ବସ୍ତୁମାନଙ୍କ ଭିତରେ କ'ଣ ସମ୍ବନ୍ଧ ରହିଛି ? ପ୍ଲେଟୋଙ୍କ ମତରେ ବସ୍ତୁମାନ ହେଉଛନ୍ତି ଶୁଦ୍ଧସତ୍ତା ମାନଙ୍କର ପ୍ରତିଲିପି, କିମ୍ବା ବସ୍ତୁମାନ ଶୁଦ୍ଧସତ୍ତାରେ ଅଂଶଗ୍ରହଣ କରିଥାନ୍ତି । ଶୁଦ୍ଧସତ୍ତାମାନ ବସ୍ତୁମାନଙ୍କର ଆଦିରୂପ । ଯେଉଁ ସବୁ ଶବ୍ଦ ମାନଙ୍କ ସାହାଯ୍ୟରେ (ଯଥା ପ୍ରତିଲିପି, ଅଂଶଗ୍ରହଣ, ଆଦିରୂପ) ପ୍ଲେଟୋ ବସ୍ତୁମାନଙ୍କୁ ଆଦିସତ୍ତା ସହ ତୁଳନା କରୁଛନ୍ତି ସେସବୁ କେବଳ ଉପମା, ବା ରୂପକ (metaphor), ଏହା ବସ୍ତୁମାନଙ୍କର ଆଦିସତ୍ତା ସହ ସଂପର୍କକୁ ବ୍ୟାଖ୍ୟା କରୁ ନାହିଁ । ଏହି ଅଭିବ୍ୟକ୍ତିକୁ ବାଦ୍ ଦେଇ ଯଦି ବି ଯୁକ୍ତି ପାଇଁ ଗ୍ରହଣ କରାଯାଏ ଯେ ଏହା ବୋଧଗମ୍ୟ, ଅର୍ଥାତ୍ ବସ୍ତୁମାନ ଶୁଦ୍ଧସତ୍ତାରେ ଅଂଶ ଗ୍ରହଣ କରନ୍ତି ବା ଶୁଦ୍ଧସତ୍ତାର ସେମାନେ ହେଉଛନ୍ତି ପ୍ରତିରୂପ, ତଥାପି ସମସ୍ୟାର ସମାଧାନ ହେଉ ନାହିଁ । ପ୍ରଶ୍ନ ହେଉଛି ଏହି ବସ୍ତୁମାନ କାହିଁକି ଶୁଦ୍ଧସତ୍ତାର ପ୍ରତିରୂପ ଓ ସେମାନେ

କିପରି ଶୁଦ୍ଧସତ୍ତାରୁ ଉଦ୍‌ଭବ ହୋଇଛନ୍ତି ? ଏହାକୁ କେବଳ ରହସ୍ୟମୟ କରି ଏଡାଇଯିବା ଦାର୍ଶନିକ ଅନୁଶୀଳନର ଆଭିମୁଖ୍ୟ ନୁହେଁ, ବସ୍ତୁମାନ କିପରି ଓ କାହିଁକି ଶୁଦ୍ଧସତ୍ତାରୁ ନିର୍ଗତ ହୋଇଛନ୍ତି ତାହାର ଏକ ତର୍କସଂଗତ ଅନୁଶୀଳନ ଦେବା ଆବଶ୍ୟକ । ସେହି ଅନୁଶୀଳନ ଶୁଦ୍ଧସତ୍ତା ଭିତରେ ନିହିତ ରହିବା ଦରକାର, ଯେହେତୁ ଶୁଦ୍ଧସତ୍ତାକୁ ପ୍ଲେଟୋ ପରମ ବୋଲି ମନେକରିଛନ୍ତି । ସେମାନଙ୍କ ଭିତରେ ଏହା ଅନ୍ତର୍ନିହିତ ରହିଥିବ ଅର୍ଥାତ୍ କେଉଁ କାରଣରୁ ଶୁଦ୍ଧସତ୍ତା ମାନଙ୍କରୁ ବସ୍ତୁସକଳ ବିକଶିତ ହେଲେ ତାହାର ଏକ ବୋଧଗମ୍ୟ ବ୍ୟାଖ୍ୟାନ ଆସିପାରୁଥିବ । ଶୁଦ୍ଧସତ୍ତାମାନଙ୍କ ମଧ୍ୟରେ ଏପରି କିଛି ଅପରିହାର୍ଯ୍ୟ ନିୟମ ରହିଛି କି ଯେଉଁଥିରୁ ବସ୍ତୁମାନ ନିର୍ଗତ ହୋଇଛନ୍ତି ? ଶୁଦ୍ଧସତ୍ତାମାନଙ୍କୁ ପ୍ଲେଟୋ ତତ୍ତ୍ୱଭାବରେ ଗ୍ରହଣ କରିଛନ୍ତି ଓ ସେମାନଙ୍କୁ ସ୍ୱନିର୍ଭରଶୀଳ କରିଛନ୍ତି । ସେମାନଙ୍କ ମଧ୍ୟରେ କିଛିର ଅଭାବ ନାହିଁ । ସେମାନେ ନିଜକୁ ବାସ୍ତବ ବସ୍ତୁ ଭାବରେ ପ୍ରକାଶ କରିବାରେ କୌଣସି ଆବଶ୍ୟକତା ଅନୁଭବ କରନ୍ତି ନାହିଁ, ଯେହେତୁ ସେମାନେ ସ୍ୱସ୍ଥିତ ଓ ସ୍ୱନିର୍ଭରଶୀଳ । ସେହିପରି ସ୍ଥିତିରେ ସେମାନେ କାହିଁକି ନିଜସ୍ୱ ସ୍ୱରୂପରେ ନ ରହିବେ ? ସେମାନେ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ ଭିତରେ ପ୍ରକାଶିତ ହେବାକୁ କାହିଁକି ଚାହିଁବେ ? ସେମାନେ କାହିଁକି ବସ୍ତୁମାନଙ୍କ ମଧ୍ୟରେ ପ୍ରକାଶିତ ହେଉଛନ୍ତି ? ଆମେ ଦେଖେ ଯେ ସଂସାରରେ ଅନେକ ସୁନ୍ଦର ବସ୍ତୁ ରହିଛନ୍ତି । ପ୍ଲେଟୋ କହିବେ ଯେ ଏହି ସବୁ ସୁନ୍ଦର ବସ୍ତୁ ରହିବାର କାରଣ ହେଉଛି ଏକ ସୌନ୍ଦର୍ଯ୍ୟ ଶୁଦ୍ଧସତ୍ତାର ଅସ୍ତିତ୍ୱ ଏକ ଭିନ୍ନ ଜଗତରେ ରହିଛି । ସୌନ୍ଦର୍ଯ୍ୟର ଶୁଦ୍ଧସତ୍ତା ନିଜସ୍ୱ ସ୍ଥିତିରେ ନ ରହି କାହିଁକି ଜଗତରେ ପ୍ରକାଶିତ ହେବାକୁ ଚାହିଁବ ? ଶୁଦ୍ଧସତ୍ତାମାନଙ୍କ ମଧ୍ୟରେ ସେପରି କିଛି ଅବଶ୍ୟମ୍ଭାବୀ କାରଣ ନାହିଁ ଯେଉଁଥିରୁ ସେମାନେ ଜଗତରେ ପ୍ରତିଲିପି ଭାବରେ ପ୍ରକାଶିତ ହେବେ । ଏହାର ତାତ୍ପର୍ଯ୍ୟ ହେବ ଯେ ଶୁଦ୍ଧସତ୍ତାମାନଙ୍କ ମଧ୍ୟରେ କିଛି ଅନ୍ତର୍ନିହିତ ନିୟମ ନାହିଁ ଯେଉଁଥିରୁ ଇନ୍ଦ୍ରିୟଗାହ୍ୟ ଜଗତକୁ ବ୍ୟାଖ୍ୟା କରିବା ସମ୍ଭବ ହେବ ।

ଏହି ସମସ୍ୟାର କୌଣସି ସନ୍ତୋଷଜନକ ବ୍ୟାଖ୍ୟା ପ୍ଲେଟୋ ଦେଇପାରି ନାହାନ୍ତି । ତେବେ ଏହାର ଏକ ବ୍ୟାଖ୍ୟା ଅନ୍ୟ ଭାବରେ ଦେବାକୁ ପ୍ରୟାସ କରିଛନ୍ତି । ଶୁଦ୍ଧସତ୍ତାମାନଙ୍କର ପ୍ରତିରୂପ ଭାବରେ ବସ୍ତୁମାନଙ୍କୁ ପ୍ରକାଶ କରିବାରେ ସେ ଈଶ୍ୱରଙ୍କର ଭାବନା ସୃଷ୍ଟି କରିଛନ୍ତି । ଈଶ୍ୱର ଭାବନା ମାଧ୍ୟମରେ ସେ ବସ୍ତୁଜଗତକୁ ଶୁଦ୍ଧସତ୍ତା ମାନଙ୍କର ପ୍ରତିଲିପି ଭାବେ ପ୍ରକାଶ କରିବାରେ ବ୍ରତୀ ହୋଇଛନ୍ତି । ଏ କ୍ଷେତ୍ରରେ ଈଶ୍ୱରଙ୍କୁ ଆଣିବାଦ୍ୱାର ଏହା ନିଶ୍ଚିତ ମନେହୁଏ ଯେ ଶୁଦ୍ଧ ସତ୍ତାମାନଙ୍କ ମଧ୍ୟରେ ବସ୍ତୁଜଗତକୁ ବ୍ୟାଖ୍ୟା କରିବା ପାଇଁ ଅନ୍ତର୍ନିହିତ ନିୟମ ନାହିଁ । ଶୁଦ୍ଧସତ୍ତାମାନଙ୍କର ତତ୍ତ୍ୱକୁ ଗ୍ରହଣ କରିବା ପରେ ବସ୍ତୁ ଜଗତକୁ ବ୍ୟାଖ୍ୟା କରିବାକୁ ସେ ନିଜ ମୂଳ ସିଦ୍ଧାନ୍ତଠାରୁ ଅପସରିଯାଇ ଏକ ଅବିଶୁଦ୍ଧ ଈଶ୍ୱରବାଦର ଅବତାରଣା କରିଛନ୍ତି । ହୁଏତ କୁହାଯାଇପାରେ ଯେ ସେ ଈଶ୍ୱରଙ୍କୁ କୌଣସି ପାରଂପରିକ ଅର୍ଥରେ ସ୍ୱୀକାର ନ କରି ଏହାକୁ କେବଳ ଏକ ଆଳଙ୍କାରିକ୍ ଭାବେ ଶୁଭମୟ (Good) ସ୍ଥାନରେ ବ୍ୟବହାର କରିଛନ୍ତି । ସେପରି ହେଲେ ପ୍ଲେଟୋଙ୍କ ଦର୍ଶନରେ ବ୍ୟକ୍ତ ହେଉଥିବା ଅସଂହତିକୁ ହୁଏତ ଏଡାଇଦେଇ ହେବ । ଏହି ଅସଂହତିକୁ ପରିହାର କରାଗଲେ ମଧ୍ୟ ମୂଳ ପ୍ରଶ୍ନଟି ରହିବ– ତେବେ ଇନ୍ଦ୍ରିୟାନୁଭୂତିର ଜଗତକୁ ଶୁଭମୟ ଆଧାରରେ କିପରି ବ୍ୟାଖ୍ୟା କରାଯାଇପାରିବ ? ଶୁଭମୟକୁ ପରିକଳ୍ପନା କଲେ, ଏହା ତ ଅନ୍ୟ

ଶୁଦ୍ଧସତ୍ତା ସଦୃଶ୍ୟ ଏକ ଶୁଦ୍ଧସତ୍ତା । ସୁତରାଂ ମୌଳିକ ପ୍ରଶ୍ନଟିର ମୀମାଂସା ସମ୍ଭବ ହେବ ନାହିଁ କିମ୍ବା ପ୍ଳେଟୋଙ୍କର ଦର୍ଶନ ଏକ ଅଯୌକ୍ତିକ ଦ୍ୱୈତବାଦରୁ ନିଜକୁ ରକ୍ଷା କରିପାରିବ ନାହିଁ ।

ପ୍ଳେଟୋଙ୍କ ଦ୍ୱୈତବାଦ କ୍ଷେତ୍ରରେ ଅନ୍ୟ ସମସ୍ୟା ମଧ୍ୟ ନିହିତ ରହିଛି । ଯଦି ଶୁଦ୍ଧସତ୍ତାମାନ ହେଉଛନ୍ତି ପରମ ତତ୍ତ୍ୱ, ତେବେ ଇନ୍ଦ୍ରିୟଗ୍ରାହ୍ୟ ଜଗତର ବ୍ୟାଖ୍ୟା କିପରି ଦିଆଯିବ ? ଶୁଦ୍ଧସତ୍ତା ଯଦି ପରମ ତତ୍ତ୍ୱ, ତେବେ ଜଗତରେ ଯାହା କିଛି ରହିବ ତାହା ଶୁଦ୍ଧସତ୍ତା ସହ ସଂବଂଧିତ ହୋଇରହିବ ବା ତାହା ଆଧାରରେ ବ୍ୟାଖ୍ୟା ହେବ । ସେପରି ସ୍ଥିତିରେ ଇନ୍ଦ୍ରିୟଗ୍ରାହ୍ୟ ଜଗତର କିପରି ବ୍ୟାଖ୍ୟା କରାଯିବ ? ଏହାର ସମାଧାନ ପାଇଁ ପ୍ଳେଟୋ ଯେ କେବଳ ଈଶ୍ୱରଙ୍କୁ ପରିକଳ୍ପନା କରି ତାଙ୍କ ଦର୍ଶନକୁ ଏକ ପ୍ରକାର ଦ୍ୱୈତବାଦରେ ପରିଣତ କରିଛନ୍ତି ତାହା ନୁହଁ, ସେଥିରେ ଅନ୍ୟାନ୍ୟ ସମସ୍ୟା ମଧ୍ୟ ରହିଛି । ଶୁଦ୍ଧସତ୍ତା ମାନଙ୍କୁ କେଉଁଥିରେ ଅଭିବ୍ୟକ୍ତ କରାଯିବ ? ଯେଉଁ ସବୁ ବସ୍ତୁ ଶୁଦ୍ଧସତ୍ତାମାନଙ୍କର ପ୍ରତିଲିପି ହେବେ, ସେହି ଭୌତିକ ଉପାଦାନ ସକଳର ସ୍ଥିତି କେଉଁଠୁ ଆସିବ ? ଈଶ୍ୱରଙ୍କୁ ସ୍ୱୀକାର କରାଯାଇ ଯଦି ବି ଗ୍ରହଣ କରାଯାଏ ଯେ ଶୁଦ୍ଧସତ୍ତାମାନଙ୍କର ପ୍ରତିଲିପି ଭାବରେ ସବୁ କିଛିକୁ ବ୍ୟକ୍ତ କରାଯିବ, ତେବେ ପ୍ରଶ୍ନ ହେବ ବସ୍ତୁମାନ (matter) କେଉଁଠୁ ଉଦ୍‌ଭବ ହେବ ? ବସ୍ତୁର ସ୍ଥିତି କ'ଣ ଓ ଏହା କେଉଁଠାରୁ ସମ୍ଭବ ହୁଏ ଯାହାକୁ ଈଶ୍ୱର ଶୁଦ୍ଧସତ୍ତାମାନଙ୍କର ପ୍ରତିଲିପି ଭାବରେ ବ୍ୟକ୍ତ କରିବେ ? ଯଦି ଶୁଦ୍ଧସତ୍ତାମାନ ପରମ ତତ୍ତ୍ୱର ସ୍ଥାନରେ ରହନ୍ତି, ତେବେ ବସ୍ତୁ ବା ମାଟର ମଧ୍ୟ ଏଥିରୁ ନିର୍ଗତ ହେବା ଆବଶ୍ୟକ ବା ଏହା ଆଧାରରେ ବ୍ୟାଖ୍ୟା ହେବା ଦରକାର । ତେବେ ପ୍ଳେଟୋଙ୍କ ଦର୍ଶନରେ ବସ୍ତୁ ମଧ୍ୟ ଏକ ସତ୍ତା ଯାହା ଶୁଦ୍ଧସତ୍ତାମାନଙ୍କଠାରୁ ଭିନ୍ନ ମନେହୁଏ । ଯେହେତୁ ଭୌତିକ ବସ୍ତୁ ମଧ୍ୟ ମୌଳିକ ଓ ଏହାର ସତ୍ତା ଶୁଦ୍ଧସତ୍ତାଠାରୁ ନିଷ୍ପନ୍ନ ନୁହେଁ ଏହା ମଧ୍ୟ ଏକ ଦ୍ରବ୍ୟ (substance) ହେବ । କିନ୍ତୁ ପ୍ଳେଟୋ ତାଙ୍କ ଦର୍ଶନରେ ଦ୍ରବ୍ୟକୁ ଅସତ୍ (Non being) ବୋଲି ଗ୍ରହଣ କରିଛନ୍ତି । ପ୍ଳେଟୋ ଭୌତିକ ବସ୍ତୁକୁ ଅସତ୍ ବୋଲି ଗ୍ରହଣ କଲେ ମଧ୍ୟ ଏହା ବାସ୍ତବରେ ସତ୍ ହେବ, ଯେହେତୁ ଏହାର ଆଧାର ଶୁଦ୍ଧସତ୍ତା ଉପରେ ନିର୍ଭର କରୁ ନାହିଁ କିମ୍ବା ଶୁଦ୍ଧସତ୍ତା ଦ୍ୱାରା ବ୍ୟାଖ୍ୟା ହୋଇପାରୁ ନାହିଁ । ଏ କ୍ଷେତ୍ରରେ ମଧ୍ୟ ପ୍ଳେଟୋଙ୍କ ଦର୍ଶନରେ ଶୁଦ୍ଧସତ୍ତା ଓ ଭୌତିକ ବସ୍ତୁ ଉଭୟର ଅସ୍ତିତ୍ୱ ସ୍ୱୀକୃତ ହେବ ଓ ଏଠାରେ ମଧ୍ୟ ଏକ ଦ୍ୱୈତବାଦର ଚିତ୍ର ଆସିବ । ଅର୍ଥାତ୍ ଭୌତିକ ବସ୍ତୁ ଯେହେତୁ ଶୁଦ୍ଧସତ୍ତା ଦ୍ୱାରା ବ୍ୟାଖ୍ୟା ହେଉନାହିଁ ଏହା ମଧ୍ୟ ପରମ ବୋଲି ବିବେଚିତ ହେବ ଓ ପରିଣାମତଃ ଏଠାରେ ବି ଏକ ଦ୍ୱୈତବାଦର ସମ୍ଭାବନା ସୃଷ୍ଟି ହେବ ।

ପ୍ଳେଟୋଙ୍କ ଦର୍ଶନରେ ଏହି ଦ୍ୱୈତବାଦର ପରିସ୍ଥିତି ସୃଷ୍ଟି ହେବା ପଶ୍ଚାତରେ ଏକ ମୁଖ୍ୟ କାରଣ ହେଉଛି ସେ ଇନ୍ଦ୍ରିୟାନୁଭୂତି ଓ ବିଚାରବୁଦ୍ଧି ମଧ୍ୟରେ ଏକ ଚରମ ପାର୍ଥକ୍ୟ ଦର୍ଶାଇଛନ୍ତି । ସେ ଇନ୍ଦ୍ରିୟାନୁଭୂତିର ଜଗତ ଓ ବୌଦ୍ଧିକ ଜଗତକୁ ପରସ୍ପରଠାରୁ ସଂପୂର୍ଣ୍ଣ ଭିନ୍ନ କରିଛନ୍ତି ଓ ଏହି ଦୁଇ ସ୍ଥିତି ଭିତରେ କୌଣସି ସମ୍ବନ୍ଧ ସ୍ଥାପନ କରିନାହାନ୍ତି । ଯେକୌଣସି ଏକ ଦ୍ୱୈତବାଦୀ ବ୍ୟବସ୍ଥାରେ ଦୁଇ ମୂଳ ତତ୍ତ୍ୱ ମଧ୍ୟରେ କେଉଁ ସ୍ତରରେ ହେଲେ ମଧ୍ୟ ସଂପର୍କର ସେତୁ ରହିବା ଆବଶ୍ୟକ । ପ୍ଳେଟୋଙ୍କ ଦର୍ଶନ କ୍ଷେତ୍ରରେ ଶୁଦ୍ଧସତ୍ତା ଓ ଇନ୍ଦ୍ରିୟଗ୍ରାହ୍ୟ ଜଗତ ମଧ୍ୟରେ,

ଇନ୍ଦ୍ରିୟାନୁଭୂତି ଓ ବିଚାରବୁଦ୍ଧି ମଧ୍ୟରେ ଏବଂ ଶରୀର ଓ ଆତ୍ମା ମଧ୍ୟରେ ଏହି ଭେଦଭାବର ଅଭିବ୍ୟକ୍ତି ଓ ସଂପର୍କ ନେଇ ପ୍ରଶ୍ନ ଉଠିଛି । ତେବେ ଇନ୍ଦ୍ରିୟାନୁଭୂତି ଓ ବିଚାରବୁଦ୍ଧି ମଧ୍ୟରେ ପାର୍ଥକ୍ୟ ଏକ ସ୍ୱାଭାବିକ ପ୍ରଶ୍ନ । ଯେକୌଣସି ଏକ ଦାର୍ଶନିକ ସିଷ୍ଟମରେ ଏହା ରହିବା ଅସ୍ୱାଭାବିକ ନୁହେଁ । ବିଚାରବୁଦ୍ଧି ସହିତ ସତ୍ୟ, ତତ୍ତ୍ୱକୁ ସଂଯୋଜିତ କରିବା ହୁଏତ ଯୁକ୍ତିସଂଗତ ମନେ ହୋଇପାରେ । ତେବେ ବିଚାରବୁଦ୍ଧି ଓ ଇନ୍ଦ୍ରିୟାନୁଭୂତି ମଧ୍ୟରେ ପାର୍ଥକ୍ୟ ଦର୍ଶାଗଲେ ମଧ୍ୟ ସେମାନେ ଏକ ସ୍ଥିତିରୁ ଦୁଇଟି ଧାରା ଭାବରେ ନିର୍ଗତ ହେବା ଆବଶ୍ୟକ । ଏକ ଦାର୍ଶନିକ ବିଚାର କ୍ଷେତ୍ରରେ ବିଚାରବୁଦ୍ଧିକୁ ପରମ ତତ୍ତ୍ୱ ଭାବରେ ଗ୍ରହଣ କଲେ ମଧ୍ୟ ଇନ୍ଦ୍ରିୟାନୁଭୂତିକୁ ଏକ ନିମ୍ନଗାମୀ ସ୍ଥାନ ମଧ୍ୟ ଦିଆଯିବା ଯଥାର୍ଥ ହୋଇପାରେ । କିନ୍ତୁ ପ୍ଲେଟୋ ବିଚାରବୁଦ୍ଧି ଓ ଇନ୍ଦ୍ରିୟାନୁଭୂତି ଭିତରେ କୌଣସି ସମ୍ବନ୍ଧ ସ୍ଥାପନ କରିନଥିବା ହେତୁ ଓ ସେମାନଙ୍କ ଭିତରେ ରହିଥିବା ସଂପର୍କ ଓ ପାର୍ଥକ୍ୟକୁ ଯଥାର୍ଥ ଭାବରେ ବ୍ୟକ୍ତ କରିନଥିବା କାରଣରୁ ତାଙ୍କ ଦର୍ଶନ ସ୍ପଷ୍ଟ ଦ୍ୱୈତବାଦକୁ ଅତିକ୍ରମ କରିବାରେ ସଫଳ ହୋଇନାହିଁ । ତେଣୁ ଯେଉଁ ପ୍ରଥମ ପ୍ରଶ୍ନର ଅବତାରଣା ହୋଇଥିଲା ଯେ ଶୁଦ୍ଧସତ୍ତା ସିଦ୍ଧାନ୍ତ ଜଗତର ବ୍ୟାଖ୍ୟାନ କ୍ଷେତ୍ରରେ ସଫଳ କି, ଅର୍ଥାତ୍ ଶୁଦ୍ଧସତ୍ତାକୁ ପରମ ଭାବେ ଗ୍ରହଣ କରାଗଲେ ଏହା ଜଗତର ବ୍ୟାଖ୍ୟାନ କରିବାକୁ ସମର୍ଥ କି – ର ଉତ୍ତର ହେବ – ଏହା ସଫଳ ହୋଇନାହିଁ ।

ଦ୍ୱିତୀୟ ପ୍ରଶ୍ନ ହେଉଛି ଶୁଦ୍ଧସତ୍ତା ସିଦ୍ଧାନ୍ତ ଏକ ସ୍ୱବ୍ୟାଖ୍ୟାନ ମୂଳକ ସିଦ୍ଧାନ୍ତ କି ନୁହଁ? ଅର୍ଥାତ୍ ଏହି ବ୍ୟାଖ୍ୟାନ ଅନ୍ୟ କୌଣସି ସତ୍ତା ବା ତତ୍ତ୍ୱ ଉପରେ ନିର୍ଭରଶୀଳ ନୁହେଁତ ?. ବସ୍ତୁବାଦୀ ମାନେ ବସ୍ତୁକୁ ପରମ ବୋଲି ମନେକରନ୍ତି । ଯଦି ବି ସ୍ୱୀକାର କରାଯାଏ ଯେ ସବୁ କିଛିର ମୂଳ ହେଉଛି ବସ୍ତୁ, ତେବେ ପୁନଶ୍ଚ ପ୍ରଶ୍ନ ହେବ ବସ୍ତୁ ସବୁର ମୂଳସତ୍ତା ହେବାର କାରଣ କ'ଣ ହୋଇପାରେ ? ହୁଏତ ଏହା ଏକ ଘଟଣା ଯେ ବସ୍ତୁ ସବୁର ମୂଳ, ତେବେ ବସ୍ତୁ କାହିଁକି ରହିଛି ବା କାହିଁକି ସବୁର ମୂଳ ଏ ପ୍ରଶ୍ନ ଅବାନ୍ତର ହେବ ନାହିଁ । ସବୁ ବିଷୟର ଏକ ତର୍କସଂଗତ ବ୍ୟାଖ୍ୟାନ ପାଇଁ ସର୍ବଦା ସମ୍ଭାବନା ରହିଥାଏ । କୌଣସି ବିଷୟରେ ଏକ ତର୍କସମ୍ମତ ବ୍ୟାଖ୍ୟାନ ପାଇଁ ପ୍ରଶ୍ନ ଉଠାଇବା ବେଶ୍ ଯୁକ୍ତିସଂଗତ । କିନ୍ତୁ "ବିଚାରବୁଦ୍ଧିସମ୍ମତ ବ୍ୟାଖ୍ୟାନ"ର ବ୍ୟାଖ୍ୟା ପ୍ରଶ୍ନ ଉଠିନପାରେ । କିଛିର ବ୍ୟାଖ୍ୟାନ ଦେବା ବେଳେ ସେହି ବ୍ୟାଖ୍ୟାନ ଯୁକ୍ତିସମ୍ମତ କି ନୁହଁ ଏ ପ୍ରଶ୍ନ ଉଠାଯାଇପାରେ । କିନ୍ତୁ ବିଚାରସମ୍ମତ ବ୍ୟାଖ୍ୟାନ ସଂପର୍କରେ ଏହି ପ୍ରଶ୍ନ ଉଠିପାରିବ ନାହିଁ । କୌଣସି ବିଷୟରେ ଏକ ଉପଯୁକ୍ତ ବ୍ୟାଖ୍ୟାନ ଦିଆଗଲା ପରେ ଏହାକୁ ଗ୍ରହଣ କରାଯାଏ । ଜଗତର ପ୍ରତ୍ୟେକ ବସ୍ତୁ ବା ଘଟଣାର ଏକ ବିଚାରସମ୍ମତ ବ୍ୟାଖ୍ୟାନର ପ୍ରଶ୍ନ ଉଠିପାରେ । କିନ୍ତୁ ଯୁକ୍ତିଶୀଳତା ବା ବିଚାରବୁଦ୍ଧିର ବ୍ୟାଖ୍ୟାନ ସଂପର୍କରେ ଏହି ପ୍ରଶ୍ନ ଉଠିନଥାଏ । ଏହି ପ୍ରସଙ୍ଗରେ ଷ୍ଟେସ ଲେଖିଛନ୍ତି – " Reason is already absolutely rational. It is what explains itself. It is its own reason. It is a self-explanatory principle" (ପୃଷ୍ଠା ୨୬୮)

ବିଚାରବୁଦ୍ଧି ଏକ ସ୍ୱବ୍ୟାଖ୍ୟାନମୂଳକ ନିୟମ । ଦାର୍ଶନିକ ମାନେ ଏହି ପ୍ରକାର ଏକ ପରମ ତତ୍ତ୍ୱ ପାଖରେ ଉପନୀତ ହେବାକୁ ପ୍ରୟାସ କରନ୍ତି ଯାହା ସବୁ କିଛିକୁ ବ୍ୟାଖ୍ୟା କରିବା ସହ ନିଜକୁ ନିଜେ ବି ବ୍ୟାଖ୍ୟା କରିବାକୁ ସମର୍ଥ । ପ୍ଲେଟୋ ପରମ (Absolute) କୁ ପ୍ରତ୍ୟୟ ଭାବରେ ଗ୍ରହଣ କରିଛନ୍ତି କାରଣ ପ୍ରତ୍ୟୟ ହେଉଛି ବିଚାର

ବୁଦ୍ଧି । ପ୍ଲେଟୋ ଯେତେବେଳେ ଶୁଦ୍ଧସତ୍ତା ମାନଙ୍କୁ ପରମ ବୋଲି ଗ୍ରହଣ କରିଛନ୍ତି ଏହା ଅନୁମିତ ହେବା ସ୍ୱାଭାବିକ ଯେ ସମ୍ଭବତଃ ସେ ଶୁଦ୍ଧସତ୍ତାକୁ ସ୍ୱବ୍ୟାଖ୍ୟାନ ମୂଳକ ସିଦ୍ଧାନ୍ତ ଭାବେ ସ୍ୱୀକାର କରୁଛନ୍ତି । ତେବେ ବିଚାରବୁଦ୍ଧିକୁ ଯଦି ଏତେ ପ୍ରାଧାନ୍ୟ ଦିଆଯିବ, ତେବେ ବିଚାରବୁଦ୍ଧିର ମାନଦଣ୍ଡ କ'ଣ; ଓ କେଉଁ ପ୍ରକାରର ବ୍ୟାଖ୍ୟାନ ଯୁକ୍ତିସଂଗତ ବା ଯୁକ୍ତିସଂଗତ ନୁହେଁ, ତାହା କିପରି ନିର୍ଣ୍ଣୟ କରାଯିବ ? ବିଚାର ବୁଦ୍ଧି ବା ଏକ ତର୍କସଂଗତ ବ୍ୟାଖ୍ୟାନକୁ ପ୍ରଶ୍ନ ଉଠାଯାଇନପାରେ । ବିଚାରଶୀଳତା ବା ତର୍କସଂଗତ ଅଭିବ୍ୟକ୍ତିକୁ ପ୍ରଶ୍ନକରିବା ଅସଂଗତ ହୋଇପାରେ, କିନ୍ତୁ ବିଚାରଶୀଳତା ଭିତରେ ପ୍ରକାଶିତ ହୋଇଥିବା ପ୍ରସଙ୍ଗ **(content of reason)** କୁ ପ୍ରଶ୍ନ କରିବା ଅସଂଗତ ନୁହେଁ । ପ୍ଲେଟୋଙ୍କ କ୍ଷେତ୍ରରେ ଏହି ପ୍ରସଙ୍ଗ ହେଉଛି ପ୍ରତ୍ୟୟ । ତେବେ କେଉଁ ପ୍ରତ୍ୟୟ ? ଏକ ନିର୍ଦ୍ଦିଷ୍ଟ ପ୍ରତ୍ୟୟ ବିଚାରଶୀଳ ପରିସରରେ ଅନ୍ତର୍ଭୁକ୍ତ କି ନୁହଁ ? ଏକ ପ୍ରତ୍ୟୟ ଯଦି ତର୍କଶୀଳ ପରିସରରେ ଅନ୍ତର୍ଭୁକ୍ତ ତେବେ ଏହା ବିଚାରଶୀଳତାର ପରିସରରେ ଅନ୍ତର୍ଭୁକ୍ତ । ଯଦି ଆମେ ସ୍ୱୀକାର କରିବା ଯେ ଜଗତର ଏକ ବିଚାରଶୀଳ ବ୍ୟାଖ୍ୟାନ ଦର୍ଶନର ଆଭିମୁଖ୍ୟ, ତେବେ ପ୍ରଥମେ ଦେଖିବା ଆବଶ୍ୟକ ଆମେ ଯାହାକୁ ବିଚାରଶୀଳ କହୁଛେ ତାହା ପ୍ରକୃତରେ ଏକ ଯୁକ୍ତିସଂଗତ ଅଭିବ୍ୟକ୍ତି ନା ନୁହେଁ । ଏ କ୍ଷେତ୍ରରେ କୌଣସି ଅବ୍ୟାଖ୍ୟାନମୂଳକ, ରହସ୍ୟମୟ ବା ଅବୋଧ ପ୍ରସଙ୍ଗ ରହିବା ଆବଶ୍ୟକ ନୁହେଁ । ଯେଉଁ ସିଦ୍ଧାନ୍ତ ବା ପ୍ରତ୍ୟୟ ଆଧାରରେ ଆମେ ଜଗତକୁ ବ୍ୟାଖ୍ୟା କରିବାକୁ ଚାହୁଁଛେ ଯଦି ସେହି ସିଦ୍ଧାନ୍ତ ନିଜସ୍ୱ ସ୍ୱରୂପରେ ଅଯୌକ୍ତିକ ହୋଇଥାଏ, ତେବେ ତାହାକୁ ଭିତ୍ତିକରି ଜଗତର ବ୍ୟାଖ୍ୟା ଦେବା ସମ୍ଭବ ହେବ ନାହିଁ ।

ଏକ ପ୍ରତ୍ୟୟ ନିଜସ୍ୱ ସ୍ଥିତିରେ ବିଚାରଶୀଳ ହେବା ଆବଶ୍ୟକ । ଏହାର ଅର୍ଥ ହେବ ଏକ ପ୍ରତ୍ୟୟ ସ୍ୱରୂପରେ ଆବଶ୍ୟିକ ବା ଅନିବାର୍ଯ୍ୟ **(necessary)** ହେବା ଯଥାର୍ଥ । ଏକ ଅନିବାର୍ଯ୍ୟ ତର୍କବଚନ ନିଶ୍ଚିତ ଭାବରେ ସତ୍ୟ ଓ ଏହାର ବିପରୀତ ସ୍ୱବିରୋଧାତ୍ମକ । ଯେପରି ୨+୩=୫, ଏକ ଲାଲବର୍ଣ୍ଣର ଗୋଲାପ ଲାଲରଙ୍ଗର, ସେ ଜୀବିତ କିମ୍ବା ମୃତ, ଇତ୍ୟାଦି । ସକଳ ଅନିବାର୍ଯ୍ୟ ବଚନ ସ୍ୱରୂପରେ ସତ୍ୟ ଯେହେତୁ ତାର ବିପରୀତକୁ ଚିନ୍ତା କରାଯାଇ ପାରିବ ନାହିଁ । ଏହି ବଚନମାନଙ୍କ କ୍ଷେତ୍ରରେ ଯାହା କୁହାଯାଉଛି, ସେହିପରି ପ୍ରତ୍ୟୟ ବିଷୟରେ ତାହା କୁହାଯିବା ଆବଶ୍ୟକ । ପ୍ଲେଟୋ ଯେଉଁ ଶୁଦ୍ଧସତ୍ତାମାନଙ୍କୁ ପ୍ରତ୍ୟୟ ଭାବରେ ସ୍ୱୀକାର କରୁଛନ୍ତି ସେମାନେ ନିଜର ବ୍ୟାଖ୍ୟାନ କରିବାକୁ ସମର୍ଥ ନା ସେମାନେ ବ୍ୟାଖ୍ୟାତୀତ ପରମ ତଥ୍ୟ ମାତ୍ର ? ଯଦି ପ୍ରତ୍ୟୟ ମାନଙ୍କୁ ଜଗତ ବ୍ୟାଖ୍ୟାନର ମୌଳିକ ଆଧାର ଭାବରେ ଗ୍ରହଣ କରାଯିବ, ତେବେ ସେମାନେ କେବଳ ଅନିବାର୍ଯ୍ୟ ହେବେ ନାହିଁ, ସେମାନେ ଅନିବାର୍ଯ୍ୟ ଭାବେ ସୁନିଶ୍ଚିତ ହେବା ଆବଶ୍ୟକ ।

ପ୍ଲେଟୋ ଯେଉଁ ଶୁଦ୍ଧସତ୍ତାମାନଙ୍କର ଅବତାରଣା କରିଛନ୍ତି ସେମାନେ ଏପରି ଆବଶ୍ୟିକ ବା ଅନିବାର୍ଯ୍ୟ ମନେହୁଅନ୍ତି ନାହିଁ । ପ୍ଲେଟୋଙ୍କ ପରିଭାଷାରେ ଧବଳତ୍ୱ, ଗାଈତ୍ୱ, ମାନବତ୍ୱ, ନଦୀତ୍ୱ ଇତ୍ୟାଦି ହେଉଛି ଶୁଦ୍ଧସତ୍ତା । ସଂସାରରେ ଧଳା ବସ୍ତୁମାନ ଅଛନ୍ତି ତେଣୁ ଧବଳତ୍ୱ ଏକ ଶୁଦ୍ଧସତ୍ତା ଏକ ଭିନ୍ନ ଜଗତରେ ରହିଛି, ଜଗତରେ ଗାଈମାନେ ରହିଛନ୍ତି ତେଣୁ ଗାଈତ୍ୱର ଶୁଦ୍ଧସତ୍ତା ଅନ୍ୟ ଜଗତରେ ଅବସ୍ଥାନ କରୁଛି ଇତ୍ୟାଦି । ଏହି ପ୍ରତ୍ୟେକ

ଶୁଦ୍ଧସତ୍ତା ଏକ ତଥ୍ୟ, ଏହା ଜଗତର ବସ୍ତୁମାନଙ୍କୁ ବ୍ୟାଖ୍ୟା ଦେବାକୁ ଅନିବାର୍ଯ୍ୟ ନୁହେଁ । ଆମେ ଧବଳତ୍ୱ, ଗାଈତ୍ୱ ଇତ୍ୟାଦିକୁ ବାଦ୍ ଦେଇ ଜଗତକୁ ବ୍ୟାଖ୍ୟା କରିବା କ୍ଷେତ୍ରରେ କୌଣସି ଅସୁବିଧା ନାହିଁ । କୌଣସି ଶୁଦ୍ଧସତ୍ତାକୁ ଅସ୍ୱୀକାର କରିବାଦ୍ୱାରା କୌଣସି ବିରୋଧାଭାସ ସୃଷ୍ଟି ହେବ ନାହିଁ । ଜଗତରେ ରହିଥିବା ଧଳା ବସ୍ତୁମାନ କାହିଁକି ଧଳା, ତାହାର ବ୍ୟାଖ୍ୟା ଦେବାକୁ ଯାଇ ପ୍ଲେଟୋ ଭାବିଛନ୍ତି ଯେ ସେମାନେ ଧଳା କାରଣ ସେମାନେ ଧବଳତ୍ୱ ଶୁଦ୍ଧସତ୍ତାର ପ୍ରତିଲିପି । ଏହା ଜଗତର ଘଟଣାମାନଙ୍କୁ ବ୍ୟାଖ୍ୟା କରିବା କ୍ଷେତ୍ରରେ ସେପରି କୌଣସି ଯୁକ୍ତିସଂଗତ ଆଧାର ଦେଉ ନାହିଁ । ପୁନଶ୍ଚ ଧବଳତ୍ୱ, ସୌନ୍ଦର୍ଯ୍ୟ ଇତ୍ୟାଦି ଶୁଦ୍ଧସତ୍ତା ମାନଙ୍କର କାରଣ କ'ଣ ହୋଇପାରେ ଏହାର  କୌଣସି ଉତ୍ତର ମଧ ପ୍ଲେଟୋଙ୍କ ମାନଦଣ୍ଡରୁ ଯୁକ୍ତିସଂଗତ ଭାବରେ ପ୍ରଦାନ କରିହେବ ନାହିଁ । ଏସବୁକୁ କଳ୍ପନା କରିବା କ୍ଷେତ୍ରରେ ସେମାନେ ବିଚାରଶୀଳ ବ୍ୟାଖ୍ୟାନର କୌଣସି ଅଂଶ ମଧ ନୁହନ୍ତି । ଅର୍ଥାତ୍ କୌଣସି ଶୁଦ୍ଧସତ୍ତା ଯେ ଜଗତର ବ୍ୟାଖ୍ୟାନ କ୍ଷେତ୍ରରେ ଏକ ବିଚାରଶୀଳ ଭିତ୍ତି ଦିଏ ନାହିଁ ଏହା ସୁସ୍ପଷ୍ଟ ମନେହୁଏ ।

ଏଠାରେ ଏକ ସମ୍ଭାବନାର ସୂତ୍ର ହୁଏତ ଦେଇ ହେବ । ଶୁଦ୍ଧସତ୍ତା ମାନଙ୍କର କାରଣ ବିଷୟରେ ଚିନ୍ତା କଲାବେଳେ ପ୍ଲେଟୋଙ୍କ ଦର୍ଶନ ପରିପ୍ରେକ୍ଷୀରେ ଏକ ଉତ୍ତରର କଳ୍ପନା କରାଯାଇପାରେ । ପ୍ଲେଟୋ ସର୍ବୋଚ୍ଚ ଶୁଦ୍ଧସତ୍ତା ଭାବରେ ଶୁଭମୟ (Good) କୁ ନେଇଛନ୍ତି । ସେପରି କ୍ଷେତ୍ରରେ ପ୍ରତ୍ୟେକ ଶୁଦ୍ଧସତ୍ତାର ବ୍ୟାଖ୍ୟାନ ପାଇଁ ଶୁଭମୟକୁ ନିଆଯାଇପାରେ । ଅର୍ଥାତ୍ ଶୁଭମୟରୁ ପ୍ରତ୍ୟେକ ଶୁଦ୍ଧସତ୍ତାକୁ ନିଗମନ କରାଯାଇ ପାରିବ । ଯଦି ଶୁଭମୟରୁ ସମସ୍ତ ଶୁଦ୍ଧସତ୍ତାକୁ ଉଦ୍‌ଭୂତ କରାଯାଇ ପାରିବ, ତେବେ ଏହା ଏକ ଯଥୋଚିତ ବ୍ୟାଖ୍ୟାନ ହୋଇପାରିବ । କିନ୍ତୁ ଶୁଭମୟ ସହ କୌଣସି ଶୁଦ୍ଧସତ୍ତାର କିଛି ଅନିବାର୍ଯ୍ୟ ସମ୍ବନ୍ଧ ରହିଛି କି ? ପ୍ଲେଟୋ ବି ତାଙ୍କର ପାର୍ମେନିଡୀସ ଡାଏଲଗ୍‌ରେ ମତ ବ୍ୟକ୍ତ କରିଛନ୍ତି ଯେ ଏକକ ଶୁଦ୍ଧସତ୍ତା ଭାବନାରୁ ବହୁ ଶୁଦ୍ଧସତ୍ତାର ସମ୍ବନ୍ଧ ରହିଛି ଓ ବହୁ ଶୁଦ୍ଧସତ୍ତାର ଭାବନା ସହ  ଏକକ ଶୁଦ୍ଧସତ୍ତାର ଭାବନା ସଂପୃକ୍ତ ରହିଛି । ସେପରି ହେଲେ ଶୁଭମୟରୁ ସୌନ୍ଦର୍ଯ୍ୟ ଶୁଦ୍ଧସତ୍ତାକୁ ନିଗମନ କରିବା ସମ୍ଭବ ହେବ । କିନ୍ତୁ ଏହା କେବେ ବି ସମ୍ଭବ ନୁହେଁ । ଶୁଭମୟକୁ ଆମେ ଯେକୌଣସି କ୍ଷେତ୍ରରେ ପ୍ରସାରିତ କରିପାରେ କିମ୍ବା ତାର ନାନା ଦିଗନ୍ତର ପରିକଳ୍ପନା କରିପାରେ, ତେବେ ସେଥିରୁ ସୌନ୍ଦର୍ଯ୍ୟ ଶୁଦ୍ଧସତ୍ତାକୁ ଉଦ୍‌ଭୂତ କରାଇ ପାରିବା ନାହିଁ । କାରଣ ଶୁଭମୟ ଓ ସୌନ୍ଦର୍ଯ୍ୟ ଶୁଦ୍ଧସତ୍ତା (କିମ୍ବା ଯେକୌଣସି ଶୁଦ୍ଧସତ୍ତା) ମଧ୍ୟରେ କୌଣସି ଅନିବାର୍ଯ୍ୟ ସମ୍ବନ୍ଧ ନାହିଁ । ଶୁଭମୟରୁ କୌଣସି ଶୁଦ୍ଧସତ୍ତାର ନିଗମନ ସଂଭବ ନୁହେଁ, କାରଣ ସେମାନଙ୍କ ଭିତରେ କୌଣସି ଅନିବାର୍ଯ୍ୟ ସମ୍ବନ୍ଧ ନାହିଁ ।

ଗୋଟିଏ ଯୁକ୍ତି ହେଉଛି ପ୍ରତ୍ୟେକ ଶୁଦ୍ଧସତ୍ତାର ପରିପୂର୍ଣ୍ଣତା (perfection) ରହିଛି । ଯେହେତୁ ପ୍ରତ୍ୟେକ ଶୁଦ୍ଧସତ୍ତାର ପରିପୂର୍ଣ୍ଣତା ରହିଛି, ତେଣୁ ଶୁଭମୟରୁ ପ୍ରତ୍ୟେକ ଶୁଦ୍ଧସତ୍ତାକୁ ଉଦ୍‌ଭୂତ କରିହେବ ଯେହେତୁ ଶୁଭମୟ ହେଉଛି ପରିପୂର୍ଣ୍ଣତମ । ତେବେ ଏହି ଯୁକ୍ତିର ଏକ ଦୁର୍ବଳତା ରହିଛି ।  ଧବଳତ୍ୱର ପରିପୂର୍ଣ୍ଣତା, ପୀତତ୍ୱର ପରିପୂର୍ଣ୍ଣତା, ଲାଲତ୍ୱର ପରିପୂର୍ଣ୍ଣତା ରହିଛି ତେଣୁ ପରିପୂର୍ଣ୍ଣତା ଏକ  ଉର୍ଦ୍ଧ୍ୱତର ଶୁଦ୍ଧସତ୍ତା । ରଙ୍ଗ ଶୁଦ୍ଧସତ୍ତାରେ ଲାଲ୍, ପୀତ, ସବୁଜ ଇତ୍ୟାଦିକୁ ଅନ୍ତର୍ଭୁକ୍ତ କରିହେବ । ସେମାନଙ୍କ ଭିତରେ ସାଧାରଣ ଗୁଣ ରଙ୍ଗତ୍ୱ ଥିବାରୁ ରଙ୍ଗର ଶୁଦ୍ଧସତ୍ତା

ରହିପାରିବ । କିନ୍ତୁ ଯାହା ସବୁଜ ତାହା ଲାଲ ନୁହେଁ । ସୁତରାଂ ରଙ୍ଗର ଶୁଦ୍ଧସତ୍ତାରେ ସବୁଜତ୍ୱ, ପୀତତ୍ୱ, ଲାଲତ୍ୱ ଇତ୍ୟାଦି ନାହାନ୍ତି । ରଙ୍ଗର ଶୁଦ୍ଧସତ୍ତାରେ ନିର୍ଦ୍ଦିଷ୍ଟ ରଙ୍ଗ ବହନ କରୁଥିବା ଶୁଦ୍ଧସତ୍ତା ରହିପାରିବ ନାହିଁ । ସବୁଜତ୍ୱର ପରିପୂର୍ଣ୍ଣତା, ପରିପୂର୍ଣ୍ଣତମ ଶୁଦ୍ଧସତ୍ତା ଶୁଭମୟରେ ରହିପାରିବ, କିନ୍ତୁ ସବୁଜ ରହିପାରିବ ନାହିଁ । ସୁତରାଂ ଶୁଭମୟରୁ ନିର୍ଦ୍ଦିଷ୍ଟ ଲକ୍ଷଣ ବହନ କରୁଥିବା କିଛିକୁ ନିଗମନ କରିବା ସମ୍ଭବ ନୁହେଁ । ଏକ ବିଷୟ ଯେଉଁଥିରେ ଅନ୍ତର୍ନିହିତ ନାହିଁ, ସେଥିରୁ ତାହା ନିଗମନ କରିହେବ ନାହିଁ । ଯଦିବି ଆମେ ଚିନ୍ତା କରିବା ଯେ ଶୁଭମୟରୁ ପ୍ରତ୍ୟେକ ଶୁଦ୍ଧସତ୍ତାକୁ ନିଗମନ କରିହେବ, ତେବେ ଏଥିରେ କୌଣସି ଅନିବାର୍ଯ୍ୟତା ଅଭାବରେ ସେମାନଙ୍କୁ ଶୁଭମୟରୁ ଉଦ୍‌ଭୂତ କରିହେବ ନାହିଁ । ଶୁଭମୟ ଏକ ଅନିବାର୍ଯ୍ୟ ଶୁଦ୍ଧସତ୍ତା ହୋଇପାରେ, କିନ୍ତୁ ପ୍ଲେଟୋ ଏ ସମ୍ବନ୍ଧରେ ନିଜର ବିଚାରବ୍ୟକ୍ତ କରିନାହାନ୍ତି ।

ପ୍ଲେଟୋ ତାଙ୍କ ଦର୍ଶନରେ ବିଚାରବୁଦ୍ଧିକୁ ପରମ ବୋଲି ଗ୍ରହଣ କରିଛନ୍ତି ଓ ବିଚାରବୁଦ୍ଧି ଏକ ସ୍ୱବ୍ୟାଖ୍ୟାନକାରୀ ପ୍ରତ୍ୟୟ । କିନ୍ତୁ ବିଚାରବୁଦ୍ଧି ଭିତରେ ସେ ଯେଉଁ ସବୁ ପ୍ରତ୍ୟୟମାନଙ୍କୁ ଅନ୍ତର୍ଭୁକ୍ତ କରିଛନ୍ତି ସେ ମଧ୍ୟରୁ କେହି ନିଜସ୍ୱ ସ୍ୱରୂପରେ ବିଚାରସମ୍ମତ ନୁହନ୍ତି । ତେଣୁ ତାଙ୍କ ପ୍ରଦତ୍ତ ବିଚାରବୁଦ୍ଧିକୁ ସେ ପରମ ବୋଲି ଗ୍ରହଣ କଲେ ମଧ୍ୟ ଏହା ସ୍ୱବ୍ୟାଖ୍ୟାନକାରୀ ନୁହେଁ । ଏକ ପରମ ସିଦ୍ଧାନ୍ତର ପରିକଳ୍ପନା କଲାବେଳେ ତାହାର ଦୁଇଟି ପ୍ରାଥମିକ ଲକ୍ଷଣ ରହିବା ଆବଶ୍ୟକ । ପ୍ରଥମରେ ଏହା ଆଧାରରେ ଜଗତର ବ୍ୟାଖ୍ୟାନ ସମ୍ଭବ ଓ ଦ୍ୱିତୀୟରେ ଏହା ସ୍ୱବ୍ୟାଖ୍ୟାନକାରୀ ହେଉଥିବା ଦରକାର । ଏ ଉଭୟ କ୍ଷେତ୍ରରେ ପ୍ଲେଟୋଙ୍କ ସିଦ୍ଧାନ୍ତ ସଫଳ ହୋଇନାହିଁ । ତାଙ୍କ ପରମ ତତ୍ତ୍ୱର ପରିକଳ୍ପନା ଜଗତକୁ ବ୍ୟାଖ୍ୟା କରିବାରେ ସଫଳ ହୋଇ ନାହିଁ ଏବଂ ଏହା ନିଜକୁ ମଧ୍ୟ ବ୍ୟାଖ୍ୟା କରିବାରେ ସଫଳତା ଲାଭ କରି ନାହିଁ ।

ପୁନଶ୍ଚ ପ୍ଲେଟୋଙ୍କ ଦର୍ଶନରେ ଅନ୍ୟ ଏକ ବଡ ଜଟିଳତା ରହିଛି । ତାଙ୍କ ଦର୍ଶନରେ ସତ୍ତା ବା ତତ୍ତ୍ୱ (reality) ଓ ସ୍ଥିତି ବା ଅବସ୍ଥିତି (existence) ମଧ୍ୟରେ ଅସ୍ପଷ୍ଟତା ରହିଛି । ପ୍ଲେଟୋଙ୍କ ପ୍ରତ୍ୟୟବାଦ (Idealism) ରେ ସତ୍ତା ଓ ସ୍ଥିତିର ପାର୍ଥକ୍ୟ ନେଇ ସ୍ପଷ୍ଟତା ନାହିଁ । ପ୍ଲେଟୋଙ୍କ ମତରେ ବ୍ୟକ୍ତିଗତ ଭାବରେ ଗାଈମାନଙ୍କର ସତ୍ତା ନାହିଁ, କିନ୍ତୁ ସେମାନଙ୍କର ସ୍ଥିତି ରହିଛି । ଗାଈ ପ୍ରତ୍ୟୟ ବା ଶୁଦ୍ଧସତ୍ତାର ତତ୍ତ୍ୱ ରହିଛି କିନ୍ତୁ ତାର ସ୍ଥିତି ନାହିଁ । କିନ୍ତୁ ପ୍ଲେଟୋ ପରମ ସତ୍ତା ବା ପ୍ରତ୍ୟୟ ମାନଙ୍କର ସ୍ଥିତି ଥିବା ପରିକଳ୍ପନା କରିଛନ୍ତି । ପରିଣାମତଃ ସେ ଶୁଦ୍ଧସତ୍ତାମାନଙ୍କୁ ବାସ୍ତବ ଜଗତରେ ସ୍ଥାନ ନଦେଇ ବା ସେମାନଙ୍କୁ ତତ୍ତ୍ୱ ଭିତରେ ସୀମିତ ନ ରଖି ସେମାନଙ୍କୁ ଏକ ଭିନ୍ନ ଜଗତରେ ଅବସ୍ଥାନ (subsistent world) କରାଇଛନ୍ତି । ପରମ ତତ୍ତ୍ୱ ମାନଙ୍କର ଅବସ୍ଥିତି ଆମ ଜଗତରେ ନାହିଁ, ଏକ ଭିନ୍ନ ଜଗତରେ ରହିଛି । ତେବେ ଯାହାର ଅସ୍ତିତ୍ୱ ରହିଛି ତାହା ଏକ ବିଶେଷ । ସେ ତାଙ୍କ ଶୁଦ୍ଧସତ୍ତାମାନଙ୍କୁ ସାର୍ବିକ କରିଛନ୍ତି । ପ୍ଲେଟୋ ପୁନଶ୍ଚ କହିଛନ୍ତି ଯେ ଶୁଦ୍ଧସତ୍ତା କାଳାତୀତ । ଯାହାର ସ୍ଥିତି ରହିଛି ତାହା ଦେଶ-କାଳ ଭିତରେ ରହିଥାଏ । ସୁତରାଂ ଶୁଦ୍ଧସତ୍ତାମାନେ ତତ୍ତ୍ୱ ଭାବରେ ସ୍ଥାନ-କାଳର ଅତୀତ ହୋଇ ଏକ ଭିନ୍ନ ଜଗତରେ ଅବସ୍ଥାନ କରୁଛନ୍ତି ଓ ସେମାନେ ସ୍ୱରୂପରେ ସାର୍ବିକ । ତେବେ ପ୍ଲେଟୋ ଯେତେବେଳେ ଆତ୍ମାର ପ୍ରସଙ୍ଗରେ ଆଲୋଚନା

କରିଛନ୍ତି ସେ ପୂର୍ବସ୍ମୃତି ଓ ପୁନର୍ଜନ୍ମର ଭାବନା ପ୍ରସଙ୍ଗରେ ଅବତାରଣା କରିଛନ୍ତି । ସେ କହିଛନ୍ତି ଯେ ବ୍ୟକ୍ତିର ଜନ୍ମ ପୂର୍ବରୁ ତା'ର ଆତ୍ମା ଶୁଦ୍ଧସତ୍ତା ମାନଙ୍କର ଜଗତରେ ରହିଥାଏ ଓ ମୃତ୍ୟୁ ପରେ ସେ ସେହି ଶୁଦ୍ଧସତ୍ତାର ଜଗତକୁ ଯିବାପାଇଁ ଆଶାପୋଷଣ କରେ । ଏହା କହିବା ବେଳେ ପ୍ଲେଟୋ ଶୁଦ୍ଧସତ୍ତା ମାନଙ୍କୁ ବିଶେଷ ଭାବରେ ନେଉଛନ୍ତି ଓ ସେମାନଙ୍କୁ ଏକ ଭିନ୍ନ ଜଗତରେ ଅବସ୍ଥିତି ଦେଇଛନ୍ତି । ପ୍ଲେଟୋଙ୍କର ପ୍ରତ୍ୟୟବାଦ ଯାହା ସତ୍ତାମାନଙ୍କୁ ସାର୍ବିକ ଭାବେ ନେଇ ସେମାନଙ୍କୁ ପରମ ବୋଲି ବିଚାର କରିଥିଲା, ତାହା ପରବର୍ତ୍ତୀ ସମୟରେ ସେମାନଙ୍କୁ ବିଶେଷ ସତ୍ତାରେ ରୂପାନ୍ତରିତ କରି ସେମାନଙ୍କୁ ଏକ ଭିନ୍ନ ଜଗତରେ ଅବସ୍ଥାନ କରାଇଲା । ସେ ଯେଉଁ ତତ୍ତ୍ୱମାନଙ୍କୁ ଚିନ୍ତାର ଉପାଦାନ ଭାବରେ ପରିକଳ୍ପନା କରି ସେମାନଙ୍କୁ ପରମ ସତ୍ତା ଭାବରେ ନେଇଥିଲେ, ପରେ ସେମାନଙ୍କୁ ବିଶେଷ କରି ଭିନ୍ନ ଜଗତରେ ଅବସ୍ଥାନ କରାଇଲେ । ଏହାହିଁ ତାଙ୍କ ଦାର୍ଶନିକ ସିଦ୍ଧାନ୍ତର ଏକ ବଡ ଦୁର୍ବଳତା । ଏହି ଦୁର୍ବଳତା ସତ୍ତ୍ୱେ ଏହା ସତ୍ୟ ଯେ ପ୍ଲେଟୋ ପ୍ରତ୍ୟୟବାଦର ଜନକ ଭାବରେ ଦର୍ଶନ ଇତିହାସରେ ପରିଚିତ । ସେ ପ୍ରତ୍ୟୟକୁ ସାର୍ବିକ ଭାବରେ ଚିନ୍ତା କରି ପ୍ରତ୍ୟୟବାଦକୁ ଜନ୍ମ ଦେଇଛନ୍ତି ।

ବିଂଶଶତାବ୍ଦୀୟ ଦାର୍ଶନିକ ଅବବୋଧରେ ପ୍ଲେଟୋଙ୍କୁ ସଂଶୋଧନାତ୍ମକ ତତ୍ତ୍ୱମୀମାଂସା (revisionary metaphysics) ର ମୁଖ୍ୟ ପ୍ରବର୍ତ୍ତକ ଭାବରେ ଗ୍ରହଣ କରାଯାଏ । ବିଂଶଶତାବ୍ଦୀରେ ତତ୍ତ୍ୱମୀମାଂସୀୟ ଜ୍ଞାନ କିପରି ନିରାଧାର ଓ ପ୍ରତ୍ୟୟାତ୍ମକ ଅସ୍ପଷ୍ଟତାରୁ ଉଦ୍ଭବ ତାହାର ଶାଣିତ ସ୍ୱର ଶୁଣିବାକୁ ମିଳେ । ବିଶେଷକରି ଭାବବାଦୀ ଦାର୍ଶନିକମାନଙ୍କ ମତରେ ଇନ୍ଦ୍ରିୟ ଆଧାରିତ ଜ୍ଞାନ ଅଳୀକ ଓ ଅମୂଳକ । ପ୍ଲେଟୋ ସକଳ ଇନ୍ଦ୍ରିୟ ଲବ୍ଧ ଜ୍ଞାନକୁ ଅଳୀକ ଓ ଅମୂଳକ ବୋଲି ଗ୍ରହଣ କରିଛନ୍ତି । ଦାର୍ଶନିକମାନେ ଭାଷାର ବାହ୍ୟିକ ଏକରୂପତା, ମନୁଷ୍ୟ ମନର ଐକ୍ୟ ସ୍ଥାପନ ପାଇଁ କାମନା, ଜାତିବାଚକ ଏକ ଶ୍ରେଣୀର ସମସ୍ତ ବାଚ୍ୟାର୍ଥ ମାନଙ୍କ ମଧ୍ୟରେ ଏକକ ସତ୍ତାର ସାଧାରଣ ଉପସ୍ଥିତି ନେଇ ପରିକଳ୍ପନାରୁ ଗମ୍ଭୀର ଦାର୍ଶନିକ ସମସ୍ୟାମାନଙ୍କୁ ଉଦ୍‌ଭବ କରାଇଛନ୍ତି । ଏହିପରି କାରଣମାନଙ୍କ ଯୋଗୁ କିପରି ଗୁରୁତର ସମସ୍ୟାମାନ ଦର୍ଶନ ଜଗତରେ ସୃଷ୍ଟି ହୋଇଛି ତାହା ବିଂଶଶତାବ୍ଦୀର ଦାର୍ଶନିକମାନେ ସୁନ୍ଦର ଭାବରେ ଦର୍ଶାଇଛନ୍ତି । ବିଶେଷକରି ଇଉଟ୍‌ଗେନ୍‌ଷ୍ଟାଇନ୍ (୧୮୮୯-୧୯୫୧) ଦାର୍ଶନିକ ସମସ୍ୟା ମାନଙ୍କର ଉତ୍ପତ୍ତି ଓ ସେସବୁର ସମାଧାନ ନେଇ ଯେଉଁ ନୂତନ ବିଚାର ଦେଲେ ତାହା ଦର୍ଶନ ଇତିହାସରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କଲା । ସଂଶୋଧନାତ୍ମକ ତତ୍ତ୍ୱମୀମାଂସକମାନେ କିପରି ଦାର୍ଶନିକ ସମସ୍ୟାକୁ ସୃଷ୍ଟି କରିଛନ୍ତି ଓ ପରସ୍ପରବିରୋଧୀ ସିଦ୍ଧାନ୍ତମାନ ସର୍ଜନା କରିଛନ୍ତି ତାହା ସ୍ପଷ୍ଟ ହେଉଛି । ପ୍ଲେଟୋ ଥିଲେ ସଂଶୋଧନାତ୍ମକ ତତ୍ତ୍ୱମୀମାଂସା ସୃଷ୍ଟି କ୍ଷେତ୍ରରେ ଜଣେ ପ୍ରବୀଣ ବ୍ୟକ୍ତି ।

ପ୍ଲେଟୋଙ୍କ ପୃଷ୍ଠଭୂମିରେ କୁହାଯାଇପାରେ ଯେ ଜାତିବାଚକ ଶବ୍ଦମାନଙ୍କୁ ସେ ନାମବାଚକ ପଦ ରୂପେ ଭାବିଛନ୍ତି । ଫଳରେ ଏକ ଜାତିର ସମସ୍ତ ବ୍ୟକ୍ତିଙ୍କ ଭିତରେ ଏକକ ସତ୍ତା ସାଧାରଣ ଭାବେ ଥିବା ଭାବି ସେହି ସତ୍ତା ଏକ ସ୍ଥିତିମୂଳକ ସିଦ୍ଧାନ୍ତ ବୋଲି ପରିକଳ୍ପନା କରିଛନ୍ତି । ସବୁ ମନୁଷ୍ୟ ମାନଙ୍କ ଭିତରେ ମନୁଷ୍ୟତ୍ୱ, ସମସ୍ତ ସୁନ୍ଦର ବସ୍ତୁମାନଙ୍କ ମଧ୍ୟରେ ସୌନ୍ଦର୍ଯ୍ୟ ବା ସକଳ ଗାଈମାନଙ୍କ ଭିତରେ ଗାଈତ୍ୱର ପରିକଳ୍ପନା କରି ସେମାନଙ୍କର ତାତ୍ତ୍ୱିକ

ଅବିସ୍ଥିତି ଥିବା ଦର୍ଶାଇ ସେମାନଙ୍କୁ ଶୁଦ୍ଧସତ୍ତା କହିଛନ୍ତି । କିନ୍ତୁ ଶୁଦ୍ଧସତ୍ତାର ପରିକଳ୍ପନା ଏକ ଭ୍ରମାତ୍ମକ ବିଚାର । ଏହା ବୌଦ୍ଧିକ ଅସ୍ପଷ୍ଟତାରୁ ଉଦ୍‌ଭବ ହୋଇଛି । ଏକ ଜାତି ବା ଶ୍ରେଣୀବାଚକ ପଦ କୌଣସି ଶୁଦ୍ଧସତ୍ତାକୁ ବୁଝାଏ ନାହିଁ କିମ୍ବା ଏକ ଶ୍ରେଣୀର ବ୍ୟକ୍ତିମାନଙ୍କ ଭିତରେ କୌଣସି ସାଧାରଣ ଲକ୍ଷଣ କୌଣସି ତତ୍ତ୍ୱ ବା ସତ୍ତାକୁ ସୂଚନା ଦିଏ ନାହିଁ ।

ପ୍ଲେଟୋଙ୍କ ଦର୍ଶନରେ ଏହି ସବୁ ତ୍ରୁଟି ରହିଛି । ତଥାପି ପ୍ଲେଟୋଙ୍କ ଦର୍ଶନ ଦର୍ଶନ-ଇତିହାସରେ ନାନା ଗୌରବର ଅଧିକାରୀ । ସେ ବିଶ୍ୱ ଦୃଶ୍ୟପଟରେ ଦର୍ଶନକୁ ଯେପରି ବ୍ୟାପକ ସ୍ତରରେ ପ୍ରୟୋଗକରି ଦର୍ଶନର ଦିଗନ୍ତକୁ ବିସ୍ତାର କରିଛନ୍ତି ତାହା ତାଙ୍କ ସମୟରେ ଏକ ଅନନ୍ୟ ଅବଦାନ ମନେହୁଏ ।

# ଅଷ୍ଟମ ପରିଚ୍ଛେଦ

## ଆରିଷ୍ଟୋଟଲ

### ୮.୧ ଜୀବନୀ ଓ କୃତି

ଗ୍ରୀସ୍‌ରେ ଯେତେ ଦାର୍ଶନିକମାନଙ୍କର ଆବିର୍ଭାବ ଘଟିଛି ସେମାନଙ୍କ ମଧ୍ୟରେ ବିଶ୍ୱ ଚିନ୍ତାରାଜ୍ୟରେ ସବୁଠାରୁ ଯେ ଅଧିକ ପ୍ରଭାବଶାଳୀ ସେ ହେଉଛନ୍ତି ଆରିଷ୍ଟୋଟଲ । ଜ୍ଞାନବିଜ୍ଞାନର ଯେତେ ଯେତେ କ୍ଷେତ୍ର ଆଧୁନିକ ଯୁଗରେ ଦେଖିବାକୁ ମିଳେ ସେଥିରୁ ଅଧିକାଂଶ ବିଷୟରେ ସେ ପ୍ରଥମେ ଚିନ୍ତା ବା ବିଚାରର ସୂତ୍ରପାତ କରିଥିଲେ । ସେ ଥିଲେ ଏକ ଜୀବନ୍ତ ଜ୍ଞାନକୋଷ । ବିଶ୍ୱ ଚିନ୍ତାରାଜ୍ୟରେ ତାଙ୍କର ଅବଦାନ ଅତୁଳନୀୟ । ଗ୍ରୀସ୍‌ରେ ଚିନ୍ତାରାଜ୍ୟର ବହୁ କ୍ଷେତ୍ରରେ ଯେଉଁ ବୈଚାରିକ କ୍ରାନ୍ତିର ଯୁଗ ଆରମ୍ଭ ହୋଇଥିଲା, ସେହି ସୃଜନଶୀଳ ଯୁଗର ଶେଷ ପ୍ରତିଭା ଥିଲେ ଆରିଷ୍ଟୋଟଲ । ଏପରିକି ଆରିଷ୍ଟୋଟଲଙ୍କର ଅବଦାନ ଏତେ ଦିଗନ୍ତ ପ୍ରସାରୀ ଓ ମୌଳିକ ଥିଲା ଯେ ତାଙ୍କ ସମକକ୍ଷ ଏକ ପ୍ରତିଭା ୟୁରୋପରେ ତାଙ୍କ ଜନ୍ମର ଦୁଇହଜାର ବର୍ଷ ମଧ୍ୟରେ ସୃଷ୍ଟି ହୋଇନଥିଲା ବୋଲି ବର୍ଟ୍ରାଣ୍ଡ ରସେଲ ତାଙ୍କ "ପାଶ୍ଚାତ୍ୟ ଦର୍ଶନର ଇତିହାସ" ପୁସ୍ତକରେ ପ୍ରକାଶ କରିଛନ୍ତି । (ପୃଷ୍ଠା ୧୫୯) । ବିଜ୍ଞାନ ଓ ଦର୍ଶନ କ୍ଷେତ୍ରକୁ ତାଙ୍କ ଅବଦାନର ବ୍ୟାପକତା ଓ ମୌଳିକତା ପରିପ୍ରେକ୍ଷୀରେ ଏହା ରସେଲ କହିଛନ୍ତି । ସପ୍ତଦଶ ଶତାବ୍ଦୀରେ ୟୁରୋପୀୟ ନବଜାଗରଣ ପରେ ଯେଉଁ ଜ୍ଞାନଦୀପ୍ତିର ଯୁଗ ଆରମ୍ଭ ହୋଇଥିଲା ସେଥିରେ ଆରିଷ୍ଟୋଟଲଙ୍କ ଚିନ୍ତାମାନସକୁ ବା କୌଣସି ସିଦ୍ଧାନ୍ତକୁ ସମାଲୋଚନା କରି ନୂତନ ବିଚାରର ସୂତ୍ରପାତ ହୋଇଥିଲା । ଏହି ଦୃଷ୍ଟିରୁ କହିବାକୁ ଗଲେ ୟୁରୋପୀୟ ଚିନ୍ତାରାଜ୍ୟରେ ଦୁଇ ହଜାର ବର୍ଷ ଧରି ଆରିଷ୍ଟୋଟଲଙ୍କ ଚିନ୍ତା ଓ ବିଚାରର ପ୍ରଭାବ ରହିଥିଲା ।

ଆରିଷ୍ଟୋଟଲଙ୍କର ଜନ୍ମ ଖ୍ରୀ.ପୂ. ୩୮୪ ରେ ଥ୍ରାସ ସ୍ଥିତ ଷ୍ଟେଗିରସଠାରେ ହୋଇଥିଲା ବୋଲି ଐତିହାସିକମାନେ ନିର୍ଣ୍ଣୟ କରିଛନ୍ତି । ତାଙ୍କ ବାପା ନିକୋମାକସ ମାସେଡୋନିଆ ରାଜ୍ୟର ଶାସକ ଆମିଣ୍ଟାସଙ୍କର ଚିକିତ୍ସକ ଥିଲେ । ଆମିଣ୍ଟାସ ଥିଲେ ଆଲେକ୍‌ଜାଣ୍ଡରଙ୍କ ଜେଜେ ବାପା । ଆରିଷ୍ଟୋଟଲ କିଶୋର ଥିବା ବେଳେ ତାଙ୍କ ପିତାଙ୍କର ଦେହାନ୍ତ ହେଲା । ସେ ପିଲାଟି ବେଳୁ ବେଶ୍ ତୀକ୍ଷ୍ଣ ବୁଦ୍ଧି ସଂପନ୍ନ ଥିଲେ । ପିତାଙ୍କ ମୃତ୍ୟୁପରେ ତାଙ୍କର ଅଭିଭାବକ ପ୍ରୋକ୍ସେନସ୍ ତାଙ୍କୁ ବିଦ୍ୟାନଗରୀ ଏଥେନ୍‌ସକୁ ଶିକ୍ଷା ପାଇଁ ପଠାଇଲେ । ଆରିଷ୍ଟୋଟଲ ଏଥେନ୍‌ସ ଆସି ଏଠାରେ ପ୍ଲେଟୋଙ୍କ ଆକାଡେମୀରେ ସତର ବର୍ଷ ବୟସରେ ବିଦ୍ୟାର୍ଥୀ ଭାବେ ଯୋଗଦେଲେ । ସେ ଏଠାରେ କୋଡିଏ ବର୍ଷ ପ୍ଲେଟୋଙ୍କ ଶିକ୍ଷାନୁଷ୍ଠାନରେ ରହି ପ୍ଲେଟୋଙ୍କ ପାଖରେ ଅଧ୍ୟୟନ କରିଥିବା ଜଣାଯାଏ । ପ୍ଲେଟୋଙ୍କ ସହ ତାଙ୍କର କେତେକ କ୍ଷେତ୍ରରେ ବୈଚାରିକ ମତପାର୍ଥକ୍ୟ ରହିଥିଲା, ତେବେ ଗୁରୁଶିଷ୍ୟଙ୍କ ମଧ୍ୟରେ ପ୍ରୀତିପଦ ସମ୍ବନ୍ଧ ରହିଥିଲା । ପ୍ଲେଟୋଙ୍କର ଖ୍ରୀ.ପୂ. ୩୪୭ରେ ମୃତ୍ୟୁପରେ ତାଙ୍କ ଆକାଡେମୀର ଦାୟିତ୍ୱ ତାଙ୍କ ପୁତୁରା

ସ୍ପେସିପସ ଗ୍ରହଣ କଲେ । ଏହାପରେ ଆରିଷ୍ଟୋଟଲ ଏଥେନ୍ସ ଛାଡି ସାଂପ୍ରତିକ ସମୟରେ ତୁର୍କୀର ଉପକୂଳବର୍ତ୍ତୀ ସ୍ଥାନ ଆସୋସକୁ ଚାଲିଗଲେ । ଏଠାରେ ତାଙ୍କର ବିବାହ ଆସୋସର ଶାସକଙ୍କ ଜଣେ ସଂପର୍କୀୟା ପିଥିଆସଙ୍କ ସହ ହୋଇଥିବା ଜଣାଯାଏ । ଏହି ସମୟରେ ମାସେଡୋନିଆର ଶାସକ ଫିଲିପ୍ ରହିଥିଲେ ଓ ତାଙ୍କ ପୁତ୍ର ଆଲେକ୍ଜାଣ୍ଡରଙ୍କୁ ଶିକ୍ଷା ଦେବା ପାଇଁ ଫିଲିପ୍ ଆରିଷ୍ଟୋଟଲଙ୍କୁ ମାସେଡୋନିଆକୁ ଆସିବାକୁ ଚାହିଁଲେ । ଆରିଷ୍ଟୋଟଲ ଆସୋସ ପରିତ୍ୟାଗ କରି ମାସେଡୋନିଆ ଆସି ଯୁବରାଜ ଆଲେକ୍ଜାଣ୍ଡର (ପରେ ଯେ "ଦି ଗ୍ରେଟ୍" ଭାବରେ ପରିଚିତ ହେଲେ) ଙ୍କର ଗୃହଶିକ୍ଷକ ଭାବେ ଖ୍ରୀ.ପୂ. ୩୪୩ ରେ ଯୋଗଦେଲେ । ସେତେବେଳକୁ ଆଲେକ୍ଜାଣ୍ଡରଙ୍କର ବୟସ ମାତ୍ର ୧୩ ବର୍ଷ ହୋଇଥିଲା । ଦୀର୍ଘ ଆଠବର୍ଷ ଧରି ଆରିଷ୍ଟୋଟଲ ଆଲେକ୍ଜାଣ୍ଡରଙ୍କର ଗୃହଶିକ୍ଷକ ଥିଲେ । ଖ୍ରୀ.ପୂ. ୩୩୫ରେ ଫିଲିପଙ୍କର ଦେହାନ୍ତ ହେଲା ଓ ଆଲେକ୍ଜାଣ୍ଡର ମାସେଡୋନିଆର ଶାସକ ହେଲେ । ଖ୍ରୀ.ପୂ. ୩୩୫ ରେ ଆଲେକ୍ଜାଣ୍ଡର ମାସେଡୋନିଆର ଶାସନ ଭାର ଗ୍ରହଣ କଲାପରେ ଆରିଷ୍ଟୋଟଲ ଏଥେନ୍ସ ସେହି ବର୍ଷ ଫେରି ଆସିଲେ । ଆରିଷ୍ଟୋଟଲଙ୍କର ପତ୍ନୀ ପିଥିଆସଙ୍କର ଦେହାନ୍ତ ହୋଇଗଲା ଓ ପରେ ସେ ଅନ୍ୟ ଜଣେ ଷ୍ଟେଗିରୀୟ ମହିଳା ହର୍ପେଲିସ୍ଙ୍କୁ ବିବାହ କଲେ । ଏହା ଭିତରେ ଆଲେକ୍ଜାଣ୍ଡର ପ୍ରାୟ ଶହେଟି ଗ୍ରୀସର ଜନରାଜ୍ୟକୁ ନେଇ ତାଙ୍କ ବିଶାଳ ସାମ୍ରାଜ୍ୟ ପ୍ରତିଷ୍ଠା କଲେ ଓ ଏପରିକି ଇଜିପ୍ଟ, ସିରିଆ, ପର୍ସିଆ ଓ ଭାରତର ଉତ୍ତର-ପଶ୍ଚିମ ପର୍ଯ୍ୟନ୍ତ ରାଜ୍ୟକୁ ଜୟ କରିଥିଲେ । ଖ୍ରୀ.ପୂ. ୩୨୩ରେ ଆଲେକ୍ଜାଣ୍ଡରଙ୍କର ଦେହାନ୍ତ ପରେ ଏଥେନସରେ ଆଲେକ୍ଜାଣ୍ଡରଙ୍କ ବିରୁଦ୍ଧରେ ଏକ ଗଣବିଦ୍ରୋହ ସୃଷ୍ଟି ହୋଇଥିଲା । ଆରିଷ୍ଟୋଟଲ ଖ୍ରୀ.ପୂ. ୩୩୫ରେ ଏଥେନସ୍ ଚାଲିଆସିବା ପରେ ସେଠାରେ ଲିସେଅମଠାରେ ଅନ୍ୟ ଏକ ଆକାଡେମୀ ସ୍ଥାପନ କରିଥିଲେ । ଆରିଷ୍ଟୋଟଲଙ୍କର ଏହି ଆକାଡେମୀରେ ବି ବହୁ ବିଦ୍ୟାର୍ଥୀ ଆସି ଅଧ୍ୟୟନ କଲେ । ସେ ତାଙ୍କର ଆକାଡେମୀ ବାର ବର୍ଷ ଧରି ଏଠାରେ ଚଳାଇଥିଲେ । ତେବେ ଖ୍ରୀ.ପୂ. ୩୨୩ ରେ ଆଲେକ୍ଜାଣ୍ଡରଙ୍କ ମୃତ୍ୟୁପରେ ଏଥେନ୍ସରେ ପୁନଶ୍ଚ ଗଣତନ୍ତ୍ର ପ୍ରତିଷ୍ଠା ନେଇ ଯେଉଁ ବିଦ୍ରୋହ ସୃଷ୍ଟି ହୋଇଥିଲା ସେତେବେଳେ ସେଠାରେ ମାସେଡୋନିଆ ସମର୍ଥିତ ଏକ ସରକାର ରହିଥିଲା । ଏଥେନ୍ସୀୟ ମାନେ ମାସେଡୋନିଆ ବିରୋଧୀ ହୋଇଗଲେ ଓ ଆଲେକଜାଣ୍ଡର ଯେପରି ଆକ୍ରମଣ କରି ସବୁ ନଗରରାଜ୍ୟମାନଙ୍କୁ କରାୟତ କରିଥିଲେ ସେମାନେ ନିଜର ସ୍ୱାଧୀନତା ପାଇଁ ବିଦ୍ରୋହ କଲେ । ଏଥେନ୍ସରେ ଏକ ମାସେଡୋନିଆ ବିରୋଧୀ ସରକାର କ୍ଷମତାକୁ ଆସିଲେ ଓ ଆଲେକ୍ଜାଣ୍ଡରଙ୍କର ମୃତ୍ୟୁ ଯୋଗୁ ଏଥେନ୍ସୀୟ ମାନେ ଆଉ କୌଣସି ଆକ୍ରମଣର ଆଶଙ୍କା କଲେ ନାହିଁ । ତେବେ ଏଥେନ୍ସର ସରକାର ଆରିଷ୍ଟୋଟଲଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖିଲେ ଓ ସେ ଆଲେକ୍ଜାଣ୍ଡରଙ୍କର ଶିକ୍ଷକ ଓ ମାସେଡୋନିଆର ସମର୍ଥକ ବୋଲି ଏପରି ଧାରଣା ପୋଷଣ କଲେ । ବାସ୍ତବରେ ଆରିଷ୍ଟୋଟଲଙ୍କର ମାସେଡୋନିଆ ସହିତ କିମ୍ବା ଏକଛତ୍ରବାଦୀ ଆଲେକ୍ଜାଣ୍ଡରଙ୍କ ସହ କିଛି ସଂପର୍କ ନଥିଲା । ତେବେ ଏଥେନ୍ସରେ ତାଙ୍କ ବିରୁଦ୍ଧରେ ଯେଉଁ ଜନରବ ସୃଷ୍ଟି ହୋଇଥିଲା ଓ ସେ ଯେ ଈଶ୍ୱର ଅବିଶ୍ୱାସୀ ଏହି ଆଶଙ୍କାରେ ତାଙ୍କୁ ସକ୍ରେଟିସ୍ଙ୍କର ପରିଣତି ଭୋଗିବାକୁ ପଡିପାରେ ବୋଲି ସେ ତାଙ୍କ କେତେକ ନିକଟତମ ବନ୍ଧୁଙ୍କଠାରୁ ସୂଚନା ପାଇଲେ । ଫଳରେ ଆରିଷ୍ଟୋଟଲ ଏଥେନ୍ସରେ

ରହିବା ନିରାପଦ ନୁହେଁ ବୋଲି ଚିନ୍ତାକରି ସେ ଏଥେନ୍ସ ଛାଡି ଖ୍ରୀ.ପୂ. ୩୨୩ରେ ୟୁବୋଆସ୍ଥିତ ଚାଲସିସ୍‌କୁ ଚାଲିଆସିଲେ । ଏଥେନ୍ସରେ ରାଜନୈତିକ ଅନୁକୂଳ ସ୍ଥିତି ଆସିଲେ ସେ ସେଠାକୁ ପରେ ଫେରିବେ ବୋଲି ଆଶା କରିଥିଲେ । ଚାଲସିସ୍‌ରେ ମାତ୍ର ଗୋଟିଏ ବର୍ଷ ରହିବା ଭିତରେ ସେ ଭୀଷଣ ଅସୁସ୍ଥ ହୋଇ ପଡିଲେ ଓ ଖ୍ରୀ.ପୂ. ୩୨୨ରେ ୬୩ ବର୍ଷ ବୟସରେ ତାଙ୍କ ଜୀବନର ଅବସାନ ଘଟିଥିଲା ।

ଆରିଷ୍ଟୋଟଲଙ୍କ ବ୍ୟକ୍ତିତ୍ୱ ଓ ପ୍ରଜ୍ଞା ବିଷୟରେ ତାଙ୍କର ଛାତ୍ର ଆଲେକ୍‌ଜାଣ୍ଡର ଦି ଗ୍ରେଟଙ୍କ କେତେକ ଉକ୍ତି କେତେକ ଲେଖକ ଉଦ୍ଧାର କରିଥାନ୍ତି । ଆଲେକ୍‌ଜାଣ୍ଡର ଆରିଷ୍ଟୋଟଲଙ୍କୁ ତାଙ୍କ ବାପାଙ୍କଠାରୁ ଅଧିକ ସମ୍ମାନ କରୁଥିବା ଜଣାଯାଏ । କୁହାଯାଏ ଯେତେବେଳେ ସେ ପ୍ରଥମେ ଆରିଷ୍ଟୋଟଲଙ୍କ ସମ୍ପର୍କରେ ଆସିଲେ ସେ ଥିଲେ ଚପଳ, କିଶୋର, ଭାବପ୍ରବଣ, ବଣ୍ୟ-ସ୍ୱଭାବ ଅଶ୍ୱଙ୍କୁ ନିୟନ୍ତ୍ରଣ କରି ସେମାନଙ୍କୁ ଧରି ବୁଲିବା ଥିଲା ତାଙ୍କର ପାସ୍ ଟାଇମ । ସେ ତାଙ୍କ ବାପାଙ୍କଠାରୁ ଲାଭ କରିଥିଲେ ଜୀବନ କିନ୍ତୁ ଆରିଷ୍ଟୋଟଲଙ୍କଠାରୁ ଶିଖିଥିଲେ ବଞ୍ଚିରହିବାର କଳା । ଗ୍ରୀସ୍‌ର ଗୋଟିଏ ଲୋକ ଉକ୍ତି କୁହେ- "ଜୀବନ ପ୍ରକୃତିର ଦାନ, କିନ୍ତୁ ଏକ ଉତ୍ତମ ଜୀବନ ହେଉଛି ପ୍ରଜ୍ଞାର ଅବଦାନ" । ଆଲେକ୍‌ଜାଣ୍ଡର ଏକ ପତ୍ରରେ ଆରିଷ୍ଟୋଟଲଙ୍କୁ ଲେଖିଥିଲେ - "ଉତ୍ତମ ଜୀବନ ସଂପର୍କରେ ମୁଁ ଯେଉଁ ଜ୍ଞାନ ଆପଣଙ୍କ ପାଖରୁ ଶିକ୍ଷା କରିଥିଲି, ତାହାର ଉତ୍କର୍ଷ ମୁଁ ମୋର କ୍ଷମତା ଓ ଆଧିପତ୍ୟ ବିସ୍ତାର କରିବା କ୍ଷେତ୍ରରେ ରକ୍ଷା କରିପାରିଲି ନାହିଁ" । ଆରିଷ୍ଟୋଟଲଙ୍କ ବିଷୟରେ କୁହାଯାଏ ଯେ ଜ୍ଞାନର ଇତିହାସରେ ସେ ଥିଲେ ଜଣେ ସମନ୍ୱୟକାରୀ ଦାର୍ଶନିକ । ସେହିପରି ଆଲେକ୍‌ଜାଣ୍ଡର ଥିଲେ ରାଜନୈତିକ ପରିସରରେ ଗ୍ରୀସ୍‌ର ଇତିହାସରେ ଜଣେ ସମନ୍ୱୟକାରୀ ଓ ଗ୍ରୀସ୍‌କୁ ଏକତ୍ରୀକରଣ କରିବାର ସଫଳ ବ୍ୟକ୍ତିତ୍ୱ । ତାଙ୍କ ରାଜନୈତିକ ସଫଳତା ପଶ୍ଚାତରେ ଯେଉଁ ଗୁରୁଙ୍କର ଶିକ୍ଷା, ପ୍ରଶିକ୍ଷଣ ଓ ଜୀବନବୋଧର ପ୍ରେରଣା ରହିଥିଲା ସେ ହେଉଛନ୍ତି ଆରିଷ୍ଟୋଟଲ ।

ଆରିଷ୍ଟୋଟଲଙ୍କର ସୃଷ୍ଟି ସମ୍ଭାର ଥିଲା ବହୁ ଦିଗନ୍ତ ବିସ୍ତାରୀ । ପ୍ଲେଟୋଙ୍କ ରଚନାକାଳ ଥିଲା ପଚାଶ ବର୍ଷ, କିନ୍ତୁ ଆରିଷ୍ଟୋଟଲ ତାଙ୍କର ଲେଖାମାନଙ୍କୁ ଜୀବନର ଶେଷ ବାର ତେର ବର୍ଷରେ ଲେଖିଥିଲେ । ତାଙ୍କ ପୂର୍ବର ଦାର୍ଶନିକ ଓ ତାଙ୍କ ମଧ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ଦେଖିବାକୁ ମିଳେ । ବିଭିନ୍ନ ପ୍ରସଙ୍ଗମାନଙ୍କ ଉପରେ ସେ ତାଙ୍କର ଚିନ୍ତାଧାରାକୁ ଏପରି ରୀତିବଦ୍ଧ ଓ ସୁଶୃଂଖଳ ଭାବରେ ବ୍ୟକ୍ତ କରିଛନ୍ତି ଯାହା ସେ ଯୁଗରେ କଳ୍ପନା କରିବା ସମ୍ଭବ ନଥିଲା । ଆରିଷ୍ଟୋଟଲଙ୍କ ଉପରେ ବର୍ଟ୍ରାଣ୍ଡ ରସେଲ ତାଙ୍କ ପାଶ୍ଚାତ୍ୟ ଦର୍ଶନର ଇତିହାସ ପୁସ୍ତକରେ ଲେଖିଛନ୍ତି- "He is the first to write like a professor: his treatises are systematic, his discussions are divided into heads, he is a professional teacher, not an inspired prophet" (ପୃଷ୍ଠା ୧୬୧)

ଆରିଷ୍ଟୋଟଲଙ୍କର କୃତିର ସଂଖ୍ୟା ନେଇ ଗବେଷକମାନଙ୍କ ମଧ୍ୟରେ ମତପାର୍ଥକ୍ୟ ରହିଛି । କେତେକ ମତ ଦିଅନ୍ତି ଯେ ସେ ପ୍ରାୟ ଚାରି ଶହ ପୁସ୍ତକର ରଚୟିତା । ଗୋଟିଏ ପୁସ୍ତକର ଏକ ପରିଚ୍ଛେଦକୁ ଏଠାରେ ବହି ବୋଲି ଧରାଯାଇଛି । ତେବେ ତାଙ୍କର କୃତି ସଂଖ୍ୟା ଏକ ଶହ ବୋଲି ବେଶି ଲେଖକ ମତପ୍ରକାଶ କରିଛନ୍ତି ।

ତଥାପି ତାଙ୍କ କୃତିର ଅଧିକାଂଶ ଭାଗ ନଷ୍ଟ ହୋଇ ଯାଇଥିବା ମନେ କରାଯାଏ । ଯେଉଁ ଭାଗ ରହିଛି ସେଥିରୁ ବି ତାଙ୍କ ପ୍ରତିଭା ଓ ପାଣ୍ଡିତ୍ୟର ସୂଚନା ମିଳେ । ଯେଉଁ ସବୁ ପୁସ୍ତକମାନ ଉପଲବ୍ଧ ରହିଛି ସେଥିର ବହୁ ଅଂଶ ବି ନାହିଁ । ବିଶେଷକରି ତାଙ୍କର ପୁସ୍ତକ "ମେଟାଫିଜିକ୍ସ" ଗ୍ରନ୍ଥ ଏକ ଅସଂପୂର୍ଣ୍ଣ କୃତି । ତାଙ୍କର କେତେକ ବହି ଆଲୋଚନାର ମଝିଭାଗରେ ଶେଷ ହୋଇଛି । ତାର ପର ପୁସ୍ତକଟି ଅନ୍ୟ ଏକ ପ୍ରସଙ୍ଗ ଉପରେ ଆଲୋଚନାର ମଝିରୁ ଆରମ୍ଭ ହୋଇଛି । ସୁତରାଂ ଏହି ସବୁ ଅସଂଗତିରୁ ପରିକଳ୍ପନା କରାଯାଏ ଯେ ବିଭିନ୍ନ ପୁସ୍ତକରୁ କିଛି କିଛି ଅଂଶ ନଷ୍ଟ ହୋଇଯାଇଛି । ଏହା ମଧ ହୋଇପାରେ କେତେକ ପୁସ୍ତକ ପ୍ରକାଶ ଉଦ୍ଦେଶ୍ୟରେ ଶେଷ ସ୍ପର୍ଶ ପାଇପାରି ନାହିଁ । ଏସବୁ ଦୁର୍ବଳତା ସତ୍ତ୍ୱେ ଆରିଷ୍ଟୋଟଲଙ୍କର ରଚନା ସମ୍ଭାର ସୁବିସ୍ତୃତ । ବିଭିନ୍ନ ପୁସ୍ତକରୁ ତାଙ୍କ ବିଚାର, ଚିନ୍ତାଧାରା ଓ ବ୍ୟାଖ୍ୟାନରୁ ତାଙ୍କ ମତ ବିଷୟରେ ଏକ ସ୍ପଷ୍ଟ ଚିତ୍ର ମିଳିଥାଏ । ଆରିଷ୍ଟୋଟଲ ଯେଉଁ ସମୟରେ ଦ୍ୱିତୀୟବାର ଏଥେନ୍ସରେ ରହି ତାଙ୍କର ଆକାଡେମୀ ପ୍ରତିଷ୍ଠା କରିଥିଲେ ସେହି ସମୟରେ ହିଁ ତାଙ୍କର ମୁଖ୍ୟ କୃତିମାନଙ୍କୁ ରଚନା କରିଥିଲେ । ତାଙ୍କର ରଚନା ସମ୍ଭାରକୁ ବିଚାରକୁ ନେଇ ଗବେଷକ ମାନେ ତାଙ୍କର ବୈଚାରିକ ଅବଦାନକୁ ବିଭିନ୍ନ ଶ୍ରେଣୀରେ ବିଭାଜନ କରିଥାନ୍ତି । ସାଂପ୍ରତିକ ଯୁଗରେ ଜ୍ଞାନର ଯେପରି ବିଭାଗୀକରଣ କରାଯାଉଛି ଆରିଷ୍ଟୋଟଲଙ୍କ ସମୟରେ ତାହା ଅଚିନ୍ତନୀୟ ଥିଲା । ଯେଉଁମାନେ ପ୍ରଜ୍ଞାବାନ ବ୍ୟକ୍ତି ସେମାନେ ବହୁ ପ୍ରସଙ୍ଗ ଉପରେ ନିଜର ସିଦ୍ଧାନ୍ତ ବା ମତ ମାନ ରଖୁଥିଲେ । ତେବେ ସେହି ଯୁଗରେ ଜ୍ଞାନର ଦିଗନ୍ତ ଏତେ ବିସ୍ତାରିତ ହୋଇନଥିବା ଯୋଗୁ ଜ୍ଞାନ ସ୍ତରରେ କୌଣସି ବିଶେଷତା (specialization) ନ ଥିଲା ଓ ଅଧିକାଂଶ ମୌଳିକ ଚିନ୍ତନ ଦର୍ଶନର ପରିସରରେ ରହିଥିଲା । ତେବେ ଆରିଷ୍ଟୋଟଲ ଯେଉଁ ସବୁ ମୌଳିକ କ୍ଷେତ୍ର ଉପରେ ତାଙ୍କ ଅବଦାନର ସ୍ୱାକ୍ଷର ରଖିଛନ୍ତି ତାହାକୁ କେତେଟି ଶ୍ରେଣୀରେ ବିଭାଜନ କରାଯାଇପାରେ । ଯଥା (୧) ତର୍କଶାସ୍ତ୍ର (୨) ପ୍ରାକୃତିକ ଦର୍ଶନ (୩) ତତ୍ତ୍ୱମୀମାଂସା (୪) ନୀତିଶାସ୍ତ୍ର (୫) ରାଜନୈତିକ ଦର୍ଶନ (୬) ସୌନ୍ଦର୍ଯ୍ୟଶାସ୍ତ୍ର (୭) ଇତିହାସ (୮) ସାହିତ୍ୟ (୯) ମନୋବିଜ୍ଞାନ । ସାଂପ୍ରତିକ ପରିଭାଷାରେ ଯାହାକୁ ଭୌତିକ ବିଜ୍ଞାନ ବା ପ୍ରାକୃତିକ ବିଜ୍ଞାନ କୁହାଯାଉଛି ତାହା ସେଯୁଗରେ ପ୍ରାକୃତିକ ଦର୍ଶନ ଭାବରେ ପରିଗଣିତ ହେଉଥିଲା । ଏହି ପ୍ରତ୍ୟେକ ବିଭାଗ ଉପରେ ତାଙ୍କର ଅନୁଶୀଳନ ରହିଥିଲା ।

ସାଂପ୍ରତିକ ପରିଭାଷାରେ 'ଦର୍ଶନ' କୁ ଯେପରି ଏକ ସଙ୍କୁଚିତ ଅର୍ଥରେ ବୁଝାଯାଉଛି, ସେହିଦୃଷ୍ଟିରୁ ଆରିଷ୍ଟୋଟଲ ଦାର୍ଶନିକ ନଥିଲେ । ସେ ଥିଲେ ସାର୍ବଜନୀନ ବିଦ୍ୱତାର ବ୍ୟକ୍ତି । ଜ୍ଞାନର ଅଧିକାଂଶ ଦିଗ ଉପରେ ସେ ତାଙ୍କ ବିଚାର ବ୍ୟକ୍ତ କରିଛନ୍ତି । ଗଣିତ ବିଦ୍ୟାକୁ ଛାଡିଦେଲେ ସେ ସମୟରେ ଅନ୍ୟ ଯେତେ ଯେତେ କ୍ଷେତ୍ର ଉପରେ ଚିନ୍ତାର କିଛି ଅୟମାରମ୍ଭ ହୋଇଥିଲା, ସେ ସବୁଥିରେ ଥିଲେ ଏକ ପ୍ରବୀଣ ବ୍ୟକ୍ତି । ଏପରିକି କେତୋଟି କ୍ଷେତ୍ର ଉପରେ ସେ ପ୍ରଥମ ବ୍ୟକ୍ତି ଭାବରେ ଚିନ୍ତାଧାରାର ନୂତନ ଦିଗର ଅୟମାରମ୍ଭ କରିଥିଲେ । ତର୍କଶାସ୍ତ୍ର, ପ୍ରାଣୀବିଜ୍ଞାନ, କାବ୍ୟତତ୍ତ୍ୱ, ମନୋବିଜ୍ଞାନ ପରି କ୍ଷେତ୍ରଗୁଡିକରେ ସେ ଥିଲେ ପଥପ୍ରଦର୍ଶକ । ସେ କେବଳ ଅମୂର୍ତ୍ତୀୟ ପ୍ରତ୍ୟୟ ସକଳର ବିଶ୍ଳେଷଣ କ୍ଷେତ୍ରରେ ଆଗ୍ରହୀ ନଥିଲେ (ଯାହା ସାଧାରଣତଃ ଦର୍ଶନ ଚର୍ଚ୍ଚାର ପରିସରରେ

କରାଯାଏ) ବରଂ ସେ ପ୍ରାକୃତିକ ବିଜ୍ଞାନ ଉପରେ ମଧ୍ୟ ଆଗ୍ରହୀ ଥିଲେ । ଜ୍ଞାନର ଯେତେଯେତେ କ୍ଷେତ୍ର ଓ ଦିଗନ୍ତ ରହିଛି ସେ ସବୁଥିରେ ତାଙ୍କର ଆଗ୍ରହ ରହିଥିଲା । ତାଙ୍କ ପୂର୍ବସୂରୀମାନଙ୍କ ଚିନ୍ତାଧାରାରେ ଯାହା ଭ୍ରମାତ୍ମକ ଭାବନା ରହିଥିଲା ସେ ସବୁକୁ ପରିହାର କରି ଯେଉଁ କ୍ଷେତ୍ରରେ କିଛି ଯୁକ୍ତିଶୀଳ ବା ସତ୍ୟର ଉପାଦାନ ପାଉଥିଲେ ତାକୁ ଗ୍ରହଣ କରୁଥିଲେ । ଯେଉଁ ଯେଉଁ କ୍ଷେତ୍ରରେ ଚିନ୍ତାଧାରାର ଅୟମାରମ୍ଭ ହୋଇନଥିଲା ସେସବୁ ପରିସରରେ ମଧ୍ୟ ସେ ତାଙ୍କର ଅନୁଶୀଳନ ଆଧାରରେ ବିଚାରର ସୂତ୍ରପାତ କରିଥିଲେ । ଏହି ଦୃଷ୍ଟିରୁ ଦେଖିଲେ ତର୍କଶାସ୍ତ୍ର, ପ୍ରାଣୀ ବିଜ୍ଞାନ ଇତ୍ୟାଦି ବିଷୟର ସେ ପ୍ରତିଷ୍ଠାତା-ଚିନ୍ତକ ଥିଲେ । ଆଧୁନିକ କାଳରେ ଓ ବିଶେଷକରି ଆଜିର ବିଶେଷତା ଯୁଗରେ ସେ ଯେ ଏତେ ବିଷୟରେ ମୌଳିକ ବିଚାରଧାରାର ସୂତ୍ରପାତ କରିଥିଲେ ତାହା ବିସ୍ମୟକର ମନେହୁଏ । ତର୍କଶାସ୍ତ୍ର, ତତ୍ତ୍ୱମୀମାଂସା, ଆଚାରମୀମାଂସା, ରାଜନୈତିକ ଦର୍ଶନ, ଲଳିତକଳା, ଆଳଙ୍କାରିକ ପ୍ରକାଶଭଙ୍ଗୀ ବା ରେଟୋରିକ୍, ଜ୍ୟୋତିର୍ବିଜ୍ଞାନ, ପାଗବିଜ୍ଞାନ ଉପରେ ମଧ୍ୟ ସେ ପୁସ୍ତକମାନ ରଚନା କରିଛନ୍ତି । ବିଶେଷକରି ପ୍ରାଣୀବିଜ୍ଞାନ ଉପରେ ସେ ଗୁଡିଏ ଲେଖା ପ୍ରସ୍ତୁତ କରିଛନ୍ତି । କୁହାଯାଏ ସେ ଆଲେକ୍‌ଜାଣ୍ଡରଙ୍କୁ ଶିକ୍ଷା ଦେଉଥିବା ବେଳେ ବିଭିନ୍ନ ପ୍ରକାରର ପ୍ରାଣୀମାନଙ୍କୁ ଆଣି ସେମାନଙ୍କୁ ଅନୁଶୀଳନ କରୁଥିଲେ । ପ୍ରାଣୀମାନଙ୍କର ଅଙ୍ଗ, ବ୍ୟବହାର, ଗତି, ଖାଦ୍ୟ ଇତ୍ୟାଦିକୁ ଅନୁଧ୍ୟାନ କରି ସେ "ରିସର୍ଚ୍ଚେସେ ଅନ ଆନିମଲସ" ନାମରେ ଯେଉଁ ପୁସ୍ତକଟି ଲେଖିଛନ୍ତି ସେଥିରେ ବିଭିନ୍ନ ଜୀବମାନଙ୍କ ବିଷୟରେ ତାଙ୍କ ପର୍ଯ୍ୟବେକ୍ଷଣୀୟ ତଥ୍ୟ ପ୍ରଦାନ କରିଛନ୍ତି । ହୁଏତ କେତେକ କ୍ଷେତ୍ରରେ କିଛି କଳ୍ପନାର ଚିତ୍ର ରହିଛି, ହେଲେ ବିଜ୍ଞାନର ଆରମ୍ଭ ପର୍ବରେ ଏପରି ରହିବା କିଛିଟା ଅସ୍ୱାଭାବିକ ମନେହୁଏ ନାହିଁ । ସେ ପ୍ରାୟ ପାଞ୍ଚଶହ ଜୀବଙ୍କ ବିଷୟରେ ବିଭିନ୍ନ ବର୍ଣ୍ଣନା ଦେବା ଜଣାଯାଏ । ତାଙ୍କ ପୂର୍ବରୁ କେଉଁଠି ଏପରି ଅଧ୍ୟୟନ ହୋଇଥିବାର ଦୃଷ୍ଟାନ୍ତ ସମ୍ଭବତଃ ଇତିହାସରେ ନାହିଁ ।

ଏକ ଐତିହାସିକ ପୃଷ୍ଠଭୂମିରୁ ଦେଖିଲେ ଆରିଷ୍ଟୋଟଲ ପ୍ଲେଟୋଙ୍କର ଛାତ୍ର ଥିଲେ ଓ ପ୍ଲେଟୋଙ୍କ ଚିନ୍ତାମାନସ ସହ ସଂପୂର୍ଣ୍ଣ ପରିଚିତ ଥିଲେ । ଦୁଇ ଜଣଯାକ ଥିଲେ ପ୍ରଜ୍ଞାବାନ ଦାର୍ଶନିକ ଓ ମୌଳିକ ଚିନ୍ତକ । ତେବେ ଆରିଷ୍ଟୋଟଲଙ୍କର ଆବିର୍ଭାବ ପ୍ଲେଟୋଙ୍କ ପରେ ହୋଇଥିବାରୁ ପ୍ଲେଟୋଙ୍କ ଚିନ୍ତାଧାରା କ୍ଷେତ୍ରରେ ରହିଥିବା ଅସଙ୍ଗତି ବିଷୟ ଆରିଷ୍ଟୋଟଲ ଜାଣିବାର ସୁଯୋଗ ପାଇଥିଲେ । ପ୍ଲେଟୋଙ୍କ ସମଗ୍ର ଦାର୍ଶନିକ ଚିନ୍ତନ ତାଙ୍କର ଶୁଦ୍ଧସତ୍ତା ସିଦ୍ଧାନ୍ତ (Theory of Ideas) କୁ ଆଧାରକରି ବିକଶିତ ହୋଇଥିଲା ଓ ତାଙ୍କର ବିଚାର ଏହି ସିଦ୍ଧାନ୍ତକୁ ଭିତ୍ତି କରି ଗଢ଼ି ଉଠିଥିଲା । ପୁନଶ୍ଚ ପ୍ଲେଟୋ ପ୍ରତ୍ୟୟବାଦର ମୂଳ ଭିତ୍ତି ପକାଇଥିଲେ । ଆରିଷ୍ଟୋଟଲଙ୍କ ଦର୍ଶନ ବି ପ୍ରତ୍ୟୟବାଦକୁ ନେଇ ଗଢ଼ି ଉଠିଥିଲା, ତେବେ ପ୍ଲେଟୋଙ୍କ ପ୍ରତ୍ୟୟବାଦରେ ରହିଥିବା ଅସଂଗତି ଓ ଦୁର୍ବଳତାକୁ ସେ ସଠିକ୍ ଭାବରେ ଜାଣିପାରିଥିଲେ, ଫଳତଃ ଏକ ଅଧିକ ତର୍କଶୀଳ ଦାର୍ଶନିକ ବିଚାରର ବିକାଶ କରିବାକୁ ସମର୍ଥ ହୋଇଥିଲେ । ସେମାନଙ୍କ ଦାର୍ଶନିକ ସିଦ୍ଧାନ୍ତ କ୍ଷେତ୍ରରେ କିଛି ବିରୋଧାଭାସ ଥିଲା ଓ ସହମତି ମଧ୍ୟ ରହିଥିଲା । ବରଂ ମୌଳିକ ପ୍ରସଙ୍ଗ ଉପରେ ସହମତି ରହିଥିଲା । ଆରିଷ୍ଟୋଟଲ ଯେଉଁ କ୍ଷେତ୍ରରେ ପ୍ଲେଟୋଙ୍କ ବିଚାର ସ୍ତରରେ ଦୁର୍ବଳତା, ଅସଂଗତି ଓ ଅଯୌକ୍ତିକତାର ଆଭାସ ପାଇଛନ୍ତି ତାକୁ ସମାଲୋଚନା କରିଛନ୍ତି । ଆରିଷ୍ଟୋଟଲ ଯେଉଁ କ୍ଷେତ୍ରରେ

ପ୍ଲେଟୋଙ୍କ ଚିନ୍ତାଧାରାରେ ଦୁର୍ବଳତା ଲକ୍ଷ୍ୟ କରିଛନ୍ତି ତାହା ଦର୍ଶାଇଛନ୍ତି, କିନ୍ତୁ ତାଙ୍କର ପ୍ଲେଟୋଙ୍କ ସହ ରହିଥିବା ସାମଂଜସ୍ୟକୁ ଦର୍ଶାଇ ନାହାନ୍ତି । ଅବଶ୍ୟ ଯେକୌଣସି ଜଣେ ଚିନ୍ତାନାୟକ ତାଙ୍କର ପୂର୍ବବର୍ତ୍ତୀ ବା ସମକାଳୀନ ଦାର୍ଶନିକମାନଙ୍କ ସହ ତାଙ୍କ ଭାବନାର ସାମଂଜସ୍ୟକୁ ବିଶ୍ଳେଷଣ କରିବା ସମ୍ଭବ ନୁହେଁ, ବରଂ ସମୟର ବ୍ୟବଧାନରେ ଐତିହାସିକମାନେ ମହାନ ଚିନ୍ତାନାୟକ ମାନଙ୍କର ବିଚାର, ଦର୍ଶନ ଓ ବୌଦ୍ଧିକ ଅବଦାନ ବିଷୟରେ ବିଶ୍ଳେଷଣ କରି ସେମାନଙ୍କର ବୌଦ୍ଧିକ ଜଗତରେ ଉପଯୁକ୍ତ ସ୍ଥାନ ନିରୂପଣ କରିଥାନ୍ତି । ଏହି ପ୍ରୟାସ ଭିତରେ ଦୁଇଜଣ ସମସାମୟିକ ବ୍ୟକ୍ତିଙ୍କ ବିଚାର ସ୍ତରରେ ରହିଥିବା ସାମଂଜସ୍ୟ ଓ ପାର୍ଥକ୍ୟର ସ୍ପଷ୍ଟ ଚିତ୍ର ଦେଇଥାନ୍ତି । ସେମାନଙ୍କ ପରେ ଯେତେବେଳେ ସେମାନଙ୍କ ଅବଦାନର ତୁଳନାତ୍ମକ ମୂଲ୍ୟାୟନ ଦର୍ଶନ ଇତିହାସରେ (କିମ୍ୱା ଯେକୌଣସି ବୌଦ୍ଧିକ କ୍ଷେତ୍ରରେ ମଧ୍ୟ) କରାଯାଏ ସେତେବେଳେ ସେମାନଙ୍କ ଭିତରେ ରହିଥିବା ସାମଂଜସ୍ୟ ତଥା ବିରୋଧାଭାସର ଚିତ୍ରଟି ସ୍ପଷ୍ଟ ହୋଇଥାଏ । ସମୟ ହିଁ ସେମାନଙ୍କୁ ନିଷ୍ପକ୍ଷ ଭାବରେ ଦେଖିଥାଏ ଓ ଚିନ୍ତାଧାରାର ବିକାଶ କ୍ଷେତ୍ରରେ ସେମାନେ ଯେଉଁ ଅବଦାନ ଦେଇଛନ୍ତି ତାହାର ଉପଯୁକ୍ତ ମୂଲ୍ୟାୟନ କରିଥାଏ । ପ୍ରତ୍ୟେକ ଚିନ୍ତାନାୟକ ମଧ୍ୟ ନିଜ ସମୟର ଅବଦାନ ଓ ତାଙ୍କ ସମସାମୟିକ ସମାଜରେ ରହିଥିବା ଆହ୍ୱାନମାନଙ୍କର ସମ୍ମୁଖୀନ ହେବା ଭିତରେ ସେ କିଛି ନୂତନ ଆଲୋକର ଦିଗନ୍ତ ଦେଖାଇଥାନ୍ତି । ସେହି ଆଲୋକ ସମ୍ମୁଖରେ କ'ଣ ସବୁ ପ୍ରତିବନ୍ଧକ ରହିଛି ତାହା ତାଙ୍କ ପରବର୍ତ୍ତୀ ସମୟର ଚିନ୍ତାନାୟକଙ୍କ ଦୃଷ୍ଟିରେ ପଡେ ଓ ସେ ତାହା ଦୂରକରିବାକୁ ପ୍ରୟାସ କରିଥାନ୍ତି । ସେହିପରି ଦେଖିବାକୁ ଗଲେ ପ୍ଲେଟୋଙ୍କ ପାଖରେ ଯେଉଁ ସବୁ ଅସଙ୍ଗତି ଓ ଅସଂହତି ଆରିଷ୍ଟୋଟଲଙ୍କ ସମ୍ମୁଖକୁ ଆସିଛି ସେସବୁକୁ ସେ ଦୂରକରି ଏକ ଅଧିକ ସଂହତିପୂର୍ଣ୍ଣ ଓ ରୀତିବଦ୍ଧ ଦାର୍ଶନିକ ସିଦ୍ଧାନ୍ତର ଅବତାରଣା କରିଛନ୍ତି । ଆରିଷ୍ଟୋଟଲ ଯେଉଁ ସବୁ ଅସଂହତି ଦେଖିଛନ୍ତି ତାକୁ ଉପଯୁକ୍ତ ତର୍କଶୀଳ ଆଧାରରେ ନିର୍ମଳ କରିବାକୁ ପ୍ରୟାସୀ ହୋଇଛନ୍ତି ଓ ସେହି ପ୍ରକ୍ରିୟାରେ ତାଙ୍କର ଦାର୍ଶନିକ ସିଦ୍ଧାନ୍ତମାନ ଅଧିକ ଯୁକ୍ତିସଂଗତ ଓ ରୀତିବଦ୍ଧ ଭାବରେ ବିକଶିତ ହୋଇଛି । ତାଙ୍କ ପୂର୍ବସୂରୀମାନଙ୍କ ଭିତରେ ସେ ଯେଉଁ ଅସଂହତି ଓ ଅସଂଗତିମାନ ଦେଖିଛନ୍ତି ତାକୁ ପରିହାର କରିଛନ୍ତି । ବିଶେଷକରି ପ୍ଲେଟୋଙ୍କ ଚିନ୍ତାଧାରାର ଯୁକ୍ତିସଂଗତ ଅଂଶମାନ ତାଙ୍କୁ ଗଭୀର ପ୍ରଭାବିତ କରିଛି ଓ ଏକ ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀ ନେଇ ସେ ପ୍ଲେଟୋଙ୍କ ଚିନ୍ତାରାଜ୍ୟରେ ବିଚରଣ କରିଛନ୍ତି । ସେ ସ୍ଥଳ ବିଶେଷରେ ନିଜ ଗୁରୁଙ୍କୁ ସମାଲୋଚନା କଲେ ମଧ୍ୟ ଗୁରୁଙ୍କ ବିଚାରଧାରାରୁ ଅନେକ ପ୍ରେରଣା ନେଇ ତାଙ୍କ ସିଦ୍ଧାନ୍ତମାନଙ୍କୁ ଦୃଢ଼ ଭିତ୍ତି ଦେଇଛନ୍ତି ।

ଆରିଷ୍ଟୋଟଲ ଓ ପ୍ଲେଟୋଙ୍କ ମଧ୍ୟରେ ଅନେକ ଗୁରୁତ୍ୱପୂର୍ଣ୍ଣ ସାମଂଜସ୍ୟ ରହିଥିଲେ ମଧ୍ୟ ସେମାନଙ୍କ ଭିତରେ ରହିଥିବା ପାର୍ଥକ୍ୟ ଅଧିକ ଦୃଷ୍ଟି ଆକର୍ଷଣ କରିଥାଏ । ପ୍ଲେଟୋ ତାଙ୍କ ଦାର୍ଶନିକ ବିଚାର କ୍ଷେତ୍ରରେ ପ୍ରତ୍ୟୟମାନଙ୍କୁ ପ୍ରାଧାନ୍ୟ ଦେଇ ତାରି ଆଧାରରେ ତାଙ୍କ ଶୁଦ୍ଧସତ୍ତାର ସିଦ୍ଧାନ୍ତ ନିର୍ମାଣ କରିଥିଲେ ଓ ତାକୁ ଆଧାର କରି ତାଙ୍କର ଅନ୍ୟାନ୍ୟ ବିଚାରମାନ ବିକଶିତ କରାଇଥିଲେ । ସେ କୌଣସି ତଥ୍ୟ ବା ଇନ୍ଦ୍ରିୟାନୁଭୂତି ଜନିତ ସମ୍ବେଦନମାନଙ୍କୁ ଆଦୌ ବିଚାର କରୁନଥିଲେ । ଇନ୍ଦ୍ରିୟାନୁଭୂତି ଜନିତ ଜ୍ଞାନ ଅସତ୍ୟ, ନିରାଧାର ଓ ପରିବର୍ତ୍ତନଶୀଳ

ବୋଲି ପ୍ଲେଟୋଙ୍କର ମୂଳ ଧାରଣା ଥିଲା । ଅପରପକ୍ଷରେ ଆରିଷ୍ଟୋଟଲ ତଥ୍ୟମାନଙ୍କୁ ଗୁରୁତ୍ୱ ଦେଉଥିଲେ । ସେ ତଥ୍ୟାଧାରିତ ବୈଜ୍ଞାନିକ ଜ୍ଞାନକୁ ମହତ୍ତ୍ୱପୂର୍ଣ୍ଣ ମନେ କରୁଥିଲେ । ପ୍ଲେଟୋ ଇନ୍ଦ୍ରିୟାନୁଭୂତି ଓ ସମ୍ବେଦନକୁ ଯେପରି ନ୍ୟୂନ କରୁଥିଲେ ସେଥିରେ ଆରିଷ୍ଟୋଟଲ ଆଦୌ ଏକମତ ନଥିଲେ । ଜଗତରେ ଥିବା ବସ୍ତୁଜଗତ ଓ ବସ୍ତୁଜଗତ ବିଷୟରେ ଇନ୍ଦ୍ରିୟଲବ୍ଧ ମାନବୀୟ ଜ୍ଞାନ ବିଷୟରେ ପ୍ଲେଟୋଙ୍କର ଯେଉଁ ନ୍ୟୂନବୋଧ ରହିଥିଲା ଆରିଷ୍ଟୋଟଲ ତାକୁ ଗ୍ରହଣ କରିପାରୁ ନଥିଲେ । ଆମେ ଇନ୍ଦ୍ରିୟାନୁଭୂତି ସାହାଯ୍ୟରେ ଯାହା ଜାଣେ ତାହା ହିଁ ଜଗତ ବିଷୟରେ ଆମର ବାସ୍ତବ ଜ୍ଞାନ । କାରଣ ଇନ୍ଦ୍ରିୟଗ୍ରାହ୍ୟ ଘଟଣା ହେଉଛି ତଥ୍ୟଭିତ୍ତିକ । ଜଗତ ସଂପର୍କରେ ତଥ୍ୟଭିତ୍ତିକ ଜ୍ଞାନକୁ ଆରିଷ୍ଟୋଟଲ ଗୁରୁତ୍ୱପୂର୍ଣ୍ଣ ମନେକରୁଥିଲେ । ପ୍ଲେଟୋ କେବଳ ପ୍ରତ୍ୟୟଜନିତ ଜ୍ଞାନ, ସାର୍ବଜନୀନ ସଂଜ୍ଞା ଓ ଶୁଦ୍ଧସତ୍ତାକୁ ପ୍ରମୁଖ ସ୍ଥାନ ଦେଇଥିଲେ । ବିଭିନ୍ନ ପ୍ରାଣୀମାନଙ୍କର ପ୍ରକୃତି, ବ୍ୟବହାର, ଶରୀର, ଗତି ବିଷୟରେ ପ୍ଲେଟୋଙ୍କ ସାମାନ୍ୟ ଆଗ୍ରହ ନଥିଲା । ସେ କେବଳ ଶୁଦ୍ଧସତ୍ତା ସଂପର୍କିତ ଜ୍ଞାନର ସ୍ୱରୂପ ଉପରେ ସର୍ବଦା ଗୁରୁତ୍ୱ ଦେଉଥିଲେ । ଏପରିକି ଇନ୍ଦ୍ରିୟାନୁଭୂତି, ସମ୍ବେଦନ ଓ ପ୍ରତ୍ୟକ୍ଷଣ ମୁଦ୍ରା ପ୍ଲେଟୋଙ୍କ ଦାର୍ଶନିକ ବିଚାର କ୍ଷେତ୍ରରେ କିଛି ଗୁରୁତ୍ୱ ବହନ କରେ ନାହିଁ । ଏସବୁ ମାଧ୍ୟମରେ ଯେ କିଛି ମହତ୍ତ୍ୱପୂର୍ଣ୍ଣ ଜ୍ଞାନ ହୋଇପାରିବ ସେଥିରେ ପ୍ଲେଟୋଙ୍କର ଆସ୍ଥା ନଥିଲା । ଅନ୍ୟ ପକ୍ଷରେ ଆରିଷ୍ଟୋଟଲ ବିଭିନ୍ନ ପ୍ରାଣୀମାନଙ୍କୁ ପର୍ଯ୍ୟବେକ୍ଷଣ କରିବା ସମୟରେ ସେମାନଙ୍କ ପ୍ରକୃତି, ସ୍ୱରୂପ ଇତ୍ୟାଦିକୁ ନେଇ ସେମାନଙ୍କ ବିଷୟରେ ବୌଦ୍ଧିକ ସିଦ୍ଧାନ୍ତମାନ ମନରୁ ନିର୍ମାଣ କରିଥିଲେ । ଆରିଷ୍ଟୋଟଲ ବି ସକଳ ତଥ୍ୟକୁ ମହତ୍ତ୍ୱ ନ ଦେଇ ଯାହା କିଛି ତଥ୍ୟ ପାଉଥିଲେ ତାହାକୁ ଭିତ୍ତିକରି ବୌଦ୍ଧିକ ସ୍ତରରେ ନିଷ୍କର୍ଷମାନଙ୍କରେ ଉପନୀତ ହେଉଥିଲେ । ବହୁ ପ୍ରସଙ୍ଗ ଉପରେ ଆରିଷ୍ଟୋଟଲ ପ୍ରାଗନୁଭବିକ ସିଦ୍ଧାନ୍ତମାନ ଗଠନ କରୁଥିଲେ । ପ୍ରକୃତିର ତଥ୍ୟମାନଙ୍କୁ ନିଷ୍ଠାର ସହ ଅନୁଶୀଳନ ବା ପର୍ଯ୍ୟବେକ୍ଷଣ କରିବା ବ୍ୟତୀତ ସେ ଯେଉଁ ନିଷ୍କର୍ଷ ବାହାର କରୁଥିଲେ ତାହା ସହ ପ୍ରାକୃତିକ ଘଟଣା ସହମତ ହେବା ଯଥାର୍ଥ ବୋଲି ଭାବୁଥିଲେ ।

ୟୁରୋପୀୟ ନବଜାଗରଣ ଯୁଗର ପ୍ରଥମ ଅନୁଭବବାଦୀ ଦାର୍ଶନିକ ଫ୍ରାନ୍‌ସିସ ବେକନ (୧୫୬୧–୧୬୨୬) ତାଙ୍କ ପ୍ରଦତ୍ତ ବୈଜ୍ଞାନିକ ଜ୍ଞାନର ପ୍ରଣାଳୀ ବିଷୟରେ ଆଲୋଚନା କଲାବେଳେ ଆରିଷ୍ଟୋଟଲଙ୍କୁ ସମାଲୋଚନା କରିଛନ୍ତି । ବେକନ ଓ ତାଙ୍କ ସମସାମୟିକ ଚିନ୍ତକମାନେ ମଧ୍ୟଯୁଗୀୟ ପାଣ୍ଡିତ୍ୟବାଦ (scholasticism)କୁ ଗମ୍ଭୀର ସମାଲୋଚନା କରି ସେମାନଙ୍କର ବିଚାର ବିକାଶ କରିଛନ୍ତି । ଆଧୁନିକ ଯୁଗର ଦାର୍ଶନିକଗଣ ମଧ୍ୟଯୁଗୀୟ ପାଣ୍ଡିତ୍ୟବାଦ ଯେ ଆରିଷ୍ଟୋଟଲଙ୍କ ବିଚାରରୁ ବିକଶିତ ହୋଇଥିଲା ସେହି ଭାବନାରୁ ଆରିଷ୍ଟୋଟଲ ଓ ମଧ୍ୟଯୁଗୀୟ ଦାର୍ଶନିକମାନଙ୍କୁ ଗମ୍ଭୀର ସମାଲୋଚନା କରିଛନ୍ତି । ମଧ୍ୟଯୁଗୀୟ ଦାର୍ଶନିକମାନେ ସେମାନଙ୍କର ସିଦ୍ଧାନ୍ତମାନଙ୍କୁ ପ୍ରାଗନୁଭବିକ ବିଚାର ଆଧାରରେ ନିର୍ମାଣ କରିଥିଲେ । ସେମାନେ ପ୍ରାକୃତିକ ବିଶ୍ୱକୁ ପର୍ଯ୍ୟବେକ୍ଷଣ ନ କରି ପ୍ରାଗନୁଭବିକ (a-priori) ଭାବରେ କିମ୍ବା ଆରିଷ୍ଟୋଟଲଙ୍କ ଭାବଧାରା ଆଧାରରେ ବିଭିନ୍ନ ସିଦ୍ଧାନ୍ତ ଦେଇଥିବାରୁ ଆଧୁନିକ ଯୁଗର ଦାର୍ଶନିକମାନେ ସେମାନଙ୍କୁ ସମାଲୋଚନା କରିଛନ୍ତି । ୟୁରୋପରେ ନବଜାଗରଣ ଯୁଗର ଆରମ୍ଭ ପର୍ଯ୍ୟନ୍ତ ଯେଉଁ ମଧ୍ୟଯୁଗୀୟ ଧର୍ମୀୟ ଧାରା ରହିଥିଲା, ସେଥିରେ ଧାର୍ମିକ ବିଶ୍ୱାସ,

ପ୍ରାଗନୁଭବିକ ସିଦ୍ଧାନ୍ତ ଓ ଆରିଷ୍ଟୋଟଲଙ୍କର ବିଚାରର ଗଭୀର ପ୍ରଭାବ ରହିଥିଲା । ସୁତରାଂ ଆଧୁନିକ ଯୁଗର ଦାର୍ଶନିକମାନେ ଆରିଷ୍ଟୋଟଲଙ୍କୁ ଶରବ୍ୟ କରିଛନ୍ତି ।

ଆରିଷ୍ଟୋଟଲ ପ୍ରାଣୀବିଜ୍ଞାନର ବିକାଶ କରିବା ଅବସରରେ ବିଭିନ୍ନ ପ୍ରାଣୀମାନଙ୍କୁ ସଂଗ୍ରହ କରି ଅନୁଧ୍ୟାନ କରିବାରେ ବହୁ ଶ୍ରମସ୍ୱୀକାର କରିଛନ୍ତି । ଏଣୁ ସେ ଯେ ତଥ୍ୟମାନଙ୍କୁ ସଂପୂର୍ଣ୍ଣ ଭାବେ ଏଡାଇ ଯାଇଛନ୍ତି ତାହା କୁହାଯାଇପାରିବ ନାହିଁ । ତେବେ ତଥ୍ୟ ଆଧାରରେ ସେ ତାଙ୍କର ସିଦ୍ଧାନ୍ତ ଦେବା ବା ସାମାନ୍ୟୀକରଣ କରିବା ପରିବର୍ତ୍ତେ ସେ ତାଙ୍କର ସିଦ୍ଧାନ୍ତ ନିର୍ମାଣ କ୍ଷେତ୍ରରେ ପ୍ରାଗନୁଭବିକ ପଦ୍ଧତିକୁ ଅନୁସରଣ କରିଛନ୍ତି । 'ନକ୍ଷତ୍ରମାନ ବୃତ୍ତାକାରରେ ଗତିକରନ୍ତି'- ଏହା ଯେ ତଥ୍ୟ ତାହା ନ କହି ଆରିଷ୍ଟୋଟଲ କହିଛନ୍ତି ଯେ ବୃତ୍ତ ହେଉଛି ଏକ ପରିପୂର୍ଣ୍ଣ ଆକୃତି (perfect figure), ସେଥି ପାଇଁ ନକ୍ଷତ୍ରମାନ ବୃତ୍ତାକାରରେ ଗତି କରନ୍ତି । ଏହିପରି ଅନେକ ଉଦାହରଣ ତାଙ୍କ କୃତିମାନଙ୍କରୁ ଦିଆଯାଇପାରେ ବୋଲି ଷ୍ଟେସ୍ ଉଲ୍ଲେଖ କରିଛନ୍ତି (ପୃଷ୍ଠା ୨୫୮) । ଆରିଷ୍ଟୋଟଲଙ୍କ ସମୟକୁ ଯେହେତୁ ବିଜ୍ଞାନର ଯୁଗ ଆସି ନାହିଁ ବା ଏକ ବୈଜ୍ଞାନିକ ସିଦ୍ଧାନ୍ତକୁ ପ୍ରମାଣ କରିବାକୁ ସେପରି କିଛି ଉପକରଣ ଉପଲବ୍ଧ ନାହିଁ, ତେଣୁ ସେ ପ୍ରାକୃତିକ ବିଷୟର ବ୍ୟାଖ୍ୟା କରିବା ସମୟରେ ବୁଦ୍ଧିର ଆଶ୍ରୟ ନେଇଛନ୍ତି । ତଥ୍ୟମାନଙ୍କୁ ଅନୁଶୀଳନ କରିବା ପାଇଁ ସେ ପ୍ରାକୃତିକ ବିଜ୍ଞାନର ଉପଯୋଗିତାକୁ ବେଶ୍ ଅନୁଭବ କରିଛନ୍ତି । ପ୍ରାକୃତିକ ବିଜ୍ଞାନ ପ୍ରକ୍ରିୟାରେ ପ୍ରକୃତିକୁ ଜାଣିହେବ ତଥା ପ୍ରକୃତି ସଂପର୍କରେ ତଥ୍ୟ ମିଳିପାରିବ, ଏହା ଆରିଷ୍ଟୋଟଲଙ୍କର ଉପଲବ୍ଧି ଥିଲା । ତେବେ ତାଙ୍କ ସମୟକୁ ଯେହେତୁ ଏସବୁର ବିକାଶ ହୋଇ ନାହିଁ ବା ବିଜ୍ଞାନ-ମନସ୍କତାର ସାମାନ୍ୟ ଚେତନା ପ୍ରକାଶ ପାଇ ନାହିଁ, ପ୍ରାକୃତିକ ବିଷୟକୁ ବୁଝିବା ପାଇଁ ସେ କେତେକ ସ୍ଥଳରେ ବିଚାରବୁଦ୍ଧିର ଆଶ୍ରୟ ନେଇଛନ୍ତି । ତଥ୍ୟମୂଳକ ଜ୍ଞାନର ଭିତ୍ତି ଉପରେ ଯେ ବିଜ୍ଞାନ ଗଢ଼ିଉଠିପାରିବ, ଏହା ଚିନ୍ତା ସ୍ତରକୁ ଆସିନାହିଁ । ଏଣୁ ଆରିଷ୍ଟୋଟଲ ନିଜର ବିଚାର ବୁଦ୍ଧି ଆଧାରରେ ପ୍ରାକୃତିକ ଘଟଣାମାନଙ୍କୁ ଅବବୋଧ କରିବା ପାଇଁ ପ୍ରୟାସ କରିଛନ୍ତି । ଏହା ହିଁ ତାଙ୍କ ସମୟର ଯୁଗଚେତନା ବୋଲି କୁହାଯାଇପାରେ ।

ଉଭୟ ପ୍ଲେଟୋ ଓ ଆରିଷ୍ଟୋଟଲ ବିଚାରବୁଦ୍ଧି ବା ବୁଦ୍ଧିବାଦକୁ ସେମାନଙ୍କ ବିଚାର କ୍ଷେତ୍ରରେ ଗୁରୁତ୍ୱ ଦେଇଛନ୍ତି । ଏହା ସତ୍ତ୍ୱେ ସେମାନଙ୍କ ଭାବଧାରାରେ ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ରହିଛି । ପ୍ଲେଟୋ ତାଙ୍କର ସଂଳାପମାନଙ୍କରେ ଅନେକ କାଳ୍ପନିକ କାହାଣୀ ଓ ମିଥ୍‌ମାନଙ୍କର ଅବତାରଣା କରିଛନ୍ତି । ପ୍ଲେଟୋ ବିଭିନ୍ନ କାହାଣୀ, ରୂପକ ଓ ରୂପକଥା ମାଧ୍ୟମରେ ତାଙ୍କ ଚିନ୍ତାଧାରାକୁ ପ୍ରକାଶ କରିବାପାଇଁ ବହୁ ସମୟରେ ପ୍ରୟାସ କରିଛନ୍ତି । ଗମ୍ଭୀର ଭାବନାମାନଙ୍କୁ ବୁଝାଇବାକୁ ଯାଇ ଜଣେ କଳ୍ପନାବିଳାସୀ କବିର ଭୂମିକା ପ୍ଲେଟୋ ଅନେକ ସ୍ଥାନରେ ନେଇଛନ୍ତି । ହାସ୍ୟରସ, ବିଭିନ୍ନ ଚରିତ୍ର ମାନଙ୍କୁ ପରିବେଷଣ କରିବାର ନିପୁଣତା ଓ ବର୍ଣ୍ଣନାର ଚାତୁରୀ ପ୍ଲେଟୋଙ୍କ ସଂଳାପ ମାନଙ୍କରେ ଦେଖିବାକୁ ମିଳେ । ଏପରିକି ସ୍ଥଳ ବିଶେଷରେ ପ୍ଲେଟୋ ରହସ୍ୟବାଦୀ ଭଳି ତାଙ୍କ ବିଚାରକୁ ରଙ୍ଗ ଦେଇଛନ୍ତି । ଆରିଷ୍ଟୋଟଲ ସେପରି କରିନାହାନ୍ତି ଓ ତାଙ୍କ ଚିନ୍ତାଧାରାକୁ ସ୍ୱଷ୍ଟଭାଷାରେ ବ୍ୟକ୍ତ କରିବାକୁ ପ୍ରୟାସ କରିଛନ୍ତି । କୌଣସି ବିଷୟରେ ସ୍ୱଷ୍ଟ ଭାବରେ ତାଙ୍କ ଭାବଧାରାକୁ ବୁଝାଇବାକୁ କୌଣସି ଆଲଙ୍କାରିକତାର ଆଶ୍ରୟ ନେଇନାହାନ୍ତି ।

ଏହି କ୍ଷେତ୍ରରେ ଦୁଇଜଣଙ୍କର ରଚନା କ୍ଷେତ୍ରରେ ଗମ୍ଭୀର ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ । ପ୍ଲେଟୋଙ୍କ ରଚନା କ୍ଷେତ୍ରରେ କବିତ୍ୱର ଭାଷା, ଆଳଙ୍କାରିକ ଅଭିବ୍ୟକ୍ତି ଓ ଶବ୍ଦର ଯାଦୁ ଦେଖିବାକୁ ମିଳେ । ଆରିଷ୍ଟୋଟଲଙ୍କ  ଶୈଳୀରେ ଏହା ପରିଲକ୍ଷିତ ହୁଏ ନାହିଁ । ବରଂ ଶବ୍ଦର ଅର୍ଥ, ସଂଜ୍ଞା, ଯୁକ୍ତିଶୀଳତା ପ୍ରତି ଆରିଷ୍ଟୋଟଲ ଅଧିକ ପ୍ରାଧାନ୍ୟ ଦେଇ ଆସିଛନ୍ତି । ସେ ଯୁକ୍ତିସଂଗତ ଉପସ୍ଥାପନ, ତର୍କ ଆଧାରିତ ବ୍ୟାଖ୍ୟାନ ଓ ବୌଦ୍ଧିକ ସ୍ୱଷ୍ଟତାକୁ ଗୁରୁତ୍ୱ ଦେଇଛନ୍ତି । ସେ ଦର୍ଶନକୁ ଯୁକ୍ତିମୂଳକ ଧାରାରେ ଅଭିବ୍ୟକ୍ତ କରିବାରେ ପ୍ରୟାସୀ ହୋଇଛନ୍ତି ଓ ବୁଦ୍ଧିକୁ ପ୍ରାଧାନ୍ୟ ଦେଇଛନ୍ତି, କୌଣସି ପ୍ରକାରର ରୂପକ ବା ମେଟାଫରର ଆଶ୍ରୟ ନେଇନାହାନ୍ତି । ଆରିଷ୍ଟୋଟଲଙ୍କ ରଚନାରେ ଯୁକ୍ତିଶୀଳତା ଓ ସ୍ୱଷ୍ଟତା ରହିଛି, ବର୍ଣ୍ଣବାର ସୌନ୍ଦର୍ଯ୍ୟ ବା ଭାଷାର ମାଧୁର୍ଯ୍ୟ ନାହିଁ । ସେ ଯାହା ବୁଝାଇବାକୁ ଚାହିଁଛନ୍ତି ତାହାକୁ ତର୍କସଂଗତ ଆଧାରରେ ବୁଝାଇଛନ୍ତି । କେଉଁ କ୍ଷେତ୍ରରେ ଏକ ଭାବନାକୁ ବୁଝାଇବାରେ ଶବ୍ଦର ଅଭାବ ଅନୁଭବ କଲେ ରୂପକର ସାହାଯ୍ୟ ନେଇନାହାନ୍ତି ବରଂ ନୂତନ ଶବ୍ଦ ସଂଯୋଜନା କରିବାକୁ ଚେଷ୍ଟା କରିଛନ୍ତି । ନୂତନ ଶବ୍ଦ ଓ ପରିଭାଷା ସୃଷ୍ଟି କରିବାରେ ଓ ବିଶେଷକରି ଅମୂର୍ତ୍ତୀୟ ପ୍ରତ୍ୟୟ ମାନଙ୍କୁ ବ୍ୟାଖ୍ୟା କରିବା ଅବସରରେ ଆରିଷ୍ଟୋଟଲ ବହୁ ନୂତନ ଶବ୍ଦ ଉଦ୍‌ଭାବନ କରିଛନ୍ତି । ଦାର୍ଶନିକ ଭାଷା ପ୍ରୟୋଗ କରିବା କ୍ଷେତ୍ରରେ ଓ ବିଶେଷକରି ବୈଷୟିକ ଶବ୍ଦ ନିର୍ମାଣ କ୍ଷେତ୍ରରେ ବିଶ୍ୱମାନସରେ ସେ ଅଦ୍ୱିତୀୟ ମନେହୁଅନ୍ତି । ଏପର୍ଯ୍ୟନ୍ତ ବି ଦର୍ଶନ କ୍ଷେତ୍ରରେ ଓ ବିଭିନ୍ନ ବୌଦ୍ଧିକ ଅଧ୍ୟୟନ ପରିସରରେ ପ୍ରୟୋଗ ହେଉଥିବା ବହୁ ବୈଷୟିକ ପଦ ବା ଶବ୍ଦ ସେ ହିଁ ଚିନ୍ତାସ୍ତରକୁ ଆଣିଛନ୍ତି । ବିଶେଷକରି ନାନା ଅମୂର୍ତ୍ତୀୟ (abstract)  ଭାବନାମାନଙ୍କୁ ଭାଷାରେ ବ୍ୟକ୍ତ କରିବା ପାଇଁ ସେ ବହୁ ନୂତନ ପରିଭାଷା ଓ ଶବ୍ଦସମ୍ଭାର ସୃଷ୍ଟି କରିଛନ୍ତି । ଏହା କହିବା ଭୁଲ ଯେ ଆରିଷ୍ଟୋଟଲ କେବଳ ବୈଜ୍ଞାନିକ ବା ତର୍କଶୀଳ ଆଧାରରେ ସବୁ ବିଷୟକୁ ବ୍ୟକ୍ତ କରିବାକୁ ଚେଷ୍ଟା କରୁଥିଲେ ଓ ତାଙ୍କର କିଛି ସୌନ୍ଦର୍ଯ୍ୟବୋଧ ନଥିଲା । ବରଂ ଲଳିତକଳା ବିଷୟରେ କିମ୍ବା ତାଙ୍କର କାବ୍ୟଶାସ୍ତ୍ର (poetics) ବିଶ୍ଳେଷଣ କ୍ଷେତ୍ରରେ ସେ ଯେପରି ଭାଷାର ମାଧୁର୍ଯ୍ୟ ଦେଖାଇଛନ୍ତି ତାହା ଅନନ୍ୟ ମନେହୁଏ । ଲଳିତ କଳା ବା କାବ୍ୟଶାସ୍ତ୍ରର ଭାଷା ଓ ବୈଜ୍ଞାନିକ ବିଶ୍ଳେଷଣର ଭାଷା ମଧ୍ୟରେ ଗମ୍ଭୀର ପାର୍ଥକ୍ୟ ରହିଛି ଓ ପ୍ରତ୍ୟେକର ବିଶ୍ଳେଷଣର ଧାରା ଅନ୍ୟଠାରୁ ପୃଥକ୍ । ଦାର୍ଶନିକ ବିଷୟର ବ୍ୟାଖ୍ୟାନ କ୍ଷେତ୍ରରେ ପ୍ରୟୋଗ ହେଉଥିବା ପରିଭାଷା ଓ ସାହିତ୍ୟକୃତି କ୍ଷେତ୍ରରେ  ପ୍ରୟୋଗ ହେଉଥିବା ଭାଷା ମଧ୍ୟରେ ପାର୍ଥକ୍ୟ ରହିବା ଆବଶ୍ୟକ ବୋଲି ସେ ନିଜେ ହିଁ ପ୍ରକାଶ କରିଛନ୍ତି । ଦର୍ଶନ କ୍ଷେତ୍ରରେ ସାହିତ୍ୟିକ ଭାଷା ଓ ସାହିତ୍ୟ କ୍ଷେତ୍ରରେ ତର୍କଶାସ୍ତ୍ରର ଭାଷା ବିନିଯୋଗ କରିବା ଚିନ୍ତାଧାରା ପାଇଁ ସ୍ପୃହଣୀୟ ନୁହେଁ । ଭାଷାର ସୌନ୍ଦର୍ଯ୍ୟତା, ଲାଳିତ୍ୟ ଓ କାବ୍ୟିକ ପ୍ରକାଶ ସାହିତ୍ୟ କ୍ଷେତ୍ରରେ ଶୋଭା ପାଏ, ଦର୍ଶନ କ୍ଷେତ୍ରରେ ନୁହଁ । ସେହିପରି ସଂଜ୍ଞା, ଯୁକ୍ତିସଂଗତ ଅଭିବ୍ୟକ୍ତି ଓ ବୌଦ୍ଧିକତା ଦାର୍ଶନିକ ଅଭିବ୍ୟକ୍ତିର ସ୍ୱର ହେବା ଆବଶ୍ୟକ, ଏହା ସାହିତ୍ୟ ପୃଷ୍ଠଭୂମିରେ ପ୍ରାସଙ୍ଗିକ ହୁଏ ନାହିଁ । ଏହି ପ୍ରସଙ୍ଗରେ ଆରିଷ୍ଟୋଟଲଙ୍କ ସଂପର୍କରେ ଷ୍ଟେସ୍ ଲେଖିଛନ୍ତି – “If we want beauty, we must follow the path of art. But if we desire truth, we must stick close to reason”. (ପୃଷ୍ଠା ୨୫୯)

ଆରିଷ୍ଟୋଟଲଙ୍କ ବୌଦ୍ଧିକ ଅବଦାନ ବହୁ ଦିଗନ୍ତକୁ ସ୍ପର୍ଶ କରିଛି । ଦର୍ଶନ, ଭୌତିକ ବିଜ୍ଞାନ, ତର୍କଶାସ୍ତ୍ର, ରାଜନୈତିକ ଦର୍ଶନ, ନୀତିଶାସ୍ତ୍ର, ସୌନ୍ଦର୍ଯ୍ୟଶାସ୍ତ୍ର, କାବ୍ୟଶାସ୍ତ୍ର ଇତ୍ୟାଦି ବହୁ କ୍ଷେତ୍ରରେ ସେ ନିଜର ମୌଳିକ ବିଚାରମାନ ଅବତାରଣା କରିଛନ୍ତି । ତେବେ ଏଠାରେ ଦର୍ଶନ ସହ ସଂପୃକ୍ତ ବିଚାର ଓ ସିଦ୍ଧାନ୍ତମାନଙ୍କ ବିଷୟରେ ଆମେ ସଂକ୍ଷିପ୍ତ ଆଲୋଚନା କରିବା ।

## ୮.୨ ତର୍କଶାସ୍ତ୍ର

ମହାବିଦ୍ୟାଳୟ ସ୍ତରରେ "ତର୍କଶାସ୍ତ୍ର" ଏକ ବିଷୟ ଭାବରେ ପଢ଼ାଯାଏ ଓ ଏହାର ବ୍ୟାବହାରିକ ଓ ସୈଦ୍ଧାନ୍ତିକ ଗୁରୁତ୍ୱ ରହିଛି । ଅର୍ଥପୂର୍ଣ୍ଣ ଭାବରେ ଭାବ ବିନିମୟ କରିବାକୁ ଭାଷା ଏକ ମୁଖ୍ୟ ମାଧ୍ୟମ । ଭାଷା ମାଧ୍ୟମରେ ଅର୍ଥପୂର୍ଣ୍ଣ ଭାବେ ଭାବ ବିନିମୟ କରିବା ପାଇଁ ଭାଷାର ନିୟମକୁ ଅବଲମ୍ବନ କରାଯାଏ । ଭାଷାର ବିଭିନ୍ନ ସୂତ୍ର, ନିୟମ, ପଦ୍ଧତି ଇତ୍ୟାଦି ବିଷୟରେ ବ୍ୟାକରଣ ପରିସରରେ ଅନୁଶୀଳନ କରାଯାଏ । ଜଣେ ସାଧାରଣ ବ୍ୟକ୍ତି ଭାଷା ମାଧ୍ୟମରେ ଭାବ ବିନିମୟ କରିବା ସମୟରେ ଭାଷାର ନିୟମ ଓ ଶୃଂଖଳାକୁ ଅନୁକରଣ କରିଥାଏ, ତେବେ ବ୍ୟାକରଣ ସ୍ତରରେ ନିୟମମାନଙ୍କୁ ସୂତ୍ରବଦ୍ଧ କରାଯାଇ ତାହାକୁ ସୈଦ୍ଧାନ୍ତିକ ପ୍ରକ୍ରିୟାରେ ବ୍ୟାଖ୍ୟା କରାଯାଏ । ସେହିପରି ଜ୍ଞାନର ବିଭିନ୍ନ ସୋପାନରେ ନାନା ସିଦ୍ଧାନ୍ତ ଓ ନିଷ୍କର୍ଷର ଅବତାରଣା କରାଯାଏ । ଅଧ୍ୟୟନର ଯେତେ ଯେତେ କ୍ଷେତ୍ର ରହିଛି ପ୍ରତ୍ୟେକ କ୍ଷେତ୍ରରେ ବିଭିନ୍ନ ନିୟମ, ସିଦ୍ଧାନ୍ତ, ତଥ୍ୟ, ପ୍ରକଳ୍ପ ଇତ୍ୟାଦିର ବିଚାର ରହିଥାଏ । ଏପରିକି ଆମର ସାଧାରଣ ଜୀବନ ପ୍ରବାହରେ ଆମେ ବିଭିନ୍ନ ତଥ୍ୟର ଆଶ୍ରୟ ନେଇ ଏକ ଯୁକ୍ତିର ଅବତାରଣା କରିଥାଏ ବା ଏକ ସିଦ୍ଧାନ୍ତରେ ଉପନୀତ ହୋଇଥାଏ । ଆମର ବିଚାର, ଭାବନା ଯେଉଁ ତର୍କଶୀଳ ପଦ୍ଧତିଦ୍ୱାରା ପ୍ରଭାବିତ ହୋଇଥାଏ ତାହାକୁ ତର୍କଣା ବା ତର୍କଶୀଳପଦ୍ଧତି (reasoning) କୁହାଯାଏ । ତର୍କଶୀଳ ପଦ୍ଧତିକୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଏ ଯଥା ଆରୋହ ତର୍କଶୀଳ ପଦ୍ଧତି (Inductive reasoning) ଓ ଅବରୋହ ତର୍କଶୀଳ ପଦ୍ଧତି (Deductive reasoning) । ଆରୋହପଦ୍ଧତି ଆରୋହ ତର୍କଶାସ୍ତ୍ରରେ ଓ ଅବରୋହ ପଦ୍ଧତି ଅବରୋହ ତର୍କଶାସ୍ତ୍ରରେ ଆଲୋଚିତ ହୋଇଥାଏ । ଏକ ସିଦ୍ଧାନ୍ତ ନିର୍ମାଣ କରିବା ପାଇଁ କିମ୍ବା ଏକ ନିଷ୍କର୍ଷରେ ଉପନୀତ ହେବା ପାଇଁ ଯେଉଁ ଯୁକ୍ତିର ଆଶ୍ରୟ ନେବାକୁ ହୁଏ ସେହି ଯୁକ୍ତିମାନ ଯଥାର୍ଥ କି ନୁହେଁ ତାହାର ନିୟମ ତର୍କଶାସ୍ତ୍ର ପରିସରରେ ଆଲୋଚ୍ୟ ପ୍ରସଙ୍ଗ ଅଟେ ।

ତର୍କଶାସ୍ତ୍ରର ଦୁଇ ପ୍ରଧାନ କ୍ଷେତ୍ର ହେଲା– ଆରୋହ ତର୍କଶାସ୍ତ୍ର ଓ ଅବରୋହ ତର୍କଶାସ୍ତ୍ର । ଆରିଷ୍ଟୋଟଲ ଏହି ଦୁଇ ପଦ୍ଧତି ମଧ୍ୟରୁ ଅବରୋହ ତର୍କଶାସ୍ତ୍ର ପଦ୍ଧତିର ପ୍ରତିଷ୍ଠାତା । ତେବେ ସେ ବି ଆରୋହ ପଦ୍ଧତିକୁ ସ୍ଥଳ ବିଶେଷରେ ପ୍ରୟୋଗ କରିଛନ୍ତି । ବିଭିନ୍ନ ପ୍ରାଣୀମାନଙ୍କୁ ପର୍ଯ୍ୟବେକ୍ଷଣ କରି ସେ ବିଭିନ୍ନ ସିଦ୍ଧାନ୍ତର ଅବତାରଣା କରିଛନ୍ତି । ବିଭିନ୍ନ ପ୍ରତ୍ୟକ୍ଷ ଓ ପର୍ଯ୍ୟବେକ୍ଷଣ ମାଧ୍ୟମରେ ସେ କେତେକ ବୈଜ୍ଞାନିକ ସିଦ୍ଧାନ୍ତ ଦେଇଛନ୍ତି । ତେବେ ଆରୋହ ପଦ୍ଧତିକୁ ସେ ରୀତିବଦ୍ଧ ଓ ସୁସଂଗତ ଭାବେ ବିକାଶ କରିନାହାନ୍ତି । ଏପରିକି ୟୁରୋପରେ ଆଧୁନିକ ଯୁଗର ଆରମ୍ଭ

ପର୍ଯ୍ୟନ୍ତ ଆରୋହପଦ୍ଧତି ସୁସଂହତ ଭାବେ ବିକଶିତ ହୋଇନାହିଁ । ବିଜ୍ଞାନର ଯୁଗ ଆସିବାପରେ ଆରୋହ ପଦ୍ଧତି ସୈଦ୍ଧାନ୍ତିକ ଭାବରେ ବିକଶିତ ହୋଇଛି ଯାହା ଆରୋହ ତର୍କଶାସ୍ତ୍ର ପରିସରରେ ଚର୍ଚ୍ଚା ହୁଏ । ତେବେ ଆରିଷ୍ଟୋଟଲ ଅବରୋହ ତର୍କଶାସ୍ତ୍ରର ମୂଳ ଭିତ୍ତି ପକାଇଛନ୍ତି ଓ ଅବରୋହ ତର୍କଶାସ୍ତ୍ରର ଅଧିକାଂଶ ବିଷୟକୁ ସେ ପ୍ରଥମକରି ଚିନ୍ତାସ୍ତରକୁ ଆଣିଛନ୍ତି । ଅବରୋହ ତର୍କଶାସ୍ତ୍ର କ୍ଷେତ୍ରରେ ଆଲୋଚ୍ୟ ହେଉଥିବା ବହୁ ପ୍ରସଙ୍ଗକୁ ସେ କେବଳ ଆରମ୍ଭ କରିନାହାନ୍ତି, ସେସବୁକୁ ଶେଷ ସ୍ପର୍ଶ ଦେଇଛନ୍ତି । ଚିନ୍ତନର ମୌଳିକ ନିୟମ, ପଦ ଓ ଶବ୍ଦ ମଧ୍ୟରେ ପାର୍ଥକ୍ୟ,ପଦମାନଙ୍କର ଶ୍ରେଣୀ ବିଭାଜନ, ବିଧେୟତା ଓ ଏହାର ପ୍ରକାରଭେଦ, ତର୍କ ସମ୍ମତ ସଂଜ୍ଞାର ଲକ୍ଷଣ ଓ ନିୟମ, ତର୍କବାକ୍ୟର ସ୍ୱରୂପ ଓ ପ୍ରକାରଭେଦ, ନିରୁପାଧିକ ତର୍କବଚନ, ତର୍କବଚନରେ ପଦମାନଙ୍କର ବ୍ୟାପକତା ନିରୂପଣ ଇତ୍ୟାଦି ବିଷୟରେ ସେ ଭାବନା ଦେଇଛନ୍ତି । ଏସବୁ ପ୍ରସଙ୍ଗ ଯେକୌଣସି ତର୍କଶାସ୍ତ୍ର ସମ୍ବନ୍ଧୀୟ ପୁସ୍ତକରେ ଆଲୋଚନାର ବିଷୟ ଅଟେ । ଆରିଷ୍ଟୋଟଲ ଅବରୋହ ଅନୁମାନକୁ ଦୁଇ ଶ୍ରେଣୀରେ ବିଭକ୍ତ କରିଛନ୍ତି ଯଥା ଅବ୍ୟବହିତ ଅନୁମାନ ଓ ତ୍ରିପଦୀ ଯୁକ୍ତି । ତ୍ରିପଦୀ ଯୁକ୍ତିର (syllogism) ସ୍ୱରୂପ, ଗଠନ, ସଂସ୍ଥାନ, ନିୟମାବଳୀ, ମୌଳିକ ସୂତ୍ର, ସାକ୍ଷାତ ଓ ପରୋକ୍ଷ ରୂପାନ୍ତରୀକରଣ ଓ ବିଭିନ୍ନ ତର୍କଦୋଷର ବିଶଦ ବ୍ୟାଖ୍ୟା ସେ ସର୍ବପ୍ରଥମେ ଭାବନା କ୍ଷେତ୍ରକୁ ଆଣିଛନ୍ତି । ତ୍ରିପଦୀ ଯୁକ୍ତିର ସଂସ୍ଥାନ କ୍ଷେତ୍ରରେ ସେ ତିନୋଟି ସଂସ୍ଥାନର ଭାବନା ଦେଇଥିଲେ ଓ ବହୁ ଶତାବ୍ଦୀପରେ ଚତୁର୍ଥ ସଂସ୍ଥାନଟି ତ୍ରିପଦୀ ଯୁକ୍ତି ପରିସରକୁ ଆସିଥିବା ଜଣାଯାଏ । ପୁନଶ୍ଚ ଆରିଷ୍ଟୋଟଲ କେବଳ ନିରୁପାଧିକ ତ୍ରିପଦୀନ୍ୟାୟ (categorical syllogism) ବିଷୟର ଅବତାରଣା କରିଥିଲେ ଓ ମିଶ୍ର ତ୍ରିପଦୀ ଯୁକ୍ତି ବିଷୟରେ ଭାବିନଥିଲେ । ବହୁ ପରେ ମିଶ୍ର ତ୍ରିପଦୀ ଯୁକ୍ତିର ନିୟମ, ବିଧାନ ଓ ପ୍ରକାରଭେଦ ଅବରୋହ ତର୍କଶାସ୍ତ୍ର ପରିସରକୁ ଆସିଲା । ତେବେ ଆରିଷ୍ଟୋଟଲ ନିରୁପାଧିକ ତ୍ରିପଦୀ ଯୁକ୍ତିକୁ ମୌଳିକ ସ୍ଥାନ ଦେଇଥିଲେ ଓ ଭାବିଥିଲେ ଯେ ପ୍ରାକଳ୍ପିକ, ବୈକଳ୍ପିକ ଇତ୍ୟାଦି ମିଶ୍ର ଯୁକ୍ତିସମୂହ  ନିରୂପାଧିକ ତ୍ରିପଦୀ ଯୁକ୍ତିକୁ ସହଜରେ ରୂପାନ୍ତର ହୋଇପାରିବ । ଆରିଷ୍ଟୋଟଲଙ୍କ ପରେ ଅବରୋହ ତର୍କଶାସ୍ତ୍ରରେ ଯାହା ନୂତନ ଭାବନା ଆସିଛି ତାହା ତାଙ୍କ ଅବଦାନ ପାଖରେ ନଗଣ୍ୟ ମନେହୁଏ । ଅବରୋହ ତର୍କଶାସ୍ତ୍ରକୁ ତାଙ୍କର ଅବଦାନ ଅତୁଳନୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଅବରୋହ ଯୁକ୍ତିର ଯେଉଁ ନିୟମମାନ ଆରିଷ୍ଟୋଟଲ ପରିକଳ୍ପନା କରିଛନ୍ତି ତାହା ତାଙ୍କ ମୌଳିକତାର ସୂଚନା ଦିଏ । ବୈଧ ଯୁକ୍ତିର କାରଣ ନିର୍ଣ୍ଣୟ କରିବାରେ ସେ ଗଭୀର ପାଣ୍ଡିତ୍ୟ ପ୍ରଦର୍ଶନ କରିଛନ୍ତି । ଯୁକ୍ତିର ବୈଧତା ନିରୂପଣ ନିର୍ଣ୍ଣୟରେ ପ୍ରଦତ୍ତ ନିୟମମାନ ସ୍ୱତଃସିଦ୍ଧ । ପରିଣାମତଃ ଏକ ତ୍ରିପଦୀ ଯୁକ୍ତିରେ ହେତୁବଚନ ଓ ସିଦ୍ଧାନ୍ତ ମଧ୍ୟରେ କେଉଁ ପ୍ରକାର ସମ୍ବନ୍ଧ ରହିଛି ତାହା ଉପରେ ଯୁକ୍ତିର ବୈଧତା ବା ଅବୈଧତା ନିର୍ଭର କରେ । ଏକ ବୈଧ ଯୁକ୍ତିରେ ହେତୁବଚନମାନଙ୍କଠାରୁ ସିଦ୍ଧାନ୍ତ ଅବଶ୍ୟମ୍ଭାବୀ ଭାବେ ନିଷ୍ପନ୍ନ ହେଉଥାଏ । ସୁତରାଂ ଏକ ବୈଧ ଯୁକ୍ତିରେ ହେତୁବଚନ ଓ ସିଦ୍ଧାନ୍ତ ମଧ୍ୟରେ ଥିବା ସମ୍ବନ୍ଧ ହେଉଛି ଆପାଦନ (implication) ର ସମ୍ବନ୍ଧ । ପରିଣାମତଃ ଏକ ଅବରୋହାତ୍ମକ ବୈଧ ଯୁକ୍ତିରେ ହେତୁବଚନ ମାନ ସତ୍ୟ ହେଲେ ସିଦ୍ଧାନ୍ତ ନିଶ୍ଚିତ ରୂପରେ ସତ୍ୟ ହୋଇଥାଏ ।

ଆରିଷ୍ଟୋଟଲ ସତ୍ୟ ଓ ବୈଧତା ମଧ୍ୟରେ ମଧ୍ୟ ପାର୍ଥକ୍ୟ ସୂଚାଇଛନ୍ତି । ତର୍କଶାସ୍ତ୍ର ପରିସରରେ ଏକ ଯୁକ୍ତି କିପରି ବୈଧ ହୁଏ ତାହାର ମାନଦଣ୍ଡମାନ ନିରୂପଣ କରାଯାଇଛି । ଏହି ମାନଦଣ୍ଡ ନିରୂପଣ କରିବାରେ ଆରିଷ୍ଟୋଟଲ ପ୍ରଥମ ପଥପ୍ରଦର୍ଶକ ।

ଯେଉଁ ଯୁଗରେ ଆରିଷ୍ଟୋଟଲଙ୍କର ଆବିର୍ଭାବ ହୋଇଥିଲା, ସେ ସମୟ ଥିଲା ତର୍କଶାସ୍ତ୍ର ସମ୍ବନ୍ଧୀୟ ଆଲୋଚନାର ଶୈଶବକାଳ । ଏହି ପରିପ୍ରେକ୍ଷୀରେ ଆରିଷ୍ଟୋଟଲଙ୍କ ଅବଦାନ ଥିଲା ଯୁଗାନ୍ତକାରୀ ଓ ପ୍ରାୟ ଦୁଇହଜାରରୁ ଅଧିକ ବର୍ଷ ଧରି ଆରିଷ୍ଟୋଟଲଙ୍କ ଅବରୋହ ତର୍କଶାସ୍ତ୍ରର ସ୍ଥାନ ଅଭ୍ରାନ୍ତ ରହିଥିଲା । କିନ୍ତୁ ପ୍ରତିକାତ୍ମକ ତର୍କଶାସ୍ତ୍ର ଓ ଗାଣିତିକ ତର୍କଶାସ୍ତ୍ରର ବିକାଶପରେ ଆରିଷ୍ଟୋଟଲଙ୍କ ସିଦ୍ଧାନ୍ତ କ୍ଷେତ୍ରରେ ପରିବର୍ତ୍ତନ ଆସିଛି । ତ୍ରିପଦୀ ଯୁକ୍ତିରେ ଉଭୟ ହେତୁବଚନ ସାର୍ବିକ ହୋଇଥିଲେ, ସିଦ୍ଧାନ୍ତ ବିଶେଷ ହୋଇପାରିବ ବୋଲି ଆରିଷ୍ଟୋଟଲ ଭାବିଥିଲେ । କିନ୍ତୁ ସାର୍ବିକ ତର୍କବଚନର ବ୍ୟାଖ୍ୟା ଏବେ ଭିନ୍ନ କରାଯାଉଛି, ଏହାର ସ୍ଥିତିଶୀଳତା ନେଇ ପ୍ରଶ୍ନ ଉଠାଯାଉଛି । ଯଦି ଏହାର ସ୍ଥିତିଶୀଳ ସୂଚନା (existential import) ନ ରହେ ତେବେ ସେଥିରୁ ଏକ ବିଶେଷ ସିଦ୍ଧାନ୍ତ ନିଷ୍ପନ୍ନ କରାଯାଇ ପାରିବ ନାହିଁ । ସେହିପରି ସକଳ ଗାଣିତିକ ଜ୍ଞାନ ଅବରୋହାତ୍ମକ, କିନ୍ତୁ ଗାଣିତିକ ଜ୍ଞାନ ତ୍ରିପଦୀଯୁକ୍ତି ବିଶିଷ୍ଟ ନୁହେଁ । ତେଣୁ ତ୍ରିପଦୀ ଯୁକ୍ତି ଅବରୋହାତ୍ମକ, କିନ୍ତୁ ପ୍ରତ୍ୟେକ ଅବରୋହାତ୍ମକ ପ୍ରକ୍ରିୟା ତ୍ରିପଦୀ ଯୁକ୍ତିଭିତ୍ତିକ ନୁହନ୍ତି । ଏହିପରି ଆରିଷ୍ଟୋଟଲଙ୍କର ତ୍ରିପଦୀ ଯୁକ୍ତିର କେତେକ ଦୁର୍ବଳତା ବା ସୀମିତତା ଆଧୁନିକ ସମୟର ତାର୍କିକମାନେ ଦର୍ଶାଇଛନ୍ତି । ତେବେ ଆରିଷ୍ଟୋଟଲ  ତ୍ରିପଦୀ ଯୁକ୍ତିର ଯେଉଁ ମୂଳଦୁଆ ପକାଇଛନ୍ତି ତାହା ଉପରେ ନାନା ସମ୍ଭାବନା ମାନ ବିକଶିତ ହେବାରେ ଲାଗିଛି । ତାଙ୍କ ଅବରୋହ ତର୍କଶାସ୍ତ୍ର ପ୍ରସଙ୍ଗରେ ସେ ଯେଉଁ ସବୁ ବିଷୟର ଅବତାରଣା କରିଛନ୍ତି (ଯାହାର ସୂଚନା ପୂର୍ବରୁ ଦିଆଯାଇଛି) ତାହା ବିଷୟରେ ବିସ୍ତୃତ ଆଲୋଚନା କରାଯାଇପାରେ । ଯେହେତୁ ସେସବୁ ଅବରୋହ ତର୍କଶାସ୍ତ୍ର ପରିସରରେ ସାଧାରଣ ଆଲୋଚ୍ୟ ପ୍ରସଙ୍ଗ ସେସବୁକୁ ଏଠାରେ ଆଲୋଚନା କରାଯାଉ ନାହିଁ । କାରଣ ଅବରୋହାତ୍ମକ ତର୍କଶାସ୍ତ୍ରର ଅଧ୍ୟୟନ ଅର୍ଥ ଆରିଷ୍ଟୋଟଲଙ୍କ ଭାବନାର ପଠନ । ତାଙ୍କର ତର୍କଶାସ୍ତ୍ର ସଂପର୍କୀୟ ବିଚାରମାନ ତାଙ୍କ ରଚିତ "Logical Works" (Organon)ରେ ଆଲୋଚନା କରାଯାଇଛି ।

ଆରିଷ୍ଟୋଟଲ ଦଶଟି ପର୍ଯ୍ୟାୟ ବା ପ୍ରକାର (Categories) ବିଷୟରେ ସୂଚନା ପ୍ରଦାନ କରିଛନ୍ତି । ଆମ ବିଚାରଧାରାରେ ବା ଜ୍ଞାନ କ୍ଷେତ୍ରରେ ଆମେ ଯେଉଁ ସବୁ ବିଷୟରେ ଚିନ୍ତା କରୁ ବା ପ୍ରକାଶ କରୁ ସେ ସବୁକୁ କେତେକ ପର୍ଯ୍ୟାୟରେ ବିଭକ୍ତ କରିବାକୁ ଦର୍ଶନଶାସ୍ତ୍ରରେ ପ୍ରୟାସ କରାଯାଇଛି । ଆମର ସକଳ ପ୍ରତ୍ୟୟମାନଙ୍କୁ କେତେକ ମୌଳିକ ପର୍ଯ୍ୟାୟରେ ବିଭକ୍ତ କରାଯାଏ । ଆମେ ଯାହା ସବୁ ଚିନ୍ତା କରୁ ଆମର ବିଧେୟ ମାଧ୍ୟମରେ ପ୍ରକାଶ କରୁ । ଯାହା ବିଷୟରେ କହୁ ଯଥା ଉଦ୍ଦେଶ୍ୟ, ତାକୁ ବି ଏକ ପର୍ଯ୍ୟାୟଭାବରେ ଗ୍ରହଣ କଲେ ଆଉ ନ' ପ୍ରକାରର ବିଧେୟ କରାଯାଇ ପାରିବ ବୋଲି ଆରିଷ୍ଟୋଟଲ ଭାବିଛନ୍ତି । ସେହିପର୍ଯ୍ୟାୟ ମାନ ହେଲା-ବସ୍ତୁ (substance),  ପରିମାଣ (quantity), ଗୁଣ (quality), ସମ୍ବନ୍ଧ (relation), ସ୍ଥାନ (place),  କାଳ/ସମୟ

(time), ସ୍ଥିତି (posture), ଅବସ୍ଥା (state) ଓ ପ୍ରଭାବ (passion) ଏହାରି ଆଧାରରେ ଦଶଟି ପ୍ରଶ୍ନର ଅବତାରଣା କରାଯାଇ ତାହାର ଉତ୍ତରରୁ ଆମେ ଏହି ବିଷୟଟିକୁ ଅବବୋଧ କରିପାରିବା

(୧) କାହା ବିଷୟରେ କହୁଛେ ? ଅର୍ଥାତ୍ କାହାର ଅସ୍ତିତ୍ୱ ବିଷୟରେ କହୁଛେ ? (୨) ସେ କ'ଣ ? (୩) ତାଙ୍କର ପରିମାଣ କ'ଣ ? (୪) ତାଙ୍କର ଗୁଣ କ'ଣ ? (୫) ତାଙ୍କର ସମ୍ବନ୍ଧ କ'ଣ ? (୬) ସେ କେଉଁଠି ? (୭) କେଉଁ ସମୟର କଥା ? (୮) ସେ କେଉଁ ସ୍ଥିତିରେ ? (୯) ସେ କ'ଣ କରୁଛନ୍ତି ? (୧୦) ସେ କିପରି ପ୍ରଭାବିତ ହୋଇଛନ୍ତି ?

ମନେକରାଯାଉ ଆମେ କୌଣସି ବ୍ୟକ୍ତି, ମନୁଷ୍ୟ, ପ୍ରାଣୀ, ବସ୍ତୁ, ସ୍ଥାନ ଇତ୍ୟାଦି ଯାହା ବିଷୟରେ ଏହି ପ୍ରଶ୍ନ ଉଠାଇ ପାରିବା ଓ ପ୍ରଶ୍ନକୁ ଆଧାର କରି ଏକ ଉତ୍ତର ଦେଇ ପାରିବା । ଧରନ୍ତୁ ରତିକାନ୍ତଙ୍କ ବିଷୟରେ ଆମେ ଏ ପ୍ରଶ୍ନ ପଚାରୁଛେ । ପ୍ରଥମେ ରତିକାନ୍ତଙ୍କର ସ୍ଥିତି ବା ଅସ୍ତିତ୍ୱକୁ ସ୍ୱୀକାର କରି ଯଦି ତାଙ୍କୁ ଉଦ୍ଦେଶ୍ୟ ଭାବରେ ବାକ୍ୟରେ ନିଆଯିବ, ତେବେ ତାଙ୍କ ସଂପର୍କରେ ନ'ଟି ବର୍ଣ୍ଣନା ରହିପାରିବ । ଆମେ ପ୍ରଶ୍ନମାନଙ୍କର ଉତ୍ତର ଦେବା:-

(୨) ସେ ଜଣେ ଅଧ୍ୟାପକ (୩) ତାଙ୍କର ଓଜନ ୬୦ କେ.ଜି (୪) ସେ ଶାନ୍ତ ସ୍ୱଭାବର (୫) ସେ ଗୁଡ୍ଡୁର ବାପା (୬) ସେ ଭୁବନେଶ୍ୱରରେ (୭) ଏହା ଜୁନ୍ ୧୫, ୨୦୨୦ ଦିନର ଘଟଣା । (୮) ସେ ବସି ପଢୁଛନ୍ତି । (୯) ସେ ଚିନ୍ତା କରୁଛନ୍ତି । (୧୦) ସେ ଭାବପ୍ରବଣ ରହିଛନ୍ତି ।

ଆରିଷ୍ଟୋଟଲ ଏହିପରି ଦଶଟି ମୌଳିକ ପର୍ଯ୍ୟାୟର ଅବତାରଣା କରିଛନ୍ତି ଓ ଯେକୌଣସି ପ୍ରତ୍ୟୟକୁ ଉଦ୍ଦେଶ୍ୟ ଭାବରେ ନେଇ ଉଦ୍ଦେଶ୍ୟ ସଂପର୍କରେ ଯାହା ବର୍ଣ୍ଣନା ପ୍ରଦାନ କରାଯିବ ତାହା ଏହି ପର୍ଯ୍ୟାୟ ଭିତରେ ରହିବ ବୋଲି ପରିକଳ୍ପନା କରିଛନ୍ତି । ତେବେ ତାଙ୍କ ପର୍ଯ୍ୟାୟ ସମ୍ବନ୍ଧୀୟ ବିଷୟଟି ଟିକିଏ ଜଟିଳ ଓ ଏହାକୁ ବୈଚାରିକ ସ୍ତରରେ ବି ମୁକ୍ତ ରଖିଛନ୍ତି । ତାଙ୍କର ତର୍କଶାସ୍ତ୍ର ସଂପର୍କରେ ବିଶ୍ଲେଷଣ ପୃଷ୍ଠଭୂମିରେ ସେ ସକଳ ଅଭିବ୍ୟକ୍ତି ବା ଜ୍ଞାନ କ୍ଷେତ୍ରରେ ଏହିପରି ଦଶଟି ପ୍ରସଙ୍ଗର ଅବତାରଣା କରିଛନ୍ତି ଓ ସେସବୁକୁ ମୌଳିକ ଭାବିଛନ୍ତି ।

ତାଙ୍କ ତର୍କଶାସ୍ତ୍ରର ଏହି ବ୍ୟାଖ୍ୟା ପରେ ଏବେ ତାଙ୍କ ଦର୍ଶନର ତତ୍ତ୍ୱମୀମାଂସା ଉପରେ ଆଲୋଚନା କରିବା ।

## ୮.୩ ତତ୍ତ୍ୱମୀମାଂସା.

ସାଂପ୍ରତିକ ପରିଭାଷାରେ ଯେଉଁ ଦାର୍ଶନିକ କ୍ଷେତ୍ରକୁ ତତ୍ତ୍ୱମୀମାଂସା କୁହାଯାଉଛି, ଆରିଷ୍ଟୋଟଲଙ୍କ ସମୟରେ ତାହାକୁ ଆଦିଦର୍ଶନ (First Philosophy) କୁହାଯାଉଥିଲା । ଆରିଷ୍ଟୋଟଲ ଯାହାକୁ ଆଦିଦର୍ଶନ କହୁଥିଲେ ତାହାର ତାତ୍ପର୍ଯ୍ୟ ଥିଲା ବିଶ୍ୱର ମୌଳିକ ସିଦ୍ଧାନ୍ତମାନଙ୍କୁ ଅନୁଶୀଳନ କରିବା । ଜ୍ଞାନର ଯେତେ ଯେତେ କ୍ଷେତ୍ର ବା ବିଭାଗ ରହିଛି ସେସବୁ ଅପେକ୍ଷା ଯାହା ମୌଳିକ ଓ ଯେଉଁ ଜ୍ଞାନର ଆଧାର ଉପରେ ଅନ୍ୟ ବିଷୟମାନ ନିର୍ଭର କରିଥାଏ ତାହା ଆଦିଦର୍ଶନ । ଏହାର ତାତ୍ପର୍ଯ୍ୟ ନୁହେଁ ଯେ ଅନ୍ୟ କ୍ଷେତ୍ରର ଜ୍ଞାନର ମୂଲ୍ୟ ନାହିଁ ବା କମ୍ । କିନ୍ତୁ ବୈଚାରିକ

ଗୁରୁତ୍ୱ ଦୃଷ୍ଟିରୁ ଯେଉଁ ସିଦ୍ଧାନ୍ତମାନ ବା ତତ୍ତ୍ୱମାନଙ୍କର ସାର୍ବିକ ପ୍ରାଧାନ୍ୟ ରହିଛି ସେହି ଆଧାରରେ କେତେକ ଅନୁଶୀଳନ ମୌଳିକ ଓ ଅନ୍ୟ କେତେକ ଆଲାଚନା ତୁଳନାତ୍ମକ ଭାବେ କମ୍ ମୌଳିକ । ବିଜ୍ଞାନ କ୍ଷେତ୍ରରେ ଯେତେ ଯେତେ ବିଭାଗ ମାନ ରହିଛି ପ୍ରତ୍ୟେକ କ୍ଷେତ୍ରରେ ସେମାନଙ୍କର ଅନୁଶୀଳନର ପରିସର ଏକ ବିଶେଷ ଦିଗ ପ୍ରତି ପ୍ରାଧାନ୍ୟ ଦେଇଥାଏ । ଏହି ଦୃଷ୍ଟିରୁ ମାନବୀୟ ଅନୁଶୀଳନର ଯେତେ ଯେତେ ବିଶେଷ କ୍ଷେତ୍ରମାନ ରହିଛନ୍ତି ସେମାନେ ତୁଳନାତ୍ମକ ଭାବରେ ଆଦିଦାର୍ଶନିକ ବ୍ୟାଖ୍ୟାନଠାରୁ କମ୍ ସାର୍ବିକ । ଆଦିଦର୍ଶନ କ୍ଷେତ୍ରରେ କୌଣସି ଏକ ବିଶେଷ କ୍ଷେତ୍ର ବା ନିର୍ଦ୍ଦିଷ୍ଟ ସତ୍ତାର ଅନୁଶୀଳନ କରାନଯାଇ ବରଂ ସକଳ ସତ୍ତାକୁ ସାମଗ୍ରିକ ଦୃଷ୍ଟିରେ ବିଚାର କରାଯାଏ । ଯେପରି ପ୍ରାଣୀବିଜ୍ଞାନ କ୍ଷେତ୍ରରେ ଉଦ୍‌ଭାବିତ ନିୟମମାନ ପ୍ରାଣୀମାନଙ୍କ ପ୍ରତି ପ୍ରଯୁଜ୍ୟ ହୋଇଥାଏ, ଉଦ୍‌ଭିଦ ବିଜ୍ଞାନ କ୍ଷେତ୍ରରେ ନିୟମମାନ ଉଭିଦ ଜଗତ ପ୍ରତି ପ୍ରୟୋଗ ହୋଇପାରେ ଇତ୍ୟାଦି । କିନ୍ତୁ ଆଦିଦର୍ଶନ କ୍ଷେତ୍ରରେ ଯେଉଁ ସବୁ ସିଦ୍ଧାନ୍ତମାନଙ୍କୁ ନିର୍ମାଣ କରାଯାଏ ତାହା ସକଳ ସ୍ତର ପ୍ରତି ପ୍ରୟୋଗ ହୋଇପାରେ । ସାର୍ବଜନୀନ ଭାବରେ ଓ ସାର୍ବିକ ସ୍ତରରେ ଗୁରୁତ୍ୱ ବହନ କରୁଥିବା ସିଦ୍ଧାନ୍ତମାନଙ୍କୁ ଦାର୍ଶନିକ ବିଶ୍ଳେଷଣ କ୍ଷେତ୍ରରେ ପ୍ରାଧାନ୍ୟ ଦିଆଯାଏ ।

ଆରିଷ୍ଟୋଟଲଙ୍କର ରଚନା ମାନଙ୍କୁ ସଂଗ୍ରହ କରାଯାଇ ଯେତେବେଳେ ପ୍ରକାଶ କରାଗଲା, ସେତେବେଳେ ଆରିଷ୍ଟୋଟଲଙ୍କର କେତେକ ଲେଖାକୁ ତତ୍ତ୍ୱମୀମାଂସା ବା ମେଟାଫିଜିକ୍‌ସ କୁହାଗଲା । ଆରିଷ୍ଟୋଟଲଙ୍କର ଭୌତିକ ଦର୍ଶନ ବା ପଦାର୍ଥ ବିଜ୍ଞାନ ସଂପର୍କରେ ଯେଉଁ ସବୁ ବିଷୟ ରହିଛି ତାହା ପରେ ତତ୍ତ୍ୱମୀମାଂସାକୁ ରଖାଯାଇଛି । ଆରିଷ୍ଟୋଟଲଙ୍କ ରଚନାରେ ଫିଜିକ୍‌ସ ପରେ ତାଙ୍କ ମେଟାଫିଜିକ୍‌ସକୁ ସ୍ଥାନ ଦିଆଯାଇଛି ଓ ଏହା ପ୍ରାୟତଃ ଏକ ଆକସ୍ମିକ ବ୍ୟାପାର ହୋଇପାରେ । ଏହାର ତାତ୍ପର୍ଯ୍ୟ ନୁହେଁ ଯେ ଫିଜିକ୍‌ସ ପରେ ମେଟାଫିଜିକ୍‌ସ ଆରମ୍ଭ ହୁଏ ।

ଆରିଷ୍ଟୋଟଲଙ୍କର ତାତ୍ତ୍ୱିକ ସିଦ୍ଧାନ୍ତମାନ ପ୍ଲେଟୋଙ୍କର ଶୁଦ୍ଧସତ୍ତା ସିଦ୍ଧାନ୍ତ (Theory of Ideas) ର ସମାଲୋଚନାରୁ ଭିତ୍ତି ନେଇଥିଲା । ପ୍ଲେଟୋଙ୍କ ସିଦ୍ଧାନ୍ତ କ୍ଷେତ୍ରରେ ଆରିଷ୍ଟୋଟଲ ଯେଉଁ ସବୁ ତ୍ରୁଟି ବା ଅସଂଗତି ଦେଖିଥିଲେ ସେସବୁକୁ ପ୍ରଥମେ ସମାଲୋଚନା କରି ତାହାପରେ ତାଙ୍କ ବିଚାରର ବିକାଶ କରିଥିଲେ । ଆମେ ଏଠାରେ ଆରିଷ୍ଟୋଟଲଙ୍କ ସମାଲୋଚନା ବିଷୟରେ ଆଲୋଚନା କରିବା ।

### (କ) ପ୍ଲେଟୋଙ୍କ ସିଦ୍ଧାନ୍ତର ସମାଲୋଚନା

(i) ଆରିଷ୍ଟୋଟଲ ପ୍ଲେଟୋଙ୍କ ତତ୍ତ୍ୱମୀମାଂସାକୁ ସମାଲୋଚନା କରିଛନ୍ତି । ପ୍ଲେଟୋଙ୍କର ଶୁଦ୍ଧସତ୍ତା ସିଦ୍ଧାନ୍ତ ଜଗତ ଓ ଜଗତରେ ରହିଥିବା ବସ୍ତୁମାନଙ୍କ ସମ୍ବନ୍ଧରେ ସେପରି କିଛି ବ୍ୟାଖ୍ୟା ଦେଇପାରୁ ନାହିଁ । ଦର୍ଶନର ମୁଖ୍ୟ ପ୍ରସଙ୍ଗ ହେଉଛି ଜଗତର ଏକ ସନ୍ତୋଷଜନକ ଓ ତର୍କସଂଗତ ବ୍ୟାଖ୍ୟା ପ୍ରଦାନ କରିବା । ପ୍ଲେଟୋଙ୍କ ଶୁଦ୍ଧସତ୍ତା ସିଦ୍ଧାନ୍ତ ଜନିତ ତତ୍ତ୍ୱମୀମାଂସା ଜଗତର ବ୍ୟାଖ୍ୟା ଯୁକ୍ତିସଂଗତ ଭାବେ ଦେଇପାରୁ ନାହିଁ । ଯଦିବି ଯୁକ୍ତି ଦୃଷ୍ଟିରୁ ଗ୍ରହଣ କରାଯାଏ ଯେ ସୌନ୍ଦର୍ଯ୍ୟର ଏକ ଶୁଦ୍ଧସତ୍ତା ରହିଛି, ତେବେ ଏହା ଜଗତରେ ସୁନ୍ଦର ବସ୍ତୁମାନଙ୍କର ସ୍ଥିତିକୁ

ବୁଝାଇବାକୁ ସମର୍ଥ ନୁହେଁ । ସୌନ୍ଦର୍ଯ୍ୟ ଶୁଦ୍ଧସତ୍ତାରୁ ସୁନ୍ଦର ବସ୍ତୁମାନଙ୍କର କିପରି ଉଦ୍‌ଭବ ହେଲା ତାହା ଏହି ସିଦ୍ଧାନ୍ତ ବ୍ୟାଖ୍ୟା କରିପାରୁ ନାହିଁ ।

(ii) ଶୁଦ୍ଧସତ୍ତା ମାନଙ୍କର ବସ୍ତୁମାନଙ୍କ ସହ ସମ୍ବନ୍ଧ ବିଷୟ ପ୍ଲେଟୋ ବ୍ୟାଖ୍ୟା କରିପାରି ନାହାନ୍ତି । ବସ୍ତୁମାନ ଶୁଦ୍ଧସତ୍ତାର ନକଲ ବା ପ୍ରତିଲିପି ବୋଲି ପ୍ଲେଟୋ ଦର୍ଶାଇଛନ୍ତି । ଅର୍ଥାତ୍ ବସ୍ତୁମାନ ଶୁଦ୍ଧସତ୍ତାରେ ଅଂଶଗ୍ରହଣ କରନ୍ତି । କିନ୍ତୁ 'ପ୍ରତିଲିପି' ବା ଅଂଶଗ୍ରହଣ କେବଳ ଆଳଙ୍କାରିକ ଅଭିବ୍ୟକ୍ତି । ଏକ ଆଳଙ୍କାରିକ ବା କାବ୍ୟିକ ଅଭିବ୍ୟକ୍ତି ଆଧାରରେ ଏକ ସମ୍ବନ୍ଧକୁ ପ୍ରତିଷ୍ଠା କରିହେବ ନାହିଁ । ଏହା ସେମାନଙ୍କ ସମ୍ବନ୍ଧକୁ ବ୍ୟାଖ୍ୟା କରିବା ପରିବର୍ତ୍ତେ ପ୍ରଶ୍ନଟିକୁ ଛବିଳ ଚିନ୍ତାଦ୍ୱାରା ଏଡାଇ ଯାଇଛି ।

(iii) ପୃଥିବୀରେ ବସ୍ତୁସକଳର ଉଦ୍‌ଭବ, ଅଭିବୃଦ୍ଧି, ଗତି ଓ ବିଲୟ ରହିଛି । ପରିବର୍ତ୍ତନ ପ୍ରକୃତିର ଧାରା । ଯଦି ବି ଶୁଦ୍ଧସତ୍ତାମାନଙ୍କର ଅସ୍ତିତ୍ୱକୁ ସ୍ୱୀକାର କରାଯାଏ ଓ ଆହୁରି ମଧ୍ୟ ସ୍ୱୀକାର କରାଯାଏ ଯେ ଜଗତର ବସ୍ତୁସକଳ ସେମାନଙ୍କର ପ୍ରତିଲିପି, ତେବେ ବସ୍ତୁସକଳର ଗତିଶୀଳତା ଶୁଦ୍ଧସତ୍ତା ମାନଙ୍କଦ୍ୱାରା ବ୍ୟାଖ୍ୟା ହୋଇପାରିବ ନାହିଁ । କାରଣ ପ୍ଲେଟୋଙ୍କ ବିଚାରରେ ଶୁଦ୍ଧସତ୍ତାମାନ ଅପରିବର୍ତ୍ତନୀୟ ଓ ଗତିହୀନ । ସେମାନେ ଯେହେତୁ ଅପରିବର୍ତ୍ତନୀୟ ଓ ଗତିହୀନ, ସେମାନଙ୍କର ଯେଉଁମାନେ କପି ବା ପ୍ରତିଲିପି ସେମାନେ ମଧ୍ୟ ଅପରିବର୍ତ୍ତନୀୟ ଓ ଗତିହୀନ ହେବା ଆବଶ୍ୟକ । ସ୍ଥିର ଓ ନିଶ୍ଚଳ ଶୁଦ୍ଧସତ୍ତାମାନ ଏକ ପରିବର୍ତ୍ତନଶୀଳ ବସ୍ତୁରାଜିର ପୃଥିବୀକୁ ବ୍ୟାଖ୍ୟା କରିବା ସମ୍ଭବପର ନୁହେଁ । ଜଗତରେ ରହିଥିବା ସୁନ୍ଦର ବସ୍ତୁମାନଙ୍କର ଉତ୍ପତ୍ତି ଓ ବିଲୟ ରହିଛି । ଏମାନଙ୍କୁ ବ୍ୟାଖ୍ୟା କରିବାକୁ ଶୁଦ୍ଧସତ୍ତାମାନଙ୍କ ଭିତରେ ଗତିଶୀଳତା ରହିବା ଆବଶ୍ୟକ । ଶୁଦ୍ଧସତ୍ତା ମାନ ସ୍ଥିର, ନିଶ୍ଚଳ ଓ ଅପରିବର୍ତ୍ତନୀୟ ହୋଇଥିବାରୁ ସେମାନେ ଏକ ପରିବର୍ତ୍ତନଶୀଳ ଜଗତର ବସ୍ତୁରାଜିକୁ ବ୍ୟାଖ୍ୟା କରିବା ସମ୍ଭବ ନୁହେଁ ।

(iv) ଜଗତରେ ବହୁବିଧ ବସ୍ତୁ ଓ ପଦାର୍ଥ ରହିଛି । ଏହି ବିବିଧତା ଓ ବହୁବିଧତାକୁ ବ୍ୟାଖ୍ୟା କରିବା ଦର୍ଶନର ଆଭିମୁଖ୍ୟ ଅଟେ । ବିବିଧତାପୂର୍ଣ୍ଣ ବିଶ୍ୱକୁ ବ୍ୟାଖ୍ୟା କରିବାକୁ ପ୍ଲେଟୋ ଶୁଦ୍ଧସତ୍ତାମାନଙ୍କର ପରିକଳ୍ପନା କରିଛନ୍ତି । କିନ୍ତୁ ଜଗତକୁ ବ୍ୟାଖ୍ୟା କରିବା ପରିବର୍ତ୍ତେ ପ୍ଲେଟୋ ଶୁଦ୍ଧସତ୍ତାମାନଙ୍କର ବିବିଧତାର ଅବତାରଣା କରିଛନ୍ତି । ଯେଉଁ ବସ୍ତୁମାନଙ୍କୁ ସେ ବ୍ୟାଖ୍ୟା କରିବାକୁ ଚାହିଁଛନ୍ତି ସେମାନଙ୍କୁ ବୁଝାଇବା ପରିବର୍ତ୍ତେ ବିବିଧ ଶୁଦ୍ଧସତ୍ତାର ଏକ ଜଗତ ସୃଷ୍ଟି କରିଛନ୍ତି । ସେ କେବଳ ସଂଖ୍ୟାକୁ ଦ୍ୱିଗୁଣିତ କରିଦେଇଛନ୍ତି । ଅସଂଖ୍ୟ ବସ୍ତୁବିଶିଷ୍ଟ ଜଗତ ସାଙ୍ଗକୁ ସେ ଅସଂଖ୍ୟ ଶୁଦ୍ଧସତ୍ତାବିଶିଷ୍ଟ ଏକ ଜଗତର ପରିକଳ୍ପନା କରିଛନ୍ତି । ଏପରି ଦ୍ୱିଗୁଣିତ କରିବା ଦ୍ୱାରା ଜଗତର ବ୍ୟାଖ୍ୟା ହେବା ପରିବର୍ତ୍ତେ ଏହା ଅଧିକ ଜଟିଳ ହୋଇଯାଇଛି । କାରଣ ଜଗତର ବସ୍ତୁମାନଙ୍କର ସମାନ୍ତରାଳ ଏକ ଭିନ୍ନ ଜଗତର ପରିକଳ୍ପନା କରିଛନ୍ତି ।

(v) ପ୍ଲେଟୋ ଯେଉଁ ଶୁଦ୍ଧସତ୍ତାମାନଙ୍କର ପରିକଳ୍ପନା କରିଛନ୍ତି ସେସବୁ ଇନ୍ଦ୍ରିୟଗ୍ରାହ୍ୟ ନୁହନ୍ତି । ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁଜଗତକୁ ବ୍ୟାଖ୍ୟା କରିବାକୁ ଏକ ଅଇନ୍ଦ୍ରିୟଗାହ୍ୟ ସିଦ୍ଧାନ୍ତ ଭାବରେ ସେ ଶୁଦ୍ଧସତ୍ତାମାନଙ୍କର ପରିକଳ୍ପନା କରିଛନ୍ତି ।

କିନ୍ତୁ ପ୍ଲେଟୋ ଯେଉଁପରି ଭାବରେ ଶୁଦ୍ଧସତ୍ତାମାନଙ୍କର ଚିତ୍ର ଦେଉଛନ୍ତି ସେଥିରୁ ସେମାନେ ବି ଇନ୍ଦ୍ରିୟଗାହ୍ୟ ବିବିଧତାରେ ରୂପାନ୍ତରିତ ହେଉଛନ୍ତି । କୌଣସି ଇନ୍ଦ୍ରିୟଗାହ୍ୟ ସିଦ୍ଧାନ୍ତ ପାଇବା ପରିବର୍ତ୍ତେ ସେ ବରଂ ଆହୁରି ଅନେକ ଶୁଦ୍ଧସତ୍ତା ମାନଙ୍କର ଅବତାରଣା କରିଛନ୍ତି ଯାହା ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ ସ୍ତରକୁ ଚାଲିଆସିଛି । ପ୍ରତ୍ୟେକ ଶୁଦ୍ଧସତ୍ତା ସ୍ୱସ୍ଥିତ ବୋଲି ପ୍ଲେଟୋ କହିଛନ୍ତି । ପ୍ରକୃତରେ ଦେଖିବାକୁ ଗଲେ ଇନ୍ଦ୍ରିୟାନୁଭୂତି ଜଗତର ବସ୍ତୁସକଳ ଓ ଶୁଦ୍ଧସତ୍ତା ଭିତରେ ପାର୍ଥକ୍ୟ ନାହିଁ । ଗାଈ ଓ ଗାଈର ଶୁଦ୍ଧସତ୍ତା, ବୃକ୍ଷ ଓ ବୃକ୍ଷର ଶୁଦ୍ଧସତ୍ତା ଭିତରେ କ'ଣ ଫରକ ରହୁଛି ! ଶୁଦ୍ଧସତ୍ତାମାନ ସ୍ୱସ୍ଥିତ ଓ ସାଧାରଣ କହିବାଦ୍ୱାରା ତାହା ଇନ୍ଦ୍ରିୟାନୁଭୂତି ଜଗତର ବସ୍ତୁମାନଙ୍କର ବ୍ୟାଖ୍ୟା ଦେଇପାରୁ ନାହିଁ । ସାଧାରଣ ଲୋକବିଶ୍ୱାସରେ ମନୁଷ୍ୟମାନଙ୍କ ପରି ଦୈବୀସତ୍ତା ମାନଙ୍କର ଯେପରି କଳ୍ପନା କରାଯାଏ ସେହି ମାନବଦ୍ୱାରୋପବାଦ ଶୁଦ୍ଧସତ୍ତା କ୍ଷେତ୍ରକୁ ପ୍ଲେଟୋ ପ୍ରୟୋଗ କରିଛନ୍ତି । ଅର୍ଥାତ୍ ମାନବଦ୍ୱାରୋପବାଦ ନିଜସ୍ୱ କଳ୍ପନାରେ ଯେପରି ଦୈବୀସତ୍ତାମାନଙ୍କୁ କଳ୍ପନା କରେ, ପ୍ଲେଟୋ ସେହି ଧାରାରେ ଜଗତର ବସ୍ତୁମାନଙ୍କୁ ବୁଝାଇବା ପାଇଁ ଶୁଦ୍ଧସତ୍ତା ମାନଙ୍କର ପରିକଳ୍ପନା କରିଛନ୍ତି । ମାନବୀୟ କଳ୍ପନାରେ ଯେପରି ଦେବତାମାନେ ରୂପ ନିଅନ୍ତି, ପ୍ଲେଟୋ ସେହି ଧାରାରେ ବସ୍ତୁଜଗତକୁ ଦେଖି ଏକ କଳ୍ପନାପ୍ରସୂତ ଶୁଦ୍ଧସତ୍ତା ଜଗତକୁ ଅନୁମାନ କରିଛନ୍ତି । ପ୍ଲେଟୋ ବସ୍ତୁମାନଙ୍କୁ ଶୁଦ୍ଧସତ୍ତାର ପ୍ରତିଲିପି ବୋଲି ଭାବିଛନ୍ତି । କିନ୍ତୁ ପ୍ରକୃତରେ ଶୁଦ୍ଧ ସତ୍ତାମାନ ବସ୍ତୁମାନଙ୍କର ପ୍ରତିଲିପି ଭାବରେ ପ୍ଲେଟୋଙ୍କର କଳ୍ପନା ସ୍ତରକୁ ଆସିଛନ୍ତି ।

(vi) ଏକ ଶ୍ରେଣୀର ସକଳ ବାଚ୍ୟାର୍ଥମାନଙ୍କ ମଧ୍ୟରେ ଏକ ସାଧାରଣ ଲକ୍ଷଣ ଥିବା ପ୍ଲେଟୋ କଳ୍ପନା କରି ସେହି ସାଧାରଣ ଲକ୍ଷଣକୁ 'ଶୁଦ୍ଧସତ୍ତା'ର ସ୍ଥାନ ଦେଇଛନ୍ତି । ବିଭିନ୍ନ ଏକକ ବସ୍ତୁମାନଙ୍କ ମଧ୍ୟରେ ଥିବା ସାଧାରଣ ଲକ୍ଷଣରୁ ଶୁଦ୍ଧସତ୍ତାର ଭାବନା ଉଦ୍‌ଭବ ହେଉଛି । ସବୁ ମନୁଷ୍ୟମାନଙ୍କ ମଧ୍ୟରେ ଯାହା ସାଧାରଣ ତାହା ମନୁଷ୍ୟ-ଶୁଦ୍ଧସତ୍ତା । ଯାହା ସମସ୍ତ ଗାଈମାନଙ୍କ ମଧ୍ୟରେ ସାଧାରଣ ତାହା ଗାଈ-ଶୁଦ୍ଧସତ୍ତା । ଯେଉଁଠି ଏକ ସାଧାରଣ ଗୁଣର ଭାବନା ଆସୁଛି, ତାହାକୁ ଭିତ୍ତି କରି ଏକ ଶୁଦ୍ଧସତ୍ତାର ଭାବନା ପ୍ଲେଟୋ ସୃଷ୍ଟି କରିଛନ୍ତି । ସେପରି ହେଲେ ମନୁଷ୍ୟ ଓ ମନୁଷ୍ୟ ଶୁଦ୍ଧସତ୍ତା ମଧ୍ୟରେ ବି କିଛି ସାଧାରଣ ଗୁଣ ରହିଥିବ, ଫଳରେ "ତୃତୀୟ-ମନୁଷ୍ୟ" ର ପରିକଳ୍ପନା ଆସିବ ଯାହା ମନୁଷ୍ୟ ଓ ମନୁଷ୍ୟ-ଶୁଦ୍ଧସତ୍ତା ମଧ୍ୟରେ ସାଧାରଣ । ସେହିପରି ଗାଈ ଓ ଗାଈ-ଶୁଦ୍ଧସତ୍ତା ମଧ୍ୟରେ କିଛି ତୃତୀୟ-ଗାଈର ଅନୁମାନ କରାଯିବ, ଯାହା ସେମାନଙ୍କ ମଧ୍ୟରେ ସାଧାରଣ ଗୁଣ । ଏକ ଶ୍ରେଣୀର ବିଶେଷ ଓ ଶ୍ରେଣୀର ଶୁଦ୍ଧସତ୍ତା ଭିତରେ ସାଧାରଣ ଗୁଣକୁ ନେଇ ଏକ ତୃତୀୟ ଶୁଦ୍ଧସତ୍ତା ପରିକଳ୍ପନା କରାଯାଇ ପାରିବ । ସେଥିରୁ ପୁନଶ୍ଚ ସାଧାରଣ ଗୁଣର ପରିକଳ୍ପନା କରାଯିବ ଓ ଏହି ପ୍ରକ୍ରିୟା ଅସମାପ୍ତ ହୋଇଚାଲିବ ।

(vii) ତେବେ ପ୍ଲେଟୋଙ୍କ ସିଦ୍ଧାନ୍ତ ବିରୁଦ୍ଧରେ ଆରିଷ୍ଟୋଟଲ ଯେଉଁ ସବୁ ସମାଲୋଚନାର ଅବତାରଣା କରିଛନ୍ତି, ସେସବୁ ଭିତରେ ଏକ ଗୁରୁତ୍ୱପୂର୍ଣ୍ଣ ଅଭିଯୋଗ ରହୁଛି । ପ୍ଲେଟୋ ଏକ ଶ୍ରେଣୀର ବିଶେଷମାନଙ୍କ ମଧ୍ୟରେ କିଛି ମୌଳିକ ତତ୍ତ୍ୱ ବା ଗୁଣର ପରିକଳ୍ପନା କରିଛନ୍ତି । ଯାହା ବସ୍ତୁର ସାରତତ୍ତ୍ୱ ତାହା ବସ୍ତୁଭିତରେ ଅନ୍ତର୍ନିହିତ ରହିବା ଆବଶ୍ୟକ, ତାହା ବସ୍ତୁର ବହିର୍ଭୂତ ହେବା ଯଥାର୍ଥ ନୁହେଁ । କିନ୍ତୁ ପ୍ଲେଟୋ ବସ୍ତୁଠାରୁ ତାର ମୌଳିକ ତତ୍ତ୍ୱ ବା ଗୁଣକୁ

ବହିର୍ଭୂତ କରିବାଦ୍ୱାରା ବୈଚାରିକ ଅସ୍ୱଷ୍ଟତା ସୃଷ୍ଟି କରିଛନ୍ତି । ବସ୍ତୁମାନଙ୍କ ମଧ୍ୟରେ ଯାହା ମୌଳିକ ତତ୍ତ୍ୱ ତାହାକୁ ପ୍ଲେଟୋ 'ଶୁଦ୍ଧସତ୍ତା'ର ଚିତ୍ର ଦେଇ ତାହାକୁ ଏକ କାଳ୍ପନିକ ଜଗତରେ ସ୍ଥାନିତ କରିଛନ୍ତି । ଶୁଦ୍ଧସତ୍ତା ଯାହା ମୌଳିକ ତତ୍ତ୍ୱ ତାହା ସାର୍ବିକ । ସକଳ ଗାଈମାନଙ୍କର ମୌଳିକ ସତ୍ତା ଯଦି ଗାଈତ୍ୱ ଏକ ସାର୍ବିକ ସତ୍ତା ହୁଏ, ତାହା ବିଶେଷ ମାନଙ୍କ ପାଖରେ ଅର୍ଥାତ୍ ପ୍ରତ୍ୟେକ ଗାଈ ପାଖରେ ରହିବା ଆବଶ୍ୟକ । ସବୁ ସୁନ୍ଦର ବସ୍ତୁମାନଙ୍କର ମୌଳିକ ସତ୍ତା ଯଦି ସୌନ୍ଦର୍ଯ୍ୟ ହୁଏ, ତେବେ ସୌନ୍ଦର୍ଯ୍ୟ ସୁନ୍ଦର ବସ୍ତୁମାନଙ୍କ ବାହାରେ କିପରି ରହିବ ? ଏକ ସାର୍ବିକ ଲକ୍ଷଣ ବିଶେଷମାନଙ୍କ ବ୍ୟତୀତ ନିଜସ୍ୱ ସ୍ଥିତିରେ ଓ ସ୍ୱାଧୀନ ଭାବରେ ରହିବା ଅସଂଗତ ମନେହୁଏ । ସୁନ୍ଦର ବସ୍ତୁମାନଙ୍କୁ ଛାଡି ସୌନ୍ଦର୍ଯ୍ୟ ଏକ ସାର୍ବିକ ସତ୍ତା ଭାବେ ସ୍ୱାଧନ ଭାବରେ ପୃଥକ୍ ରହିବ ବୋଲି ପ୍ଲେଟୋ ଯାହା ଚିନ୍ତା କରିଛନ୍ତି ତାହା ଦୁର୍ବୋଧ ଓ ଅଯୌକ୍ତିକ ଅଟେ । ଆମେ ଗାଈମାନଙ୍କୁ ଦେଖେ, ତେବେ ଗାଈତ୍ୱ ଏକ ସାର୍ବିକ-ଗୁଣ ଗାଈମାନଙ୍କ ଭିତରେ ରହିପାରେ, କିନ୍ତୁ ପ୍ଲେଟୋ ସାର୍ବିକ ଗୁଣ ଗାଈତ୍ୱକୁ ଗାଈମାନଙ୍କଠାରୁ ପୃଥକ୍ କରି ତାକୁ ସ୍ୱତନ୍ତ୍ର ସ୍ଥିତି ଦେବାଦ୍ୱାରା ବିରୋଧାଭାସ ସୃଷ୍ଟିକରିଛନ୍ତି । ପ୍ଲେଟୋ ବିଶେଷଠାରୁ ସାମାନ୍ୟକୁ ପୃଥକ୍ କରିଛନ୍ତି ଓ ସାମାନ୍ୟକୁ ସତ୍ ଓ ବାସ୍ତବ ଭାବେ ନେବାବେଳେ ବିଶେଷକୁ ଅସତ୍ ଓ ଅବାସ୍ତବ ବୋଲି ଦର୍ଶାଇଛନ୍ତି । ଏହା କରିବା ପରେ ସେ ସାମାନ୍ୟକୁ ବିଶେଷ ଭାବେ ସ୍ୱତନ୍ତ୍ର ସ୍ଥାନ ଦେଇ ବୈଚାରିକ ବିରୋଧାଭାସ ଉଦ୍‌ଭବ କରାଇଛନ୍ତି । ଯାହାର ସ୍ଥିତି ରହିଛି ତାହା ଯଦି ବାସ୍ତବ ନୁହେଁ, ତେବେ ସାମାନ୍ୟକୁ ପୁନଶ୍ଚ ଅସ୍ତିତ୍ୱ ପ୍ରଦାନ କରି ସେ ବିରୋଧାଭାସ ଭିତରେ ପ୍ରବେଶ କରିଛନ୍ତି ।

ଏହି ସମାଲୋଚନାରୁ ଆରିଷ୍ଟୋଟଲଙ୍କର ଦର୍ଶନ ବିକଶିତ ହୋଇଛି । ଆରିଷ୍ଟୋଟଲ ସାମାନ୍ୟକୁ ପରମ ସତ୍ତା ବୋଲି ସ୍ୱୀକାର କରିଛନ୍ତି । ତେବେ ସାମାନ୍ୟ ବିଶେଷ ଭିତରେ ଅନ୍ତର୍ନିହିତ ହୋଇ ରହିଛି । ତାତ୍ତ୍ୱିକ ଦାର୍ଶନିକମାନଙ୍କ ପାଇଁ ମୂଳ ପ୍ରଶ୍ନ ହେଉଛି  ପରମ ସତ୍ତା ବା ଦ୍ରବ୍ୟ (substance ) ର ସ୍ୱରୂପ କ'ଣ ? କେଉଁ ସତ୍ତାକୁ ପରମ ଭାବେ ନିଆଯିବ ? ତାହା ପରମ ବା ଦ୍ରବ୍ୟ  ଯାହାର ସ୍ୱତନ୍ତ୍ର ଅସ୍ତିତ୍ୱ ରହିଛି । ଏହା ସ୍ୱରୂପରେ ସତ୍ । ଏହାର ସ୍ୱତନ୍ତ୍ରତା ଏହାକୁ ବାଦ୍ ଦେଇ ବାହାରୁ ଏହା ମଧ୍ୟକୁ ଆସୁନାହିଁ । ତାହା ହିଁ ଦ୍ରବ୍ୟ ଯାହା କେବେ ହେଲେ ବିଧେୟ ହୋଇପାରିବ ନାହିଁ । ଦ୍ରବ୍ୟ ସର୍ବଦା ଉଦ୍ଦେଶ୍ୟ ରହିବ ଓ ସକଳ ବିଧେୟ ଏହା ପ୍ରତି ପ୍ରୟୋଗ ହୋଇପାରିବ । "ଗାଈମାନେ ଗୃହପାଳିତ ପ୍ରାଣୀ" କହିବା ବେଳେ ଏହି ତର୍କବଚନରେ ଗୃହପାଳିତ ପ୍ରାଣୀ ବିଧେୟ ଓ ଗାଈମାନେ ଉଦ୍ଦେଶ୍ୟ ଭାବେ ବ୍ୟବହୃତ ହୋଇଛି । 'ଲୁହା ଓଜନିଆ' କହିଲା ବେଳେ ଲୁହା ଉଦ୍ଦେଶ୍ୟ, ଓଜନିଆ ବିଧେୟ । ଯାହା ପ୍ରସଙ୍ଗରେ ଅବତାରଣା କରାଯାଉଛି ବା କୁହାଯାଉଛି ତାହା ଉଦ୍ଦେଶ୍ୟ । ବିଧେୟ ଉଦ୍ଦେଶ୍ୟ ଉପରେ ନିର୍ଭରଶୀଳ କିନ୍ତୁ ଉଦ୍ଦେଶ୍ୟ ବିଧେୟ ଉପରେ ନୁହଁ ।

ପ୍ଲେଟୋ ସାମାନ୍ୟ ବା ସାର୍ବିକମାନଙ୍କୁ ଦ୍ରବ୍ୟ ଭାବେ ନେଇଛନ୍ତି କି ନାହିଁ ? ପ୍ଲେଟୋଙ୍କ ଦାର୍ଶନିକ ବିଚାର କ୍ଷେତ୍ରରେ ସାର୍ବିକ (universal) ମାନଙ୍କୁ ଏକ ସାଧାରଣ ବିଧେୟଭାବେ ନିଆଯାଇଛି । ସାର୍ବିକ ହେଉଛି ବିଶେଷମାନଙ୍କ ଭିତରେ ଥିବା ସାଧାରଣ ଗୁଣ । ତେଣୁ ପ୍ଲେଟୋ ସାର୍ବିକମାନଙ୍କୁ ଦ୍ରବ୍ୟ ଭାବରେ ଗ୍ରହଣ କରିନାହାନ୍ତି ।

ବରଂ ସାର୍ବିକକୁ ଏକ ସାଧାରଣ ବିଧେୟଭାବେ ନେଇ ଏକ ଶ୍ରେଣୀର ସମସ୍ତ ବିଶେଷଙ୍କ ପ୍ରତି ପ୍ରୟୋଗ କରିଛନ୍ତି । ସବୁ ମନୁଷ୍ୟମାନଙ୍କ ମଧ୍ୟରେ ଯାହା ସାଧାରଣ ଭାବରେ ରହିଛି ତାହା ହେଲା 'ମନୁଷ୍ୟତ୍ୱ' ଯାହା ଏକ ପ୍ରତ୍ୟୟ । ମନୁଷ୍ୟମାନଙ୍କୁ ଛାଡି ମନୁଷ୍ୟତ୍ୱ ରହିପାରିବ ନାହିଁ, ସେହିପରି ସୁନ୍ଦର ବସ୍ତୁମାନଙ୍କୁ ଛାଡି ସୌନ୍ଦର୍ଯ୍ୟ ବା ଧଳା ବସ୍ତୁମାନଙ୍କୁ ଛାଡି ଧବଳତ୍ୱ ରହିବା ସମ୍ଭବପର ନୁହେଁ । ସୁତରାଂ ସାର୍ବିକମାନେ ଦ୍ରବ୍ୟ ହୋଇପାରିବେ ନାହିଁ । ସେହିପରି ବିଶେଷମାନେ ମଧ୍ୟ ଦ୍ରବ୍ୟ ନୁହନ୍ତି । କାରଣ ପରମ ଭାବରେ ବିଶେଷମାନଙ୍କର ସ୍ୱତନ୍ତ୍ର ଓ ପୃଥକ୍ ସ୍ଥିତି ନାହିଁ । ଯଦି ମନୁଷ୍ୟ ବ୍ୟକ୍ତିମାନଙ୍କୁ ଛାଡି ମାନବତ୍ୱ ରହିପାରିବ ନାହିଁ, ମନୁଷ୍ୟମାନେ ମଧ୍ୟ ମାନବତ୍ୱକୁ ଛାଡି ରହିପାରିବେ ନାହିଁ । ଅନ୍ୟ ମନୁଷ୍ୟମାନଙ୍କ ସହ ଜଣେ ମନୁଷ୍ୟର ଯେଉଁ ସାଧାରଣ ଲକ୍ଷଣ ରହିଛି, ସେହି ସାଧାରଣ ଲକ୍ଷଣକୁ ମନୁଷ୍ୟଠାରୁ ବାଦ୍ ଦେଇଦେଲେ ସିଏ ଆଉ ମନୁଷ୍ୟ ବୋଲି ରହିବ କି ? ମୋ ସମ୍ମୁଖର ଆଲମିରାଟି କଠିନ, ଆୟତାକାର, ଧୂସର, ଉଚ୍ଚତା ବିଶିଷ୍ଟ କହିବା ବେଳେ ଆଲମିରାର ଗୁଣଦ୍ୱାରା ମୁଁ ଏହାକୁ ଜାଣିପାରୁଛି । ଯଦି ଆଲମିରାଠାରୁ କଠିନତ୍ୱ, ଧୂସରତ୍ୱ, ଆୟତନ ଇତ୍ୟାଦି ଗୁଣମାନଙ୍କୁ ପୃଥକ୍ କରିଦିଆଯିବ, ତେବେ ଆଲମିରାଟିକୁ ଜାଣିବା ସମ୍ଭବ ହେବ କି ? ମଲ୍ଲୀଫୁଲଟି ସୁବାସିତ, ଧବଳ, କୋମଳ ବୋଲି ଆମେ କହିଥାଏ, ଯଦି ଏହି ସବୁ ଗୁଣ ମଲ୍ଲୀଫୁଲଠାରୁ ପୃଥକ୍ କରିଦିଆଯିବ, ତେବେ ମଲ୍ଲୀଫୁଲର ବସ୍ତୁତ୍ୱ ମଧ୍ୟ ଚାଲିଯିବ । ମନୁଷ୍ୟ, ଆଲମିରା, ମଲ୍ଲୀଫୁଲ ଇତ୍ୟାଦି ବସ୍ତୁମାନଙ୍କୁ ଆମେ ସେମାନଙ୍କର ଗୁଣ ମାଧ୍ୟମରେ ଚିନ୍ତା କରିଥାଏ । ଗୁଣମାନ ବସ୍ତୁମାନଙ୍କୁ ବାଦ୍ ଦେଇ ରହିପାରିବେ ନାହିଁ କିମ୍ବା ବସ୍ତୁ ଗୁଣବ୍ୟତୀତ ନିଜର ଅସ୍ତିତ୍ୱ ହରାଇବ । ମଲ୍ଲୀଫୁଲ ଯେପରି ତାର ଗୁଣ ଉପରେ ନିର୍ଭର କରେ, ସେହିପରି ମଲ୍ଲୀଫୁଲର ଗୁଣ ମଲ୍ଲୀଫୁଲ ଉପରେ ନିର୍ଭର କରିଥାଏ । ସୁତରାଂ ପରସ୍ପରକୁ ବାଦ୍ ଦେଇ କିଛି ବସ୍ତୁ ହୋଇପାରିବେ ନାହିଁ ।

ଏକ ବସ୍ତୁର ଗୁଣମାନ ହେଉଛନ୍ତି ସାମାନ୍ୟ । ଆମ ପରିଭାଷାରେ universal କୁ ସାର୍ବିକ ବା ସାମାନ୍ୟ ଅର୍ଥରେ ବ୍ୟବହାର କରାଯାଉଛି । ସାର୍ବିକ ବା ସାମାନ୍ୟକୁ ସମାନ ଅର୍ଥରେ ନିଆଯାଇଛି । ଆଲମିରାଟି କଠିନ, ଧୂସର, ଆୟତାକାର, ଉଚ୍ଚତା ବିଶିଷ୍ଟ କହିବା ସମୟରେ ଯେଉଁ ଗୁଣମାନଙ୍କର ବର୍ଣ୍ଣନା ଦିଆଯାଉଛି ସେସବୁ ଗୁଣ ସ୍ୱରୂପରେ ସାମାନ୍ୟ । କଠିନ ଏକ ଗୁଣ ଓ ଏହି ଗୁଣଟି ବିଭିନ୍ନ ବସ୍ତୁମାନଙ୍କ ପାଖରେ ରହିପାରିବ । ଯେକୌଣସି ଏକ କଠିନ ବସ୍ତୁର ଗୁଣ ହେଉଛି କଠିନତ୍ୱ । ସୁତରାଂ କଠିନତ୍ୱ ଏକ ସାର୍ବିକ ଲକ୍ଷଣ । ସେହିପରି ଧୂସରତ୍ୱ, ଆକାରତ୍ୱ ମଧ୍ୟ ଏକ ଏକ ଗୁଣ ଯାହା ସାର୍ବିକ ଭାବରେ ବିଭିନ୍ନ ବସ୍ତୁରେ ସାଧାରଣ ଭାବରେ ରହିପାରିବ । ପ୍ରତ୍ୟେକ ଗୁଣ ଏକକ ବସ୍ତୁ ଭିତରେ ରହୁ କିମ୍ବା ବହୁ ବସ୍ତୁ ଭିତରେ ରହୁ ତାହା ସାମାନ୍ୟ ବା ସାର୍ବିକ । ଅପର ପକ୍ଷରେ ଆଲମିରା ତାର ଗୁଣ ବ୍ୟତୀତ ସଂପୂର୍ଣ୍ଣ ବିଶେଷ ହୋଇଥାଏ । ଏହାର ଗୁଣମାନଙ୍କୁ ଏହାଠାରୁ ବିଚ୍ଛିନ୍ନ କରିଦେଲେ ଏହାର ଆଉ କୌଣସି ସାମଂଜସ୍ୟ ଅନ୍ୟ ଆଲମିରା ବା ବସ୍ତୁସହିତ ରହେ ନାହିଁ । ଗୁଣମାନ ସାର୍ବିକ ହୋଇଥିବାରୁ ବସ୍ତୁରୁ ଗୁଣମାନଙ୍କୁ ପୃଥକ୍ କରିଦେବାରୁ ବସ୍ତୁ ସଂପୂର୍ଣ୍ଣ ବିଶେଷ ହୋଇଥାଏ । ବସ୍ତୁ ଓ ଗୁଣ ପରସ୍ପରଠାରୁ ପୃଥକ୍ ହୋଇଗଲେ କେହି ସାର୍ବିକ ହୋଇପାରିବ ନାହିଁ । ବସ୍ତୁ ଓ ଗୁଣ ପରସ୍ପର ଉପରେ ନିର୍ଭରଶୀଳ ଓ ଏକକୁ

ବାଦ୍ ଦେଇ ଅନ୍ୟର ସ୍ଥିତି ରହିବା ସମ୍ଭବ ନୁହେଁ । ସେହିପରି ସାମାନ୍ୟ ବା ସାର୍ବିକ ଓ ବିଶେଷ ମଧ୍ୟ ପରସ୍ପର ସହ ସଂପର୍କିତ । ପଦାର୍ଥ ବି ଉଭୟର ସମନ୍ୱୟ । ପଦାର୍ଥ ପାଖରେ ସାର୍ବିକ ଓ ବିଶେଷ ଉଭୟ ରହିବା ଯଥାର୍ଥ । ଯାହା ପଦାର୍ଥ ତାହା ଏକ ବିଶେଷ ଯାହା ସହିତ ସାର୍ବିକ ଗୁଣମାନ ଅନ୍ତର୍ନିହିତ ।

ଆରିଷ୍ଟୋଟଲ ଓ ପ୍ଲେଟୋଙ୍କ ଭିତରେ ଏଠାରେ ସହମତି ରହିଛି ଯେ ଉଭୟ ସାର୍ବିକର ବାସ୍ତବତା ବା ସତ୍‌କୁ ସ୍ୱୀକାର କରୁଛନ୍ତି କିନ୍ତୁ ପ୍ଲେଟୋ ସାର୍ବିକକୁ ତାଙ୍କ ଭାଷାରେ ଶୁଦ୍ଧସତ୍ତା ବା Idea ଭାବରେ ନେଇ ସ୍ୱତନ୍ତ୍ର ସ୍ଥିତି ପ୍ରଦାନ କରିଛନ୍ତି । ଆରିଷ୍ଟୋଟଲ ସାର୍ବିକ ଦ୍ରବ୍ୟ ନୁହଁ କହିବା ବେଳେ ଏହା ବୁଝୁଛନ୍ତି ଯେ ସାର୍ବିକର ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ । ଯାହାର ସ୍ଥିତି ବା ଅସ୍ତିତ୍ୱ ରହିଛି ତାହା ହେଉଛି ବ୍ୟକ୍ତି ବିଶେଷ ଅର୍ଥାତ୍ ଯେଉଁଠି ବିଶେଷ ଓ ସାର୍ବିକର ସମନ୍ୱୟ ହୋଇଛି । ବସ୍ତୁ ସହିତ ଗୁଣ ସଂଯୁକ୍ତ ହୋଇରହିଛି । ଗୁଣମାନ ସାର୍ବିକତାର ସଙ୍କେତ ବହନ କରୁଥିବା ବେଳେ ବ୍ୟକ୍ତିସତ୍ତା ବିଶେଷ ଭାବେ ରହିଛି । ଗୁଣମାନ ସାର୍ବିକ ଭାବରେ ରହିଛନ୍ତି, କିନ୍ତୁ ସାର୍ବିକର ସ୍ୱତନ୍ତ୍ର ସ୍ଥିତି ନାହିଁ । ଏହା ବିଶେଷ ପାଖରେ ରହିଥାଏ । ମୋଟ ଉପରେ କହିଲେ ବସ୍ତୁ ବା ଦ୍ରବ୍ୟ ହେଉଛି ବିଶେଷ ଓ ସାର୍ବିକର ସମନ୍ୱୟ । ସାର୍ବିକତା ଗୁଣରେ ନିହିତ, କିନ୍ତୁ ସାର୍ବିକର ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ ।

### (ଖ) କାର୍ଯ୍ୟକାରଣ ସିଦ୍ଧାନ୍ତ

ଆରିଷ୍ଟୋଟଲଙ୍କ ତତ୍ତ୍ୱମୀମାଂସା କ୍ଷେତ୍ରରେ କାର୍ଯ୍ୟକାରଣ ସିଦ୍ଧାନ୍ତ (doctrine of causation) ଏକ ପ୍ରମୁଖ ଭାବନା । ଏହି ଭାବନାକୁ ଆଧାର କରି ତାଙ୍କର ଅନ୍ୟ କେତେକ ସିଦ୍ଧାନ୍ତ ବିକଶିତ ହୋଇଛି । ଆରିଷ୍ଟୋଟଲଙ୍କର ଏହି ସିଦ୍ଧାନ୍ତ କ୍ଷେତ୍ରରେ ତାଙ୍କ ବିଚାରର ମୌଳିକତା ପରିଲକ୍ଷିତ ହୁଏ । ଆଧୁନିକ କାଳର କାର୍ଯ୍ୟକାରଣ ସିଦ୍ଧାନ୍ତଠାରୁ ଆରିଷ୍ଟୋଟଲଙ୍କର ବିଚାର ଭିନ୍ନ । ଆଧୁନିକ କାଳରେ କାରଣ ସମ୍ବନ୍ଧରେ କୁହାଯାଏ ଯେ ଏହା ହେଉଛି କୌଣସି କାର୍ଯ୍ୟର ଅବ୍ୟବହିତ, ଅସର୍ତ୍ତକ ଓ ଅପରିବର୍ତ୍ତନୀୟ ପୂର୍ବବର୍ତ୍ତୀ ଘଟଣା । ପୁନଶ୍ଚ କାର୍ଯ୍ୟ ଓ କାରଣ ଭିତରେ ପରିମାଣାତ୍ମକ ସମାନତା ଥିବା ଦର୍ଶାଯାଏ । ଆଧୁନିକ ସମୟର ଏହି କାର୍ଯ୍ୟକାରଣ ସିଦ୍ଧାନ୍ତ ଏକ ବିଜ୍ଞାନଭିତ୍ତିକ ମତ ବୋଲି ଗ୍ରହଣ କରାଯାଏ । ତେବେ ଆରିଷ୍ଟୋଟଲଙ୍କ ସିଦ୍ଧାନ୍ତ ଏହାଠାରୁ ଭିନ୍ନ । ସେ କାରଣକୁ ଏକ ବୃହତ୍ତର ଅର୍ଥରେ ପ୍ରୟୋଗ କରିଥିବା ଜଣାଯାଏ । ପୁନଶ୍ଚ ଆରିଷ୍ଟୋଟଲଙ୍କ ବିଚାର ପରିପ୍ରେକ୍ଷୀରେ କାରଣ (cause) ଓ ହେତୁ (reason) ମଧ୍ୟରେ ପାର୍ଥକ୍ୟ କରାଯାଏ । କୌଣସି ବିଷୟର କାରଣ ସେହି ବିଷୟରେ ତର୍କବୁଦ୍ଧୀୟ ବ୍ୟାଖ୍ୟାନ ଦିଏ ନାହିଁ । କୌଣସି ବିଷୟର ହେତୁ ବା ତର୍କ ସମ୍ମତ ବ୍ୟାଖ୍ୟାନ ନ ଦେବାଦ୍ୱାରା ତାହା ଯଥାର୍ଥରେ ବ୍ୟାଖ୍ୟା ହୋଇପାରେ ନାହିଁ । କାରଣଦ୍ୱାରା ଏକ ଘଟଣା କେଉଁ ପ୍ରକ୍ରିୟା ବା ଘଟଣାରୁ ଉତ୍ପନ୍ନ ହୁଏ ତାହା ଜଣାପଡେ । ତାଙ୍କ ମୃତ୍ୟୁର କାରଣ ଦୁର୍ଘଟଣା ଯୋଗୁ, ବାର୍ଦ୍ଧକ୍ୟ ହେତୁ ବା ଏକ ରୋଗ ଯୋଗୁ ହୋଇପାରେ । ଏଠାରେ ମୃତ୍ୟୁର ସମ୍ଭାବ୍ୟ କାରଣ ନେଇ କୁହାଯାଇଛି । କିନ୍ତୁ ମୃତ୍ୟୁ କାହିଁକି ଘଟେ କିମ୍ବା ମୃତ୍ୟୁ କାହିଁକି ରହିଛି ଏହାଦ୍ୱାରା ବ୍ୟାଖ୍ୟା ହୋଇପାରେ ନାହିଁ ।ତେବେ ଏହି ଦୃଷ୍ଟିରୁ କାରଣ ଓ ହେତୁ ମଧ୍ୟରେ ପାର୍ଥକ୍ୟ କରାଯାଏ । କିନ୍ତୁ ଆରିଷ୍ଟୋଟଲ ଯେଉଁ ଦିଗରୁ କାର୍ଯ୍ୟ-କାରଣ ସିଦ୍ଧାନ୍ତର ଅବତାରଣା କରିଛନ୍ତି ସେଥିରେ କାରଣ ଓ ହେତୁ ଉଭୟର ସୂଚନା ମିଳିଥାଏ । କୌଣସି

ବସ୍ତୁର ସ୍ଥିତି ସଂପର୍କରେ ହେଉ ବା କୌଣସି ଘଟଣାର ଉତ୍ପତ୍ତି ସମ୍ବନ୍ଧରେ ହେଉ ଆରିଷ୍ଟୋଟଲଙ୍କ ବ୍ୟାଖ୍ୟାନ କ୍ଷେତ୍ରରେ ଉଭୟ କାରଣ ଓ ହେତୁର ସୂଚନା ମିଳେ । ଏହି ଦୃଷ୍ଟିରୁ ଆରିଷ୍ଟୋଟଲଙ୍କ ବିଚାର କାରଣ ସମ୍ବନ୍ଧରେ ଏକ ବ୍ୟାପକ ସୂଚନା ଦେଇଥାଏ ।

ଆରିଷ୍ଟୋଟଲ କାରଣକୁ ବ୍ୟାପକ ଅର୍ଥରେ ପ୍ରୟୋଗ କରିଛନ୍ତି । ସେ ଚାରୋଟି ପ୍ରକାରର କାରଣର ବିଚାର ଦେଇଛନ୍ତି । ସେଗୁଡିକ ହେଲା- (୧) ଉପାଦାନ କାରଣ (୨) ନିମିତ୍ତ କାରଣ (୩) ଆକାରିକ କାରଣ (୪) ପ୍ରୟୋଜନ କିମ୍ବା ଉଦ୍ଦେଶ୍ୟ କାରଣ । ଏଗୁଡିକ ପରସ୍ପରର ବିକଳ୍ପ ନୁହନ୍ତି । ଅର୍ଥାତ୍ କୌଣସି ବିଷୟକୁ ବ୍ୟାଖ୍ୟା କରିବାକୁ ଏଥରୁ ଏକ ବା ଅନ୍ୟ କାରଣକୁ ନେବାକୁ ହେବ, କିମ୍ବା ଏକାଧିକ କାରଣକୁ ନେବାକୁ ହେବ ସେପରି ନୁହେଁ । ପରନ୍ତୁ କୌଣସି ବସ୍ତୁର ସ୍ଥିତି ବା ଉତ୍ପତ୍ତି ପାଇଁ ଏହି ଚାରୋଟି କାରଣକୁ ଏକତ୍ର ନେବାକୁ ପଡିବ । ମାନବିକ ପ୍ରୟାସରେ ଉତ୍ପନ୍ନ କରାଯାଉଥିବା କୌଣସି ବସ୍ତୁ ହେଉ କିମ୍ବା ପ୍ରକୃତିଦ୍ୱାରା ସୃଷ୍ଟ ହେଉଥିବା କୌଣସି ବସ୍ତୁ ହେଉ ପ୍ରତ୍ୟେକ କ୍ଷେତ୍ରରେ ଏହି ଚାରୋଟି ଯାକ କାରଣକୁ ନେଇ ତାହାକୁ ବ୍ୟାଖ୍ୟା କରାଯାଇ ପାରିବ । ବିଶେଷକରି ମନୁଷ୍ୟଦ୍ୱାରା କରାଯାଉଥିବା କିଛି ନିର୍ମାଣ ଓ ପ୍ରସ୍ତୁତି କ୍ଷେତ୍ରରେ ଏହି ଚାରୋଟି ଯାକ କାରଣର ଆବଶ୍ୟକତା ପଡେ । ଉଦାହରଣ ସାହାଯ୍ୟରେ ଏହାକୁ ବୁଝାଯାଇ ପାରିବ । ଗୋଟିଏ ଗୃହନିର୍ମାଣ କ୍ଷେତ୍ରରେ କ'ଣ ଆବଶ୍ୟକ ହୁଏ ? ଗୃହ ନିର୍ମାଣ ପାଇଁ ଆବଶ୍ୟକ ହୁଏ ବାଲି, ଇଟା, ସିମେଣ୍ଟ ଇତ୍ୟାଦି । ତେଣୁ ଗୃହର ଏସବୁ ହେଲେ ଉପାଦାନ କାରଣ । ଯେ ଏହି ଉପାଦାନ ସାହାଯ୍ୟରେ ଗୃହଟି କରିବେ ଯଥା ମିସ୍ତ୍ରୀ ବା ସ୍ଥପତି ସେ ହେଲେ ଗୃହର ନିମିତ୍ତ କାରଣ । ଉପାଦାନ କାରଣକୁ ବିନିଯୋଗ କରି ମିସ୍ତ୍ରୀ ଘରକୁ ଯେଉଁ ରୂପରେଖ ଦେଲେ ତାହା ହେଲା ଗୃହର ଆକାରିକ କାରଣ । ଉପାଦାନ ମାଧ୍ୟମରେ ଏହାକୁ ଯେଉଁ ଆକାର ଦିଆଗଲା, ତାହା ହେଲା ଆକାରିକ କାରଣ । ଯେଉଁ ଲକ୍ଷ୍ୟ ବା ଉଦ୍ଦେଶ୍ୟ ରଖି ଗୃହଟିର ନିର୍ମାଣ କରାଗଲା ତାହା ହେଲା ପ୍ରୟୋଜନ ବା ଉଦ୍ଦେଶ୍ୟ କାରଣ । ଯାହା ମାନବିକ ପ୍ରୟାସରେ ନିର୍ମାଣ ବା ପ୍ରସ୍ତୁତ କରାଯାଏ ତାହା କ୍ଷେତ୍ରରେ ଏହି ଚାରୋଟିଯାକ କାରଣର ବିନିଯୋଗ ହୋଇଥାଏ । ଉପାଦାନ କାରଣ ହେଉଛି ଉପାଦାନ, ବସ୍ତୁ, କଞ୍ଚାମାଲ ଯାହା ସାହାଯ୍ୟରେ କିଛି ନିର୍ମିତ ହେବ । ନିମିତ୍ତ କାରଣ ହେଉଛି ଚଳମାନ ଶକ୍ତି, ଗତି ବା କ୍ରିୟା ଯାହା ସାହାଯ୍ୟରେ କିଛି କାର୍ଯ୍ୟକାରୀ ହୋଇଥାଏ । ଉପାଦାନରେ ଯିଏ ପରିବର୍ତ୍ତନ ସୃଷ୍ଟି କରେ, ଉପାଦାନକୁ ଗତିଶୀଳ ବା କାର୍ଯ୍ୟକାରୀ କରାଇବାରେ ଯିଏ ଭୂମିକା ନେଇଥାଏ କିମ୍ବା ଯାହା ଯୋଗୁ ଉପାଦାନରେ ପରିବର୍ତ୍ତନ ଆସେ, ସେ ହେଲେ ନିମିତ୍ତ କାରଣ । ଆକାରିକ କାରଣର ତାତ୍ପର୍ଯ୍ୟ ହେଉଛି ଏକ ବସ୍ତୁ ବା ଉପାଦାନ ଯେଉଁ ଆକାର ବା ରୂପରେଖ ନେଇଥାଏ, ଏହା ଗୋଟିଏ ସ୍ଥିତିରୁ ଯେତେବେଳେ ଅନ୍ୟ ସ୍ଥିତିକୁ ଆସେ, ଏହାକୁ ସୁନିର୍ଦ୍ଦିଷ୍ଟ ରୂପରେଖ ଦିଆଯାଏ ବା ଏହାର ଫର୍ମରେ ପରିବର୍ତ୍ତନ ସୃଷ୍ଟି କରାଯାଏ । କୌଣସି ବସ୍ତୁକୁ ବା ଉପାଦାନକୁ ଯେତେବେଳେ ନିର୍ଦ୍ଦିଷ୍ଟ ଆକାର ବା ଫର୍ମ ପ୍ରଦାନ କରାଯାଏ ତାହାକୁ ଆକାରିକ (formal) କାରଣ କୁହାଯାଏ । ଯେଉଁ ଲକ୍ଷ୍ୟ, ଉଦ୍ଦେଶ୍ୟ କିମ୍ବା ପ୍ରୟୋଜନ ପାଇଁ କିଛି କରାଯାଏ ତାହାକୁ ପ୍ରୟୋଜନ କାରଣ ବା ଉଦ୍ଦେଶ୍ୟ (final) କାରଣ କୁହାଯାଏ ।

ଅନ୍ୟ ଏକ ଉଦାହରଣ ଦେଇ ଏହାକୁ ସ୍ପଷ୍ଟ କରାଯାଇପାରେ । ଜଣେ କୁମ୍ଭକାର ମାଟିକୁ ବିନିଯୋଗ କରି ଏକ କଳସୀ ନିର୍ମାଣ କଲେ, ବା ଜଣେ ସୁନାରୀ ସୁନା ମାଧ୍ୟମରେ ହାରଟିଏ ପ୍ରସ୍ତୁତ କଲେ । ଏଠାରେ ମାଟି, ସୁନା ହେଉଛି ଉପାଦାନ କାରଣ । ଯେ ନିର୍ମାଣକର୍ତ୍ତା, ସେ ହେଲେ ନିମିତ୍ତ କାରଣ । କୁମ୍ଭକାର କଳସୀର ଓ ସୁନାରୀ ହାରର ହେଉଛନ୍ତି ନିମିତ୍ତ କାରଣ । ମାଟି ଯେତେବେଳେ କଳସୀର ଆକାର ନେଲା ବା ସୁନା ଯେତେବେଳେ ହାରର ରୂପରେଖ ନେଲା, ସେସବୁ ହେଲା ଆକାରିକ କାରଣ । ମାଟି କଳସୀରେ ରୂପାନ୍ତରିତ ହେବା ବା ସୁନା ହାରର ଆକାରକୁ ଆସିବାହେଲା ଆକାରିକ କାରଣ । ତେବେ ଯେଉଁ ଲକ୍ଷ୍ୟ ବା ଉଦ୍ଦେଶ୍ୟ ନେଇ ଏହା କରାଗଲା ତାହା ହେଲା ପ୍ରୟୋଜନ କାରଣ । ସୁତରାଂ ଏଠାରେ ଚାରିଟି ଯାକ କାରଣର ପ୍ରୟୋଗ ହୋଇପାରୁଛି ।

ଆଧୁନିକ ସମୟରେ ବିଜ୍ଞାନର ବିକାଶ ପରିଣାମରୁ କାର୍ଯ୍ୟକାରଣ ସିଦ୍ଧାନ୍ତ ବିଜ୍ଞାନ ଓ ଦର୍ଶନ ପରିସରରେ ଆଲୋଚ୍ୟ ପ୍ରସଙ୍ଗ ହୋଇଛି । କୌଣସି ଘଟଣାର ବୈଜ୍ଞାନିକ କାରଣ ବାହାର କରିବା ବିଜ୍ଞାନର ଏକ ମୁଖ୍ୟ ଆଭିମୁଖ୍ୟ । ଫଳତଃ କାରଣସିଦ୍ଧାନ୍ତ ବୈଜ୍ଞାନିକ ବ୍ୟାଖ୍ୟାନ ପୃଷ୍ଠଭୂମିରେ ଦର୍ଶନ ପରିସରରେ ଆଲୋଚ୍ୟ ପ୍ରସଙ୍ଗ । କାରଣର ବୈଜ୍ଞାନିକ ସଂଜ୍ଞା ପୃଷ୍ଠଭୂମିରେ କୁହାଯାଏ ଯେ କାରଣ ହେଉଛି କାର୍ଯ୍ୟର ଅବ୍ୟବହିତ, ଅସର୍ତ୍ତକ, ଅପରିବର୍ତ୍ତନୀୟ ପୂର୍ବବର୍ତ୍ତୀ ଘଟଣା ଓ ପରିମାଣ ଦୃଷ୍ଟିରୁ କାର୍ଯ୍ୟ ଓ କାରଣ ସମାନ ।

ଆରିଷ୍ଟୋଟଲଙ୍କ ମତ ସହ ଆଧୁନିକ ମତର ତୁଳନା କରିବା ସମୟରେ ଅନେକ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ । ଆଧୁନିକ ମତରେ କାରଣକୁ ସର୍ବଦା କାର୍ଯ୍ୟର ପୂର୍ବବର୍ତ୍ତୀ ଘଟଣା ଭାବେ ନିଆଯାଏ, ସୁତରାଂ ପ୍ରୟୋଜନ କାରଣର ଏଠାରେ କୌଣସି ଭୂମିକା ରହେ ନାହିଁ । କାରଣ ପ୍ରୟୋଜନ କାରଣ ହେଉଛି ଯାହା ଶେଷରେ ଆସିଥାଏ । ସେହିପରି ଆକାରିକ କାରଣର ମଧ୍ୟ ଆଧୁନିକ ଭାବନାରେ ପ୍ରାଧାନ୍ୟ ନଥାଏ । ଆକାରିକ କାରଣକୁ ଆମେ ଏକ ଭାବନା ବା ଫର୍ମ ଭାବରେ ପରିକଳ୍ପନା କରିଥାଏ, ତେଣୁ ଆଧୁନିକ ମତରେ ଏହାର ପ୍ରାଧାନ୍ୟ ନଥାଏ । ଏକ ବସ୍ତୁର ପରିକଳ୍ପନା କାରଣର ଅଂଶ ବିଶେଷ ନୁହେଁ । ସୁତରାଂ ପ୍ରୟୋଜନ କାରଣ ଓ ଆକାରିକ କାରଣର ଭୂମିକା ଆଧୁନିକ କାର୍ଯ୍ୟ-କାରଣ ସିଦ୍ଧାନ୍ତରେ ସ୍ଥାନ ପାଇନଥାଏ । ବସ୍ତୁତଃ ଆମେ ଏଠାରେ ଦୁଇଟି କାରଣ ଯଥା ଉପାଦାନ କାରଣ ଓ ନିମିତ୍ତ କାରଣ ସହିତ ଆଧୁନିକ ମତର ସାମଂଜସ୍ୟ ରହିବା କହିପାରିବା । ଆଧୁନିକ ପରିକଳ୍ପନାରେ ବସ୍ତୁ ଓ ଶକ୍ତିର ଯେଉଁ ମୂଲ୍ୟ ରହିଛି ତାହା ସହ ଉପାଦାନ ଓ ନିମିତ୍ତ କାରଣର ସାମାନ୍ୟ ସାମଂଜସ୍ୟ ଥିବା ମନେହୁଏ । ଏପରିକି ଆରିଷ୍ଟୋଟଲଙ୍କ ବିଚାରରେ ଯାହାକୁ ନିମିତ୍ତ କାରଣ କୁହାଯାଉଛି ତାହାକୁ ମଧ୍ୟ ଆଧୁନିକ କାର୍ଯ୍ୟକାରଣ ସିଦ୍ଧାନ୍ତରୁ ବହିଷ୍କରଣ କରାଯାଇପାରେ । ନିମିତ୍ତ କାରଣକୁ ସାଧାରଣତଃ ଗତି ବା ଶକ୍ତି ଭାବରେ ନିଆଯାଏ ଯାହା ସାହାଯ୍ୟରେ ବସ୍ତୁ ବା ଉପାଦାନରେ ପରିବର୍ତ୍ତନ ସୃଷ୍ଟି କରାଯାଏ । ଆଧୁନିକ ସିଦ୍ଧାନ୍ତରେ ଶକ୍ତିକୁ କେବଳ ଯାନ୍ତ୍ରିକ ଶକ୍ତି ଭାବରେ ନିଆଯାଏ । ଆରିଷ୍ଟୋଟଲଙ୍କ ମତରେ ଶକ୍ତି କେବଳ ଯାନ୍ତ୍ରିକ ଶକ୍ତି ନୁହେଁ କିମ୍ବା ଏହା ପ୍ରଥମରୁ କାର୍ଯ୍ୟ କରିନଥାଏ, ବରଂ ଲକ୍ଷ୍ୟ ଦିଗରୁ କାର୍ଯ୍ୟ କରିଥାଏ ।

ଆଧୁନିକ ବିଜ୍ଞାନ ପୃଷ୍ଠଭୂମିରେ ଆକାରିକ କାରଣ ଓ ପ୍ରୟୋଜନ କାରଣର ସେପରି ଗୁରୁତ୍ୱପୂର୍ଣ୍ଣ ଭୂମିକା ନ ଥାଏ । ସେସବୁ ବୈଜ୍ଞାନିକ ଅନୁଶୀଳନର ବହିର୍ଭୂତ ପ୍ରସଙ୍ଗ । ବିଜ୍ଞାନର ଦିଗନ୍ତ ବିସ୍ତାରିତ ହେବା ସହ ବିଜ୍ଞାନ ଯାନ୍ତ୍ରିକ କାରଣକୁ ପ୍ରାଧାନ୍ୟ ଦେଇଆସିଛି । ଆକାରିକ କାରଣ ଓ ପ୍ରୟୋଜନ କାରଣ ବିଜ୍ଞାନର ପରିସରରେ ଆଲୋଚ୍ୟ ପ୍ରସଙ୍ଗ ନୁହେଁ, ସେସବୁ ବିଷୟରେ ଏଣୁ ବିଜ୍ଞାନର ଚର୍ଚ୍ଚା କରିବାର ଆବଶ୍ୟକତା ନାହିଁ । ଜଗତରେ କେଉଁ ବସ୍ତୁ ରହିଛି ବା କାହିଁକି ରହିଛି ତାହା ବିଜ୍ଞାନ ସ୍ତରର ବିଷୟ ନୁହଁ । ଯାହା ସବୁ ରହିଛି ବିଜ୍ଞାନ ତାକୁ ସ୍ୱୀକାର କରିନିଏ ଓ ଏହାର ଅନ୍ୟ ବସ୍ତୁ ସହ ସମ୍ବନ୍ଧ ଓ ଏହାର ଉତ୍ପତ୍ତିର ଇତିହାସ ବିଷୟରେ ଅନୁଶୀଳନ କରିଥାଏ । ତେଣୁ ବିଜ୍ଞାନ ପରିସରରେ ଆକାରିକ କାରଣର ପ୍ରଶ୍ନ ଉଠିନଥାଏ । ବିଜ୍ଞାନ ଜଗତର ପ୍ରକ୍ରିୟାକୁ ପ୍ରାକୃତିକ ଓ ଯାନ୍ତ୍ରିକ ଧାରାରେ ଅନୁଶୀଳନ କରିଥାଏ । ଆରିଷ୍ଟୋଟଲ ଜଣେ ଦାର୍ଶନିକ ଭାବରେ ପ୍ରୟୋଜନବାଦର ପ୍ରସଙ୍ଗ ଆଣିଛନ୍ତି ଓ କାର୍ଯ୍ୟକାରଣ ସିଦ୍ଧାନ୍ତକୁ ଚର୍ଚ୍ଚା କଲା ବେଳେ ଆକାରିକ କାରଣ ଓ ପ୍ରୟୋଜନ କାରଣ ବିଷୟରେ ଗଭୀର ବ୍ୟାଖ୍ୟା ଦେଇଛନ୍ତି ।

ମୋଟ ଉପରେ କହିଲେ ଆରିଷ୍ଟୋଟଲ ଯେଉଁ ଚାରିଟି କାରଣର ପରିକଳ୍ପନା କରିଛନ୍ତି, ସେମାନଙ୍କର ବିଶ୍ଳେଷଣ କରି ସେମାନଙ୍କୁ ଦୁଇଟି କାରଣରେ ପରିବର୍ତ୍ତନ ବା ରୂପାନ୍ତର କରିଛନ୍ତି । ନିମିତ୍ତ କାରଣ ଓ ପ୍ରୟୋଜନ କାରଣକୁ ସେ ଆକାରିକ କାରଣରେ ରୂପାନ୍ତର କରିଛନ୍ତି । ଆକାରିକ କାରଣ ଓ ପ୍ରୟୋଜନ କାରଣ ସ୍ୱରୂପରେ ସମାନ । ଆକାରଗତ କାରଣର ତାତ୍ପର୍ଯ୍ୟ ହେଉଛି ଏକ ଧାରଣା, ପ୍ରତ୍ୟୟ ବା ଆଇଡିଆ ଯାହା ଆଧାରରେ ଉପାଦାନକୁ ଆକାର ବା ରୂପ ଦିଆଯାଇ ପାରିବ । ପ୍ରୟୋଜନ କାରଣ ହେଉଛି ଏହି ଲକ୍ଷ୍ୟ ବା ଆଭିମୁଖ୍ୟକୁ ବାସ୍ତବତାରେ ପରିବର୍ତ୍ତନ କରିବା । ଆକାରିକ କାରଣ କ୍ଷେତ୍ରରେ ଯେଉଁ ଲକ୍ଷ୍ୟ ଓ ପ୍ରତ୍ୟୟ ପୋଷଣ କରାଯାଏ ତାହାକୁ ପ୍ରୟୋଜନ କାରଣ ମାଧ୍ୟମରେ କେବଳ ପୂରଣ କରାଯାଏ । ଏଣୁ ଆରିଷ୍ଟୋଟଲ ପ୍ରୟୋଜନ କାରଣକୁ ଆକାରିକ କାରଣ ସହ ସମାନ କରିଛନ୍ତି । ସେହିପରି ନିମିତ୍ତ କାରଣ ମଧ୍ୟ ପ୍ରୟୋଜନ କାରଣ ସହ ସମାନ । ନିମିତ୍ତ କାରଣ ହେଉଛି ଯାହା ପରିବର୍ତ୍ତନ ସୃଷ୍ଟି କରେ । ଏକ ସୁନାର ହାର ନିର୍ମାଣ କରିବାରେ ସୁନାରୀ ହେଉଛନ୍ତି ନିମିତ୍ତ କାରଣ । ସେ ସୁନାରେ ପରିବର୍ତ୍ତନ ସୃଷ୍ଟିକରି ଏହାକୁ ନୂତନ ରୂପ ଦିଅନ୍ତି । ପ୍ରୟୋଜନ କାରଣ ହେଉଛି ଏହି ପରିବର୍ତ୍ତନ ଆଣିବାର ଅଭିଳାଷ ବା ଲକ୍ଷ୍ୟ । ଯେଉଁ ଲକ୍ଷ୍ୟ ପୂରଣ ପାଇଁ ପ୍ରୟାସ କରାଯାଏ, ସେହି ଲକ୍ଷ୍ୟ ଦିଗରେ ନିମିତ୍ତ କାରଣ ହିଁ କାର୍ଯ୍ୟ କରିଥାଏ । ସୁତରାଂ ନିମିତ୍ତ କାରଣ ଓ ପ୍ରୟୋଜନ କାରଣ ଭିତରେ ପାର୍ଥକ୍ୟ ରହେ ନାହିଁ । ଅର୍ଥାତ୍ ନିମିତ୍ତ କାରଣ ଲକ୍ଷ୍ୟ ପୂରଣ ଦିଗରେ କାର୍ଯ୍ୟକରେ ଓ ପ୍ରୟୋଜନ କାରଣ ଏହି ଲକ୍ଷ୍ୟ ବା ପରିବର୍ତ୍ତନର ସୂଚନା ଦିଏ । ଏଣୁ ଯାହାକୁ ପ୍ରୟୋଜନ କାରଣ କୁହାଯାଉଛି ତାହା ପ୍ରକୃତରେ ହେଉଛି ନିମିତ୍ତ କାରଣ । ମାନବିକ କାର୍ଯ୍ୟ କ୍ଷେତ୍ରରେ ହେଉ କିମ୍ବା ପ୍ରାକୃତିକ କାର୍ଯ୍ୟ କ୍ଷେତ୍ରରେ ହେଉ ଏକ ନିମିତ୍ତ କାରଣ ଏକ ଲକ୍ଷ୍ୟ ଦିଗରେ ପରିଚାଳିତ ହୋଇଥାଏ । କାରଣ କଳସୀ ନିର୍ମାଣ କ୍ଷେତ୍ରରେ କୁମ୍ଭକାର ହେଉଛନ୍ତି ନିମିତ୍ତ କାରଣ । ସେ ସଚେତନ ଭାବରେ ଏକ ଲକ୍ଷ୍ୟ ହାସଲ ପାଇଁ ମାଟିରେ ପରିବର୍ତ୍ତନ ଆଣିବାକୁ ପ୍ରୟାସ କରନ୍ତି । କିନ୍ତୁ କୁମ୍ଭକାର ମାଟିରୁ କଳସୀ

ନିର୍ମାଣ ପାଇଁ କେଉଁ ଭାବନା ଦ୍ୱାରା ପରିଚାଳିତ ହୁଅନ୍ତି ? ସେ ଭାବନା ସ୍ତରରେ ଲକ୍ଷ୍ୟ ବା ଉଦ୍ଦେଶ୍ୟକୁ ସ୍ଥିର କରନ୍ତି ଓ ସେହି ପ୍ରୟୋଜନ ହାସଲ ପାଇଁ ମାଟିରେ ପରିବର୍ତ୍ତନ ସୃଷ୍ଟି କରିବାକୁ ଅଗ୍ରସର ହୁଅନ୍ତି । କୌଣସି ମାନବୀୟ ନିର୍ମାଣ କ୍ଷେତ୍ରରେ ଯେ ନିମିତ୍ତ କାରଣ ସେ ପ୍ରୟୋଜନ କାରଣକୁ ନିଜ ଭିତରେ ସ୍ଥିର କରନ୍ତି ଓ ସେହି ଲକ୍ଷ୍ୟ ଦିଗରେ କ୍ରିୟାଶୀଳ ହୁଅନ୍ତି । ପ୍ରାକୃତିକ କାରଣ କ୍ଷେତ୍ରରେ ସେପରି କେହି ସଚେତନ ଭାବରେ ପ୍ରକୃତିକୁ ପରିଚାଳିତ କରେ ନାହିଁ । ପ୍ରାକୃତିକ ଲକ୍ଷ୍ୟ କ୍ଷେତ୍ରରେ କେହି କିଛି ଉଦ୍ଦେଶ୍ୟ ପୋଷଣ କରେ ନାହିଁ । କିନ୍ତୁ ପ୍ରାକୃତିକ ଘଟଣା ଲକ୍ଷ୍ୟ ଦିଗରେ ପରିଚାଳିତ ହୁଏ, ଯେଉଁଥି ପାଇଁ ପ୍ରକୃତିରେ ପରିବର୍ତ୍ତନ ଆସେ । ଯେ କୌଣସି ପ୍ରାକୃତିକ କାର୍ଯ୍ୟ ଏକ ଲକ୍ଷ୍ୟ ଦିଗରେ ପରିଚାଳିତ ହୁଏ ଯଦିବା ସଚେତନ ଭାବରେ କେହି ଏହାକୁ ପୋଷଣ କରନ୍ତି ନାହିଁ । ଆରିଷ୍ଟୋଟଲ ଏଣୁ ପ୍ରୟୋଜନ କାରଣ ଓ ନିମିତ୍ତ କାରଣକୁ ସମାନ କରି ଉଭୟକୁ ଆକାରିକ କାରଣରେ ରୂପାନ୍ତରିତ କରିଛନ୍ତି । କୌଣସି ବସ୍ତୁରେ ପରିବର୍ତ୍ତନ ସଂଘଟିତ କରାଇ ତାକୁ ଯେଉଁଥିରେ ରୂପାନ୍ତରିତ କରାଯିବ ତାହା ହେଉଛି ଏହାର ଆକାର । ମୋଟ ଉପରେ ପ୍ରୟୋଜନ କାରଣ, ନିମିତ୍ତ କାରଣ ଓ ଆକାରିକ କାରଣ ଶେଷରେ ଆକାରିକ କାରଣରେ ହିଁ ସମ୍ମିଳିତ ହୋଇଯାନ୍ତି । ବସ୍ତୁତଃ ଦୁଇଟି କାରଣକୁ ଆରିଷ୍ଟୋଟଲ ମୌଳିକ ବୋଲି ଗ୍ରହଣ କରିଛନ୍ତି ଓ ସେ ଦୁଇଟି କାରଣ ହେଲେ ଉପାଦାନ ଓ ଆକାରିକ କାରଣ । ଉପାଦାନ କାରଣ ହେଉଛି ବସ୍ତୁ ଯାହା କିଛି ଆକାର ନେଇଥାଏ । ଉପାଦାନରୁ କିଛି ନିର୍ମିତ ହୁଏ ଓ ଏହି ଦୃଷ୍ଟିରୁ ସକଳ ଉପାଦାନ ହେଉଛି ବସ୍ତୁ । ବସ୍ତୁ ଓ ବସ୍ତୁରେ ଯେଉଁ ପରିବର୍ତ୍ତନ ଆଣାଯାଏ ତାହା ହେଲା ତାର ଆକାର । ସୁତରାଂ ବସ୍ତୁ ଓ ଆକାର ଆରିଷ୍ଟୋଟଲଙ୍କ ତତ୍ତ୍ୱମୀମାଂସୀୟ ଅନୁଶୀଳନ କ୍ଷେତ୍ରରେ ମୁଖ୍ୟ ପ୍ରସଙ୍ଗ ଅଟେ । ଆରିଷ୍ଟୋଟଲଙ୍କର ଏହି ଦୁଇ ମୌଳିକ ତତ୍ତ୍ୱ ଉପରେ ଏବେ ଆଲୋଚନା କରାଯିବ ।

(ଗ) ବସ୍ତୁ ଓ ଫର୍ମ (Matter and Form)

ଆରିଷ୍ଟୋଟଲଙ୍କ ଦର୍ଶନରେ ବସ୍ତୁ ଓ ଫର୍ମ ଦୁଇଟି ମୌଳିକ ତତ୍ତ୍ୱ ଯାହା ସାହାଯ୍ୟରେ ସେ ବିଶ୍ୱର ବ୍ୟାଖ୍ୟା କରିବାକୁ ପ୍ରୟାସ କରିଛନ୍ତି । କାର୍ଯ୍ୟକାରଣ ସିଦ୍ଧାନ୍ତ ଆଲୋଚନା କଲା ସମୟରେ ଆରିଷ୍ଟୋଟଲଙ୍କର ଫର୍ମାଲ କଜ୍‌କୁ ଆମେ ଆକାରିକ କାରଣ ବୋଲି ଆମ ପରିଭାଷାରେ ବ୍ୟକ୍ତ କରିଛେ । ସେହି ଦୃଷ୍ଟିରୁ ଫର୍ମକ ଆମେ ଆକାର ଭାବେ ନେଇପାରିବା । କିନ୍ତୁ ଆରିଷ୍ଟୋଟଲ ଫର୍ମକୁ ଏକ ବ୍ୟାପକ ଓ ବୈଷୟିକ ଅର୍ଥରେ ବ୍ୟବହାର କରିଛନ୍ତି, ଯାହାର ଅର୍ଥ "ଆକାର" ଶବ୍ଦରେ ସ୍ପଷ୍ଟ ହୋଇପାରିବ ନାହିଁ । ଏଣୁ ଏଠାରେ ସେହି ଫର୍ମ ଇଂରାଜୀ ଶବ୍ଦକୁ ବ୍ୟବହାର କରାଯାଇଛି ଓ ଆଲୋଚନା ପ୍ରକ୍ରିୟାରେ ତାହାର ତାତ୍ପର୍ଯ୍ୟଟି ସ୍ପଷ୍ଟ ହୋଇପାରିବ । ଆରିଷ୍ଟୋଟଲଙ୍କ ତତ୍ତ୍ୱମୀମାଂସାରେ ବସ୍ତୁ ଓ ଫର୍ମ ହେଉଛନ୍ତି ଦୁଇ ମୌଳିକ ପର୍ଯ୍ୟାୟ ବା ନିର୍ଣ୍ଣୟ (categories) ଓ ଏହି ତତ୍ତ୍ୱ ସାହାଯ୍ୟରେ ସେ ଜଗତକୁ ବ୍ୟାଖ୍ୟା କରିଛନ୍ତି ।

ବସ୍ତୁ ଓ ଫର୍ମ ପରସ୍ପରଠାରୁ ଅବିଚ୍ଛେଦ୍ୟ ଓ ସେମାନଙ୍କୁ ପୃଥକ୍ କରିହେବ ନାହିଁ । ଆମେ ସେମାନଙ୍କୁ ପୃଥକ୍ ଭାବରେ ଚିନ୍ତାକରୁ । ଆମ ଭାବନାରେ ସେମାନେ ଭିନ୍ନ, ସେମାନଙ୍କୁ ଆମେ ଦୁଇ ପୃଥକ୍ ତତ୍ତ୍ୱ ବୋଲି

ଭାବିଥାଉ; କିନ୍ତୁ ବାସ୍ତବରେ ବସ୍ତୁଠାରୁ ଫର୍ମକୁ ଆମେ ଅଲଗା କରିପାରିବା ନାହିଁ । ସେମାନେ ଦୁଇ ଭିନ୍ନ ତତ୍ତ୍ୱ ଓ ପ୍ରତ୍ୟେକଟି ଅନ୍ୟଠାରୁ ସୈଦ୍ଧାନ୍ତିକ ଭାବରେ ପୃଥକ୍ । ସେମାନେ ଚିନ୍ତାଧାରାରେ ଦୁଇ ପୃଥକ ତତ୍ତ୍ୱ, କିନ୍ତୁ ବାସ୍ତବ କ୍ଷେତ୍ରରେ ସେମାନଙ୍କ ଭିତରେ ବିଚ୍ଛେଦ କରାଯାଇ ପାରିବ ନାହିଁ । ସେମାନଙ୍କ ମଧ୍ୟରେ ବୈଚାରିକ ଭିନ୍ନତା ରହିଛି, ଏହି ଦୃଷ୍ଟିରୁ ସେମାନେ ଭିନ୍ନ । କିନ୍ତୁ ବାସ୍ତବ ପକ୍ଷେ ସେମାନେ ପରସ୍ପରଠାରୁ ଅଭିନ୍ନ । ବସ୍ତୁ ବିନା ଫର୍ମରେ ରହିପାରିବ ନାହିଁ ଓ ସେହିପରି ବସ୍ତୁ ବ୍ୟତୀତ ଫର୍ମର ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ । ଯାହା କିଛି ଜଗତରେ ଅଛି ପ୍ରତ୍ୟେକ ବିଶେଷ ଦ୍ରବ୍ୟରେ ବସ୍ତୁ ଓ ଫର୍ମ ମିଶିକରି ରହିଛନ୍ତି । ପ୍ରତ୍ୟେକ ଦ୍ରବ୍ୟରେ ବସ୍ତୁ ରହିଛି ଓ ଏକ ଫର୍ମ ରହିଛି । ଉଭୟର ମିଶ୍ରଣରୁ ହିଁ ବିଭିନ୍ନ ପଦାର୍ଥ ରହିଛନ୍ତି । ପଦାର୍ଥ ହେଉଛି ବସ୍ତୁ ଓ ଯାହାକୁ ଫର୍ମ କୁହାଯାଉଛି ତାହା ସାଧାରଣତଃ ବସ୍ତୁର ଆକାର । ପ୍ରତ୍ୟେକ ବସ୍ତୁ ବା ପଦାର୍ଥର ଆକାର ରହିଛି, ତେବେ ଆକାରକୁ ଫର୍ମ ଭାବେ ପରିକଳ୍ପନା କରାଗଲେ ବି ଆକାର (shape) ଓ ଫର୍ମ ଭିତରେ ପାର୍ଥକ୍ୟ ରହିଛି । ଜ୍ୟାମିତିରେ ଆକାରର ପରିକଳ୍ପନା କରାଯାଏ, ଯେପରିକି ଆକାର ମାନଙ୍କର ସ୍ୱତନ୍ତ୍ର ସତ୍ତା ରହିଛି । ବର୍ଗକ୍ଷେତ୍ର, ବୃତ୍ତ, ତ୍ରିଭୁଜ ବୋଲି ଆମେ ପରିକଳ୍ପନା କଲେ ମଧ୍ୟ ସେଗୁଡ଼ିକର ସ୍ୱତନ୍ତ୍ର ସ୍ଥିତି ନାହିଁ । ଏକ କ୍ଷେତ୍ର ବର୍ଗାକାର ହୋଇପାରେ, ଏକ ପଦାର୍ଥ ବୃତ୍ତାକାର ହୋଇପାରେ ବା ତ୍ରିଭୁଜାକାର ହୋଇପାରେ । କୌଣସି ଏକ ବସ୍ତୁ ଏହିପରି ଏକ ଆକାରରେ ରହିପାରେ, କିନ୍ତୁ କୌଣସି ଏକ ବସ୍ତୁକୁ ଛାଡ଼ି ଜ୍ୟାମିତିର ଏହି ଆକାରର ଅସ୍ତିତ୍ୱ ନାହିଁ । ଏଣୁ ଫର୍ମକୁ କେବଳ ଆକାର ଭାବରେ ପରିକଳ୍ପନା କରାଯାଇ ପାରିବ ନାହିଁ । ଯେପରି ଏକ ଆକାର କୌଣସି ବସ୍ତୁ ବ୍ୟତୀତ ରହିପାରିବ ନାହିଁ, ସେହିପରି କୌଣସି ବସ୍ତୁ ବିନା ଆକାରରେ ରହିପାରିବ ନାହିଁ । ତେଣୁ ପ୍ରତ୍ୟେକ ବସ୍ତୁର କିଛି ଆକାର ବା ଫର୍ମ ରହିବା ଆବଶ୍ୟକ ।

ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଯଦି ବି ବସ୍ତୁ ଓ ଫର୍ମ ପରସ୍ପରଠାରୁ ପୃଥକ୍ ନୁହନ୍ତି ଓ ଗୋଟିକୁ ଛାଡ଼ି ଅନ୍ୟର ସ୍ଥିତି ରହିବା ସମ୍ଭବ ନୁହେଁ ତେବେ ପ୍ରତ୍ୟୟଗତ ସ୍ତରରେ ସେମାନେ ପରସ୍ପରଠାରୁ ଭିନ୍ନ । ଜ୍ୟାମିତି ଅଧ୍ୟୟନ କଲା ବେଳେ ଆମେ ବିଭିନ୍ନ ଜ୍ୟାମିତିକ କ୍ଷେତ୍ର ଯଥା ତ୍ରିଭୁଜ, ଚତୁର୍ଭୁଜ, ବୃତ୍ତ ଇତ୍ୟାଦିକୁ ଅମୂର୍ତ୍ତୀୟ ସ୍ତରରେ ପରିକଳ୍ପନା କରିଥାଏ । ସେମାନଙ୍କୁ ଅମୂର୍ତ୍ତୀୟ ପ୍ରକ୍ରିୟାରେ ପରିକଳ୍ପନା କରାଗଲେ ମଧ୍ୟ କୌଣସି ବସ୍ତୁ ସେହି ଆକାରରେ ହିଁ ରହିପାରେ । କେବଳ ତ୍ରିଭୁଜ ବା ବୃତ୍ତ ବୋଲି କିଛି ନାହିଁ, କୌଣସି ଛବି ବା ବସ୍ତୁ ସେହି ଆକାର ନେଇ ରହିବା ସମ୍ଭବ । ତେବେ ଜ୍ୟାମିତି ପରିସରରେ ତ୍ରିଭୁଜ, ଚତୁର୍ଭୁଜ, ବର୍ଗକ୍ଷେତ୍ର ଇତ୍ୟାଦିକୁ ଅମୂର୍ତ୍ତୀୟ ସ୍ତରରେ ଚିନ୍ତା କଲାପରି ବସ୍ତୁ ବା ଫର୍ମକୁ ଅମୂର୍ତ୍ତୀୟ ଭାବରେ ପରିକଳ୍ପନା କରାଯାଇପାରେ । କିନ୍ତୁ ବାସ୍ତବ ପକ୍ଷେ ସେମାନଙ୍କର ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ; ଅର୍ଥାତ୍ ବିନା ଫର୍ମରେ ବସ୍ତୁ ନାହିଁ ଓ ବିନା ବସ୍ତୁରେ ଫର୍ମ ନାହିଁ । ଆରିଷ୍ଟୋଟଲ ଯାହାକୁ ଫର୍ମ କହୁଛନ୍ତି ପ୍ଲେଟୋ ତାକୁ ଆଇଡିଆ (Idea) କହୁଥିଲେ । ପ୍ଲେଟୋ ଆଇଡିଆ (ଆମେ ଓଡ଼ିଆରେ ତାକୁ ଶୁଦ୍ଧସତ୍ତା କରିଛେ) ମାନଙ୍କର ସ୍ୱତନ୍ତ୍ର ଅସ୍ତିତ୍ୱ ଥିବା ଭାବୁଥିଲେ ଓ ସେମାନଙ୍କୁ ଏକ ଭିନ୍ନ ପୃଥିବୀରେ ସ୍ଥାନିତ କରିଥିଲେ । ପ୍ଲେଟୋ ଆଇଡିଆମାନଙ୍କର ଏକ ସ୍ୱତନ୍ତ୍ର ପୃଥିବୀ ରହିଥିବା ଭାବିଥିଲେ ।

ଆରିଷ୍ଟୋଟଲ ବସ୍ତୁ ଓ ଫର୍ମ ମଧ୍ୟରେ ଯେଉଁ ପାର୍ଥକ୍ୟ ଦର୍ଶାଇଛନ୍ତି ସେଥିରୁ ଏହା ପ୍ରତୀତ ହୁଏ ଯେ ଫର୍ମ ହେଉଛି ସାମାନ୍ୟ (universal) ଓ ବସ୍ତୁ ହେଉଛି ବିଶେଷ (particular) । ଆରିଷ୍ଟୋଟଲଙ୍କର ଫର୍ମ ହେଉଛି ଆଇଡିଆ ଓ ଆଇଡିଆମାନ ହେଉଛନ୍ତି ସାମାନ୍ୟ । ସେ ଯେତେବେଳେ କହୁଛନ୍ତି ଯେ ବସ୍ତୁ ଓ ଫର୍ମ ପରସ୍ପରଠାରୁ ପୃଥକ୍ ରହିପାରିବେ ନାହିଁ ଏହାର ତାତ୍ପର୍ଯ୍ୟ ହେଉଛି ସାମାନ୍ୟ ସର୍ବଦା ବିଶେଷ ପାଖରେ ରହିବ । ବସ୍ତୁକୁ ବିଶେଷ ସହିତ ସମାନ କଲେ ବସ୍ତୁ ସହ ଯେପରି ଫର୍ମ ରହିବା ଅବଶ୍ୟମ୍ଭାବୀ, ସେହିପରି ବିଶେଷ ସହ ସାମାନ୍ୟ ରହିବା ମଧ୍ୟ ଅପରିହାର୍ଯ୍ୟ । ଏକ ବ୍ୟକ୍ତି ସତ୍ତା ଏକ ଯୌଗିକ ବିଷୟ ଯେଉଁଥିରେ ବସ୍ତୁ ଓ ଫର୍ମ ଏକତ୍ର ରହିବେ । ଅର୍ଥାତ୍ ପ୍ରତ୍ୟେକ ଏକକ ବସ୍ତୁ ମଧ୍ୟରେ ଉଭୟ ବିଶେଷ ଓ ସାମାନ୍ୟ ସମନ୍ୱିତ ଭାବେ ରହିବା ଯଥାର୍ଥ । ବସ୍ତୁ ଓ ଫର୍ମ ଅଭିନ୍ନ, କିନ୍ତୁ ବିଶେଷ ଓ ସାମାନ୍ୟ ଅଭିନ୍ନ ନୁହନ୍ତି । ତେବେ ଏକ ବିଶେଷର ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ । ଆମେ ଏକ ଲୁହା ଖଣ୍ଡ ନେଲେ ମଧ୍ୟ ତାହା ସହିତ କଠିନତା, ଓଜନ ଇତ୍ୟାଦି ନିଶ୍ଚିତ ଭାବେ ସଂଯୁକ୍ତ ହୋଇରହିବ । ଅର୍ଥାତ୍ କୌଣସି ବସ୍ତୁ ଗୁଣରହିତ ହୋଇ ରହିପାରିବ ନାହିଁ । ପ୍ରତ୍ୟେକ ବିଶେଷର ଗୁଣ ରହିବ । ଯାହାକୁ ଗୁଣ କୁହାଯାଉଛି ତାହା ଏକ ସାମାନ୍ୟ ।

ଆରିଷ୍ଟୋଟଲଙ୍କର ବସ୍ତୁ ଭାବନା ଆମର ସାଧାରଣ ଭାବନାଠାରୁ ପୃଥକ୍ ଥିଲା । ବସ୍ତୁ କହିଲେ ସାଧାରଣତଃ କିଛି ଭୌତିକ ପଦାର୍ଥକୁ ବୁଝାଯାଏ । ଆମେ ଯେପରି ବାଲି, ମାଟି, ସୁନା, କାଠ, ଲୁହା ଇତ୍ୟାଦି ଭୌତିକ ପଦାର୍ଥ ମାନଙ୍କୁ ବସ୍ତୁ ଭାବରେ ନେଉ, ଆରିଷ୍ଟୋଟଲଙ୍କର ବସ୍ତୁ ଭାବନା ତାଠାରୁ ସ୍ୱତନ୍ତ୍ର ଥିଲା । ସେହିପରି ଆକାର କହିଲେ ଆମର ସାଧାରଣ ଧାରଣାଠାରୁ ଆରିଷ୍ଟୋଟଲଙ୍କର 'ଫର୍ମ' ଧାରଣା ଭିନ୍ନ ଥିଲା । ବସ୍ତୁ ଓ ଫର୍ମ କହିଲେ ଆରିଷ୍ଟୋଟଲ ଯାହା ଧାରଣା ରଖିଥିଲେ ତାହାର ଆଲୋଚନା କରାଯାଉ । ଆମର ସାଧାରଣ ଅବବୋଧରେ ତାହା 'ବସ୍ତୁ' ଯାହା କିଛି ଭୌତିକ ପଦାର୍ଥ । ଯାହା ବସ୍ତୁ ତାହା ସବୁବେଳେ ହିଁ ବସ୍ତୁ । ଏହା ଗୋଟିଏ ମାନଦଣ୍ଡରୁ ବସ୍ତୁ ଓ ଅନ୍ୟ ମାନଦଣ୍ଡରୁ ବସ୍ତୁ ନୁହଁ ବା ଅବସ୍ତୁ ସେପରି ନୁହଁ । ଯାହା ବସ୍ତୁ, ତାହା ସବୁ କ୍ଷେତ୍ରରେ ବସ୍ତୁ ଓ କୌଣସି କ୍ଷେତ୍ରରେ ତାହାର ବସ୍ତୁତ୍ୱ ନଷ୍ଟ ହୋଇଯାଏ ନାହିଁ । ହୁଏତ ପ୍ରାକୃତିକ ପ୍ରକ୍ରିୟାରେ କୌଣସି ବସ୍ତୁରେ କିଛି ପରିବର୍ତ୍ତନ ଆସିପାରେ । ଏକ ପିତଳ ଶିଶାରେ ପରିବର୍ତ୍ତିତ ହୋଇପାରେ । ପିତଳ ଶିଶାରେ ରୂପାନ୍ତରିତ ହେଲେ ମଧ୍ୟ ଉଭୟ ବସ୍ତୁ ରହନ୍ତି ଓ ସେମାନଙ୍କର ବସ୍ତୁତ୍ୱ ନଷ୍ଟ ହୋଇଯାଏ ନାହିଁ । କିନ୍ତୁ ଆରିଷ୍ଟୋଟଲ ବସ୍ତୁକୁ ଏକ ଆପେକ୍ଷିକ ଅର୍ଥରେ ବ୍ୟବହାର କରିଛନ୍ତି । ବସ୍ତୁ ଓ ଫର୍ମ ଆରିଷ୍ଟୋଟଲଙ୍କ ମତରେ ଆପେକ୍ଷିକ ଓ ପରିବର୍ତ୍ତନଶୀଳ । ଏକ ପଦାର୍ଥ ଏକ ମାନଦଣ୍ଡରୁ ବସ୍ତୁ ହୋଇପାରେ, ଏକ ଭିନ୍ନ ମାନଦଣ୍ଡରୁ ଫର୍ମ ହୋଇପାରେ । ଯେଉଁଥିରେ ପରିବର୍ତ୍ତନ ହୁଏ ତାହା ବସ୍ତୁ ଓ ଯେଉଁଥିକୁ ତାହାର ପରିବର୍ତ୍ତନ ହୁଏ ତାହା ଫର୍ମ । ଅନ୍ୟ ଭାବରେ କହିଲେ ଯାହାର ବା ଯାହାଠାରେ ପରିବର୍ତ୍ତନ ହୁଏ ତାହା ବସ୍ତୁ, ପରିବର୍ତ୍ତନ ପରେ ଯାହା ହୁଏ ତାହା ଫର୍ମ । ଏକ ଗଛର ଗଣ୍ଡି ହେଉଛି ବସ୍ତୁ, କିନ୍ତୁ ତାହା ଯେତେବେଳେ ପଟାରେ ପରିବର୍ତ୍ତିତ ହୁଏ ତାହା ହୁଏ ଫର୍ମ । ପଟାରୁ ଯେତେବେଳେ ଖଟ ନିର୍ମାଣ କରାଯାଏ ଖଟ ହେଉଛି ଫର୍ମ ଓ ପଟା ହେଉଛି ବସ୍ତୁ । ସେହିପରି ଖଟକୁ ନେଇ ଏକ ଷ୍ଟେଜ୍ ପ୍ରସ୍ତୁତ କରାଗଲେ ଖଟ ହୋଇଯାଏ

ବସ୍ତୁ ଓ କ୍ଷେଜ ହୋଇଯାଏ ଫର୍ମ । ଗୋଟିଏ କ୍ଷେତ୍ରରେ ଯାହା ବସ୍ତୁ ଥାଏ ସେଥିରେ ପରିବର୍ତ୍ତନ ହେଲେ ପରିବର୍ତ୍ତିତ ବସ୍ତୁଟି ଫର୍ମରେ ପରିଣତ ହୁଏ । ଆରିଷ୍ଟୋଟଲ ଏହିପରି ବସ୍ତୁ ଓ ଫର୍ମକୁ ଭିନ୍ନଭିନ୍ନ ମାନଦଣ୍ଡରୁ ବ୍ୟବହାର କରିଛନ୍ତି ।

ଆରିଷ୍ଟୋଟଲ ବସ୍ତୁ ଓ ଫର୍ମକୁ ଆପେକ୍ଷିକ ଅର୍ଥରେ ପ୍ରୟୋଗ କରିଛନ୍ତି । ଯାହା ଏକ ଅବସ୍ଥାରେ ଫର୍ମ, ତାହା ଏକ ଭିନ୍ନ ଅବସ୍ଥାରେ ବସ୍ତୁ । ଏଣୁ ଫର୍ମ କେବଳ ଆକାରକୁ ବୁଝାଏ ନାହିଁ । ଏକ ଆକାର (shape) କେବଳ ଆକାର ହୋଇ ରହେ । ଆକାର ଫର୍ମର ଅଙ୍ଗବିଶେଷ, କାରଣ ଯାହାକୁ ଫର୍ମ କୁହାଯାଉଛି ତାହା ଏକ ଗୁଣ ଓ ବସ୍ତୁର ବିଭିନ୍ନ ଗୁଣ ରହିବା ସ୍ୱାଭାବିକ । ଏକ ବସ୍ତୁର ଯେତେ ଗୁଣ ରହେ ତା ମଧ୍ୟରୁ ଆକାର ମଧ୍ୟ ଏକ ଗୁଣ । ଆକାର ଫର୍ମର ଏକ ଗୁଣ ହୋଇଥିବାରୁ ଆକାର ଓ ଫର୍ମ ମଧ୍ୟରେ ପାର୍ଥକ୍ୟ ରହିଛି । ଫର୍ମ ଏକ ବସ୍ତୁର ସଂଗଠନର ମୂଳ ଭିତ୍ତି । ବସ୍ତୁର ବିଭିନ୍ନ ଅଂଶ ମଧ୍ୟରେ ଫର୍ମଦ୍ୱାରା ସଂବଂଧ ରହେ ଓ ସମସ୍ତ ଅଂଶର ସମଗ୍ର ବସ୍ତୁସହ ଯେଉଁ ସମ୍ବନ୍ଧ ରହେ ତାହା ହେଉଛି ବସ୍ତୁର ଫର୍ମ । ଫର୍ମଦ୍ୱାରା ବସ୍ତୁର ଅଂଶମାନଙ୍କ ମଧ୍ୟରେ ଅନ୍ତଃସମ୍ବନ୍ଧ ରହିଥାଏ ଓ ବହିର୍ସମ୍ବନ୍ଧ ମଧ୍ୟ ରହିଥାଏ । ଏକ ବସ୍ତୁ ଯେଉଁ ରୂପରେ ପ୍ରକାଶିତ ହୁଏ ସମଗ୍ର ଆକାରଟି ବସ୍ତୁର ଫର୍ମ ଓ ବସ୍ତୁର ପ୍ରତ୍ୟେକ ଅଂଶ ଅନ୍ୟ ଅଂଶ ସହିତ ମଧ୍ୟ ଆକାର ମାଧ୍ୟମରେ ପ୍ରକାଶିତ ହୋଇଥାଏ । ଫର୍ମ ବସ୍ତୁର କ୍ରିୟା ବା ପ୍ରକାର୍ଯ୍ୟ (function) ସହ ବି ସଂପୃକ୍ତ । ଫର୍ମ ମଧ୍ୟରେ ବସ୍ତୁର ପ୍ରୟୋଜନ କାରଣ ସଂଯୁକ୍ତ ହୋଇ ରହିଥାଏ । ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟ ପାଇଁ ବସ୍ତୁଟି ଉଦ୍ଦିଷ୍ଟ ଥାଏ । ବସ୍ତୁର ଉଦ୍ଦେଶ୍ୟ ବା ପ୍ରୟୋଜନ କାରଣ ତାହାର ଫର୍ମରେ ନିହିତ ଥାଏ । ମନୁଷ୍ୟ ଶରୀରଟି ଏକ ଫର୍ମ, ସେଥିରେ ହାତର କାର୍ଯ୍ୟ ହେଉଛି କୌଣସି ବସ୍ତୁକୁ ଧରିବା, କିଛି କାର୍ଯ୍ୟ କରିବା ଇତ୍ୟାଦି । ସମଗ୍ର ଶରୀରରେ ହାତ ହେଉଛି ଏକ ଅଂଶ ବା ଅଂଗ ଯାହା ଶରୀର ସହ ସଂଯୁକ୍ତ । ତେବେ ଯେତେବେଳେ ହାତ ତାର କ୍ରିୟା କରିବାକୁ ଅସମର୍ଥ ହୁଏ, ତାହା ଶରୀରର ଫର୍ମ ହୋଇ ରହେ ନାହିଁ । ଯଦି ହାତଟି କଟିଯାଏ ବା ଶରୀରରୁ ବିଚ୍ଛିନ୍ନ ହୋଇଯାଏ, ତେବେ ହାତ ତାର କାର୍ଯ୍ୟ କରିବାକୁ ସମର୍ଥ ହୁଏ ନାହିଁ । ଏହାଦ୍ୱାରା ହାତ ଆଉ ଫର୍ମ ହୋଇ ରହେନାହିଁ । ଶରୀରରୁ ହାତଟି କଟିଗଲେ ବା କାଟି ଦିଆଗଲେ, ମୃତ ହାତଟିର ଫର୍ମ ରହିଥାଏ, ତେବେ ଏହା କୌଣସି କାର୍ଯ୍ୟ କରିବାକୁ ସମର୍ଥ ନ ଥିବାରୁ ବା ଶରୀର ସହିତ ସଂଯୁକ୍ତ ନ ଥିବାରୁ ହାତଟିର ଫର୍ମ ନଷ୍ଟ ହୋଇଯାଏ । ଯେକୌଣସି ଏକ ଏକକ ବସ୍ତୁ ଭିତରେ ବସ୍ତୁ ଓ ଫର୍ମ ରହିଥାଏ । କିନ୍ତୁ ଏକ ମୃତ ହାତ ଏହାର ଫର୍ମତ୍ୱ ହରାଇବସେ । ଜୀବିତ ହାତ ଓ ମୃତ ହାତ ଭିତରେ ତୁଳନା କଲା ବେଳେ ଜୀବିତ ହାତଟି ଫର୍ମ ହେଲା ବେଳେ ମୃତ ହାତଟି ବସ୍ତୁ ହୋଇଥାଏ, ଯଦିବା ମୃତହାତର ଫର୍ମ ପୂର୍ବପରି ରହିଥାଏ । ତେବେ ମୃତ ହାତଟି ହାତର ହାଡ ଓ ରକ୍ତ ସହିତ ତୁଳନୀୟ ବେଳେ ଏହା ଫର୍ମ ହୋଇଥାଏ । ଏହି ସବୁ ଦୃଷ୍ଟିରୁ ବିଚାର କଲେ ଆରିଷ୍ଟୋଟଲ ଯାହାକୁ ଫର୍ମ କହୁଥିଲେ ତାହା କେବଳ ଆକାର ନୁହେଁ । ଆକାର ଓ ଫର୍ମ ଭିତରେ ପ୍ରତ୍ୟୟଗତ ପାର୍ଥକ୍ୟ ରହିଛି ।

ଏକ ଫର୍ମ ଭିତରେ ବସ୍ତୁର ଗୁଣସକଳ ଅନ୍ତର୍ନିହିତ ରହିଥାଏ । ଗୁଣମାନ ହେଉଛନ୍ତି ସାମାନ୍ୟ । ଏକ ମଲ୍ଲୀଫୁଲ ହେଉଛି ଧଳା, ସୁବାସିତ ଇତ୍ୟାଦି । ତେବେ ଧବଳତ୍ୱ ହେଉଛି ସବୁ ଧଳା ବସ୍ତୁମାନଙ୍କର ଗୁଣ ।

କୌଣସି କିଛିର ଗୁଣ ରହିଛି କହିବା ଅର୍ଥ, ତାହାକୁ ଏକ ଶ୍ରେଣୀରେ ଅନ୍ତର୍ଗତ କରିବା । ଏକ ଶ୍ରେଣୀ ଅର୍ଥ ଏଥିରେ କିଛି ଗୁଣ ସାଧାରଣ ଭାବରେ ସମସ୍ତ ବିଶେଷଙ୍କ ପାଖରେ ରହିଥିବ । ଯାହା ସାଧାରଣ ଭାବରେ ଏକ ଶ୍ରେଣୀ ପାଖରେ ରହିଛି ତାହା ଏକ ସାମାନ୍ୟ । କୌଣସି ବସ୍ତୁ ଗୁଣ ବ୍ୟତୀତ ରହିପାରିବ ନାହିଁ କିମ୍ବା ଗୁଣ ବସ୍ତୁ ବ୍ୟତୀତ ରହିବା ସମ୍ଭବ ନୁହେଁ । ଯେପରି ବସ୍ତୁ ଓ ଗୁଣ ପରସ୍ପରଠାରୁ ଭିନ୍ନ ରହିପାରିବେ ନାହିଁ, ସେହିପରି ବସ୍ତୁ ଓ ଫର୍ମ ମଧ୍ୟ ପରସ୍ପରଠାରୁ ପୃଥକ୍ ରହିବା ସମ୍ଭବ ନୁହେଁ ।

ଆରିଷ୍ଟୋଟଲଙ୍କ ଭାବନାରେ ଯାହା ବସ୍ତୁ ତାହା ସଂପୂର୍ଣ୍ଣ ଭାବରେ ଫର୍ମରହିତ । ଏହାକୁ ଅଧିଷ୍ଠାନ (substratum) କୁହାଯାଇପାରେ । ଯାହା ବସ୍ତୁ ବା ଅଧିଷ୍ଠାନ ତାହା ଗୁଣରହିତ କିନ୍ତୁ ଗୁଣର ଆଧାର ହୋଇପାରିବ । ଏହା ଗୁଣରହିତ, ବୈଶିଷ୍ଟ୍ୟହୀନ ଓ ଅନିଶ୍ଚିତ । ବସ୍ତୁକୁ ଯାହା ଗୁଣଯୁକ୍ତ, ଲକ୍ଷଣ-ଆଧାରିତ ବା ନିଶ୍ଚିତ କରିଥାଏ ତାହା ହେଉଛି ଫର୍ମ । ବସ୍ତୁରେ ଫର୍ମ ରହିବା ଦ୍ୱାରା ଏହା ନିର୍ଦ୍ଦିଷ୍ଟ ରୂପରେଖ ବହନ କରେ । ଏଣୁ ବସ୍ତୁମାନଙ୍କ ମଧ୍ୟରେ ଆରିଷ୍ଟୋଟଲଙ୍କ ମତରେ କୌଣସି ପାର୍ଥକ୍ୟ ନାହିଁ । ବସ୍ତୁରେ ଗୁଣ ଓ ଫର୍ମ ସଂଯୁକ୍ତ ହେବା ପରେ ସେମାନଙ୍କ ମଧ୍ୟରେ ଭିନ୍ନତା ସୃଷ୍ଟି ହୋଇଥାଏ । ବସ୍ତୁର ଯେହେତୁ ଗୁଣ ନାହିଁ, ତେଣୁ ବସ୍ତୁ ଭିତରେ ଭିନ୍ନତା ନାହିଁ । ବସ୍ତୁ  ବସ୍ତୁ ଭିତରେ ଫର୍ମ ଯୋଗୁ ଭିନ୍ନତା ବା ପାର୍ଥକ୍ୟ ସୃଷ୍ଟି ହୋଇଥାଏ । ଆରିଷ୍ଟୋଟଲ ଯେଉଁପରି ଭାବରେ ବସ୍ତୁର ବର୍ଣ୍ଣନା କରିଛନ୍ତି ତାହା ଆଧୁନିକ ସମୟର ବସ୍ତୁର ଭାବନାଠାରୁ ସଂପୂର୍ଣ୍ଣ ଭିନ୍ନ । ସାଂପ୍ରତିକ ଅର୍ଥରେ ଭୌତିକ ପଦାର୍ଥ କହିଲେ ବସ୍ତୁର ଯେଉଁ ଅର୍ଥ ପ୍ରକାଶ ପାଉଛି, ଆରିଷ୍ଟୋଟଲଙ୍କ ଭାବନା ତାଠାରୁ ପୃଥକ୍ । ସାଂପ୍ରତିକ ସମୟରେ ସୁନା, ଲୁହା, ପିତଳ ଇତ୍ୟାଦିକୁ ଭୌତିକ ବସ୍ତୁ କୁହାଯାଉଛି ଓ ସେମାନଙ୍କ ମଧ୍ୟରେ ପାର୍ଥକ୍ୟ ରହିଛି । ଆରିଷ୍ଟୋଟଲଙ୍କ ମତରେ ବସ୍ତୁମାନଙ୍କ ଭିତରେ ଯେଉଁ ପାର୍ଥକ୍ୟ ରହିଛି ତାହା ଲକ୍ଷଣ ବା ଗୁଣ ଯୋଗୁ ହେଉଛି । ଗୁଣମାନ ହେଉଛି ଫର୍ମର ଅଂଶବିଶେଷ । ତାଙ୍କ ମତରେ ଲୁହା ଓ ସୁନା ଭିତରେ ଯେଉଁ ପାର୍ଥକ୍ୟ ରହିଛି ତାହା ଫର୍ମ ଯୋଗୁ ରହିଛି ବସ୍ତୁ ଯୋଗୁ ନୁହେଁ । ବସ୍ତୁରେ ଯେକୌଣସି ଫର୍ମ ସଂଯୁକ୍ତ ହେବା ପରେ ତାହା ଯାହା ବି ହୋଇପାରେ । ବସ୍ତୁ ନିଜତ୍ୱ ସ୍ୱରୂପରେ କିଛି ବି ନୁହଁ, କିନ୍ତୁ ତାହା ଫର୍ମଯୁକ୍ତ ହେବାପରେ ଯାହା ବି ହୋଇପାରେ । ଫର୍ମ ନେଲେ ବସ୍ତୁ କିଛି ହୋଇପାରେ, ଫର୍ମ ବ୍ୟତୀତ ଏହା କିଛି ହିଁ ନୁହଁ । ଆରିଷ୍ଟୋଟଲଙ୍କର ଏହି ସିଦ୍ଧାନ୍ତ ଏକ ପ୍ରତିପକ୍ଷ (anti-thesis) ଭାବନାର ଅବତାରଣା କରେ । ସମର୍ଥତା ବା ସମ୍ଭାବ୍ୟତା (potentiality) ଓ ବାସ୍ତବିକତା (actuality) ପରସ୍ପରର ପକ୍ଷ ଓ ପ୍ରତିପକ୍ଷ । ସମର୍ଥତା ହେଉଛି ବସ୍ତୁ ଓ ବାସ୍ତବିକତା ହେଉଛି ଫର୍ମ । ଯାହା ବସ୍ତୁ ତାହା ଯାହା କିଛି ହେବାର ସମ୍ଭାବନା ବହନ କରେ । ବସ୍ତୁ ଭିତରେ ଯାହା କିଛି ହେବାର ସମ୍ଭାବ୍ୟତା ରହିଥାଏ । କିନ୍ତୁ ନିଜସ୍ୱ ସ୍ୱରୂପରେ ଏହା କିଛି ହିଁ ନୁହେଁ । ଏହା ଭିତରେ ଯାହା କିଛି ହେବାର ସାମର୍ଥ୍ୟ ଥାଏ, କିନ୍ତୁ ଫର୍ମ ଯୁକ୍ତ ନ ହେବା ପର୍ଯ୍ୟନ୍ତ ଏହା କିଛି ବି ନୁହେଁ । ବସ୍ତୁକୁ ଯାହା ଏହା କରେ ବା ତାହା କରେ, ଯାହା ଏହାକୁ ଏକ ବାସ୍ତବ ବସ୍ତୁରେ ପରିବର୍ତ୍ତନ କରେ ତାହା ହେଉଛି ଫର୍ମ । ତେଣୁ କହିବାକୁ ଗଲେ ଏକ ପଦାର୍ଥର ବାସ୍ତବତା ହେଉଛି ଏହାର ଫର୍ମ । ଫର୍ମ ଯୋଗୁ ବସ୍ତୁ ଗୁଣଯୁକ୍ତ ହୋଇଥାଏ ଓ ଏହାର ସ୍ୱରୂପ ଜଣାପଡିଥାଏ ।

ଆରିଷ୍ଟୋଟଲ ସମ୍ଭାବ୍ୟତା ଓ ବାସ୍ତବିକତା ମଧ୍ୟରେ ଯେଉଁ ପାର୍ଥକ୍ୟ ଦର୍ଶାଇଲେ ତାହା ତାଙ୍କ ପୂର୍ବରୁ ଗ୍ରୀକ୍ ଦର୍ଶନରେ ରହିଥିବା ଏକ ସମସ୍ୟାକୁ ସମାଧାନ କଲା ବୋଲି ସେ ଭାବିଲେ । ସତ୍ତା ଓ ସମ୍ଭବନ (Being and becoming) ମଧ୍ୟରେ ଯେଉଁ ସମସ୍ୟା ଗ୍ରୀକ୍ ଦର୍ଶନରେ ଇଲୀୟମାନଙ୍କ ଯୋଗୁ ସୃଷ୍ଟି ହୋଇଥିଲା ଆରିଷ୍ଟୋଟଲ ସେହି ସମସ୍ୟାର ସମାଧାନ କରିପାରିଛନ୍ତି ବୋଲି ଚିନ୍ତା କରିଛନ୍ତି । ଏକ ସତ୍ତାର ଅନ୍ୟ ସତ୍ତାକୁ ପରିବର୍ତ୍ତନକୁ ସମ୍ଭବନ କୁହାଯାଇ ପାରିବ ନାହିଁ, ଯେହେତୁ ସତ୍ତାରେ ପରିବର୍ତ୍ତନ ହେଉନାହିଁ; ଏବଂ ଅସତ୍ତାର କୌଣସି ସତ୍ତାକୁ ପରିବର୍ତ୍ତନ ସମ୍ଭବ ନୁହେଁ ଯେହେତୁ ଅସତ୍‌ରୁ କିଛି ସତ୍‌ର ଉଦ୍‌ଭବ ସମ୍ଭବ ନୁହେଁ । କିନ୍ତୁ ଆରିଷ୍ଟୋଟଲଙ୍କ କ୍ଷେତ୍ରରେ ଅସତ୍ତା ଓ ସତ୍ତା ଭିତରେ କୌଣସି ପାର୍ଥକ୍ୟ ନାହିଁ । ସତ୍ତା-ଅସତ୍ତା କିମ୍ବା ସତ୍ -ଅସତ୍ ମଧ୍ୟରେ ଆରିଷ୍ଟୋଟଲଙ୍କ ମତରେ ତୀକ୍ଷ୍ଣ ପାର୍ଥକ୍ୟ ନାହିଁ । ସତ୍ -ଅସତ୍, ସତ୍ତା-ଅସତ୍ତା ପଦମାନଙ୍କ ଭିତରେ ଯେଉଁ ଆତ୍ୟନ୍ତିକ ପାର୍ଥକ୍ୟ କରାଯାଏ, ଆରିଷ୍ଟୋଟଲ ତାହା କରିନାହାନ୍ତି । ବରଂ ସମ୍ଭାବ୍ୟତା ଓ ବାସ୍ତବିକତା ମଧ୍ୟରେ ସେ ଯେଉଁ ପାର୍ଥକ୍ୟ ଦର୍ଶାଇଛନ୍ତି ତାହା ଆତ୍ୟନ୍ତିକ ନୁହେଁ, ଆପେକ୍ଷିକ ମନେହୁଏ । ଆରିଷ୍ଟୋଟଲ ଯାହାକୁ ସଂଭାବ୍ୟତା କହିଛନ୍ତି ତାହା ତାଙ୍କ ପୂର୍ବବର୍ତ୍ତୀ ଦାର୍ଶନିକ ମାନଙ୍କ ପରିଭାଷାରେ ଅସତ୍ତା ବୋଲି ଗ୍ରହଣ କରାଯାଇଛି । ଯାହାକୁ ସଂଭାବ୍ୟତା ଭାବେ ସେ ଗ୍ରହଣ କରିଛନ୍ତି ତାହା ସଂପୂର୍ଣ୍ଣ ଭାବେ ଅସତ୍ତା ନୁହେଁ । ତେଣୁ ସତ୍ତା ଓ ସମ୍ଭବନ ମଧ୍ୟରେ ରହିଥିବା ବିରୋଧାଭାସ ତାଙ୍କ ପାଖରେ ଆସୁନାହିଁ । ଯାହା ଅସତ୍ତା ତାହାର କିଛି ବାସ୍ତବତା ନାହିଁ କିନ୍ତୁ ଏହା ସତ୍ତା ହୋଇପାରିବ, ଯେହେତୁ ଏହା ଯାହା କିଛି ହେବାର ସଂଭାବ୍ୟତା ରଖେ । ସମ୍ଭାବ୍ୟତାରୁ ବାସ୍ତବିକତା ହେବାରେ କୌଣସି ଅସୁବିଧା ନାହିଁ । ସକଳ ପରିବର୍ତ୍ତନ, ଗତିଶୀଳତା ସଂଭାବ୍ୟତାରୁ ବାସ୍ତବିକତା ଆଧାରରେ ଆରିଷ୍ଟୋଟଲ ବ୍ୟାଖ୍ୟା କରିଛନ୍ତି । ବସ୍ତୁ ଫର୍ମ ନେବା ସାଦୃଶ୍ୟରେ ସେ ସଂଭାବ୍ୟତାରୁ ବାସ୍ତବିକତା ଆସିପାରିବ ବୋଲି କଳ୍ପନା କରିଛନ୍ତି । ଫଳରେ ପରିବର୍ତ୍ତନ ଓ ଗତିଶୀଳତାକୁ ବୁଝାଇବାରେ ପ୍ରତିବନ୍ଧକ ନାହିଁ ।

ବସ୍ତୁ ନିଜସ୍ୱ ସ୍ୱରୂପରେ ଅସତ୍ତା ବା ଶୂନ୍ୟ (nothing), କିନ୍ତୁ ଫର୍ମ ହେଉଛି ବାସ୍ତବିକତା, ଏକ ପରିପୂର୍ଣ୍ଣ ସତ୍ତା । ସୁତରାଂ ଏଥିରୁ ଏହି ସିଦ୍ଧାନ୍ତ ନିଷ୍ପନ୍ନ ହୋଇପାରିବ ଯେ ବସ୍ତୁ ଅପେକ୍ଷା ଫର୍ମ ହେଉଛି ଉଚ୍ଚତର । କିନ୍ତୁ ବସ୍ତୁ ହିଁ ଫର୍ମରେ ରୂପାନ୍ତରିତ ହୋଇପାରିବ । ସମୟ ମାନଦଣ୍ଡରୁ ବସ୍ତୁ ହେଉଛି ପୂର୍ବବର୍ତ୍ତୀ ଓ ଫର୍ମ ହେଉଛି ପରବର୍ତ୍ତୀ । କିନ୍ତୁ ବୈଚାରିକତା ଓ ବାସ୍ତବତା ଦୃଷ୍ଟିରୁ ଫର୍ମ ହେଉଛି ପୂର୍ବବର୍ତ୍ତୀ । ବସ୍ତୁ ହେଉଛି ସଂଭାବ୍ୟତା ଯେଉଁଥିରେ ଫର୍ମ ଯୋଗୁ ପରିବର୍ତ୍ତନ ଆସିପାରିବ ଓ ବାସ୍ତବ ଜଗତ ରୂପରେଖ ନେବା ସମ୍ଭବ ହେବ । ଫର୍ମ ଯେହେତୁ ଏହାକୁ ବାସ୍ତବତାରେ ରୂପାନ୍ତରିତ କରପାରିବ ଫର୍ମ ଏହା ମଧ୍ୟରେ ଅନ୍ତର୍ନିହିତ ହୋଇ ରହିଛି । ଫର୍ମ ବାସ୍ତବ ରୂପ ନେଇ ନାହିଁ, କିନ୍ତୁ ଯେହେତୁ ଏହାଦ୍ୱାରା ବସ୍ତୁ ବାସ୍ତବତାରେ ରୂପାନ୍ତରିତ ହେବ ତେଣୁ ଏହା ତା ଭିତରେ ଅନ୍ତର୍ନିହିତ ହୋଇରହିଛି । ବସ୍ତୁ ଯାହା ହେବ କିମ୍ବା ଯେଉଁ ଲକ୍ଷ୍ୟ ହାସଲ କରିବ, ସେହି ସମ୍ଭାବନା ତା ମଧ୍ୟରେ ରହିଥିବା ଆବଶ୍ୟକ । ସକଳ ସଂଭବନ (becoming) ଏକ ଲକ୍ଷ୍ୟ ଦିଗରେ ଅଭିପ୍ରେତ ଥିବାରୁ ଲକ୍ଷ୍ୟ ଏକ କ୍ରିୟାଶୀଳ ନିୟମ ଭାବରେ ସଂଭବନକୁ କାର୍ଯ୍ୟକାରୀ କରାଇବ । ଲକ୍ଷ୍ୟ ଏକ ଯାନ୍ତ୍ରିକ ଧାରାରେ ସଂଭବନକୁ ସମ୍ଭବ କରିବ

ନାହିଁ, ବରଂ ଏକ କ୍ରିୟାଶୀଳ ନିୟମ (operative principle) ଭାବରେ ବସ୍ତୁକୁ ଫର୍ମରେ ରୂପାନ୍ତରିତ କରିପାରିବ । ଏହି ଦୃଷ୍ଟିରୁ ଯାହା ଲକ୍ଷ୍ୟ ତାହା ଆରମ୍ଭରୁ ହିଁ ରହିଥିବ । ଲକ୍ଷ୍ୟ କେବଳ ଆରମ୍ଭରୁ ରହିବ ନାହିଁ, ଏହା ସକଳ ସଂଭବନକୁ କାର୍ଯ୍ୟକାରୀ କରାଇବ । ବସ୍ତୁ ଗତିଶୀଳ ହେବାର କାରଣ ହେଉଛି ଏହା ଏହାର ଲକ୍ଷ୍ୟ ହାସଲ କରିବ । ଲକ୍ଷ୍ୟ ହେଉଛି ଏଠାରେ କାରଣ, କାରଣ ସର୍ବଦା କାର୍ଯ୍ୟର ପୂର୍ବବର୍ତ୍ତୀ । ଲକ୍ଷ୍ୟ ବା ଫର୍ମର ସିଦ୍ଧାନ୍ତ ହେଉଛି ବୈଚାରିକ ସ୍ତରରେ ପ୍ରଥମ ଯଦିବା ସମୟ ଦୃଷ୍ଟିରୁ ଏହା ପରେ ସୃଷ୍ଟି ହୁଏ । ତେଣୁ ଏଠାରେ ଯଦି ପ୍ରଶ୍ନ ଉଠେ ଆରିଷ୍ଟୋଟଲଙ୍କ ବିଚାରରେ ପରମ ତତ୍ତ୍ୱ ବା ଆଦିସିଦ୍ଧାନ୍ତ ଭାବରେ କାହାକୁ ଗ୍ରହଣ କରାଯିବ, ସେତେବେଳେ ଫର୍ମ ସିଦ୍ଧାନ୍ତ ଆସିବ । ଅର୍ଥାତ୍ ଫର୍ମ ସିଦ୍ଧାନ୍ତକୁ ପରମ ତତ୍ତ୍ୱ ଭାବରେ ଗ୍ରହଣ କଲେ ତାହାରି ଆଧାରରେ ବିଶ୍ୱକୁ ବ୍ୟାଖ୍ୟା କରାଯାଇ ପାରିବ । ପ୍ଲେଟୋ ଯେପରି ତାଙ୍କର ସିଦ୍ଧାନ୍ତ କ୍ଷେତ୍ରରେ ଶୁଦ୍ଧସତ୍ତାକୁ ପରମ ବୋଲି ପରିକଳ୍ପନା କରିଥିଲେ, ଆରିଷ୍ଟୋଟଲ ମଧ୍ୟ ଫର୍ମ ସିଦ୍ଧାନ୍ତକୁ ମୁଖ୍ୟ ସ୍ଥାନ ଦେଇଛନ୍ତି । ପ୍ଲେଟୋଙ୍କ ଶୁଦ୍ଧସତ୍ତା ବା ଆରିଷ୍ଟୋଟଲଙ୍କର ଫର୍ମ ଭିତରେ ସାମଂଜସ୍ୟ ହେଉଛି ଯେ ଉଭୟ ସ୍ୱରୂପରେ ସାମାନ୍ୟ (universal) । ସମସ୍ତ ପ୍ରତ୍ୟୟବାଦ ବା ଭାବବାଦ କ୍ଷେତ୍ରରେ ସାମାନ୍ୟ, ବିଚାରଶୀଳତା ଓ ଚେତନାକୁ ପରମ ତତ୍ତ୍ୱ ଭାବରେ ସ୍ୱୀକାର କରାଯାଏ । ସମସ୍ତ ପ୍ରତ୍ୟୟବାଦୀମାନେ ବିଶ୍ୱକୁ ବ୍ୟାଖ୍ୟା କରିବା ପାଇଁ ତାଙ୍କ ନିର୍ଦ୍ଧାରିତ ପରମ ତତ୍ତ୍ୱକୁ ପ୍ରାଧାନ୍ୟ ଦେଇଥାନ୍ତି । ତେବେ ଆରିଷ୍ଟୋଟଲ ପ୍ଲେଟୋଙ୍କ ପରି ପ୍ରତ୍ୟୟବାଦୀ ହେଲେ ମଧ୍ୟ ସେ ବସ୍ତୁ ବ୍ୟତୀତ ଫର୍ମ ରହିପାରିବ ନାହିଁ ବା ନିଜକୁ ପ୍ରକାଶ କରିପାରିବ ନାହିଁ ବୋଲି ଗ୍ରହଣ କରିଛନ୍ତି । ପ୍ଲେଟୋ ତାଙ୍କର ପରମ ସତ୍ତାକୁ ଏକ ଭିନ୍ନ ଜଗତରେ ସ୍ଥାନ ଦେବା ବେଳେ ଆରିଷ୍ଟୋଟଲ ତାଙ୍କ ପରମ ତତ୍ତ୍ୱକୁ ବସ୍ତୁ ସହ ସମ୍ମିଳିତ କରି ରଖିଛନ୍ତି ।

ଆରିଷ୍ଟୋଟଲଙ୍କ ଦର୍ଶନରେ ପରମ ସତ୍ତା ହେଉଛି ଫର୍ମ । ସେ ବସ୍ତୁ ଓ ଫର୍ମ ଉଭୟକୁ ମୂଳ ତତ୍ତ୍ୱ ଭାବରେ ନେଇଛନ୍ତି । ଫର୍ମକୁ ବୈଚାରିକ ସ୍ତରରେ ବସ୍ତୁର ପୂର୍ବବର୍ତ୍ତୀ ଓ କାଳ ବା ସମୟ ଦୃଷ୍ଟିରୁ ବସ୍ତୁ ଫର୍ମର ପୂର୍ବବର୍ତ୍ତୀ ବୋଲି ପରିକଳ୍ପନା କରିଛନ୍ତି । ଫର୍ମ ହେଉଛି ଲକ୍ଷ୍ୟ, କିନ୍ତୁ ବୈଚାରିକ ସ୍ତରରେ ଏହା ହେଉଛି ବିଶ୍ୱ ପ୍ରକ୍ରିୟାର ଆରମ୍ଭ । ତେବେ ଯାହା ପରମ ଲକ୍ଷ୍ୟ ତାହା କେବେ ବି ସଂପୂର୍ଣ୍ଣ ବାସ୍ତବତାରେ ରୂପାନ୍ତରିତ ହେବ ନାହିଁ । ବିଶ୍ୱ ପ୍ରକ୍ରିୟା ହେଉଛି ବସ୍ତୁ ଅଧିକରୁ ଅଧିକ ଉଚ୍ଚତର ଫର୍ମ ଦିଗରେ ଅଗ୍ରସର ହେବା । ବିଶ୍ୱ ନିରନ୍ତର ଭାବରେ ସତ୍ ଦିଗରେ ବିକଶିତ ହୋଇ ଚାଲିଛି । ଏହି ପ୍ରକ୍ରିୟାରେ ଫର୍ମ ଯେତେ ଅଧିକରୁ ଅଧିକ ଉତ୍କୃଷ୍ଟ ହେବ ବା ନିଜର ନିୟନ୍ତ୍ରଣ ବ୍ୟକ୍ତ କରିବ ଜଗତ ଉତ୍କର୍ଷର ସୋପାନରେ ସେତେ ଆଗକୁ ଯିବ । ବସ୍ତୁ ଯେତେ ଅଧିକ ନିୟନ୍ତ୍ରଣ ରଖିବ ଉତ୍କର୍ଷର ସୋପାନ ତଳେ ରହିବ । ବିଶ୍ୱ ପ୍ରକ୍ରିୟାର ଶୀର୍ଷରେ ବସ୍ତୁହୀନ ଫର୍ମ ରହିବ ଓ ନିମ୍ନରେ ଫର୍ମବିହୀନ ବସ୍ତୁ ରହିବ । ତେବେ ବସ୍ତୁହୀନ ଫର୍ମ ଓ ଫର୍ମହୀନ ବସ୍ତୁ କେବଳ ଅମୂର୍ତ୍ତୀୟ ଭାବନା । ସେମାନେ ଅମୂର୍ତ୍ତୀୟ କାରଣ ବସ୍ତୁବିହୀନ ଫର୍ମ ଓ ଫର୍ମବିହୀନ ବସ୍ତୁର ଅସ୍ତିତ୍ୱ ହିଁ ନାହିଁ । ବସ୍ତୁ ଓ ଫର୍ମ ପରସ୍ପରଠାରୁ ସଂପୂର୍ଣ୍ଣ ପୃଥକ୍ ହୋଇପାରିବେ ନାହିଁ । ଜଗତରେ ଯାହା କିଛି ଅଛି ତାହା ଏହି ଦୁଇ ମଧ୍ୟରେ ହିଁ ରହିବେ । ଏକ ଶୀର୍ଷ ଓ ଏକ ନିମ୍ନର ପରିକଳ୍ପନା କରି ଜଗତର ସବୁ କିଛିକୁ ଆରିଷ୍ଟୋଟଲ ଏ ଉଭୟ ମଧ୍ୟରେ ସ୍ଥାନିତ କରିଛନ୍ତି । ତେଣୁ ବିଶ୍ୱ ଏକ ନିରନ୍ତର

ସ୍ତରଯୁକ୍ତ ପ୍ରକ୍ରିୟା । ଏହାର ବର୍ଗୀକରଣ ଏକ ଅବସ୍ଥାନ୍ତର କ୍ରିୟା । ଗତିଶୀଳତା ଓ ପରିବର୍ତ୍ତନ ଯୋଗୁ ନିମ୍ନରୁ ଊର୍ଦ୍ଧ୍ୱଗାମୀ ଅଭିବ୍ୟକ୍ତି ସମ୍ଭବ ହୋଇଥାଏ । ଏକ ଲକ୍ଷ୍ୟ ପୂରଣ ଦିଗରେ ନିମ୍ନ ସ୍ଥିତିରୁ ଊର୍ଦ୍ଧ୍ୱ ସ୍ଥିତିକୁ ଯିବାର ପ୍ରକ୍ରିୟା ଏକ ନିରନ୍ତର ଧାରା । ଆରିଷ୍ଟୋଟଲ ଏହିପରି ଭାବରେ ବିଶ୍ୱ ପ୍ରକ୍ରିୟାକୁ ବସ୍ତୁ ଓ ଫର୍ମ ପରିକଳ୍ପନା ମାଧ୍ୟମରେ ପ୍ରକାଶ କରିଛନ୍ତି ।

(ଘ) ପରମ ଫର୍ମ ଓ ଈଶ୍ୱର

ଆରିଷ୍ଟୋଟଲ ବିଶ୍ୱ ବ୍ୟବସ୍ଥାରେ ଶୀର୍ଷରେ ବସ୍ତୁହୀନ ଫର୍ମ ଓ ନିମ୍ନରେ ଫର୍ମହୀନ ବସ୍ତୁକୁ ସ୍ଥାନିତ କରିଛନ୍ତି ଓ ଏହି ଦୁଇ ମଝିରେ ଅନ୍ୟ ସବୁ ସ୍ଥାନିତ ହୋଇ ରହିଛି । ଯାହା ଶୀର୍ଷରେ, ଯାହାକୁ ସିଏ ପରମ ଫର୍ମ କହିଛନ୍ତି ତାହା ହିଁ ହେଉଛି ପରମ ଈଶ୍ୱର । ଫର୍ମକୁ ଆରିଷ୍ଟୋଟଲ ବାସ୍ତବିକତା କହିଛନ୍ତି, ଓ ଯାହା ପରମ ଫର୍ମ ତାହା ପରମାର୍ଥିକ ଭାବରେ ବାସ୍ତବ ବୋଲି କୁହାଯାଇପାରେ । ଈଶ୍ୱର ପରମ ତତ୍ତ୍ୱ, ପରମାର୍ଥିକ ଭାବେ ବାସ୍ତବ ହେଲେ ଜଗତରେ ଯାହା ସବୁ ରହିଛି ତାହା ଅଳ୍ପ ବହୁତ ଭାବରେ ଅବାସ୍ତବ । ବିଶ୍ୱକୁ ଏକ ସ୍କେଲ ଭାବରେ ତୁଳନା କଲେ ଯାହା ସ୍କେଲର ଶୀର୍ଷ ଆଡକୁ ରହିବ ତାର ବାସ୍ତବତା ଅଧିକ ରହିବ ଓ ଯାହା ସ୍କେଲର ନିମ୍ନ ଆଡକୁ ରହିବ ତାର ବାସ୍ତବତା ତୁଳନାତ୍ମକ ଭାବେ କମ୍ ରହିବ । ଯେଉଁ କ୍ଷେତ୍ରରେ ଯେତେ ଅଧିକ ଫର୍ମ ରହିବ ବା ଯେଉଁ ସ୍ତରରେ ଫର୍ମର ଅଧିକ ପ୍ରତିଫଳନ ହେବ ତାହାର ବାସ୍ତବତା ସେତେ ଅଧିକ ହେବ ଓ ଯେଉଁ ସ୍ତରରେ ଫର୍ମର ଅଭିବ୍ୟକ୍ତି କମ୍ ରହିବ ସେ କ୍ଷେତ୍ରରେ ବାସ୍ତବତା କମ୍ ରହିବ । ବିଶ୍ୱ ଏକ ଅନନ୍ତ ପର୍ଯ୍ୟାୟ କ୍ରମରେ ବର୍ଗୀକରଣ ହୋଇରହିଛି । ଏହି କ୍ରମର ଶୀର୍ଷରେ ରହିଛି ବସ୍ତୁବିହୀନ ଫର୍ମ ବା ଈଶ୍ୱର । ପୁନଶ୍ଚ ଆରିଷ୍ଟୋଟଲଙ୍କ କାର୍ଯ୍ୟକାରଣ ସିଦ୍ଧାନ୍ତ ପରିପ୍ରେକ୍ଷୀରେ ଯେଉଁ ଚାରିଟି କାରଣର ଅବତାରଣା ହୋଇଛି, ସେଥିରେ ପ୍ରୟୋଜନ କାରଣ, ନିମିତ୍ତ କାରଣ ଓ ଆକାରିକ କାରଣ ଆକାରିକ କାରଣରେ ସଂଯୁକ୍ତ ହୋଇଛନ୍ତି । ସେହି ଦୃଷ୍ଟିରୁ ଈଶ୍ୱରଙ୍କୁ ମଧ୍ୟ ଏହି ତିନି କାରଣର ଆଧାର ଭାବରେ ନିଆଯାଏ । ଅର୍ଥାତ୍ ଈଶ୍ୱର ହେଉଛନ୍ତି ପ୍ରୟୋଜନ କାରଣ, ନିମିତ୍ତ କାରଣ ଓ ଆକାରିକ କାରଣ । ଆକାରିକ କାରଣ ଭାବେ ଈଶ୍ୱର ହେଉଛନ୍ତି ପରମ ପ୍ରତ୍ୟୟ (Idea), ବିଚାର ଓ ସବୁର ଯୁକ୍ତିଶୀଳ ଆଧାର । ନିମିତ୍ତ କାରଣ ଭାବେ ଈଶ୍ୱର ହେଉଛନ୍ତି ସକଳ ଗତି ଓ ସଂଭବନର ଆଧାର । ପ୍ରୟୋଜନ କାରଣ ଭାବରେ ସେ ହେଉଛନ୍ତି ସବୁର ପରମ ଲକ୍ଷ୍ୟ । ସବୁ ବିଷୟ ଏକ ପରମ ଲକ୍ଷ୍ୟ ଆଡକୁ ଗତିଶୀଳ । ପ୍ରତ୍ୟେକ ବିଷୟ ବା ସତ୍ତାର ପରମ ଲକ୍ଷ୍ୟ ନିଜ ଭିତରେ ଅନ୍ତର୍ନିହିତ । ଈଶ୍ୱର ଯେହେତୁ ହେଉଛନ୍ତି ପରମ ଲକ୍ଷ୍ୟ ସମସ୍ତ ସତ୍ତା ସେହି ଲକ୍ଷ୍ୟ ଦିଗରେ କ୍ରିୟାଶୀଳ । ଏଣୁ ସକଳ ଲକ୍ଷ୍ୟ ପରମ ଲକ୍ଷ୍ୟରେ ଅନ୍ତର୍ନିହିତ । ପ୍ରତ୍ୟେକ କ୍ରିୟାଶୀଳ ସତ୍ତା ନିଜସ୍ୱ ଧାରାରେ ପରିପୂର୍ଣ୍ଣତା ରଖିଛନ୍ତି ଓ ଈଶ୍ୱର "ସର୍ବୋତ୍ତମ ପରିପୂର୍ଣ୍ଣତା" ବୋଲି ଆରିଷ୍ଟୋଟଲ ପରିକଳ୍ପନା କରିଛନ୍ତି ।

ଆରିଷ୍ଟୋଟଲ ଈଶ୍ୱରଙ୍କୁ ନିମିତ୍ତ କାରଣ ଭାବରେ ପରିକଳ୍ପନା କରିଛନ୍ତି । ନିମିତ୍ତ କାରଣ ଯୋଗୁ ଈଶ୍ୱର ହେଉଛନ୍ତି ବିଶ୍ୱର ଆଦି ସଂଚାଳକ (First mover) । ଯେ ଆଦି ସଞ୍ଚାଳକ ଅର୍ଥାତ୍ ଯେ ସଂସାରରେ ସର୍ବ ପ୍ରଥମେ ଅନ୍ୟକୁ ଗତିଶୀଳ କରାନ୍ତି ସେ ନିଜେ ଗତିହୀନ ହେବା ଆବଶ୍ୟକ । ଆରିଷ୍ଟୋଟଲ ତାଙ୍କ ପ୍ରୟୋଜନ ଯୁକ୍ତିରେ ସବୁ

ବିଷୟର ଏକ ଲକ୍ଷ୍ୟ ଥିବା କହିଛନ୍ତି । ପ୍ରତ୍ୟେକ କିଛି ଏକ ଲକ୍ଷ୍ୟ ଦିଗରେ ଗତିଶୀଳ । ଈଶ୍ୱର ଯେହେତୁ ପୂର୍ଣ୍ଣତମ ଲକ୍ଷ୍ୟ ଓ ପୂର୍ଣ୍ଣତମ ଫର୍ମ, ତାଙ୍କର ଗତିଶୀଳତା ନାହିଁ । ଈଶ୍ୱର ପ୍ରଥମେ ଆଦି ସଂଚାଳକ ଭାବେ ବସ୍ତୁକୁ ଗତିଶୀଳ କରାଇଛନ୍ତି । ବସ୍ତୁ ଗତିଶୀଳ ହେବାଦ୍ୱାରା ସେଥିରେ ଫର୍ମ ପ୍ରକାଶିତ ହୋଇଛି । ବସ୍ତୁ ଗତିଶୀଳ ହୋଇଛି ଫର୍ମ ଧାରଣ କରିବା ପାଇଁ । ଯେ ପରମ ଫର୍ମ (Absolute Form) ସେ ଅନ୍ୟ କୌଣସି ସ୍ଥିତିକୁ ଯିବେ ନାହିଁ, ସୁତରାଂ ପରମ ଫର୍ମ ଭାବରେ ସେ ଗତିହୀନ । ପୁନଶ୍ଚ ଏହି ଯୁକ୍ତିକୁ ଅନ୍ୟ ଭାବରେ ପ୍ରକାଶ କରାଯାଇପାରେ । ଏକ ବସ୍ତୁ ଗତିଶୀଳ ହେବା ପାଇଁ ଅନ୍ୟ ବସ୍ତୁର ଆବଶ୍ୟକତା ଦରକାର କରିଥାଏ । ଏକ ଗତିଶୀଳ ବସ୍ତୁ ଅନ୍ୟ ବସ୍ତୁକୁ ଗତିଶୀଳ କରିଥାଏ । ଯେଉଁ ବସ୍ତୁ ଅନ୍ୟ ବସ୍ତୁକୁ ଗତିଶୀଳ କରାଏ, ନିଜେ ଗତିଶୀଳ ହେବାକୁ ଅନ୍ୟ ଏକ ଗତିଶୀଳ ବସ୍ତୁର ସାହାଯ୍ୟ ପାଇଥାଏ । ଏହି ଧାରା ଅନ୍ତହୀନ ଭାବରେ ଆଗକୁ ଯିବ ନାହିଁ । ଏହି ପ୍ରକ୍ରିୟା ଅସୀମ ଭାବରେ ଗତି ନକରି ଏକ ଆଦି ସଞ୍ଚାଳକକୁ ସ୍ୱୀକାର କରିବାକୁ ହେବ । ଏହି ଆଦି ସଂଚାଳକଙ୍କୁ ଈଶ୍ୱର ଭାବରେ ନେବାକୁ ହେବ । ଏକ ଆଦି ସଞ୍ଚାଳକ ଈଶ୍ୱରଙ୍କୁ ସ୍ୱୀକାର ନକଲେ ଜଗତରେ ଗତିଶୀଳତାକୁ ବ୍ୟାଖ୍ୟା କରାଯାଇ ପାରିବ ନାହିଁ ।

ପ୍ରଦତ୍ତ ଯୁକ୍ତି ଆରିଷ୍ଟୋଟଲଙ୍କ ମାନଦଣ୍ଡରୁ ଯଥାର୍ଥ ନୁହେଁ । କାରଣ ଏହି ଯୁକ୍ତି ଏକ ଯାନ୍ତ୍ରିକ ବ୍ୟାଖ୍ୟାର ଚିତ୍ର ପ୍ରଦାନ କରେ । ଏହି ଯୁକ୍ତିରୁ ଏହି ଭାବନା ଆସେ ଯେ ଆଦି ସଞ୍ଚାଳକ ସମୟର ଆରମ୍ଭରୁ ଥିଲେ ଓ ସେ ପ୍ରଥମେ ଜଗତକୁ ଗତିଶୀଳ କରାଇଥିଲେ । ସେ ଜଗତକୁ ଗତିଶୀଳ କରାଇବାରୁ ସୃଷ୍ଟି ପ୍ରକ୍ରିୟା ଆରମ୍ଭ ହେଲା । ଅର୍ଥାତ୍ ଈଶ୍ୱର ନିମିତ୍ତ କାରଣ ଭାବରେ ବିଶ୍ୱର ପ୍ରଥମ ସଞ୍ଚାଳକ ହୋଇ ସୃଷ୍ଟି ପ୍ରକ୍ରିୟା ଆରମ୍ଭ କରିଥିଲେ । କିନ୍ତୁ ଆରିଷ୍ଟୋଟଲଙ୍କର ଏହା ବିଚାର ନଥିଲା । ଆରିଷ୍ଟୋଟଲଙ୍କ ମତରେ ନିମିତ୍ତ କାରଣ ହେଉଛି ଉଦ୍ଦେଶ୍ୟ ବା ପ୍ରୟୋଜନ କାରଣ । ଈଶ୍ୱର ଅନ୍ତିମ ଲକ୍ଷ୍ୟ ଭାବରେ ପ୍ରଥମ ସଞ୍ଚାଳକ ହୋଇପାରନ୍ତି । ସମୟ ମାନଦଣ୍ଡରୁ ବିଶ୍ୱ ବା ବିଶ୍ୱର ଗତିଶୀଳତାର ଆରମ୍ଭ ନାହିଁ । ଏକ ଯାନ୍ତ୍ରିକ କାରଣର କାରଣ ରହେ, ତାର କାରଣ ରହେ ଓ ଏହା ଏକ ସୀମାହୀନ ପ୍ରକ୍ରିୟା । ଈଶ୍ୱର ଯାନ୍ତ୍ରିକ ଧାରାରେ ପ୍ରଥମ ବା ଆଦିକରଣ ନୁହନ୍ତି । ଅର୍ଥାତ୍ ଜଗତ ଆରମ୍ଭରୁ ଥିଲା ଓ ଈଶ୍ୱର ଜଗତର ସୃଷ୍ଟି ପ୍ରକ୍ରିୟା ଆରମ୍ଭ କଲେ ଏହା ଆରିଷ୍ଟୋଟଲଙ୍କର ବିଚାର ନଥିଲା । ବରଂ ଆରିଷ୍ଟୋଟଲ ଈଶ୍ୱରଙ୍କୁ ପ୍ରୟୋଜନ କାରଣ ଭାବେ ଶେଷରୁ ଏହା ଆରମ୍ଭ କରିବା ଭାବିଛନ୍ତି । ସକଳ ଆରମ୍ଭ ପ୍ରକ୍ରିୟାର ଏକ ତର୍କସଂଗତ ପୂର୍ବବର୍ତ୍ତୀ ଭାବେ ଈଶ୍ୱରଙ୍କୁ ନିଆଯାଉଛି । ସମୟ ମାନଦଣ୍ଡରୁ ଜଗତର ଆରମ୍ଭ ନାହିଁ କି ପରିସମାପ୍ତି ନାହିଁ ବୋଲି ଆରିଷ୍ଟୋଟଲ ବିଚାର କରିଛନ୍ତି । ଏହା ଏକ ଚିରନ୍ତନ ଧାରା । ଏହାର ଅନ୍ତିମ ସ୍ଥିତି ହେଉଛି ଏହାର ପରମ ଫର୍ମ, କିନ୍ତୁ ଏହା କେବେହେଲେ ଉପଲବ୍ଧ ହୋଇପାରିବ ନାହିଁ । ଫର୍ମର ଏକ ପରମ (absolute) ସ୍ଥିତି ନାହିଁ, କାରଣ ଆରିଷ୍ଟୋଟଲଙ୍କ ଦର୍ଶନରେ ବସ୍ତୁ ବ୍ୟତୀତ ଫର୍ମର ଅବସ୍ଥିତି ସମ୍ଭବ ନୁହେଁ ।

ଈଶ୍ୱର ଆରିଷ୍ଟୋଟଲଙ୍କ କଳ୍ପନାରେ ହେଉଛନ୍ତି ଶୁଦ୍ଧ ବିଚାର । ତେବେ କାହାର ବିଚାର ? ଈଶ୍ୱର ହେଉଛନ୍ତି ପରମ ଫର୍ମ, ସେ ବସ୍ତୁର ଫର୍ମ ନୁହନ୍ତି ପରନ୍ତୁ ଫର୍ମର ଫର୍ମ । ଈଶ୍ୱରଙ୍କ ଫର୍ମର ବସ୍ତୁ ହେଉଛି ଫର୍ମ । ଏଠାରେ ଫର୍ମ

ହେଉଛି ବିଚାର, ଯାହା ସାମାନ୍ୟ (universal) । ଆରିଷ୍ଟୋଟଲ ବି ଈଶ୍ୱରଙ୍କର ସଂଜ୍ଞା ଦେବାକୁ ଯାଇ କହିଛନ୍ତି ବିଚାରର ବିଚାର (Thought of thought) । ଈଶ୍ୱରଙ୍କ କ୍ଷେତ୍ରରେ ଉଭୟ ଉଦ୍ଦେଶ୍ୟ ଓ ବିଧେୟ ହେଉଛି ବିଚାର । ଈଶ୍ୱର ବା ବିଚାରର ବିଷୟ ହେଉଛି ବିଚାର । ସାଂପ୍ରତିକ ପରିଭାଷାରେ କହିଲେ ଈଶ୍ୱର ହେଉଛନ୍ତି ଆତ୍ମ-ଚେତନା । ଈଶ୍ୱରଙ୍କ ଚେତନାର ବସ୍ତୁ ହେଉଛି ଚେତନା । ଈଶ୍ୱର ନିଜ ଚେତନା ବହିର୍ଭୂତ ଅନ୍ୟ କିଛି ଚିନ୍ତା କରିବା ଅଚିନ୍ତନୀୟ । ମନୁଷ୍ୟ ବାହ୍ୟ ବସ୍ତୁ ବିଷୟରେ ଚିନ୍ତାକରେ, ଆମ ଚିନ୍ତାର ବିଷୟ ଆମ ବହିର୍ବର୍ତ୍ତୀ । କିନ୍ତୁ ଈଶ୍ୱର ହେଉଛନ୍ତି ଅନ୍ତିମ ପ୍ରୟୋଜନ ବା ଚରମ ଲକ୍ଷ୍ୟ (absolute end) । ଈଶ୍ୱରଙ୍କ ବହିର୍ବର୍ତ୍ତୀ କୌଣସି କିଛି ରହିନପାରେ । ଯଦି ଈଶ୍ୱରଙ୍କ ବହିର୍ବର୍ତ୍ତୀ କିଛି ବିଷୟ ରହିବ ତାହା ଈଶ୍ୱରଙ୍କୁ ସୀମିତ କରିବ ବା ତାଙ୍କୁ ନିର୍ଦ୍ଧାରିତ କରିବ । ତେଣୁ ଈଶ୍ୱରଙ୍କର ବିଚାର କେବଳ ବିଚାର, ବିଚାର ବ୍ୟତୀତ ଅନ୍ୟ କିଛି ନୁହେଁ । ଆରିଷ୍ଟୋଟଲ ବି ଅନ୍ୟ ସ୍ଥାନରେ କହିଛନ୍ତି – "ଈଶ୍ୱର ଶାଶ୍ୱତ ଆନନ୍ଦ ଭିତରେ ରହନ୍ତି" । ତାଙ୍କର ଆନନ୍ଦ ହେଉଛି ତାଙ୍କର ପରିପୂର୍ଣ୍ଣତା । ଏହିପରି ନାନା ଆଳଙ୍କାରିକ ଭାଷାରେ ଆରିଷ୍ଟୋଟଲ ବେଳେ ବେଳେ ଈଶ୍ୱରଙ୍କର ବର୍ଣ୍ଣନା ଦେଇଛନ୍ତି ।

ଏହି ପ୍ରସଙ୍ଗରେ ଅନ୍ୟ ଏକ ବିଷୟ ହେଉଛି : ଈଶ୍ୱରଙ୍କ ବ୍ୟକ୍ତି ସତ୍ତାରେ ଆରିଷ୍ଟୋଟଲ ବିଶ୍ୱାସ କରୁଥିଲେ କି ନାହିଁ ? ଏହି ପ୍ରସଙ୍ଗ କୌଣସି ପ୍ରମୁଖ ଗ୍ରୀକ୍ ଦାର୍ଶନିକ, ପ୍ଲେଟୋ ହୁଅନ୍ତୁ ବା ଆରିଷ୍ଟୋଟଲ ହୁଅନ୍ତୁ, କେହି ଆଲୋଚନା କରିନାହାନ୍ତି । ଏହି ପ୍ରସଙ୍ଗ ଆଧୁନିକ କାଳରେ ଦର୍ଶନ ଚର୍ଚ୍ଚା କ୍ଷେତ୍ରକୁ ଆସିଛି । ଆଲୋଚକମାନେ ମୁକ୍ତ ମନ ଦେଇ ଏହି ପ୍ରଶ୍ନର ବିଚାର କରିଛନ୍ତି । ଆରିଷ୍ଟୋଟଲ ପରମ ସତ୍ତା, ଫର୍ମ ଇତ୍ୟାଦି ପ୍ରତ୍ୟୟ ବ୍ୟବହାର ନ କରି ଈଶ୍ୱର (God) ଶବ୍ଦ ବ୍ୟବହାର କରିଥିବାରୁ ସେ ଈଶ୍ୱରଙ୍କର ବ୍ୟକ୍ତି-ସତ୍ତା ରହିଥିବା ଭାବନାକୁ ଗ୍ରହଣ କରନ୍ତି ବୋଲି କେତେକ ଭାବନ୍ତି । ପୁନଶ୍ଚ ଈଶ୍ୱର ପରମ ବା ଶାଶ୍ୱତ ଆନନ୍ଦ ଭିତରେ ରହନ୍ତି ଭାବନାକୁ ଯଦି ଆକ୍ଷରିକ ଅର୍ଥରେ ନିଆଯିବ ତେବେ ଈଶ୍ୱରଙ୍କ ବ୍ୟକ୍ତି-ସତ୍ତାର ଚିତ୍ର ଆସିବ । ହୁଏତ ଏଠାରେ କୁହାଯାଇପାରିବ ଯେ ଆରିଷ୍ଟୋଟଲ କେବଳ ଆଳଙ୍କାରିକ ଭାଷା ପ୍ରୟୋଗ କରି ଏହା କହିଛନ୍ତି, ଯାହା ତାଙ୍କର ଉଦ୍ଦେଶ୍ୟ ନୁହେଁ । ପ୍ରକୃତରେ ଆଳଙ୍କାରିକ, ସାଙ୍କେତିକ ଓ ରୂପକ ଭାଷା ଥିଲା ପ୍ଲେଟୋଙ୍କ ବର୍ଣ୍ଣନା ଶୈଳୀ । ଆରିଷ୍ଟୋଟଲ ଆଳଙ୍କାରିକ ଓ କାବ୍ୟିକ ଭାଷା ପ୍ରୟୋଗର ପକ୍ଷପାତୀ ନଥିଲେ । ବରଂ ସ୍ପଷ୍ଟ ଓ ତର୍କଶୀଳ ଭାବରେ ବିଚାର ବ୍ୟକ୍ତ କରିବାର ଧାରାକୁ ଗ୍ରହଣ କରୁଥିଲେ ଓ ପ୍ଲେଟୋଙ୍କର କେତେକ ଭାବନାକୁ ସ୍ପଷ୍ଟ କରୁଥିଲେ । ସେ ଯେ ନିଜର ଏହି ଧାରାକୁ ପରିହାର କରି ଆଳଙ୍କାରିକ ଭାବରେ ନିଜର ବିଚାର ବ୍ୟକ୍ତ କରିବେ ଏହା କହିବା ସମୀଚୀନ ମନେହୁଏ ନାହିଁ ।

ଅନ୍ୟ ସମ୍ଭାବନାଟି ହେଉଛି ଆରିଷ୍ଟୋଟଲ ଈଶ୍ୱରଙ୍କ ବ୍ୟକ୍ତି ସତ୍ତାରେ ବିଶ୍ୱାସ କରୁ ନଥିଲେ । ପ୍ରଥମେ ଏଠାରେ କୌଣସି ଜଟିଳ ପ୍ରସଙ୍ଗ ଭିତରକୁ ନ ଯାଇ ପ୍ରଥମେ ଦେଖାଯାଉ ବ୍ୟକ୍ତି ସତ୍ତା କହିଲେ ପ୍ରକୃତରେ କ'ଣ ବୁଝାଏ । ଗାନ୍ଧୀ, ଗୋପବନ୍ଧୁ, ସକ୍ରେଟିସ୍ ଜଣେ ଜଣେ ବ୍ୟକ୍ତି । ପ୍ରତ୍ୟେକ ବ୍ୟକ୍ତି ଏକ ବ୍ୟକ୍ତିତ୍ୱର ଅଧିକାରୀ ଯିଏ ନିଜ ଜୀବନ କାଳରେ ସଚେତନ ଭାବରେ ଜୀବନ ନିର୍ବାହ କରିଥାନ୍ତି । କିନ୍ତୁ ଈଶ୍ୱରଙ୍କ କ୍ଷେତ୍ରରେ ଆରିଷ୍ଟୋଟଲ କହିବେ ଯେ ଈଶ୍ୱର ହେଉଛନ୍ତି ପରମ ଫର୍ମ । ଯାହା ଫର୍ମ ତାହା ସାମାନ୍ୟ । ଯାହା ସାମାନ୍ୟ, ତାହା ଏକ ବିଶେଷ

ନୁହେଁ । ଯାହା ବିଶେଷ ନୁହେଁ ତାହାର ବ୍ୟକ୍ତିତ୍ୱ ରହିବା ସମ୍ଭବପର ନୁହେଁ । ସୁତରାଂ ଏହି ଯୁକ୍ତି ଅନୁଯାୟୀ ଈଶ୍ୱର ଏକ ବ୍ୟକ୍ତି ନୁହନ୍ତି, ଅର୍ଥାତ୍ ତାଙ୍କର ବ୍ୟକ୍ତି ସତ୍ତା ନାହିଁ । ପୁନଶ୍ଚ ଫର୍ମ ବସ୍ତୁ ବ୍ୟତୀତ ରହିବା ସମ୍ଭବପର ନୁହେଁ । ଯେହେତୁ ଈଶ୍ୱର ହେଉଛନ୍ତି ବସ୍ତୁବିହୀନ ଫର୍ମ, ଈଶ୍ୱର ଯେ ଅସ୍ତିତ୍ୱଯୁକ୍ତ ଏହା କୁହାଯାଇ ପାରିବ ନାହିଁ, ଯଦିବା ଈଶ୍ୱର ପରମାର୍ଥିକ ସତ୍ତା ବୋଲି କୁହାଯାଇ ପାରିବ । ଏଣୁ ଈଶ୍ୱର ସ୍ଥିତିଶୀଳ ନୁହନ୍ତି ବା ବ୍ୟକ୍ତି ନୁହନ୍ତି । ବାସ୍ତବତାକୁ ଅସ୍ତିତ୍ୱଯୁକ୍ତ କରିବାର ଅର୍ଥ ହେବ ଯାହା ସାମାନ୍ୟ ତାକୁ ବ୍ୟକ୍ତି ବା ବିଶେଷରେ ପରିବର୍ତ୍ତନ କରିବା । ପ୍ଲେଟୋ ସାମାନ୍ୟ ମାନଙ୍କୁ ଅସ୍ତିତ୍ୱଯୁକ୍ତ କରି ସେମାନଙ୍କୁ ବିଶେଷ ସ୍ତରକୁ ଆଣିଥିବାରୁ ଆରିଷ୍ଟୋଟଲ ତାଙ୍କୁ ସମାଲୋଚନା କରିଛନ୍ତି । ପ୍ଲେଟୋ ତାଙ୍କର ଆଇଡିଆ ବା ପ୍ରତ୍ୟୟମାନଙ୍କୁ ବିଶେଷ କରି ସେମାନଙ୍କର ଅସ୍ତିତ୍ୱ ଥିବା କହିଥିବାରୁ ଆରିଷ୍ଟୋଟଲ ଏହାକୁ ସଂଶୋଧନ କରିବାକୁ ପ୍ରୟାସୀ ହୋଇଛନ୍ତି । ସେ ଯଦି ଈଶ୍ୱରଙ୍କୁ ବ୍ୟକ୍ତିସତ୍ତା ଆରୋପ କରିବେ ତେବେ ସେ ନିଜେ ପ୍ଲେଟୋଙ୍କ ତ୍ରୁଟି କରିବସିବେ । ଆରିଷ୍ଟୋଟଲଙ୍କ ସମଗ୍ର ଦାର୍ଶନିକ ସିଦ୍ଧାନ୍ତ ସହିତ ଏହି ଭାବଧାରା ସଂହତ ହେବ ନାହିଁ ।

ଏହି ଆଲୋଚନାରୁ ଦୁଇଟି ସମ୍ଭାବନାର ପ୍ରସଙ୍ଗ ଆସୁଛି, ଓ ପ୍ରତ୍ୟେକ ସମ୍ଭାବନା ସହ କେତେକ ଜଟିଳତା ସଂପୃକ୍ତ ହୋଇ ରହିଛି । ଆରିଷ୍ଟୋଟଲଙ୍କ ଈଶ୍ୱର ପ୍ରତୀତିକୁ ଯେପରି ବ୍ୟାଖ୍ୟା କଲେ ବି କେତେକ ସମସ୍ୟାର ସମ୍ମୁଖୀନ ହେବାକୁ ପଡିବ । ଯଦି ଈଶ୍ୱର ବ୍ୟକ୍ତି ନୁହନ୍ତି ଓ ତାଙ୍କର ବ୍ୟକ୍ତି ସତ୍ତା ନାହିଁ ବୋଲି କୁହାଯିବ, ତେବେ ଆରିଷ୍ଟୋଟଲଙ୍କ ଭାଷା ଆଳଙ୍କାରିକ ବୋଲି ନିଆଯିବ । ଆରିଷ୍ଟୋଟଲ ଯେଉଁ ଭାଷାରେ ଈଶ୍ୱରଙ୍କର ବର୍ଣ୍ଣନା କରିଛନ୍ତି ତାହା ଆଳଙ୍କାରିକ ଓ ସେ ପ୍ରାୟତଃ ଆଳଙ୍କାରିକ ଭାଷାକୁ ପସନ୍ଦ କରନ୍ତି ନାହିଁ । ଏହି ବ୍ୟାଖ୍ୟାନ-ଅର୍ଥାତ୍ ଈଶ୍ୱର ବ୍ୟକ୍ତି ନୁହନ୍ତି ଓ ତାଙ୍କର ବ୍ୟକ୍ତି ସତ୍ତା ନାହିଁ- ଆରିଷ୍ଟୋଟଲଙ୍କ ଦାର୍ଶନିକ ସିଦ୍ଧାନ୍ତ ସହ ସୁସଂହତ ହେବ ଯଦିବା ଏ କ୍ଷେତ୍ରରେ ଆରିଷ୍ଟୋଟଲଙ୍କ ଭାଷା ପ୍ରୟୋଗ ଯଥାର୍ଥ ବା ସୁସଂହତ ନୁହେଁ । ଈଶ୍ୱର ବ୍ୟକ୍ତି ନୁହନ୍ତି କହିବା ଦ୍ୱାରା ତାଙ୍କ ବିଚାରରେ ବିରୋଧାଭାସ ରହିବ ନାହିଁ, କେବଳ ଭାଷାଗତ ଅସଂହତି ଆସିବ । ଆରିଷ୍ଟୋଟଲ ଦର୍ଶନକୁ ସ୍ପଷ୍ଟ, ତର୍କସଂଗତ ଓ ବୈଜ୍ଞାନକ ଧାରାରେ ସର୍ବଦା ବ୍ୟକ୍ତ କରିବାକୁ ଚାହିଁଛନ୍ତି ଓ ଆଳଙ୍କାରିକ ଭାଷା ବ୍ୟବହାରକୁ ପରିହାର କରିଛନ୍ତି । ତେବେ ଈଶ୍ୱରଙ୍କ ବିଷୟରେ ବର୍ଣ୍ଣନା ଦେବା ବେଳେ ସେ ଆଳଙ୍କାରିକ ଭାଷାକୁ ପରିହାର କରିପାରି ନାହାନ୍ତି ଓ ଅଳଙ୍କାର ତଥା ରୂପକ ମାଧ୍ୟମରେ ଈଶ୍ୱରଙ୍କ ବିଷୟରେ ବର୍ଣ୍ଣନା ଦେଇଛନ୍ତି । କେତେକ ତତ୍ତ୍ୱମୀମାଂସୀୟ ପ୍ରତ୍ୟୟମାନଙ୍କର ବ୍ୟାଖ୍ୟା କଲାବେଳେ ସେମାନଙ୍କର ଅମୂର୍ତ୍ତୀୟ ଓ ଦୁର୍ବୋଧ ସ୍ୱରୂପ ଯୋଗୁ ସେସବୁ କ୍ଷେତ୍ରରେ ଅଳଙ୍କାର ଓ ରୂପକ ପ୍ରୟୋଗ କରି ବ୍ୟାଖ୍ୟା କରିବାର ପ୍ରୟାସ ହୋଇଥାଏ । ସେମାନଙ୍କୁ ସାଧାରଣ ଭାବେ ବୁଝାଇବା ଜଟିଳ ମନେ ହେଉଥିବା କାରଣରୁ ସ୍ଥଳ ବିଶେଷରେ ଆଳଙ୍କାରିକ ଭାଷାର ସାହାଯ୍ୟ ନିଆଯାଇ ସେମାନଙ୍କର ଅର୍ଥକୁ ସ୍ପଷ୍ଟ କରାଯାଇଥାଏ । ସାଧାରଣ ଭାଷା ବ୍ୟବହାର କ୍ଷେତ୍ରରେ ସ୍ଥଳବିଶେଷରେ ରୂପକର ବ୍ୟବହାର କରାଯାଇ ତାହା ମାଧ୍ୟମରେ ଏକ ଜଟିଳ କଥାକୁ ସରଳ କରାଯାଇଥାଏ । ବେଳେବେଳେ ଦର୍ଶନ କ୍ଷେତ୍ରରେ ଜଟିଳ ଓ ଅମୂର୍ତ୍ତୀୟ ଭାବନାକୁ ବୁଝାଇବାକୁ ଦାର୍ଶନିକମାନେ ଅଳଙ୍କାର, ଉପମା ବା ମେଟାଫରର

ବ୍ୟବହାର କରିଥାନ୍ତି । ଆରିଷ୍ଟୋଟଲ ଇଶ୍ୱର ଭାବନାକୁ ବ୍ୟାଖ୍ୟା କଲାବେଳେ ଏହିପରି କିଛି ଆଳଙ୍କାରିକ ଭାଷାର ପ୍ରୟୋଗ କରିବାକୁ ବାଧ ହୋଇଛନ୍ତି । ତାଙ୍କର ଭାଷା ପ୍ରୟୋଗ କ୍ଷେତ୍ରରେ କେତେକ ବୈଷୟିକ ଅସଂଗତି ରହିଛି, କିନ୍ତୁ ତାଙ୍କ ଚିନ୍ତାଧାରାରେ ବିରୋଧାଭାସ ବା ଅସଂହତି ନାହିଁ ।

ଯଦି ଇଶ୍ୱରଙ୍କୁ ଏକ ବ୍ୟକ୍ତି ଭାବରେ ଗ୍ରହଣ କରାଯିବ ତେବେ ଆରିଷ୍ଟୋଟଲଙ୍କ ଦର୍ଶନରେ ଗୁରୁତର ବିରୋଧାଭାସ ଆସିବ । ଇଶ୍ୱରଙ୍କୁ ଏକ ବ୍ୟକ୍ତି ଭାବରେ ନେବା ଅର୍ଥ ତାଙ୍କ ମୂଳ ଭାବନା କ୍ଷେତ୍ରରେ ଗୁରୁତର ସମସ୍ୟା ସୃଷ୍ଟି ହେବ । ଆରିଷ୍ଟୋଟଲଙ୍କ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତ କ୍ଷେତ୍ରରେ ଦେଖାଯାଏ ଯେ ଯାହା ପରମ ତତ୍ତ୍ୱ ତାହା ସର୍ବଦା ସାମାନ୍ୟ । ତେବେ ସାମାନ୍ୟ ବିଶେଷ ବ୍ୟତୀତ ରହିବା ସମ୍ଭବ ନୁହେଁ । ପ୍ଲେଟୋ ପରମ ତତ୍ତ୍ୱକୁ ସର୍ବଦା ସାମାନ୍ୟ ଭାବରେ ନେଇଛନ୍ତି, ଯାହା ତାଙ୍କର ଆଇଡିଆ ବା ଶୁଦ୍ଧସତ୍ତା । ଆରିଷ୍ଟୋଟଲ ପରମ ତତ୍ତ୍ୱକୁ ସାମାନ୍ୟ ନେଇ ସେମାନଙ୍କୁ ବିଶେଷ ପାଖରେ ବ୍ୟକ୍ତି କରିଛନ୍ତି । ତାଙ୍କର ଫର୍ମ ବସ୍ତୁ ଭିତରେ ହିଁ ବ୍ୟକ୍ତ ହୋଇଛି । ଆରିଷ୍ଟୋଟଲ ଇଶ୍ୱରଙ୍କୁ ପରମ ଫର୍ମ (Absolute Form) ଭାବରେ ସ୍ୱୀକାର କରିବା ପରେ ତାଙ୍କୁ ବ୍ୟକ୍ତିସତ୍ତା ଭାବରେ ବ୍ୟକ୍ତ କଲେ ତାଙ୍କ ଦର୍ଶନ ଗୁରୁତର ବିରୋଧାଭାସର ସମ୍ମୁଖୀନ ହେବ । ଏପରି ଏକ ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତ କ୍ଷେତ୍ରରେ ଆରିଷ୍ଟୋଟଲ ବିଚାରରେ ଯେ ବିରୋଧାଭାସକୁ ଗ୍ରହଣ କରିବେ ତାହା ଆଶା କରାଯାଇ ନପାରେ । ସେପରି ବିରୋଧାଭାସକୁ ସ୍ୱୀକାର କରିବା ଅର୍ଥ ତାଙ୍କର ସକଳ ମୂଳ ସିଦ୍ଧାନ୍ତକୁ ପ୍ରତ୍ୟାଖ୍ୟାନ କରିବା ।

ତେଣୁ ଆରିଷ୍ଟୋଟଲଙ୍କର ଇଶ୍ୱର ଏକ ବ୍ୟକ୍ତି ନୁହନ୍ତି । ଇଶ୍ୱର ହେଉଛନ୍ତି ବିଚାର ବା ଚେତନା । ତେବେ ଏହା କୌଣସି ବ୍ୟକ୍ତିର ବିଚାର ବା ଚେତନା ନୁହେଁ । ଇଶ୍ୱର ବ୍ୟକ୍ତିନିଷ୍ଠ ଚେତନା ନୁହନ୍ତି । ଇଶ୍ୱର ପରିପୂର୍ଣ୍ଣ ଫର୍ମ ଓ ଶୁଦ୍ଧ ବିଚାର ବା ଚେତନା ।

### ୮.୪ ଆଚାରମୀମାଂସା (Ethics)

ଆରିଷ୍ଟୋଟଲଙ୍କ ଆଚାରମୀମାଂସା ବା ନୀତିଶାସ୍ତ୍ର ଅଧିକ ବାସ୍ତବଧର୍ମୀ ମନେ ହୁଏ । ଏକ ଉତ୍ତମ ଜୀବନ କିପରି ବଞ୍ଚିହେବ ଓ ଜୀବନ କିପରି ଶୁଭପ୍ରଦ ବା ମଙ୍ଗଳମୟ ହେବ ଏହି ପ୍ରଶ୍ନ ଉପରେ ଆରିଷ୍ଟୋଟଲ ଚିନ୍ତା ପ୍ରକଟ କରିଛନ୍ତି । ପ୍ଲେଟୋଙ୍କର ବିଚାର କେବଳ ଆଦର୍ଶସ୍ଥାନୀୟ ବା ୟୁଟୋପିଆନ ହେବାବେଳେ ଆରିଷ୍ଟୋଟଲଙ୍କର ଭାବନା ଅଧିକ ବାସ୍ତବବାଦୀ ହେବା ଜଣାପଡେ । ଏକ ଉତ୍ତମ ଜୀବନ କିପରି ବଞ୍ଚିହେବ ଓ ଉତ୍ତମ ଜୀବନଦ୍ୱାରା କିପରି ଜୀବନର ଗୁଣାତ୍ମକ ମୂଲ୍ୟ ବୃଦ୍ଧି ପାଇବ ଆରିଷ୍ଟୋଟଲ ତାହା ନେଇ ନିଜର ଚିନ୍ତା ବ୍ୟକ୍ତ କରିଛନ୍ତି ।

ନୀତିଶାସ୍ତ୍ରରେ ଯେଉଁ ପ୍ରଶ୍ନଟି ଗମ୍ଭୀରତାର ସହ ଆଲୋଚିତ ହୋଇଥାଏ ତାହା ହେଲା-ଜୀବନରେ ପୁରୁଷାର୍ଥ ବା ଚରମ ଲକ୍ଷ୍ୟ କେଉଁଥିରେ ନିହିତ ? ପ୍ରତ୍ୟେକ ବ୍ୟକ୍ତି ଜୀବନରେ ବହୁ କଥା ଚାହେଁ । ବ୍ୟକ୍ତି ଗୋଟିଏ କଥା ଅନ୍ୟ କଥା ପାଇଁ ଚାହେଁ, ତାହା ପୂରଣ ହେଲେ ପୁଣି ଅନ୍ୟ ଲକ୍ଷ୍ୟ ପୋଷଣ କରେ ଓ ଏହା ସୀମାହୀନ ଭାବରେ ଜୀବନରେ ଲାଗି ରହିଥାଏ । ଆମେ କହୁ ଜଣେ ଭଲ ପାଠ ପଢ଼ିବା ଦରକାର, କାହିଁକି ନା ଭଲ ପାଠ ପଢ଼ିଲେ

ଜଣେ ପ୍ରତିଯୋଗିତାମୂଳକ ସମାଜରେ ସଫଳ ହେବ, ସଫଳତା ଲାଭ କଲେ ଜଣେ ଭଲ କର୍ମସଂସ୍ଥାନ ପାଇବ, କର୍ମସଂସ୍ଥାନ ପାଇଲେ ସ୍ୱାବଲମ୍ବୀ ହେବ ଇତ୍ୟାଦି । ଏହିପରି ଦେଖିଲେ ଆମେ ଅନେକ କାମନା କରୁ, କାମନାର ଅନ୍ତ ନଥାଏ । ଜୀବନରେ ଅନେକ ଲକ୍ଷ୍ୟ ଥାଏ ଓ ପ୍ରତ୍ୟେକ ଲକ୍ଷ୍ୟ ପାଇଁ ବିଭିନ୍ନ ସାଧନ ଆବଶ୍ୟକ ହୁଏ । ବିଭିନ୍ନ ସାଧନ ଓ ନାନା ଲକ୍ଷ୍ୟମାନଙ୍କର କେବଳ ସାଧନ ମୂଲ୍ୟ (instrumental value) ରହିଥାଏ ଓ ବେଳକେ ସେସବୁ ହୁଏତ ନିରର୍ଥକ ମନେହୋଇପାରେ । ତେବେ ଜୀବନରେ ଏପରି କିଛି ଅଛିକି ଯାହା ଅନ୍ୟ ଲକ୍ଷ୍ୟ ପାଇଁ ପୋଷଣ କରାଯାଏ ନାହିଁ, ଯାହାର ସାଧନ ମୂଲ୍ୟ ପରିବର୍ତ୍ତେ ସ୍ୱତଃମୂଲ୍ୟ ଥାଏ ? ଯାହା ଅନ୍ୟ କିଛି ପାଇଁ ଆଶା କରାଯାଏ ନାହିଁ ବରଂ ପୁରୁଷାର୍ଥ ବା ଏକ ଚରମ ଲକ୍ଷ୍ୟ ପାଇଁ ଆଶା କରାଯାଏ – ତାହା କ'ଣ ହୋଇପାରେ ? ଏପରି କିଛି ଅଛି କି ଯାହାର ଉଦ୍ଦେଶ୍ୟ ବା ଲକ୍ଷ୍ୟ ଅନ୍ୟ ଲକ୍ଷ୍ୟର ଅନ୍ତର୍ଗତ ନୁହେଁ, ବରଂ ସମସ୍ତ ଲକ୍ଷ୍ୟ ଏହାର ଅନ୍ତର୍ଗତ ? ସେହି ଚରମ ଲକ୍ଷ୍ୟ (Summum bonum) କୁ ଆରିଷ୍ଟୋଟଲ ଆନନ୍ଦ କହିଛନ୍ତି । ସମସ୍ତେ ଜୀବନରେ ଆନନ୍ଦ ଚାହାନ୍ତି, ସବୁ କାର୍ଯ୍ୟ ପଶ୍ଚାତରେ ଏହି ଆନନ୍ଦ ପାଇବାର ଲକ୍ଷ୍ୟ ନିହିତ ଥାଏ । ସମସ୍ତେ ଏହି ଶବ୍ଦଟି ସହ ଏକମତ ବୋଲି ଆରିଷ୍ଟୋଟଲ ମଧ୍ୟ ମତ ଦେଇଛନ୍ତି । କିନ୍ତୁ ଆନନ୍ଦ କହିଲେ ପ୍ରକୃତରେ କ'ଣ ବୁଝାଯାଏ ? କେତେକଙ୍କ ମତରେ ଆନନ୍ଦର ଅର୍ଥ ହେଉଛି ଏକ ସୁଖକର ଜୀବନ । ଅନ୍ୟ ଏକ ମତରେ ଏହାର ତାତ୍ପର୍ଯ୍ୟ ହେଉଛି ସମସ୍ତ ସୁଖର ପରିତ୍ୟାଗ ହିଁ ଉତ୍ତମ ଜୀବନ । ଏହି ବିରୋଧାଭାସ ପୃଷ୍ଠଭୂମିରେ ଆନନ୍ଦର କିଛି ବ୍ୟାଖ୍ୟା ଆରିଷ୍ଟୋଟଲ କରିଛନ୍ତି ।

ଆରିଷ୍ଟୋଟଲ ଯେଉଁ ଆନନ୍ଦର କଥା କହୁଛନ୍ତି ଆଧୁନିକ ସମୟରେ ଉପଯୋଗିତାବାଦୀ (utilitarian) ମାନେ ମଧ୍ୟ ତାହା କହିଥାନ୍ତି । ତେବେ ଆରିଷ୍ଟୋଟଲଙ୍କ ମତ ଓ ଉପଯୋଗିତାବାଦ ମଧ୍ୟରେ ମୌଳିକ ପାର୍ଥକ୍ୟ ରହିଛି । କୌଣସି ଏକ ନୈତିକ କାର୍ଯ୍ୟ ପଶ୍ଚାତରେ ଏକ ବ୍ୟକ୍ତିଗତ ଉପଭୋଗର ବା ସୁଖର କାମନା ରହିଥାଏ । ଆଧୁନିକ ସମୟରେ ଉପଯୋଗିତାବାଦୀ ମାନେ ଆନନ୍ଦକୁ ସୁଖକର ଉପଭୋଗ ଅର୍ଥରେ ନେଇଥାନ୍ତି । ଏହି ଅର୍ଥଠାରୁ ଆରିଷ୍ଟୋଟଲଙ୍କ ମତ ଭିନ୍ନ ରହିଥିଲା । ଆରିଷ୍ଟୋଟଲଙ୍କ ସମୟରେ ଗ୍ରୀକ୍ ମାନସିକତାରେ ଆନନ୍ଦକୁ ଏକ ନୈତିକ ମୂଲ୍ୟ ଭାବରେ ଗ୍ରହଣ କରାଯାଉଥିଲା । ଆରିଷ୍ଟୋଟଲଙ୍କ ପାଇଁ ଏକ କାର୍ଯ୍ୟ ସୁଖଦେଉଛି ବୋଲି ଏହା ଉତ୍ତମ ଏହା କୁହାଯାଇ ପାରିବ ନାହିଁ । ଅପରପକ୍ଷରେ ଏହା ଉତ୍ତମ ହୋଇଥିବାରୁ ଏହା ସୁଖକର । ଉପଯୋଗିତାବାଦ ଅନୁଯାୟୀ ସୁଖାନୁଭୂତି ହେଉଛି ନୈତିକ ଆଦର୍ଶର ମୂଳଭିତ୍ତି । କିନ୍ତୁ ଆରିଷ୍ଟୋଟଲଙ୍କ ମତରେ ଏକ ନୈତିକ ଆଦର୍ଶର ପରିଣାମ ହେଉଛି ସୁଖକର ଅନୁଭୂତି । ଏଣୁ ସେ ଜୀବନର ଚରମ ଲକ୍ଷ୍ୟକୁ ଆନନ୍ଦ ବୋଲି ନେଇଛନ୍ତି । ତେବେ ଏହାଦ୍ୱାରା ସେ ଆନନ୍ଦର ସ୍ୱରୂପ ବା ସଂଜ୍ଞା ବିଷୟରେ କୌଣସି ବିଚାର ବ୍ୟକ୍ତ କରିନାହାନ୍ତି । ସେ ଆନନ୍ଦକୁ ଜୀବନର ଶ୍ରେୟ ବୋଲି କହୁଛନ୍ତି, କିନ୍ତୁ ଆନନ୍ଦର ଅର୍ଥ ବା ତାତ୍ପର୍ଯ୍ୟ ଏହାଦ୍ୱାରା ବ୍ୟକ୍ତ ହେଉନାହିଁ । ସୁତରାଂ ପ୍ରଶ୍ନ ହେଉଛି ଆନନ୍ଦ କହିଲେ କ'ଣ ବୁଝାଏ, ଏହାର ପ୍ରକୃତ ତାତ୍ପର୍ଯ୍ୟ କ'ଣ ?

ଆରିଷ୍ଟୋଟଲଙ୍କ ମାନଦଣ୍ଡରୁ ଏହି ପ୍ରଶ୍ନର ବିଚାର କଲେ ଆମେ ଦେଖିବା ଯେ ଏହାର ବ୍ୟାଖ୍ୟା ତାଙ୍କ ଦାର୍ଶନିକ ସିଦ୍ଧାନ୍ତ ଉପରେ ନିର୍ଭରଶୀଳ । ତାଙ୍କ ମତରେ ପ୍ରକୃତିର ପ୍ରତ୍ୟେକ କିଛି ଲକ୍ଷ୍ୟ ଦିଗରେ ଗତିଶୀଳ । ସେହି

ଲକ୍ଷ୍ୟରେ ଉପନୀତ ହେବା ବା ଲକ୍ଷ୍ୟ ହାସଲ କରିବା ହେଉଛି ସତ୍ତାର ଚରମ ଉତ୍କର୍ଷ । କେବଳ ଇନ୍ଦ୍ରିୟ ସୁଖ ବ୍ୟକ୍ତି ଜୀବନର ଲକ୍ଷ୍ୟ ନୁହେଁ । ମନୁଷ୍ୟେତର ପ୍ରାଣୀମାନେ ନିଜର ଇନ୍ଦ୍ରିୟଦ୍ୱାରା ପରିଚାଳିତ । ସୁତରାଂ ଇନ୍ଦ୍ରିୟ ସୁଖ ପ୍ରାଣୀମାନଙ୍କ ପାଇଁ ଧେୟ । ମନୁଷ୍ୟମାନଙ୍କ ପାଖରେ ବିଚାର ବୁଦ୍ଧି ରହିଛି । ବିଚାରଶୀଳତା ହେଉଛି ମାନବିକ ପ୍ରକୃତିର ମହତ୍ତ୍ୱ । ଏଣୁ ଯାହା ବିଚାରଶୀଳତା ଦ୍ୱାରା ଅଭିପ୍ରେତ ଅର୍ଥାତ୍ ବିଚାରଶୀଳ ଭାବରେ ଯାହା ଶ୍ରେୟ ତାହା ହିଁ ଜୀବନର ଚରମ ଲକ୍ଷ୍ୟ ।

ଆରିଷ୍ଟୋଟଲ ମନୁଷ୍ୟର ପ୍ରକୃତି ଓ ସ୍ୱରୂପ ବିଷୟରେ ତାଙ୍କର ବ୍ୟାଖ୍ୟା ପ୍ରଦାନ କରିଛନ୍ତି । ମନୁଷ୍ୟ ସ୍ୱଭାବରେ ବିଚାର ଓ ବୁଦ୍ଧି ତ ରହିଛି ତାହା ସହିତ ପ୍ରାଣୀସୁଲଭ ଆବେଗ ମଧ୍ୟ ରହିଛି । ମନୁଷ୍ୟ ବିଚାରଶୀଳ ହେଲେ ମଧ୍ୟ ସେ ଜଣେ ପ୍ରାଣୀ । ଉଦ୍ଭିଦମାନଙ୍କ ପରି ତା ପାଖରେ କ୍ଷୁଧା ରହିଛି, ପଶୁମାନଙ୍କ ପରି ତା ପାଖରେ ଆବେଗ ରହିଛି । ମନୁଷ୍ୟ ଜଣେ ପ୍ରାଣୀ ହୋଇଥିବାରୁ କ୍ଷୁଧା, ପ୍ରବୃତ୍ତି ପରି ଆବେଗ ଓ ସମ୍ବେଦନ ତା ପାଖରେ ରହିବା ସ୍ୱାଭାବିକ । ଏସବୁ ସହିତ ମନୁଷ୍ୟ ପାଖରେ ବିଚାର ବୁଦ୍ଧି ମଧ୍ୟ ରହିଛି । ତେବେ ମାନବୀୟ ସଦ୍‌ଗୁଣମାନଙ୍କୁ ଆରିଷ୍ଟୋଟଲ ଦୁଇ ଭାଗରେ ବିଭକ୍ତ କରିଛନ୍ତି । ମହତ୍ତର ସଦ୍‌ଗୁଣମାନ ତାର ବିଚାରଶୀଳତାରୁ ଉଦ୍‌ଭବ ହୋଇଥାଏ । ଚିନ୍ତାକରିବା, ଦାର୍ଶନିକ ବ୍ୟାଖ୍ୟାନରେ ସଂପୃକ୍ତ ହେବା ଇତ୍ୟାଦି ମଧ୍ୟ ତାର ବିଚାରଶୀଳତାରୁ ନିଷ୍ପନ୍ନ ହୋଇଥାଏ । ଏହି ବୌଦ୍ଧିକ କ୍ରିୟାକୁ ଆରିଷ୍ଟୋଟଲ ପ୍ରଜ୍ଞା (dianoetic) ବୋଲି ଅଭିହିତ କରିଛନ୍ତି । ଯେତେବେଳେ ବୁଦ୍ଧି ଆମର କ୍ଷୁଧା ଓ ଆବେଗ ସକଳକୁ ନିୟନ୍ତ୍ରଣ କରିବ, ସେତେବେଳେ ନୈତିକ ବିଚାରର ଉଦ୍‌ଭବ ହେବ । ତେଣୁ ସକଳ ସଦ୍‌ଗୁଣମାନଙ୍କୁ ଆରିଷ୍ଟୋଟଲ ଦୁଇ ଶ୍ରେଣୀରେ ବିଭକ୍ତ କରିଛନ୍ତି ଯଥା ପ୍ରାଜ୍ଞିକ ଓ ନୈତିକ । ଏହି ଦୁଇ ସଦ୍‌ଗୁଣ ମଧ୍ୟରୁ ଆରିଷ୍ଟୋଟଲ ପ୍ରାଜ୍ଞିକ ସଦ୍‌ଗୁଣକୁ ଅଧିକ ପ୍ରାଧାନ୍ୟ ଦେଇଛନ୍ତି, କାରଣ ମନୁଷ୍ୟ ସ୍ୱଭାବରେ ସର୍ବୋତ୍ତମ ସାମର୍ଥ୍ୟ ବିଚାରବୁଦ୍ଧି ଏଥିରେ ପ୍ରତିଫଳିତ ହୋଇଥାଏ ।

ପ୍ରାଜ୍ଞିକ ଓ ନୈତିକ ସଦ୍‌ଗୁଣର ସମନ୍ୱୟ ଆନନ୍ଦ ପାଖରେ ହୋଇଛି ବୋଲି ଆରିଷ୍ଟୋଟଲ ବିଚାର କରିଛନ୍ତି । ସୁତରାଂ ଜୀବନର ପରମ ଶ୍ରେୟସାଧନରେ ଆନନ୍ଦର ପ୍ରାଧାନ୍ୟ ରହିଛି । ଆନନ୍ଦକୁ ଆରିଷ୍ଟୋଟଲ ସଦ୍‌ଗୁଣ ସହିତ ସଂପୃକ୍ତ କରିଛନ୍ତି । ତେବେ ଆନନ୍ଦକୁ ବାହ୍ୟିକ ଓ ପରିସ୍ଥିତିଗତ ଘଟଣା ଗଭୀର ଭାବରେ ମଧ୍ୟ ପ୍ରଭାବିତ କରିଥାଏ । ବାହ୍ୟିକ ପରିସ୍ଥିତି ଆମର ଆନନ୍ଦାନୁଭୂତିକୁ ପ୍ରଭାବିତ କରିପାରେ, କିନ୍ତୁ ସେମାନେ ସ୍ୱରୂପରେ ଉତ୍ତମ ନୁହନ୍ତି ଯଦିବା ସେମାନଙ୍କର ସାଧନ ମୂଲ୍ୟ ରହିପାରେ । ତେବେ ଯାହା ସ୍ୱରୂପରେ ଉତ୍ତମ ବା ଯାହାର ସ୍ୱତଃମୂଲ୍ୟ ରହିଛି ତାହାକୁ ହିଁ ସଦ୍‌ଗୁଣ କୁହାଯାଇ ପାରିବ । ବିଭିନ୍ନ ବାହ୍ୟିକ ପଦାର୍ଥର ସାଧନ ମୂଲ୍ୟ ରହିପାରେ, ଅର୍ଥାତ୍ ଅନ୍ୟ କିଛି ଲକ୍ଷ୍ୟ ପାଇଁ ସେସବୁ ସାଧନ ହୋଇପାରନ୍ତି । କିନ୍ତୁ ଯାହା ସ୍ୱରୂପରେ ବା ସ୍ୱତଃ ଉତ୍ତମ, ଯାହା ସାଧନ ନୁହେଁ ସାଧ୍ୟ,ତାହାହିଁ ହେଉଛି ସଦ୍‌ଗୁଣ । ସଦ୍‌ଗୁଣର ଅଧିକାରୀ ହେବା ପାଇଁ ଉତ୍ତମ ବାହ୍ୟିକ ସାଧନ ସହାୟକ ହୋଇଥାଏ । ସେହିପରି ଦାରିଦ୍ର୍ୟ, ଅସୁସ୍ଥତା ବା ନାନା ଦୁର୍ଭାଗ୍ୟଜନକ ଘଟଣା ଜଣଙ୍କର ଆନନ୍ଦ କ୍ଷେତ୍ରରେ ପ୍ରତିବନ୍ଧକ ହେବାର ସମ୍ଭାବନା ଥାଏ । ବାହ୍ୟିକ ପରିସ୍ଥିତିର ଜୀବନଧାରା ଉପରେ ରହିଥିବା ପ୍ରଭାବକୁ ଏଡାଇ

ଯିବା ସମ୍ଭବ ନୁହେଁ । ବାହ୍ୟିକ ପରିସ୍ଥିତି ଓ ଘଟଣା ପ୍ରବାହ ସ୍ୱରୂପରେ ଉତ୍ତମ ନ ହେଲେ ମଧ୍ୟ ସେମାନେ ଜୀବନର ଉତ୍ତମତା ପାଇଁ ସାଧନ ହୋଇଥାନ୍ତି । ସ୍ୱଚ୍ଛଳତା, ବନ୍ଧୁତା, ଉତ୍ତମ ସ୍ୱାସ୍ଥ୍ୟ, ଅନୁକୂଳ ପରିସ୍ଥିତି ଇତ୍ୟାଦି ନିଜେ ଆନନ୍ଦ ନୁହନ୍ତି, କିନ୍ତୁ ଆନନ୍ଦ ପାଇଁ ସେମାନେ ମୂଲ୍ୟ ବହନ କରନ୍ତି । ଆରିଷ୍ଟୋଟଲ ସେମାନଙ୍କୁ ଆନନ୍ଦର ସର୍ତ୍ତ ବା କାରଣାଂଶ ଭାବେ ନେଇଛନ୍ତି । ସେମାନଙ୍କୁ ନକାରାତ୍ମକ ସର୍ତ୍ତ କୁହାଯାଇପାରେ କାରଣ ସେମାନଙ୍କ ଅଭାବରେ ଆନନ୍ଦଲାଭ ସୁଗମ ହୋଇନଥାଏ । ବରଂ ସେମାନଙ୍କ ଯୋଗୁ ଆନନ୍ଦଦାୟକ ସ୍ଥିତି ସମ୍ଭବ ହୋଇଥାଏ ।

ପ୍ରାଜ୍ଞିକ ସଦ୍‌ଗୁଣ ସମ୍ବନ୍ଧରେ ଆରିଷ୍ଟୋଟଲ ବିଶେଷ ଚର୍ଚ୍ଚା କରିନାହାନ୍ତି । ତେବେ ତାଙ୍କ ଆଚାରମୀମାଂସା କ୍ଷେତ୍ରରେ ଯାହା ଅଧିକ ମହତ୍ତ୍ୱପୂର୍ଣ୍ଣ ସେଗୁଡିକୁ ସେ ନୈତିକ ସଦ୍‌ଗୁଣ ଭାବରେ ନେଇଛନ୍ତି । ଏହାର ତାତ୍ପର୍ଯ୍ୟ ହେଉଛି ଆମର ସକଳ ପ୍ରବୃତ୍ତି ଉପରେ ଆମ ବିଚାରବୁଦ୍ଧିର ନିୟନ୍ତ୍ରଣ । ଏଠାରେ ଆରିଷ୍ଟୋଟଲ ସକ୍ରେଟିସ୍‌ଙ୍କ ମତକୁ ଗ୍ରହଣ କରିନାହାନ୍ତି । ସକ୍ରେଟିସ୍ ଜ୍ଞାନକୁ ସଦ୍‌ଗୁଣ କହୁଥିଲେ । ତାଙ୍କର ମତ ଥିଲା ଯେ ଭଲ-ମନ୍ଦ ଜନିତ ଜ୍ଞାନର ଅଭାବରୁ କେତେକ ବ୍ୟକ୍ତି ମନ୍ଦ କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି । 'ଉତ୍ତମ' ବା ଭଲ କ'ଣ ଜାଣିଲେ ଜଣେ ମନ୍ଦ କାର୍ଯ୍ୟ କରିବ ନାହିଁ । ଯେଉଁମାନେ ମନ୍ଦ କାର୍ଯ୍ୟରେ ସଂପୃକ୍ତ ତାହାର କାରଣ ହେଉଛି କ'ଣ ଉତ୍ତମ, କ'ଣ ମନ୍ଦ ସେ ନେଇ ସେମାନଙ୍କର ଯଥୋଚିତ ଜ୍ଞାନ ନାହିଁ । ସକ୍ରେଟିସ୍‌ଙ୍କର ଏହି ମତକୁ ଆରିଷ୍ଟୋଟଲ ସ୍ୱୀକାର କରିନାହାନ୍ତି । ଯେ ଭଲ କ'ଣ ଜାଣେ ସେ ଯେ ଭଲ କରିବ, ଏହା କୁହାଯାଇ ପାରିବ ନାହିଁ । ଆରିଷ୍ଟୋଟଲଙ୍କ ମତରେ ମନୁଷ୍ୟ ଭିତରେ ରହିଥିବା ଆବେଗ, ପ୍ରବୃତ୍ତିକୁ ନିୟନ୍ତ୍ରଣ କରିବା ଏତେ ସହଜ ନୁହେଁ । ସକ୍ରେଟିସ୍ ମନୁଷ୍ୟ ଭିତରର ପ୍ରବୃତ୍ତିକୁ ଆଦୌ ଗୁରୁତ୍ୱ ଦେଇନାହାନ୍ତି ବୋଲି ଆରିଷ୍ଟୋଟଲ ମତ ଦେଇଛନ୍ତି । ଜଣେ ବ୍ୟକ୍ତି ବିଚାରବନ୍ତ ବ୍ୟକ୍ତି ହୋଇପାରନ୍ତି ତାଙ୍କ ଚିନ୍ତା କ୍ଷେତ୍ରରେ କୌଣସି ତ୍ରୁଟି ନ ଥାଇପାରେ, ତେବେ ସେ ନିଜର ପ୍ରାବୃତ୍ତିକ କାମନାଦ୍ୱାରା ଯେ ପରିଚାଳିତ ନ ହେବେ ଏହା କୁହାଯାଇ ପାରିବ ନାହିଁ । ବେଳେ ବେଳେ ବ୍ୟକ୍ତିର ପ୍ରବୃତ୍ତି ତାର ବିଚାରଧାରାକୁ ନିୟନ୍ତ୍ରଣ କରିପାରେ । ବିଚାର ଉପରେ ପ୍ରବୃତ୍ତିର ଆଧିପତ୍ୟ ରହିବା ବିଷୟକୁ ଅସ୍ୱୀକାର କରାଯାଇ ନ ପାରେ । ସେହି ଦୃଷ୍ଟିରୁ ଜଣଙ୍କର କ୍ଷୁଧା, ପ୍ରବୃତ୍ତି ଉପରେ କିପରି ନିୟନ୍ତ୍ରଣ ଆଣିହେବ ଓ ବ୍ୟକ୍ତି ସର୍ବଦା ବିଚାରବୁଦ୍ଧିଦ୍ୱାରା ପରିଚାଳିତ ହେବ ତାହା ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଏଥିପାଇଁ ଅଭ୍ୟାସକୁ ଆରିଷ୍ଟୋଟଲ ମହତ୍ତ୍ୱ ଦେଇଛନ୍ତି । ନିରନ୍ତର ଚେଷ୍ଟା, ଆତ୍ମ ସଂଯମତାର ଅଭ୍ୟାସ ଇତ୍ୟାଦିଦ୍ୱାରା ଜଣେ ନିଜର ପ୍ରବୃତ୍ତି ଉପରେ ନିୟନ୍ତ୍ରଣ ଆଣିପାରିବ । ନୈତିକ ଆଚରଣ ପାଇଁ ଆରିଷ୍ଟୋଟଲ ପ୍ରଥମେ ପ୍ରବୃତ୍ତିକୁ ନିୟନ୍ତ୍ରଣ କରିବା ଜରୁରୀ ବୋଲି ଭାବିଛନ୍ତି । ଉତ୍ତମ ଅଭ୍ୟାସଦ୍ୱାରା ଜଣେ ବ୍ୟକ୍ତି ଯେ ଉତ୍ତମ ଜୀବନର ଅଧିକାରୀ ହୋଇପାରିବ ଏହା ଆରିଷ୍ଟୋଟଲ ଅନୁଭବ କରିଛନ୍ତି ।

ମାନବିକ କ୍ଷୁଧା, ଆବେଗ ଓ ପ୍ରବୃତ୍ତିକୁ ବିଚାରବୁଦ୍ଧି ଦ୍ୱାରା ନିୟନ୍ତ୍ରଣ କରାଯିବା ସମ୍ଭବ ବୋଲି ଆରିଷ୍ଟୋଟଲ ଭାବିଛନ୍ତି । ତାହାଦ୍ୱାରା ବ୍ୟକ୍ତି ଭିତରେ ସଦ୍‌ଗୁଣର ବିକାଶ ହୋଇପାରିବ । ବିଚାର ଓ ପ୍ରବୃତ୍ତି ଯେ ମାନବ ସ୍ୱଭାବରେ ଅନ୍ତର୍ନିହିତ ଏହା କୁହାଯାଇପାରେ । ମାନବିକ ପ୍ରବୃତ୍ତିକୁ ଯେ ସଂପୂର୍ଣ୍ଣ ରୂପେ ପରିହାର କରାଯାଇପାରିବ ଏହା ଏକ ବୈରାଗ୍ୟଜନିତ ଦୃଷ୍ଟିଭଙ୍ଗୀ । ମନୁଷ୍ୟ ତାର ପ୍ରବୃତ୍ତିକୁ ନିୟନ୍ତ୍ରଣ କରିପାରିବ, ତାକୁ ବିଚାରଶୀଳ ଭାବରେ ପ୍ରଭାବିତ

କରି ଉତ୍ତମ କରିପାରିବ ଏହା ଅଧିକ ବାସ୍ତବବାଦୀ ମନେହୁଏ । କିନ୍ତୁ ପ୍ରବୃତ୍ତିର ସଂପୂର୍ଣ୍ଣ ପ୍ରତ୍ୟାଖ୍ୟାନ ସମ୍ଭବପର ନୁହେଁ । ଆରିଷ୍ଟୋଟଲ ମାନବୀୟ ସ୍ୱରୂପ ଉପରେ ମତ ରଖିଛନ୍ତି ଯେ ବ୍ୟକ୍ତିର ପ୍ରବୃତ୍ତି, ଆବେଗ ରହିଛି, ବିଚାରବୁଦ୍ଧି ମଧ୍ୟ ରହିଛି । ବିଚାର ବୁଦ୍ଧି ମାନବୀୟ ସ୍ୱଭାବର ମହତ୍ତର ଦିଗ । ଏଣୁ ମାନବିକ ପ୍ରବୃତ୍ତିର ସଂପୂର୍ଣ୍ଣ ପ୍ରତ୍ୟାଖ୍ୟାନ ଯେ ସମ୍ଭବପର ନୁହେଁ ଏହା କୁହାଯାଇପାରେ, ଯଦିବା ସେସବୁର ନିୟନ୍ତ୍ରଣ ଓ ସଂଯମ କରାଯିବା ସମ୍ଭବ । ବୈରାଗ୍ୟବାଦୀ ମାନବିକ ସ୍ୱଭାବର ଏହି ବାସ୍ତବ ଦିଗଟିକୁ ସ୍ୱୀକାର କରନ୍ତି ନାହିଁ । ଆରିଷ୍ଟୋଟଲ ତାଙ୍କ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତ ଅନୁଯାୟୀ ଏହାର ଏକ ଉତ୍ତମ ବ୍ୟାଖ୍ୟା ଦେଇଛନ୍ତି । ତାଙ୍କ ମତରେ ସଦ୍‌ଗୁଣର ବସ୍ତୁ ହେଉଛି କ୍ଷୁଧା, ଆବେଗ ଓ ପ୍ରବୃତ୍ତି, ଓ ସଦ୍‌ଗୁଣର ଫର୍ମ ହେଉଛି ବିଚାରବୁଦ୍ଧି । ବସ୍ତୁ ଓ ଫର୍ମକୁ ଆରିଷ୍ଟୋଟଲ ଯେପରି ତାଙ୍କ ତତ୍ତ୍ୱମୀମାଂସାରେ ବ୍ୟାଖ୍ୟା କରିଛନ୍ତି ତାହାର ପ୍ରୟୋଗ ତାଙ୍କର ଆଚାରମୀମାଂସା କ୍ଷେତ୍ରରେ ମଧ୍ୟ କରିଛନ୍ତି । ବୈରାଗ୍ୟବାଦର ତ୍ରୁଟି ହେଉଛି ସଦ୍‌ଗୁଣର ବସ୍ତୁକୁ ନଷ୍ଟ କରି ଏହାର ଫର୍ମର ଅସ୍ତିତ୍ୱକୁ ସ୍ୱୀକାର କରିବା । ଆରିଷ୍ଟୋଟଲଙ୍କ ବିଚାର କ୍ଷେତ୍ରରେ ଫର୍ମ ଓ ବସ୍ତୁ ସର୍ବଦା ଏକତ୍ର ରହିବେ, ଗୋଟିକର ସ୍ଥିତି ଅନ୍ୟର ଅଭାବରେ ସମ୍ଭବ ନୁହେଁ । ଏହି ଭାବନାକୁ ସେ ତାଙ୍କର ଆଚାରମୀମାଂସା କ୍ଷେତ୍ରରେ ମଧ୍ୟ ପ୍ରୟୋଗ କରିଛନ୍ତି । ମନୁଷ୍ୟ ସ୍ୱଭାବ କ୍ଷେତ୍ରରେ ପ୍ରବୃତ୍ତି ଓ ବିଚାରବୁଦ୍ଧି ଉଭୟ ରହିବା ଏକ ସାଧାରଣ ଉପଲବ୍ଧି । ଏହି ପୃଷ୍ଠଭୂମିରେ ସଦ୍‌ଗୁଣ କ୍ଷେତ୍ରରେ ସେ ପ୍ରବୃତ୍ତିକୁ ବସ୍ତୁ ଓ ବିଚାରବୁଦ୍ଧିକୁ ଫର୍ମ ଭାବେ ନେଇଛନ୍ତି । ସୁତରାଂ ସଦ୍‌ଗୁଣର ତାତ୍ପର୍ଯ୍ୟ ହେଉଛି ପ୍ରବୃତ୍ତି ଓ ଆବେଗକୁ ନିୟନ୍ତ୍ରଣ କରାଯାଇ ପାରିବ କିନ୍ତୁ ଏହାର ମୂଳୋତ୍ପାଟନ ଏକ ଅସମ୍ଭବ ପରିକଳ୍ପନା । ଆରିଷ୍ଟୋଟଲ ଦୁଇଟି ଚରମ ସ୍ଥିତିକୁ ପରିହାର କରି ଏକ ମଧ୍ୟମ ପନ୍ଥାକୁ ସ୍ୱୀକାର କରିଛନ୍ତି । ଗୋଟିଏ ଚରମ ମତ ହେଉଛି ପ୍ରବୃତ୍ତିର ପ୍ରତ୍ୟାଖ୍ୟାନ ବା ମୂଳୋତ୍ପାଟନ ଓ ଅନ୍ୟଟି ହେଉଛି ଜୀବନ ଉପରେ ଏହାର ପୂର୍ଣ୍ଣ ନିୟନ୍ତ୍ରଣ । ସଦ୍‌ଗୁଣ ଏ ଉଭୟ ମଝିରେ ଏକ ମଧ୍ୟମ ସ୍ଥିତି ସ୍ୱୀକାର କରିଥାଏ । ପ୍ରବୃତ୍ତି ଓ ଆବେଗ ଜୀବନକୁ ନିୟନ୍ତ୍ରଣ କରିବା ଯେପରି ମଙ୍ଗଳକର ନୁହେଁ, ସେହିପରି ଜୀବନ କ୍ଷେତ୍ରରୁ ସକଳ ଆବେଗକୁ ପରିହାର କରିବା ମଧ୍ୟ ଜୀବନର ଏକ ବାସ୍ତବ ଚିତ୍ର ପ୍ରଦାନ କରେ ନାହିଁ । ସଂପୂର୍ଣ୍ଣ ଆବେଗହୀନ ହେବା କିମ୍ବା ସର୍ବଦା ଆବେଗଦ୍ୱାରା ପରିଚାଳିତ ହେବା ଜୀବନ ପାଇଁ ମଙ୍ଗଳପ୍ରଦ ନୁହେଁ । ଆରିଷ୍ଟୋଟଲଙ୍କ ସଦ୍‌ଗୁଣ ପରିକଳ୍ପନା କ୍ଷେତ୍ରରେ ଏକ ମଧ୍ୟମ ଅବସ୍ଥାକୁ ସର୍ବଦା ପ୍ରାଧାନ୍ୟ ଦିଆଯାଇଛି । ସେ ସର୍ବଦା ଚରମ ମତକୁ ପରିହାର କରିଛନ୍ତି ।

ଦୁଇ ଚରମ ସ୍ଥିତି ଭିତରେ ମଧ୍ୟମ ପନ୍ଥାକୁ ବାଛିବାର ମାଧ୍ୟମ କ'ଣ ହୋଇପାରେ ?ଗଣିତ କ୍ଷେତ୍ରରେ ଏକ ମଧ୍ୟମ ବା ହାରାହାରି କ୍ଷେତ୍ରକୁ ବାଛିବା ଯେତେ ସହଜ, ମାନବୀୟ କର୍ମ କ୍ଷେତ୍ରରେ ତାହା କରିବା ଏତେ ସହଜ ନୁହେଁ । ଏକ ସରଳରେଖାର ମଧ୍ୟବିନ୍ଦୁକୁ ଅକ୍ଳେଶରେ ସ୍ଥିର କରାଯାଇ ପାରିବ, କିମ୍ବା ଦୁଇଟି ସଂଖ୍ୟା ଭିତରେ ହାରାହାରି ସଂଖ୍ୟା ସ୍ଥିର କରିବା କଷ୍ଟକର ନୁହେଁ । କିନ୍ତୁ ନୀତିଶାସ୍ତ୍ର କ୍ଷେତ୍ରରେ ଏକ ମଧ୍ୟାବସ୍ଥା ସ୍ଥିର କରିବା ସହଜସାଧ୍ୟ କି ? ଏ କ୍ଷେତ୍ରରେ କିଛି ସ୍ଥିରୀକୃତ ମାନଦଣ୍ଡ ନଥିଲେ ମଧ୍ୟ ଏହା ପରିସ୍ଥିତି ଉପରେ ଓ ବ୍ୟକ୍ତି ଉପରେ ଅନେକାଂଶରେ ନିର୍ଭର କରିଥାଏ । ଗୋଟିଏ ପରିସ୍ଥିତିରେ ଯାହା ମଧ୍ୟମ ପନ୍ଥା ମନେହୁଏ, ଅନ୍ୟ ଏକ ପରିସ୍ଥିତିରେ

ତାହା ମଧ୍ୟମ ପନ୍ଥା ନ ହୋଇପାରେ । ଏହି ସ୍ଥିତିରେ ଦୁଇଟି ଚରମ ଅବସ୍ଥା ମଧ୍ୟରେ ମଧ୍ୟମ ପନ୍ଥା ସ୍ଥିର କରିବାର ଦାୟିତ୍ୱ ବ୍ୟକ୍ତି ଉପରେ ନିର୍ଭର କରିଥାଏ । ଏହାକୁ ଆରିଷ୍ଟୋଟଲ ବ୍ୟକ୍ତିର ଅନ୍ତର୍ଦୃଷ୍ଟି କହିଛନ୍ତି । ଏହି ଅନ୍ତର୍ଦୃଷ୍ଟିକୁ ସେ ସଦ୍‌ଗୁଣର ଉଭୟ କାର୍ଯ୍ୟ ଓ କାରଣ ବୋଲି ଅଭିହିତ କରିଛନ୍ତି । ଏହା ଏକ କାରଣ, ଯେହେତୁ ଏକ ପରିସ୍ଥିତିରେ କ'ଣ କରାଯିବା ଯଥାର୍ଥ ତାହା ବ୍ୟକ୍ତିର ବିଚାର ଉପରେ ନିର୍ଭର କରେ । ଏହା କାର୍ଯ୍ୟ, ଯେହେତୁ ଏହି ସାମର୍ଥ୍ୟକୁ ଅଭ୍ୟାସ ଦ୍ୱାରା ବିକଶିତ କରାଯାଇ ପାରିବ । ସଦ୍‌ଗୁଣ ହିଁ ସଦ୍‌ଗୁଣକୁ ଜାଣିବା ପାଇଁ ପନ୍ଥା ଦେଖାଇବ । ପ୍ରୟାସ ଓ ଅଭ୍ୟାସ ମାଧ୍ୟମରେ ଯେକୌଣସି ବ୍ୟକ୍ତି ଚରମ ସ୍ଥିତି ଭିତରେ ଜୀବନ ପାଇଁ ମଧ୍ୟମ ପନ୍ଥାଟି ସ୍ଥିର କରିପାରିବ ।

ପ୍ଲେଟୋ ଯେପରି ସଦ୍‌ଗୁଣ ମାନଙ୍କର ଏକ ରୀତିବଦ୍ଧ ବର୍ଗୀକରଣ ବା ଶ୍ରେଣୀ ବିଭାଜନ କରିଛନ୍ତି ଆରିଷ୍ଟୋଟଲ ସେପରି କରିନାହାନ୍ତି । ଆରିଷ୍ଟୋଟଲ୍‌ଙ୍କ ମତରେ ଜୀବନ ଓ ଜୀବନର ଘଟଣା ପ୍ରବାହ ଏତେ ଜଟିଳ ଯେ ସକଳ ସଦ୍‌ଗୁଣ ବା ନୈତିକ ମୂଲ୍ୟଚୟମାନଙ୍କର ଏକ ଶ୍ରେଣୀକରଣ କରିବା ସହଜ ବ୍ୟାପାର ନୁହେଁ । ଜୀବନ ନାନା ଘଟଣା ବହୁଳ ଓ ବାସ୍ତବ କ୍ଷେତ୍ରରେ ବ୍ୟକ୍ତିକୁ ନାନା ଆହ୍ୱାନର ସମ୍ମୁଖୀନ ହେବାକୁ ପଡିପାରେ । ଏତଦ୍‌ବ୍ୟତୀତ ସଦ୍‌ଗୁଣ ବା ନୈତିକ ଆଦର୍ଶ ମାନଙ୍କର ସଂଖ୍ୟା ସୀମିତ ନୁହେଁ । ସଦ୍‌ଗୁଣ ମାନଙ୍କର ସଂଖ୍ୟା ସ୍ଥିର କରିବା ଏତେ ସହଜସାଧ୍ୟ ନୁହେଁ । ନୈତିକ ଆଦର୍ଶମାନ ଭିନ୍ନ ଭିନ୍ନ ସ୍ଥିତିରେ ନାନା ପ୍ରକାରର ହୋଇପାରେ । ତେବେ ଜୀବନ ପ୍ରବାହ କ୍ଷେତ୍ରରେ କେତେକ ସଦ୍‌ଗୁଣ ଏତେ ଗ୍ରହଣଯୋଗ୍ୟ ହୋଇଯାଇଛି ଯେ ସେ ସବୁକୁ କେତେକ ନାମରେ ସୂଚିତ କରାଯାଉଛି । ଏହିପରି କେତେକ ସଦ୍‌ଗୁଣ ଯାହା ଦୁଇ ଚରମ ସ୍ଥିତିର ମଧ୍ୟବର୍ତ୍ତୀ ତାହାର କେତେକ ସୂଚନା ଆରିଷ୍ଟୋଟଲ ପ୍ରଦାନ କରିଛନ୍ତି । ଯେପରି ଭୀରୁତା ଓ ଅହଙ୍କାରିତା ମଧ୍ୟରେ ସାହସିକତାକୁ ସ୍ଥାନ ଦିଆଯାଇପାରେ । କାରଣ ଅହଙ୍କାରିତା ଯେପରି ଏକ ଚରମ ବା ଅତିରିକ୍ତତାର ସୂଚନା ଦିଏ, ସେହିପରି ଭୀରୁତା ମଧ୍ୟ ଅନ୍ୟ ଏକ ଚରମ ସ୍ଥିତିର ସୂଚନା ଦିଏ । ସୁତରାଂ ଏ ଉଭୟ ମଧ୍ୟରେ ସାହସିକତାକୁ ଏକ ସଦ୍‌ଗୁଣ ଭାବରେ ନିଆଯାଇପାରେ । ସେହିପରି ଅମିତବ୍ୟୟିତା ଓ କୃପଣତା ଉଭୟ ଦୁଇଟି ଅତିରିକ୍ତ ବା ଚରମ ଅବସ୍ଥା । ସେ ଉଭୟଙ୍କ ମଧ୍ୟରେ ମିତବ୍ୟୟିତା ଏକ ନୈତିକ ଆଦର୍ଶ । ଶକ୍ତିହୀନତା ଓ କ୍ରୋଧପ୍ରବଣତା ମଧ୍ୟରେ ମଧ୍ୟମ ପନ୍ଥା ଭାବରେ ଉତ୍ତମ ମନୋଭାବକୁ ସେ ପ୍ରାଧାନ୍ୟ ଦେଇଛନ୍ତି । ଶକ୍ତିହୀନତା ଯେପରି ଗୋଟିଏ ଚରମ ସ୍ଥିତି ସେହିପରି କ୍ରୋଧପ୍ରବଣତା ମଧ୍ୟ ଅନ୍ୟ ଏକ ଚରମ ଅବସ୍ଥା । ଏ ଉଭୟ ମଧ୍ୟରେ ବିଚାରଶୀଳ ମନୋଭାବ ଏକ ନୈତିକ ଆଦର୍ଶ ଭାବେ ଗ୍ରହଣଯୋଗ୍ୟ ହୋଇପାରିବ । ଚାଟୁକାରିତା ଓ ନିଷ୍ଠୁରତା ମଧ୍ୟରେ ଭଦ୍ରତା ଏକ ମଧ୍ୟମ ପନ୍ଥା । ଚାଟୁକାରିତା ଯେପରି ଏକ ମନ୍ଦ ସ୍ୱଭାବ ସେହିପରି ନିଷ୍ଠୁରତା ମଧ୍ୟ ଅନ୍ୟ ଏକ ଚରମ ଅବସ୍ଥା । ଏଣୁ ଏ ଉଭୟ ମଧ୍ୟରେ ଭଦ୍ରତା ଏକ ଉତ୍ତମ ଆଦର୍ଶ । ଲଜ୍ଜାଶୀଳତା ଓ ଲଜ୍ଜାହୀନତା ଦୁଇଟି ଚରମ ସ୍ଥିତି, ସେମାନଙ୍କ ମଧ୍ୟରେ ଶାଳୀନତା ଏକ ମଧ୍ୟମ ଉପାଦେୟ ପନ୍ଥା । ସମ୍ଭୋଗପ୍ରିୟତା ଓ ସମ୍ବେଦନହୀନତା ମଧ୍ୟରେ ଆତ୍ମସଂଯମତା ମଧ୍ୟମ ପନ୍ଥା ଭାବେ ଗ୍ରହଣ ଯୋଗ୍ୟ ଅଟେ । ଏହିପରି ଆରିଷ୍ଟୋଟଲ ଦୁଇ ଚରମ ସ୍ଥିତିକୁ ପରିହାର କରି ସେମାନଙ୍କ ମଧ୍ୟରେ ମଧ୍ୟମ ପନ୍ଥାକୁ ଗ୍ରହଣ କରିବା ଜୀବନ ପାଇଁ ଦରକାରୀ ଓ ନୈତିକ ମାନଦଣ୍ଡରୁ ମଧ୍ୟ କରଣୀୟ ବୋଲି ମତ ଦେଇଛନ୍ତି ।

ନୈତିକ ଆଦର୍ଶ ଚୟନ କ୍ଷେତ୍ରରେ ପରିସ୍ଥିତି ଓ ବ୍ୟକ୍ତିର ବିଚାରଶୀଳତା ଉପରେ ସେ ପ୍ରାଧାନ୍ୟ ଦେଇଛନ୍ତି । ଯେକୌଣସି ଚରମ ପନ୍ଥା ଯେ ଅହିତକର ଏହା ଭାବିଛନ୍ତି । ଦୁଇଟି ବିପରୀତ ସ୍ଥିତି ମଧ୍ୟରେ ଏକ ଉତ୍ତମ ସାମ୍ୟାବସ୍ଥା କଳ୍ପନା କରିଛନ୍ତି । ନୈତିକ ଜୀବନ କ୍ଷେତ୍ରରେ ଏକ ବିଚାରଶୀଳ ସାମ୍ୟାବସ୍ଥା ଯେ ଜୀବନ ପାଇଁ ମହତ୍ତ୍ୱ ରଖେ ସେ ଏହି ସିଦ୍ଧାନ୍ତ ଦେଇଛନ୍ତି ।

ସକ୍ରେଟିସ୍ ଓ ପ୍ଳେଟୋଙ୍କ ଆଚାରମୀମାଂସା କ୍ଷେତ୍ରରେ 'ନ୍ୟାୟ' ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଭାବରେ ଆଲୋଚନାର ବିଷୟ ହେବା ବେଳେ ଆରିଷ୍ଟୋଟଲ ଏହାକୁ ଏକ ରାଷ୍ଟ୍ରୀୟ ବିଧାନ ଭାବରେ ଗ୍ରହଣ କରିଛନ୍ତି । ବ୍ୟକ୍ତିଗତ ଆଚରଣ ଅପେକ୍ଷା ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ନ୍ୟାୟର ପ୍ରାଧାନ୍ୟ ମହତ୍ତ୍ୱପୂର୍ଣ୍ଣ ବୋଲି ଆରିଷ୍ଟୋଟଲ ଭାବିଛନ୍ତି । ନ୍ୟାୟର ସେ ବିଭିନ୍ନ ଲକ୍ଷଣମାନ ଦର୍ଶାଇଛନ୍ତି । ଯାହା ବିଧିସଂଗତ ବା ଆଇନ ଅନୁମୋଦିତ ସେ ଏହାକୁ ନ୍ୟାୟ କହିଛନ୍ତି । ରାଷ୍ଟ୍ର ଆଇନ କରେ ଓ ରାଷ୍ଟ୍ରୀୟ ଆଇନକୁ ମାନିବା ନାଗରିକଙ୍କର କର୍ତ୍ତବ୍ୟ । ନାଗରିକମାନଙ୍କର ଜୀବନ ଉପରେ ରାଷ୍ଟ୍ରର ପ୍ରଭାବକୁ ଆରିଷ୍ଟୋଟଲ ପ୍ଳେଟୋଙ୍କ ପରି ଗ୍ରହଣ କରିଛନ୍ତି । ସେହିପରି ଯାହା ନିରପେକ୍ଷ ଓ ସମାନତାର ଅନୁକୂଳ ତାହାକୁ ମଧ୍ୟ ସେ ନ୍ୟାୟ ବୋଲି ଗ୍ରହଣ କରିଛନ୍ତି । ଯେକୌଣସି ପକ୍ଷପାତିତା ଓ ବୈଷମ୍ୟ ନ୍ୟାୟର ପରିପନ୍ଥୀ ବୋଲି ସେ ଭାବିଛନ୍ତି । ଏହି ସବୁକୁ ସେ ସାର୍ବଜନୀନ ନ୍ୟାୟ କହିଛନ୍ତି । ରାଷ୍ଟ୍ର ନାଗରିକ ମାନଙ୍କୁ ନ୍ୟାୟପୂର୍ଣ୍ଣ ଭାବରେ ଜୀବନ ନିର୍ବାହ କରିବାକୁ ପ୍ରେରଣା ଯୋଗାଇବ ଓ ନାଗରିକମାନଙ୍କ ଭିତରେ ନ୍ୟାୟ ପରାୟଣତା ନେଇ ସଚେତନତା ସୃଷ୍ଟି କରିବ ।

ପୁନଶ୍ଚ ଆରିଷ୍ଟୋଟଲ ବିଶେଷ ନ୍ୟାୟପରାୟଣତାକୁ ଦୁଇ ଭାଗରେ ବିଭକ୍ତ କରିଛନ୍ତି, ଯଥା (୧) ବିତରଣ ନ୍ୟାୟ (distributive justice) (୨) ସୁଧାରକ ନ୍ୟାୟ (remedial justice) । ବ୍ୟକ୍ତିର ସାମର୍ଥ୍ୟ ଓ ଅବଦାନ ନେଇ ରାଷ୍ଟ୍ର ପ୍ରତ୍ୟେକଙ୍କୁ ସେମାନଙ୍କର ଉପଯୁକ୍ତ ପ୍ରାପ୍ୟ ପ୍ରଦାନ କରିବା ହେଉଛି ବିତରଣ ନ୍ୟାୟ । ପ୍ରତ୍ୟେକ ବ୍ୟକ୍ତି ସମାଜରେ ଯେଉଁ କାର୍ଯ୍ୟକରେ ଓ ସମାଜକୁ ଯେଉଁ ଅବଦାନ ଦେଇଥାଏ ସେହି ଅନୁଯାୟୀ ସେ ରାଷ୍ଟ୍ରଠାରୁ ତାର ମୂଲ୍ୟ ପାଇବା ହେଉଛି ବିତରଣ ନ୍ୟାୟ । ସାମାଜିକ ଜୀବନ ପ୍ରବାହରେ ଯଦି ବ୍ୟକ୍ତି ଅନ୍ୟାୟ ଭାବରେ ପ୍ରାପ୍ୟ ନିଏ କିମ୍ବା ଅନ୍ୟାୟ ଆଚରଣ କରେ ଏହାର ସୁଧାର ନିମନ୍ତେ ରାଷ୍ଟ୍ର ଯେଉଁ ଦଣ୍ଡ ବ୍ୟବସ୍ଥା କରେ ତାହାକୁ ସୁଧାରକ ନ୍ୟାୟ କୁହାଯାଏ । ବ୍ୟକ୍ତି ସ୍ୱଭାବରେ ସୁଧାର ଆଣି ସାମାଜିକ ଜୀବନକୁ ଶୃଂଖଳିତ କରିବା ରାଷ୍ଟ୍ରର କର୍ତ୍ତବ୍ୟ ହୋଇଥିବାରୁ ରାଷ୍ଟ୍ରୀୟ ସ୍ତରରେ ସୁଧାରକ ନ୍ୟାୟର ମହତ୍ତ୍ୱ ଗୁରୁତ୍ୱପୂର୍ଣ୍ଣ ମନେହୁଏ ।

ଆରିଷ୍ଟୋଟଲ ଯେପରି ଚରମ ଅବସ୍ଥାକୁ ପରିହାର କରି ମଧ୍ୟମ ପନ୍ଥାକୁ ଗ୍ରହଣ କରିବାକୁ ନୈତିକତା କ୍ଷେତ୍ରରେ ପ୍ରାଧାନ୍ୟ ଦେଇଛନ୍ତି, ସେହିପରି ନ୍ୟାୟ କ୍ଷେତ୍ରରେ ମଧ୍ୟ ତାହା ଦର୍ଶାଇପାରନ୍ତି । ଅନ୍ୟାୟ କାର୍ଯ୍ୟରେ ସଂପୃକ୍ତ ହେବା ଓ ଅନ୍ୟାୟ ବ୍ୟବହାର ପାଇବା ଏହି ଦୁଇ ଚରମ ଅବସ୍ଥାର ମଧ୍ୟବର୍ତ୍ତୀ ପନ୍ଥା ହେଉଛି ନ୍ୟାୟ । ଅନ୍ୟାୟ କରିବା ଓ ଅନ୍ୟାୟର ଶିକାର ହେବା ଦୁଇଟି ଯାକ ସମ୍ଭାବନା ଜୀବନ ପାଇଁ କ୍ଷତିକାରକ । ଏଣୁ ଉଭୟ ମଧ୍ୟରେ ନ୍ୟାୟର ଭୂମିକା ଗ୍ରହଣୀୟ । ତେବେ ଅନ୍ୟାନ୍ୟ ସଦ୍‌ଗୁଣ ପରିପ୍ରେକ୍ଷୀରେ ଆରିଷ୍ଟୋଟଲ ଯେପରି ମଧ୍ୟମ

ପନ୍ଥାର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି ନ୍ୟାୟ କ୍ଷେତ୍ରରେ ସେପରି କରିନାହାନ୍ତି । ନ୍ୟାୟ ପରାୟଣତା ଏକ ସଦ୍‌ଗୁଣ ହେଲେ ମଧ୍ୟ ଏହା ସେପରି ଏକ ମଧ୍ୟମ ଅବସ୍ଥାକୁ ବୁଝାଏ ନାହିଁ । ଏତଦ୍‌ବ୍ୟତୀତ ନ୍ୟାୟ ଅନ୍ୟାୟ କ୍ଷେତ୍ରରେ ବିଭିନ୍ନ ଉଦାହରଣ ମାନ ଦେଇ କଣ ନ୍ୟାୟ ଓ କ'ଣ ଅନ୍ୟାୟ ତାହା ସେ ଦର୍ଶାଇଛନ୍ତି ।

ଆରିଷ୍ଟୋଟଲ ବ୍ୟକ୍ତି ସ୍ୱାଧୀନତାର ଥିଲେ ବଡ ସମର୍ଥକ । ସକ୍ରେଟିସ୍ ଭାବୁଥିଲେ ଯେ ନ୍ୟାୟ, ସଦ୍‌ଗୁଣ ବା ନୈତିକତାର ଅଜ୍ଞତା ଯୋଗୁ ବ୍ୟକ୍ତି ଅନ୍ୟାୟ କରିଥାଏ । ସଦ୍‌ଗୁଣ ନେଇ ବ୍ୟକ୍ତିର ଜ୍ଞାନ ରହିଲେ ସେ ଅନ୍ୟାୟ କରିବ ନାହିଁ । ସକ୍ରେଟିସ୍‌ଙ୍କର ଏହି ମତକୁ  ଆରିଷ୍ଟୋଟଲ ଗ୍ରହଣ କରନ୍ତି ନାହିଁ । ସକ୍ରେଟିସ୍‌ଙ୍କ ମତରେ ଜଣେ ଐଚ୍ଛିକ ଭାବରେ ଅନ୍ୟାୟ କରେ ନାହିଁ, ଅଜ୍ଞତା ଯୋଗୁ କରେ । ଆରିଷ୍ଟୋଟଲଙ୍କ ମତରେ ଭଲ କାର୍ଯ୍ୟ କରିବା ବା ମନ୍ଦ କାର୍ଯ୍ୟ କରିବା ବ୍ୟକ୍ତିର ଐଚ୍ଛିକ କାର୍ଯ୍ୟ । ଜଣେ ଜାଣିଶୁଣି ମନ୍ଦ କାର୍ଯ୍ୟରେ ବି ସଂପୃକ୍ତ ହୋଇପାରେ । ସକ୍ରେଟିସ୍ ସକଳ କାର୍ଯ୍ୟକୁ ଅନୈଚ୍ଛିକ କହିବା ବେଳେ ଆରିଷ୍ଟୋଟଲ କେବଳ ବାଧ ବାଧକତା କାର୍ଯ୍ୟକୁ ଅନୈଚ୍ଛିକ ଦର୍ଶାଇଛନ୍ତି । ବ୍ୟକ୍ତି ଇଚ୍ଛାକୃତ ଭାବରେ ଭଲ କରେ କିମ୍ବା ମନ୍ଦ କାର୍ଯ୍ୟ କରେ । ଆଧୁନିକ ସମୟରେ ବ୍ୟକ୍ତି ସ୍ୱାଧୀନତା ଏକ ଜଟିଳ ନୈତିକ ପ୍ରସଙ୍ଗ, ଓ ଏ ବିଷୟରେ ନାନା ଚର୍ଚ୍ଚା କରାଯାଏ । ଆରିଷ୍ଟୋଟଲ ଏହି ଜଟିଳ ପ୍ରସଙ୍ଗ ଉପରେ ବିଚାର ବିମର୍ଶ ନ କରିଥିଲେ ମଧ୍ୟ ବ୍ୟକ୍ତି ଅନେକ କାର୍ଯ୍ୟ ଯେ ଇଚ୍ଛାକୃତ ଭାବରେ କରେ ଏହା ଦଶାଇଛନ୍ତି । ଜଣେ ମନ୍ଦକାର୍ଯ୍ୟ କରିବାକୁ ନିଜର ବୁଦ୍ଧି ମଧ୍ୟ ପ୍ରୟୋଗ କରିପାରେ । ବୁଦ୍ଧି ଏକ ସାଧନ, ଏହାକୁ ଭଲ ଲକ୍ଷ୍ୟରେ କିମ୍ବା ମନ୍ଦ ଲକ୍ଷ୍ୟରେ ମଧ୍ୟ ବିନିଯୋଗ କରାଯାଇପାରେ । ସୁତରାଂ ଏହା କୁହାଯାଇପାରେ ଯେ ନ୍ୟାୟ-ପରାୟଣ ହେବା ଓ ନ୍ୟାୟ ପରାୟଣତା ଉପରେ ଜ୍ଞାନ ରଖିବା ଦୁଇଟି ଭିନ୍ନ ପ୍ରସଙ୍ଗ ବୋଲି ଆରିଷ୍ଟୋଟଲ ମନେ କରିଛନ୍ତି ।

ଆରିଷ୍ଟୋଟଲ ବନ୍ଧୁତା ଉପରେ ମଧ୍ୟ କିଛି ଆଲୋଚନା କରିଛନ୍ତି । ବନ୍ଧୁତା ଜୀବନ ପାଇଁ ଆବଶ୍ୟକ । ଅନ୍ୟ ସହ ବନ୍ଧୁତ୍ୱର ସମ୍ବନ୍ଧ ସୃଷ୍ଟି କରିବା ଏକ ସଦ୍‌ଗୁଣ । ଏହା ମଧ୍ୟ ଜୀବନ ପାଇଁ ଅବଶ୍ୟମ୍ଭାବୀ । ପ୍ରତ୍ୟେକ ବ୍ୟକ୍ତିର ନିଜ ସହ ସଂପର୍କ ଯେପରି, ସେହି ସଂପର୍କ ନିଜର ବନ୍ଧୁ ସହ ରହିବା ଆବଶ୍ୟକ । ସେ ବନ୍ଧୁକୁ ଦ୍ୱିତୀୟ ବ୍ୟକ୍ତି କହିଛନ୍ତି । ଆରିଷ୍ଟୋଟଲଙ୍କ ବକ୍ତବ୍ୟକୁ ଉଦ୍ଧାର କରି କୋପ୍ଲେଷ୍ଟୋନ ଲେଖିଛନ୍ତି– "…. a man's relations to his friends are the same as his relation to himself, since the friend is a second self. x x x Friendship consists in loving rather than in being loved, or that men wish well to their friends for their sake. (ପୃଷ୍ଠା ୩୪୭) ।

ଏହାର ତାତ୍ପର୍ଯ୍ୟ ହେଉଛି ଆମର ଆମ ବନ୍ଧୁଙ୍କ ସହିତ ସଂପର୍କ ଆମ ନିଜ ସହ ସଂପର୍କ ସଦୃଶ । ଜଣେ ନିଜକୁ ଏପରି ବିସ୍ତାରିତ କରିବା ଆବଶ୍ୟକ ଯେପରି ସେ ନିଜ ବନ୍ଧୁର ଅଂଶ ହୋଇପାରିବ । ନିଜର ସୁଖ, ଦୁଃଖ ବନ୍ଧୁକୁ ଦେଇପାରିବ ଓ ବନ୍ଧୁର ସୁଖ ଦୁଃଖକୁ ନିଜେ ଅନୁଭବ କରିପାରିବ । ଆରିଷ୍ଟୋଟଲ ବନ୍ଧୁତାକୁ ତିନୋଟି

ଶ୍ରେଣୀରେ ବିଭକ୍ତ କରିଛନ୍ତି ଓ ପ୍ରତ୍ୟେକ ଶ୍ରେଣୀର ବନ୍ଧୁତା ବିଷୟରେ ନିଜସ୍ୱ ବିଚାରର ଅବତାରଣା କରିଛନ୍ତି । ଆବଶ୍ୟକତା ଦୃଷ୍ଟିରୁ ଯେଉଁମାନଙ୍କ ସହ ବନ୍ଧୁତା କରାଯାଏ, ତାହାକୁ ପ୍ରୟୋଜନ ବନ୍ଧୁତା କୁହାଯାଏ । ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ବିଶେଷତଃ ଏହି ବନ୍ଧୁତା ସୃଷ୍ଟି କରାଯାଏ । ଦ୍ୱିତୀୟରେ ସୁଖଲାଭ ପାଇଁ ବନ୍ଧୁତା ଯୁବକମାନେ ପରସ୍ପର ଭିତରେ ସ୍ଥାପନ କରନ୍ତି । ଏକାଠି ଖେଳିବା, ବୁଲିବା,ମଜା କରିବା ପାଇଁ ଯେଉଁ ବନ୍ଧୁତା ସୃଷ୍ଟି କରାଯାଏ ତାହା ଦ୍ୱିତୀୟ ଶ୍ରେଣୀର । ତେବେ ଯେଉଁ ବନ୍ଧୁତା ଚିରସ୍ଥାୟୀ, ଯେଉଁମାନଙ୍କ ସହ ମନୋଭାବ ମିଳେ ଓ ପରସ୍ପର ଭିତରେ ଆନ୍ତରିକତା ଦୃଢ଼ ହୁଏ ତାହାକୁ ଆରିଷ୍ଟୋଟଲ ତୃତୀୟ ଶ୍ରେଣୀର ବନ୍ଧୁତା ବୋଲି କହିଛନ୍ତି । ତୃତୀୟ ଶ୍ରେଣୀର ବନ୍ଧୁତାକୁ ଆରିଷ୍ଟୋଟଲ ଅଧିକ ପ୍ରାଧାନ୍ୟ ଦେଇଛନ୍ତି ।

ଆରିଷ୍ଟୋଟଲଙ୍କ ନୈତିକ ବିଚାରଧାରାର ପାଶ୍ଚାତ୍ୟ ଜଗତରେ ସୁଦୂରପ୍ରସାରୀ ପ୍ରଭାବ ରହିଥିଲା । ବିଶେଷକରି ମଧ୍ୟଯୁଗୀୟ ଦାର୍ଶନିକମାନେ ଆରିଷ୍ଟୋଟଲଙ୍କ ଭାବନା ଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଥିବା ଜଣାଯାଏ । ଆରିଷ୍ଟୋଟଲ ଯେପରି ଆନନ୍ଦର ବ୍ୟାଖ୍ୟା କରି ତାହାକୁ ଜୀବନର ପରମ ଉତ୍କର୍ଷ ଭାବେ ଗ୍ରହଣ କରିଛନ୍ତି ତାହା ନୀତିଦର୍ଶନ କ୍ଷେତ୍ରରେ ନାନା ଦିଗନ୍ତ ସୃଷ୍ଟିକରିଛି ।

### ୮.୫ ପ୍ରାକୃତିକ ଦର୍ଶନ

ସାଂପ୍ରତିକ ପରିଭାଷାରେ ଯାହାକୁ ପ୍ରାକୃତିକ ବିଜ୍ଞାନ କୁହାଯାଇଛି ବିଜ୍ଞାନର ଯୁଗ ଆସିବା ପୂର୍ବରୁ ତାହାକୁ ପ୍ରାକୃତିକ ଦର୍ଶନ କୁହାଯାଉଥିଲା । ଦାର୍ଶନିକ ମାନେ ବିଶ୍ୱର ପରମ ସତ୍ତାର ସ୍ୱରୂପ କ'ଣ ତାତ୍ତ୍ୱିକ ପ୍ରଶ୍ନ ଉପରେ ଚର୍ଚ୍ଚା କରିଥାନ୍ତି । ସେହିପରି ପ୍ରକୃତି ସଂପର୍କରେ ଅନୁଶୀଳନ କରି ପ୍ରାକୃତିକ ନିୟମ ଓ ଏକରୂପତାର ଚିତ୍ର ଦେଉଥିବା ଅନୁଶୀଳନକୁ ପ୍ରାକୃତିକ ଦର୍ଶନ କୁହାଯାଉଥିଲା । ସୁତରାଂ ବିଜ୍ଞାନ ଦର୍ଶନର ଅନ୍ତର୍ଗତ ଥିଲା । ଆରିଷ୍ଟୋଟଲଙ୍କ ସମୟରେ ଜ୍ଞାନବିଜ୍ଞାନର ବିଭାଗୀକରଣ ହୋଇନଥିଲା । ଆରିଷ୍ଟୋଟଲ ତର୍କଶାସ୍ତ୍ର, ନୀତିଶାସ୍ତ୍ର, ତତ୍ତ୍ୱମୀମାଂସା ଇତ୍ୟାଦି କ୍ଷେତ୍ରରେ ଯେଉଁପରି ଅବଦାନ ଦେଇଛନ୍ତି ସେହିପରି ପ୍ରକୃତି ଓ ବିଶାଳ ବିଶ୍ୱ ସଂପର୍କରେ ମଧ୍ୟ କେତେକ ବିଚାରର ଅବତାରଣା କରିଛନ୍ତି । ଏଠାରେ ତାଙ୍କର ଏହି ସମ୍ବନ୍ଧୀୟ କେତେକ ବିଚାର ଉପରେ ସଂକ୍ଷିପ୍ତ ଆଲୋଚନା କରାଯିବ ।

ଆରିଷ୍ଟୋଟଲ ତାଙ୍କ ତତ୍ତ୍ୱମୀମାଂସା ପୃଷ୍ଠଭୂମିରେ ଦୁଇ ଚରମ ସ୍ଥିତିର ପରିକଳ୍ପନା କରିଛନ୍ତି ଯଥା ଫର୍ମବିହୀନ ବସ୍ତୁ ଓ ବସ୍ତୁବିହୀନ ଫର୍ମ । ସର୍ବ ନିମ୍ନରେ ରହିଛି ଫର୍ମ ବିହୀନ ବସ୍ତୁ ଓ ଶୀର୍ଷରେ ରହିଛି ବସ୍ତୁବିହୀନ ଫର୍ମ । ଏହି ଦୁଇ ଚରମ ସ୍ଥିତି ମଧ୍ୟରେ ବିଶ୍ୱର ଅନ୍ୟ ସବୁ ସ୍ଥାନିତ ହୋଇ ରହିଛନ୍ତି । ତେବେ ବସ୍ତୁ କିପରି ଫର୍ମର ରୂପ ନେଲା ଓ ସେହି କ୍ରମରେ ପ୍ରକୃତିର ସ୍ଥିତିକୁ କିପରି ବ୍ୟବସ୍ଥିତ କରାଯିବ ତାହା ପ୍ରାକୃତିକ ଦର୍ଶନ କ୍ଷେତ୍ରରେ ମୁଖ୍ୟ ଆଲୋଚ୍ୟ ପ୍ରସଙ୍ଗ । ଏହି ପୃଷ୍ଠଭୂମିରେ ପ୍ରକୃତିର ଅବବୋଧକୁ ଆରିଷ୍ଟୋଟଲ ପ୍ରଥମେ ବ୍ୟାଖ୍ୟା କରିଛନ୍ତି । ତାଙ୍କ ମତରେ ଫର୍ମର ପରିକଳ୍ପନା ଭିତରେ ଏକ ଲକ୍ଷ୍ୟର ଭାବନା ନିହିତ ହେବା ଦେଖାଯାଏ । ଜଗତ-ପ୍ରକ୍ରିୟା ସେହି ଦୃଷ୍ଟିରୁ ଏକ ଲକ୍ଷ୍ୟ ଦିଗରେ ଗତିଶୀଳ । ପ୍ରକୃତିରେ ଯାହା କିଛି ରହିଛି ତାହାର କିଛି କିଛି ମୂଲ୍ୟ ଓ ଲକ୍ଷ୍ୟ ରହିଛି । ଜଗତରେ

କୌଣସି କିଛି ଉଦ୍ଦେଶ୍ୟହୀନ ନୁହେଁ । ପ୍ରକୃତିରେ ଯାହା ସବୁ ରହିଛି ପ୍ରତ୍ୟେକ କ୍ଷେତ୍ରରେ କିଛି ଯୋଜନା ଓ ପରିକଳ୍ପନା ରହିଛି । ଆରିଷ୍ଟୋଟଲ ପ୍ରକୃତିର ବ୍ୟାଖ୍ୟାନ ପୃଷ୍ଠଭୂମିରେ ପ୍ରୟୋଜନବାଦର ଧାରଣା ଦେଇଛନ୍ତି । ଅବଶ୍ୟ ଏଥିରୁ ଭାବିବା ଠିକ୍ ନୁହେଁ ଯେ ପ୍ରକୃତିରେ କିଛି ଯାନ୍ତ୍ରିକତା ନାହିଁ । ବରଂ ବିଜ୍ଞାନ ପରିସରରେ ବିଭିନ୍ନ ପ୍ରାକୃତିକ ଘଟଣା ପଶ୍ଚାତରେ ରହିଥିବା ଯାନ୍ତ୍ରିକ କାରଣକୁ ଅନୁଶୀଳନ କରାଯାଏ । କିନ୍ତୁ ଯେଉଁ କାରଣକୁ ଯାନ୍ତ୍ରିକ ନିଆଯାଏ ତାହା ଶେଷରେ ଏକ ପ୍ରୟୋଜନର ଭୂମିକା ନିହିତ ଥାଏ । କାରଣ ଆରିଷ୍ଟୋଟଲ ନିମିତ୍ତ କାରଣକୁ ପ୍ରୟୋଜନ କାରଣରେ ରୂପାନ୍ତରିତ କରିଛନ୍ତି । ସୁତରାଂ ଯାହାକୁ ବି ଏକ ଯାନ୍ତ୍ରିକ କାରଣ ବୋଲି ଗ୍ରହଣ କରାଯାଏ ତାହା ଶେଷରେ ପ୍ରୟୋଜନ ବା ଲକ୍ଷ୍ୟ ଥିବା କୁହାଯାଇପାରେ ।

ଯଦି ଏହି ଭାବନାକୁ ଗ୍ରହଣ କରାଯିବ ଯେ ପ୍ରକୃତିରେ ଯାହାକିଛି ଅଛି, କିଛି ବି ଉଦ୍ଦେଶ୍ୟବିହୀନ ନୁହେଁ, ତେବେ ହୁଏତ ଏହି ଭାବନାରୁ କେହି ମାନବକୈନ୍ଦ୍ରିକବାଦର ପରିକଳ୍ପନା କରିପାରନ୍ତି । ଆରିଷ୍ଟୋଟଲଙ୍କ ସିଦ୍ଧାନ୍ତକୁ ଏକ ସଂକୀର୍ଣ୍ଣ ମାନବକୈନ୍ଦ୍ରିକ ବିଚାରରେ ଅଭିବ୍ୟକ୍ତ କରିବା ଯଥାର୍ଥ ନୁହେଁ, କାରଣ ତାଙ୍କର ଦର୍ଶନ ଏହି ଭାବନାକୁ ଗ୍ରହଣ କରେ ନାହିଁ । ଜଗତରେ ଯେ ସବୁ କିଛି ମନୁଷ୍ୟ ଉଦ୍ଦେଶ୍ୟରେ ରହିଛି ତାହା ତାଙ୍କ ଦର୍ଶନର ଲକ୍ଷ୍ୟ ନୁହେଁ । ଆମେ ଭାବିପାରୁ ଯେ ଆମକୁ ଦିନରେ ଆଲୋକ ଦେବାକୁ ସୂର୍ଯ୍ୟ ରହିଛି, ରାତିରେ ଶୀତଳ ଆଲୋକ ଦେବାପାଇଁ ଚନ୍ଦ୍ର ରହିଛି । ବୃକ୍ଷରାଜି ଓ ପ୍ରାଣୀଜଗତ ଆମର ମଙ୍ଗଳ ପାଇଁ ରହିଛନ୍ତି । ଜଗତରେ ଯେତେ ପ୍ରାଣୀ ରହିଛନ୍ତି ସମସ୍ତଙ୍କ ମଧ୍ୟରେ ମନୁଷ୍ୟ ଶ୍ରେଷ୍ଠ ହୋଇଥିବାରୁ ସବୁ କିଛି ମନୁଷ୍ୟ ଉଦ୍ଦେଶ୍ୟରେ ରହିଛି ବୋଲି କେହି ଭାବିପାରନ୍ତି । ସକଳ ମାନବିକ ଲକ୍ଷ୍ୟ ପୂରଣ ପାଇଁ ବା ମାନବିକ ଲକ୍ଷ୍ୟ ଭିତରେ ଅନ୍ୟ ସକଳ ଲକ୍ଷ୍ୟ ଯେ ନିହିତ, ତାହା କେହି କହି ପାରନ୍ତି । କିନ୍ତୁ ଏପରି ଅନେକ କିଛି ରହିଛି ଯାହା ନିଜ ଲକ୍ଷ୍ୟ ପୂରଣ ପାଇଁ ରହିଛି, ସେମାନଙ୍କ ଲକ୍ଷ୍ୟ ସହିତ ମାନବିକ ପ୍ରୟୋଜନର କୌଣସି କାରଣ ନାହିଁ । ତେଣୁ ଆରିଷ୍ଟୋଟଲଙ୍କ ଭାବନାକୁ ନୃକୈନ୍ଦ୍ରିକବାଦ ଦିଗରେ ଅର୍ଥ କରିବା ଯଥାର୍ଥ ନୁହେଁ । ସବୁ କିଛି ଯେ ମନୁଷ୍ୟ ପାଇଁ ରହିଛି ସେ ଏହା ଭାବିନାହାନ୍ତି ।

ସେହିପରି ଆରିଷ୍ଟୋଟଲଙ୍କ ବିଚାର ସହିତ ଅନ୍ୟ ଏକ ଭାବନାକୁ ସଂଶ୍ଳିଷ୍ଟ କରିବା ମଧ୍ୟ ଯଥାର୍ଥ ବୋଧ ହୁଏ ନାହିଁ । ଆରିଷ୍ଟୋଟଲଙ୍କ ପ୍ରୟୋଜନବାଦରୁ ଏପରି ଭାବିବା ଯଥାର୍ଥ ନୁହେଁ ଯେ ପ୍ରକୃତି ସଚେତନ ଭାବେ କାର୍ଯ୍ୟକରୁଛି କିମ୍ବା ଜଗତ ବାହାରେ କିଛି ସଚେତନ ସତ୍ତା ବା ଈଶ୍ୱର ପ୍ରକୃତିରେ ଏହି ଶୃଂଖଳା ସୃଷ୍ଟି କରିଛନ୍ତି । ପ୍ରକୃତି ଜଡ, ତେଣୁ ପ୍ରକୃତିରେ ସଚେତନତା ରହିଛି କହିବା ଅଯୌକ୍ତିକ ମନେହୁଏ । ସେହିପରି ଈଶ୍ୱର ଭାବନା କ୍ଷେତ୍ରରେ କୁହାଯାଇପାରେ ଯେ ଆରିଷ୍ଟୋଟଲ କୌଣସି ସଚେତନ ବ୍ୟକ୍ତିସତ୍ତା ଥିବା ଈଶ୍ୱର ଭାବନାକୁ ଗ୍ରହଣ କରିନାହାନ୍ତି । ସୁତରାଂ ଆରିଷ୍ଟୋଟଲ ପ୍ରକୃତି ସଚେତନ ଭାବେ କାର୍ଯ୍ୟକରିବା କିମ୍ବା ଈଶ୍ୱର ଏକ ବ୍ୟକ୍ତି ଭାବେ ପ୍ରକୃତିର ପ୍ରତ୍ୟେକ କ୍ଷେତ୍ରରେ ଉଦ୍ଦେଶ୍ୟବାଦ ନିହିତ ରଖିବା ସମ୍ଭାବନାକୁ ସ୍ୱୀକାର କରିନାହାନ୍ତି । ସଂସାରରେ ମନୁଷ୍ୟ ହିଁ ଏକ ମାତ୍ର ପ୍ରାଣୀ ଯେ ନିଜର ଲକ୍ଷ୍ୟ ନେଇ ସଚେତନ । ଯଦିବି ମହୁମାଛି ବା ଉଇପରି ଜୀବମାନେ ସଚେତନ ହୋଇ କାର୍ଯ୍ୟ କରିବା ପ୍ରତୀୟମାନ ହୁଏ ବା ସେମାନଙ୍କର କାର୍ଯ୍ୟ କିଛି ଲକ୍ଷ୍ୟ ଦିଗରେ ପରିଚାଳିତ

ହେବା ଜଣାଯାଏ, ସେମାନେ ବାସ୍ତବ ପକ୍ଷେ ସେମାନଙ୍କ ପ୍ରବୃତ୍ତି ଦ୍ୱାରା କାର୍ଯ୍ୟକରନ୍ତି । ସେମାନେ ବିଚାରଶୀଳ ଜୀବ ନୁହନ୍ତି । ମନୁଷ୍ୟ ହିଁ ଏକମାତ୍ର ପ୍ରାଣୀ ଯିଏ ସଚେତନ ଓ ବିଚାରଶୀଳ ହୋଇ କାର୍ଯ୍ୟକରେ । ଅନ୍ୟ ମାନବେତର ପ୍ରାଣୀମାନେ ପ୍ରବୃତ୍ତିଦ୍ୱାରା ପରିଚାଳିତ ହୋଇ ସେମାନଙ୍କ ଲକ୍ଷ୍ୟ ଦିଗରେ କାର୍ଯ୍ୟ କରନ୍ତି ।

ଏପରିକି ଅଜୈବ ବସ୍ତୁ (inorganic matter) ମାନଙ୍କ କ୍ଷେତ୍ରରେ ସେମାନଙ୍କର ଗତି କିଛି ପ୍ରୟୋଜନ ଉଦ୍ଦେଶ୍ୟରେ ପରିଚାଳିତ ହେବାପରି ପ୍ରତୀୟମାନ ହୁଏ । ତେବେ ଏହା ପଶ୍ଚାତରେ କିଛି ଉଦ୍ଦେଶ୍ୟମୂଳକ ବା ସଚେତନ କ୍ରିୟା ନଥାଏ । କେହି ସଚେତନ ହୋଇ ଅଜୈବ ବସ୍ତୁମାନଙ୍କୁ ଗତିଶୀଳ କରନ୍ତି ନାହିଁ । ପ୍ରକୃତିର ନିମ୍ନାଂଶରେ ଅର୍ଥାତ୍ ଅଜୈବିକ ବସ୍ତୁମାନଙ୍କ କ୍ଷେତ୍ରରେ ଯେଉଁ କ୍ରିୟାମାନ ସଂଘଟିତ ହୁଏ ତାହାକୁ ଆରିଷ୍ଟୋଟଲ ବି ବୈଚାରିକ କ୍ରିୟା କହିଛନ୍ତି, କିନ୍ତୁ ଏ କ୍ଷେତ୍ରରେ କୌଣସି ଆତ୍ମ-ସଚେତନ ବିଚାର ନଥାଏ । କିମ୍ୱା କେହି ସଚେତନ ଶକ୍ତି ଏସବୁ ସଂଘଟିତ କରନ୍ତି ନାହିଁ, ଯଦିବି ପ୍ରକୃତିର ଅନେକ କ୍ରିୟା ଆମକୁ ବୈଚାରିକ କ୍ରିୟା ସଦୃଶ ପ୍ରତୀୟମାନ ହୁଏ । ତେବେ ଆରିଷ୍ଟୋଟଲ ମାନବେତର ପ୍ରାଣୀମାନଙ୍କର ପ୍ରାବୃତ୍ତିକ କାର୍ଯ୍ୟ ଓ ଅଜୈବ ବସ୍ତୁମାନଙ୍କର କେତେକ କ୍ରିୟାକୁ ବୈଚାରିକ କ୍ରିୟା ବା କାର୍ଯ୍ୟ ଭଳି ନେଇଛନ୍ତି । ପ୍ରକୃତିରେ ମାଧ୍ୟାକର୍ଷଣ ପରି ଯାନ୍ତ୍ରିକ କ୍ରିୟାମାନ ସ୍ୱରୂପରେ ବିଚାରଶୀଳ କ୍ରିୟାପରି ଜଣାପଡେ । ସେସବୁ ଘଟଣାମାନ ବିଚାରଶୀଳ ଭାବେ ସୃଷ୍ଟି ହୋଇ ନାହିଁ କିନ୍ତୁ ପ୍ରକୃତିର ନିମ୍ନତର ଅଂଶରେ ସେସବୁ ବୈଚାରିକ କ୍ରିୟା ପରି କାର୍ଯ୍ୟ କରନ୍ତି । ଦର୍ଶନ ପରିସରରେ ଇନ୍ଦ୍ରିୟାନୁଭୂତି ଓ ବିଚାରବୁଦ୍ଧି ମଧ୍ୟରେ ପାର୍ଥକ୍ୟ କରାଯିବା ଏକ ସୁବିଦିତ ଘଟଣା । ଇନ୍ଦ୍ରିୟଗ୍ରାହ୍ୟତା ଓ ବିଚାରବୁଦ୍ଧି ମଧ୍ୟରେ ରହିଥିବା ପାର୍ଥକ୍ୟକୁ ଆରିଷ୍ଟୋଟଲ ଖୁବ୍-ଭଲଭାବରେ ଜାଣିଥିଲେ ଓ ଇନ୍ଦ୍ରିୟାନୁଭୂତିକୁ ବିଚାରବୁଦ୍ଧିର ନିମ୍ନରେ ସ୍ଥାନିତ କରିଥିଲେ । ଇନ୍ଦ୍ରିୟଗ୍ରାହ୍ୟତାକୁ ସେ ବିଚାରବୁଦ୍ଧି ସହିତ ସଂଯୋଜିତ କରି ଉଭୟର ପ୍ରାଧାନ୍ୟକୁ ସ୍ୱୀକାର କରିଛନ୍ତି । ଅଜୈବ ବସ୍ତୁମାନେ ଯେପରି ଯାନ୍ତ୍ରିକ ଧାରାରେ କାର୍ଯ୍ୟକରନ୍ତି ବା କେତେକ ମାନବେତର ପ୍ରାଣୀ ପ୍ରବୃତ୍ତିଗତ କାର୍ଯ୍ୟ କରନ୍ତି ସେସବୁ ବୈଚାରିକ କାର୍ଯ୍ୟ ପରି ଜଣାଯାଏ, ତେବେ ଏସବୁ କ୍ଷେତ୍ରରେ କିଛି ସଚେତନ ଉଦ୍ଦେଶ୍ୟ ନଥାଏ । ସେହିପରି କେହି ସୃଜନଶୀଳ ଶିଳ୍ପୀ ନିଜର ପ୍ରାବୃତ୍ତିକ ଆବେଗଦ୍ୱାରା ପରିଚାଳିତ ହୋଇ କିଛି ସୁନ୍ଦର ସର୍ଜନାତ୍ମକ ଉପାଦାନ ସୃଷ୍ଟି କରିପାରେ, ଯଦିବା ଏହା ପଶ୍ଚାତରେ କିଛି ନିର୍ଦ୍ଦିଷ୍ଟ ସଚେତନ ଲକ୍ଷ୍ୟ ନଥାଏ ।

ପ୍ରକୃତିରେ ଫର୍ମ ବସ୍ତୁକୁ ପ୍ରଣୋଦିତ ବା ପ୍ରଭାବିତ କରିଥାଏ । ସକଳ ସୃଷ୍ଟି କ୍ଷେତ୍ରରେ ଫର୍ମ ବସ୍ତୁକୁ ସଂଘଟିତ କରିଥାଏ ବା ତାକୁ ରୂପ ଦେଇଥାଏ । ସକଳ ଜାଗତିକ କ୍ରିୟା ଓ ସ୍ଥିତି କ୍ଷେତ୍ରରେ ଫର୍ମ ବସ୍ତୁକୁ ପ୍ରଭାବିତ କରିଥାଏ । ତେବେ ବସ୍ତୁ ମଧ୍ୟରେ ବେଳେ ବେଳେ ପ୍ରତିରୋଧ ଆସିଥାଏ ବା ପ୍ରତିରୋଧ କରିବାର ଶକ୍ତି ପ୍ରକାଶ ପାଇଥାଏ । ସେ କ୍ଷେତ୍ରରେ ଫର୍ମ ପରିପୂର୍ଣ୍ଣ ଭାବରେ ପ୍ରକାଶିତ ହୋଇନଥାଏ । ତେବେ ଫର୍ମ ବସ୍ତୁ ବ୍ୟତୀତ ରହିବା ସମ୍ଭବ ନୁହେଁ କିମ୍ୱା ପ୍ରତ୍ୟେକ କ୍ଷେତ୍ରରେ ବସ୍ତୁର ବାଧା ବା ପ୍ରତିରୋଧକୁ ସଂପୂର୍ଣ୍ଣଭାବେ ଅତିକ୍ରମ କରିବା ସମ୍ଭବ ହୁଏ ନାହିଁ । ଫର୍ମ ବସ୍ତୁକୁ ରୂପ ଦିଏ ଓ ଏହାକୁ ପୂର୍ଣ୍ଣତା ଆଡକୁ ନିଏ । ତେବେ ଯେଉଁ କ୍ଷେତ୍ରରେ ବସ୍ତୁର ପ୍ରତିରୋଧ

ପ୍ରକାଶ ପାଏ ସେ କ୍ଷେତ୍ରରେ ଫର୍ମ ସଂପୂର୍ଣ୍ଣ ଭାବେ ଲକ୍ଷ୍ୟ ହାସଲ କରିପାରେ ନାହିଁ । ଏଥି ପାଇଁ ବେଳେ ବେଳେ ଅସ୍ୱାଭାବିକ, ଅସଂପୂର୍ଣ୍ଣ, ଅସଂଗତ ଓ ଅପ୍ରାକୃତିକ କ୍ରିୟାମାନ ବା ପ୍ରାଣୀମାନେ ଉଦ୍‌ଭବ ହୁଅନ୍ତି । ଏସବୁର କାରଣ ହେଉଛି ଏ ସବୁ କ୍ଷେତ୍ରରେ ଫର୍ମ ଯଥାର୍ଥ ଭାବରେ ବସ୍ତୁ ଉପରେ ନିଜର ପ୍ରଭାବ ବିସ୍ତାର କରିପାରି ନଥାଏ । ପ୍ରକୃତି ତାର ଉପଯୁକ୍ତ ଲକ୍ଷ୍ୟରେ ପହଞ୍ଚି ନ ପାରିଲେ ଏପରି ଅପ୍ରାକୃତିକ ଓ ଅସ୍ୱାଭାବିକ ସୃଷ୍ଟି ହୋଇଥାଏ । ଯାହା ସ୍ୱାଭାବିକ ଓ ପ୍ରାକୃତିକ ବିଜ୍ଞାନ ତାର ଅନୁଶୀଳନ କରିବା ଆବଶ୍ୟକ, କାରଣ ସେ କ୍ଷେତ୍ରରେ ପ୍ରକୃତି ତାର ପରିପୂର୍ଣ୍ଣତା ବା ଲକ୍ଷ୍ୟ ହାସଲ କରିପାରିଛି । ଯାହା ସଂଗତ ଓ ସ୍ୱାଭାବିକ ସେ କ୍ଷେତ୍ରରେ ପ୍ରକୃତି ତାର ଉଦ୍ଦେଶ୍ୟ ସାଧନ କରିଛି, ଅର୍ଥାତ୍ ପ୍ରାକୃତିକ ପ୍ରକ୍ରିୟାରେ ଉପଯୁକ୍ତ ଲକ୍ଷ୍ୟ ସାଧିତ ହୋଇଛି । ଏଠାରେ ଫର୍ମ ସଫଳ ଭାବରେ ବସ୍ତୁ ଉପରେ ନିଜର ପ୍ରଭାବ ସୃଷ୍ଟି କରିପାରିଛି । ଯେଉଁଠି ଅସ୍ୱାଭାବିକତା ବା ଅସଂପୂର୍ଣ୍ଣତା ପ୍ରକାଶ ପାଉଛି ସେ କ୍ଷେତ୍ରରେ ଫର୍ମ ବସ୍ତୁଉପରେ ନିଜର ପୂର୍ଣ୍ଣ ଆଧିପତ୍ୟ ବା ପ୍ରଭାବ ବ୍ୟକ୍ତ କରିପାରି ନାହିଁ ।

ସଂପ୍ରତି ଯାହାକୁ ପଦାର୍ଥ ବିଜ୍ଞାନ ବା ଫିଜିକ୍‌ସ କୁହାଯାଉଛି (ଆରିଷ୍ଟୋଟଲ ତାହାକୁ ପ୍ରାକୃତିକ ଦର୍ଶନ କହୁଥିଲେ) ସେକ୍ଷେତ୍ରରେ ତିନୋଟି ମୌଳିକ ପ୍ରତ୍ୟୟ ଯଥା ଗତି, ସ୍ଥାନ ଓ କାଳ (motion, space and time) ବିଷୟରେ ଚର୍ଚ୍ଚା ହେବା ଦେଖାଯାଏ । ଆରିଷ୍ଟୋଟଲ ମଧ୍ୟ ଏସବୁ ଭାବନା ଉପରେ ତାଙ୍କର ମତ ରଖିଛନ୍ତି । ଗତି ହେଉଛି ବସ୍ତୁ କିପରି ଫର୍ମର ରୂପ ନିଏ ତାର ବ୍ୟାଖ୍ୟାନ । ବସ୍ତୁ କିପରି ପ୍ରଭାବିତ ହୁଏ,ସୃଷ୍ଟି ହୁଏ ଓ ବିଲୀନ ହୁଏ ତାହା ଗତି ମାଧ୍ୟମରେ ବ୍ୟାଖ୍ୟା କରାଯିବା ସମ୍ଭବ । ସେହିପରି ବସ୍ତୁର ଗୁଣରେ କିପରି ପରିବର୍ତ୍ତନ ହୁଏ, ବସ୍ତୁର ପରିମାଣରେ କିପରି ପରିବର୍ତ୍ତନ ଆସେ ଓ ବସ୍ତୁ କିପରି ଗତିଶୀଳ ହୋଇ ସ୍ଥାନ ପରିବର୍ତ୍ତନ କରେ ଏସବୁ ଗତି ପରିସରରେ ଆଲୋଚନାର ପ୍ରସଙ୍ଗ ଅଟେ ।

ସେହିପରି "ସ୍ଥାନ" ଉପରେ ମଧ୍ୟ ଆରିଷ୍ଟୋଟଲ ତାଙ୍କର ମତ ରଖିଛନ୍ତି । ସ୍ଥାନକୁ ଯେଉଁମାନେ ଶୂନ୍ୟତା ଅର୍ଥରେ ନେଇଛନ୍ତି ଆରିଷ୍ଟୋଟଲ ତାହା ଗ୍ରହଣ କରିନାହାନ୍ତି । ଶୂନ୍ୟ ସ୍ଥାନକୁ ସେ ଅସମ୍ଭବ କହିଛନ୍ତି । ଏହି କ୍ଷେତ୍ରରେ ଆରିଷ୍ଟୋଟଲ ପ୍ଲେଟୋଙ୍କ ମତକୁ ଗ୍ରହଣ କରିନାହାନ୍ତି କିମ୍ବା ସ୍ଥାନକୁ ଏକ ଭୌତିକ ବସ୍ତୁ ବୋଲି ମଧ୍ୟ ନେଇ ନାହାନ୍ତି । ସ୍ଥାନ ଯୋଗୁ ବସ୍ତୁମାନଙ୍କର ଗତିଶୀଳତା ବା ସ୍ଥାନାନ୍ତର ସମ୍ଭବ ହୋଇପାରୁଛି । କୌଣସି ବସ୍ତୁ ଯେଉଁ ସୀମାଦ୍ୱାରା ଆବଦ୍ଧ ହୁଏ ତାହା ହେଉଛି ସ୍ଥାନ । ଅର୍ଥାତ୍ ବସ୍ତୁମାନଙ୍କର ଅସ୍ତିତ୍ୱକୁ ସ୍ଥାନ କୁହାଯାଏ । ସ୍ଥାନ କିନ୍ତୁ ବସ୍ତୁ ନୁହେଁ । ଏକ ବସ୍ତୁ ଯେଉଁ ସୀମା ନେଇଥାଏ, ତାହା ହେଉଛି ସ୍ଥାନ । ବସ୍ତୁ ନଥିଲେ, ସ୍ଥାନ ନାହିଁ । ବସ୍ତୁର ଗତି ଅର୍ଥ ବସ୍ତୁର ସ୍ଥାନାନ୍ତର । ସ୍ଥାନ ଯୋଗୁ ସ୍ଥାନାନ୍ତର ସମ୍ଭବ ହୋଇଥାଏ । ସ୍ଥାନ ଯେ ଅସୀମ ଆରିଷ୍ଟୋଟଲ ଏହା ଗ୍ରହଣ କରନ୍ତି ନାହିଁ ।

କାଳ ସଂପର୍କରେ ଆରିଷ୍ଟୋଟଲଙ୍କର ମତ ହେଉଛି ଯେ ଏହା ଗତିର ପରିମାପକ । ଜଗତରେ ବିଭିନ୍ନ ପରିବର୍ତ୍ତନ ହେଉଛି ବୋଲି କାଳ ବା ସମୟର ଭାବନା ରହିଛି । ପୂର୍ବରୁ, ପରେ, ଆଜି, ଗତକାଲି, ଦଶବର୍ଷ

ପୂର୍ବେ, କୋଡିଏ ବର୍ଷ ପରେ ଇତ୍ୟାଦି ଭାବନାମାନ କାଳ ସଂପର୍କିତ ଅଭିବ୍ୟକ୍ତି । ଯଦି ଜଗତରେ କିଛି ପରିବର୍ତ୍ତନ ହୁଅନ୍ତା ନାହିଁ ତେବେ କାଳର କୌଣସି ଭାବନା ଆସନ୍ତା ନାହିଁ । ସେହିପରି ଏହି ପରିବର୍ତ୍ତନକୁ ଅବବୋଧ କରିବା ପାଇଁ ଯଦି ଜଗତରେ କୌଣସି ଅନୁଭବୀ ବ୍ୟକ୍ତି ରହିନଥାନ୍ତେ ତେବେ ମଧ୍ୟ କାଳର ଅର୍ଥ ରହନ୍ତା ନାହିଁ । ଏଠାରେ ଏକ ସମସ୍ୟା ଉଦ୍ରେକ ହୋଇଥାଏ । କାରଣ ଆମେ ଏପରି ଏକ ସ୍ଥିତିର ପରିକଳ୍ପନା କରିପାରିବା ଯେତେବେଳେ ପୃଥିବୀ ପୃଷ୍ଠରେ କୌଣସି ମନୁଷ୍ୟ ନଥିଲେ, କିନ୍ତୁ ଜଗତରେ ପରିବର୍ତ୍ତନ, ଗତି ରହିଥିଲା । ଯେହେତୁ କେହି ସଚେତନ ପ୍ରାଣୀ ନଥିଲେ କାଳ ନଥିଲା ବୋଲି ଆମେ କହିପାରିବା କି ? ତେବେ ଏହି ସମସ୍ୟାଟି ଆରିଷ୍ଟୋଟଲଙ୍କ ଦର୍ଶନରେ ଉଦ୍‌ଭବ ହୋଇ ନାହିଁ । କାରଣ ଆରିଷ୍ଟୋଟଲଙ୍କର ଭାବନା ଥିଲା ଯେ ଜଗତରେ ମନୁଷ୍ୟ ଓ ପ୍ରାଣୀମାନେ ଅନନ୍ତକାଳରୁ ନିରନ୍ତର ଭାବେ ରହିଛନ୍ତି । ତେଣୁ କାଳର ପରିକଳ୍ପନା କ୍ଷେତ୍ରରେ ସେ ଦୁଇଟି ବିଷୟକୁ ମୌଳିକ ଭାବେ ସଂଯୋଜିତ କରିଛନ୍ତି ଯଥା ପରିବର୍ତ୍ତନ ଓ ଚେତନା । ପରିବର୍ତ୍ତନ ଯୋଗୁ ସମୟର ଭାବନା ଆସୁଛି ଓ ସେହିପରି ପୂର୍ବ, ପର, ଆଜି, କାଲି ପରି ସଚେତନତାରୁ ମଧ୍ୟ ସମୟର ପ୍ରତ୍ୟୟ ସୃଷ୍ଟି ହେଉଛି । ପରିବର୍ତ୍ତନ ବା ଚେତନାର ଅଭାବରେ ସମୟର ଭାବନା ରହିପାରିବ ନାହିଁ ବୋଲି ଆରିଷ୍ଟୋଟଲ ବିଚାର କରିଛନ୍ତି ।

ସ୍ଥାନ ଓ କାଳ ଅନ୍ତହୀନ ଭାବେ ବିଭାଜିତ ହେବା ସମ୍ଭବ କି ନୁହଁ ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ । ଆରିଷ୍ଟୋଟଲଙ୍କ ମତରେ ସ୍ଥାନ ଓ କାଳ ଅନ୍ତହୀନ ଭାବରେ ବିଭାଜିତ ହୋଇପାରିବେ କିନ୍ତୁ ବାସ୍ତବ ପକ୍ଷେ ସେମାନେ ସେପରି ବିଭାଜିତ ନୁହନ୍ତି । ସେମାନଙ୍କୁ ସୀମାହୀନ ଭାବରେ ବିଭାଜିତ କରାଯାଇପାରେ, ବା ସେପରି ବିଭାଜନ କରିବା କ୍ଷେତ୍ରରେ ପ୍ରତିବନ୍ଧକ ନଥାଇପାରେ । କିନ୍ତୁ ଆମ ଅନୁଭୂତିରେ ଆମେ ଜାଣେ ଯେ ସେମାନେ ସେପରି ଅନ୍ତହୀନ ଭାବରେ ବିଭାଜିତ ନୁହନ୍ତି ।

ଏହି ଆଲୋଚନା ପରେ ବର୍ତ୍ତମାନ ପ୍ରଶ୍ନ ହେଉଛି ବସ୍ତୁମାନେ କେଉଁ କ୍ରମବଦ୍ଧ ପ୍ରକ୍ରିୟାରେ ପ୍ରକୃତିରେ ରହିଛନ୍ତି ତାହାର ଆଲୋଚନା । ଯେଉଁମାନଙ୍କ ପାଖରେ ଫର୍ମ ସିଦ୍ଧାନ୍ତ ଅନୁଯାୟୀ ଫର୍ମ ଅଧିକ ପରିପ୍ରକାଶ ଘଟିଛି ସେମାନେ ଶୀର୍ଷରେ ରହିଛନ୍ତି । କ୍ରମବଦ୍ଧତା ମାନଦଣ୍ଡରୁ ଶୀର୍ଷରେ ରହିଥିବା ସତ୍ତାମାନଙ୍କ ପାଖରେ ଫର୍ମ ଅଧିକ ବ୍ୟକ୍ତ ହୋଇଛି । ଏହି ବିକାଶ ଧାରାରୁ ବିବର୍ତ୍ତନର ଏକ ଦର୍ଶନ ମଧ୍ୟ ଆସିଥାଏ । ନିମ୍ନାଂଶରେ ଥିବା ସତ୍ତାମାନ ବି ଉର୍ଦ୍ଧ୍ୱକୁ ଯାଇପାରିବେ ଯଦି ସେମାନେ ଫର୍ମକୁ ଅଧିକ ଧରି ରଖିବାରେ ସଫଳ ହୁଅନ୍ତି । ତେବେ ଆରିଷ୍ଟୋଟଲଙ୍କ ବିଚାରାନୁଯାୟୀ ବିବର୍ତ୍ତନ ଏକ ସମୟ ଆଧାରିତ ବିଚାର ନୁହେଁ । ଆଧୁନିକ ସମୟରେ ବିବର୍ତ୍ତନକୁ ଯେଉଁ ଧାରାରେ ବ୍ୟକ୍ତ କରାଯାଉଛି ତାହା ଆରିଷ୍ଟୋଟଲଙ୍କ ବିଚାର କ୍ଷେତ୍ରକୁ ଆସିନଥିଲା । ଆଧୁନିକ କାଳରେ ପ୍ରାକୃତିକ ପରିବେଶର ପ୍ରଭାବ ଓ ଅନ୍ୟାନ୍ୟ କାରଣରୁ ଏକ ନିରନ୍ତର ପରିବର୍ତ୍ତନ ମାଧ୍ୟମରେ ବିବର୍ତ୍ତନର ଧାରା ଅଗ୍ରଗତି କରିଛି । ଆରିଷ୍ଟୋଟଲ ଏହି ପ୍ରକାରର ପରିବର୍ତ୍ତନର ପରିକଳ୍ପନା କରି ନାହାନ୍ତି । ତାଙ୍କ ମତରେ ଏକ ଜାତି (genus) ଓ ତାର ଉପଜାତି (species) ଉଭୟ ହେଉଛନ୍ତି ଚିରନ୍ତନ । ସେମାନଙ୍କର ଆରମ୍ଭ ବା ପରିସମାପ୍ତି ନାହିଁ । ମନୁଷ୍ୟ ବ୍ୟକ୍ତିମାନେ

ମରଣଶୀଳ, କାରଣ ସେମାନଙ୍କର ଜନ୍ମ ଅଛି, ଯାହାର ଜନ୍ମ ଅଛି, ତା'ର ମୃତ୍ୟୁ ରହିଛି । କିନ୍ତୁ ମନୁଷ୍ୟ ଜାତିର ବା ଶ୍ରେଣୀର ମୃତ୍ୟୁ ନାହିଁ । ମନୁଷ୍ୟ ଏକ ଜାତି ବା ଶ୍ରେଣୀ ଭାବରେ ପ୍ରକୃତିରେ ସର୍ବଦା ରହିଆସିଛି । ମନୁଷ୍ୟ ଜାତି ବିଷୟରେ ଯାହା କୁହାଗଲା ତାହା ପ୍ରାଣୀ-ଜାତି ବା ଉଦ୍‌ଭିଦ-ଜାତି ବିଷୟରେ ମଧ୍ୟ କୁହାଯାଇପାରେ । ଯେହେତୁ ମନୁଷ୍ୟ ସର୍ବଦା ଜଗତରେ ରହିଛି ତେଣୁ ମନୁଷ୍ୟମାନଙ୍କର ବିବର୍ତ୍ତନ ଆରିଷ୍ଟୋଟଲଙ୍କ ପାଇଁ ଏକ ଅବାନ୍ତର ପ୍ରଶ୍ନ । ଡ଼ାରଓ୍ୱିନ ଯେଉଁପରି ବିବର୍ତ୍ତନବାଦକୁ ବିଜ୍ଞାନ ପରିସରରେ ବିଶ୍ଳେଷଣ କରିଛନ୍ତି, ସେହି ପ୍ରଶ୍ନ ଆରିଷ୍ଟୋଟଲଙ୍କ ପାଖରେ ଅବାନ୍ତର ମନେହୁଏ । ତେବେ ଆରିଷ୍ଟୋଟଲ କେଉଁ ଅର୍ଥରେ ବିବର୍ତ୍ତନବାଦ ପ୍ରସଙ୍ଗର ଅବତାରଣା କରୁଛନ୍ତି ? ଏଠାରେ ଯେଉଁ ବିବର୍ତ୍ତନର କଥା କୁହାଯାଉଛି ତାହା ଏକ ସମୟଭିତ୍ତିକ ବିବର୍ତ୍ତନ କ୍ରିୟା ନୁହେଁ । ଆରିଷ୍ଟୋଟଲଙ୍କ ବିବିର୍ତ୍ତନ କ୍ରିୟା ଏକ ସମୟାନୁଭିତ୍ତିକ ପରିକଳ୍ପନା ନୁହେଁ, ବରଂ ଏହା ଏକ ତାର୍କିକ ଅଭିବ୍ୟକ୍ତି । ସେ ବିକାଶକୁ ଏକ ତର୍କବୁଦ୍ଧି ଆଧାରରେ ପ୍ରକାଶ କରିଛନ୍ତି । ନିମ୍ନତର ଭିତରେ ଉଚ୍ଚତର ସମ୍ଭାବନା ଅନ୍ତର୍ନିହିତ ହୋଇ ରହିଥାଏ । ଉଚ୍ଚତର ଭିତରେ ନିମ୍ନତର ସ୍ଥିତିର ବାସ୍ତବତା ବି ଥାଏ । ଯାହା ନିମ୍ନତର ଭିତରେ ଅନ୍ତର୍ନିହିତ ରହିଥାଏ ତାର ପରିପ୍ରକାଶ ଉଚ୍ଚତର ମଧ୍ୟଦେଇ ବ୍ୟକ୍ତ ହୁଏ । ଯେଉଁ ଫର୍ମ ନିମ୍ନତର ଭିତରେ ଅସ୍ପଷ୍ଟ ଭାବେ ନିହିତ ଥାଏ ତାହା ଉଚ୍ଚତର ଭିତରେ ସଂଘର୍ଷ ଭିତର ଦେଇ ପରିପ୍ରକାଶ ଲାଭ କରେ । ନିମ୍ନତର ଭିତରୁ ଉଚ୍ଚତରର ପରିପ୍ରକାଶ ଘଟିବା ହେଉଛି ବିବର୍ତ୍ତନ । ଉଚ୍ଚତର ନିମ୍ନତରର ଭିତ୍ତିଭୂମି ଉପରେ ଆତ୍ମପ୍ରକାଶ କରେ । ଯାହା ନିମ୍ନତର ତାହା ଆରିଷ୍ଟୋଟଲଙ୍କ ମାନଦଣ୍ଡରୁ ହେଉଛି ବସ୍ତୁ, ଯାହା ଉଚ୍ଚତର ତାହା ହେଉଛି ଫର୍ମ । ନିମ୍ନତର ଯେଉଁ ସଂଘାତ ଦେଇ ବ୍ୟକ୍ତ ହେବାକୁ ଚାହେଁ ତାହା ହେଉଛି ଉଚ୍ଚତର । ସମଗ୍ର ବିଶ୍ୱ ଏହି ଦୃଷ୍ଟିରୁ ଏକ ଶୃଂଖଳ ଓ ଏହା ଏକ ଅବିଚ୍ଛିନ୍ନ ଅନୁକ୍ରମ । ଏହା ଏକ ପ୍ରକ୍ରିୟା, ତେବେ ଏହି ପ୍ରକ୍ରିୟାଟି ଏକ ସମୟ ଆଧାରିତ କ୍ରିୟା ନୁହେଁ ବରଂ ଏକ ନିରନ୍ତର ଓ ଅବାରିତ ପ୍ରକ୍ରିୟା । ପ୍ରତ୍ୟେକ ବିକାଶ ପଶ୍ଚାତରେ ଏହି ଅପରିବର୍ତ୍ତନୀୟ ଧାରାଟି ସଂଯୁକ୍ତ ରହିଥାଏ । ଏହାକୁ ଆମେ ଯେଉଁ ପରିଭାଷାରେ ବ୍ୟକ୍ତ କଲେ ବି ଏହା ହିଁ ଜଗତ ବିକାଶର ପରିକଳ୍ପନା । ପରମ ସତ୍ତା, ଈଶ୍ୱର, ବିଚାରବୁଦ୍ଧି, ପରମାର୍ଥିକ ତତ୍ତ୍ୱ, ନିରଙ୍କୁଶ ଫର୍ମ ଇତ୍ୟାଦି ଜଗତର ପ୍ରତ୍ୟେକ ସୋପାନରେ ଆତ୍ମପ୍ରକାଶ କରିଥାଏ । ତେଣୁ ପ୍ରତ୍ୟେକ ସ୍ଥିତି ଏକ ସୁବ୍ୟବସ୍ଥିତ ଅବସ୍ଥା ଭାବେ ରହିଥିବା ଆରିଷ୍ଟୋଟଲ ପରିକଳ୍ପନା କରିଛନ୍ତି ।

କୌଣସି ବସ୍ତୁର ଫର୍ମ ହେଉଛି ତାର ସଂଗଠିତ ରୂପ । ଏଣୁ ଯାହା ଉଚ୍ଚତର ତାହା ଅଧିକ ସଂଗଠିତ । ସମଗ୍ର ପ୍ରକୃତି ଯେଉଁ ଆଧାରରେ ପ୍ରକାଶିତ ହୋଇଛି ତାହାକୁ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ ଯଥା ଅଜୈବ ଓ ଜୈବ । ପ୍ରାକୃତିକ ସଂସ୍ଥାନକୁ ଜୈବ ଓ ଅଜୈବ ଭାବରେ ପ୍ରକାଶ କରିବା କ୍ଷେତ୍ରରେ ଆରିଷ୍ଟୋଟଲ ପଥ ପ୍ରଦର୍ଶକ । ପ୍ରାକୃତିକ କ୍ରମବଦ୍ଧ ସୋପାନର ନିମ୍ନରେ ରହିଛି ଅଜୈବ ବସ୍ତୁ । ଫର୍ମବିହୀନ ବସ୍ତୁର ନିକଟବର୍ତ୍ତୀ ଉପାଦାନ ହେଉଛି ଅଜୈବ ବସ୍ତୁ । ଫର୍ମବିହୀନ ବସ୍ତୁ ଏକ ପରମ ଅବସ୍ଥା ଯାହାର ଅସ୍ତିତ୍ୱ ନାହିଁ । ତେବେ ତାର ନିକଟତର ବସ୍ତୁ ହେଉଛି ଅଜୈବ ସତ୍ତା ବା ବସ୍ତୁ । ଅଜୈବ ଜଗତରେ ନିଜର ପ୍ରଭାବକୁ ଦୃଢ଼ କରିବାକୁ ଓ ଫର୍ମ

ଉପରେ ନିଜର ପ୍ରାଧାନ୍ୟ ବିସ୍ତାର କରିବାକୁ ବସ୍ତୁ ଏପରି କ୍ରିୟାଶୀଳ ହୋଇଥାଏ ଯେ କ୍ଷୀଣ ଭାବରେ ହେଲେ ମଧ୍ୟ ଏଥିରେ ସାମାନ୍ୟର (universal) ପରିପ୍ରକାଶ ଘଟେ । ଏଠାରେ କେଉଁ ଫର୍ମ ପ୍ରକାଶ ପାଏ ? ଏହାର ତାତ୍ପର୍ଯ୍ୟ ହେଉଛି ଏଠାରେ କେଉଁ କ୍ରିୟା, ପ୍ରୟୋଜନ ବା ଲକ୍ଷ୍ୟ ନିହିତ ଥାଏ ? ଏଠାରେ ଅଜୈବ ବସ୍ତୁ ପାଖରେ ଫର୍ମ ବହିର୍ସ୍ଥିତିରେ ରହିଥାଏ । ଏଣୁ ଅଜୈବ ବସ୍ତୁ ସ୍ଥାନ ବା ସ୍ପେଶରେ ଏହି ଲକ୍ଷ୍ୟ ଦିଗରେ ଗତିଶୀଳ ହୁଏ ଯେପରି ଏହି ଫର୍ମ ସହିତ ସଂଯୁକ୍ତ ହେବ । ଏହାକୁ ଆଧୁନିକ ବୈଜ୍ଞାନିକ ଭାବଧାରାରେ ମାଧ୍ୟାକର୍ଷଣ କୁହାଯାଇପାରେ । ଆରିଷ୍ଟୋଟଲଙ୍କ ମତରେ ପ୍ରତ୍ୟେକ ମୌଳିକ ସତ୍ତାର ସ୍ୱତନ୍ତ୍ର ଓ ପ୍ରାକୃତିକ ଗତି ରହିଛି । ଏହାର ଲକ୍ଷ୍ୟ ହେଉଛି ଏହାର ପ୍ରକୃତ ଫର୍ମ ସହ ମିଳିତ ହେବା । ଅବଶ୍ୟ ଏହି ଲକ୍ଷ୍ୟକୁ ଓ ଏହାର ସ୍ପେଶରେ ଗତିକୁ ଆମେ ପରିକଳ୍ପନା କରିଥାଉ । ଅଜୈବ ବସ୍ତୁ ଏହାର ଫର୍ମ ସହ ସମ୍ମିଳିତ ହେବା ପରେ ଏହା ତାହାର ଲକ୍ଷ୍ୟରେ ଉପନୀତ ହୋଇ ସ୍ଥିର ଅବସ୍ଥାକୁ ଆସେ । ଆରିଷ୍ଟୋଟଲଙ୍କ ମତରେ ଅଗ୍ନିର ପ୍ରାକୃତିକ ଗତି ଉର୍ଦ୍ଧ୍ୱଗାମୀ, ଜଳର ପ୍ରାକୃତିକ ଗତି ନିମ୍ନଗାମୀ । ଆରିଷ୍ଟୋଟଲ ଏହି ପରିପ୍ରେକ୍ଷୀରେ ସର୍ବଦା "ପ୍ରାକୃତିକ" ପ୍ରତ୍ୟୟଟି ବ୍ୟବହାର କରିଛନ୍ତି । ଏକ ଘଟଣା ବା ସ୍ଥିତିକୁ ବ୍ୟାଖ୍ୟା କରିବା ସମୟରେ ସେ "ପ୍ରାକୃତିକ" ପଦଟି ବାରମ୍ବାର ବ୍ୟବହାର କରିଥିବା ଯୋଗୁ କିଛି ଅସ୍ପଷ୍ଟତା ସୃଷ୍ଟି ହୋଇଥାଏ । ଯଦି ଜଣେ ସାଧାରଣ ବ୍ୟକ୍ତିଙ୍କୁ ଏହି ପ୍ରଶ୍ନ କରାଯାଏ ଓଜନିଆ ବସ୍ତୁମାନ କାହିଁକି ଭୂମି ଉପରକୁ ଖସି ପଡନ୍ତି, ବେଲଟି ଗଛରେ ପାକଳ ହେବାପରେ ଏହା କାହିଁକି ତଳକୁ ଖସିପଡିଲା- ସେ ହୁଏତ କହିବେ ଏହା ତ ଏକ ପ୍ରାକୃତିକ ଘଟଣା । ଯେଉଁ ଘଟଣା ସହ ସେ ସଂପୂର୍ଣ୍ଣ ଅଭ୍ୟସ୍ତ ତାହା ତାଙ୍କ ପାଇଁ ପ୍ରାକୃତିକ, ହୁଏତ ଏହାର କାରଣ ନେଇ ଚିନ୍ତାକରିବାର ଆବଶ୍ୟକତା ସେ କେବେ ଅନୁଭବ କରିନାହାନ୍ତି । ଆରିଷ୍ଟୋଟଲ ଏହି ଧାରାରେ ଘଟଣାମାନଙ୍କୁ ପ୍ରାକୃତିକ କହିନାହାନ୍ତି । ପ୍ରାକୃତିକ କହିବାର କାରଣ ହେଉଛି ଫର୍ମ ନିଜକୁ ଏପରି ପ୍ରକାଶ କରିପାରେ ଯଦ୍ୱାରା ଯେତେ କ୍ଷୀଣ ଭାବରେ ହେଲେ ମଧ୍ୟ ଏହା ବସ୍ତୁ ସହିତ ମିଳିତ ହେବାକୁ ଚାହେଁ । ବସ୍ତୁ ନିଜର ଲକ୍ଷ୍ୟ ପୂରଣ ଦିଗରେ ସର୍ବଦା ଗତିଶୀଳ । ଗତିଶୀଳତାର ଲକ୍ଷ୍ୟ ହେଉଛି ବସ୍ତୁ ସର୍ବଦା ଫର୍ମ ସହିତ ସଂଯୁକ୍ତ ହେବାକୁ ଚାହେଁ ।

ଆରିଷ୍ଟୋଟଲ ଜୈବ ଓ ଅଜୈବ ମଧ୍ୟରେ ପାର୍ଥକ୍ୟ କରିଛନ୍ତି । ଯାହା ଅଜୈବ ତାହାର ଲକ୍ଷ୍ୟ ତାହା ବାହାରେ ନିହିତ, ଯାହା ଜୈବ ତାହାର ଲକ୍ଷ୍ୟ ତାହା ମଧ୍ୟରେ ଅନ୍ତର୍ନିହିତ । ସକଳ ଜୈବିକ ସତ୍ତାର ଏହା ମୌଳିକ ଲକ୍ଷଣ ଯେ ଏହାର ଲକ୍ଷ୍ୟ ଏହା ମଧ୍ୟରେ ନିହିତ । ଏହାକୁ ଆରିଷ୍ଟୋଟଲ ଅନ୍ତର୍ନିହିତ ସ୍ୱବିକାଶ ସିଦ୍ଧାନ୍ତ (Self-developing principle) ବୋଲି ଅଭିହିତ କରିଛନ୍ତି । ଏହି ଲକ୍ଷ୍ୟ ବା ଉଦ୍ଦେଶ୍ୟ ହେଉଛି ଆତ୍ମ-ସଚେତନ ବା ବାସ୍ତବ ଅଭିବ୍ୟକ୍ତି । ଅଜୈବ ବସ୍ତୁମାନଙ୍କର କେବଳ ଗତିଶୀଳତା ହିଁ ଲକ୍ଷଣ । ସ୍ଥାନାନ୍ତର ବ୍ୟତୀତ ସେମାନଙ୍କ ପାଖରେ ଅନ୍ୟ କିଛିର କାର୍ଯ୍ୟ ବା ପ୍ରୟୋଜନ ରହି ନଥାଏ । କିନ୍ତୁ ଜୈବିକ ବସ୍ତୁମାନଙ୍କ ପାଖରେ ବୃଦ୍ଧିପାଇବା ବା ବିକାଶ ଲାଭକରିବାର ପ୍ରୟୋଜନ ରହିଥାଏ । ଏହି ବିକାଶ କିଛି ଯାନ୍ତ୍ରିକ ଅଭିବୃଦ୍ଧିକୁ ବୁଝାଏ ନାହିଁ, ଏହା ଅନ୍ତର୍ନିହିତ

ବିକାଶକୁ ବୁଝାଏ । ଯାହା ଜଣଙ୍କ ପାଖରେ ଅନ୍ତର୍ନିହିତ ଥାଏ, ତାହା ସବିଶେଷ ବହିର୍ପ୍ରକାଶ ଏହାର ଆଭିମୁଖ୍ୟ ହୋଇଥାଏ । ଜଣଙ୍କ ପାଖରେ ରହିଥିବା ସାମର୍ଥ୍ୟ ବା ସଂଭାବ୍ୟତାକୁ ବାସ୍ତବତାରେ ରୂପାନ୍ତରିତ କରିବା ଏହାର ଆଭିମୁଖ୍ୟ ।

ଆରିଷ୍ଟୋଟଲ ସକଳ ସତ୍ତାମାନଙ୍କର ଯେଉଁ କ୍ରମବଦ୍ଧ ସ୍ଥିତିର ପରିକଳ୍ପନା କରିଛନ୍ତି ତା'ର ନିମ୍ନାଂଶରେ ରହିଛି ଅଜୈବ ବସ୍ତୁ ଓ ଏହାର ଉପରେ ରହିଛି ଜୈବ ବସ୍ତୁ । ଜୈବ ବସ୍ତୁ ପାଖରେ ଫର୍ମର ଅଭିବ୍ୟକ୍ତି ବାସ୍ତବ ଓ ଅଧିକ ସଂଗଠିତ ହୋଇଛି । ଏହି ଅନ୍ତର୍ନିହିତ ସଂଗଠିତ ସ୍ଥିତି ହେଉଛି ଜୀବନ କିମ୍ବା ଜୀବନର ଆତ୍ମା । ଜୀବନ ହେଉଛି ଜୈବିକ ବସ୍ତୁର ସୁସଂଗଠିତ ଅଭିବ୍ୟକ୍ତି । ଏପରିକି ମାନବର ଆତ୍ମା ମନୁଷ୍ୟ ଶରୀରର ଏକ ସୁସଂଗଠିତ ପରିପ୍ରକାଶ ଅଟେ । ବସ୍ତୁ ସହିତ ଫର୍ମର ସଂପର୍କ ସଦୃଶ ମନୁଷ୍ୟର ଆତ୍ମା ହେଉଛି ଫର୍ମ, ଶରୀର ହେଉଛି ବସ୍ତୁ । ଜୈବିକ ବସ୍ତୁମାନଙ୍କ ପାଖରେ ଜୀବନ୍ତ ଆତ୍ମାର ଅଭିବ୍ୟକ୍ତ ହେଇଛି । ଏହି ଜୀବନ୍ତ ଆତ୍ମାର ସତ୍ତା ନିମ୍ନତର ଓ ଉଚ୍ଚତର ଅବସ୍ଥାରେ ରହିପାରେ । ଯାହା ଉଚ୍ଚତର ସ୍ଥିତିରେ ରହିଛି ତାହା ପାଖରେ ଫର୍ମ ଅଧିକ ସଂଗଠିତ ହୋଇ ରହିଛି । ଆତ୍ମ ଉପଲବ୍ଧିର ପ୍ରଥମ ଆବଶ୍ୟମ୍ଭାବୀ ଆବଶ୍ୟକତା ହେଉଛି ଆତ୍ମ-ସୁରକ୍ଷା (self preservation) । ଆତ୍ମ-ସୁରକ୍ଷାର ପ୍ରଥମ ତାତ୍ପର୍ଯ୍ୟ ହେଉଛି ବ୍ୟକ୍ତିର ସୁରକ୍ଷା । ବ୍ୟକ୍ତିର ସୁରକ୍ଷା ପୁଷ୍ଟିଦ୍ୱାରା ସମ୍ଭବ । ଆତ୍ମ ସୁରକ୍ଷାର ଦ୍ୱିତୀୟ ଆବଶ୍ୟକତା ହେଉଛି ନିଜ ଜାତିର ସୁରକ୍ଷା । ଜାତିର ସୁରକ୍ଷା ପ୍ରଜନନ ଜନିତ ପ୍ରସାରଣ ଦ୍ୱାରା ସମ୍ଭବ । ଜୈବିକ ଜଗତରେ ନିମ୍ନତର ସ୍ତରରେ ରହିଛନ୍ତି ଉଦ୍‌ଭିଦ ଶ୍ରେଣୀ । ଜୈବିକ ସ୍ତରରେ ନିମ୍ନରେ ରହିଥିବା ସତ୍ତାମାନଙ୍କର କାର୍ଯ୍ୟ ହେଉଛି ନିଜକୁ ପୋଷଣ କରିବା, ବୃଦ୍ଧି ପାଇବା ଓ ନିଜ ବଂଶ ବିସ୍ତାର କରିବା । ଆରିଷ୍ଟୋଟଲଙ୍କ ମତରେ ଉଦ୍‌ଭିଦ ମାନଙ୍କ ପାଖରେ ଯେଉଁ ଆତ୍ମା ରହିଛି ତାହା ହେଲା ପୁଷ୍ଟିମୂଳକ ଆତ୍ମା ।

ଉଦ୍ଭିଦ ମାନଙ୍କ ଉର୍ଦ୍ଧ୍ୱରେ ରହିଛି ପ୍ରାଣୀଜଗତ । ଉଚ୍ଚତର ଭିତରେ ନିମ୍ନତରର ଉପସ୍ଥିତି ରହିବା ସହ ଉଚ୍ଚତର ଭିତରେ ଫର୍ମ ଅଧିକ ସଂଗଠିତ ହୋଇଥାଏ । ଉଦ୍‌ଭିଦ ମାନଙ୍କ ପାଖରେ ରହିଥିବା ପୁଷ୍ଟିସାଧନ ଓ ବଂଶବିସ୍ତାର ଲକ୍ଷଣ ମଧ୍ୟ ପ୍ରାଣୀମାନଙ୍କ ପାଖରେ ରହିଛି ଓ ତା ସହିତ ସେମାନଙ୍କ ମଧ୍ୟରେ ସମ୍ବେଦନ ରହିଛି ଯାହା ଉଦ୍‌ଭିଦମାନଙ୍କ ପାଖରେ ନାହିଁ । ପ୍ରାଣୀମାନଙ୍କର ସ୍ୱତନ୍ତ୍ରତା ହେଉଛି ଯେ ସେମାନଙ୍କର ଇନ୍ଦ୍ରିୟ-ପ୍ରତ୍ୟକ୍ଷ ରହିଛି । ଏଣୁ ପ୍ରାଣୀମାନଙ୍କ ପାଖରେ ପୁଷ୍ଟିମୂଳକ ଆତ୍ମା ସହ ସମ୍ବେଦନମୂଳକ ଆତ୍ମା ରହିଛି । ଇନ୍ଦ୍ରିୟ-ସମ୍ବେଦନ ଯୋଗୁ ସୁଖ ଦୁଃଖର ଅନୁଭବ ଆସିଥାଏ । ଏକ ସୁଖକର ଅନୁଭବ ସମ୍ବେଦନ ପାଇଁ ପ୍ରୀତିପଦ ହୋଇଥିବା ବେଳେ ଏକ ଦୁଃଖକର ଅନୁଭବ ଏହାର ବିପରୀତ ହୋଇଥାଏ । ଏଥିପାଇଁ ପ୍ରତ୍ୟେକ ପ୍ରାଣୀ ପାଖରେ ସୁଖକର ଅନୁଭବ ପାଇଁ ଆବେଗ ଓ ଦୁଃଖକର ଅନୁଭବକୁ ପରିହାର କରିବାର ଆବେଗ ରହିଥାଏ । ଏହା ଗତିଶୀଳତା ଯୋଗୁ ସମ୍ଭବ ହୋଇପାରେ । ଅଧିକାଂଶ ପ୍ରାଣୀମାନଙ୍କର ଚଳନଶକ୍ତିର ସାମର୍ଥ୍ୟ ରହିବା ଦେଖାଯାଏ । ଚଳନଶକ୍ତି ଉଦ୍‌ଭିଦମାନଙ୍କ ପାଖରେ ନଥାଏ କାରଣ ସେମାନେ ସୁଖ ଦୁଃଖର ଅନୁଭବ ଲାଭ କରିପାରନ୍ତି ନାହିଁ । ଆରିଷ୍ଟୋଟଲ ମନୁଷ୍ୟେତର

ପ୍ରାଣୀମାନଙ୍କ ବିଷୟରେ, ସେମାନଙ୍କର ବିକାଶ, ବଂଶବିସ୍ତାର, ସ୍ୱଭାବ ଇତ୍ୟାଦି ବିଷୟରେ ନାନା କଥା ଉଲ୍ଲେଖ କରିଛନ୍ତି ।

ଜୈବିକ ସତ୍ତାମାନଙ୍କର କ୍ରମବଦ୍ଧତାର ଶୀର୍ଷରେ ରହିଛି ମନୁଷ୍ୟ । ମନୁଷ୍ୟଠାରୁ ନିମ୍ନରେ ରହିଥିବା ଜୈବିକ ସତ୍ତାମାନଙ୍କର ସମସ୍ତ ଲକ୍ଷଣ ମନୁଷ୍ୟ ପାଖରେ ରହିଛି । ନିଜର ପୁଷ୍ଟିସାଧନ, ଅଭିବୃଦ୍ଧି, ବଂଶବିସ୍ତାର, ଚଳନ ଶକ୍ତି ଓ ଇନ୍ଦ୍ରିୟ-ପ୍ରତ୍ୟକ୍ଷ ଗୁଣମାନ ମନୁଷ୍ୟ ପାଖରେ ରହିଛି । ଏହା ସହିତ ମନୁଷ୍ୟର ସ୍ୱତନ୍ତ୍ରତା ହେଉଛି ତାର ବିଚାରଶୀଳ ଶକ୍ତି । ମନୁଷ୍ୟ ପାଖରେ ପୁଷ୍ଟିମୂଳ, ସମ୍ବେଦନଶୀଳ ଓ ବିଚାରଶୀଳ ଆତ୍ମା ରହିଛି । ଫର୍ମର ଯେଉଁ ପରିପ୍ରକାଶ ଘଟିଛି ତାହା ମନୁଷ୍ୟ ପାଖରେ ସବୁଠାରୁ ଅଧିକ ସଂଗଠିତ ଓ ବିକଶିତ ହୋଇଛି । ଫର୍ମ (ଆରିଷ୍ଟୋଟଲ ଏହାକୁ ବିଶ୍ୱ-ବିଚାର ବା world -reason ମଧ୍ୟ କହିଛନ୍ତି) ଅଜୈବ ପାଖରେ ମାଧ୍ୟାକର୍ଷଣ ଓ ଊର୍ଦ୍ଧ୍ୱଗମନ ଭାବରେ, ଉଦ୍‌ଭିଦମାନଙ୍କ ପାଖରେ ପୁଷ୍ଟିମୂଳ ଭାବରେ, ପ୍ରାଣୀମାନଙ୍କ ପାଖରେ ସମ୍ବେଦନ ଭାବେ ଓ ମନୁଷ୍ୟ ପାଖରେ ଶେଷରେ ନିଜ ସ୍ୱରୂପରେ ଅର୍ଥାତ୍ ବିଚାରଶୀଳ ଭାବରେ ଅଭିବ୍ୟକ୍ତ ହୋଇଛି । ବିଶ୍ୱ-ବିଚାର ଯେଉଁ ଲକ୍ଷ୍ୟରେ ପହଞ୍ଚିବାପାଇଁ ସଂଘର୍ଷରତ ତାହା ମନୁଷ୍ୟ ପାଖରେ ବାସ୍ତବତାର ରୂପ ନେଇଛି । ବିଶ୍ୱ-ବିଚାରର ମନୁଷ୍ୟ ପାଖରେ ଏହି ଅଭିବ୍ୟକ୍ତି ଯୋଗୁ ଏହାର ସମୀପବର୍ତ୍ତୀ ଲକ୍ଷ୍ୟ (proximate end) ଏହା ହାସଲ କରିପାରିଛି । ଫର୍ମଦ୍ୱାରା ବିଶ୍ୱ-ବିଚାରର ପରମ ତଥା ବାସ୍ତବ ପ୍ରତିଫଳନ ହେଉଛି ମନୁଷ୍ୟ । ସୁତରାଂ ଆରିଷ୍ଟୋଟଲ ମନୁଷ୍ୟକୁ ବିଚାରଶୀଳ, ମନୁଷ୍ୟେତର ପ୍ରାଣୀଙ୍କ ପରି ସମ୍ବେଦନଶୀଳ ଓ ଉଦ୍‌ଭିଦମାନଙ୍କ ପରି ପୁଷ୍ଟିମୂଳ ଲକ୍ଷଣଦ୍ୱାରା ବ୍ୟକ୍ତ କରିଛନ୍ତି । ମନୁଷ୍ୟର ସେ ସଂଜ୍ଞା ଦେଇଛନ୍ତି-"ମନୁଷ୍ୟ ଏକ ବିଚାରଶୀଳ ପ୍ରାଣୀ" ।

ମନୁଷ୍ୟ ଚେତନଶୀଳ ଓ ମାନବୀୟ ଚେତନାର ଉଚ୍ଚତର ସ୍ତର ରହିଛି ଓ ନିମ୍ନତର ସ୍ତର ମଧ୍ୟ ରହିଛି । ଚେତନାର ବିଭିନ୍ନ ସ୍ତରକୁ ଆରିଷ୍ଟୋଟଲ ପ୍ରବଣତା ବା ସାମର୍ଥ୍ୟ କହିଛନ୍ତି । ପ୍ଲେଟୋ ଯେପରି ଆତ୍ମାର ବିଭିନ୍ନ ଅଂଶର ବର୍ଣ୍ଣନା ଦେଇଛନ୍ତି ଆରିଷ୍ଟୋଟଲ ତାହାକୁ ସମାଲୋଚନା କରିଛନ୍ତି । ଆତ୍ମାର ଅଂଶ ନାହିଁ, କାରଣ ଆତ୍ମା ହେଉଛି ଏକ ଅବିଭାଜ୍ୟ ସତ୍ତା । ଆତ୍ମା ଏକକ ସତ୍ତା, ସୁତରାଂ ଏହାକୁ ଭାଗ କରାଯାଇ ପାରିବ ନାହିଁ । ତେବେ ଆତ୍ମାର ବିଭିନ୍ନ ସାମର୍ଥ୍ୟ ରହିପାରେ । ବିଭିନ୍ନ ସ୍ତରରେ ଆତ୍ମାର ବିକାଶ ଘଟେ ଓ ଆତ୍ମାର ସାମର୍ଥ୍ୟ ବୃଦ୍ଧିପାଏ । ଆତ୍ମାର ନିମ୍ନତମ ସାମର୍ଥ୍ୟ ହେଉଛି ଇନ୍ଦ୍ରିୟ-ପ୍ରତ୍ୟକ୍ଷ । ପ୍ରତ୍ୟକ୍ଷଦ୍ୱାରା ବସ୍ତୁମାନଙ୍କର ଗୁଣମାନଙ୍କୁ ଜାଣିହୁଏ । ଏକ ସୁନା ମୁଦି ହେଉଛି ଓଜନିଆ, ହଳଦିଆ, ଗୋଲାକାର ଇତ୍ୟାଦି । ଓଜନିଆ, ହଳଦିଆ, ଗୋଲାକାର ଇତ୍ୟାଦି ସୁନା ମୁଦିର ଗୁଣ । ଗୁଣମାନ ଯେଉଁଥିରେ ଅବସ୍ଥାନ କରନ୍ତି ତାହା ହେଲା ଅଧିଷ୍ଠାନ । ଗୁଣମାନଙ୍କର ଆଧାର ହେଉଛି ଅଧିଷ୍ଠାନ । ଗୁଣମାନଙ୍କୁ ପ୍ରତ୍ୟକ୍ଷ କରିହୁଏ, କିନ୍ତୁ ଅଧିଷ୍ଠାନକୁ ପ୍ରତ୍ୟକ୍ଷ କରିହୁଏ ନାହିଁ । ଏହାର ତାତ୍ପର୍ଯ୍ୟ ହେଉଛି-ବସ୍ତୁ ଅଜ୍ଞେୟ, କିନ୍ତୁ ତାର ଫର୍ମ ଜ୍ଞେୟ । ଗୁଣମାନ ହେଉଛନ୍ତି ଫର୍ମର ଅଙ୍ଗବିଶେଷ । ଏକ ପଦାର୍ଥରେ ରହିଥିବା

ବସ୍ତୁକୁ ଜାଣି ହେବ ନାହିଁ, କିନ୍ତୁ ତାର ଫର୍ମ ଇନ୍ଦ୍ରିୟ ପ୍ରତ୍ୟକ୍ଷଦ୍ୱାରା ଜ୍ଞେୟ । ଯେଉଁ କ୍ଷେତ୍ରରେ ଫର୍ମ ଯେତେ ଅଧିକ ପ୍ରକାଶିତ, ତାହା ସେତେ ଅଧିକ ଜ୍ଞେୟ ।

ଆରିଷ୍ଟୋଟଲଙ୍କ ମତରେ ଇନ୍ଦ୍ରିୟର ଉଚ୍ଚରେ ରହିଛି ସାଧାରଣ ଜ୍ଞାନ । ସାଧାରଣ ଜ୍ଞାନ ବା କମନ ସେନ୍ସ କହିଲେ ସାଧାରଣତଃ ଯାହା ବୁଝାଯାଏ, ଆରିଷ୍ଟୋଟଲ ସେହି ଅର୍ଥରେ ସାଧାରଣ ଜ୍ଞାନକୁ ଗ୍ରହଣ କରିନାହାନ୍ତି । ସେ ଏହାର ଏକ ବୈଷୟିକ ଅର୍ଥ କରିଛନ୍ତି । ଇନ୍ଦ୍ରିୟ ମାନଙ୍କ ଦ୍ୱାରା ଆସୁଥିବା ବିକ୍ଷିପ୍ତ ଅନୁଭୂତି ବା ସମ୍ବେଦନମାନଙ୍କୁ ସଂଘବଦ୍ଧ କରି ସେମାନଙ୍କ ମଧ୍ୟରେ ଯେ ଐକ୍ୟ ସ୍ଥାପନ କରେ ତାହା ହେଉଛି "ସାଧାରଣ ଜ୍ଞାନ" । କେବଳ ସମ୍ବେଦନମାନ ଏକ ବସ୍ତୁର ଭାବନା ସୃଷ୍ଟି କରିପାରିବେ ନାହିଁ । ପ୍ରତ୍ୟେକ ବସ୍ତୁ ହେଉଛି ବିଭିନ୍ନ ସମ୍ବେଦନମାନଙ୍କର ଏକ ଐକ୍ୟବଦ୍ଧ ଅଭିବ୍ୟକ୍ତି । ସମ୍ମୁଖରେ ଥିବା ଆଲମିରାଟି ଉଚ୍ଚ, ଆୟତାକାର, ଧୂସର ରଙ୍ଗର, ଷ୍ଟିଲ୍ ନିର୍ମିତ ଇତ୍ୟାଦି କହିବାବେଳେ ଇନ୍ଦ୍ରିୟମାନଙ୍କ ଦ୍ୱାରା ପ୍ରାପ୍ତ ସମ୍ବେଦନ ମାନଙ୍କୁ ଏକତ୍ର କରି ତାକୁ ଆଲମିରା ନାମରେ ନାମକରଣ କରିବାର ପ୍ରକ୍ରିୟାଟି ହେଉଛି ସାଧାରଣ ଜ୍ଞାନ । ବିଭିନ୍ନ ଇନ୍ଦ୍ରିୟମାନଙ୍କ ପାଖରୁ ଆସୁଥିବା ସମ୍ବେଦନମାନଙ୍କ ମଧ୍ୟରେ ଐକ୍ୟ ସ୍ଥାପନ କରି ସେମାନଙ୍କୁ ଏକ ସୁନିର୍ଦ୍ଦିଷ୍ଟ ଅନୁଭୂତିରେ ପ୍ରକାଶ କରିବାକୁ ସାଧାରଣ ଜ୍ଞାନ କୁହାଯାଇଛି ।

ସାଧାରଣ ଜ୍ଞାନର ଉଚ୍ଚରେ ଯେଉଁ ସାମର୍ଥ୍ୟ ରହିଛି ତାହାକୁ ଆରିଷ୍ଟୋଟଲ "କଳ୍ପନା" କହିଛନ୍ତି । ଏଠାରେ କଳ୍ପନା ମାନେ ଏକ ସୃଜନଶୀଳ କଳାକାରର କଳ୍ପନା ନୁହେଁ । ବରଂ ମାନସିକ ସ୍ତରରେ ବିଭିନ୍ନ ରୂପକ, ଧାରଣା କରିବାର ସାମର୍ଥ୍ୟକୁ କଳ୍ପନା କୁହାଯାଉଛି । କଳ୍ପନାଠାରୁ ଉଚ୍ଚରେ ଥିବା ସାମର୍ଥ୍ୟ ହେଉଛି ସ୍ମୃତି । ସ୍ମୃତି ବି କଳ୍ପନା ସଦୃଶ । ତେବେ କଳ୍ପନା କ୍ଷେତ୍ରରେ ମନ ଭିତରେ ବିଭିନ୍ନ ରୂପକ ବା ଛବି ସୃଷ୍ଟି କରାଯାଏ । ଅତୀତର କୌଣସି ଅନୁଭୂତିକୁ ସ୍ମୃତିରେ ଉଜ୍ଜୀବିତ କରି ତାର ଏକ ପ୍ରତିବିମ୍ବ ମାନସ ପଟରେ ସ୍ଥିର କରିବାକୁ କଳ୍ପନା କୁହାଯାଏ । ସ୍ମୃତିଠାରୁ ଉଚ୍ଚତର ସାମର୍ଥ୍ୟ ହେଉଛି "ସ୍ମରଣ" । ସ୍ମୃତି ଭିତରେ କୌଣସି ବିଷୟକୁ ମାନସ ପଟକୁ ମନ୍ଥର ଗତିରେ ଅଣାଯାଏ । ସ୍ମରଣଦ୍ୱାରା ସ୍ମୃତିର ବିଷୟମାନଙ୍କୁ ତତ୍‌କ୍ଷଣାତ ଓ ଇଚ୍ଛାଧୀନ ଭାବରେ ମନକୁ ଅଣାଯାଏ ।

ମାନବିକ ଚେତନାର ବିଭିନ୍ନ ସ୍ତର ବିଷୟରେ ଆରିଷ୍ଟୋଟଲ ସୂଚନା ଦେଇଛନ୍ତି ଓ ପ୍ରତ୍ୟେକ ସ୍ତରର ସାମର୍ଥ୍ୟ ବଷୟରେ ବିଶ୍ଲେଷଣ କରିଛନ୍ତି । ଇନ୍ଦ୍ରିୟ ପ୍ରତ୍ୟକ୍ଷ, ସାଧାରଣ ଜ୍ଞାନ, କଳ୍ପନା, ସ୍ମୃତି ଓ ସ୍ମରଣ ସାମର୍ଥ୍ୟ ହେଉଛି ଚେତନାର ବିଭିନ୍ନ ସ୍ତର ବା ସୋପାନ । ପ୍ରତ୍ୟେକ ସ୍ତରର କାର୍ଯ୍ୟକୁ ସେ ସୁନିର୍ଦ୍ଦିଷ୍ଟ କରିଛନ୍ତି । ଚେତନାର ସର୍ବୋଚ୍ଚ ସ୍ତର ହେଉଛି ବିଚାରଶୀଳ ସାମର୍ଥ୍ୟ ଯାହା ସମସ୍ତ ସାମର୍ଥ୍ୟଠାରୁ ଉଚ୍ଚତର । ତେବେ ବିଚାର ସାମର୍ଥ୍ୟର ଦୁଇଟି ସ୍ତର ବିଷୟରେ ସେ ସୂଚନା ଦେଇଛନ୍ତି । ବିଚାରବୁଦ୍ଧିର ସ୍ତର ଦୁଇଟି ହେଉଛି ନିଷ୍କ୍ରିୟ ଓ ସକ୍ରିୟ । ବିଚାରବୁଦ୍ଧିର ନିମ୍ନଭାଗ ହେଉଛି ନିଷ୍କ୍ରିୟ ଓ ଉଚ୍ଚତର ଭାଗ ହେଉଛି ସକ୍ରିୟ । ମନର ଚିନ୍ତା କରିବାର ସାମର୍ଥ୍ୟ ରହିଛି । ସାମର୍ଥ୍ୟ ରହିବା ଓ ଚିନ୍ତାକରିବା ପରସ୍ପରଠାରୁ ପୃଥକ୍ ହୋଇପାରନ୍ତି । କେବଳ ସାମର୍ଥ୍ୟ ରହିବା ହେଉଛି ନିଷ୍କ୍ରିୟ ।

ଯେତେବେଳେ ଏହି ସାମର୍ଥ୍ୟ ଚିନ୍ତା ମାଧ୍ୟମରେ ବିକଶିତ ହୁଏ ଏହା ହେଲା ସକ୍ରିୟ । ଜଣେ ବୁଦ୍ଧିମାନ ହୋଇପାରେ କିନ୍ତୁ ବୁଦ୍ଧିର ଉପଯୁକ୍ତ ବିକାଶ ହେଲେ ତାହା ସକ୍ରିୟ ହୋଇଥାଏ ।

ଇନ୍ଦ୍ରିୟଠାରୁ ବିଚାରବୁଦ୍ଧି ପର୍ଯ୍ୟନ୍ତ ସକଳ ସାମର୍ଥ୍ୟର ସମନ୍ୱୟ ହେଉଛି ଆତ୍ମା । ଆତ୍ମା ହେଉଛି ଶରୀରର ଫର୍ମ । ଆତ୍ମା ଫର୍ମର ସୁସଂଗଠିତ ଅଭିବ୍ୟକ୍ତି । ଯେପରି ଫର୍ମକୁ ବସ୍ତୁଠାରୁ ପୃଥକ୍ କରିହେବ ନାହିଁ, ସେହିପରି ଆତ୍ମାକୁ ଶରୀରଠାରୁ ଅଲଗା କରିହେବ ନାହିଁ । ଶରୀରର କ୍ରିୟାଶୀଳତା ହେଉଛି ଆତ୍ମା । ଗ୍ରୀକ୍ ଦର୍ଶନରେ ଆରିଷ୍ଟୋଟଲଙ୍କ ପୂର୍ବରୁ ପିଥାଗୋରାସ ଓ ପ୍ଳେଟୋ ଆତ୍ମାର ପୁନର୍ଜନ୍ମ ବିଷୟରେ ଯେଉଁ ପରିକଳ୍ପନା କରିଥିଲେ ଆରିଷ୍ଟୋଟଲ ତାକୁ ଗ୍ରହଣ କରିନାହାନ୍ତି । ଆରିଷ୍ଟୋଟଲ ପୁନର୍ଜନ୍ମବାଦକୁ ଅସ୍ୱୀକାର କରିଛନ୍ତି । ଆତ୍ମା ହେଉଛି ଶରୀରର ଫର୍ମ, ଯେପରି ଦୃଷ୍ଟିଶକ୍ତି ହେଉଛି ଚକ୍ଷୁର ଫର୍ମ । ଅର୍ଥାତ୍ ଚକ୍ଷୁ ସହିତ ଦୃଷ୍ଟିଶକ୍ତିର ଯେଉଁ ସମ୍ବନ୍ଧ, ଶରୀର ସହିତ ଆତ୍ମାର ଅନୁରୂପ ସମ୍ବନ୍ଧ । ଚକ୍ଷୁର ଅଭାବରେ ଦୃଷ୍ଟିଶକ୍ତି ରହିବା ଯେପରି ସମ୍ଭବ ନୁହେଁ, ସେହିପରି ଶରୀର ଅଭାବରେ ଆତ୍ମା ରହିବା ଅସମ୍ଭବ ମନେହୁଏ । ପ୍ଳେଟୋ ଆତ୍ମାକୁ ଏକ ସ୍ଥିତି ଥିବା ସତ୍ତା (entity) ବୋଲି ଭାବୁଥିଲେ । ସାଧାରଣ ବିଶ୍ୱାସରେ ମଧ୍ୟ ଏହି ଭାବନା ରହିଛି ଯେ ଆତ୍ମା ଏକ ସତ୍ତା, ଯାହାର ସ୍ୱତନ୍ତ୍ର ସ୍ଥିତି ରହିପାରିବ । ତେବେ ଏହି ସତ୍ତା ଏକ ଅତୀନ୍ଦ୍ରିୟ ବସ୍ତୁ (supersensuous entity) । ଏହା ଶରୀର ଭିତରେ ପ୍ରବେଶ କରିପାରିବ କିମ୍ବା ଶରୀର ଭିତରୁ ବାହାରି ଯାଇ ପାରିବ । ଏଣୁ ଶରୀର ଓ ଆତ୍ମା ଭିତରର ସମ୍ବନ୍ଧ ହେଉଛି ଯାନ୍ତ୍ରିକ । ଅର୍ଥାତ୍ ଶରୀର ଓ ଆତ୍ମା ଦୁଇଟି ପୃଥକ୍ ସତ୍ତା ଓ ସେମାନଙ୍କ ମଧ୍ୟରେ ସଂଯୋଗ ଓ ବିଚ୍ଛେଦ ସମ୍ଭବପର । ଏହ ଭାବନାକୁ ଆରିଷ୍ଟୋଟଲ ପ୍ରତ୍ୟାଖ୍ୟାନ କରିଛନ୍ତି । ଆତ୍ମା ଆରିଷ୍ଟୋଟଲଙ୍କ ମତରେ ଶରୀରଠାରୁ ଅଭିନ୍ନ, କାରଣ ଆତ୍ମା ଶରୀରର ଫର୍ମ । ଏକ ଶରୀର ବ୍ୟତୀତ ଏକ ଆତ୍ମାର ସ୍ଥିତି ନାହିଁ । ଶରୀର ଓ ଆତ୍ମା ଦୁଇଟି ପୃଥକ୍ ସତ୍ତା ନୁହନ୍ତି । ଶରୀର ଓ ଆତ୍ମା ଭିତରର ସମ୍ବନ୍ଧ ଯାନ୍ତ୍ରିକ ନୁହଁ, ବରଂ ଜୈବିକ । ଆତ୍ମା ଏକ କ୍ରିୟା, ଏହା ଏକ ସତ୍ତା ନୁହଁ । ପ୍ଳେଟୋ ଓ ସାଧାରଣରେ ରହିଥିବା ଆତ୍ମା ସମ୍ବନ୍ଧୀୟ ବିଶ୍ୱାସକୁ ଆରିଷ୍ଟୋଟଲ ଅସ୍ୱୀକାର କରିଛନ୍ତି । ଆତ୍ମାର ଶରୀର ବ୍ୟତୀତ ସ୍ଥିତି ନାହିଁ ଓ ଏହା ଏକ ସତ୍ତା ନୁହଁ ବୋଲି କହିଛନ୍ତି ।

ଆରିଷ୍ଟୋଟଲ ଆତ୍ମା ସଂପର୍କରେ ଏହି ସିଦ୍ଧାନ୍ତ ଦେବା ପରେ ଏକ ବ୍ୟତିକ୍ରମ ଦର୍ଶାଇଛନ୍ତି । ଶରୀରର ମୃତ୍ୟୁ ପରେ ସକଳ ମାନସିକ ପ୍ରକ୍ରିୟାର ଅନ୍ତ ହେଲେ ମଧ୍ୟ କେବଳ ସକ୍ରିୟ ବିଚାରର ସ୍ଥିତି ରହେ । ଦେହାବସାନ ହେଲେ ନିଷ୍କ୍ରିୟ ବିଚାର ପର୍ଯ୍ୟନ୍ତ ସମସ୍ତ ମାନସିକ ପ୍ରକ୍ରିୟାର ଅନ୍ତ ହୁଏ. କେବଳ ଯାହା ରହେ ତାହା ହେଲା ସକ୍ରିୟ ବିଚାର (active reason) । ସକ୍ରିୟ ବିଚାର ଅକ୍ଷୟ ଓ ଚିରନ୍ତନ । ଏହାର ଆରମ୍ଭ ନାହିଁ କିମ୍ବା ଶେଷ ନାହିଁ । ଏହା ଶରୀରକୁ ବାହାରୁ ଆସେ ଓ ମୃତ୍ୟୁ ପରେ ଶରୀରରୁ ଚାଲିଯାଏ । ଈଶ୍ୱରଙ୍କୁ ପରମ ବିଚାର ବୋଲି କୁହାଯାଉଛି । ମନୁଷ୍ୟର ବିଚାର ଈଶ୍ୱରଙ୍କ ପାଖରୁ ଆସିଛି ଓ ମୃତ୍ୟୁପରେ ଏହା ଈଶ୍ୱରଙ୍କ ନିକଟକୁ ଚାଲିଯିବ ଯେତେବେଳେ ଶରୀର କ୍ରିୟାହୀନ ହୋଇଯିବ । ତେବେ ଆରିଷ୍ଟୋଟଲ ବ୍ୟକ୍ତିଗତ ଅମରତ୍ୱରେ ବିଶ୍ୱାସ କରୁଥିଲେ କି ? ମୃତ୍ୟୁଦ୍ୱାରା

ମାନସିକ କ୍ରିୟାର ପରିସମାପ୍ତି ଘଟେ, ସେହି ମାନସିକ କ୍ରିୟା ମଧ୍ୟରେ ବ୍ୟକ୍ତିର ସ୍ମୃତି ଓ ସ୍ମରଣର ବି ଅବସାନ ଘଟିଥାଏ । ସ୍ମୃତି ବ୍ୟକ୍ତିତ୍ୱର ଏକ ଅବିଚ୍ଛେଦ୍ୟ ଅଙ୍ଗ । ସ୍ମୃତିଦ୍ୱାରା ବ୍ୟକ୍ତିର ସକଳ ଅନୁଭୂତି ସଂଯୋଜିତ ହୋଇ ରହେ । ଆମର ଅନୁଭୂତି ମାନ ପରସ୍ପରଠାରୁ ଭିନ୍ନ ଓ ସେମାନଙ୍କୁ ଏକତ୍ର କରି ରଖିବାର ସୂତ୍ର ହେଉଛି ସ୍ମୃତି । ସ୍ମୃତି ଓ ସ୍ମରଣର ଅବସାନଦ୍ୱାରା ବ୍ୟକ୍ତିର ବ୍ୟକ୍ତିଗତ ଜୀବନର ଅନ୍ତ ହୁଏ । ତାଙ୍କ ମତରେ ମୃତ୍ୟୁଦ୍ୱାରା ସକଳ ସ୍ମୃତି ଚାଲିଯାଏ । ତେବେ ଆରିଷ୍ଟୋଟଲ ସକ୍ରିୟ ବିଚାର କାହିଁକି ରହେ ବୋଲି କହୁଛନ୍ତି ? ସେ ଏହି ପ୍ରଶ୍ନର ଉତ୍ତର ଦେଇ ନାହାନ୍ତି । ନିଜ ସମୟର ଏକ ସାଧାରଣ ବିଶ୍ୱାସକୁ ଭ୍ରମାତ୍ମକ କହି ପ୍ରତ୍ୟାଖ୍ୟାନ କରିବାକୁ ସେ ସମ୍ଭବତଃ ଚାହିଁ ନାହାନ୍ତି ବୋଲି କେତେକ ଲେଖକ ମତପୋଷଣ କରିଛନ୍ତି । ବିଚାରକୁ ଏକ ବସ୍ତୁ ଭାବି ଏହା ଦେହରେ ଥାଏ, ଦେହରୁ ପୃଥକ୍ ହୋଇପାରେ ତାଙ୍କ ଦାର୍ଶନିକ ଭାବଧାରା ସହ ସଂହତ ହୁଏ ନାହିଁ । ଆରିଷ୍ଟୋଟଲ ଯେଉଁପରି ତାଙ୍କ ଦାର୍ଶନିକ ଭାବଧାରା ଭିତରେ ଆତ୍ମା ପ୍ରତ୍ୟୟକୁ ବ୍ୟାଖ୍ୟା କରିଥିଲେ ତାହା ବେଶ୍ ତର୍କସଂଗତ ଥିଲା । ତେବେ ସକ୍ରିୟ ବିଚାରକୁ ଅକ୍ଷୟ ଓ ଚିରନ୍ତନ କହି ସେ ପ୍ଲେଟୋଙ୍କ ମତକୁ ପରୋକ୍ଷରେ ସମର୍ଥନ କରିବା ମନେହୁଏ । ଆରିଷ୍ଟୋଟଲ ସକ୍ରିୟ ବିଚାରର ଅମରତ୍ୱ ପ୍ରସଙ୍ଗ ଆଣି ଆଳଙ୍କାରିକ ଭାଷା ବ୍ୟବହାର କରି ଏହା ପ୍ରକାଶ କରିଛନ୍ତି । ସେ ନିଜ ସମୟର ଧାର୍ମିକ ବିଶ୍ୱାସକୁ ପ୍ରତ୍ୟାଖ୍ୟାନ କରିବାକୁ ଚାହିଁ ନାହାନ୍ତି, ତେଣୁ ଆଳଙ୍କାରିକ ଭାଷାରେ ଏପରି ବ୍ୟକ୍ତ କରିଛନ୍ତି ବୋଲି ଷ୍ଟେସ୍ ମତ ଦେଇଛନ୍ତି । ଷ୍ଟେସ୍ ଲେଖିଛନ୍ତି ".... he is here speaking figuratively, perhaps with the intention of propitiating the religious and avoiding any rude disturbance of popular belief. If so, the statement that active reason is immortal, comes from God, and returns to God, mean simply that the world-reason is eternal, and that man's reason is the actualization of this eternal reason, and in that sense "comes from God" and returns to Him." (ପୃଷ୍ଠା.୩୦୩)

ଆରିଷ୍ଟୋଟଲଙ୍କ ଦର୍ଶନରେ ଈଶ୍ୱର ପ୍ରତ୍ୟୟ ବାସ୍ତବ ହେଲେ ମଧ୍ୟ ଈଶ୍ୱର ସ୍ଥିତି ଥିବା ଏକ ବ୍ୟକ୍ତି ସତ୍ତା ନୁହନ୍ତି । Absolute reason, ଓ God ଭାବନାକୁ ସେ ସମାନ ଅର୍ଥରେ ଭିନ୍ନ ଭିନ୍ନ ସ୍ଥାନରେ ବ୍ୟବହାର କରିଛନ୍ତି । ସକ୍ରିୟ-ବିଚାରର ଅମରତ୍ୱ ଆରିଷ୍ଟୋଟଲଙ୍କ ମୌଳିକ ସିଦ୍ଧାନ୍ତ ସହ ଆଦୌ ସଂଗତ ବା ମେଳ ଖାଏ ନାହିଁ । ଆରିଷ୍ଟୋଟଲ ଯେ ନିଜ ବିଚାରରେ ବିରୋଧାଭାସ ସୃଷ୍ଟି କରିଛନ୍ତି ଏହା କୁହାଯାଇ ନପାରେ । ତେବେ ଯଦି ବି ତାଙ୍କ ଭାଷାରୁ ବ୍ୟକ୍ତିଗତ ଅମରତ୍ୱର ଭାବନା ଆସୁଛି ତାହାର ଭିନ୍ନ ବ୍ୟାଖ୍ୟା ଦିଆଯାଉଛି । ହୁଏତ ତାଙ୍କ ସମୟର ଧାର୍ମିକ ଭାବନାକୁ ସେ ସିଧା ସଳଖ ଭାବରେ ବିରୋଧ ନ କରି ଆଳଙ୍କାରିକ ଭାଷାରେ ନିଜର ମତ ବ୍ୟକ୍ତ କରିଛନ୍ତି । ସକ୍ରିୟ-ବିଚାର ଅମର ରହେ କହିବା ଭିତରେ ସେ ଆତ୍ମା ଅମର ବୋଲି ଧାରଣା ଦେବାକୁ ଚାହିଁଛନ୍ତି । ଯାହା ସକ୍ରିୟ-ବିଚାର ତାହା ଯେ ଆତ୍ମା ଏହି ପ୍ରକାରର ଏକ ଛବି ତାଙ୍କ ଭାବନାରୁ ଆସୁଛି । ଏହି ପ୍ରସଙ୍ଗରେ

କୋପ୍ଲେଷ୍ଟୋନ ଲେଖିଛନ୍ତି – "Aristotle regarded the Active Intelligence as a principle which is identical in all men, an Intelligence that has above it the hierarchy of the other separate Intelligence, that enters into man and functiions within him, and that survives the death of the individual". (ପୃଷ୍ଠା ୩୩୧)

ଯାହାକୁ ଏଠାରେ 'ସକ୍ରିୟ-ବିଚାର' କୁହାଯାଇଛି ତାକୁ କୋପ୍ଲେଷ୍ଟୋନ 'ଆକ୍ଟିଭ ଇଣ୍ଟେଲିଜେନ୍ସ' ଓ ଷ୍ଟେସ 'ଆକ୍ଟିଭ ରିଜିନ' କହିଛନ୍ତି । ସକ୍ରିୟ-ବିଚାର ଓ ଆତ୍ମା ପ୍ରତ୍ୟୟ ସମାନ ନା ଦୁଇଟି ପୃଥକ୍ ପ୍ରତ୍ୟୟ ସେ ନେଇ ମଧ୍ୟ ଭିନ୍ନ ଭିନ୍ନ ମତ ରହିଛି । ତେଣୁ ଆରିଷ୍ଟୋଟଲଙ୍କର ପ୍ରକୃତ ମତ ଏ ପ୍ରସଙ୍ଗରେ କ'ଣ ଥିଲା ତାହା ବିବାଦୀୟ, ଯେହେତୁ ତାଙ୍କ ମତର ଭିନ୍ନ ଭିନ୍ନ ବ୍ୟାଖ୍ୟା ରହିଛି । ଐତିହାସିକ ମାନେ ଦର୍ଶାଇଛନ୍ତି ଯେ ଆରିଷ୍ଟୋଟଲଙ୍କର ଯାହା ଲେଖା ପରେ ସଂଗୃହୀତ ହୋଇଛି ସେଥିରେ କେତେକ ବିଷୟ ନଷ୍ଟ ହୋଇଯାଇଛି ବା ବିକୃତ ହୋଇଯାଇଛି । ପୁନଶ୍ଚ ଆରିଷ୍ଟୋଟଲ ଏକ ସମୟରେ ବିଭିନ୍ନ ବିଷୟ ଲେଖୁଥିଲେ ଫଳରେ ସେମାନଙ୍କ ଭିତରେ ସୁସମନ୍ୱୟ ରହୁନଥିଲା । କିନ୍ତୁ ବୈଚାରିକ ସ୍ତରରେ ସେ ନିଜର ଚିନ୍ତନକୁ ଯୁକ୍ତିସଂଗତ ଭାବରେ ବ୍ୟକ୍ତ କରିଛନ୍ତି । ଯେଉଁ କ୍ଷେତ୍ରରେ କିଛି ଅସ୍ୱଷ୍ଟତା ରହୁଛି ତାହାର ନାନା ବ୍ୟାଖ୍ୟା ବିଭିନ୍ନ ଐତିହାସିକ ମାନେ କରିଛନ୍ତି ।

ପୃଥିବୀ ପୃଷ୍ଠରେ ରହିଥିବା ସକଳ ସତ୍ତାମାନଙ୍କୁ ସେ ତାଙ୍କ ମାନଦଣ୍ଡରେ ଏକ କ୍ରମବଦ୍ଧ ଧାରାରେ ରଖି ସେ ସବୁର ବ୍ୟାଖ୍ୟା ପ୍ରଦାନ କରିଛନ୍ତି । ସକଳ ବସ୍ତୁମାନଙ୍କୁ ଅଜୈବ ଓ ଜୈବ ଭାବରେ ବିଭାଜନ କରି ଜୈବସତ୍ତାମାନଙ୍କୁ ଉଦ୍‌ଭିଦ, ପ୍ରାଣୀ ଓ ମନୁଷ୍ୟ ଭାବରେ ଶ୍ରେଣୀବିଭାଗ କରି ସେମାନଙ୍କର ସ୍ୱରୂପ ଦର୍ଶାଇଛନ୍ତି । ଏହି କ୍ରମବଦ୍ଧ ଧାରାରେ ମନୁଷ୍ୟମାନେ ଶୀର୍ଷରେ ରହିଛନ୍ତି । ପୃଥିବୀର ବ୍ୟାଖ୍ୟା ପରେ ସେ ବିଶ୍ୱବ୍ରହ୍ମାଣ୍ଡର ସ୍ଥିତି ବିଷୟରେ ତାଙ୍କ ପ୍ରାକୃତିକ ଦର୍ଶନରେ ମଧ୍ୟ ଅନେକ କିଛି ପରିକଳ୍ପନା କରିଛନ୍ତି । ପୃଥିବୀ ବାହାରେ ରହିଥିବା ନକ୍ଷତ୍ର, ଗ୍ରହମଣ୍ଡଳ ବିଷୟରେ ସେ ଯୁଗରେ ଯେଉଁ ସବୁ ଭାବନାକୁ ଅନୁମାନ କରାଯାଉଥିଲା ତାର କିଛି ଚିତ୍ର ଦେଇଛନ୍ତି । ପୃଥିବୀ ଓ ବିଶ୍ୱର ବ୍ୟାଖ୍ୟା କ୍ଷେତ୍ରରେ ସେ ଉଭୟ ମଧ୍ୟରେ ଏକ କ୍ରମବଦ୍ଧତାର ସଂପର୍କ ରଖିବାକୁ ଚେଷ୍ଟା କରିଛନ୍ତି ।

ପୂର୍ବରୁ ସୂଚନା ଦିଆଯାଇଛି ଯେ ଆରିଷ୍ଟୋଟଲ ଦୁଇଟି ଚରମ ସ୍ଥିତିର ପରିକଳ୍ପନା କରିଛନ୍ତି ଯଥା ଫର୍ମବିହୀନ ବସ୍ତୁ ଓ ବସ୍ତୁବିହୀନ ଫର୍ମ । ଏହି ଦୁଇ ଚରମ ସ୍ଥିତି ଭିତରେ ବିଶ୍ୱର ସବୁକିଛି କ୍ରମବଦ୍ଧ ଭାବରେ ସ୍ଥାନିତ ହୋଇ ରହିଛନ୍ତି । ତାଙ୍କ ମତରେ ବିଶ୍ୱର ବିବର୍ତ୍ତନ ପ୍ରକ୍ରିୟା ମନୁଷ୍ୟ ପାଖରେ ପରିସମାପ୍ତି ଘଟି ନାହିଁ । ମନୁଷ୍ୟ ଉପରେ ଗ୍ରହମଣ୍ଡଳ ଓ ନକ୍ଷତ୍ର ମାନ ରହିଛନ୍ତି ଯେଉଁମାନଙ୍କର ଦିବ୍ୟ ସ୍ଥିତିକୁ ସେ ଅନୁମାନ କରିଛନ୍ତି । ବିଶ୍ୱବ୍ରହ୍ମାଣ୍ଡ ଏକ ସୁସଂହତ ଓ ଶୃଂଙ୍ଖଳାବଦ୍ଧ ଅନୁକ୍ରମରେ ସଂଗଠିତ ହୋଇରହିଛି । ପୃଥିବୀର ସବୁକିଛି ଏକ ଶୃଂଖଳିତ ଅନୁକ୍ରମରେ ରହିଛନ୍ତି ଓ ପୃଥିବୀ ଊର୍ଦ୍ଧ୍ୱରେ ବ୍ରହ୍ମାଣ୍ଡରେ ଅନ୍ୟ ସବୁ ଯାହା ଅଛି ତାହା ଅନ୍ୟ ଏକ ଶୃଂଖଳିତ ଅନୁକ୍ରମରେ ରହିଛି,

ଆରିଷ୍ଟୋଟଲ ଏପରି କଳ୍ପନା କରିନାହାନ୍ତି । ବରଂ ବିଶ୍ୱବ୍ରହ୍ମାଣ୍ଡ (ପୃଥିବୀ ଓ ବହିର୍ପୃଥିବୀ) ଗୋଟିଏ ଶୃଂଖଳିତ ଅନୁକ୍ରମରେ ରହିଥିବା ସେ ଅନୁମାନ କରିଛନ୍ତି । ସକଳ ଖଗୋଳୀୟ ବସ୍ତୁ (heavenly bodies) ଏକ ଅନୁକ୍ରମ ଭିତରେ ରହିଛନ୍ତି ବୋଲି ସେ ଭାବିଛନ୍ତି । ପ୍ରତ୍ୟେକ ସ୍ତରରେ ଶୃଂଖଳା ଓ ସଂହତି ରହିଛି । ତେବେ ତାଙ୍କ ବିଶ୍ୱାସ ଅନୁଯାୟୀ ବ୍ରହ୍ମାଣ୍ଡ ଗୋଲାକାର ଓ ତାର ମଧ୍ୟଭାଗରେ ପୃଥିବୀ ରହିଛି । ପୃଥିବୀ ବାହାରେ ବିଭିନ୍ନ ସ୍ତର ରହିଛି । ଜଳସ୍ତର, ବାୟୁସ୍ତର ଓ ଅଗ୍ନିସ୍ତର ପୃଥିବୀକୁ ଆବୃତ୍ତ କରି ରହିଛନ୍ତି । ଖଗୋଳୀୟ ମଣ୍ଡଳ ଭିତରେ ସେହିପରି ବିଭିନ୍ନ ସ୍ତରଭେଦ ରହିଛି । ପୃଥିବୀ ଊର୍ଦ୍ଧ୍ୱରେ ଗ୍ରହମାନେ ରହିଛନ୍ତି ଓ ସେମାନଙ୍କ ଊର୍ଦ୍ଧ୍ୱରେ ନକ୍ଷତ୍ର ମାନ ଅବସ୍ଥାନ କରୁଛନ୍ତି । ଗ୍ରହମଣ୍ଡଳ ମଧ୍ୟରେ ସେ ସୂର୍ଯ୍ୟ ଓ ଚନ୍ଦ୍ରକୁ ରଖିଛନ୍ତି ଓ ସୂର୍ଯ୍ୟ ଓ ଚନ୍ଦ୍ର ପୃଥିବୀକୁ ଆବର୍ତ୍ତନ କରୁଛନ୍ତି । ତାଙ୍କ ଊର୍ଦ୍ଧ୍ୱରେ ନକ୍ଷତ୍ର ମାନ ରହିଛନ୍ତି ଓ ସମସ୍ତେ ଏକ କ୍ରମବଦ୍ଧ ଭାବରେ ସୁସଂଗଠିତ ହୋଇ ଅବସ୍ଥାନ କରୁଛନ୍ତି । ନକ୍ଷତ୍ର ଓ ଗ୍ରହମାନଙ୍କୁ ସେ ଦୈବୀ ସତ୍ତା ବୋଲି ପରିକଳ୍ପନା କରିଛନ୍ତି । ତେବେ ସେମାନଙ୍କୁ ଦୈବୀ ସତ୍ତା କହିବା ବେଳେ ସେ ଆପେକ୍ଷିକ ଅର୍ଥରେ ଏହା ପ୍ରୟୋଗ କରିଛନ୍ତି । ଯାହା ପାଖରେ ବିଚାରର ପରିପ୍ରକାଶ ଘଟିଛି ତାହା ଏକ ଦୈବୀ ସତ୍ତା (divine being) । ଏହି ଦୃଷ୍ଟିରୁ ମନୁଷ୍ୟ ବି ଏକ ଦିବ୍ୟ ସତ୍ତା, ଯେହେତୁ ମନୁଷ୍ୟ ପାଖରେ ବିଚାରବୁଦ୍ଧି (reason) ରହିଛି । ତେବେ ମନୁଷ୍ୟ ପାଖରେ ଯେତିକି ବିଚାରବୁଦ୍ଧି ରହିଛି ତାପେକ୍ଷା ବହୁ ଅଧିକ ବିଚାର ଊର୍ଦ୍ଧ୍ୱାୟନ ଗ୍ରହମଣ୍ଡଳୀୟ ସତ୍ତାମାନଙ୍କ ପାଖରେ ରହିଛି । ଯେଉଁମାନେ ଯେତେ ଯେତେ ଊର୍ଦ୍ଧ୍ୱରେ ରହିଛନ୍ତି ସେମାନେ ସେତେ ଅଧିକ ବିଚାରର ଅଧିକାରୀ ଓ ସେମାନଙ୍କ ପାଖରେ ଫର୍ମର ପ୍ରତିଫଳନ ସେତେ ଅଧିକ ହୋଇଛି । ସେମାନେ ଅମର ଓ ଅବିନଶ୍ୱର । ପୃଥିବୀ ବକ୍ଷରେ ରହିଥିବା ପ୍ରାଣୀମାନେ ମରଣଶୀଳ, କିନ୍ତୁ ଖଗୋଳୀୟ ପିଣ୍ଡମାନେ ମରଣଶୀଳ ନୁହନ୍ତି କାରଣ ସେମାନଙ୍କ ପାଖରେ ପରମ ବିଚାରର (absolute reason) ପୂର୍ଣ୍ଣ ପ୍ରତିଫଳନ ଘଟିଛି । ପୁନଶ୍ଚ ପୃଥିବୀ ପୃଷ୍ଠରେ ରହିଥିବା ପ୍ରାଣୀସକଳ ଚାରିଟି ଉପାଦାନ ଯଥା ମାଟି, ପାଣି, ବାୟୁ ଓ ଅଗ୍ନିଦ୍ୱାରା ଗଠିତ ହୋଇଥିବା ବେଳେ ଖଗୋଳୀୟ ପିଣ୍ଡମାନେ ଏଥିରେ ଗଠିତ ନ ହୋଇ ଏକ ବିଶୁଦ୍ଧ ଉପାଦାନ ଇଥର (ether) ଦ୍ୱାରା ଗଠିତ । ତେଣୁ ଖଗୋଳୀୟ ପିଣ୍ଡମାନଙ୍କର ଅବକ୍ଷୟ ନାହିଁ । ପ୍ରତ୍ୟେକ ମୌଳିକ ବସ୍ତୁମାନଙ୍କର ଗତିଶୀଳତା ରହିବା ପରି ଇଥରର ମଧ୍ୟ ଗତିଶୀଳତା ରହିଛି । ଯେହେତୁ ଇଥର ସବୁଠାରୁ ବିଶୁଦ୍ଧ ଓ ଏଥିରେ ପରିପୂର୍ଣ୍ଣତା ରହିଛି ଏହାର ଗତିରେ ମଧ୍ୟ ପରିପୂର୍ଣ୍ଣତା ରହିଛି । ଏହି ଗତି ଚିରନ୍ତନ ତେଣୁ ଇଥରଦ୍ୱାରା ଗଠିତ ଖଗୋଳୀୟ ବସ୍ତୁମାନ ମଧ୍ୟ ଚିରନ୍ତନ । ଖଗୋଳୀୟ ବସ୍ତୁମାନଙ୍କର ଗତି ସରଳରେଖାରେ ହୁଏ ନାହିଁ ବରଂ ବୃତ୍ତାକାରରେ ହୁଏ । କାରଣ ସରଳ୍ରେଖାରେ ଗତି କରୁଥିବା ବସ୍ତୁମାନଙ୍କ ଗତିର ଶେଷ ନାହିଁ ତେଣୁ ସେମାନେ ପରିପୂର୍ଣ୍ଣ ନୁହନ୍ତି । ବୃତ୍ତାକାରରେ ଗତି କରୁଥିବା ବସ୍ତୁମାନେ ପରିପୂର୍ଣ୍ଣ କାରଣ ବୃତ୍ତାକାର ଗତିର ଆରମ୍ଭ ଓ ଶେଷ ସମାନ ସ୍ଥାନରୁ ହୋଇଥାଏ । ମୋଟ ଉପରେ ଆରିଷ୍ଟୋଟଲଙ୍କ ମତରେ ଇଥରର ପ୍ରାକୃତିକ ଗତି ବୃତ୍ତାକାର ହୋଇଥିବାରୁ ନକ୍ଷତ୍ରମାନଙ୍କର ଗତି ମଧ୍ୟ ବୃତ୍ତାକାରରେ ହୋଇଥାଏ ।

ଆଧୁନିକ ଯୁଗରେ ବିବର୍ତ୍ତନବାଦ ଏକ ବୈଜ୍ଞାନିକ ସିଦ୍ଧାନ୍ତ ଭାବେ ବିକଶିତ ହେଲା ଯାହା ପୃଥିବୀ ପୃଷ୍ଠରେ ରହିଥିବା ପ୍ରାଣୀମାନଙ୍କର ଏକ ସମ୍ଭାବ୍ୟ ବ୍ୟାଖ୍ୟା ଦେଲା । ଆରିଷ୍ଟୋଟଲଙ୍କ ସମୟରେ ବିଶ୍ୱର ବୈଜ୍ଞାନିକ ବ୍ୟାଖ୍ୟାନ ଅଚିନ୍ତନୀୟ ଥିଲା । ତେବେ ତାଙ୍କ ଦର୍ଶନ ଭିତରେ ବିଶ୍ୱର ଏକ ବ୍ୟାଖ୍ୟାନର ଚିତ୍ର ରହିବା ଦେଖାଯାଏ । ମନୁଷ୍ୟ କାହିଁକି ମନୁଷ୍ୟେତର ପ୍ରାଣୀମାନଙ୍କଠାରୁ ଉନ୍ନତ- ଏକ ସାଧାରଣ ପ୍ରଶ୍ନ । ମନୁଷ୍ୟ କାହିଁକି ଗାଈଠାରୁ ଉନ୍ନତ- ପ୍ରଶ୍ନର ଜଣେ ଉତ୍ତର ଦେବ ଯେ ମଣିଷ ଚିନ୍ତାକରେ, କଳା, ବିଜ୍ଞାନ ସୃଷ୍ଟି କରେ, ଧର୍ମ, ଦର୍ଶନ, ନୈତିକତା ଇତ୍ୟାଦି ମନୁଷ୍ୟ ସୃଷ୍ଟି କରିଛି । ଏହି ସାମର୍ଥ୍ୟ ଅନ୍ୟ ପ୍ରାଣୀମାନଙ୍କର ନାହିଁ । ଆରିଷ୍ଟୋଟଲ ଏହି ଭାବନାକୁ ସେ ଯୁଗରେ ଏକ ଭିନ୍ନ ଭାବରେ ବ୍ୟାଖ୍ୟା କରିଛନ୍ତି । ତାଙ୍କ ମତରେ ଯେଉଁମାନେ ବୌଦ୍ଧିକ ଓ ଶାରୀରିକ ସ୍ତରରେ ଅଧିକ ସଂଗଠିତ ଓ ଯେଉଁମାନଙ୍କ ପାଖରେ ବିଚାରର ଅଧିକ ପ୍ରତିଫଳନ ହୋଇଛି ସେମାନେ ବିବର୍ତ୍ତନ ଧାରାରେ ଉନ୍ନତତର । ବିକାଶ ପ୍ରକ୍ରିୟାରେ ସବୁ ପ୍ରାଣୀମାନେ ଏକ କ୍ରମବଦ୍ଧ ସୋପାନରେ ସୁସଂଗଠିତ ଭାବେ ରହିଛନ୍ତି । ବିବର୍ତ୍ତନବାଦର ବହୁ ପୂର୍ବରୁ ଆରିଷ୍ଟୋଟଲ ବିବର୍ତ୍ତନବାଦର ଏକ ଦର୍ଶନର ଅବତାରଣା କରିଥିବା ମନେହୁଏ ।

ସକଳ ବିକାଶ, ପ୍ରଗତି, ଉନ୍ନତି ଇତ୍ୟାଦି ପରିକଳ୍ପନା କଲା ବେଳେ ସମ୍ମୁଖରେ ଏକ ଲକ୍ଷ୍ୟ ରହିବା ଆବଶ୍ୟକ । ଲକ୍ଷ୍ୟହୀନ ଯାତ୍ରାର ଅର୍ଥ ନଥାଏ । ଆରିଷ୍ଟୋଟଲ ସେ ଯୁଗରେ ପ୍ରୟୋଜନବାଦର ପରିକଳ୍ପନା କରି ସବୁ ବିକାଶ, ବିବର୍ତ୍ତନ ଇତ୍ୟାଦିକୁ ଏକ ଲକ୍ଷ୍ୟ ହାସଲ ଦିଗରେ ଗ୍ରହଣ କରିଥିଲେ । ସେହି ଲକ୍ଷ୍ୟ ବା ପ୍ରୟୋଜନକୁ ସେ ବିଚାରର ବାସ୍ତବ ରୂପାୟନ ଭାବେ ନେଇଥିଲେ । ସର୍ବୋତ୍ତମ ଲକ୍ଷ୍ୟକୁ ସେ ଚିରନ୍ତନ ବିଚାର (eternal reason) ବୋଲି ଗ୍ରହଣ କରିଛନ୍ତି । ବସ୍ତୁବିହୀନ ଫର୍ମ ଯେପରି ଏକ ପରିକଳ୍ପନା ସେହିପରି ଚିରନ୍ତନ ବିଚାର ମଧ ଏକ ପ୍ରତ୍ୟୟ, ଯାହାର ଅସ୍ତିତ୍ୱ ନ ଥାଇପାରେ କିନ୍ତୁ ଏହା ଏକ ଶୁଦ୍ଧ ଭାବନା । ସେହି ବିଚାରର ପ୍ରତିଫଳନ ଆଧାରରେ ଆମେ ଜଗତର ସକଳ ସତ୍ତାମାନଙ୍କର ଲକ୍ଷ୍ୟ ବା ପ୍ରୟୋଜନ ନିରୂପଣ କରିପାରିବା ।

ଆରିଷ୍ଟୋଟଲ ପୃଥିବୀର ସକଳ ସତ୍ତାମାନଙ୍କର ବ୍ୟାଖ୍ୟା ଦେବା ବେଳେ ପ୍ରୟୋଜନବାଦକୁ ସ୍ୱୀକାର କରିଛନ୍ତି । ଯଦି ସବୁ କିଛିର ଲକ୍ଷ୍ୟରହିଛି, ତେବେ ଲକ୍ଷ୍ୟ ହାସଲ ପରେ ବିକାଶର ପୂର୍ଣ୍ଣଚ୍ଛେଦ ପଡିବ କି ? ପରମ ଲକ୍ଷ୍ୟ ବା ପରମ ଫର୍ମ କେବେ ହେଲେ ପୂର୍ଣ୍ଣରୂପେ ବାସ୍ତବ ରୂପ ନେଇପାରିବ ନାହିଁ । ତେବେ ବିଚାରର ମାନଦଣ୍ଡରୁ ଉଚ୍ଚତର, ନିମ୍ନତରର ପରିକଳ୍ପନା କରାଯାଇ ପାରିବ । ତେବେ ବିଚାରର ସ୍ୱରୂପକୁ ସନ୍ଦେହ କରିବା ଅବାନ୍ତର ହେବ । ଷ୍ଟେସ୍ ଏହି ବିଷୟକୁ ବ୍ୟାଖ୍ୟା କରିବା ସମୟରେ ଲେଖିଛନ୍ତି- "Absolute end, absolute form can never be reached. The higher is thus the more rational, the lower the less rationsl. Now if we go on asking "Why is it better to be more rational"-we cannot ask such a question. Why is it better to be rational, means simply "how is reason rational"? To doubt it is a self-contradiction. (ପୃଷ୍ଠା-୩୧୧-୩୧୨) । ଆରିଷ୍ଟୋଟଲ ବିବର୍ତ୍ତନବାଦର ଏକ ଦର୍ଶନ ଦେଇଥିବା ମନେହୁଏ ।

ବିବର୍ତ୍ତନବାଦ ବୈଜ୍ଞାନିକ ସ୍ତରରେ ବହୁ ପରେ ବିକଶିତ ହୋଇଛି । ଆରିଷ୍ଟୋଟଲ ତାଙ୍କ ଭାବଧାରା ମଧ୍ୟ ଦେଇ ବିବର୍ତ୍ତନବାଦର ଏକ ସୈଦ୍ଧାନ୍ତିକ ଆଧାର ଦେବାକୁ ପ୍ରୟାସ କରିଛନ୍ତି ।

## ୮.୬ ରାଜନୈତିକ ଦର୍ଶନ

ଆରିଷ୍ଟୋଟଲଙ୍କ ମତରେ ମନୁଷ୍ୟ ଏକ ସାମାଜିକ ପ୍ରାଣୀ । କୌଣସି ବ୍ୟକ୍ତି ପରିପୂର୍ଣ୍ଣ ନୁହେଁ କିମ୍ବା ସଂପୂର୍ଣ୍ଣ ସ୍ୱାବଲମ୍ବୀ ନୁହେଁ । ମନୁଷ୍ୟ ସବୁଠାରୁ ବୁଦ୍ଧିମାନ ପ୍ରାଣୀ, ତେବେ ମଣିଷ ଶିଶୁଟି ପ୍ରକୃତିରେ ସବୁଠାରୁ ଅସହାୟ ଜୀବ । ଅନ୍ୟମାନଙ୍କର ଯତ୍ନ, ସାହାଯ୍ୟ ଓ ସହଯୋଗ ବ୍ୟତୀତ ମନୁଷ୍ୟ ଶିଶୁଟି ବଞ୍ଚିପାରିବ ନାହିଁ । ତେଣୁ ଏହି ଆବଶ୍ୟକତାରୁ ମଣିଷ ପରିବାର ମଧ୍ୟରେ ଜୀବନ ଧାରଣ କରିଆସିଛି ।  ପରିବାର ହେଉଛି ସର୍ବ ପୁରାତନ ଓ ସବୁଠାରୁ ନିମ୍ନତମ ସାମାଜିକ ସଂଗଠନ । ସଂପ୍ରସାରିତ ପରିବାରମାନଙ୍କୁ ନେଇ ବହୁ ଅତୀତରୁ ମନୁଷ୍ୟର ସଂଘବଦ୍ଧ ଗ୍ରାମୀଣ ଜୀବନ ଆରମ୍ଭ ହୋଇଛି । ପ୍ରାକୃତିକ ଉପାୟରେ ସୃଷ୍ଟି ହୋଇଥିବା ପରିବାରରୁ ଗ୍ରାମମାନ ସୃଷ୍ଟି ହୋଇସାରିଲା ପରେ ନଗର ରାଜ୍ୟ ବା ରାଷ୍ଟ୍ରମାନ ସୃଷ୍ଟି ହୋଇଛନ୍ତି । ଆରିଷ୍ଟୋଟଲ ଗ୍ରୀସ୍‌ରେ ରହିଥିବା ବିଭିନ୍ନ ନଗର-ରାଜ୍ୟ (city state) ମାନଙ୍କୁ ଆଧାରକରି ତାଙ୍କର ରାଜନୈତିକ ଦର୍ଶନର ବିକାଶ କରିଛନ୍ତି । ବ୍ୟକ୍ତିର ନୈତିକ ଶୃଂଖଳା ପରି ରାଜନୀତିକୁ ରାଷ୍ଟ୍ର ବା ନଗର-ରାଜ୍ୟର ନୈତିକ ଆଧାର ଭାବରେ ଗ୍ରହଣ କରିଛନ୍ତି । ବ୍ୟକ୍ତିର ନୈତିକ ଜୀବନ ମଧ୍ୟ ରାଷ୍ଟ୍ରୀୟ ପରିସରରେ ରୂପ ନେଇଥାଏ । ରାଷ୍ଟ୍ର ନଥିଲେ ବ୍ୟକ୍ତିର ନୈତିକ ଶୃଂଖଳାର ମୂଲ୍ୟ ରହିବା ସମ୍ଭବ ନୁହେଁ । ନାଗରିକ ମାନଙ୍କର ସଦ୍‌ଗୁଣର ବିକାଶ ଓ ଆନନ୍ଦକର ଜୀବନ ପାଇଁ ରାଷ୍ଟ୍ର ରହିବା ଅବଶ୍ୟମ୍ଭାବୀ ମନେହୁଏ । ଆରିଷ୍ଟୋଟଲ ତାଙ୍କ ଫର୍ମତତ୍ତ୍ୱକୁ ଏଠାରେ ପ୍ରୟୋଗ କରିଛନ୍ତି । ଏହାନୁଯାୟୀ ବ୍ୟକ୍ତିମାନେ ହେଉଛନ୍ତି ବସ୍ତୁ ଓ ରାଷ୍ଟ୍ର ହେଉଛି ଫର୍ମ । ଆରିଷ୍ଟୋଟଲ ତାଙ୍କ ରାଜନୈତିକ ଦର୍ଶନରେ ବହୁ ବିଷୟର ଆଲୋଚନା କରିଛନ୍ତି । ମାନବୀୟ ପ୍ରକୃତି, ଆନନ୍ଦ, ନୈତିକତା, ବିଭିନ୍ନ ପ୍ରକାରର ରାଜନୈତିକ ସଂଗଠନ, ସମାଜର ଅର୍ଥନୈତିକ ବ୍ୟବସ୍ଥା, ଶିକ୍ଷା ପ୍ରଣାଳୀ, ନ୍ୟାୟପୂର୍ଣ୍ଣ ସମାଜ ଓ ମାନବିକ ପରିପୂର୍ଣ୍ଣତାର ବିଶ୍ଳେଷଣ କରିଛନ୍ତି ।

ମନୁଷ୍ୟ ଏକ ସାମାଜିକ ପ୍ରାଣୀ, ସମାଜ୍ ବ୍ୟତୀତ ବ୍ୟକ୍ତିର ଜୀବନ ସମ୍ଭବପର ନୁହେଁ । ସେହିପରି ବ୍ୟକ୍ତି ମଧ୍ୟ ଏକ ରାଜନୈତିକ ନାଗରିକ ବୋଲି ଆରିଷ୍ଟୋଟଲ କହିଛନ୍ତି । ଏହାର ଦୁଇଟି ମୁଖ୍ୟ କାରଣ ସେ ଦର୍ଶାଇଛନ୍ତି । ପ୍ରତ୍ୟେକ ବ୍ୟକ୍ତି ଭାଷା କହିବାକୁ ସମର୍ଥ । ଭାଷା ମାଧ୍ୟମରେ ବ୍ୟକ୍ତି ତାର ଭାବ, ଚିନ୍ତା, ଆବେଗ ଇତ୍ୟାଦିକୁ ପ୍ରକାଶ କରିଥାଏ । ବ୍ୟକ୍ତି ଏକ ବୃହତ୍ତର ସାମାଜିକ ପରିବେଶରୁ ଭାଷା ଶିକ୍ଷା କରେ । ମନୁଷ୍ୟ ଭାଷା କହିବାର ସାମର୍ଥ୍ୟ ତାର ନଗରରାଜ୍ୟରୁ ଆହରଣ କରିଥାଏ । ସେହିପରି ମନୁଷ୍ୟ ପାଖରେ ରହିଥିବା ଚିନ୍ତାକରିବାର ସାମର୍ଥ୍ୟ ତାର ସାମାଜିକ ଜୀବନରେ ହିଁ ବିକଶିତ ହୋଇଥାଏ । ବିଚାରବୁଦ୍ଧିର ବିକାଶ କେବଳ ସାମାଜିକ ଜୀବନରେ ହିଁ ରୂପ ନେଇଥାଏ । ବୁଦ୍ଧିର ବିକାଶ କରିବା ଓ ନିଜର ବିଚାର ଆଧାରରେ ଜୀବନ ନିର୍ବାହ କରିବା କେବଳ ନଗର-

ରାଜ୍ୟରେ ସମ୍ଭବ ବୋଲି ଆରିଷ୍ଟୋଟଲ ବିଚାର କରିଛନ୍ତି । ଏହି ଦୃଷ୍ଟିରୁ ବ୍ୟକ୍ତି ଏକ ରାଜନୈତିକ ନାଗରିକ ବୋଲି ସେ ମଧ୍ୟ ଭାବିଛନ୍ତି ।

ଗ୍ରୀକ୍ ଇତିହାସରେ ଆରିଷ୍ଟୋଟଲଙ୍କ ସମୟରେ ବିଭିନ୍ନ ନଗର-ରାଜ୍ୟ ରହିଥିଲା ଯାହାକୁ "ପଲିସ୍" କୁହାଯାଉଥିଲା । ପ୍ରତ୍ୟେକ ନଗର-ରାଜ୍ୟ ସାର୍ବଭୌମ ରହିଥିଲା, ସେହି ଦୃଷ୍ଟିରୁ ତାହାକୁ ରାଷ୍ଟ୍ର କୁହାଯାଉଥିଲା । ପ୍ରତ୍ୟେକ ନଗରରାଜ୍ୟରେ ଲୋକସଂଖ୍ୟା ପାଞ୍ଚହଜାର ପାଖାପାଖି ରହିଥିଲା । ସେହି ସମୟର ନଗର-ରାଜ୍ୟଠାରୁ ବର୍ତ୍ତମାନର ରାଷ୍ଟ୍ର ଭାବନା ସଂପୂର୍ଣ୍ଣ ପୃଥକ୍ ମନେହୁଏ । ବିଶେଷକରି ଆଜିର ଏକ ବା ଦୁଇଟି ପଞ୍ଚାୟତ ମିଶି ଏକ ନଗରରାଜ୍ୟ ସେତେବେଳେ ଗ୍ରୀସ୍‌ରେ ସୃଷ୍ଟି ହୋଇଥିଲା ଓ ସମଗ୍ର ଗ୍ରୀସ୍‌ରେ ଏହି ଭଳି ଅନେକ ଗୁଡ଼ିଏ ନଗର-ରାଜ୍ୟ ରହିଥିଲା । ନଗର-ରାଜ୍ୟ ଊର୍ଦ୍ଧ୍ୱରେ ରାଷ୍ଟ୍ରର ଭାବନା ନଥିଲା । ପ୍ରଥମେ ପରିବାର, ପରିବାରରୁ ଗ୍ରାମ ଓ କେତେକ ଗ୍ରାମ ମିଶି ଏକ ନଗର-ରାଜ୍ୟର ଭିତ୍ତି ପଡିଥିଲା । ଏହି ଦୃଷ୍ଟିରୁ ଦେଖିଲେ ନଗର-ରାଜ୍ୟର ପୂର୍ବରୁ ହେଲା ପରିବାର । କାଳଗତ ମାନଦଣ୍ଡରୁ ପରିବାର ନଗର-ରାଜ୍ୟ ମାନଙ୍କର ପୂର୍ବବର୍ତ୍ତୀ, କିନ୍ତୁ ବୈଚାରିକ ଓ ବାସ୍ତବତା ମାନଦଣ୍ଡରୁ ନଗର-ରାଜ୍ୟ ହେଉଛି ବ୍ୟକ୍ତି ବା ପରିବାରର ପୂର୍ବବର୍ତ୍ତୀ । ଏହାର କାରଣ ହେଉଛି ନଗର-ରାଜ୍ୟ ବା ରାଷ୍ଟ୍ର ହେଉଛି ଲକ୍ଷ୍ୟ ବା ପ୍ରୟୋଜନ ଓ ସେହି ଲକ୍ଷ୍ୟ ଦିଗରେ ଲୋକମାନଙ୍କର ସାମାଜିକ ଜୀବନ ଅଭିପ୍ରେତ । ନଗର-ରାଜ୍ୟରେ ରହିଥିବା ସମସ୍ତ ଗୋଷ୍ଠୀମାନ ନଗର-ରାଜ୍ୟ ପ୍ରତି ଉତ୍ତରଦାୟୀ ଓ ତାହାର ଅଧସ୍ତନ । ସେହିଦୃଷ୍ଟିରୁ ନଗର-ରାଜ୍ୟ ହେଉଛି ବ୍ୟକ୍ତି, ପରିବାର ଓ ଗୋଷ୍ଠୀର ଲକ୍ଷ୍ୟ । ଏହି ଯୋଗୁ ଆରିଷ୍ଟୋଟଲ ନଗର-ରାଜ୍ୟ ମାନଙ୍କୁ ପରିବାର ବା ଗ୍ରାମର ପୂର୍ବବର୍ତ୍ତୀ କହିଛନ୍ତି । ଆରିଷ୍ଟୋଟଲ ତାଙ୍କ ତତ୍ତ୍ୱମୀମାଂସା କ୍ଷେତ୍ରରେ ଯେଉଁ ପ୍ରୟୋଜନବାଦକୁ ଗ୍ରହଣ କରିଛନ୍ତି ତାହାକୁ ମଧ୍ୟ ତାଙ୍କ ରାଜନୈତିକ ଦର୍ଶନ କ୍ଷେତ୍ରରେ ପ୍ରୟୋଗ କରିଛନ୍ତି । ତାଙ୍କ ମତରେ ଯାହା ବ୍ୟକ୍ତିର ଲକ୍ଷ୍ୟ (end) ତାହା ଏକ ବୃହତ୍ତର ଗୋଷ୍ଠୀର ପ୍ରୟୋଜନ ।

ନଗର-ରାଜ୍ୟ ବା ରାଷ୍ଟ୍ର ଏକ ଯାନ୍ତ୍ରିକ ସଂଗଠନ ନୁହେଁ । ବ୍ୟକ୍ତିମାନଙ୍କର କେବଳ ଏକ ସମ୍ମିଶ୍ରଣକୁ ନଗର-ରାଜ୍ୟ କୁହାଯାଇ ପାରିବ ନାହିଁ । ବ୍ୟକ୍ତି ଓ ନଗର-ରାଜ୍ୟ ମଧ୍ୟରେ ସମ୍ବନ୍ଧ ଯାନ୍ତ୍ରିକ ନୁହେଁ ବରଂ ଜୈବିକ । ଏକ ଶରୀର ସହ ଶରୀରର ଅଙ୍ଗମାନଙ୍କର ଯେଉଁ ସମ୍ବନ୍ଧ, ବ୍ୟକ୍ତିମାନଙ୍କର ନଗର-ରାଜ୍ୟ ସହ ସେହି ସମ୍ବନ୍ଧ । ନଗର-ରାଜ୍ୟର ନିଜର ଜୀବନକାଳ ରହିଛି ଓ ଏହାର ସଭ୍ୟମାନଙ୍କର ମଧ୍ୟ ନିଜସ୍ୱ ଜୀବନ ରହିଛି । ଯେପରି ଏକ ଶରୀରର ପ୍ରତ୍ୟେକ ଅଙ୍ଗ ଏକ ଜୀବନ୍ତ ସତ୍ତା, ସେହିପରି ନଗର-ରାଜ୍ୟ ଓ ଏହାର ଅଂଶ ବିଶେଷ ମଧ୍ୟ ଜୀବନ୍ତ ସତ୍ତା । ଆରିଷ୍ଟୋଟଲ ସକଳ ସତ୍ତାମାନଙ୍କୁ ଜୈବ ଓ ଅଜୈବ ଭାବେ ବିଭାଜିତ କରିଛନ୍ତି ଓ ଏକ ଜୈବ ସତ୍ତା ମଧ୍ୟରେ ତାହାର ଲକ୍ଷ୍ୟ ଅନ୍ତର୍ନିହିତ ବୋଲି ଭାବିଛନ୍ତି । ଏହାର ତାତ୍ପର୍ଯ୍ୟ ହେଉଛି ଏକ ନଗରରାଜ୍ୟର ଲକ୍ଷ୍ୟ ଏହା ସହିତ ସଂଯୁକ୍ତ, ସେହିପରି ପ୍ରତ୍ୟେକ ନାଗରିକର ଜୀବନରେ ମଧ୍ୟ ଲକ୍ଷ୍ୟ ରହିଛି । ତେବେ ମହତ୍ତର ଲକ୍ଷ୍ୟ ଭିତରେ ନିମ୍ନତର ଲକ୍ଷ୍ୟ ମଧ୍ୟ ସଂଶ୍ଳିଷ୍ଟ । ଅର୍ଥାତ୍ ନାଗରିକ ମାନଙ୍କର ଲକ୍ଷ୍ୟ ନଗର-ରାଜ୍ୟର ଲକ୍ଷ୍ୟ ଭିତରେ ଅନ୍ତର୍ଭୁକ୍ତ । ଏହି

ପୃଷ୍ଠଭୂମିରେ ନଗର-ରାଜ୍ୟ ବା ରାଷ୍ଟ୍ର ସଂପର୍କରେ ଦୁଇଟି ମତର ସମାଲୋଚନା ଆରିଷ୍ଟୋଟଲ କରିଛନ୍ତି । ଗୋଟିଏ ମତ ଅନୁଯାୟୀ ବ୍ୟକ୍ତିମାନଙ୍କର ମହତ୍ତ୍ୱ ରହିଛି, ଅର୍ଥାତ୍ ପ୍ରତ୍ୟେକ ବ୍ୟକ୍ତିର ଲକ୍ଷ୍ୟ ରହିଛି, ରାଷ୍ଟ୍ରର ମହତ୍ତ୍ୱ ବା ମୂଲ୍ୟ ନାହିଁ । ଦ୍ୱିତୀୟ ମତରେ ରାଜ୍ୟ ବା ରାଷ୍ଟ୍ରର ମୂଲ୍ୟ ରହିଛି, ବ୍ୟକ୍ତିମାନଙ୍କର କିଛି ପ୍ରାଧାନ୍ୟ ରହି ନାହିଁ । ଗୋଟିଏ ମତ ବ୍ୟକ୍ତିମାନଙ୍କୁ ମହତ୍ତ୍ୱ ଦେଇ ରାଜ୍ୟର ମହତ୍ତ୍ୱକୁ ନ୍ୟୂନ କରିଛି ଓ ଅନ୍ୟ ମତଟି ରାଜ୍ୟକୁ ମହତ୍ତ୍ୱ ଦେଇ ବ୍ୟକ୍ତିମାନଙ୍କର ମହତ୍ତ୍ୱକୁ ଅସ୍ୱୀକାର କରିଛି । ଯେଉଁମାନେ ରାଜ୍ୟ ବା ରାଷ୍ଟ୍ର ସହ ବ୍ୟକ୍ତି ବା ନାଗରିକ ମାନଙ୍କର ସଂପର୍କକୁ ଯାନ୍ତ୍ରିକ ବୋଲି ବିଚାର କରିଛନ୍ତି ସେମାନେ ଏହି ପ୍ରକାରର ମତପୋଷଣ କରିଥାନ୍ତି । ଯାନ୍ତ୍ରିକ ମତାନୁଯାୟୀ ରାଜ୍ୟ ହେଉଛି ବ୍ୟକ୍ତି ବା ପରିବାର ମାନଙ୍କର ଏକ ସମଷ୍ଟି ମାତ୍ର । ପରସ୍ପରର ନିରାପତ୍ତା ଓ ସୁବିଧା ପାଇଁ ସେମାନେ ଏହିପରି ଏକ ସଂଗଠନରେ ସଂପୃକ୍ତ ରହିଛନ୍ତି । ରାଜ୍ୟ କେବଳ ନାଗରିକମାନଙ୍କର ସୁବିଧା ପାଇଁ ସୃଷ୍ଟି ହୋଇଛି । ତେଣୁ ରାଜ୍ୟ ହେଉଛି ନାଗରିକମାନଙ୍କର ଅଧସ୍ତନ । ନାଗରିକମାନଙ୍କର ଧନ, ଜୀବନ ଓ ନିରାପତ୍ତାକୁ ସୁରକ୍ଷା ଦେବା ଏହାର ମୂଳ ଲକ୍ଷ୍ୟ । ତେଣୁ ରାଜ୍ୟର ସ୍ଥିତି କେବଳ ବ୍ୟକ୍ତି  ବା ନାଗରିକମାନଙ୍କ ଲକ୍ଷ୍ୟ ପାଇଁ ଉଦ୍ଦିଷ୍ଟ, ରାଜ୍ୟର ନିଜସ୍ୱ କିଛି ଲକ୍ଷ୍ୟ ନାହିଁ । ସେହିପରି ପ୍ଲେଟୋଙ୍କର ମତ ଥିଲା ଯେ ବ୍ୟକ୍ତିମାନଙ୍କର ବିଶେଷ ମୂଲ୍ୟ ନାହିଁ । ସେ ଯେଉଁ ଆଦର୍ଶ ନଗର-ରାଜ୍ୟର ପରିକଳ୍ପନା କରିଥିଲେ ସେଥିରେ ବ୍ୟକ୍ତିମାନଙ୍କର କୌଣସି ମୂଲ୍ୟ ନଥିଲା । ରାଜ୍ୟ ପାଇଁ ବ୍ୟକ୍ତିର ସକଳ ତ୍ୟାଗ ରହିବା ଆବଶ୍ୟକ । ବ୍ୟକ୍ତିର ସ୍ଥିତି ରାଜ୍ୟ ପାଇଁ ଅଭିପ୍ରେତ । ରାଜ୍ୟ ହିଁ ଲକ୍ଷ୍ୟ ପୋଷଣ କରିପାରିବ, କିନ୍ତୁ ବ୍ୟକ୍ତି ନୁହେଁ । ରାଜ୍ୟ ପ୍ଲେଟୋଙ୍କ ମତରେ ଏକ ସଜାତୀୟ ଏକତ୍ୱ (homogeneous unity), ଯେଉଁଥିରେ ଏହାର ଅଂଶମାନ ଗୁରୁତ୍ୱହୀନ । ରାଜ୍ୟ ପାଇଁ ପରିବାରର ବିଲୋପ କରିବାକୁ ପ୍ଲେଟୋ ମତ ଦେଇଛନ୍ତି । ଏହା ସହିତ ଗୋଷ୍ଠୀ ପତ୍ନୀ (community of wives) ଭାବନା ଓ ସମସ୍ତ ଶିଶୁମାନଙ୍କୁ ଶିଶୁବିକାଶ କେନ୍ଦ୍ରରେ ଲାଳନ କରିବା ପାଇଁ ପ୍ଲେଟୋ ଯେଉଁ ଭାବନା ବ୍ୟକ୍ତ କରିଛନ୍ତି ତାହା କେବଳ ରାଜ୍ୟକୁ ମହତ୍ତ୍ୱ ଦେଇ ବ୍ୟକ୍ତିମାନଙ୍କର ମହତ୍ତ୍ୱକୁ ନ୍ୟୂନ କରିଛି । ଆରିଷ୍ଟୋଟଲ ଏହି ଦୁଇଟି ମତକୁ ଅସ୍ୱୀକାର କରି ରାଜ୍ୟ ସଂପର୍କରେ ଏକ ଜୈବିକ ମତବାଦର ଅବତାରଣା କରିଛନ୍ତି । ଆରିଷ୍ଟୋଟଲ ରାଜ୍ୟକୁ ମହତ୍ତ୍ୱ ଦେବା ସହ ପ୍ରତ୍ୟେକ ନାଗରିକକୁ ବି ପ୍ରାଧାନ୍ୟ ଦେଇଛନ୍ତି । ପ୍ରତ୍ୟେକ ବ୍ୟକ୍ତିର ଜୀବନର ମୂଲ୍ୟ ଓ ମହତ୍ତ୍ୱ ରହିଛି, ସେହିପରି ରାଜ୍ୟର ମହତ୍ତ୍ୱ ମଧ୍ୟ ରହିଛି । ରାଜ୍ୟ ଏକ ଶରୀର ହେଲେ ପ୍ରତ୍ୟେକ ବ୍ୟକ୍ତି ବା ପରିବାର ତାର ଏକ ଅବିଚ୍ଛେଦ୍ୟ ଅଙ୍ଗ । ବ୍ୟକ୍ତିର ଲକ୍ଷ୍ୟ ଓ ଅଧିକାର ରହିଛି । ବ୍ୟକ୍ତିର ଲକ୍ଷ୍ୟ ବୃହତ୍ତର ଲକ୍ଷ୍ୟର ଅଂଶବିଶେଷ ଯାହାକୁ ନ୍ୟୂନ କରାଯାଇ ପାରିବ ନାହିଁ । ନଗର-ରାଜ୍ୟର ମହତ୍ତ୍ୱକୁ ଗୁରୁତ୍ୱ ଦେବା ସହ ଆରିଷ୍ଟୋଟଲ ବ୍ୟକ୍ତି, ପରିବାର, ଗ୍ରାମ ଓ ସାମାଜିକ ଗୋଷ୍ଠୀ ପ୍ରତ୍ୟେକକୁ ଯଥୋଚିତ ପ୍ରାଧାନ୍ୟ ଦେଇଛନ୍ତି ।

ରାଜ୍ୟ ବା ରାଷ୍ଟ୍ରର ମୁଖ୍ୟ ଲକ୍ଷ୍ୟ ହେଲା ମନୁଷ୍ୟର ଲକ୍ଷ୍ୟ ପୂରଣ ପାଇଁ ତାକୁ ଏକ ଉପଯୁକ୍ତ ପରିବେଶ ଯୋଗାଇବା । ଏକ ଉତ୍ତମ ଜୀବନ ଓ ସୁଖପ୍ରଦ ପରିବେଶ ରାଷ୍ଟ୍ର ହିଁ ଯୋଗାଇପାରିବ । ବ୍ୟକ୍ତି ସାମର୍ଥ୍ୟର ବିକାଶ ଓ

ଏକ ନିରାପଦ ପରିବେଶ ପରିବାର, ଗ୍ରାମ ଓ ଗୋଷ୍ଠୀକୁ ରାଜ୍ୟ ଦେଇପାରିବ । ଜୀବନର ଉତ୍କର୍ଷ ସାଧନ ଓ ଉତ୍ତମତା ହାସଲ କେବଳ ବୃହତ୍ତର ସାମାଜିକ ଜୀବନରେ ସମ୍ଭବ ହୋଇଥାଏ । ଆରିଷ୍ଟୋଟଲ ତାଙ୍କ ଆଚାର ମୀମାଂସାରେ ଯେଉଁ ଉତ୍ତମ ବା ଉତ୍କର୍ଷର ପ୍ରସଙ୍ଗ ଆଣିଛନ୍ତି, ତାହା ତାଙ୍କ ରାଜନୈତିକ ଦର୍ଶନରେ ବି ପ୍ରତିଫଳିତ ହୋଇଛି । ମନୁଷ୍ୟର ଗୋଷ୍ଠୀ ଜୀବନକୁ ଏକ ଜଟିଳ ପାରସ୍ପରିକ ସମ୍ବନ୍ଧ ଥିବା ଅନୁଷ୍ଠାନ ଭାବେ ସେ ଚିତ୍ରଣ କରିଛନ୍ତି । ମନୁଷ୍ୟର ପ୍ରାଥମିକ ସାମାଜିକ ଜୀବନ ପରିବାରରୁ ହିଁ ଆରମ୍ଭ ହୋଇଥିଲା ଓ ଯାହା ପରେ ନଗର-ରାଜ୍ୟରେ ପରିଣତ ହେଲା । ନଗର-ରାଜ୍ୟ ଏକ ଲକ୍ଷ୍ୟ ବା ପ୍ରୟୋଜନ ଭାବରେ ଉଦ୍‌ଭବ ହୋଇଛି ଓ ସେହି ଉଦ୍ଦେଶ୍ୟରେ ମନୁଷ୍ୟର ସାମାଜିକ ଜୀବନ ପରିଚାଳିତ ହୋଇଛି । ନଗର-ରାଜ୍ୟ ଏକ ସ୍ୱାଭାବିକ ସମାଜ ଭାବେ ବିକଶିତ ହୋଇଛି ଓ ଜନକଲ୍ୟାଣ ଯେ ଏହାର ମୁଖ୍ୟ ଲକ୍ଷ୍ୟ ଆରିଷ୍ଟୋଟଲ ଏହା ବିଚାର କରିଛନ୍ତି ।

ଆରିଷ୍ଟୋଟଲ ବିଭିନ୍ନ ସରକାରୀ ବ୍ୟବସ୍ଥା ମାଧ୍ୟମରେ ଏକ ରାଜ୍ୟର ଶାସନ ବ୍ୟବସ୍ଥା ଯେ ପରିଚାଳିତ ହୋଇପାରେ ତାହାର ଏକ ଚିତ୍ର ପ୍ରଦାନ କରିଛନ୍ତି । କେତେକ ବ୍ୟବସ୍ଥାକୁ ସେ ଉନ୍ନତ ଓ ଜନକଲ୍ୟାଣକାରୀ ଭାବେ ପ୍ରକାଶ କରିବା ସହିତ ଅନ୍ୟ କେତେକ ବ୍ୟବସ୍ଥାକୁ ମନ୍ଦ ବୋଲି ଅଭିହିତ କରିଛନ୍ତି । ମୋଟ ଉପରେ ଆରିଷ୍ଟୋଟଲ ଛ' ପ୍ରକାର ସରକାରୀ ବ୍ୟବସ୍ଥାର ବର୍ଣ୍ଣନା ଦେଇଛନ୍ତି ଯାହା ମଧ୍ୟରୁ ତିନିଟିକୁ ମଙ୍ଗଳକର ବା ଜନକଲ୍ୟାଣକାରୀ ବୋଲି ଦର୍ଶାଇବା ବେଳେ ଅନ୍ୟ ତିନିଟି ବ୍ୟବସ୍ଥାକୁ ଅହିତକର ବୋଲି ଦର୍ଶାଇଛନ୍ତି । ଜନକଲ୍ୟାଣକାରୀ ବ୍ୟବସ୍ଥାମାନ ହେଲେ ରାଜତନ୍ତ୍ର, ଅଭିଜାତତନ୍ତ୍ର ଓ ଜନତନ୍ତ୍ର । ସେମାନଙ୍କର ତିନିଟି ପ୍ରତିପକ୍ଷ ବା ଅମଙ୍ଗଳକାରୀ ବ୍ୟବସ୍ଥା ହେଲେ ସ୍ୱୈରାଚାରତନ୍ତ୍ର, ଧନିକତନ୍ତ୍ର ଓ ଗଣତନ୍ତ୍ର । ଜଣେ ଉତ୍ତମ ବ୍ୟକ୍ତି ଯେ ସମସ୍ତଙ୍କ ଅପେକ୍ଷା ପ୍ରଜ୍ଞାବାନ ଯଦି ରାଜ୍ୟର ଶାସକ ଭାବେ ରୁହନ୍ତି ଏହାକୁ ରାଜତନ୍ତ୍ର (monarchy) କୁହାଯିବ । ଜଣେ ଉତ୍ତମ ଓ ବୁଦ୍ଧିମାନ ବ୍ୟକ୍ତିଙ୍କ ହାତରେ ସକଳ ରାଜନୈତିକ କ୍ଷମତା କେନ୍ଦ୍ରୀଭୂତ ହେବାକୁ ଆରିଷ୍ଟୋଟଲ ରାଜତନ୍ତ୍ର କହିଛନ୍ତି । ଅପରପକ୍ଷରେ ଜ୍ଞାନ ବା ଉତ୍ତମତା ନ ଥିବା ଜଣେ ମନ୍ଦ ବ୍ୟକ୍ତି ଯଦି ବଳପ୍ରୟୋଗ କରି ରାଷ୍ଟ୍ରର ଶାସନଭାର ହାତକୁ ନିଅନ୍ତି ତାହାକୁ ସ୍ୱୈରାଚାରତନ୍ତ୍ର (tyranny) କୁହାଯାଏ । ଯେଉଁଠି ଏକଛତ୍ରବାଦୀ ମାନେ ବଳ ଓ କୌଶଳ ପ୍ରୟୋଗକରି ରାଜ୍ୟର ଶାସନ କ୍ଷମତାକୁ ଅକ୍ତିଆର କରନ୍ତି ତାହା ସ୍ୱୈରାଚାରୀ ଶାସନ ବୋଲି ଆରିଷ୍ଟୋଟଲ ଦର୍ଶାଇଛନ୍ତି । ଯେତେବେଳେ ଅଳ୍ପକିଛି ବିଜ୍ଞ ଓ ସମର୍ଥ ବ୍ୟକ୍ତିଙ୍କ ହାତରେ ରାଜ୍ୟ ଓ ଶାସନ ବ୍ୟବସ୍ଥା ପରିଚାଳିତ ହୁଏ ଏହାକୁ ଅଭିଜାତତନ୍ତ୍ର (aristocracy) ବୋଲି ଆରିଷ୍ଟୋଟଲ କହିଛନ୍ତି । ଅପର ପକ୍ଷରେ ଯଦି ସମାଜର କିଛି ଧନୀକ ଓ ପ୍ରଭାବଶାଳୀ ମନ୍ଦ ବ୍ୟକ୍ତି ଶାସନକୁ ନିୟନ୍ତ୍ରଣ କରନ୍ତି ଏହାକୁ ଧନୀକତନ୍ତ୍ର (oligarchy) ବୋଲି କୁହଯାଏ । ଯେଉଁଠି ରାଜ୍ୟର ଶାସନ ବ୍ୟବସ୍ଥା ବହୁଜନଙ୍କ ଉପରେ ନ୍ୟସ୍ତ ହୁଏ ତାହାକୁ ଆରିଷ୍ଟୋଟଲ ଜନତନ୍ତ୍ର (timocracy) ବୋଲି ଅଭିହିତ କରିଛନ୍ତି । ଏ କ୍ଷେତ୍ରରେ କୌଣସି ବ୍ୟକ୍ତି ବା ମୁଷ୍ଟିମେୟ ବ୍ୟକ୍ତି ପରିବର୍ତ୍ତେ ରାଜ୍ୟର ସମସ୍ତ ନାଗରିକ ରାଜ୍ୟର

ପରିଚାଳନାରେ ଅଂଶଗ୍ରହଣ କରନ୍ତି । ଅପରପକ୍ଷରେ ଯେତେବେଳେ ବହୁଜନ ନିଜ ସ୍ୱାର୍ଥ ପାଇଁ ଶାସନକୁ ନିୟନ୍ତ୍ରଣ କରନ୍ତି ଏହାକୁ ଗଣତନ୍ତ (democracy) କୁହାଯାଏ ।

ଆରିଷ୍ଟୋଟଲ ରାଜତନ୍ତ୍ର, ଅଭିଜାତତନ୍ତ୍ର ଓ ଜନତନ୍ତ୍ରକୁ ଉତ୍ତମ କହିଛନ୍ତି ଓ ପ୍ରତ୍ୟେକର ସମ୍ଭାବ୍ୟ ମନ୍ଦ ବ୍ୟବସ୍ଥାକୁ ଦର୍ଶାଇଛନ୍ତି । ଏହା ମଧ୍ୟରୁ କେଉଁ ସରକାରୀ ପରିଚାଳନା ଉତ୍ତମ ତାହା କହିବା ସହଜ ନୁହେଁ, କାରଣ ତାହା ନାନାବିଧ କାରଣ ଓ ପରିସ୍ଥିତି ଉପରେ ନିର୍ଭରକରେ । ପୁନଶ୍ଚ ଗୋଟିଏ ସମୟରେ ଯେଉଁ ଶାସନ ବ୍ୟବସ୍ଥା ଉତ୍ତମ ମନେହୁଏ ତାହା ପରିବର୍ତ୍ତିତ ପରିସ୍ଥିତିରେ ହୁଏତ ସେପରି ଉନ୍ନତ ମନେ ନ ହୋଇପାରେ । ତେବେ ତାଙ୍କ ସମୟରେ କେତେକ ନଗର-ରାଜ୍ୟରେ ଯେଉଁ ଶାସନ ବ୍ୟବସ୍ଥା ଥିଲା ତାହା ଆଧାରରେ ବିଭିନ୍ନ ଶାସନ ବ୍ୟବସ୍ଥାର ପରିକଳ୍ପନା ସେ କରିଥିବା ମନେହୁଏ ।

ଆରିଷ୍ଟୋଟଲଙ୍କ ରାଜନୈତିକ ଦର୍ଶନର ନକାରାତ୍ମକ ଦିଗ ବିଷୟରେ ପରବର୍ତ୍ତୀ ସମୟରେ ଅନେକ ଚର୍ଚ୍ଚା ହୋଇଛି । ସେ ବିଶ୍ୱାସ କରୁଥିଲେ ଯେ ସମାଜରେ କିଛି ବ୍ୟକ୍ତି ଦାସ ରହିବେ ଓ ଏହା ସହିତ ରାଜନୈତିକ କାର୍ଯ୍ୟରେ କେବଳ ପୁରୁଷମାନେ ଅଂଶଗ୍ରହଣ କରିବେ । ତେଣୁ ନଗର-ରାଜ୍ୟର ରାଜନୈତିକ ଶାସକ ପରିଚାଳନା କ୍ଷେତ୍ରରେ ସେ ଦାସମାନଙ୍କୁ ଓ ମହିଳାମାନଙ୍କୁ କୌଣସି ଭୂମିକା ଦେଇନାହାନ୍ତି । ଆରିଷ୍ଟୋଟଲ ବିଚାର କରୁଥିଲେ ଯେ ଏକ ଶାସନ ବ୍ୟବସ୍ଥା ଯେତେ ଅଧିକ ବିଚାରସମ୍ମତ ଭାବେ ପରିଚାଳିତ ହେବ ତାହା ରାଜ୍ୟର ହିତ ସାଧନ କରିବ । ତେଣୁ ପିଲାମାନେ, ମହିଳାମାନେ ଓ ଦାସମାନେ ଏତେ ବିଚାରବୁଦ୍ଧି ସଂପନ୍ନ ହୋଇ ନଥିବାରୁ ସେମାନେ ରାଜ୍ୟର ଶାସନ ବ୍ୟବସ୍ଥାରେ ଅଂଶଗ୍ରହଣ କରିପାରିବେ ନାହିଁ । ସମାଜ ସେତେବେଳକୁ ପୁରୁଷ ପ୍ରାଧାନ୍ୟ ବ୍ୟବସ୍ଥାରେ ପରିଚାଳିତ ହେଉଥିଲା ଓ ଗ୍ରୀସ୍‌ରେ ଦାସତ୍ୱ ପ୍ରଥା ରହିଥିଲା । ତେଣୁ ସେ ସମୟର ପ୍ରଚଳିତ ସାମାଜିକ ବ୍ୟବସ୍ଥାକୁ ସେ ସ୍ୱୀକାର କରିନେଇଥିଲେ । ପୁରୁଷ ପ୍ରାଧାନ୍ୟତା ଓ ଦାସତ୍ୱ ପ୍ରଥା ସେ ସ୍ୱୀକାର କରିଥିଲେ ମଧ୍ୟ ଏହା ତାଙ୍କର ରାଜନୈତିକ ସିଦ୍ଧାନ୍ତ ବିକାଶ ପାଇଁ ପ୍ରତିବନ୍ଧକ ହୋଇନଥିଲା । ଆରିଷ୍ଟୋଟଲ ଶାସନର ଗୁଣାତ୍ମକ ମାନ ଉପରେ ପ୍ରାଧାନ୍ୟ ଦେଉଥିଲେ । ଯେଉଁମାନେ ରାଜ୍ୟର ଶାସନ ବ୍ୟବସ୍ଥାର ଦାୟିତ୍ୱରେ ରହିବେ ସେମାନଙ୍କର ବୌଦ୍ଧିକତା ଓ ଦକ୍ଷତା ଉପରେ ଶାସନର ଗୁଣାତ୍ମକ ମାନ ନିର୍ଭର କରିଥାଏ । ଏପରିକି ଦୁଇଟି ରାଜ୍ୟରେ ରାଜତନ୍ତ୍ର (ଆରିଷ୍ଟୋଟଲଙ୍କ ବିଚାରର ମୋନାର୍କି) ଥିଲେ ମଧ୍ୟ ଗୋଟିକରେ ଶାସନ ବ୍ୟବସ୍ଥା ଭଲ ହୋଇପାରେ ଓ ଅନ୍ୟଟିରେ ଭଲ ନ ହୋଇପାରେ । ଯେଉଁମାନେ ଶାସନ ବ୍ୟବସ୍ଥାକୁ ପରିଚାଳନା କରିବେ ସେମାନଙ୍କର ଦକ୍ଷତା, ବୁଦ୍ଧି ଓ ନୈତିକତା ଉପରେ ଶାସନର ଗୁଣାତ୍ମକ ମାନ ନିର୍ଭର କରେ । ଶାସନର ସ୍ୱଭାବ ବ୍ୟତୀତ ଆହୁରି ଅନେକ କଥା ମଧ୍ୟ ଶାସନ ବ୍ୟବସ୍ଥାକୁ ପ୍ରଭାବିତ କରିଥାଏ । ରାଜ୍ୟର ଲୋକସଂଖ୍ୟା, ଲୋକଚରିତ୍ର, ରାଜ୍ୟର ଅବିସ୍ଥିତି, ପ୍ରାକୃତିକ ଘଟଣା, ବାହ୍ୟ ରାଜ୍ୟର ପ୍ରଭାବ ଇତ୍ୟାଦି ମଧ୍ୟ ଶାସନ ବ୍ୟବସ୍ଥାକୁ ପ୍ରଭାବିତ କରିପାରେ । ତେବେ ଏକ ରାଜ୍ୟର ଶାସନ ବ୍ୟବସ୍ଥା କେତେ ଉତ୍ତମ ହୋଇପାରିବ ଫଳରେ ନାଗରିକମାନେ ସଦ୍‌ଗୁଣର ବିକାଶ କରିବା ସହ ସୁଖରେ ଜୀବନ

ନିର୍ବାହ କରିପାରିବେ ଏହା ଆରିଷ୍ଟୋଟଲଙ୍କର ବିଚାର ରହିଥିଲା । ସେ ପ୍ଲେଟୋଙ୍କର ଦାର୍ଶନିକ-ଶାସକ ବ୍ୟବସ୍ଥାକୁ ସମର୍ଥନ କରୁଥିଲେ ମଧ୍ୟ ଏହା ଯେ କେବେ ବାସ୍ତବ ହୋଇପାରିବ ନାହିଁ ତାହା ସଂପୂର୍ଣ୍ଣ ରୂପେ ବିଶ୍ୱାସ କରୁଥିଲେ । ଏହାର ବାସ୍ତବତା ଯେହେତୁ ସମ୍ଭବ ନୁହେଁ ତେଣୁ ସେ ଏହାକୁ ଏକ ବିଚାର ବା ପ୍ରକଳ୍ପ ବୋଲି ଗ୍ରହଣ କରୁଥିଲେ । ପ୍ଲେଟୋ ଯେପରି ୟୁଟୋପିଆରେ ବିଶ୍ୱାସ ରଖୁଥିଲେ ଆରିଷ୍ଟୋଟଲ ସେପରି ନଥିଲେ ବରଂ ବାସ୍ତବ ପକ୍ଷେ କ'ଣ ସମ୍ଭବ ଓ ତାହା କିପରି ଉନ୍ନତ ହୋଇ ଲକ୍ଷ୍ୟ ହାସଲ କରିବ ତାହାକୁ ପ୍ରାଧାନ୍ୟ ଦେଉଥିଲେ । ନାଗରିକମାନଙ୍କର ସନ୍ତୋଷ ଓ ସାମାଜିକ ନ୍ୟାୟ ତାଙ୍କ ବିଚାରର ମୁଖ୍ୟ ବିଷୟ ଥିଲା । ଶାସକମାନେ ଯଦି ନୀତିମାନ ହେବେ ଓ ରାଜକର୍ମଚାରୀ ମାନେ ସାଧୁ ଓ ଦକ୍ଷ ହେବେ ତେବେ ଶାସନ ବ୍ୟବସ୍ଥା ଉନ୍ନତ ହୋଇପାରିବ ।

ରାଜ୍ୟର ଅର୍ଥନୈତିକ ବ୍ୟବସ୍ଥା ଉପରେ ଆରିଷ୍ଟୋଟଲ ପ୍ରାଧାନ୍ୟ ଦେଉଥିଲେ । ସମାଜରେ ଧନୀ ଦରିଦ୍ର ମଧ୍ୟରେ ଯଦି ଗୁରୁତର ପାର୍ଥକ୍ୟ ରହେ ତେବେ ତାହା ଅଶାନ୍ତିର ବାତାବରଣ ସୃଷ୍ଟି କରିବ । ଅର୍ଥନୀତି ରାଜ୍ୟ ଶାସନ ବ୍ୟବସ୍ଥାର ଯେ ଅତି ଗୁରୁତ୍ୱପୂର୍ଣ୍ଣ ଦିଗ ଏହି ଉପଲବ୍ଧି ଆରିଷ୍ଟୋଟଲଙ୍କର ରହିଥିଲା । ଏଣୁ ସମାଜର ଅର୍ଥବ୍ୟବସ୍ଥାକୁ ପ୍ରାଧାନ୍ୟ ଦେଉଥିଲେ କାରଣ ଲୋକ ମାନଙ୍କର ନୈତିକ ଜୀବନଧାରାକୁ ସଂପତ୍ତି ଗଭୀର ଭାବେ ପ୍ରଭାବିତ କରିଥାଏ । ସେ ପ୍ଲେଟୋଙ୍କର କମ୍ୟୁନିଷ୍ଟ ଆଦର୍ଶକୁ ଗ୍ରହଣ କରୁନଥିଲେ । ସମାଜରେ ଅର୍ଥନୈତିକ ଶ୍ରେଣୀ ରହିବ ତେବେ ସେମାନଙ୍କ ମଧ୍ୟରେ କିପରି ଭାରସାମ୍ୟ ରହିପାରିବ, ଏହାକୁ ସେ ଗୁରୁତ୍ୱ ଦେଉଥିଲେ । ସମାଜରେ ଅର୍ଥନୈତିକ ଭାରସାମ୍ୟତା ରହିବା ଆବଶ୍ୟକ ଓ ଏହାଦ୍ୱାରା ନାଗରିକ ମାନଙ୍କର ନୈତିକ ଜୀବନ ଶୃଂଖଳିତ ହୋଇପାରିବ । ସମାଜର ମଙ୍ଗଳ ବିଧାନ ଓ ନୈତିକ ସଦ୍‌ଗୁଣର ବିକାଶ କ୍ଷେତ୍ରରେ ଏକ ଉନ୍ନତ ଅର୍ଥନୈତିକ ବ୍ୟବସ୍ଥା ନିର୍ଣ୍ଣାୟକ ଭୂମିକା ନେଇପାରିବ, ନଚେତ ଏହା ଯେ ସମାଜ ପାଇଁ ବିପର୍ଯ୍ୟୟର ପରିବେଶ ଆଣିବ ତାହା ସେ କଳ୍ପନା କରିଥିଲେ ।

ନଗର-ରାଜ୍ୟର ନାଗରିକମାନଙ୍କର ଶିକ୍ଷା ଉପରେ ଆରିଷ୍ଟୋଟଲ ମଧ୍ୟ ଗୁରୁତ୍ୱ ପ୍ରଦାନ କରିଛନ୍ତି ଓ ଶିକ୍ଷା ବ୍ୟବସ୍ଥା ରାଜ୍ୟଦ୍ୱାରା ନିୟନ୍ତ୍ରିତ ହେବା ଆବଶ୍ୟକ ବୋଲି ମତ ଦେଇଛନ୍ତି । ପିଲାଟି ସମୟରୁ ପିଲାମାନଙ୍କୁ ଶାରୀରିକ ଶିକ୍ଷା ଦେବା ଦରକାର । ମନୁଷ୍ୟର ଚିନ୍ତା- ଚେତନାର ବିକାଶ ହେବା ପୂର୍ବରୁ ପିଲାମାନଙ୍କୁ ସୁସ୍ଥ ଓ ନୀରୋଗ ରଖିବା ପାଇଁ ସେମାନଙ୍କୁ ଶାରୀରିକ ଶିକ୍ଷା ଦେବା ଆବଶ୍ୟକ । ଶରୀରର ସୁସ୍ଥତା ଉପରେ ବୌଦ୍ଧିକ ଓ ଆତ୍ମିକ ବିକାଶ ନିର୍ଭର କରେ ବୋଲି ସେ ମତ ଦେଇଛନ୍ତି । ଏହା ସହିତ ନୈତିକ ଶିକ୍ଷା ଉପରେ ମଧ୍ୟ ସେ ପ୍ରାଧାନ୍ୟ ଦେଇଛନ୍ତି । ଉତ୍ତମ ନାଗରିକ ଗଠନ ପାଇଁ ଉତ୍ତମ ଶିକ୍ଷା ଯେ ଅବଶ୍ୟମ୍ଭାବୀ ଏହା ଉଭୟ ପ୍ଲେଟୋ ଓ ଆରିଷ୍ଟୋଟଲଙ୍କର ବିଚାର ରହିଥିଲା । ବ୍ୟକ୍ତିମାନଙ୍କର ବୌଦ୍ଧିକ ଓ ନୈତିକ ବିକାଶର ପରିଣାମରୁ ନଗର-ରାଜ୍ୟର ମାନ ଉନ୍ନତ ହୋଇପାରିବ । ରାଜ୍ୟର ଉନ୍ନତି ବ୍ୟକ୍ତି ବା ନାଗରିକ ମାନଙ୍କର ଉନ୍ନତିର ଆଧାର ବୋଲି ସେ ଗ୍ରହଣ କରୁଥିଲେ ।

ନାଗରିକ ମାନଙ୍କ ମଧ୍ୟରେ ସାଧୁତା, ଶୃଂଖଳାବୋଧ ଓ ବିଚାରବୁଦ୍ଧିର ଉପଯୁକ୍ତ ବିକାଶ ସେମାନଙ୍କ ଶିକ୍ଷା ଉପରେ ନିର୍ଭର କରିଥାଏ । ରାଜ୍ୟର ଶିକ୍ଷାବ୍ୟବସ୍ଥା ଉନ୍ନତ, ବିଚାରଶୀଳ ଓ ଉତ୍ତମ ହେଲେ ଏହା ନାଗରିକମାନଙ୍କର ଜୀବନକୁ ଉନ୍ନତ କରିବା ସହ ରାଜ୍ୟର ସ୍ଥିରତା ଓ ବିକାଶକୁ ଉନ୍ନତ କରିପାରିବ । ନାଗରିକ ମାନଙ୍କର ଶିକ୍ଷାଦ୍ୱାରା ରାଜ୍ୟର ସାଂସ୍କୃତିକ ଜୀବନ ମଧ୍ୟ ଉନ୍ନତ ହୋଇପାରିବ । ଏକ ରାଜ୍ୟର ସାଂସ୍କୃତିକ ଜୀବନ ଉପେକ୍ଷିତ ହେଲେ ତାହା ଯେ ରାଜ୍ୟର ନୈତିକ ଓ ବୌଦ୍ଧିକ ବିକାଶରେ ଅନ୍ତରାୟ ହେବ ଏହା ଆରିଷ୍ଟୋଟଲଙ୍କର ଭାବନା ରହିଥିଲା ।

ଆରିଷ୍ଟୋଟଲଙ୍କର ରାଜନୈତିକ ବିଚାର ବହୁ ଦିଗନ୍ତପ୍ରସାରୀ । 'ମନୁଷ୍ୟ ଏକ ସାମାଜିକ ପ୍ରାଣୀ' ବିଚାରରୁ ସେ ଭାବିଛନ୍ତି ଯେ ମନୁଷ୍ୟ ମଧ୍ୟ ଏକ ରାଜନୈତିକ ବ୍ୟକ୍ତି । ମନୁଷ୍ୟ ଭିତରେ ରହିଥିବା ପାଶବିକ ଓ ବୌଦ୍ଧିକ ସାମର୍ଥ୍ୟର ସୁସଂହତ ସମନ୍ୱୟ କେବଳ ରାଜ୍ୟର ନାଗରିକ ହେବାଦ୍ୱାରା ସମ୍ଭବ ହୋଇପାରିବ । ତେଣୁ ନାଗରିକ ଜୀବନ ତାଙ୍କ ରାଜନୈତିକ ବିଚାରରେ ମୁଖ୍ୟ ସ୍ଥାନ ନେଇଛି । ଏକ ରାଜ୍ୟର ନାଗରିକ ହେବାଦ୍ୱାରା ପ୍ରତ୍ୟେକ ବ୍ୟକ୍ତି ନିଜର ଉତ୍କର୍ଷ ବିକାଶ କରିବା ସହ ଜୀବନର ଲକ୍ଷ୍ୟ ପ୍ରାପ୍ତ ହୋଇପାରିବ । ପ୍ରତ୍ୟେକ ବ୍ୟକ୍ତିର ସାମର୍ଥ୍ୟ ମଧ୍ୟ ବୃହତ୍ତର ସମାଜରେ ବିକଶିତ ହେବାର ଅବକାଶ ପାଇବ । ଏକ ସୁଖ ଆନନ୍ଦମୟ ଜୀବନ କେବଳ ନଗର-ରାଜ୍ୟର ନାଗରିକମାନେ ପ୍ରାପ୍ତ ହୋଇପାରିବେ । ଆରିଷ୍ଟୋଟଲ ବ୍ୟକ୍ତି ଓ ଗୋଷ୍ଠୀ ଜୀବନର ସୁଖମୟ ପରିବେଶ ସହିତ ଏକ ବୃହତ୍ତର ଆତ୍ମପୂର୍ଣ୍ଣତାବାଦୀ ଭାବନା ବ୍ୟକ୍ତ କରିଛନ୍ତି । ନାଗରିକ ମାନଙ୍କର ଆତ୍ମପୂର୍ଣ୍ଣତାବାଦ (eudaemonism) କିପରି ସଫଳ ହେବ ସେଥିପାଇଁ ସେ ଆଦର୍ଶ ରାଜ୍ୟର ସମ୍ଭାବନା ନେଇ ବିଚାର ଦେଇଛନ୍ତି । ପ୍ଲେଟୋଙ୍କ ପରି ସେ କୌଣସି ୟୁଟୋପିଆର ଚିତ୍ର ନ ଦେଇ ବାସ୍ତବ ଜନରାଜ୍ୟର ବିକାଶ କିପରି ଉତ୍ତମ ଲକ୍ଷ୍ୟରେ ପରିଚାଳିତ ହେବ ସେଥିପାଇଁ ବିଭିନ୍ନ ସମ୍ଭାବନାର ଆଲୋଚନା କରିଛନ୍ତି । ଉତ୍ତମ ଶାସନ ବ୍ୟବସ୍ଥା, ଅର୍ଥନୀତି, ଶିକ୍ଷାନୀତି ଇତ୍ୟାଦି କିପରି ରୂପ ନେଲେ ଜନଜୀବନରେ ଉତ୍କର୍ଷ ସାଧିତ ହୋଇପାରିବ ସେ ବିଷୟରେ ବିଭିନ୍ନ ବିଷୟ ଆଲୋଚନାର ପରିସରକୁ ଆଣିଛନ୍ତି । ଏକ ଉତ୍ତମ ରାଜ୍ୟ ଓ ନାଗରିକ ମାନଙ୍କର ପରିପୂର୍ଣ୍ଣତା ପାଇଁ ସେ ଯେତେ ସବୁ ଦିଗନ୍ତ ଉନ୍ମୋଚନ  କରିଛନ୍ତି ତାହା ସଭ୍ୟତାର ବୌଦ୍ଧିକ ବିକାଶ ପାଇଁ ଯେ ବହୁ ସମ୍ଭାବନା ସୃଷ୍ଟି କରିଛି ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ୮.୭ ଆରିଷ୍ଟୋଟଲଙ୍କ ଦର୍ଶନର ସମୀକ୍ଷା

କେବଳ ଗ୍ରୀକ୍ ଦର୍ଶନର ଇତିହାସରେ ନୁହେଁ, ସମଗ୍ର ପାଶ୍ଚାତ୍ୟ ଦର୍ଶନ ପରଂପରାରେ ଆରିଷ୍ଟୋଟଲ ହେଉଛନ୍ତିଏକ ଅନନ୍ୟ ପ୍ରତିଭା । ବିଶ୍ୱ ଚିନ୍ତାମାନସକୁ ତାଙ୍କର ଅବଦାନ ଅତୁଳନୀୟ । ତର୍କଶାସ୍ତ୍ର, ସମାଜ-ବିଜ୍ଞାନର ବିଭିନ୍ନ ସୋପାନ ଓ ନୀତିଶାସ୍ତ୍ର କ୍ଷେତ୍ରକୁ ତାଙ୍କର ଅବଦାନ ଯେପରି ଉଲ୍ଲେଖନୀୟ ସେହିପରି ଦର୍ଶନଶାସ୍ତ୍ର କ୍ଷେତ୍ରକୁ ତାଙ୍କର ଅବଦାନ ମଧ୍ୟ ଯୁଗାନ୍ତକାରୀ । ମାନବିକୀ (Humanities) କ୍ଷେତ୍ରରେ ଯେତେ ବିଷୟ ବିଶ୍ୱବିଦ୍ୟାଳୟ

ସ୍ତରରେ ପଢ଼ାଯାଉଛି, ସେଥିରୁ ଅନେକ ବିଭାଗରେ ବିଚାର ପ୍ରକ୍ରିୟା ତାଙ୍କଠାରୁ ଆରମ୍ଭ ହୋଇଥିଲା । ତାଙ୍କ ଦେହାନ୍ତର ଦୁଇ ହଜାର ବର୍ଷ ପରେ ସେ ଅଧିକ ଚର୍ଚ୍ଚାର ପରିସରକୁ ଆସିଥିବା ମନେହୁଏ ।

ଦର୍ଶନଶାସ୍ତ୍ର ପରିସରରେ ତର୍କଶାସ୍ତ୍ର କ୍ଷେତ୍ରକୁ ତାଙ୍କର ଭାବନା ବେଶ୍ ମୌଳିକ । ଅବରୋହ ତର୍କଶାସ୍ତ୍ର ବିଷୟରେ ସେ ଯେଉଁ ସବୁ ବିଷୟର ବିଶ୍ଳେଷଣ କରିଛନ୍ତି ତାହା କେବଳ ଜଣେ ଜିନିୟସ୍ ହିଁ କରିପାରିବେ । ଦୀର୍ଘ ଦୁଇ ହଜାର ବର୍ଷ ଧରି ଅବରୋହ ତର୍କଶାସ୍ତ୍ର ବିଷୟରେ ବିଶେଷ କିଛି ପରିବର୍ତ୍ତନ ହେବା ଜଣା ନାହିଁ । ତେବେ ଆରୋହ ତର୍କଶାସ୍ତ୍ର କ୍ଷେତ୍ରରେ ଯଦିବି କିଞ୍ଚିତ ବିଚାରର ସେ ଶ୍ରୀଗଣେଶ କରିଥିଲେ ଏହା ତାଙ୍କଦ୍ୱାରା ବିକଶିତ ହୋଇନଥିଲା । ଆରୋହ ତର୍କଶାସ୍ତ୍ର ବହୁ ପରେ ବିକଶିତ ହେଲା ଓ ଗାଣିତିକ ତର୍କଶାସ୍ତ୍ର ବା ପ୍ରତୀକାତ୍ମକ ତର୍କଶାସ୍ତ୍ର ଆରିଷ୍ଟୋଟଲଙ୍କ ଅବରୋହ ତର୍କଶାସ୍ତ୍ରର ମୂଳ ଭିତ୍ତି ଉପରେ ବିକଶିତ ହେବା ଦେଖାଯାଏ ।

ଆରିଷ୍ଟୋଟଲ ଯେଉଁ ତତ୍ତ୍ୱମୀମାଂସାର ବିକାଶ କରିଛନ୍ତି ତାହା ପ୍ଲେଟୋଙ୍କ ଦାର୍ଶନିକ ବିଚାର ଉପରେ ଗମ୍ଭୀର ଚର୍ଚ୍ଚାରୁ ଭିତ୍ତି ପଡିଥିଲା । ପ୍ଲେଟୋ ବି ଥିଲେ ଅନ୍ୟ ଜଣେ ପ୍ରଚଣ୍ଡ ପ୍ରତିଭା ଯେ ଦର୍ଶନ କ୍ଷେତ୍ରକୁ କିଛି ମୌଳିକ ଅବଦାନ ଦେଇଛନ୍ତି । ତେବେ ଆରିଷ୍ଟୋଟଲ ତାଙ୍କ ଗୁରୁ ପ୍ଲେଟୋଙ୍କ ବିଚାର ସ୍ତରରେ ଯେଉଁ ଅସଂହତିମାନ ଦେଖିଛନ୍ତି ତାର ଚର୍ଚ୍ଚା ଭିତରୁ ତାଙ୍କ ଦର୍ଶନକୁ ରୂପରେଖ ଦେଇଛନ୍ତି । ଉଭୟଙ୍କ ତତ୍ତ୍ୱମୀମାଂସାରେ କିଛି ସାମଂଜସ୍ୟ ରହିଛି ଓ କିଛି ପାର୍ଥକ୍ୟ ମଧ୍ୟ ରହିଛି । ସେମାନଙ୍କ ତତ୍ତ୍ୱମୀମାଂସା ଭିନ୍ନ ଭିନ୍ନ ମାନଦଣ୍ଡରେ ଦ୍ୱୈତବାଦର ବିଚାର ଦେଇଥିବା କେତେକ ସମାଲୋଚକ ବ୍ୟକ୍ତ କରିଛନ୍ତି । ସୁତରାଂ ଯେଉଁ ସମାଲୋଚନା ପ୍ଲେଟୋଙ୍କ ଦର୍ଶନ କ୍ଷେତ୍ରରେ କରାଯାଏ, ସେହି ସମାଲୋଚନା ଆରିଷ୍ଟୋଟଲଙ୍କ ଦର୍ଶନ କ୍ଷେତ୍ରରେ ବି କରାଯାଇପାରିବ ବୋଲି ଅନେକ ଦର୍ଶନ-ଐତିହାସିକ ଦର୍ଶାଇଛନ୍ତି । ପ୍ଲେଟୋଙ୍କ ଦର୍ଶନର ଏକ ମୌଳିକ ଭାବନା ହେଉଛି ତାଙ୍କର ଶୁଦ୍ଧସତ୍ତା ସିଦ୍ଧାନ୍ତ (Theory of Ideas) । ପ୍ଲେଟୋଙ୍କ ଆଇଡିଆ, ଆରିଷ୍ଟୋଟଲଙ୍କର ଫର୍ମ ଓ ଅନ୍ୟ କେତେକ ଦାର୍ଶନିକଙ୍କର ସାମାନ୍ୟ (universal) ପ୍ରତ୍ୟୟମାନ ଏକା ତତ୍ତ୍ୱକୁ ବୁଝାଇଥାଏ । ଏହାକୁ ତତ୍ତ୍ୱମୀମାଂସା ପରିସରରେ ପରମ ତତ୍ତ୍ୱ ଭାବରେ ଗ୍ରହଣ କରାଯାଏ । ପ୍ଲେଟୋ ତାଙ୍କର ଆଇଡିଆ (ଆମେ ଏହାକୁ ଓଡିଆରେ 'ଶୁଦ୍ଧସତ୍ତା' କରିଛେ) ମାନଙ୍କୁ ପରମାର୍ଥିକ ସତ୍ତା ଭାବେ ଗ୍ରହଣ କରି ସେମାନଙ୍କୁ ଏକ ଦେଶାତୀତ ଓ କାଳାତୀତ ବିଶ୍ୱରେ ସ୍ଥାନିତ କରିଛନ୍ତି । ପ୍ଲେଟୋ ଏହି ସିଦ୍ଧାନ୍ତକୁ ନେଇ ଆତ୍ମାର ଅମରତ୍ୱ, ମୃତ୍ୟୁପରେ ଆତ୍ମାର ସ୍ଥିତି, ଆଇଡିଆମାନଙ୍କର ସ୍ମୃତି ଇତ୍ୟାଦି ବିଷୟକୁ ବ୍ୟାଖ୍ୟା କରିଛନ୍ତି । ଆରିଷ୍ଟୋଟଲ ପ୍ଲେଟୋଙ୍କର ଶୁଦ୍ଧସତ୍ତା ସିଦ୍ଧାନ୍ତକୁ ସମାଲୋଚନା କରିଥିବା ପୂର୍ବରୁ ଦର୍ଶାଯାଇଛି । ପ୍ଲେଟୋଙ୍କ ପରି ଆରିଷ୍ଟୋଟଲ ଫର୍ମତତ୍ତ୍ୱ ନିର୍ମାଣ କରିଛନ୍ତି, ଓ ଫର୍ମକୁ ପରମ ତତ୍ତ୍ୱଭାବେ ନେଇଛନ୍ତି । ତେବେ ଆରିଷ୍ଟୋଟଲ ଫର୍ମମାନଙ୍କୁ ଅନ୍ୟ ଏକ ପୃଥିବୀରେ ସ୍ଥାନିତ କରିନାହାନ୍ତି ବରଂ ଯେକୌଣସି ଏକକ ବସ୍ତୁର ଆକାରିକ ସିଦ୍ଧାନ୍ତ (formative principle) ଭାବରେ ଗ୍ରହଣ କରିଛନ୍ତି । ପ୍ଲେଟୋଙ୍କ ସିଦ୍ଧାନ୍ତ ତୁଳନାରେ ଆରିଷ୍ଟୋଟଲଙ୍କ ପ୍ରତ୍ୟୟବାଦ

(idealism) ଅଧିକ ଯୁକ୍ତିସଂଗତ ମନେହୁଏ । ତେବେ ପ୍ଲେଟୋ ଯେପରି ଇନ୍ଦ୍ରିୟାନୁଭୂତି ଜଗତ ଓ ଶୁଦ୍ଧସତ୍ତା ଜଗତ ମଧ୍ୟରେ ପ୍ରଭେଦ କରି ଏକ ଦ୍ୱୈତବାଦର ବିକାଶ କରିଛନ୍ତି ଆରିଷ୍ଟୋଟଲ ସେହିପରି ଫର୍ମ ଓ ବସ୍ତୁ ମଧ୍ୟରେ ଦ୍ୱୈତବାଦ ସୃଷ୍ଟି କରିଛନ୍ତି । ପ୍ଲେଟୋଙ୍କ କ୍ଷେତ୍ରରେ ଶୁଦ୍ଧସତ୍ତାମାନଙ୍କରୁ ଜଗତକୁ ନିଷ୍ପନ୍ନ କରିବା ଅସମ୍ଭବ ମନେହୁଏ କାରଣ ସେମାନେ ପରସ୍ପରଠାରୁ ସଂପୂର୍ଣ୍ଣ ଭିନ୍ନ ଓ ସେମାନଙ୍କ ମଧ୍ୟରେ ଥିବା ପ୍ରଭେଦକୁ ଦୂର କରାଯାଇ ପାରିବ ନାହିଁ । ପ୍ଲେଟୋଙ୍କ ବିଚାରରେ ଥିବା ଜଟିଳତାକୁ ଉପଲବ୍ଧି କରି ଆରିଷ୍ଟୋଟଲ ପ୍ଲେଟୋଙ୍କ ଦ୍ୱୈତବାଦକୁ ଦୂର କରିବାକୁ ପ୍ରୟାସ କରିଛନ୍ତି । ସୁତରାଂ ସାମାନ୍ୟ ଓ ବିଶେଷ କିମ୍ବା ଫର୍ମ ଓ ବସ୍ତୁ ଆରିଷ୍ଟୋଟଲଙ୍କ ମତରେ ପରସ୍ପରଠାରୁ ଅଭିନ୍ନ । ସେମାନଙ୍କ ମଧ୍ୟରେ ଥିବା ସମ୍ବନ୍ଧ ଯାନ୍ତ୍ରିକ ନୁହେଁ ବରଂ ଜୈବିକ । ମନେହୁଏ ସତେ ଯେପରି ପ୍ଲେଟୋଙ୍କ ଦ୍ୱୈତବାଦକୁ ଆରିଷ୍ଟୋଟଲ ଅତିକ୍ରମ କରିବାକୁ ସଫଳ ହୋଇଛନ୍ତି । କିନ୍ତୁ ବାସ୍ତବରେ ସମାଲୋଚକମାନଙ୍କ ମତରେ ଆରିଷ୍ଟୋଟଲ ଏହି ସଫଳତା ହାସଲ କରିପାରି ନାହାନ୍ତି । ବସ୍ତୁ ଓ ଫର୍ମ କିମ୍ବା ବିଶେଷ ଓ ସାମାନ୍ୟ କେବଳ ଅଭିନ୍ନ କହିବା ଯଥେଷ୍ଟ ନୁହେଁ । ସୈଦ୍ଧାନ୍ତିକ ଭାବରେ ଫର୍ମ ଓ ବସ୍ତୁ ଦୁଇଟି ପୃଥକ ତତ୍ତ୍ୱ । ଯଦି ଫର୍ମ ବା ସାମାନ୍ୟକୁ ପରମ ତତ୍ତ୍ୱ ଭାବରେ ସ୍ୱୀକାର କରାଯିବ, ତେବେ ପ୍ରଶ୍ନ ଆସିବ ଫର୍ମରୁ ବସ୍ତୁକୁ ନିଷ୍ପନ୍ନ କିପରି କରାଯାଇ ପାରିବ ? ଅର୍ଥାତ୍ ବସ୍ତୁ ଯେ ଫର୍ମର ଅଭିବ୍ୟକ୍ତି ବା ଫର୍ମରୁ ଏହା ନିଷ୍ପନ୍ନ ହେଉଛି ଏହା ଦର୍ଶାଇବାକୁ ପଡିବ । ଫର୍ମ ବସ୍ତୁକୁ କେବଳ ପ୍ରଭାବିତ କରୁନାହିଁ, ବରଂ ଏହାକୁ ଉତ୍ପନ୍ନ କରାଉଛି । ଦାର୍ଶନିକ ଭାବଧାରାରେ ଯାହାକୁ ପରମ ସତ୍ତା ଭାବରେ ନିଆଯାଏ ସେଥିରୁ ଅନ୍ୟ ସବୁକିଛି ଉତ୍ପନ୍ନ ହେବା ଦରକାର । ମୋଟଉପରେ ଯାହାକୁ ପରମ ସତ୍ତା ଭାବରେ ନିଆଯିବ ତାହା ଜଗତକୁ ବ୍ୟାଖ୍ୟା କରିବା ସହ ତାହା ନିଜର ମଧ୍ୟ ବ୍ୟାଖ୍ୟା କରୁଥିବା ଆବଶ୍ୟକ । ଆରିଷ୍ଟୋଟଲ ଫର୍ମ ଓ ବସ୍ତୁ କିମ୍ବା ସାମାନ୍ୟ ଓ ବିଶେଷ ମଧ୍ୟରୁ ଫର୍ମକୁ ମୌଳିକ ଭାବରେ ଗ୍ରହଣ କରୁଥିବା ଜଣାଯାଏ । ସେହି ସ୍ଥିତିରେ ଫର୍ମରୁ ବସ୍ତୁ କିପରି ନିଷ୍ପନ୍ନ ହେଉଛି ତାହା ଦର୍ଶାଇବା ଦରକାର । ଯଦି ବସ୍ତୁ ଫର୍ମରୁ ନିଷ୍ପନ୍ନ ହେଉନାହିଁ ତେବେ ଫର୍ମ ଓ ବସ୍ତୁକୁ ଦୁଇଟି ମୌଳିକ ସତ୍ତା ଭାବରେ ଗ୍ରହଣ କରାଯିବ । କହିବାକୁ ଗଲେ ଆରିଷ୍ଟୋଟଲ ଫର୍ମ ଓ ବସ୍ତୁକୁ ଦୁଇଟି ପୃଥକ୍ ସତ୍ତା ଭାବରେ ସ୍ୱୀକାର କରିଛନ୍ତି । ସେ ବସ୍ତୁକୁ ଫର୍ମରୁ ନିଷ୍ପନ୍ନ କରି ନାହାନ୍ତି କିମ୍ବା ଫର୍ମ ଓ ବସ୍ତୁ ମଧ୍ୟରେ କୌଣସି ଅନିବାର୍ଯ୍ୟ ସମ୍ବନ୍ଧ ପ୍ରତିଷ୍ଠା କରିନାହାନ୍ତି । ସେ ଏପରିକି ପ୍ରୟୋଜନ କାରଣ, ନିମିତ୍ତ କାରଣକୁ ମଧ୍ୟ ଆକାରଗତ କାରଣର ଅନ୍ତର୍ଗତ କରିଛନ୍ତି । ଏହି ଦୃଷ୍ଟିରୁ ସେ ଫର୍ମକୁ ତ ଏକ ମୌଳିକ ସତ୍ତା ଭାବରେ ସ୍ୱୀକାର କରିଛନ୍ତି ତାହା ସହିତ ଉପାଦାନକୁ ମଧ୍ୟ ଏକ ମୌଳିକ ସତ୍ତା ଭାବରେ ଧରି ନେଇଛନ୍ତି । ଏହାର ତାତ୍ପର୍ଯ୍ୟ ହେଉଛି ବସ୍ତୁ ଫର୍ମରୁ ନିଷ୍ପନ୍ନ ନୁହେଁ ଓ ଫର୍ମ ପରି ଏହା ମଧ୍ୟ ଏକ ମୌଳିକ ତତ୍ତ୍ୱ । ଅର୍ଥାତ୍ ଆରିଷ୍ଟୋଟଲଙ୍କ ସିଦ୍ଧାନ୍ତରେ ଫର୍ମ ଓ ବସ୍ତୁ ପରମ ସତ୍ତା ଭାବରେ ସ୍ୱୀକୃତ ହୋଇଛନ୍ତି । ସେ ଦୁଇଟି ପରମ ତତ୍ତ୍ୱକୁ ମୌଳିକ ଭାବରେ ଗ୍ରହଣ କରୁଥିବାରୁ ତାଙ୍କ ଦାର୍ଶନିକ ସ୍ଥିତି ଯେ ଦ୍ୱୈତବାଦର ଚିତ୍ର ଦେଉଛି ଏହା କୁହାଯାଇପାରେ । ଆରିଷ୍ଟୋଟଲ

ଏହା ମଧ୍ୟ ସ୍ୱୀକାର କରିଛନ୍ତି ଯେ ଫର୍ମ ଓ ବସ୍ତୁ ହେଉଛି ଦୁଇଟି ମୌଳିକ ଓ ପରମ ସତ୍ତା । ବସ୍ତୁ ହେଉଛି ଏକ ଦ୍ରବ୍ୟ (substance) ଯାହା ଏକ ପରମ ତତ୍ତ୍ୱ (absolute reality) । ତେବେ ସେ ବସ୍ତୁକୁ ପରମ ସତ୍ତା ଭାବରେ ଗ୍ରହଣ କରିବା ବେଳେ ପୁନଶ୍ଚ ଏହାକୁ କେବଳ ସଂଭାବ୍ୟତା (potentiality) ଭାବରେ ସ୍ୱୀକାର କରୁଛନ୍ତି । ଯାହାକୁ ପରମ ସତ୍ତା ଭାବରେ ଗ୍ରହଣ କରାଯିବ ତାହାର ଅସ୍ତିତ୍ୱ ଅନ୍ୟ କାହା ଉପରେ ନିର୍ଭର କରିବ ନାହିଁ ଓ ତାହା ନିଜର ବ୍ୟାଖ୍ୟାନ ଦେଉଥିବ । କିନ୍ତୁ ଆରିଷ୍ଟୋଟଲ ବସ୍ତୁକୁ ମୌଳିକ ସତ୍ତା ଭାବରେ ସ୍ୱୀକାର କରୁଛନ୍ତି ପୁନଶ୍ଚ ଏହାର ବାସ୍ତବତାକୁ ଗ୍ରହଣ ନକରି ଏହାକୁ କେବଳ ଏକ ସଂଭାବ୍ୟତା ଭାବରେ ନେଇଛନ୍ତି । ଗୋଟିଏ ପଟେ ସମଗ୍ର ଗ୍ରୀକ୍ ଦର୍ଶନ ପରଂପରାରେ ଯେଉଁ ଦ୍ୱୈତବାଦର ଚିତ୍ର ରହିଛି ତାହାର ସମାଧାନ ହୋଇପାରୁ ନାହିଁ । ଆରିଷ୍ଟୋଟଲ ବସ୍ତୁ ଓ ଫର୍ମକୁ ଦୁଇଟି ମୌଳିକ ସତ୍ତା ଭାବରେ ଗ୍ରହଣ କରି ଦ୍ୱୈତବାଦକୁ ସ୍ୱୀକାର କରିବା ସହ ପୁଣି ବସ୍ତୁକୁ କେବଳ ସଂଭାବ୍ୟତା ସ୍ତରକୁ ଆଣିବା ଫଳରେ ଅସଙ୍ଗତି ସୃଷ୍ଟି କରିଛନ୍ତି । ପ୍ଲେଟୋଙ୍କ ପାଖରେ ଇନ୍ଦ୍ରିୟାନୁଭୂତି ଜଗତ ଓ ଶୁଦ୍ଧସତ୍ତା ଜଗତ ଭିତରେ ଯେଉଁ ଦ୍ୱୈତବାଦ ରହିଛି, ଆରିଷ୍ଟୋଟଲଙ୍କ ପାଖରେ ମଧ୍ୟ ବସ୍ତୁ ଓ ଫର୍ମକୁ ବା ବିଶେଷ ଓ ସାମାନ୍ୟକୁ ନେଇ ସେହି ଦ୍ୱୈତବାଦ ରହିଛି । ଜଗତର ବ୍ୟାଖ୍ୟା ଦେବାରେ ଏହା ବିଫଳ ହେଉଛି କାରଣ ଜଗତ କୌଣସି ଏକକ ମୌଳିକ ତତ୍ତ୍ୱରୁ ନିଷ୍ପନ୍ନ ହୋଇ ନାହିଁ । ଯଦିବି ଆରିଷ୍ଟୋଟଲ ଫର୍ମକୁ ପ୍ରାଧାନ୍ୟ ଦେଇଛନ୍ତି ତା ସହିତ ବସ୍ତୁକୁ ମଧ୍ୟ ମୌଳିକ ନେଇଛନ୍ତି, ତେଣୁ ତାଙ୍କ ତତ୍ତ୍ୱମୀମାଂସା କ୍ଷେତ୍ରରେ ଦ୍ୱୈତବାଦ ରହିଛି । ପୁନଶ୍ଚ ବସ୍ତୁକୁ ପରମ ସତ୍ତା ଭାବରେ ଗ୍ରହଣ କରି ଏହାକୁ କେବଳ ସଂଭାବ୍ୟତା ଭିତରେ ସୀମିତ ରଖିଛନ୍ତି ଓ ଏହାର ବାସ୍ତବିକତା (actuality) କୁ ସ୍ୱୀକାର କରିନାହାନ୍ତି । ପରିଣାମତଃ ତାଙ୍କ ତତ୍ତ୍ୱମୀମାଂସା କ୍ଷେତ୍ରରେ ଏହି ବିରୋଧାଭାସର ଚିତ୍ର ରହିଛି ।

ଏଠାରେ ଏକ ଦ୍ୱିତୀୟ ପ୍ରଶ୍ନ ଆସୁଛି–ଯଦି ବି ଆରିଷ୍ଟୋଟଲଙ୍କ ତତ୍ତ୍ୱମୀମାଂସା କ୍ଷେତ୍ରରେ ଫର୍ମକୁ ମୌଳିକ ତତ୍ତ୍ୱ ଭାବରେ ଗ୍ରହଣ କରାଯାଇଛି ଏହି ତତ୍ତ୍ୱ ନିଜର ସ୍ୱ-ବ୍ୟାଖ୍ୟାନ (self-explanatory) କରିପାରୁଛି କି ? ପ୍ଲେଟୋ ଯେପରି ତାଙ୍କର ପରମ ଶୁଦ୍ଧସତ୍ତାକୁ ବିଚାରବୁଦ୍ଧି (reason) ଭାବରେ ଗ୍ରହଣ କରିଛନ୍ତି ଆରିଷ୍ଟୋଟଲ ମଧ୍ୟ ସେହିପରି ଫର୍ମକୁ ବିଚାର ବୁଦ୍ଧି ଭାବରେ ନେଇଛନ୍ତି । ଫର୍ମ କିପରି ନିଜକୁ ସ୍ୱସ୍ଥିତ ଓ ସ୍ୱସ୍ଥିରୀକୃତ ସିଦ୍ଧାନ୍ତ ଭାବରେ ପ୍ରତିଷ୍ଠା କରିପାରିବ ? ଫର୍ମକୁ ଏକ ସିଦ୍ଧାନ୍ତ ଭାବରେ କିପରି ନିଆଯିବ ? ଆରିଷ୍ଟୋଟଲ ଉଦ୍‌ଭିଦମାନଙ୍କର ଫର୍ମ ପୁଷ୍ଟି ଓ ପ୍ରାଣୀମାନଙ୍କର ଫର୍ମ ସମ୍ବେଦନ ବୋଲି ଗ୍ରହଣ କରିଛନ୍ତି । ଏହା କହିବା ସହ ପୁଷ୍ଟି ସମ୍ବେଦନକୁ ଉତ୍ତରିତ ହୋଇଥିବା ଦର୍ଶାଇଛନ୍ତି । ଏହା କହିବାଦ୍ୱାରା ଏହା ଏକ ତଥ୍ୟର ଚିତ୍ର ପ୍ରଦାନ କରେ । କିନ୍ତୁ ସମ୍ବେଦନକୁ ପୁଷ୍ଟିମୂଳଠାରୁ ନିଷ୍ପନ୍ନ କରିହେବ କି ? ଯାହା ପୁଷ୍ଟିମୂଳ ଆତ୍ମା ତାହା ସମ୍ବେଦନଶୀଳ ଆତ୍ମାକୁ ବିକଶିତ ହେବା ଏକ ତଥ୍ୟମୂଳକ ଘଟଣା ହୋଇପାରେ, କିନ୍ତୁ ସେମାନଙ୍କ ମଧ୍ୟରେ କୌଣସି ଆବଶ୍ୟକ ତାର୍କିକ ସମ୍ବନ୍ଧ ରହିଛି କି ?

ପୁଷ୍ଟିମୂଳଠାରୁ ସମ୍ବେଦନର କ୍ରମବିକାଶ ପଶ୍ଚାତରେ କିଛି ନିଶ୍ଚିତତା ଥିବା ଆରିଷ୍ଟୋଟଲ ଦର୍ଶାଇ ନାହାନ୍ତି ବୋଲି ତାଙ୍କର ସମାଲୋଚକମାନେ ଦର୍ଶାଇଛନ୍ତି । ଉଭିଦ ଜଗତରୁ ପ୍ରାଣୀ ଜଗତର ବିବର୍ତ୍ତନକୁ ଆରିଷ୍ଟୋଟଲ ବ୍ୟାଖ୍ୟା କରିପାରି ନଥିବା କୁହାଯାଉଛି । ତଥ୍ୟ ଓ ତର୍କ ମଧ୍ୟରେ ଯେ ପାର୍ଥକ୍ୟ ରହିଛି ଏହା କେହି ଅସ୍ୱୀକାର କରିପାରିବେ ନାହିଁ ।

ଆରିଷ୍ଟୋଟଲଙ୍କର ଏକ ମୌଳିକ ଅବଦାନ ହେଉଛି ସେ 'ବିବର୍ତ୍ତନର-ଦର୍ଶନ' ଦର୍ଶନ ଇତିହାସରେ ପ୍ରଥମେ ବ୍ୟକ୍ତ କରିଛନ୍ତି । ସଂଭବନ (Becoming) ଗ୍ରୀକ୍ ଦର୍ଶନର ଧାରାରେ ଏକ ପ୍ରଧାନ ସମସ୍ୟା ଭାବେ ଉଦ୍ରେକ ହୋଇଛି । ସତ୍‌ରୁ ସଂଭବନ କିପରି ସମ୍ଭବ ହେଉଛି ଏକ ସମସ୍ୟା ଭାବରେ ଆରିଷ୍ଟୋଟଲଙ୍କ ପୂର୍ବବର୍ତ୍ତୀ ଦାର୍ଶନିକମାନଙ୍କୁ ଗଭୀର ଭାବେ ପ୍ରଭାବିତ କରିଛି । ସଂଭବନକୁ ଏକ ଅର୍ଥଶୂନ୍ୟ ପରିବର୍ତ୍ତନ କେହି କହିଛନ୍ତି ତ କେହି ସବୁ କିଛି ସବୁ ମୁହୂର୍ତ୍ତରେ ପରିବର୍ତ୍ତିତ ହେଉଛି ବୋଲି ଅନ୍ୟ କେହି ଦର୍ଶାଇଛନ୍ତି । ଆରିଷ୍ଟୋଟଲ ସଂଭବନ, ପରିବର୍ତ୍ତନ ଓ ବିବର୍ତ୍ତନର ଏକ ଯୁକ୍ତିସଂଗତ ଭିତ୍ତି ପ୍ରଦାନ କରିଛନ୍ତି । ସକଳ ପରିବର୍ତ୍ତନ ବା ସଂଭବନ ଏକ ପ୍ରୟୋଜନ ବା ଲକ୍ଷ୍ୟ ଦିଗରେ ଅଗ୍ରଗତି କରୁଛି । ବିଶ୍ୱ-ପ୍ରକ୍ରିୟା ଏକ ଶୃଂଖଳିତ ଧାରାରେ ଏକ ସୁନିର୍ଦ୍ଦିଷ୍ଟ ଲକ୍ଷ୍ୟ ହାସଲ ପାଇଁ ଅଗ୍ରସର ହେଉଛି । ଆରିଷ୍ଟୋଟଲ ସମ୍ଭବତଃ ବିବର୍ତ୍ତନର ଏକ ଦର୍ଶନ ଅବତାରଣା କରିବାରେ ହେଉଛନ୍ତି ସବୁଠାରୁ ମୌଳିକ ଚିନ୍ତକ ।

ଆରିଷ୍ଟୋଟଲଙ୍କ ମତରେ ଜଗତ-ପ୍ରକ୍ରିୟା ଏକ ଲକ୍ଷ୍ୟ ଦିଗରେ ପରିଚାଳିତ ହେଉଛି । ସେହି ଲକ୍ଷ୍ୟ ହେଉଛି ବିଚାରବୁଦ୍ଧିର ଆତ୍ମ-ଉପଲବ୍ଧି (self-realization of reason) । ମନୁଷ୍ୟ ପାଖରେ ବିଚାରବୁଦ୍ଧିର ସମୀପବର୍ତ୍ତୀ ବା ଅବ୍ୟବହିତ ଅଭିବ୍ୟକ୍ତି ଘଟିଛି । କାରଣ ମନୁଷ୍ୟ ହେଉଛି ଏକ ବିଚାରଶୀଳ ପ୍ରାଣୀ । ସକଳ ପରିବର୍ତ୍ତନ ଏକ ଲକ୍ଷ୍ୟ ଦିଗରେ ଅଭିପ୍ରେତ ବୋଲି ଆରିଷ୍ଟୋଟଲ ଦର୍ଶାଇଛନ୍ତି । ଏହା ତାଙ୍କ ବିଚାର ପୃଷ୍ଠଭୂମିରେ ବେଶ୍ ସୁସଂହତ ମନେହୁଏ । ତେବେ ଆରିଷ୍ଟୋଟଲ ଏହା ମଧ୍ୟ ଦର୍ଶାଇଛନ୍ତି ଯେ ବିବର୍ତ୍ତନ ଧାରାରେ ବିବର୍ତ୍ତନ ସର୍ବଦା ଏକ ଲକ୍ଷ୍ୟ ଦିଗରେ ଅଗ୍ରଗତି କରୁଛି ଓ ପ୍ରତ୍ୟେକ ସ୍ତର ତାର ପୂର୍ବ ସ୍ତର ଅପେକ୍ଷା ଉଚ୍ଚତର ସ୍ଥିତିକୁ ଯାଉଛି । ଯେହେତୁ ବିବର୍ତ୍ତନର ଲକ୍ଷ୍ୟ ହେଉଛି ବିଚାରବୁଦ୍ଧିର ଉପଲବ୍ଧି, ତେଣୁ ପ୍ରତ୍ୟେକ ସ୍ତର ପୂର୍ବାପେକ୍ଷା ଅଧିକ ବିଚାରସଂଗତ ମନେହୁଏ । ସେହି ଦୃଷ୍ଟିରୁ ପ୍ରଥମେ ପୁଷ୍ଟି ଆସିଛି ଓ ତାପରେ ସମ୍ବେଦନଶୀଳତା ସମ୍ଭବ ହୋଇଛି । କାରଣ ପୁଷ୍ଟି ଓ ସମ୍ବେଦନ ଦେଇ ବିଚାରଶୀଳତା ମନୁଷ୍ୟ ପାଖରେ ବିକଶିତ ହୋଇଛି । ତେବେ ଏପରି କାହିଁକି କୁହାଯିବ ନାହିଁ ଯେ ସମ୍ବେଦନରୁ  ପୁଷ୍ଟି ମଧ୍ୟଦେଇ ବିଚାରଶୀଳତାର ବିକାଶ ହୋଇଛି ? ଏହି ପ୍ରକ୍ରିୟାକୁ କାହିଁକି ବିପରୀତ କ୍ରମରେ ବ୍ୟାଖ୍ୟା କରାଯାଇ ପାରିବ ନାହିଁ ? ଗୋଟିଏ ସ୍ଥିତିକୁ ଉଚ୍ଚତର ଓ ଅନ୍ୟ ଗୋଟିଏ ସ୍ଥିତିକୁ ନିମ୍ନତର କହିବା ପଶ୍ଚାତରେ କୌଣସି ତର୍କସଂଗତ ଯୁକ୍ତି ରହିଛି କି ? ପ୍ରକୃତିରେ ହେଉଥିବା ପରିବର୍ତ୍ତନକୁ ସମସ୍ତେ

ଦେଖୁଛନ୍ତି । କିନ୍ତୁ ବିକାଶ କ୍ଷେତ୍ରରେ ସର୍ବଦା ଏକ ଉଚ୍ଚତର ସ୍ଥିତିର ଅଭିବ୍ୟକ୍ତି ଦେଖିବାକୁ ମିଳେ । ଏକ ସ୍ଥିତି ଯେ ଉଚ୍ଚତର ଏହାର ଏକ ଯୁକ୍ତିସଂଗତ ବ୍ୟାଖ୍ୟାନ ନ ଦେଲେ ବିବର୍ତ୍ତନକୁ ଯଥାର୍ଥ ଭାବରେ ବ୍ୟାଖ୍ୟା କରିବା ସମ୍ଭବ ହେବ ନାହିଁ । ସମ୍ବେଦନ ପାଖରେ ଯେ ଅଧିକ ବିଚାରବୁଦ୍ଧିର ବିକାଶ ଘଟିଛି ଯାହା ପୁଷ୍ଟିମୂଳ ପାଖରେ ନାହିଁ ଏହା ଆରିଷ୍ଟୋଟଲ ନ ଦର୍ଶାଇଲେ ସମସ୍ୟାଟିକୁ ବ୍ୟାଖ୍ୟା କରିବା ସମ୍ଭବ ନୁହେଁ । ଆରିଷ୍ଟୋଟଲ ବିବର୍ତ୍ତନବାଦରେ ଯେଉଁ ଦର୍ଶନର ଅବତାରଣା କରିଛନ୍ତି ସେହି ପୃଷ୍ଠଭୂମିରେ ଏହି ସମସ୍ୟାର ସମାଧାନ ହୋଇ ନାହିଁ ବୋଲି ତାଙ୍କର ସମାଲୋଚକମାନେ ମତ ଦେଇଛନ୍ତି । ସେ ଏକ ଲକ୍ଷ୍ୟ ଦିଗରେ ବିବର୍ତ୍ତନ ବା ସଂଭବନ ପ୍ରକ୍ରିୟାର ଅଗ୍ରଗତି ବିଷୟ କହିଛନ୍ତି, କିନ୍ତୁ ଏହାର ଏକ ତର୍କସଂଗତ ଆଧାର ଦେବାରେ ସଫଳ ହୋଇ ନାହାନ୍ତି । ଏକ ଲକ୍ଷ୍ୟରେ ଉପନୀତ ହେବାକୁ ଯେଉଁ ଯେଉଁ କ୍ରମର ପରିକଳ୍ପନା କରାଯାଉଛି ସେହି କ୍ରମମାନଙ୍କ ମଧ୍ୟରେ କ'ଣ ଯୁକ୍ତିସଂଗତ ଆଧାର ରହିଛି ତାକୁ ବ୍ୟଖ୍ୟା ନକଲେ ବିଷୟଟି ଅସ୍ପଷ୍ଟ ବୋଧ ହେବ । ସକଳ ସଂଭବନ କାହିଁକି ଏକ ଯୁକ୍ତିସଂଗତ ଲକ୍ଷ୍ୟ ଦିଗରେ ବିକଶିତ ହେଉଛି ତାହାର କୌଣସି ସନ୍ତୋଷଜନକ ବ୍ୟାଖ୍ୟା ଆରିଷ୍ଟୋଟଲ ଦେଇ ନାହାନ୍ତି । ସେ ତାଙ୍କ ଧାରାରେ ବିବର୍ତ୍ତନର ଦର୍ଶନ ପରିକଳ୍ପନା କରିଛନ୍ତି ହେଲେ ସେଥିରେ ଏହିପରି କିଛି ଦୁର୍ବଳତା ଥିବା ସମାଲୋଚକମାନେ ଦର୍ଶାଇଛନ୍ତି । ଆରିଷ୍ଟୋଟଲ ପରମ ଫର୍ମକୁ ବିଚାରବୁଦ୍ଧି କହିଥିଲେ ମଧ୍ୟ ଏହା ଯେ ଜଗତକୁ ବ୍ୟାଖ୍ୟା କରିବା କ୍ଷେତ୍ରରେ ସଂପୂର୍ଣ୍ଣ ସଫଳ ହୋଇନାହିଁ ଏହା ମନେହୁଏ । କୌଣସି ପରମତତ୍ତ୍ୱ (ତାହା ପ୍ଲେଟୋଙ୍କର ଆଇଡିଆ ହେଉ ବା ଆରିଷ୍ଟୋଟଲଙ୍କର ଫର୍ମ ହେଉ) କୁ ଗ୍ରହଣ କଲେ ଏହା ଜଗତକୁ ବ୍ୟାଖ୍ୟା କରିବା ସହ ନିଜର ବ୍ୟାଖ୍ୟା ମଧ୍ୟ କରୁଥିବା ଆବଶ୍ୟକ । ଏହି ମାନଦଣ୍ଡରେ ପ୍ଲେଟୋ ଓ ଆରିଷ୍ଟୋଟଲଙ୍କ ତତ୍ତ୍ୱମୀମାଂସା କ୍ଷେତ୍ରରେ ଯେ ପ୍ରତ୍ୟୟଗତ ଦୁର୍ବଳତା ରହିଛି ଏହା ମନେହୁଏ ।

ପ୍ଲେଟୋ ଓ ଆରିଷ୍ଟୋଟଲ ଉଭୟ ନିଜସ୍ୱ ଧାରାରେ ଜଗତର ବ୍ୟାଖ୍ୟାନ କ୍ଷେତ୍ରରେ ତତ୍ତ୍ୱମୀମାଂସାମାନ ନିର୍ମାଣ କରିଛନ୍ତି । ଏକ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତ ଏକ ତଥ୍ୟମୂଳକ ବ୍ୟାଖ୍ୟାନ ନୁହେଁ, ସୁତରାଂ ଏହାର ବୈଜ୍ଞାନିକ ଆଧାର ନାହିଁ । ତତ୍ତ୍ୱମୀମାଂସା ଏକ ପ୍ରତ୍ୟୟାତ୍ମକ ଢ଼ାଂଚା (conceptual framework) ନିର୍ମାଣକରେ ଓ ସେହି ଢ଼ାଂଚା ଆଧାରରେ ଜଗତକୁ ବ୍ୟାଖ୍ୟା କରିବାକୁ ପ୍ରଯନ୍ନ କରେ । ବିଂଶଶତାବ୍ଦୀ ଆରମ୍ଭରେ ତତ୍ତ୍ୱମୀମାଂସା ବିରୁଦ୍ଧରେ ଯେଉଁ ସ୍ୱର ଉଠିଛି ତାହା ଦର୍ଶନର ବିଷୟକୁ ନୂଆ ଦିଗନ୍ତ ଦେବାରେ ଲାଗିଛି । ତେବେ ଆଧୁନିକ ମାନଦଣ୍ଡରେ ତୁଳନାତ୍ମକ ଭାବେ ପ୍ଲେଟୋ ସଂଶୋଧନାତ୍ମକ ତତ୍ତ୍ୱମୀମାଂସାକୁ ବ୍ୟକ୍ତ କରିଥିବା ବେଳେ ଆରିଷ୍ଟୋଟଲ ବର୍ଣ୍ଣନାତ୍ମକ ତତ୍ତ୍ୱମୀମାଂସାର ଚିତ୍ର ଦେବାକୁ ପ୍ରୟାସ କରିଛନ୍ତି । ପ୍ରତ୍ୟୟମାନଙ୍କର ସଂଶୋଧନ ନୁହେଁ ବରଂ ସେମାନଙ୍କର ମୌଳିକ ତାତ୍ପର୍ଯ୍ୟକୁ ବ୍ୟାଖ୍ୟା କରିବା ବର୍ଣ୍ଣନାତ୍ମକ ତତ୍ତ୍ୱମୀମାଂସାରେ କରାଯାଏ । ଆରିଷ୍ଟୋଟଲଙ୍କ ଦାର୍ଶନିକ ସିଦ୍ଧାନ୍ତ ମାନଙ୍କ କ୍ଷେତ୍ରରେ ଯାହା କିଛି ଦୁର୍ବଳତା ରହିଥିଲେ ମଧ୍ୟ ସେ ବର୍ଣ୍ଣନାତ୍ମକ ତତ୍ତ୍ୱମୀମାଂସାର ଅଧିକ ନିକଟବର୍ତ୍ତୀ

ହୋଇଛନ୍ତି । ଜଗତକୁ ବ୍ୟାଖ୍ୟା କରିବା ପାଇଁ ଆମେ ଯେଉଁ ପ୍ରତ୍ୟୟାତ୍ମକ ଢ଼ାଂଚା ପ୍ରୟୋଗ କରିଥାଏ ସେହି ଢ଼ାଂଚାରେ କ'ଣ ସବୁ ମୌଳିକ ପ୍ରଶ୍ନ ଆସେ ଓ କ'ଣ ସବୁ ସମ୍ଭାବନାକୁ ସ୍ୱୀକାର କରିବାକୁ ହୁଏ ତାହାର ସ୍ୱରୂପ ନିର୍ଣ୍ଣୟ କରିବାକୁ ଆରିଷ୍ଟୋଟଲ ପ୍ରୟାସ କରିଛନ୍ତି । ତାଙ୍କ ପ୍ରତ୍ୟୟାତ୍ମକ ବିଶ୍ଲେଷଣ ଦର୍ଶନଶାସ୍ତ୍ରରେ ନୂତନ ଦିଗନ୍ତମାନ ସୃଷ୍ଟି କରିଛି । ଏତଦ୍‌ବ୍ୟତୀତ ସେ ମଧ୍ୟ ଅର୍ଥପୂର୍ଣ୍ଣ ଭାବ ପ୍ରକାଶ କରିବା ପାଇଁ ଯେଉଁ ପ୍ରତ୍ୟୟାତ୍ମକ ପର୍ଯ୍ୟାୟ (conceptual category) ମାନଙ୍କର ଅବତାରଣା କରିଛନ୍ତି ତାହା ଦର୍ଶନ ପରିସରରେ ଏକ ମୌଳିକ ବିଚାର ମନେହୁଏ । ଚିନ୍ତାଧାରାର ମୌଳିକ ନିୟମର ଯେଉଁ ତିନିଟି ସୂତ୍ର ଦେଇଛନ୍ତି ତାହା ବି ଚିନ୍ତାରାଜ୍ୟକୁ ତାଙ୍କର ଯେ ଏକ ବଡ ଅବଦାନ ଏହା ନିଃସନ୍ଦେହରେ କୁହାଯାଇପାରେ ।

ଏତଦ୍‌ବ୍ୟତ ଦର୍ଶନ ପରିସର ବାହାରେ ଅନେକ କ୍ଷେତ୍ର ରହିଛି ଯେଉଁ କ୍ଷେତ୍ରକୁ ତାଙ୍କର ଯୁଗାନ୍ତକାରୀ ଅବଦାନ ରହିଛି । ଏହି ଦୃଷ୍ଟିରୁ ଚିନ୍ତାରାଜ୍ୟରେ ସେ ଯେ ଜଣେ ଅଗ୍ରଗାମୀ ବ୍ୟକ୍ତିତ୍ୱ ଏହା ସର୍ବଜନ ସ୍ୱୀକୃତ ।

## ନବମ ପରିଚ୍ଛେଦ

## ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ଦାର୍ଶନିକ ଧାରା

### ୯.୧ ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ଦର୍ଶନ

ଆରିଷ୍ଟୋଟଲଙ୍କ ମୃତ୍ୟୁ ପରେ ଗ୍ରୀସ୍‌ରେ ଦାର୍ଶନିକ ବିଚାର କ୍ଷେତ୍ରରେ ଅବକ୍ଷୟର ଯୁଗ ଆସିଲା । ଆରିଷ୍ଟୋଟଲଙ୍କ ପରେ ପାଶ୍ଚାତ୍ୟ ଚିନ୍ତାମାନସକୁ ପ୍ରଭାବିତ କରିବା ପରି ସେପରି କେହି ପ୍ରବୀଣ ଦାର୍ଶନିକଙ୍କର ଆବିର୍ଭାବ ହେଲା ନାହିଁ । ଦର୍ଶନ କ୍ଷେତ୍ରରେ ଯେଉଁ ଏକ ବୌଦ୍ଧିକ ପରଂପରା ଏଥେନ୍‌ସରେ ବା ଅନ୍ୟ କେତେକ ନଗର-ରାଜ୍ୟରେ ସୃଷ୍ଟି ହୋଇଥିଲା ସେଥିରେ ଧୀରେ ଧୀରେ କ୍ଷୟଶୀଳ ପରିବେଶ ସୃଷ୍ଟି ହେଲା । ଏଥେନ୍‌ସରେ ଯେଉଁ ବୌଦ୍ଧିକ ପରିବେଶ ରହିଥିଲା, ନାନା ସାମାଜିକ, ରାଜନୈତିକ ଓ ନୈତିକ କାରଣରୁ ତାହା ଆଉ ବିକଶିତ ହେଲା ନାହିଁ । ଦର୍ଶନ ରାଜ୍ୟରେ ଆରିଷ୍ଟୋଟଲ ଯେପରି ଗୌରବର ଅଧିକାରୀ ଥିଲେ, ଆଲେକ୍‌ଜାଣ୍ଡର ରାଜନୈତିକ ଦୃଶ୍ୟପଟରେ ବି ସେହିପରି ବହୁ ସଫଳତା ହାସଲ କରିଥିଲେ । ଆଲେକ୍‌ଜାଣ୍ଡର ଯେଉଁ ବିଶାଳ ଗ୍ରୀକ୍ ସାମ୍ରାଜ୍ୟର ଭିତ୍ତି ପକାଇଥିଲେ ତାଙ୍କ ଦେହାନ୍ତ (ଖ୍ରୀ.ପୂ.୩୨୩) ପରେ ନଗର-ରାଜ୍ୟମାନଙ୍କ ମଧ୍ୟରେ ସଂଘର୍ଷର ବାତାବରଣ ସୃଷ୍ଟି ହେଲା । ରାଜନୈତିକ ଓ ସାମାଜିକ ଅସ୍ଥିରତା କାରଣରୁ ସମାଜରେ ବୌଦ୍ଧିକ ବାତାବରଣର ଯେଉଁ ପରିବେଶ ସୃଷ୍ଟି ହୋଇଥିଲା ତାହା ଗଭୀର ଭାବରେ ବାଧାପ୍ରାପ୍ତ ହେଲା । ଗ୍ରୀସ୍‌ରେ ନଗର-ରାଜ୍ୟମାନଙ୍କରେ ଯେଉଁ ଗଣତାନ୍ତ୍ରିକ ବ୍ୟବସ୍ଥା ଓ ସ୍ୱାଧୀନ ଜ୍ଞାନଚର୍ଚ୍ଚାର ପରିବେଶ ଥିଲା ଗ୍ରୀକ୍ ସାମ୍ରାଜ୍ୟ ଆସିଲା ପରେ ସେହି ପରିବେଶରେ ଅବକ୍ଷୟ ଆସିଥିଲା । ତେବେ ଆଲେକ୍‌ଜାଣ୍ଡରଙ୍କ ପରେ ପରସ୍ପର ମଧ୍ୟରେ ଯେଉଁ ସଂଘର୍ଷମୟ ପରିସ୍ଥିତି ସୃଷ୍ଟି ହେଲା ତାହା ସମାଜର ବୌଦ୍ଧିକ ପରିବେଶକୁ ନଷ୍ଟ କରିବାକୁ ଲାଗିଲା । ଶେଷରେ ଗ୍ରୀସ୍ ମଧ୍ୟ ନିଜର ସ୍ୱତନ୍ତ୍ରତା ହରାଇ ରୋମ-ସାମ୍ରାଜ୍ୟର ଅଂଶ ପାଲଟିଗଲା ।

ଦାର୍ଶନିକ ଭାବଧାରାର ବିକାଶ ପାଇଁ ମୁକ୍ତ ଚିନ୍ତନର ଏକ ବାତାବରଣ ଆବଶ୍ୟକ । ଯେତେବେଳେ ସମାଜରେ କୌଣସି ମୁକ୍ତ ଭାବନାର ପରିବେଶ ରହେ ନାହିଁ, ତାହା ଦାର୍ଶନିକ ଚିନ୍ତାଧାରାର ବିକାଶ କ୍ଷେତ୍ରରେ ମଧ୍ୟ ପ୍ରତିବନ୍ଧକ ସୃଷ୍ଟି କରିଥାଏ । ଏଥେନ୍‌ସ ଏକ ନଗରରାଜ୍ୟ ରହିଥିବା ସମୟରେ ଦର୍ଶନର ଯେପରି ଏକ ସ୍ୱର୍ଣ୍ଣ ଯୁଗ ଉଦ୍‌ଭବ ହୋଇଥିଲା ଓ ଯେପରି ପ୍ରତିଭାବାନ ଦାର୍ଶନିକମାନଙ୍କର ଆବିର୍ଭାବ ଘଟିଥିଲା ସେହିପରି ଗୌରବୋଜ୍ଜ୍ୱଳ ବ୍ୟକ୍ତି ମଧ୍ୟ ଜନ୍ମ ହେଲେ ନାହିଁ । ଦର୍ଶନ ହେଉ ବା ଯେକୌଣସି ବୌଦ୍ଧିକ କ୍ଷେତ୍ର ହେଉ ତାହା ଲୋକମାନଙ୍କର ଚିନ୍ତନ ପ୍ରକ୍ରିୟାରେ ବିକଶିତ ହୋଇଥାଏ । ସମାଜର ରାଜନୈତିକ, ଧାର୍ମିକ, କଳାତ୍ମକ ଓ ସାଂସ୍କୃତିକ ପରିବେଶ ସହ ଏହା ଓତପ୍ରୋତ ଭାବେ ସଂଶ୍ଳିଷ୍ଟ ହେବା ଦେଖାଯାଏ । ଲୋକମାନଙ୍କର ସୃଜନଶୀଳତା ବିଭିନ୍ନ କ୍ଷେତ୍ର ମଧ୍ୟ

ଦେଇ ପ୍ରକାଶିତ ହୋଇଥାଏ । କଳା, ସାହିତ୍ୟ, ବିଜ୍ଞାନ, ଦର୍ଶନ ଇତ୍ୟାଦି ଯେତେ ଯେତେ ସୃଜନଶୀଳ କ୍ଷେତ୍ର ରହିଛି ସେସବୁର ବିକାଶ ପାଇଁ ସାମାଜିକ ଓ ରାଜନୈତିକ ପରିବେଶର ମଧ୍ୟ ପ୍ରଭାବ ରହିଛି । ତେବେ ଆଲେକ୍‌ଜାଣ୍ଡରଙ୍କ ଆବିର୍ଭାବ ପରଠାରୁ ଗ୍ରୀକ୍ ଦର୍ଶନର ଅବକ୍ଷୟ ସୃଷ୍ଟି ହୋଇଥିବା ସୁବିଦିତ ଅଟେ । ସକ୍ରେଟିସ୍, ପ୍ଲେଟୋ ଓ ଆରିଷ୍ଟୋଟଲଙ୍କ ପରି ପ୍ରତିଭାବାନ ବ୍ୟକ୍ତିମାନେ ଗ୍ରୀସ୍‌ର ଏକ ନଗର ରାଜ୍ୟରୁ ସୃଷ୍ଟି ହୋଇଥିଲେ । ସେମାନେ ବିଶ୍ୱାସ ମଧ୍ୟ କରୁଥିଲେ ଯେ କେବଳ ଏକ ଉନ୍ନତ ସାମାଜିକ ପରିବେଶ ବା ନଗରରାଜ୍ୟ ଭିତରେ ଜୀବନର ଉତ୍କର୍ଷ ବା ଲକ୍ଷ୍ୟ ସାଧିତ ହୋଇପାରିବ । ବ୍ୟକ୍ତିର ସାମର୍ଥ୍ୟର ବିକାଶ ଓ ସୁନ୍ଦର ତଥା ସୁଖପ୍ରଦ ଜୀବନ ପାଇଁ ଏକ ଉତ୍ତମ ପରିବେଶ ଅବଶ୍ୟମ୍ଭାବୀ ମନେହୁଏ । ଯେତେବେଳେ ଏକ ନଗରରାଜ୍ୟର ମୁକ୍ତ ପରିବେଶ ଏକ ବିଶାଳ ସାମ୍ରାଜ୍ୟରେ ବିଲୀନ ହୋଇଯାଏ, ସେତେବେଳେ ନାଗରିକମାନଙ୍କର ସାମାଜିକ ଚେତନା ବ୍ୟକ୍ତିକୈନ୍ଦ୍ରିକ ହୋଇଥାଏ । ଏକ ବୃହତ୍ତର ରାଜନୈତିକ ସ୍ଥିତି ଭିତରେ ବ୍ୟକ୍ତିର ସାମାଜିକ ଚେତନା ବ୍ୟକ୍ତିକୈନ୍ଦ୍ରିକ ହୋଇପଡେ । ନଗରରାଜ୍ୟରେ ଯେଉଁ ପାରସ୍ପରିକତା ଓ ସାମାଜିକ ସଂପୃକ୍ତି ରହିଥିଲା, ତାହା ଏକ ବିଶାଳ ସାମ୍ରାଜ୍ୟ ଭିତରେ ରହିବା ସମ୍ଭବପର ନୁହେଁ । ଆରିଷ୍ଟୋଟଲଙ୍କ ଦେହାନ୍ତ ସହ ନଗରରାଜ୍ୟମାନଙ୍କର ପତନ ଗ୍ରୀକ୍ ଦର୍ଶନ କ୍ଷେତ୍ରରେ ଏକ ମହାନ୍ ପରଂପରାର ବିଲୋପ ଘଟାଇଲା । ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ସମୟରେ ଯେଉଁ ଦାର୍ଶନିକ ଚିନ୍ତା ପ୍ରକାଶ ପାଇଲା ସେଥିରେ ବିଷୟନିଷ୍ଠତାବାଦର ପ୍ରତିଫଳନ ସ୍ପଷ୍ଟ ରୂପ ନେଲା । ଜ୍ଞାନବିଜ୍ଞାନ, ତତ୍ତ୍ୱମୀମାଂସା କ୍ଷେତ୍ରରେ ଯେଉଁ ସାର୍ବଜନୀନ ଜୀବନଦୃଷ୍ଟିର ପ୍ରତିଫଳନ ଆରିଷ୍ଟୋଟଲଙ୍କ ପର୍ଯ୍ୟନ୍ତ ହେଉଥିଲା, ତାହା ତାଙ୍କ ପରେ ବିଷୟନିଷ୍ଠତାବାଦ (subjectivism) ରେ ରୂପାନ୍ତରିତ ହେଲା । ଜ୍ଞାନବିଜ୍ଞାନ ଓ ଦାର୍ଶନିକ ଅନୁଶୀଳନ କ୍ଷେତ୍ରରେ ଯାହା ଆବଶ୍ୟକ ତାହା ହେଲା ବୌଦ୍ଧିକ ଅନୁସନ୍ଧିତ୍ସା । ଜ୍ଞାନଚର୍ଚ୍ଚା ସ୍ୱରୂପରେ ସାଧ, ଜ୍ଞାନଚର୍ଚ୍ଚା ପାଇଁ ମାନବିକ ଅନୁସନ୍ଧିତ୍ସା ନେଇ କୌତୂହଳତା ରହିବା ଆବଶ୍ୟକ । ଏହାର ଅଭାବରେ ଜ୍ଞାନଚର୍ଚ୍ଚା ପାଇଁ ପ୍ରେରଣା ସୃଷ୍ଟି ହୋଇପାରେ ନାହିଁ । ବିଶ୍ୱ ବ୍ୟବସ୍ଥାର ବ୍ୟାଖ୍ୟା କରିବା ପାଇଁ ସେପରି କିଛି ତାତ୍ତ୍ୱିକ ମତବାଦର ବିକାଶ ହେଲା ନାହିଁ । ପୂର୍ବରୁ ଯେଉଁ ସବୁ ତାତ୍ତ୍ୱିକ ସିଦ୍ଧାନ୍ତମାନ ବିକଶିତ ହୋଇଥିଲା ତାହା ଉପରେ ମାତ୍ର ବ୍ୟାଖ୍ୟା ହେଲା । କିଛି ନୂତନ ସିଦ୍ଧାନ୍ତର ଅବତାରଣା ସମ୍ଭବପର ହୋଇପାରିଲା ନାହିଁ । ବୌଦ୍ଧିକ କୌତୂହଳତା, ବୈଜ୍ଞାନିକ ଅନୁସନ୍ଧିତ୍ସା ଓ ଦାର୍ଶନିକ ଅନୁଶୀଳନରେ ଭଟ୍ଟା ଆସିଲା । ଦର୍ଶନ ହେଉ ବା ବିଜ୍ଞାନ ହେଉ ସତ୍ୟର ଅନୁସନ୍ଧାନ ପାଇଁ ଗଭୀର ପ୍ରୟାସ ନ ହେଲେ ସେ କ୍ଷେତ୍ରରେ ନୂତନ ବିଚାରର ବିକାଶ ହୋଇପାରେ ନାହିଁ । ଆରିଷ୍ଟୋଟଲଙ୍କ ପରେ ସେହି ପ୍ରୟାସ ଆଗକୁ ଯାଇପାରିଲା ନାହିଁ । ପରିଣାମତଃ ଜ୍ଞାନଚର୍ଚ୍ଚାର ଅଭିଳାଷ ଅତ୍ୟନ୍ତ ସଙ୍କୁଚିତ ହୋଇଗଲା । ବରଂ ଜୀବନ ଯାତ୍ରାରେ ରହିଥିବା ପ୍ରତିବନ୍ଧକକୁ କିପରି ଦୂର କରାଯାଇ ପାରିବ ସେ ନେଇ ଆଗ୍ରହ ପ୍ରକାଶ ପାଇଲା । ବୌଦ୍ଧିକ ଚର୍ଚ୍ଚା ବ୍ୟକ୍ତିକୈନ୍ଦ୍ରିକ ଓ ମୁଖ୍ୟତଃ ମାନବକୈନ୍ଦ୍ରିକ ହେଲା । ବ୍ୟକ୍ତିର ବିକାଶ, ତା ଆତ୍ମାର ମୁକ୍ତି, ଭାଗ୍ୟ, ପ୍ରତିକୂଳତାକୁ ଅତିକ୍ରମ କରିବା ନେଇ ଉପାୟ ଇତ୍ୟାଦି ପ୍ରସଙ୍ଗ ଦାର୍ଶନିକ ଭାବଜଗତକୁ କବଳିତ କଲା । ସମାଜର ଧାର୍ମିକ ଚେତନାରୁ କୁସଂସ୍କାର ଓ କାଳିମାକୁ ଦାର୍ଶନିକ ଚିନ୍ତନ ଦ୍ୱାରା ପରିହାର କରାଯାଏ, କିନ୍ତୁ ଦର୍ଶନ କ୍ଷେତ୍ରରେ ଅବକ୍ଷୟ

ଯୋଗୁ ଧର୍ମ ଓ ଦର୍ଶନ ଭିତରେ କୌଣସି ବିରୋଧାଭାସ ଆସିଲା ନାହିଁ । ଦର୍ଶନ ବାସ୍ତବ ଜୀବନର ଘଟଣା ଉପରେ ସୀମିତ ହେଲା । କେବଳ କେତେକ ନୈତିକ ପ୍ରସଙ୍ଗ ହିଁ ଦାର୍ଶନିକ ଚିନ୍ତନର ମୁଖ୍ୟ ଆଧାର ହେଲା । ସମାଜର ନୈତିକ ପ୍ରଶ୍ନମାନ ମୁଖ୍ୟ ଚିନ୍ତନର ବିଷୟ ହେଲା ଓ ଅନ୍ୟ ସକଳ ବୌଦ୍ଧିକ ଅନୁଶୀଳନ ତାକୁ ମୁଖ୍ୟ ପ୍ରସଙ୍ଗ କଲେ । ବିଶାଳ ପ୍ରକୃତି, ନଭମଣ୍ଡଳ, ପ୍ରାକୃତିକ ରହସ୍ୟ ଇତ୍ୟାଦି ବିଷୟରେ ବା ଜଗତର ତାତ୍ତ୍ୱିକ ଅବବୋଧ ନେଇ ଆଉ ଚର୍ଚ୍ଚା ହେଲା ନାହିଁ, ବରଂ ସବୁ ଆଲୋଚନା କେବଳ ସମାଜର ନୈତିକ ସମସ୍ୟା ଉପରେ କେନ୍ଦ୍ରିଭୂତ ହେବାକୁ ଲାଗିଲା । ବାହ୍ୟ ଜଗତର ସ୍ଥିତି, ସ୍ୱରୂପ, ମୂଳସତ୍ତା, ବିଶ୍ୱର ତାତ୍ତ୍ୱିକ ବ୍ୟାଖ୍ୟାନ ଯାହା ଦର୍ଶନ ପରିସରରେ ହେଉଥିଲା ତାହା ଆଉ ଆଗକୁ ଗଲା ନାହିଁ, ବରଂ ଜୀବନର ଘନଘଟା, ରହସ୍ୟ, ନୈତିକ ସମସ୍ୟା ହିଁ ବୌଦ୍ଧିକ ଚର୍ଚ୍ଚା କ୍ଷେତ୍ରରେ ମୁଖ୍ୟ ପ୍ରସଙ୍ଗ ହେଲା ।

ଜ୍ଞାନର ବସ୍ତୁନିଷ୍ଠତା ପରିବର୍ତ୍ତେ ଯେଉଁ ବ୍ୟକ୍ତିନିଷ୍ଠତାବାଦର ବା ବିଷୟିନିଷ୍ଠବାଦର ଭାବଧାରାର ବିକାଶ ହେଲା ତାହା ଭିତରେ ସେପରି ମୌଳିକତା ରହିଲା ନାହିଁ । ବୃହତ୍ତର ବିଶ୍ୱ ବା ମାନବ ସମାଜର ସମସ୍ୟାକୁ ବ୍ୟାଖ୍ୟା କରିବା ପରିବର୍ତ୍ତେ ବରଂ ଜୀବନର ସାଧାରଣ ଘନଘଟା ଓ ବ୍ୟକ୍ତିଗତ ସମସ୍ୟାର ସମାଧାନ ନେଇ ଦର୍ଶନ ପରିସରରେ କିଛି ଚର୍ଚ୍ଚା ହେଲା । ଏହି ସ୍ଥିତିରେ ଦର୍ଶନ କ୍ଷେତ୍ରରେ କେବଳ କେତେକ ନୈତିକ ପ୍ରସଙ୍ଗ ବିଚାର ସ୍ତରକୁ ଆସିଲା ଓ ଦର୍ଶନର ପରିସର ସଙ୍କୁଚିତ ଓ ବିଷୟିନିଷ୍ଠ ହୋଇଗଲା । ବ୍ୟକ୍ତି ଯଦି ଆତ୍ମକୈନ୍ଦ୍ରିକ ହୁଏ ତେବେ ସେ ବୃହତ୍ତର ବିଶ୍ୱ ବା ମାନବିକ ସମସ୍ୟା ପ୍ରସଙ୍ଗରେ ଆଗ୍ରହୀ ହେବ ନାହିଁ । ଏକ ଆତ୍ମକୈନ୍ଦ୍ରିକ ଦୃଷ୍ଟିଭଙ୍ଗୀ କ୍ଷେତ୍ରରେ ସାର୍ବଜନୀନ ଜୀବନବୋଧର ପ୍ରତିଫଳନ ହେବା ସମ୍ଭବ ନୁହେଁ । ଆତ୍ମକୈନ୍ଦ୍ରିକତା ଭିତରେ ଜଗତର ସବୁକିଛି କିପରି ବ୍ୟକ୍ତିର ସ୍ୱାର୍ଥ ପାଇଁ ବିନିଯୋଗ ହୋଇପାରିବ ଏହି ମାନସିକତାର ବିକାଶ ହୁଏ । ସକ୍ରେଟିସ୍, ପ୍ଲେଟୋ ଓ ଆରିଷ୍ଟୋଟଲଙ୍କ ପରି ଦାର୍ଶନିକ ଗଣ ଯେପରି ସାର୍ବଜନୀନ ଓ ମୌଳିକ ପ୍ରସଙ୍ଗ ତଥା ତାତ୍ତ୍ୱିକ ପ୍ରଶ୍ନମାନଙ୍କୁ ନେଇ ଗମ୍ଭୀର ଚର୍ଚ୍ଚା କରୁଥିଲେ ତାହା ବ୍ୟକ୍ତିନିଷ୍ଠତାବାଦ ଭିତରେ ଆଲୋଚନାର ପରିସରକୁ ଆସିଲା ନାହିଁ । ସେମାନଙ୍କ ଚିନ୍ତାଧାରା କ୍ଷେତ୍ରରେ ଯେଉଁପରି ସାର୍ବଜନୀନ, ତାତ୍ତ୍ୱିକ, ତର୍କସଂଗତ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଭିବ୍ୟକ୍ତ ହେଉଥିଲା ତାହା ଆଉ ସମ୍ଭବ ହେଲା ନାହିଁ ।

ତେବେ ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ପର୍ଯ୍ୟାୟରେ ଯେଉଁ କେତେକ ବୈଚାରିକ ଭାବଧାରାର ଅଭ୍ୟୁଦୟ ଘଟିଥିଲା ସେ ମଧ୍ୟରେ ଷ୍ଟୋଇକବାଦ, ଏପିକ୍ୟୁରୀୟ ସୁଖବାଦ ଓ ସଂଶୟବାଦ ମୁଖ୍ୟ ଦାର୍ଶନିକ ସିଦ୍ଧାନ୍ତ ଥିଲା । ବିଭିନ୍ନ ତାତ୍ତ୍ୱିକ ଓ କାଳ୍ପନିକ ସିଦ୍ଧାନ୍ତମାନ ଚିନ୍ତାରାଜ୍ୟରେ ଆକର୍ଷଣୀୟ ହେଲା ନାହିଁ । ବରଂ ଏକ ନୈତିକ ଦୃଷ୍ଟିଭଙ୍ଗୀର ବିକାଶ ମୁଖ୍ୟ ପ୍ରସଙ୍ଗ ହେଲା । ଜ୍ଞାନମୀମାଂସା, ତତ୍ତ୍ୱମୀମାଂସା ଓ ଗମ୍ଭୀର ଦାର୍ଶନିକ ପ୍ରଶ୍ନମାନଙ୍କର କେବଳ ବୌଦ୍ଧିକ ମୂଲ୍ୟ ରହିଲା, ତେବେ ସେସବୁ ନୈତିକ ପ୍ରଶ୍ନମାନଙ୍କ ପାଖରେ ମହତ୍ତ୍ୱ ନେଲେ ନାହିଁ । ମାନବିକ ସମସ୍ୟା ଓ ସାମାଜିକ ଉତ୍କର୍ଷ ସାଧନ ପାଇଁ ନୈତିକ ଦୃଷ୍ଟିଭଙ୍ଗୀ ହିଁ ଚିନ୍ତାଧାରା କ୍ଷେତ୍ରରେ ପ୍ରମୁଖ ସ୍ଥାନ ଗ୍ରହଣ କଲେ । ଅତୀତରେ ବିକଶିତ ହୋଇଥିବା ତାତ୍ତ୍ୱିକ ସିଦ୍ଧାନ୍ତମାନଙ୍କୁ କେହି କେହି ଗ୍ରହଣ କଲେ ବା ନୈତିକ ଆଲୋଚନା

ପାଇଁ ଆଧାର କଲେ । କିନ୍ତୁ ତତ୍ତ୍ୱମୀମାଂସା କ୍ଷେତ୍ରରେ ଆଉ ନୂଆ ସିଦ୍ଧାନ୍ତ ନିର୍ମାଣ କଲେ ନାହିଁ । ଆରିଷ୍ଟୋଟଲଙ୍କ ପର୍ଯ୍ୟନ୍ତ ଯେଉଁ ସବୁ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତମାନ ବିକଶିତ ହୋଇଥିଲା ସେହିପରି କେତେକ ମତମାନଙ୍କ ପ୍ରତି ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ଦାର୍ଶନିକ ମାନେ ହୁଏତ କିଛି ସମର୍ଥନ ଦେଲେ କିନ୍ତୁ ସେମାନଙ୍କ ବିଚାର କ୍ଷେତ୍ରରେ ନୈତିକ ପ୍ରସଙ୍ଗ ହିଁ ମୁଖ୍ୟ ପ୍ରଶ୍ନ ହେଲା ।

ରାଜନୈତିକ ପୃଷ୍ଠଭୂମିରୁ ଦେଖିଲେ ଗ୍ରୀସ୍ ରୋମ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ଗ୍ରୀସ୍‌ରେ ଦର୍ଶନ କ୍ଷେତ୍ରରେ ତତ୍ତ୍ୱମୀମାଂସା, କାଳ୍ପନିକ ସିଦ୍ଧାନ୍ତ ଓ ପରିକଳ୍ପନୀୟ ବିଚାରମାନ ଯେପରି ପ୍ରାଧାନ୍ୟ ନେଇଥିଲା, ସେସବୁ ରୋମାନ ସଭ୍ୟତାରେ ରୂପନେଇ ନଥିଲା । ରୋମାନମାନେ ଅଧିକ ବାସ୍ତବବାଦୀ ଥିଲେ ଓ ନାଗରିକମାନଙ୍କର ଚରିତ୍ର ନିର୍ମାଣକୁ ପ୍ରାଧାନ୍ୟ ଦେଇଥିଲେ । ପରିଣାମ ସ୍ୱରୂପ ନୈତିକତା ହିଁ ଦାର୍ଶନିକ ବିଚାର କ୍ଷେତ୍ରରେ ପ୍ରାଧାନ୍ୟ ନେଇଥିଲା । ଲୋକମାନଙ୍କ ଭିତରେ ପ୍ରଚଳିତ ଥିବା ଧାର୍ମିକ ଆବେଗ ଓ ଅଭୀପ୍ସାକୁ ଏକ ନୈତିକ ଭିତ୍ତି ଦେବା ଦାର୍ଶନିକ ଚର୍ଚ୍ଚାର ପ୍ରସଙ୍ଗ ହେଲା । ଏତଦ୍‌ବ୍ୟତୀତ ନିଜ ଜୀବନଧାରାକୁ ଉତ୍ତମ ରୂପେ ପରିଚାଳନା କରି ଏକ ସଫଳ ନାଗରିକ ଭାବରେ ସାମାଜିକ ଜୀବନ ପ୍ରବାହକୁ ଉନ୍ନତ କରିବା ରୋମାନ ସଭ୍ୟତାର ଆଦର୍ଶ ଥିଲା । ଲୋକମାନଙ୍କ ମଧ୍ୟରେ ନୈତିକ ମୂଲ୍ୟବୋଧର ପ୍ରସାର ଦାର୍ଶନିକ ଚିନ୍ତାର ମୁଖ୍ୟ ଆଭିମୁଖ୍ୟ ପାଲଟିଥିଲା । ସମାଜର ଶିକ୍ଷା ବ୍ୟବସ୍ଥାକୁ କିପରି ଉନ୍ନତ କରାଯିବ ଓ ପ୍ରତ୍ୟେକ ବିଦ୍ୟାର୍ଥୀ ଏକ ନୈତିକ ଜୀବନବୋଧ ପ୍ରତି ସମର୍ପିତ ରହିବ ତାହା ରୋମାନ ସଂସ୍କୃତିର ଆଦର୍ଶ ଥିଲା । ଧର୍ମ, ନୈତିକତା ଓ ଦର୍ଶନ ରୋମାନମାନଙ୍କ ପାଇଁ ଏକ ହିଁ ପ୍ରସଙ୍ଗ ଥିଲା । ଏକ ନୀତିପୂର୍ଣ୍ଣ ଜୀବନ ନିର୍ବାହ ହିଁ ଏକ ପରିପୂର୍ଣ୍ଣ ଜୀବନର ମାନକ ବୋଲି ସମାଜରେ ଗୃହୀତ ହେଉଥିଲା । ସକଳ ଜ୍ଞାନ, ବିଜ୍ଞାନ, ଦର୍ଶନ ଓ ବୌଦ୍ଧିକତା ନୈତିକ ଉତ୍କର୍ଷ ପାଇଁ ଅଭିପ୍ରେତ ଥିଲା ।

ଆରିଷ୍ଟୋଟଲଙ୍କ ପର୍ଯ୍ୟନ୍ତ ସକଳ ବୌଦ୍ଧିକ ଅନୁଶୀଳନ ଦାର୍ଶନିକ ଜିଜ୍ଞାସା କ୍ଷେତ୍ରରେ ସଂଯୁକ୍ତ ହୋଇ ରହିଥିଲା । ଜ୍ଞାନଚର୍ଚ୍ଚା ବା ବୌଦ୍ଧିକ ଜିଜ୍ଞାସା କ୍ଷେତ୍ରରେ ସେପରି ବିଶେଷତା କିମ୍ୱା ବିଭାଜନ ହୋଇନଥିଲା । ଆରିଷ୍ଟୋଟଲଙ୍କ ପରେ ଦର୍ଶନ ପରିସରରୁ ବିଜ୍ଞାନମାନ କ୍ରମେ ମୁକ୍ତ ହେବାକୁ ଲାଗିଲେ । ବିଶେଷକରି ଆଲେକ୍‌ଜାଣ୍ଡ୍ରିଆ ସହର ଜ୍ଞାନ ବିଜ୍ଞାନର କେନ୍ଦ୍ର ସ୍ଥଳ ହେବାକୁ ଲାଗିଲା । ପୁନଶ୍ଚ ଜ୍ଞାନ କ୍ଷେତ୍ରରେ ବିଭିନ୍ନ ବିଭାଗମାନ ଧୀରେ ଧୀରେ ସ୍ୱତନ୍ତ୍ର ଭାବରେ ବିକଶିତ ହେବାକୁ ଲାଗିଲେ ଓ ଅନ୍ୟ ଏକ ବୌଦ୍ଧିକ ଜାଗରଣ ଏହା ମାଧ୍ୟମରେ ମୁଣ୍ଡ ଟେକିଲା । ଇଉକ୍ଲିଡଙ୍କର ଜ୍ୟାମିତି ବା ରେଖା-ଗଣିତ, ଟଲେମିଙ୍କର ଜ୍ୟୋତିର୍ବିଜ୍ଞାନ ଓ ଆରିଷ୍ଟୋଥେନିସଙ୍କ ଭୂଗୋଳ ବିଦ୍ୟା ନୂତନ ଭାବଧାରା ମାନଙ୍କର ଅଭ୍ୟୁଦୟ କ୍ଷେତ୍ରରେ ପଥପ୍ରଦର୍ଶକ ହେଲେ । ଦର୍ଶନଠାରୁ ବିଜ୍ଞାନ କ୍ରମେ କ୍ରମେ ଭିନ୍ନ ହେବାର ପରିଣାମରୁ କେତେକ ବିଷୟରେ ଜ୍ଞାନର ଦିଗନ୍ତ ବିସ୍ତାରିତ ହେବାକୁ ଲାଗିଲା । ତାତ୍ତ୍ୱିକ ଅନୁଶୀଳନ ଓ ବିଶୁଦ୍ଧ ପରିକଳ୍ପନା ପରିବର୍ତ୍ତେ କିଛି କିଛି ବୈଜ୍ଞାନିକ ଓ ଯାନ୍ତ୍ରିକ ଆବିଷ୍କାର ଜୀବନଧାରାରେ ପରିବର୍ତ୍ତନର ସୂତ୍ରପାତ କଲା । ତାତ୍ତ୍ୱିକ ପରିକଳ୍ପନା ପରିବର୍ତ୍ତେ ନୈତିକ୍ ମୂଲ୍ୟଚୟ ପ୍ରତି ଅଧିକ ଆଗ୍ରହ ବୌଦ୍ଧିକ ବିଚାର ସ୍ତରରେ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ହେଲା । ଦାର୍ଶନିକ ମୌଳିକତା ଆରିଷ୍ଟୋଟଲଙ୍କ ପରେ ବିଶେଷ ବିକଶିତ ହୋଇନଥିଲା, ପରିଣାମତଃ

ଯେଉଁ ସବୁ ତାତ୍ତ୍ୱିକ ଭାବଧାରା ବିଚାର ସ୍ତରକୁ ଆସିଥିଲା ସେସବୁ ସହ ସମନ୍ୱୟ ରକ୍ଷାକରି ନୈତିକ ପ୍ରସଙ୍ଗମାନଙ୍କୁ ପ୍ରାଧାନ୍ୟ ଦିଆଗଲା । ନୈତିକ ସିଦ୍ଧାନ୍ତମାନଙ୍କର ତାତ୍ତ୍ୱିକ ଭିତ୍ତି ପାଇଁ ସ୍ଥଳବିଶେଷରେ କେତେକ ତତ୍ତ୍ୱମୀମାଂସୀୟ ବିଚାରକୁ ଗ୍ରହଣ କରାଗଲା । ଏହାସହିତ ଆରିଷ୍ଟୋଟଲଙ୍କ ପୂର୍ବରୁ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତ ନିର୍ମାଣ କ୍ଷେତ୍ରରେ ଯେପରି କିଛି ପରସ୍ପରବିରୋଧୀ ଭାବନା ବିକଶିତ ହୋଇଥିଲା, ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ସମୟରେ ନୈତିକ ପ୍ରସଙ୍ଗ କ୍ଷେତ୍ରରେ ସେହିପରି କିଛି ବିରୋଧାଭାସ ମଧ୍ୟ ବ୍ୟକ୍ତ ହେଲା । ତେବେ ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ସମୟରେ ଦାର୍ଶନିକ ଚର୍ଚ୍ଚା ଏକଦର୍ଶୀ, ସଙ୍କୁଚିତ ଓ ନୈତିକ ପ୍ରସଙ୍ଗ ଭିତରେ ସୀମିତ ରହିଲା । ଯେ ନିଜ ଭିତରେ ସୀମିତ ରହିବ ସେ ଏକ ବୃହତ୍ତର ସମାଜ ବିଷୟରେ ବା ବିଶ୍ୱ ସଂପର୍କରେ ସଚେତନ ରହବାକୁ ଚାହିଁବ ନାହିଁ । ସେ କେବଳ ଆତ୍ମକୈନ୍ଦ୍ରିକ ହେବ । ତା ପାଇଁ ସକଳ ବୌଦ୍ଧିକତା ଓ ଜ୍ଞାନଚର୍ଚ୍ଚା ନିଜର ଉନ୍ନତି ପାଇଁ ସୀମାବଦ୍ଧ ହୋଇରହିବ । ଯେଉଁଠି ବ୍ୟକ୍ତିର ଲକ୍ଷ୍ୟ ଆତ୍ମକୈନ୍ଦ୍ରିକ ହୋଇ ଉଠିବ ଓ ନିଜର ସଙ୍କୋଚନ ନିଜ ଭିତରେ ସୀମିତ ହୋଇଯିବ ସେ କ୍ଷେତ୍ରରେ ଦାର୍ଶନିକ ଚେତନା ଏକ ବ୍ୟାପକ ବା ସାର୍ବଜନୀନ ଭିତ୍ତି ନେଇପାରିବ ନାହିଁ ।

ଦାର୍ଶନିକ ଅନୁଶୀଳନ କ୍ଷେତ୍ରରେ ବ୍ୟାପକତା ଓ ସାର୍ବଜନୀନତା ନ ରହିଲେ ଏହା ଚରମ ବୈରାଗ୍ୟବାଦର ରୂପ ନେବ ବୋଲି କେତେକ ମତ ଦେଇଥାନ୍ତି । ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ସମୟରେ ଷ୍ଟୋଇକବାଦ, ଏପିକୁରୀୟବାଦ ଓ ସଂଶୟବାଦ ତିନୋଟି ଦାର୍ଶନିକ ମତବାଦ ବିକଶିତ ହୋଇଥିବା ଜଣାଯାଏ । ଏସବୁ ଦାର୍ଶନିକ ବିଚାର କ୍ଷେତ୍ରରେ ବ୍ୟକ୍ତିନିଷ୍ଠତାବାଦର ପ୍ରାଧାନ୍ୟ ଥିବା ଦେଖାଯାଏ । ବ୍ୟକ୍ତିନିଷ୍ଠତାବାଦ ଭିତରେ କୌଣସି ସାର୍ବଜନୀନ ଦାର୍ଶନିକ ବିଚାରର ଅଭାବ ରହିବା ଏକ ସାଧାରଣ ମତ ଅଟେ । ଅଧିକନ୍ତୁ ଏହା ମଧ୍ୟ ମୌଳିକ ଭାବଧାରା ବିକାଶ କରିନଥିବା ଜଣାଯାଏ । ଅତୀତର କେତେକ ତାତ୍ତ୍ୱିକ ସିଦ୍ଧାନ୍ତ ଯାହା ସବୁ ପରବର୍ତ୍ତୀ ଦାର୍ଶନିକ ଚର୍ଚ୍ଚାରେ ପ୍ରତ୍ୟାଖ୍ୟାତ ହୋଇଥିଲେ ସେସବୁ ପୁନଶ୍ଚ ସ୍ୱୀକୃତ ହେବା ହୁଏତ ପ୍ରହେଳିକା ମନେ ହୋଇପାରେ । ଷ୍ଟୋଇକବାଦ ଓ ଏପିକୁରୀୟବାଦ ନୈତିକତା ଓ ସୁଖବାଦକୁ ଯଥାକ୍ରମେ ପ୍ରାଧାନ୍ୟ ଦେଇଥିଲେ ମଧ୍ୟ ସେମାନେ ସେମାନଙ୍କର ବିଚାର କ୍ଷେତ୍ରରେ କିଛି ତାତ୍ତ୍ୱିକ ମତବାଦକୁ ସ୍ୱୀକାର କରିଛନ୍ତି । ସେସବୁ ମତବାଦର ଆଲୋଚନା ପୃଷ୍ଠଭୂମିରେ ସେସବୁକୁ ଉଲ୍ଲେଖ କରାଯିବ ।

ସଂଶୟବାଦ ବ୍ୟକ୍ତିନିଷ୍ଠତାବାଦର ଏକ ତାର୍କିକ ପରିଣତି । ସଫିଷ୍ଟମାନେ ବ୍ୟକ୍ତିକୁ ସକଳ ଜ୍ଞାନର ମାନଦଣ୍ଡ କରିବାଦ୍ୱାରା ମଧ୍ୟ ଏକ ସଂଶୟବାଦର ଅବତାରଣା କରିଥିଲେ । ସକ୍ରେଟିସ୍ ସଫିଷ୍ଟମାନଙ୍କ ବିଚାରଧାରାର ସମାଲୋଚନାରୁ ତାଙ୍କ ଦର୍ଶନର ଭିତ୍ତି ପକାଇଥିଲେ । ଆରିଷ୍ଟୋଟଲଙ୍କ ପରେ ଗ୍ରୀକ୍ ଦର୍ଶନ ଇତିହାସରେ ପୁନଶ୍ଚ ଏକ ସଂଶୟବାଦର ବିକାଶ ହେବା ଦେଖାଯାଏ । ଷ୍ଟୋଇକବାଦ ଓ ଏପିକୁରୀୟବାଦ ମଧ୍ୟ ଦେଇ ଯେଉଁ ବ୍ୟକ୍ତିନିଷ୍ଠତାବାଦର ବିକାଶ ହୋଇଥିଲା ସେଥିରୁ ପାଇରୋ ସଂଶୟବାଦ ମାଧ୍ୟମରେ ଜ୍ଞାନର ସମ୍ଭାବନାକୁ ଅସ୍ୱୀକାର କଲେ । ଏହି ଯେଉଁ ସବୁ ଭାବଧାରାମାନ ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ସମୟରେ ଗ୍ରୀସ୍‌ରେ ବିକଶିତ ହୋଇଛି ତାହାର ଆଲୋଚନା ଏହି ପରିଚ୍ଛେଦରେ କରାଯିବ ।

ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ଗ୍ରୀକ୍ ଦର୍ଶନକୁ କାଳାନୁସାରେ ତିନୋଟି ଭାଗରେ କେତେକ ଐତିହାସିକ ବିଭକ୍ତ କରିବା ଦେଖାଯାଏ । ପ୍ରଥମ ଭାଗର ଅବଧିକୁ ଖ୍ରୀ.ପୂ. ୩୨୩ ରୁ ଖ୍ରୀ.ପୂ. ୩୦ ପର୍ଯ୍ୟନ୍ତ ସୀମିତ କରାଯାଏ । ଏହାକୁ ହେଲେନିଷ୍ଟିକ୍ ଯୁଗ କୁହାଯାଏ । ଷ୍ଟୋଇକବାଦ, ଏପିକୁରୀୟବାଦ ଓ ସଂଶୟବାଦ ଥିଲା ହେଲେନିଷ୍ଟକ ଯୁଗର ମୁଖ୍ୟ ଦାର୍ଶନିକ ଭାବଧାରା । ସମନ୍ୱୟବାଦ ଓ ସଂଶୟବାଦ ଏ ଯୁଗର ମୁଖ୍ୟ ବିଚାରଧାରା । ଷ୍ଟୋଇକବାଦ ଓ ଏପିକୁରୀୟବାଦ ଭିତରେ ସମନ୍ୱୟବାଦ (eclecticism) ର ଚିତ୍ର ଥିବା କୁହାଯାଏ । ତେବେ ସମନ୍ୱୟବାଦ ଓ ସଂଶୟବାଦ ଦ୍ୱିତୀୟ ଭାଗକୁ ମଧ୍ୟ ପ୍ରସାରିତ ହେବା ଜଣାଯାଏ । ଏହି ସମୟକୁ ଖ୍ରୀ.ପୂ. ୩୦ ଠାରୁ ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାୟ ତିନି ଶହ ବର୍ଷ ନିଆଯାଏ । ଅତୀତର ଦାର୍ଶନିକମାନଙ୍କର ଜୀବନୀ, ଲେଖାମାନଙ୍କୁ ସଂଗ୍ରହ କରିବା, ସେମାନଙ୍କ ଦାର୍ଶନିକ ଭାବନାର ବ୍ୟାଖ୍ୟା ଦେବା କାର୍ଯ୍ୟ ଆଲେକଜାଣ୍ଡ୍ରିଆଠାରେ କରାଯାଉଥିଲା । ସେଠାରେ ଏହି ପରିପ୍ରେକ୍ଷୀରେ ଏକ ବିଶାଳ ପାଠାଗାର ଗଢ଼ି ଉଠିଥିବା ଜଣାଯାଏ । ଏହି ସମୟରେ ବୈଜ୍ଞାନିକ ଭାବଧାରା ସହ ଧାର୍ମିକ ରହସ୍ୟବାଦର ବିକାଶ ହେବା ଜଣାଯାଏ । ଧାର୍ମିକ ଚେତନାର ଅଭ୍ୟୁଦୟ ଏହି ସମୟର ବିଶେଷତ୍ୱ । ବିଶେଷକରି ପ୍ରାଚ୍ୟ ଭୂଖଣ୍ଡରେ ବିକଶିତ ହୋଇଥିବା ଧାର୍ମିକ ଭାବଧାରା ଆଲେକ୍‌ଜାଣ୍ଡ୍ରିଆରେ ପ୍ରବେଶ କରିବା ଥିଲା ଏହି କାଳର ଉଲ୍ଲେଖନୀୟ ଘଟଣା ।

ତୃତୀୟ ଭାଗ ସମୟକୁ ତୃତୀୟ ଶତାବ୍ଦୀର ମଧ୍ୟଭାଗରୁ ଷଷ୍ଠ ଶତାବ୍ଦୀ ଓ ଆଲେକ୍‌ଜାଣ୍ଡ୍ରିଆରେ ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ନିଆଯାଏ । ଏହି ତୃତୀୟ ଅବଧିକୁ କୁହାଯାଏ ନବ୍ୟ-ପ୍ଳେଟୋବାଦ (Neo-Platonism) । ଅତୀତର ସମସ୍ତ କାଳ୍ପନିକ ଦାର୍ଶନିକ ସିଦ୍ଧାନ୍ତ ଓ ଧାର୍ମିକ ବିଶ୍ୱାସ ମଧ୍ୟରେ ଏକ ସମନ୍ୱୟ ଦେଖିବାକୁ ମିଳେ । ଏହା ଖ୍ରୀଷ୍ଟୀୟ ଚିନ୍ତାଧାରାକୁ ରୂପ ଦେବା ସହ ମଧ୍ୟଯୁଗୀୟ ଦାର୍ଶନିକ ଦୃଷ୍ଟିଭଙ୍ଗୀକୁ ଗଭୀର ଭାବେ ପ୍ରଭାବିତ କରିଥିବା ମନେହୁଏ । ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ଦାର୍ଶନିକ ବିକାଶକୁ ଯେଉଁପରି ଭାବରେ ବିଭାଜନ କଲେ ମଧ୍ୟ ଯେଉଁ ମୁଖ୍ୟ ବିଚାର ଗୁଡିକ ଚିନ୍ତାରାଜ୍ୟକୁ ଆସିଥିଲା ସେ ମଧ୍ୟରେ ଷ୍ଟୋଇକବାଦ, ଏପିକୁରୀୟବାଦ, ସଂଶୟବାଦ ଓ ନବ୍ୟ-ପ୍ଳେଟୋବାଦ ମୁଖ୍ୟ ମନେହୁଏ । ଏହି ପରିଚ୍ଛେଦରେ ପ୍ରଥମ ତିନୋଟି ଭାବଧାରାକୁ ଆଲୋଚନା କରାଯିବ ଓ ପରବର୍ତ୍ତୀ ପରିଚ୍ଛେଦରେ ନବ୍ୟ-ପ୍ଳେଟୋବାଦ ବିଷୟକୁ ବ୍ୟାଖ୍ୟା କରାଯିବ ।

### ୯.୨ ଷ୍ଟୋଇକବାଦ (stoicism)

ଷ୍ଟୋଇକବାଦର ପ୍ରତିଷ୍ଠାତା ହେଉଛନ୍ତି ଜିନୋ (Zeno) । ସାଇପ୍ରସସ୍ଥିତ ସିଟିଅମ୍‌ଠାରେ ତାଙ୍କର ଜନ୍ମ ହୋଇଥିଲା । ତେବେ ତାଙ୍କର ଜନ୍ମ ଓ ମୃତ୍ୟୁ ନେଇ ଭିନ୍ନ ଭିନ୍ନ ଐତିହାସିକ ପୃଥକ୍ ପୃଥକ୍ ସମୟ ଦେଇଛନ୍ତି । କୋପ୍ଲେଷ୍ଟୋନଙ୍କ ମତରେ ତାଙ୍କ ଜନ୍ମ ଖ୍ରୀ.ପୂ. ୩୩୬ ବା ୩୩୫ ରେ ହୋଇଥିଲା ବେଳେ ଷ୍ଟେସଙ୍କ ମତରେ ତାଙ୍କ ଜନ୍ମ ଖ୍ରୀ.ପୂ. ୩୪୨ ଓ ଅନ୍ୟ ଐତିହାସିକଙ୍କ ମତରେ ତାଙ୍କର ଜନ୍ମ ଖ୍ରୀ.ପୂ. ୩୩୩ ରେ ହୋଇଥିଲା । ସେହିପରି ତାଙ୍କର ମୃତ୍ୟୁ ନେଇ ମଧ୍ୟ ବିଭିନ୍ନ ଐତିହାସିକ ଭିନ୍ନ ଭିନ୍ନ ମସିହା ଉଲ୍ଲେଖ କରିଛନ୍ତି । ତେବେ ଅକ୍‌ସଫୋର୍ଡ଼ ଡିକ୍‌ସନାରୀ ଅଫ୍ ଫିଲୋସଫିରେ ଜିନୋଙ୍କ ଜନ୍ମ ଖ୍ରୀ.ପୂ. ୩୩୫ ରେ, ଦେହାନ୍ତ ଖ୍ରୀ.ପୂ. ୨୬୩ରେ ହୋଇଥିବା

ଦର୍ଶାଯାଇଛି । ତାଙ୍କର ଜୀବନ କାଳ ଯେ ୭୨ ବର୍ଷ ଏଥିରେ ସମସ୍ତେ ସହମତ ହୋଇଛନ୍ତି । ତାଙ୍କ ବିଚାରରେ କୁହାଯାଏ ଯେ ସେ ତାଙ୍କ ପିତାଙ୍କ ବ୍ୟବସାୟରେ ସଂପୃକ୍ତ ଥିଲେ, କିନ୍ତୁ ବ୍ୟବସାୟରେ କ୍ଷତି ଯୋଗୁ ସେ ନିଃସ୍ୱ ହୋଇଗଲେ । ଏହାପରେ ସେ ଏଥେନ୍‌ସ ଚାଲିଆସିଲେ ଓ ଏଥେନ୍‌ସରେ ସେ ବିଭିନ୍ନ ଆକାଡେମୀରେ ଅଧ୍ୟୟନ କରିଥିଲେ । ସେ ସକ୍ରେଟିସ୍‌ଙ୍କ ଭାବନା ଓ ଜୀବନୀଦ୍ୱାରା ଗଭୀର ପ୍ରଭାବିତ ହୋଇଥିଲେ । ପରେ ସେ ଷ୍ଟୋଇକ୍ ସ୍କୁଲ୍ ପ୍ରତିଷ୍ଠା କରିଥିଲେ । ସେ ପ୍ରଥମେ ଯେଉଁ ଗୃହରେ ତାଙ୍କ ଅନୁଷ୍ଠାନ ଗଠନ କରିଥିଲେ ସେହି ସ୍ଥାନର ନାମ ଷ୍ଟୋଆ ଥିଲା ଓ ଗୃହର ଦ୍ୱାରମଣ୍ଡପ ବା ପୋର୍ଟିକୋଟି ବହୁ ସୁନ୍ଦର ଥିଲା । ସେ ସେଠାରେ ଯେଉଁ ଆକାଡେମୀ ପ୍ରତିଷ୍ଠା କରିଥିଲେ ତାହାକୁ ଷ୍ଟୋଇକ୍ କୁହାଗଲା ଯାହାର ଗ୍ରୀକ୍ ଭାଷାରେ ଅର୍ଥ ହେଲା 'ସୁନ୍ଦର ଦ୍ୱାରମଣ୍ଡପ' । ପରବର୍ତ୍ତୀ ପର୍ଯ୍ୟାୟରେ ତାଙ୍କ ଦାର୍ଶନିକ ଭାବଧାରାକୁ ଷ୍ଟୋଇକବାଦ କୁହାଗଲା । ଜିନୋ ବହୁତ ନୀତିମାନ ବ୍ୟକ୍ତି ଥିଲେ । ତେବେ ସେ ଏକ କଠିନ ରୋଗରେ ଆକ୍ରାନ୍ତ ହୋଇ ନିଜ ଜୀବନକୁ ଶେଷ କରିଦେଇଥିଲେ । ତାଙ୍କ ପରେ ତାଙ୍କ ଆକାଡେମୀ ଓ ଭାବଧାରା କ୍ଲିନ୍‌ଥେସ ଓ ତାପରେ କ୍ରିସିପସଙ୍କ ଦ୍ୱାରା ପରିଚାଳିତ ଓ ବିକଶିତ ହୋଇଥିଲା । କ୍ରିସିପସ ଅତ୍ୟନ୍ତ ସୃଜନଶୀଳ ବ୍ୟକ୍ତି ଥିଲେ । ସେ ଅନେକ ପୁସ୍ତକ ରଚନା କରିଥିଲେ, ହେଲେ ପରିତାପର ବିଷୟ ତାଙ୍କର ସମସ୍ତ ଲେଖା ବିଲୁପ୍ତ ହୋଇଗଲା । ଷ୍ଟୋଇକବାଦର ପ୍ରତିଷ୍ଠାତା ନ ହେଲେ ମଧ୍ୟ କ୍ରିସିପସ୍ ଷ୍ଟୋଇକବାଦର ମୁଖ୍ୟ ପ୍ରବକ୍ତା ଥିଲେ । ଷ୍ଟୋଇକବାଦ କିଛି ଶତାବ୍ଦୀ ଧରି ଏକ ଦାର୍ଶନିକ ବିଚାର ଭାବରେ ଉଭୟ ଗ୍ରୀସ୍ ଓ ରୋମରେ ପ୍ରଚଳିତ ରହିଥିଲା । ରୋମର କେତେକ ପ୍ରଭାବଶାଳୀ ଲେଖକ ମଧ୍ୟ ଷ୍ଟୋଇକବାଦର ସମର୍ଥକ ଓ ପ୍ରବକ୍ତା ଥିଲେ ।

ଜିନୋ, କ୍ଲିନଥେସ୍ ଓ କ୍ରିସିପସ୍ ଷ୍ଟୋଇକବାଦର ପ୍ରବକ୍ତା ଥିଲେ ଓ ଏହି ବିଚାରଧାରାର ସୈଦ୍ଧାନ୍ତିକ ଭିତ୍ତି ନିର୍ମାଣ କରିଥିଲେ । ତେବେ କାହାର ଅବଦାନ କ'ଣ ଥିଲା ତାହା ଇତିହାସରେ ଅଜ୍ଞାତ । ତେଣୁ ଷ୍ଟୋଇକବାଦକୁ ଏକ ସୈଦ୍ଧାନ୍ତିକ ବିଚାର ଭାବରେ ଐତିହାସିକମାନେ ଆଲୋଚନା କରିଛନ୍ତି । ଷ୍ଟୋଇକବାଦ ରୋମ ସାମ୍ରାଜ୍ୟରେ ବି ଜନପ୍ରିୟ ହୋଇଛି ଓ କେତେ ଶତାବ୍ଦୀ ଧରି ଏକ ବଳିଷ୍ଠ ଦାର୍ଶନିକ ତତ୍ତ୍ୱ ଭାବରେ ଗୃହୀତ ହୋଇଛି । ତେବେ ଏହାର ମୂଳ ସିଦ୍ଧାନ୍ତ ନିର୍ମାଣ କ୍ଷେତ୍ରରେ ଜିନୋ, କ୍ଲିନ୍‌ଥେସ ଓ କ୍ରିସିପସଙ୍କର ମୁଖ୍ୟ ଅବଦାନ ରହିଛି । ସୁତରାଂ ଏଠାରେ ଏହି ବିଚାରଧାରାର ମୁଖ୍ୟ ଭାବନାମାନଙ୍କୁ ସଂକ୍ଷେପରେ ସୂଚାଯିବ, ଯେହେତୁ ଜିନୋ ବା ଅନ୍ୟ ପ୍ରତିଷ୍ଠାତା ସଦସ୍ୟ ମାନଙ୍କର କୌଣସି କୃତି ଉପଲବ୍ଧ ନାହିଁ । ଷ୍ଟୋଇକବାଦ ସିଦ୍ଧାନ୍ତର ତିନୋଟି ମୁଖ୍ୟ ଆଧାର ହେଉଛି ଏହାର ତର୍କ, ଭୌତିକ ବିଜ୍ଞାନ ଓ ଆଚାର ମୀମାଂସା ବା ନୀତିଶାସ୍ତ୍ର । ବିଭିନ୍ନ ଦର୍ଶନ-ଐତିହାସିକଙ୍କ ମତରେ ଷ୍ଟୋଇକବାଦ ମୁଖ୍ୟତଃ ଏକ ନୀତିଶାସ୍ତ୍ର ବା ଆଚାର ମୀମାଂସା । ଏହି ଆଚାର ମୀମାଂସାକୁ ଦୃଢ଼ ଭିତ୍ତି ଦେବା ପାଇଁ ଷ୍ଟୋଇକମାନେ ତର୍କଶାସ୍ତ୍ର ଓ ଭୌତିକ ଶାସ୍ତ୍ର ବା ବିଜ୍ଞାନର ଆଶ୍ରୟ ନେଇଛନ୍ତି । ଷ୍ଟୋଇକମାନେ ତର୍କଶାସ୍ତ୍ରକୁ ସେମାନଙ୍କର ପ୍ରଣାଳୀ ଭାବେ ନେଇଛନ୍ତି ଓ ଭୌତିକ ଶାସ୍ତ୍ରକୁ ସେମାନଙ୍କର ଆଧାର ଭାବରେ ନେଇ ସେମାନଙ୍କର ଆଚାର ମୀମାଂସାକୁ ପ୍ରତିଷ୍ଠା କରିଛନ୍ତି । ସୁତରାଂ ଷ୍ଟୋଇକବାଦର ଆଲୋଚନା ପୃଷ୍ଠଭୂମିରେ ସେମାନଙ୍କର ତର୍କଶାସ୍ତ୍ର, ଭୌତିକ ବିଜ୍ଞାନ ଓ ନୀତିଶାସ୍ତ୍ର ସଂପର୍କରେ ହିଁ ଆଲୋଚନା କରାଯିବ ।

**ତର୍କଶାସ୍ତ୍ର (Logic)**

ଷ୍ଟୋଇକମାନେ ଆଧୁନିକ ଅନୁଭବବାଦୀଙ୍କ ପରି ମତପୋଷଣ କରିଥାନ୍ତି ଯେ ମନୁଷ୍ୟର ମନ ଜନ୍ମରୁ ଏକ ଧଳା କାଗଜ ସଦୃଶ । ଆମର ସକଳ ଭାବନା ଓ ଜ୍ଞାନ ପ୍ରତ୍ୟକ୍ଷଜନିତ ଅନୁଭବଦ୍ୱାରା ଆମ ମନକୁ ଆସିଥାଏ । ମନର ନିଜସ୍ୱ କ୍ରିୟା ରହିପାରେ, ତେବେ ଇନ୍ଦ୍ରିୟ ପ୍ରତ୍ୟକ୍ଷଦ୍ୱାରା ଆମେ ଯେଉଁ ଅନୁଭବ ଲାଭ କରିଥାଏ ତାହାକୁ ଉପାଦାନ ଭାବେ ନେଇ ଆମର ମନ ତାହା ଉପରେ କ୍ରିୟାଶୀଳ ହୋଇଥାଏ । ପ୍ରତ୍ୟକ୍ଷଦ୍ୱାରା ଲାଭ କରାଯାଉଥିବା ଉପାଦାନରୁ ମନୁଷ୍ୟର ମନ ପ୍ରତ୍ୟୟ ଲାଭ କରିଥାଏ । ଷ୍ଟୋଇକମାନଙ୍କର ଏହି ମତବାଦ ପ୍ଲେଟୋଙ୍କ ଭାବନାଠାରୁ ସଂପୂର୍ଣ୍ଣ ଭିନ୍ନ । ପ୍ଲେଟୋଙ୍କ ମତରେ ଆମର ସକଳ ଜ୍ଞାନ ଆମ ମନଦ୍ୱାରା ସୃଷ୍ଟି ହୋଇଥାଏ । ଇନ୍ଦ୍ରିୟ ମାଧ୍ୟମରେ ଆସୁଥିବା ଅନୁଭବ ଭ୍ରମାତ୍ମକ ହୋଇପାରେ ଓ ତାହା ଜ୍ଞାନ ହୋଇପାରିବ ନାହିଁ ବୋଲି ପ୍ଲେଟୋ ବିଚାର କରିଛନ୍ତି । ସକଳ ଜ୍ଞାନ ପ୍ଲେଟୋଙ୍କ ମତରେ ପ୍ରତ୍ୟୟଦ୍ୱାରା ହୋଇଥାଏ ଓ ପ୍ରତ୍ୟୟମାନ ମନରୁ ଆସିଥାଏ । ପ୍ଲେଟୋଙ୍କ ପ୍ରତ୍ୟୟବାଦଠାରୁ ଷ୍ଟୋଇକମାନଙ୍କର ମତ ସଂପୂର୍ଣ୍ଣ ଭିନ୍ନ । ପ୍ରତ୍ୟୟମାନଙ୍କର କୌଣସି ଅସ୍ତିତ୍ୱ ଥିବା ଭାବନାକୁ ଷ୍ଟୋଇକମାନେ ଅସ୍ୱୀକାର କରିଛନ୍ତି । ଆମର ସକଳ ପ୍ରତ୍ୟୟ କେବଳ ମନର ଭାବନା । ଆମେ ଇନ୍ଦ୍ରିୟ ସାହାଯ୍ୟରେ ଯେଉଁ ବିଶେଷମାନଙ୍କର ପ୍ରତ୍ୟକ୍ଷ କରିଥାଏ, ସେହି ପ୍ରତ୍ୟକ୍ଷରୁ ବିଭିନ୍ନ ଭାବନା ବା ପ୍ରତ୍ୟୟ ମନରେ ସୃଷ୍ଟି ହୋଇଥାଏ । ଏଣୁ ମନ ବ୍ୟତୀତ କୌଣସି ପ୍ରତ୍ୟୟ ବା ଭାବନା ରହିବା ସମ୍ଭବ ନୁହେଁ । ସକଳ ପ୍ରତ୍ୟୟ ଆମର ଅନୁଭବ ବା ପ୍ରତ୍ୟକ୍ଷ ଆଧାରରେ ଆମ ମନରେ ସୃଷ୍ଟି ହୋଇଥାଏ । ଆମ ମନ ବା ଚେତନା ବ୍ୟତୀତ ପ୍ରତ୍ୟୟ ମାନଙ୍କର ଅସ୍ତିତ୍ୱ ନାହିଁ ।

ଯେହେତୁ ଆମର ସକଳ ଜ୍ଞାନ ଇନ୍ଦ୍ରିୟ ଜନିତ ପ୍ରତ୍ୟକ୍ଷ ଆଧାରିତ, ତେଣୁ ଷ୍ଟୋଇକମାନେ ସତ୍ୟ କ୍ଷେତ୍ରରେ ସାମଂଜସ୍ୟମେଳକ ସିଦ୍ଧାନ୍ତ (correspondence theory of truth) କୁ ମାନଦଣ୍ଡ ଭାବରେ ଗ୍ରହଣ କରିଥାନ୍ତି । ଆମର ଇନ୍ଦ୍ରିୟାନୁଭୂତି ଓ ବସ୍ତୁଜଗତ ମଧ୍ୟରେ ସାମଂଜସ୍ୟ ରହିବା ଆବଶ୍ୟକ । ଆମର ଭାବନା ବା ପ୍ରତ୍ୟୟ ଯଥାର୍ଥ ବୋଲି ଜାଣିବାର ଆଧାର ହେଉଛି ତାହା ସହ ବାସ୍ତବ ଜଗତର ପ୍ରକୃତ ସାମଂଜସ୍ୟ ଥିବା ଦରକାର । ଆମ ମନରେ ଆମେ ନାନା ପ୍ରକାର କଳ୍ପନା, ସ୍ୱପ୍ନ ଆଣିପାରୁ । ସେହିପରି ଆମର ବେଳେବେଳେ କେତେକ କ୍ଷେତ୍ରରେ ଭ୍ରମ ହୋଇପାରେ । ତେବେ ଆମର ଭାବନା ସହିତ ଯଦି ବାହ୍ୟ ଜଗତରେ ବସ୍ତୁନିଷ୍ଠ ସାମଂଜସ୍ୟ ନାହିଁ, ତେବେ ତାହା ସତ୍ୟ ହୋଇପାରିବ ନାହିଁ । ଆମର ଭାବନା, କଳ୍ପନା ଆମଦ୍ୱାରା ସୃଷ୍ଟ ବା ପରିକଳ୍ପିତ, ତେଣୁ ସେମାନଙ୍କର ସତ୍ୟତା ରହିବା ସମ୍ଭବ ନୁହେଁ । ଆମର ପ୍ରତ୍ୟକ୍ଷ ଅନୁଭୂତି ଆଧାରରେ ଆମେ କିଛି ସତ୍ୟ କି ନୁହଁ ବିଚାର କରିପାରିବା । ଏକ ବସ୍ତୁ ଆମ ମନରେ ପ୍ରତ୍ୟକ୍ଷଣ ମୁଦ୍ରା ସୃଷ୍ଟି କରିଥାଏ । ବାସ୍ତବ ଅନୁଭବ କ୍ଷେତ୍ରରେ ଯେଉଁ ତୀବ୍ରତା ରହିଥାଏ ତାହା କଳ୍ପନା ବା ସ୍ୱପ୍ନ କ୍ଷେତ୍ରରେ ରହିନଥାଏ । ଯାହା ଆମ ପ୍ରତ୍ୟକ୍ଷ ଆଧାରରେ ସ୍ଥିର ହୋଇଥାଏ, ତାହା ସତ୍ୟ । ଏହାଦ୍ୱାରା ଷ୍ଟୋଇକମାନେ ଏକ ପ୍ରକାର ବିଷୟିନିଷ୍ଠତାକୁ ସ୍ୱୀକାର କରୁଛନ୍ତି । ସତ୍ୟର କୌଣସି ସାର୍ବଜନୀନ ମାନଦଣ୍ଡ ଏହା ପ୍ରତିଷ୍ଠା କରୁନାହିଁ । ସତ୍ୟ ବିଚାର ଉପରେ ନିର୍ଭର କରୁ ନାହିଁ, ଏହା ଅନୁଭବ ଉପରେ ନିର୍ଭର

କରୁଛି । ଷ୍ଟୋଇକମାନେ ଅନୁଭବବାଦକୁ ଜ୍ଞାନର ଆଧାର ଓ ସାମଂଜସ୍ୟ ମେଳକ ସିଦ୍ଧାନ୍ତକୁ ସତ୍ୟର ଆଧାର ଭାବରେ ସ୍ୱୀକାର କରୁଛନ୍ତି ।

ଆରିଷ୍ଟୋଟଲ ଯେଉଁ ଅବରୋହାତ୍ମକ ତର୍କ ପଦ୍ଧତିକୁ ଗ୍ରହଣ କରିଛନ୍ତି, ଷ୍ଟୋଇକମାନେ ସେହି ପଦ୍ଧତିର ସମସ୍ତ ମୂଳ ଭାବନାମାନଙ୍କୁ ସ୍ୱୀକାର କରିଛନ୍ତି । ଷ୍ଟୋଇକମାନେ ଆରିଷ୍ଟୋଟଲଙ୍କ ବିଚାର ଉପରେ କିଛି ଅଧିକ ଭାବନା ସଂଯୁକ୍ତ କରିନାହାନ୍ତି । ସେମାନେ ଆରିଷ୍ଟୋଟଲଙ୍କର ସକଳ ମତକୁ ତର୍କସଂଗତ ଭାବରେ ଗ୍ରହଣ କରିଛନ୍ତି । ତେବେ ଆରିଷ୍ଟୋଟଲଙ୍କ ପଦ୍ଧତିକୁ ଗ୍ରହଣ କରିବା ପରେ ସେମାନେ ଜ୍ଞାନର ଉତ୍ପତ୍ତି କ୍ଷେତ୍ରରେ ଅନୁଭବବାଦୀ ସିଦ୍ଧାନ୍ତକୁ ସ୍ଥାପିତ କରିବାରେ ନୂତନତ୍ୱ ଦେଖାଇଛନ୍ତି । ଜ୍ଞାନର ସକଳ ଉପାଦାନ ପ୍ରତ୍ୟକ୍ଷ ଜରିଆରେ ବାହ୍ୟ ଜଗତରୁ ଆମ ମନ ମଧ୍ୟକୁ ଆସିଥାଏ । ତର୍କଶାସ୍ତ୍ର ପୃଷ୍ଠଭୂମିରେ ଷ୍ଟୋଇକମାନେ ଜ୍ଞାନର ଦୁଇଟି ବିଭାଜନ କରିଛନ୍ତି ଯଥା ବାଗ୍ମିତା (Rhetoric) ଓ ଦ୍ୱନ୍ଦ୍ୱନ୍ୟାୟ (Dialectic) । ସେହିପରି ସକଳ ତର୍କବଚନମାନଙ୍କୁ ସେମାନେ ଦୁଇ ଶ୍ରେଣୀରେ ବିଭକ୍ତ କରିଛନ୍ତି ଯଥା ଅସର୍ତ୍ତକ (categorical) ଓ ସର୍ତ୍ତକ (conditional) । ପୁନଶ୍ଚ ସର୍ତ୍ତକ ତର୍କବଚନମାନଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରିଛନ୍ତି ଯଥା ପ୍ରାକଳ୍ପିକ ଓ ବିଯୋଜକ । ଷ୍ଟୋଇକମାନେ ତର୍କଶାସ୍ତ୍ର ପରିସରରେ ଆରିଷ୍ଟୋଟଲଙ୍କ ସକଳ ବିଚାରକୁ ଗ୍ରହଣ କରିବା ସହ ଜ୍ଞାନର ଆଧାର ଓ ସତ୍ୟର ପ୍ରଣାଳୀ ସଂପର୍କରେ କିଛି ବିଚାରର ଅବତାରଣା କରିଛନ୍ତି ।

**ଭୌତିକ ବିଜ୍ଞାନ (Physics)**

ଷ୍ଟୋଇକ ଦର୍ଶନର ଏକ ମୁଖ୍ୟ ଦିଗ ହେଉଛି ସେମାନଙ୍କ ପରିକଳ୍ପିତ ଭୌତିକ ବିଜ୍ଞାନ । ସେମାନଙ୍କର ଏକ ମୌଳିକ ଅବଧାରଣା ହେଉଛି ଜଗତର ପ୍ରତ୍ୟେକ ବସ୍ତୁ ଭୌତିକ; ଓ ଅଭୌତିକ (incorporeal) ସତ୍ତା କିଛି ନାହିଁ । ସେମାନଙ୍କ ଜ୍ଞାନମୀମାଂସା କ୍ଷେତ୍ରରେ ସେମାନେ ଯେଉଁ ଅନୁଭବବାଦକୁ ପ୍ରାଧାନ୍ୟ ଦେଇଛନ୍ତି ତାହା ସହ ତାଙ୍କର ପରିକଳ୍ପିତ ଭୌତିକବାଦର ପୂର୍ଣ୍ଣ ସମନ୍ୱୟ ରହିଛି । ପ୍ଲେଟୋ ଜ୍ଞାନ ପ୍ରତ୍ୟୟଗତ ବୋଲି ବିଚାରକରି ସତ୍ତାକୁ ଶୁଦ୍ଧସତ୍ତା ବୋଲି ଗ୍ରହଣ କରିଛନ୍ତି । ଷ୍ଟୋଇକମାନେ ଅପରପକ୍ଷରେ ଜ୍ଞାନକୁ ଭୌତିକ ସମ୍ବେଦନ ବୋଲି ଗ୍ରହଣ କରି ସତ୍ତାର ସ୍ୱରୂପ ଭୌତିକ ବୋଲି ଦର୍ଶାଇଛନ୍ତି । ସେମାନଙ୍କ ମତରେ ସକଳ ବସ୍ତୁ, ଏପରିକି ଆତ୍ମା ଓ ଈଶ୍ୱର ମଧ୍ୟ ଭୌତିକ । ଜଗତର ସକଳ ସତ୍ତା ସ୍ୱରୂପରେ ଭୌତିକ । ସବୁ କିଛିକୁ ଭୌତିକ ବୋଲି ଗ୍ରହଣ କରିବା ପଶ୍ଚାତରେ ସେମାନେ ଦୁଇଟି କାରଣ ଦର୍ଶାଇଥାନ୍ତି । ପ୍ରଥମ କାରଣଟି ହେଉଛି ସମଗ୍ର ଜଗତରେ ଏକତ୍ୱ ବିଦ୍ୟମାନ ରହିଛି । ଜଗତରେ ଯେହେତୁ ଏକତ୍ୱ ରହିଛି ବା ଏକ ଜଗତ ରହିଛି ଏହା ଏକ ସିଦ୍ଧାନ୍ତରୁ ନିଷ୍ପନ୍ନ ହେବା ଆବଶ୍ୟକ । ଷ୍ଟୋଇକମାନେ ଏକତତ୍ତ୍ୱବାଦରେ ଆସ୍ଥା ସ୍ଥାପନ କରିଛନ୍ତି । ପ୍ଲେଟୋ କିମ୍ବା ଆରିଷ୍ଟୋଟଲ ଯେଉଁ ପ୍ରତ୍ୟୟବାଦର ଅବତାରଣା କରିଛନ୍ତି ସେଥିରେ ଦ୍ୱୈତବାଦ ରହିଛି ଯେହେତୁ ବସ୍ତୁ ଓ ଚେତନାକୁ ସେମାନେ ଦୁଇ ଭିନ୍ନ ତତ୍ତ୍ୱ ବୋଲି ସ୍ୱୀକାର କରିଛନ୍ତି । ବସ୍ତୁ ଓ ଚେତନା ଦୁଇଟି ଭିନ୍ନ ତତ୍ତ୍ୱ ହେଲେ ସେମାନଙ୍କ ଭିତରେ ସମନ୍ୱୟ ସୃଷ୍ଟି କରିବା ସମ୍ଭବ ନହେଁ । ପ୍ରତ୍ୟୟ, ଶୁଦ୍ଧସତ୍ତା ବା ଆଇଡିଆକୁ ଏକ ମାତ୍ର ତତ୍ତ୍ୱ ଭାବରେ ନେଇ ଏହି ସମସ୍ୟାର

ସମାଧାନ କରାଯାଇ ପାରିବ ନାହିଁ । ତେଣୁ ଷ୍ଟୋଇକମାନେ ଭୌତିକ ବସ୍ତୁକୁ ଏକମାତ୍ର ମୂଳ ତତ୍ତ୍ୱ ବୋଲି ଗ୍ରହଣ କରିଛନ୍ତି ଓ ଚେତନାକୁ ବସ୍ତୁରେ ରୂପାନ୍ତରିତ କରିବାକୁ ପ୍ରୟାସ କରିଛନ୍ତି । ଦ୍ୱିତୀୟ କାରଣ ପରିପ୍ରେକ୍ଷୀରେ ଷ୍ଟୋଇକମାନେ ମତ ଦେଇଛନ୍ତି ଯେ ଶରୀର ଓ ଆତ୍ମା, ଜଗତ ଓ ଈଶ୍ୱର ହେଉଛି ସଂଯୁକ୍ତ ଭାବନା । ଶରୀର ଓ ଆତ୍ମା ପରସ୍ପର ସହ ସମ୍ବନ୍ଧିତ ଓ ପରସ୍ପର ମଧ୍ୟରେ କ୍ରିୟାଶୀଳ । ଶରୀର ଆତ୍ମା ଉପରେ ଓ ଆତ୍ମା ଶରୀର ଉପରେ କାର୍ଯ୍ୟ କରିଥାନ୍ତି । ଶରୀର ଆତ୍ମାରେ ଭାବନା, ଚିନ୍ତା ସଂଚାର କରିଥାଏ ଓ ଆତ୍ମା ଶରୀରକୁ ଗତିଶୀଳ କରିଥାଏ । ଶରୀର ଓ ଆତ୍ମା ଯଦି ଏକ ଦ୍ରବ୍ୟ ଆଧାରିତ ହୋଇନଥାନ୍ତେ, ତେବେ କେହି କାହାକୁ ପ୍ରଭାବିତ କରିବା ସମ୍ଭବ ହୋଇପାରନ୍ତା ନାହିଁ । ଯାହା ଭୌତିକ ତାହା ଅଭୌତିକକୁ କ୍ରିୟାଶୀଳ କରିପାରିବ ନାହିଁ କିମ୍ବା ଯାହା ଅଭୌତିକ ତାହା ଭୌତିକକୁ ପ୍ରଭାବିତ କରିବା ସମ୍ଭବ ହେବ ନାହିଁ । ଦୁଇଟି ପୃଥକ ତତ୍ତ୍ୱ ମଧ୍ୟରେ ସମ୍ବନ୍ଧ ବା ସମନ୍ୱୟ ସ୍ଥାପନ ସମ୍ଭବ ନୁହେଁ । ଏଣୁ ସବୁ କିଛି ସ୍ୱରୂପରେ ଭୌତିକ ବୋଲି ଷ୍ଟୋଇକମାନେ ଭାବିଛନ୍ତି ।

ଯଦି ଜଗତର ସବୁକିଛି ସ୍ୱରୂପରେ ଭୌତିକ, ତେବେ ଭୌତିକ ସତ୍ତା ଭିତରେ ମୌଳିକ କୌଣସି ତତ୍ତ୍ୱ ରହିଛି କି ଯେଉଁଥିରୁ ଜଗତର ନିର୍ମାଣ ପ୍ରକ୍ରିୟା ଉଦ୍‌ଭବ ହୋଇଛି ? ଅନ୍ୟ ଭାଷାରେ କହିଲେ ଜଗତର ମୌଳିକ ଭୌତିକ ଉପାଦାନ କ'ଣ ହୋଇପାରେ ? ଏହି ପ୍ରଶ୍ନ ଉପରେ ଷ୍ଟୋଇକ ମାନେ ହେରାକ୍ଲାଇଟସ୍‌ଙ୍କ ସିଦ୍ଧାନ୍ତକୁ ଗ୍ରହଣ କରିଛନ୍ତି । ହେରାକ୍ଲାଇଟସ୍ ଅଗ୍ନିକୁ ଆଦ୍ୟ ସତ୍ତା ଭାବରେ ନେଇ ଯେପରି ବିଶ୍ୱର ପରିକଳ୍ପନା କରିଛନ୍ତି, ଷ୍ଟୋଇକମାନେ ମଧ୍ୟ ସେହିପରି ଅଗ୍ନିକୁ ପରମ ଓ ଆଦ୍ୟ ତତ୍ତ୍ୱ ଭାବରେ ନେଇଛନ୍ତି । ଅଗ୍ନି ହେଉଛି ଆଦ୍ୟ ଭୌତିକ ସତ୍ତା ଓ ସେହିଥିରୁ ସବୁ କିଛି ଉଦ୍‌ଭବ ହୋଇଛି । ତେବେ ଏହି ଭୌତିକବାଦ ସହ ଷ୍ଟୋଇକମାନେ ସର୍ବେଶ୍ୱରବାଦକୁ ସଂଯୁକ୍ତ କରିଛନ୍ତି । ଆଦ୍ୟ ଅଗ୍ନିକୁ ସେମାନେ ଈଶ୍ୱର ବୋଲି ନେଇଛନ୍ତି । ଆତ୍ମାର ଶରୀର ସହ ଯେଉଁ ସମ୍ବନ୍ଧ ରହିଛି, ଈଶ୍ୱରଙ୍କର ଜଗତ ସହିତ ସେହି ସମ୍ବନ୍ଧ ରହିଛି । ଯାହାକୁ ମାନବାତ୍ମା କୁହାଯାଉଛି, ତାହା ସ୍ୱରୂପରେ ଅଗ୍ନି ସଦୃଶ ଓ ତାହା ଦିବ୍ୟ ଅଗ୍ନି (Divine Fire) ରୁ ଉଦ୍‌ଭବ ହୋଇଛି । ଏହା ସମଗ୍ର ଶରୀରରେ ପରିବ୍ୟାପ୍ତ ଓ ସଂଚାଳିତ ହୋଇ ରହିଛି । ଆତ୍ମା ଯେପରି ଶରୀରରେ ରହିଛି ସେହିପରି ଈଶ୍ୱର ଯାହା ଦିବ୍ୟ ଅଗ୍ନି ତାହା ସମଗ୍ର ଜଗତରେ ପରିବ୍ୟାପ୍ତ ଓ ପ୍ରସାରିତ ହୋଇ ରହିଛି । ସମଗ୍ର ଜଗତ ହେଉଛି ଈଶ୍ୱରଙ୍କର ଶରୀର, ଈଶ୍ୱର ହେଉଛନ୍ତି ଜଗତର ଆତ୍ମା । ଏହି ଈଶ୍ୱର ହେଉଛନ୍ତି ମୂଳ ତତ୍ତ୍ୱ ଯାହା ଦିବ୍ୟ ଅଗ୍ନି ।

ଏହିପରି ଏକ ଭୌତିକବାଦକୁ ସ୍ୱୀକାର କଲାପରେ ମଧ୍ୟ ଷ୍ଟୋଇକମାନେ ଈଶ୍ୱରଙ୍କୁ ବିଶ୍ୱପ୍ରଜ୍ଞା (Absolute reason) ବୋଲି ଚିତ୍ରଣ କରିଛନ୍ତି । ଯାହାକୁ ସେମାନେ ଦିବ୍ୟ ଅଗ୍ନି ବୋଲି ଅଭିହିତ କରିଛନ୍ତି ତାହାକୁ ଏକ ବୁଦ୍ଧି ତତ୍ତ୍ୱ ବୋଲି ଦର୍ଶାଇଛନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ସେମାନେ ଈଶ୍ୱରଙ୍କୁ ବିଶ୍ୱ ପ୍ରଜ୍ଞା ବୋଲି ସ୍ୱୀକାର କରିବାଦ୍ୱାରା ପ୍ରତ୍ୟୟବାଦ ବା ଭାବବାଦ (Idealism) କୁ ସମର୍ଥନ କରୁନାହାନ୍ତି । ଈଶ୍ୱରଙ୍କୁ ବିଶ୍ୱ ପ୍ରଜ୍ଞା ବୋଲି କହିବାଦ୍ୱାରା ଈଶ୍ୱର ଯେ ଅଭୌତିକ ଏହା ସେମାନେ ଦର୍ଶାଇ ନାହାନ୍ତି । ସେମାନଙ୍କ ମାନଦଣ୍ଡରେ ବୁଦ୍ଧି, ବିଚାର ବା ପ୍ରଜ୍ଞା ବି ଭୌତିକ । ଯାହାକୁ ଦିବ୍ୟ ଅଗ୍ନି ବୋଲି ଷ୍ଟୋଇକ୍‌ମାନେ ଗ୍ରହଣ କରୁଛନ୍ତି ତାହାକୁ ସେମାନେ ଏକ

ବିଚାର ଉପାଦାନ (rational element) ବୋଲି ସୂଚାଇଛନ୍ତି । ଏହାର ତାତ୍ପର୍ଯ୍ୟ ହେଉଛି ଦିବ୍ୟ ଅଗ୍ନି ସ୍ୱରୂପରେ ଏକ ବୁଦ୍ଧି-ତତ୍ତ୍ୱ ବା ବିଚାରତତ୍ତ୍ୱ । ଈଶ୍ୱର ଯେହେତୁ ବିଶ୍ୱ ପ୍ରଜ୍ଞା, ତେଣୁ ଜଗତ ବିଚାର ବା ବୁଦ୍ଧିଦ୍ୱାରା ପରିଚାଳିତ ହେଉଛି । ମୋଟ ଉପରେ ଷ୍ଟୋଇକମାନଙ୍କ ମତରେ ଅଗ୍ନି ହେଉଛି ଜଗତର ଆଦି-ସତ୍ତା, ଯାହା ଭୌତିକ । ସେହି ଆଦି ସତ୍ତାକୁ ସେମାନେ ଦିବ୍ୟ ଅଗ୍ନି କହିଛନ୍ତି । ଦିବ୍ୟ ଅଗ୍ନିକୁ ଈଶ୍ୱର ବୋଲି ଗ୍ରହଣ କରିଛନ୍ତି । ଈଶ୍ୱରଙ୍କ ସ୍ୱରୂପ ହେଉଛି ବିଶ୍ୱ ପ୍ରଜ୍ଞା, ତେଣୁ ସବୁ କିଛି ବିଚାର ସିଦ୍ଧାନ୍ତ ଦ୍ୱାରା ପରିଚାଳିତ ହେଉଛି ।

ଦିବ୍ୟ ଅଗ୍ନି ସର୍ବତ୍ର ପରିବ୍ୟାପ୍ତ ହୋଇ ରହିଛି ଓ ସବୁକିଛି ବିଚାର ଆଧାରରେ ପରିଚାଳିତ ହେଉଛି ଯେହେତୁ ଦିବ୍ୟ ଅଗ୍ନି ବା ଈଶ୍ୱରଙ୍କର ସ୍ୱରୂପ ହେଉଛି ବିଶ୍ୱ ପ୍ରଜ୍ଞା । ଏହି ସିଦ୍ଧାନ୍ତରୁ ଦୁଇଟି ନିଷ୍କର୍ଷ ଉତ୍ପନ୍ନ ହେଉଛି । ପ୍ରଥମରେ ଜଗତ ଏକ ଯାନ୍ତ୍ରିକ ବ୍ୟବସ୍ଥା ନୁହେଁ, ଜଗତର ସକଳ କ୍ଷେତ୍ରରେ ଶୃଙ୍ଖଳା ଓ ସଂହତି ବିଦ୍ୟମାନ ରହିଛି । ଷ୍ଟୋଇକମାନେ ଏକ ଉଦ୍ଦେଶ୍ୟହୀନ ଜଗତର ପରିକଳ୍ପନା କରିନାହାନ୍ତି । ଜଗତ ଏକ ଆକସ୍ମିକ, ଉଦ୍ଦେଶ୍ୟହୀନ ଭୌତିକ ପରିପ୍ରକାଶ ନୁହେଁ । ପରନ୍ତୁ ଜଗତ ଏକ ପ୍ରୟୋଜନାତ୍ମକ ସୁସଂହତ ଅଭିବ୍ୟକ୍ତି । ଏହି ପ୍ରକ୍ରିୟାରେ ଷ୍ଟୋଇକମାନେ ଜଗତର ସଂରଚନା କ୍ଷେତ୍ରରେ ପ୍ରୟୋଜନବାଦ (Teleology) ର ପରିକଳ୍ପନା କରିଛନ୍ତି । ଦ୍ୱିତୀୟରେ ଜଗତ ନିୟମଦ୍ୱାରା ପରିଚାଳିତ । ଯାହାକୁ ବିଚାର ତତ୍ତ୍ୱ ଭାବରେ ଗ୍ରହଣ କରାଯାଉଛି ତାହାର ନିଜସ୍ୱ ସ୍ୱରୂପ ହେଉଛି ନିୟମ ବା ପ୍ରାକୃତିକ ଶୃଙ୍ଖଳା । ସବୁ ସ୍ତରରେ କାର୍ଯ୍ୟ-କାରଣ ନିୟମ ନିହିତ ରହିଛି । ଏହି କାର୍ଯ୍ୟକାରଣ ଶୃଙ୍ଖଳାକୁ ବର୍ଣ୍ଣନାତ୍ମକ ନିୟମ କୁହାଯାଉଛି । ଷ୍ଟୋଇକମାନେ ଜଗତର ପ୍ରତ୍ୟେକ ସ୍ତରରେ ନିୟମ, ଶୃଂଖଳା ଓ ସଂହତି ରହିଥିବା ଭାବନାକୁ ସମର୍ଥନ କରିବାଦ୍ୱାରା ପ୍ରୟୋଜନବାଦ ବା ଉଦ୍ଦେଶ୍ୟବାଦକୁ ସମର୍ଥନ କରିଛନ୍ତି । ସେହିପରି ଷ୍ଟୋଇକ ଦାର୍ଶନିକମାନେ ସେମାନଙ୍କ ସିଦ୍ଧାନ୍ତ ମାଧ୍ୟମରେ ଏକ ବିଶ୍ୱ ନିୟତତ୍ତ୍ୱବାଦ (cosmic determinism) ର ଚିତ୍ର ଦେଇଛନ୍ତି । ଏହାନୁଯାୟୀ ବିଶ୍ୱର ପ୍ରତ୍ୟେକ ଘଟଣା ପ୍ରାକୃତିକ ନିୟମ ଓ ଶୃଂଖଳାଦ୍ୱାରା ପରିଚାଳିତ ହେଉଛି ଓ କୌଣସି ସ୍ତରରେ ଆକସ୍ମିକତା ନାହିଁ ।

ଷ୍ଟୋଇକମାନେ ବିଶ୍ୱ ପ୍ରକ୍ରିୟାକୁ ଏକ ଚକ୍ରକ ଧାରାରେ ବ୍ୟାଖ୍ୟା କରିଛନ୍ତି । ଈଶ୍ୱର ତାଙ୍କର ଅଗ୍ନିମୟ ଦ୍ରବ୍ୟକୁ ବାୟୁ, ଜଳ ଓ ଭୂମିରେ ରୂପାନ୍ତରିତ କରନ୍ତି । ଅର୍ଥାତ୍ ପ୍ରଥମରୁ କେବଳ ଅଗ୍ନି ରହିଥିଲା ଓ ଅଗ୍ନିରୁ ବାୟୁ, ଜଳ ଓ ପୃଥିବୀର କ୍ରମ ରୂପାନ୍ତର ଘଟିବାଦ୍ୱାରା ଜଗତର ସୃଷ୍ଟି ହେଲା । ପୁନଶ୍ଚ ଏକ ଅବଦାହ (conflagration) ପ୍ରକ୍ରିୟାରେ ସବୁ କିଛି ଶେଷରେ ଅଗ୍ନିରେ ବିଲୁପ୍ତ ହେବ । ସବୁ କିଛି ଅଗ୍ନିରୁ ଉତ୍ପନ୍ନ ହୁଏ ଓ ଶେଷରେ ସବୁକିଛି ଅଗ୍ନିରେ ବିଲୁପ୍ତ ହୁଏ । ଯେଉଁ ପ୍ରକ୍ରିୟାରେ ଅଗ୍ନିରୁ ସୃଷ୍ଟି ପ୍ରକ୍ରୟା ଆରମ୍ଭ ହୁଏ ତାହାକୁ ନିମ୍ନଗାମୀ କ୍ରିୟା (Downward way) କୁହାଯାଏ । ତେବେ ସବୁ କିଛି ଅଗ୍ନିରେ ବିଲୀନ ହେବା ପରେ ପୁନଶ୍ଚ ନିର୍ମାଣ ପ୍ରକ୍ରିୟା ନିମ୍ନଗାମୀ ମାର୍ଗରେ ଆରମ୍ଭ ହୁଏ । ଅଗ୍ନିରୁ ସୃଷ୍ଟି କ୍ରିୟା ଆରମ୍ଭ ହେବାକୁ ନିମ୍ନଗାମୀ କ୍ରିୟା ଓ ସବୁ କିଛି ଶେଷରେ ଅଗ୍ନିରେ ଲୀନ ହେବାକୁ ଊର୍ଦ୍ଧ୍ୱଗାମୀ ପ୍ରକ୍ରିୟା କୁହାଯାଏ । ଏହି ପ୍ରକ୍ରିୟା ଏକ ନିରନ୍ତର ଧାରା ଯାହାର ପରିସମାପ୍ତି ନାହିଁ । ତେଣୁ ଏକ ଚକ୍ରକ ପ୍ରକ୍ରିୟା ମାଧ୍ୟମରେ ଷ୍ଟୋଇକମାନେ ସୃଷ୍ଟି ଓ ପ୍ରଳୟର ଅବଧାରଣା କରିଛନ୍ତି । ସୃଷ୍ଟି ଆରମ୍ଭରୁ କେବଳ ଅଗ୍ନି ଆଦି-

ତତ୍ତ୍ୱ ଭାବରେ ରହିଥିଲା ଯେଉଁଥିରୁ ସୃଷ୍ଟି ପ୍ରକ୍ରିୟା ଆରମ୍ଭ ହେଲା ଓ ଶେଷରେ ସବୁ କିଛି ଅଗ୍ନିରେ ବିଲୀନ ହେବ । ସୃଷ୍ଟି ଓ ପ୍ରଳୟ ଏକ ନିରନ୍ତର କ୍ରିୟା ବୋଲି ସେମାନେ ପରିକଳ୍ପନା କରିଛନ୍ତି । ସେଥିପାଇଁ ସୃଷ୍ଟି ପ୍ରକ୍ରିୟାକୁ ଚକ୍ରକ କୁହାଯାଇଛି ।

ମନୁଷ୍ୟର ଆତ୍ମା ଦିବ୍ୟ ଅଗ୍ନିର ଅଂଶବିଶେଷ । ମନୁଷ୍ୟର ଆତ୍ମା ଈଶ୍ୱରଙ୍କଠାରୁ ଆସିଛି । ତେଣୁ ମନୁଷ୍ୟର ଆତ୍ମା ଏକ ବିଚାରଶୀଳ ସତ୍ତା । ତେବେ ପ୍ରତ୍ୟେକ ବ୍ୟକ୍ତିର ଆତ୍ମା ପ୍ରତ୍ୟକ୍ଷ ଭାବେ ଈଶ୍ୱରଙ୍କ ପାଖରୁ ଆସିନାହିଁ । ଦିବ୍ୟ ଅଗ୍ନି ପ୍ରଥମ ମନୁଷ୍ୟ ପାଖରେ ପ୍ରଥମେ ବ୍ୟକ୍ତ ହୋଇଥିଲା ଓ ତାହା ପିତା ମାତାଙ୍କ ପାଖରୁ ସନ୍ତାନମାନଙ୍କ ପାଖକୁ ପ୍ରଜନନ ପ୍ରକ୍ରିୟାରେ ଆସିଛି । ମୃତ୍ୟୁପରେ ପ୍ରତ୍ୟେକ ବ୍ୟକ୍ତିର ଆତ୍ମା ରହେ ବୋଲି କେତେକ ବିଶ୍ୱାସ କରନ୍ତି । ଅନ୍ୟ କେତେକଙ୍କ ମତରେ କେବଳ ଭଲ ଆତ୍ମାମାନ ରହନ୍ତି ଓ ସବୁ ଆତ୍ମା ମୃତ୍ୟୁପରେ ରହନ୍ତି ନାହିଁ । ତେବେ ପ୍ରଳୟ ପ୍ରକ୍ରିୟାରେ ଆତ୍ମାମାନ ଈଶ୍ୱରଙ୍କ ପାଖକୁ ପ୍ରସ୍ଥାନ କରିଥାନ୍ତି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଷ୍ଟୋଇକମାନେ ଜଗତର ପ୍ରତ୍ୟେକ ସ୍ତରରେ ପ୍ରୟୋଜନବାଦର ଯେପରି ପରିକଳ୍ପନା କରିଛନ୍ତି ସେହିପରି ଏକ ନିୟତତ୍ତ୍ୱବାଦର ଚିତ୍ର ମଧ୍ୟ ଦେଇଛନ୍ତି । ଜଗତ୍‌ରେ ଯାହା କିଛି ଅଛି ତାହାର କିଛି ଉଦ୍ଦେଶ୍ୟ ରହିଛି । ପ୍ରତ୍ୟେକ ବସ୍ତୁର ପ୍ରୟୋଜନ ରହିଛି । ମନୁଷ୍ୟ ଜୀବନ ପାଇଁ ପ୍ରତ୍ୟେକ ବସ୍ତୁର ପ୍ରୟୋଜନ ରହିବା ଷ୍ଟୋଇକମାନେ ପରିକଳ୍ପନା କରିଛନ୍ତି । ସେହିପରି ସବୁକିଛି ସୁବ୍ୟବସ୍ଥିତ ଓ ଶୃଂଖଳିତ ଧାରାରେ ରହିଛନ୍ତି । ମନୁଷ୍ୟର ଜୀବନ ମଧ୍ୟ ନିୟତତ୍ତ୍ୱବାଦଦ୍ୱାରା ପରିଚାଳିତ ହେଉଛି । ନିୟତତ୍ତ୍ୱବାଦର ସମସ୍ୟା ହେଉଛି ଯେ ଏହା ବ୍ୟକ୍ତି ସ୍ୱାଧୀନତାର ପରିପନ୍ଥୀ । ଯଦି ଜୀବନର ସବୁ କିଛି ପୂର୍ବ ନିର୍ଦ୍ଧାରିତ, ତେବେ ବ୍ୟକ୍ତି ନିଜର କାର୍ଯ୍ୟ କ୍ଷେତ୍ରରେ ସ୍ୱାଧୀନ ନୁହେଁ । ମନୁଷ୍ୟ ଇଚ୍ଛାର ମହତ୍ତ୍ୱ ନାହିଁ । ଜଗତରେ ଯଦି ସବୁ କିଛି ପୂର୍ବ ନିର୍ଦ୍ଧାରିତ ଓ ଜୀବନର ସମସ୍ତ ଘଟଣା ପୂର୍ବରୁ ସ୍ଥିରୀକୃତ ହୋଇ ରହିଛି ତେବେ ମାନବୀୟ କାମନା, ପ୍ରୟାସ ଓ ସଂକଳ୍ପର କ'ଣ ମୂଲ୍ୟ ରହିବ ? ବାସ୍ତବରେ ଏକ ପରିସ୍ଥିତିରେ କେଉଁ କାର୍ଯ୍ୟ କରାଯିବ ସେଠାରେ ବ୍ୟକ୍ତି ନିଷ୍ପତ୍ତି ନେଇଥାଏ । ବ୍ୟକ୍ତି ଇଚ୍ଛାକୃତ ଭାବରେ କାର୍ଯ୍ୟ କରେ । ବ୍ୟକ୍ତି ନିଜର ଇଚ୍ଛା ଓ କାମନାଦ୍ୱାରା ପରିଚାଳିତ ହେବା ଏକ ସାଧାରଣ ଉପଲବ୍ଧି । ଏହାର ତାତ୍ପର୍ଯ୍ୟ ହେବ ଯେ ଆମେ ଯାହା କରେ ତାହା ପଶ୍ଚାତରେ ଆମର ସମ୍ମତି ରହିଥାଏ । ଅର୍ଥାତ୍ ଆମେ ଯାହା କରେ ତାହା ପଶ୍ଚାତରେ ଉଦ୍ଦେଶ୍ୟ ରହିଥାଏ । ଉଦ୍ଦେଶ୍ୟ ରହିବା ଅର୍ଥ ତାହା କାର୍ଯ୍ୟ-କାରଣ ଶୃଂଖଳା ଦ୍ୱାରା ପରିଚାଳିତ ହୋଇଥାଏ । ଷ୍ଟୋଇକମାନଙ୍କ ମତରେ ସବୁକିଛି ଶୃଂଖଳିତ ଓ ସୁବ୍ୟବସ୍ଥିତ । ପ୍ରକୃତିରେ ବା ବାସ୍ତବ କ୍ଷେତ୍ରରେ ଆକସ୍ମିକତା ନାହିଁ । ଏଣୁ ଷ୍ଟୋଇକମାନେ ଏହି ସମସ୍ୟାକୁ ଏହି ଭାବରେ ଏଡାଇ ଯାଇଛନ୍ତି । ପୂର୍ବନିର୍ଦ୍ଧାରଣବାଦ ଓ ପ୍ରୟୋଜନବାଦ ଭିତରେ ସେମାନେ ସଂବନ୍ଧ ସ୍ଥାପନ କରିବାକୁ ପ୍ରୟାସ କରିଛନ୍ତି ।

ଷ୍ଟୋଇକମାନେ ବିଶ୍ୱ ସଂରଚନା କ୍ଷେତ୍ରରେ ବିଶ୍ୱପ୍ରଜ୍ଞା ବିଷୟରେ ପରିକଳ୍ପନା କରି ପ୍ରୟୋଜନବାଦର ଅବତାରଣା କରିଛନ୍ତି । ସଂସାରର ସବୁ କିଛି ଦିବ୍ୟ ଅଗ୍ନି ବିଶ୍ୱପ୍ରଜ୍ଞାଙ୍କ ଅଭିବ୍ୟକ୍ତି । ଏକତତ୍ତ୍ୱବାଦ ମାଧ୍ୟମରେ ସର୍ବେଶ୍ୱରବାଦର ଭାବନା ଷ୍ଟୋଇକ ଦର୍ଶନରେ ବ୍ୟକ୍ତ ହୋଇଛି । ସଂସାରରେ ଯାହା କିଛି ଅଛି ଓ ଯାହା କିଛି ଘଟେ

ସବୁ ଏକ ଈଶ୍ୱରୀୟ ଲକ୍ଷ୍ୟ ପୂରଣ କରିବାକୁ ଉଦ୍ଦିଷ୍ଟ । ଏହି ପରିପ୍ରେକ୍ଷୀରେ ପ୍ରଶ୍ନ ହେବ-ସଂସାରରେ ତେବେ ଏତେ ମନ୍ଦ ବା ଅଶୁଭ (evil) କାହିଁକି ରହିଛି ? ଅଶୁଭ ମାନଙ୍କୁ ଦୁଇ ଭାଗରେ ବିଭକ୍ତ କରାଯାଏ ଯଥା:-ପ୍ରାକୃତିକ ଅଶୁଭ (natural evil) ଓ ନୈତିକ ଅଶୁଭ (moral evil) । ଆମ ଅନୁଭୂତିରେ ଆମେ ଦେଖେ ଯେ ବାତ୍ୟା, ବନ୍ୟା, ଭୂକଂପ, ମହାମାରୀ ଇତ୍ୟାଦି ବିଭିନ୍ନ ପ୍ରାକୃତିକ କାରଣରୁ ଆମ ଜୀବନ ବିପର୍ଯ୍ୟୟର ସମ୍ମୁଖୀନ ହୁଏ । ସେହିପରି ମାନବିକ କ୍ରୂରତା, ହିଂସା, ଯୁଦ୍ଧ, ଅନ୍ୟାୟ ଇତ୍ୟାଦି ଯୋଗୁ ସଂସାରରେ ବହୁ ଦୁଃଖର ପରିବେଶ ଆସେ । ଯଦି ଜଗତରେ ସବୁ କିଛ ସୁସଂହତ, ଶୃଂଖଳିତ, ଈଶ୍ୱର-ନିୟନ୍ତ୍ରିତ ତେବେ ସଂସାରରେ ଏତେ ଅଶୁଭ କାହିଁକି ସୃଷ୍ଟି ହେଉଛି ଯାହା ନାନା ଦୁଃଖ ଓ ବିପର୍ଯ୍ୟୟର କାରଣ ହେଉଛି ?ଏହି ସମସ୍ୟା ଈଶ୍ୱରୀୟ ବ୍ୟବସ୍ଥା ଓ ସଂହତି ପାଇଁ ଏକ ଆହ୍ୱାନ ନୁହେଁକି ? ଏକ ଈଶ୍ୱରୀୟ ବ୍ୟବସ୍ଥା ଭିତରେ ଏହାକୁ କିପରି ନ୍ୟାୟମଣ୍ଡିତ କରିହେବ ? ଏ କ୍ଷେତ୍ରରେ ଷ୍ଟୋଇକ ବିଚାରରେ ଏକ ଈଶ୍ୱରୀୟ ନ୍ୟାୟ (Theodicy) ର ଭାବନା ରହିଥିବା ଦେଖାଯାଏ । ତାର ସଂକ୍ଷିପ୍ତ ସୂଚନା ଦିଆଯାଇପାରେ ।

ବିଶ୍ୱବ୍ୟବସ୍ଥାକୁ ଏକ ସାମଗ୍ରିକ ଦୃଷ୍ଟିରୁ ଦେଖିଲେ ଆମେ ଏ କ୍ଷେତ୍ରରେ ଯେଉଁ ସଂହତି ଓ ଶୃଂଖଳା ଦେଖିଥାଏ ତାହା ତୁଳନାରେ ସ୍ଥଳ ବିଶେଷରେ ସାମାନ୍ୟ ବ୍ୟତିକ୍ରମ ଅତି ନ୍ୟୂନ ମନେହୁଏ । ବ୍ୟକ୍ତି ସ୍ତରରେ ହୁଏତ କିଛି ଅପୂର୍ଣ୍ଣତା ରହିପାରେ, କିନ୍ତୁ ଏକ ବିଶ୍ୱ ସ୍ତରରେ ପରିପୂର୍ଣ୍ଣତା ରହିଥିବା ବାସ୍ତବତାକୁ ଅସ୍ୱୀକାର କରାଯାଇପାରିବ ନାହିଁ । ତେଣୁ ଏକ ସାମଗ୍ରିକ ଦୃଷ୍ଟି ନେଇ ବିଚାର କଲେ ଜଗତରେ କୌଣସି ଅଶୁଭ ଥିବା ଦୃଷ୍ଟିଗୋଚର ହେବ ନାହିଁ । ପୁନଶ୍ଚ ଏହା ଏକ ଉପଲବ୍ଧି ଯେ ବିଭିନ୍ନ ବିପରୀତ ଧାରଣା ଯୋଗୁ ଏକ ବିଷୟ ଅବବୋଧ ହୋଇଥାଏ । ଯଦି ବିପରୀତ ଘଟଣା ନ ରହେ, ତେବେ ଗୋଟିଏ ବିଷୟକୁ ବୁଝିବା ସମ୍ଭବ ହେବ ନାହିଁ । ଯଦି ଅନ୍ଧକାରର ସ୍ଥିତି ନଥାନ୍ତା, ତେବେ ଆଲୋକର ଅର୍ଥ ରହନ୍ତା ନାହିଁ । ଜୀବନରେ କୌଣସି ଦୁଃଖର ଅନୁଭବ ନ ରହିଲେ ସୁଖର ଅନୁଭବ ରହିବ ନାହିଁ । ଆଲୋକ-ଅନ୍ଧକାର, ସୁଖ-ଦୁଃଖ, ଭଲ-ମନ୍ଦ ଇତ୍ୟାଦି ବିପରୀତ ପ୍ରତ୍ୟୟ ମଧ୍ୟରେ ପ୍ରତ୍ୟେକଟି ଅନ୍ୟର ଉପସ୍ଥିତି ଯୋଗୁ ଅର୍ଥପୂର୍ଣ୍ଣ ହୋଇଥାଏ । ବ୍ୟକ୍ତି ଭିତରେ ସୁପ୍ରବୃତ୍ତି ଓ କୁପ୍ରବୃତ୍ତି ମଧ୍ୟ ରହିଛି । ଯଦି କେହି ବ୍ୟକ୍ତି କେବେ କିଛି ମନ୍ଦ କାର୍ଯ୍ୟରେ ସଂପୃକ୍ତ ହେବ ନାହିଁ, ତେବେ ସୁକାର୍ଯ୍ୟ ବା ସୁପ୍ରବୃତ୍ତି ମଧ୍ୟ ଅର୍ଥହୀନ ହୋଇଯିବ । ପୁନଶ୍ଚ ପ୍ରତ୍ୟେକ ବ୍ୟକ୍ତିକୁ କାର୍ଯ୍ୟ କ୍ଷେତ୍ରରେ ଈଶ୍ୱର ସ୍ୱାଧୀନତା ଦେଇଛନ୍ତି । ମନୁଷ୍ୟକୁ ଈଶ୍ୱର ତାଙ୍କ ହାତର କ୍ରୀଡନକ କରିନାହାନ୍ତି । ଯଦି ମନୁଷ୍ୟର କୌଣସି ସ୍ୱାଧୀନତା ନଥାନ୍ତା, ହୁଏତ ଆମ ସଂସାରରେ କୌଣସି ଅଶୁଭ ନଥାନ୍ତା, ତେବେ ତାହା ଆମ ପାଇଁ କେତେ ଅର୍ଥପୂର୍ଣ୍ଣ ହୁଅନ୍ତା ? ଏକ ଚେସ୍ ଖେଳର ଗୋଟି ପରି ଯଦି ଈଶ୍ୱର ଆମକୁ ଚାଳନା କରୁଥାନ୍ତେ ତେବେ ଆମ ଜୀବନ ଅର୍ଥପୂର୍ଣ୍ଣ ହୋଇପାରନ୍ତା କି ? ଏଣୁ ସଂସାରରେ ଯଦି ବି କିଛି ଅଶୁଭ ରହିଛି ତାହାର କିଛି ମହତ୍ତ୍ୱ ରହିଛି । କୋପ୍ଲେଷ୍ଟୋନଙ୍କର ମତ ଏଠାରେ ଉଲ୍ଲେଖ କରାଯାଇପାରେ ଯାହା ସେ କ୍ରିସିପସଙ୍କ ପରିପ୍ରେକ୍ଷୀରେ ଲେଖିଛନ୍ତି ।

freedom to be virtuous implies also freedom to commit sin, so that, if the possession of moral freedom is a good thing for man and if it is better to be able to choose virtue freely (even though this implies the possibility of vice) than to have no freedom at all, no valid argument against Divine providence can be drawn from the possibility, or even the existence, of moral evil in the world. (ପୃଷ୍ଠା ୩୯୧) ।

ବ୍ୟକ୍ତି ବେଳେ ବେଳେ ମନ୍ଦର ଆଶ୍ରୟ ନେଉଥିଲେ ମଧ୍ୟ ଭଲ କାର୍ଯ୍ୟ କରିବାର ସ୍ୱାଧୀନତା ତା ଭିତରେ ରହିଛି । ତାର ଏହି ସ୍ୱାଧୀନତା ବିଶ୍ୱବ୍ୟବସ୍ଥାର ଏକ ମହତ୍ତର ଉପଲବ୍ଧି । ମନ୍ଦ କାର୍ଯ୍ୟ କରିବାର ସ୍ୱାଧୀନତା କୌଣସି ସ୍ୱାଧୀନତା ନଥିବା ଠାରୁ ଯେ ମହତ୍ତର ଏହା ହିଁ ଈଶ୍ୱରୀୟ ନ୍ୟାୟ । ଏହିପରି ଷ୍ଟୋଇକମାନେ ସଂସାରର ଅଶୁଭକୁ ବ୍ୟାଖ୍ୟା କରିଛନ୍ତି । ଅଶୁଭ ପୃଷ୍ଠଭୂମିରେ ଯେତେସବୁ ଈଶ୍ୱରୀୟ ନ୍ୟାୟର ଅବତାରଣା କରାଯାଇଛି ପ୍ରତ୍ୟେକ ଯୁକ୍ତିର ନାନା ଦୁର୍ବଳତା ରହିଛି । ଯୁକ୍ତିମାନଙ୍କର ତର୍କଦୋଷ ସତ୍ତ୍ୱେ ଈଶ୍ୱରୀୟ ବ୍ୟବସ୍ଥାରେ ଅଶୁଭର ସ୍ଥିତି ନେଇ ବହୁ ବିତର୍କ ଦର୍ଶନ ଇତିହାସରେ ଦେଖିବାକୁ ମିଳେ । ତେବେ ଷ୍ଟୋଇକ ଦର୍ଶନରେ ଏ ବିଷୟରେ ବି କିଛି ଗମ୍ଭୀର ଚର୍ଚ୍ଚା ହୋଇଥିବା ଜଣାଯାଏ ।

ଷ୍ଟୋଇକମାନଙ୍କର ତର୍କଶାସ୍ତ୍ର ଓ ଭୌତିକ ବିଜ୍ଞାନ ଉପରେ ଏହି ଆଲୋଚନା ପରେ ତାଙ୍କର ମୁଖ୍ୟ ପ୍ରସଙ୍ଗ ନୀତିଶାସ୍ତ୍ର ଉପରେ ଏବେ ଆଲୋଚନା କରିବା ।

### ନୀତିଶାସ୍ତ୍ର

ଷ୍ଟୋଇକ ମାନଙ୍କର ନୈତିକ ସିଦ୍ଧାନ୍ତମାନ ସେମାନଙ୍କ ଭୌତିକ ବିଜ୍ଞାନର ସିଦ୍ଧାନ୍ତ ଉପରେ ବିକଶିତ ହୋଇଥିବା ମନେହୁଏ । ସେମାନଙ୍କ ଭୌତିକ ବିଜ୍ଞାନରେ କୁହାଯାଇଛି ଯେ ବିଶ୍ୱ କେତେକ ନିୟମଦ୍ୱାରା ପରିଚାଳିତ । ଏହି ନିୟମ ମାନଙ୍କର ବ୍ୟତିକ୍ରମ ନାହିଁ । ଏହି ବ୍ୟତିକ୍ରମବିହୀନ ନିୟମ ମାନଙ୍କୁ ଷ୍ଟୋଇକମାନେ ପରମ ଭାବରେ ଗ୍ରହଣ କରିଛନ୍ତି । ସେମାନଙ୍କର ଦ୍ୱିତୀୟ ସିଦ୍ଧାନ୍ତଟି ହେଉଛି ମନୁଷ୍ୟ ସ୍ୱଭାବରେ ବିଚାରବୁଦ୍ଧି ରହିଛି । ଏହି ଉଭୟ ସିଦ୍ଧାନ୍ତକୁ ମିଶାଇ ଷ୍ଟୋଇକମାନେ ଏକ ତତ୍ତ୍ୱର ଅବତାରଣା କରିଛନ୍ତି, ତାହା ହେଲା- "ପ୍ରାକୃତିକ ଧାରାରେ ଜୀବନ ନିର୍ବାହ କର" (Live according to nature) । ପ୍ରାକୃତିକ ଧାରାରେ ଜୀବନ ବଞ୍ଚିବାର ଅର୍ଥ କ'ଣ ହୋଇପାରେ ? ଏହାର ଏକ ବ୍ୟାପକ ଅର୍ଥ ରହିପାରେ ଓ ଏକ ସୀମିତ ତାତ୍ପର୍ଯ୍ୟ ମଧ୍ୟ ରହିପାର । ବ୍ୟାପକତର ଅର୍ଥରେ ମନୁଷ୍ୟ ପ୍ରକୃତିର ନିୟମ, ଶୃଂଖଳା ସହ ସମତାଳତା ରକ୍ଷାକରି ଜୀବନ ଧାରଣ କରିବା ଆବଶ୍ୟକ । ସେହିପରି ଏକ ସୀମିତ ଅର୍ଥରେ ମନୁଷ୍ୟ ନିଜର ବିଚାର ବୁଦ୍ଧିଦ୍ୱାରା ପରିଚାଳିତ ହୋଇ ଜୀବନ ନିର୍ବାହ କରିବା ଦରକାର । ତେବେ ଏହି ଦୁଇ ସିଦ୍ଧାନ୍ତର ମୌଳିକ ତାତ୍ପର୍ଯ୍ୟ ମଧ୍ୟ ସମାନ ବୋଧହୁଏ । ଷ୍ଟୋଇକମାନଙ୍କ ମତରେ ବିଶ୍ୱ ଯେ କେବଳ ନିୟମଦ୍ୱାରା ପରିଚାଳିତ ତାହା ନୁହେଁ ଏହା ମଧ୍ୟ ବିଶ୍ୱ-ପ୍ରଜ୍ଞାଦ୍ୱାରା ନିୟନ୍ତ୍ରିତ । ବିଶ୍ୱର ସକଳ ବ୍ୟବସ୍ଥା ପଶ୍ଚାତରେ ବିଚାରଶୀଳତାର ପ୍ରଭାବ ରହିଛି । ମନୁଷ୍ୟ ବି ଜୀବନ କ୍ଷେତ୍ରରେ ନିଜ ବିଚାରଶୀଳତା ଦ୍ୱାରା

ପରିଚାଳିତ ହେଉଛି । ନିଜ ଜୀବନକୁ ବିଚାରବୁଦ୍ଧି ଦ୍ୱାରା ପରିଚାଳିତ କରିବା ଅର୍ଥ ଜଗତର ପ୍ରାକୃତିକ ଶୃଂଖଳା ବା ପ୍ରଜ୍ଞା ପ୍ରତି ସମର୍ପିତ ହୋଇରହିବା । ତେବେ ମନୁଷ୍ୟ ତ ପ୍ରାକୃତିକ ବ୍ୟବସ୍ଥା ଭିତରେ ଜୀବନ ନିର୍ବାହ କରୁଛି, ବିଶ୍ୱର ନିୟମ ପ୍ରତି ସମର୍ପିତ ହୋଇ ଜୀବନ ବଞ୍ଚିବା ଆବଶ୍ୟକ କହିବାର ତାତ୍ପର୍ଯ୍ୟ କ'ଣ ? କେହି ବ୍ୟକ୍ତି ପ୍ରାକୃତିକ ବ୍ୟବସ୍ଥାକୁ ପରିହାର କରି ଜୀବନ ନିର୍ବାହ କରିପାରିବ କି ? ତେଣୁ ପ୍ରାକୃତିକ ନିୟମ ଆଧାରରେ ଜୀବନକୁ ପରିଚାଳିତ କରିବା କହିବାର କ'ଣ ତାତ୍ପର୍ଯ୍ୟ ରହିଛି ? ପ୍ରାକୃତିକ ନିୟମ, ଶୃଂଖଳା ଓ ବ୍ୟବସ୍ଥା ଭିତରେ ହିଁ ଆମେ ବଞ୍ଚିଥାଏ । ଏହା ଏକ ଅବଶ୍ୟମ୍ଭାବୀ ଧାରା । ଷ୍ଟୋଇକମାନଙ୍କ ମତରେ ମନୁଷ୍ୟ ପ୍ରାକୃତିକ ଶୃଂଖଳା ଭିତରେ ଜୀବନ ନିର୍ବାହ କରେ । ତେବେ ଏଥି ନେଇ ସଚେତନ ହେବା ଓ ଇଚ୍ଛାକୃତ ଭାବରେ ଏହାକୁ ପାଳନ କରିବା ହେଉଛି ମାନବୀୟ ବିଚାରଶୀଳତାର ତାତ୍ପର୍ଯ୍ୟ । ମନୁଷ୍ୟ ସଚେତନ ଓ ଇଚ୍ଛାକୃତ ଭାବରେ ପ୍ରାକୃତିକ ଶୃଂଖଳାକୁ ଗ୍ରହଣ କରିବା ଦରକାର ।

ଷ୍ଟୋଇକ ମାନଙ୍କର ମତରେ ବିଚାରବୁଦ୍ଧିର ମହତ୍ତ୍ୱ ସଦ୍‌ଗୁଣରେ ନିହିତ । ବିବେକ ସମ୍ମତ କାର୍ଯ୍ୟକୁ ସେମାନେ ନୈତିକ ବୋଲି ଅଭିହିତ କରିଛନ୍ତି । ଚପଳତା ଓ କାମନା ବ୍ୟକ୍ତିର ଜୀବନଧାରାକୁ ପ୍ରଭାବିତ କରିବା ପରିବର୍ତ୍ତେ ସାର୍ବଜନୀନ ବିଚାର ହିଁ ଜୀବନଧାରାକୁ ପରିଚାଳିତ କରିବା ଆବଶ୍ୟକ । ବିଶ୍ୱଭାବ ପ୍ରାଜ୍ଞ ବ୍ୟକ୍ତିର ଜୀବନାଦର୍ଶ ହେବା ଦରକାର । ସେ ସଚେତନ ଭାବରେ ଏକ ସାର୍ବଜନୀନ ବିଚାରବୋଧ ପ୍ରତି ସମର୍ପିତ ହେବା ଉଚିତ । ଏକ ବିଶ୍ୱ-ପ୍ରକ୍ରିୟାର ସେ ଯେ ଏକ କ୍ଷୁଦ୍ର ଅଂଶ ତାହା ମଧରେ ଏହି ଦୃଷ୍ଟିଭଙ୍ଗୀ ରହିବା ଯଥାର୍ଥ । ସୁତରାଂ ଷ୍ଟୋଇକମାନେ ନୈତିକତାକୁ ବିଚାରବୁଦ୍ଧି ସମର୍ଥିତ ଆଚରଣ ବୋଲି ଗ୍ରହଣ କରିଛନ୍ତି । ଏହି ପ୍ରସଙ୍ଗରେ ଷ୍ଟୋଇକ ମାନଙ୍କ ମତ ସହ ପ୍ଲେଟୋ ଓ ଆରିଷ୍ଟୋଟଲଙ୍କ ମତର ଯଥେଷ୍ଟ ସାମଂଜସ୍ୟ ରହିଛି । ନୈତିକତାର ଆଧାର ବ୍ୟକ୍ତିଗତ ଆବେଗ, ଅନୁଭବ, ବିଲକ୍ଷଣ ଇତ୍ୟାଦି ହେବା ପରିବର୍ତ୍ତେ ଏହା ବିଚାରଶୀଳତା ହେବା ଯଥାର୍ଥ । ବିଚାରଶୀଳ ଓ ବିବେକପୂର୍ଣ୍ଣ କର୍ତ୍ତବ୍ୟକୁ ନୈତିକତାର ଆଧାର ଭାବେ ନିଆଯାଇପାରେ । ଆରିଷ୍ଟୋଟଲ ମନୁଷ୍ୟର ସଂଜ୍ଞା ପୃଷ୍ଠଭୂମିରେ ମନୁଷ୍ୟ ଏକ ବିଚାରଶୀଳ ପ୍ରାଣୀ ବୋଲି କହିଛନ୍ତି । ସୁତରାଂ ନୈତିକତାର ଭିତ୍ତି ଆମର ବିଚାରବୁଦ୍ଧି ହେବା ଆବଶ୍ୟକ ବୋଲି ଆରିଷ୍ଟୋଟଲ ଭାବିଛନ୍ତି । ତେବେ ଷ୍ଟୋଇକମାନେ ଏହାର ଏକ ସୀମିତ ଓ ସଙ୍କୁଚିତ ଅର୍ଥ ପ୍ରଦାନ କରିଛନ୍ତି । ଷ୍ଟୋଇକମାନେ ମାନବିକ ପ୍ରବୃତ୍ତିକୁ ନ୍ୟୁନ କରି ସେମାନଙ୍କର ସଂପୂର୍ଣ୍ଣ ଉଚ୍ଛେଦ ବା ଦମନ ବିଷୟକୁ ଗୁରୁତ୍ୱ ଦେଇଛନ୍ତି । ସେମାନେ ଭାବିଛନ୍ତି ଯେ ପ୍ରବୃତ୍ତି ଅସଂଗତ ଓ ଅଯୌକ୍ତିକ ହୋଇଥିବାରୁ ସେ ସବୁର ଦମନ ଆବଶ୍ୟକ । ଆରିଷ୍ଟୋଟଲ କିନ୍ତୁ ଭାବିଛନ୍ତି ଯେ ମନୁଷ୍ୟ ଯେଉଁପରି ବିଚାରଶୀଳତାର ଅଧିକାରୀ ସେହିପରି ପାଶବିକତାର ମଧ ଅଧିକାରୀ । ତେଣୁ ବ୍ୟକ୍ତି ଭିତରେ କାମନା, ବାସନା ଜନିତ ପ୍ରବୃତ୍ତି ରହିବା ସ୍ୱାଭାବିକ । ତେବେ ବ୍ୟକ୍ତିର ପ୍ରବୃତ୍ତିକୁ ବିଚାରବୁଦ୍ଧିଦ୍ୱାରା ଶୃଂଖଳିତ ଓ ପରିମାର୍ଜିତ କରାଯାଇ ପାରିବ । ଆରିଷ୍ଟୋଟଲଙ୍କ ବିଚାରଠାରୁ ଷ୍ଟୋଇକ ମତର ଭିନ୍ନତା ରହିଛି । ଷ୍ଟୋଇକମାନେ ପ୍ରବୃତ୍ତି, କାମନା, ବାସନା ଇତ୍ୟାଦିକୁ ସ୍ୱଭାବତଃ ମନ୍ଦ ବୋଲି ବିଚାର କରିଛନ୍ତି । ତେଣୁ ସକଳ ପ୍ରାବୃତ୍ତିକ ଆବେଗକୁ ସେମାନେ ଦମନ କରିବା ପାଇଁ ଭାବିଛନ୍ତି ।

ଏକ ଉତ୍ତମ ଜୀବନକୁ ସେମାନେ ମାନବିକ ପ୍ରବୃତ୍ତି ବିରୁଦ୍ଧରେ ଏକ ସଂଗ୍ରାମ ବୋଲି ଗ୍ରହଣ କରି ସମସ୍ତ ପ୍ରବୃତ୍ତିକୁ ଦମନ କରାଯିବା ଆବଶ୍ୟକ ବୋଲି ମତ ଦେଇଛନ୍ତି । ଏହି ଦୃଷ୍ଟିରୁ ଷ୍ଟୋଇକ ମାନଙ୍କର ନୈତିକ ବିଚାର ଏକ ପ୍ରକାର ବୈରାଗ୍ୟବାଦ ବୋଲି ଦର୍ଶାଯାଇଛି । ସେମାନେ କଠୋର ସଂଯମତା ଉପରେ ପ୍ରାଧାନ୍ୟ ଦେଇଛନ୍ତି । ପ୍ରବୃତ୍ତି ଓ ବିଚାରଶୀଳତା ଭିତରେ ପାର୍ଥକ୍ୟ ଦର୍ଶାଇ ସକଳ ପ୍ରକାର ପ୍ରବୃତ୍ତିଗତ ବାସନାକୁ ଦମନ କରିବା ପାଇଁ ସେମାନେ ଚାହିଁଛନ୍ତି ।

ଷ୍ଟୋଇକମାନଙ୍କ ମତରେ ସଦ୍‌ଗୁଣ (virtue) ହିଁ ଏକମାତ୍ର କାମ୍ୟ କାରଣ ତାହା ସ୍ୱରୂପରେ ଉତ୍ତମ । ଯାହା ସଦ୍‌ଗୁଣ ବା ସଦାଚାର ନୁହଁ ତାହା ସ୍ୱରୂପରେ ମନ୍ଦ ଓ ଅଶୁଭ । ସଦ୍‌ଗୁଣ ଓ ଅସଦ୍‌ଗୁଣ ମଧ୍ୟରେ ଅନ୍ୟ କିଛିକୁ ସେମାନେ ଗ୍ରହଣ କରନ୍ତି ନାହିଁ । ଯାହା ସଦ୍‌ଗୁଣ ନୁହଁ ତାହା ଭଲ ମନ୍ଦ ନିର୍ବିଶେଷରେ ଅସଦ୍‌ଗୁଣର ବଶବର୍ତ୍ତୀ । ସଂପତ୍ତି, ସ୍ୱାସ୍ଥ୍ୟ, ସୁଖ ଓ ଜୀବନକୁ ସେମାନେ ଉତ୍ତମ ବୋଲି ଗ୍ରହଣ ବା ସ୍ୱୀକାର କରନ୍ତି ନାହିଁ । ସେହିପରି ଦାରିଦ୍ର୍ୟ, ଅସୁସ୍ଥତା, କଷ୍ଟ ବା ମୃତ୍ୟୁକୁ ସେମାନେ ମନ୍ଦ ବୋଲି ନିଅନ୍ତି ନାହିଁ । କେବଳ ସଦ୍‌ଗୁଣ ହିଁ ଜୀବନ ପାଇଁ ଅର୍ଥ ରଖେ କାରଣ ତାହା ସ୍ୱରୂପରେ ଉତ୍ତମ । ସୁତରାଂ ଏକ ଆତ୍ମହତ୍ୟାକୁ ସେମାନେ ମନ୍ଦ ବୋଲି ଗ୍ରହଣ କରନ୍ତି ନାହିଁ । ଜଣେ ଆତ୍ମହତ୍ୟାକରିବା ଦ୍ୱାରା କୌଣସି ଉତ୍ତମ ଗୁଣକୁ ସେ ପ୍ରତ୍ୟାଖ୍ୟାନ କରୁନାହିଁ । ସେହିପରି ଜଣେ ସୁଖ ବି କାମନା କରିବା ଯଥାର୍ଥ ନୁହେଁ । ସଦ୍‌ଗୁଣ ହିଁ ସକଳ ଆନନ୍ଦର ଆଧାର । ମଣିଷ ସୁଖ ପାଇଁ ସଦ୍‌ଗୁଣର ଅଧିକାରୀ ହେବ ନାହିଁ, ପରନ୍ତୁ ସଦ୍‌ଗୁଣ ହିଁ ଯେ ଏକ କର୍ତ୍ତବ୍ୟ ଏହି ଦୃଷ୍ଟିରୁ ଜଣେ ସଦ୍‌ଗୁଣ କାମନା କରିବା ଆବଶ୍ୟକ । ଷ୍ଟୋଇକମାନଙ୍କର ଏହି ମତ ସହ ଆରିଷ୍ଟୋଟଲଙ୍କ ମତର ପାର୍ଥକ୍ୟ ରହିଛି । ଆରିଷ୍ଟୋଟଲ ସଦ୍‌ଗୁଣକୁ ପ୍ରାଧାନ୍ୟ ଦେଇଛନ୍ତି ଓ ସଦ୍‌ଗୁଣର ସ୍ୱତଃମୂଲ୍ୟ ରହିଥିବା ସ୍ୱୀକାର କରିଛନ୍ତି । ତେବେ ସଦ୍‌ଗୁଣ ବ୍ୟତୀତ ଆଉ ବହୁ ବିଷୟର ଯେ ମୂଲ୍ୟ ରହିଛି ଏହାକୁ ମଧ୍ୟ ଆରିଷ୍ଟୋଟଲ ଗ୍ରହଣ କରିଛନ୍ତି । ଅର୍ଥ, ସ୍ୱାସ୍ଥ୍ୟ, ସୁଖଶାନ୍ତି ଇତ୍ୟାଦିର ମଧ୍ୟ ଜୀବନରେ ମୂଲ୍ୟ ରହିଛି । କେତେକ ବିଷୟର ସ୍ୱତଃ ମୂଲ୍ୟ ରହିଛି ଓ ଅନ୍ୟ କିଛିର ସାଧନ ମୂଲ୍ୟ ରହିଛି । ଯାହାର ସାଧନ ମୂଲ୍ୟ ରହିଛି ତାହା ବି ଜୀବନ ପାଇଁ ବହୁ ଗୁରୁତ୍ୱ ରଖେ ବୋଲି ଆରିଷ୍ଟୋଟଲ ଭାବିଛନ୍ତି । ଅପରପକ୍ଷରେ ଷ୍ଟୋଇକମାନେ କେବଳ ସ୍ୱତଃମୂଲ୍ୟ ଥିବା ସଦ୍‌ଗୁଣକୁ ପ୍ରାଧାନ୍ୟ ଦେଇଛନ୍ତି । ଷ୍ଟୋଇକମାନେ ସଦ୍‌ଗୁଣକୁ କେବଳ ଉତ୍ତମ ଭାବିଛନ୍ତି ଓ ଅସଦ୍‌ଗୁଣ ବା ପାପ (vice) କୁ ଅଶୁଭ ଭାବେ ନେଇଛନ୍ତି । ସଦ୍‌ଗୁଣକୁ ସେମାନେ ଏକମାତ୍ର ଉତ୍ତମ ବିଷୟ ଓ ଅସଦ୍‌ଗୁଣକୁ ଏକମାତ୍ର ଅଶୁଭ ଭାବରେ ନେଇଛନ୍ତି । ପରିଣାମତଃ ସଦ୍‌ଗୁଣମାନଙ୍କ ଭିତରେ କୌଣସି ମାତ୍ରାଗତ ବା ପରିମାଣଗତ ପାର୍ଥକ୍ୟକୁ ସ୍ୱୀକାର କରିନାହାନ୍ତି । ସେହିପରି ଯାହା ସବୁ ମନ୍ଦ ସେମାନଙ୍କ ମଧ୍ୟରେ ବି ସେମାନେ କିଛି ମାତ୍ରାଗତ ଭିନ୍ନତା ଥିବା ବିଷୟକୁ ମାନି ନାହାନ୍ତି । ସଦ୍‌ଗୁଣ ବା ଅସଦ୍‌ଗୁଣ ଓ ଭଲ ବା ମନ୍ଦ ମଧ୍ୟରେ ଯେ ମାତ୍ରା ଗତ (degree) ପାର୍ଥକ୍ୟ ରହିପାରେ ଏହା ଷ୍ଟୋଇକମାନେ ବିଚାର ସ୍ତରକୁ ଆଣି ନାହାନ୍ତି ।

ଷ୍ଟୋଇକମାନେ ଯେଉଁପରି ଭାବରେ ସଦ୍‌ଗୁଣର ବ୍ୟାଖ୍ୟା କରିଛନ୍ତି ସେଥିରେ ବିଭିନ୍ନ ପ୍ରହେଳିକା ସଂଶ୍ଳିଷ୍ଟ କରାଇଛନ୍ତି । ସଦ୍‌ଗୁଣକୁ ସେମାନେ ବିଚାରବୁଦ୍ଧି ଉପରେ ପ୍ରତିଷ୍ଠା କରିବା ଭିତରେ ମତ ଦେଇଛନ୍ତି ଯେ ଏହା ଜ୍ଞାନର ଆଧାର ଉପରେ ବିକଶିତ ହୋଇଛି । ବିଜ୍ଞାନ, ଭୌତିକଶାସ୍ତ୍ର, ତର୍କଶାସ୍ତ୍ର ଇତ୍ୟାଦି ଜ୍ଞାନର ଆଧାର ଉପରେ ବିକଶିତ ହୋଇଛନ୍ତି । ତେବେ ସେମାନଙ୍କର ସ୍ୱତଃ-ମୂଲ୍ୟ ନାହିଁ, ପରନ୍ତୁ ସେମାନଙ୍କର ନୈତିକତା ପରିପ୍ରେକ୍ଷୀରେ ମୂଲ୍ୟ ରହିଛି । ଷ୍ଟୋଇକମାନେ ସମସ୍ତ ସଦ୍‌ଗୁଣ ମଧ୍ୟରେ ଯାହାକୁ ସର୍ବଶ୍ରେଷ୍ଠ ମୂଲ୍ୟ ଦେଇଛନ୍ତି ତାହା ହେଉଛି ପ୍ରଜ୍ଞା (wisdom) । ସମସ୍ତ ସଦ୍‌ଗୁଣ ମଧ୍ୟରେ ସବୁଠାରୁ ପ୍ରଧାନ ଗୁଣ ହେଲା ପ୍ରଜ୍ଞା । ସୁତରାଂ ଜଣେ ପ୍ରଜ୍ଞାବାନ ବ୍ୟକ୍ତି ହିଁ ସବୁଠାରୁ ଉତ୍ତମ ବ୍ୟକ୍ତି । ପ୍ରଜ୍ଞା ଓ ଉତ୍ତମତାକୁ ସେମାନେ ସମାର୍ଥବୋଧକ ଭାବେ ଗ୍ରହଣ କରିଛନ୍ତି । ପ୍ରଜ୍ଞାକୁ ସଦ୍‌ଗୁଣର ମୂଳ ଭାବରେ ନେଇ ସେଥିରୁ ଅନ୍ୟ ଚାରୋଟି ସଦ୍‌ଗୁଣକୁ ସେମାନେ ନିଷ୍ପନ୍ନ କରାଇଛନ୍ତି । ସଦ୍‌ଗୁଣ ପ୍ରଜ୍ଞାରୁ ଅନ୍ୟ ସଦ୍‌ଗୁଣ ଅନ୍ତର୍ଦୃଷ୍ଟି, ନିର୍ଭୀକତା, ଆତ୍ମସଂଯମତା ଓ ନ୍ୟାୟର ନିଷ୍ପନ୍ନ ହୋଇଥାଏ ବୋଲି ସେମାନେ ସୂଚାଇଛନ୍ତି । ଯେହେତୁ ସମସ୍ତ ସଦ୍‌ଗୁଣମାନଙ୍କର ଉତ୍ସ ହେଉଛି ପ୍ରଜ୍ଞା, ଯେ ପ୍ରଜ୍ଞାର ଅଧିକାରୀ ସେ ସକଳ ସଦ୍‌ଗୁଣର ବି ଅଧିକାରୀ । ଯାହା ପାଖରେ ପ୍ରଜ୍ଞା ନାହିଁ ତାହା ପାଖରେ ଅନ୍ୟ କୌଣସି ସଦ୍‌ଗୁଣ ନାହିଁ ବୋଲି ଷ୍ଟୋଇକମାନେ ଭାବିଛନ୍ତି । ଏହି ଦୃଷ୍ଟିରୁ ଜଣେ ସଦ୍‌ଗୁଣର ଅଧିକାରୀ ହୋଇପାରନ୍ତି କିମ୍ବା ଏହାର ଅଧିକାରୀ ହୋଇନପାରନ୍ତି । ପ୍ରଜ୍ଞାବାନ ବ୍ୟକ୍ତି ସକଳ ସଦ୍‌ଗୁଣର ଅଧିକାରୀ ଓ ପ୍ରଜ୍ଞାହୀନ ବ୍ୟକ୍ତ କୌଣସି ସଦ୍‌ଗୁଣର ଅଧିକାରୀ ନୁହନ୍ତି । ସଂସାରର ସବୁ ମନୁଷ୍ୟଙ୍କୁ ସେମାନେ ଦୁଇ ଶ୍ରେଣୀରେ ବିଭକ୍ତ କରିଛନ୍ତି ଯଥା ପ୍ରଜ୍ଞାବାନ ବା ନିର୍ବୋଧ । ପ୍ରଜ୍ଞାବାନ ଲୋକମାନେ ଉତ୍ତମ ଓ ନିର୍ବୋଧ ଲୋକମାନେ ମନ୍ଦ । ପ୍ରଜ୍ଞାବାନ ଓ ନିର୍ବୋଧ ତଥା ଉତ୍ତମ ଓ ମନ୍ଦ ମଧ୍ୟରେ କୌଣସି ତୃତୀୟ ଶ୍ରେଣୀ ରହିପାରିବ ନାହିଁ । ତେବେ କ୍ରମବିକାଶ ଧାରାରେ ଅଧମରୁ ଉତ୍ତମ କିମ୍ବା ମନ୍ଦରୁ ଭଲ ହେବାର ସମ୍ଭାବନାକୁ ସେମାନେ ଅସ୍ୱୀକାର କରିଛନ୍ତି । ଯଦି ବି କେଉଁଠି ରୂପାନ୍ତର ହୁଏ ତାହା ତତ୍‌କ୍ଷଣାତ ହୋଇଥାଏ, କିନ୍ତୁ ବିକାଶ ପ୍ରକ୍ରିୟାରେ ହୋଇନଥାଏ । ଜଣେ ପ୍ରଜ୍ଞାବାନ ବ୍ୟକ୍ତି ସ୍ୱୟଂସଂପୂର୍ଣ୍ଣ, ମୁକ୍ତ, ସୁନ୍ଦର ଓ ସକଳ ସୁଖ ଓ ବିଭବର ଅଧିକାରୀ । ଜଣେ ନିର୍ବୋଧ ବ୍ୟକ୍ତି ସକଳ ପାପ, ଦୁର୍ଭାଗ୍ୟ ଓ ଦୁର୍ଯ୍ୟୋଗକୁ ସାମ୍ନା କରିଥାଏ । ଜଣେ ପ୍ରଜ୍ଞାବାନ ବ୍ୟକ୍ତି ଶାସକ, ରାଷ୍ଟ୍ରନୀତିଜ୍ଞ, ବାଗ୍ମୀ, ଲେଖକ ହୋଇପାରନ୍ତି । ସେ ସକଳ ଉତ୍ତମ ସ୍ୱଭାବ ବିଶିଷ୍ଟ । ତାଙ୍କର ବିପରୀତ ହେଉଛନ୍ତି ନିର୍ବୋଧ ବ୍ୟକ୍ତି । ଜଣେ ବ୍ୟକ୍ତି ହୁଏତ ପ୍ରଜ୍ଞାବାନ ହୋଇପାରନ୍ତି କିମ୍ବା ନିର୍ବୋଧ ହୋଇପାରନ୍ତି । ପ୍ରଜ୍ଞା ଓ ନିର୍ବୋଧତା ପରସ୍ପରର ବିପରୀତ ଓ ସେମାନେ ଦ୍ୱିକୋଟିକ । ସେମାନଙ୍କ ମଧ୍ୟରେ ଅନ୍ୟ କିଛି ସମ୍ଭାବନାକୁ ସେମାନେ ଅସ୍ୱୀକାର କରିଛନ୍ତି । ସମାଜରେ ପ୍ରଜ୍ଞାବାନ ଲୋକମାନଙ୍କର ସଂଖ୍ୟା ଖୁବ୍ ସୀମିତ । ସେମାନଙ୍କର ସଂଖ୍ୟା ମଧ୍ୟ ହ୍ରାସ ହୋଇଚାଲିଛି । ଏହିପରି ସମାଜକୁ ସେମାନେ ନକାରାତ୍ମକ ଭାବରେ ବ୍ୟକ୍ତ କରିଛନ୍ତି ଓ ଅଧିକାଂଶ ଲୋକଙ୍କୁ ନିର୍ବୋଧ, ଅଜ୍ଞ ଓ ଜ୍ଞାନରହିତ ବୋଲି ଦର୍ଶାଇଛନ୍ତି ।

ମାନବିକ ସ୍ୱରୂପ ସଂପର୍କରେ ଏକ ତୁଚ୍ଛତାବାଦ (cynicism) ର ଚିତ୍ର ଏଠାରେ ଦେଖିବାକୁ ମିଳିଥାଏ । ଜୀବନ ସମ୍ବନ୍ଧରେ ଷ୍ଟୋଇକମାନେ ଯେଉଁ କଠିନ ମାନଦଣ୍ଡର ଅବତାରଣା କରିଛନ୍ତି ସେଥିରୁ ଏହିପରି ଏକ

ସିଦ୍ଧାନ୍ତ ଉତ୍ପନ୍ନ ହେବ ଯେ ମଣିଷମାନେ ନିର୍ବୋଧ । ତେବେ ଷ୍ଟୋଇକମାନେ ପରେ ତାଙ୍କ ମତରେ କିଛି ପରିବର୍ତ୍ତନ ଆଣିଛନ୍ତି । ମାନବୀୟ ପ୍ରବୃତ୍ତିର ସଂପୂର୍ଣ୍ଣ ଦମନ ପାଇଁ ସେମାନେ ଯେଉଁ ମତର ଅବତାରଣା କରିଥିଲେ ସେଥିରେ ଥିବା କଠୋରତାକୁ ହ୍ରାସ କରିଛନ୍ତି । ମନୁଷ୍ୟ ଭିତରେ ରହିଥିବା ଆବେଗର ଦମନ ବା ବିଲୋପ ସମ୍ଭବ ନୁହେଁ । ତେଣୁ ଯେଉଁ ଆବେଗ ବା ପ୍ରବୃତ୍ତି ସୁନ୍ଦର ତାହାକୁ ରକ୍ଷାକରିବାରେ କ୍ଷତି ନାହିଁ । ଯେଉଁ ଆବେଗ ଯୁକ୍ତିସଂଗତ ତାହାକୁ ପ୍ରଶ୍ରୟ ଦିଆଯାଇ ଅନ୍ୟ ଆବେଗ ମାନଙ୍କୁ ପୂରା ନିୟନ୍ତ୍ରଣ କରାଯିବା ଆବଶ୍ୟକ । ଜଣେ ପ୍ରାଜ୍ଞ ବ୍ୟକ୍ତି ନିଜର ଅନ୍ୟ ଆବେଗମାନଙ୍କୁ ଏପରି ନିୟନ୍ତ୍ରଣ କରନ୍ତି ଯେ ସେସବୁ କେବେ ହେଲେ ବ୍ୟକ୍ତି ଭିତରେ ବିକଶିତ ହେବେ ନାହିଁ । ସେହିପରି ସକଳ ମାନବୀୟ କାର୍ଯ୍ୟ, ଚିନ୍ତା ଓ ସ୍ୱରୂପକୁ ସେମାନେ ସଦ୍‌ଗୁଣ କିମ୍ବା ପାପ ଭିତରେ ଯେଉଁ ସୀମିତ କରିଥିଲେ ସେହି ଭାବନାରେ ମଧ୍ୟ ପରିବର୍ତ୍ତନ ଆଣିଛନ୍ତି । ସଦ୍‌ଗୁଣ ବ୍ୟତୀତ ଅନ୍ୟ ସବୁକିଛିକୁ ସେମାନେ ମନ୍ଦ, ପାପ ଓ ଅଯୌକ୍ତିକ ବୋଲି ପ୍ରଥମେ ଗ୍ରହଣ କରୁଥିଲେ । ପରେ ଏହି ବିଚାରରେ ପରିବର୍ତ୍ତନ କରି କହିଲେ ଯେ ସଦ୍‌ଗୁଣ ବାହାରେ ରହିଥିବା ଗୁଣମାନଙ୍କ ମଧ୍ୟରୁ କେତେକକୁ ଗ୍ରହଣ କରାଯାଇପାରେ । ସୁସ୍ଥତା ଓ ଅସୁସ୍ଥତା ମଧ୍ୟରୁ ସୁସ୍ଥତାକୁ ବିଜ୍ଞଜନ ଗ୍ରହଣ କରିବେ । ସଦ୍‌ଗୁଣ ବାହାରେ ଯେତେ ସବୁ ଲକ୍ଷଣ ଜୀବନ ସହିତ ସଂପୃକ୍ତ ସମସ୍ତଙ୍କୁ ପ୍ରତ୍ୟାଖ୍ୟାନ କରିବା ଯଥାର୍ଥ ନୁହେଁ ବୋଲି ସେମାନେ ପରବର୍ତ୍ତୀ ସୋପାନରେ ମତ ପରିବର୍ତ୍ତନ କରିଛନ୍ତି । ଏ ମଧ୍ୟରୁ କେତେକକୁ ଜୀବନ ପାଇଁ ଦରକାର ବୋଲି ଗ୍ରହଣ କରାଯାଇପାରେ, କେତେକକୁ ପରିତ୍ୟାଗ କରିବା ବିଜ୍ଞତାର କାର୍ଯ୍ୟ ମନେହୁଏ । ଯାହା ସଦ୍‌ଗୁଣ ନୁହେଁ ତାହା ଯେ ପରିତ୍ୟଜ୍ୟ ଏହି ଭାବଧାରାକୁ ପରିବର୍ତ୍ତନ କରି ଜୀବନ ପାଇଁ ମୂଲ୍ୟ ରଖୁଥିବା ଗୁଣକୁ ଗ୍ରହଣ କରିବାକୁ ବିଚାର କରିଛନ୍ତି । ସେହପରି ସେମାନେ ମନୁଷ୍ୟମାନଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରି ସେମାନଙ୍କୁ ପ୍ରାଜ୍ଞ ବା ନିର୍ବୋଧ ବୋଲି ଯେଉଁ ଭାବନା ପୋଷଣ କରୁଥିଲେ ସେଥିରେ ମଧ୍ୟ ପରିବର୍ତ୍ତନ ଆଣିଛନ୍ତି । ଇତିହାସର ଅନେକ ରାଷ୍ଟ୍ରନୀତିଜ୍ଞ, ଶାସକ ପ୍ରାଜ୍ଞ ନୁହନ୍ତି, ସେମାନେ ମାନବିକ ଦୋଷ ଦୁର୍ବଳତାର ଅଧିକାରୀ । ତେବେ ସାଧାରଣ ଜନତାଙ୍କ ଠାରୁ ସେମାନେ ଯେ କୁଶଳୀ ଓ କମ୍ ଦୁର୍ବଳତାର ବାହକ ଏହା ମନେହୁଏ । ତେଣୁ ଷ୍ଟୋଇକମାନେ ପ୍ରଥମରେ ଯାହା ଭାବିଥିଲେ ଯେ ଯେଉଁମାନେ ପ୍ରାଜ୍ଞ ନୁହନ୍ତି ସେମାନେ ସଦ୍‌ଗୁଣର ଅଧିକାରୀ ନୁହନ୍ତି ଓ ସେମାନେ ଅବୋଧ ତାହା ଯଥାର୍ଥ ନୁହେଁ । ସମାଜରେ ଖୁବ୍ କମ୍ ବ୍ୟକ୍ତି ପ୍ରାଜ୍ଞ ହୋଇପାରନ୍ତି ତେବେ ଅନ୍ୟମାନେ ଯେ ଉତ୍ତମ ବ୍ୟକ୍ତି ନୁହନ୍ତି ଏହା କହିବା ସଂଗତ ମନେହୁଏ ନାହିଁ । ବିଜ୍ଞତା, ପରିପୂର୍ଣ୍ଣତା ଇତ୍ୟାଦିର ଏକ ଚରମ ମାନଦଣ୍ଡ ସ୍ଥିରକରିବା ସମ୍ଭବ ନୁହେଁ ।

ଷ୍ଟୋଇକ ମାନଙ୍କ ବିଷୟରେ ପ୍ରଶ୍ନ ଉଠିପାରେ- ସେମାନେ ସଦ୍‌ଗୁଣର ଯେଉଁ ମାନଦଣ୍ଡ ଦେଉଛନ୍ତି ସେମାନଙ୍କ ନିଜସ୍ୱ ମାନଦଣ୍ଡରେ ସେମାନେ କେଉଁ ଶ୍ରେଣୀରେ ଆସିବେ ? ସେମାନେ ନିଜକୁ ପରିପୂର୍ଣ୍ଣ ବୋଲି ମନେ କରୁଛନ୍ତି କି ? ସକ୍ରେଟିସ୍ ଓ ଡାଓଜିନିସ୍ ଯେଉଁ ସ୍ତରର ବ୍ୟକ୍ତି ଥିଲେ ନିଜେ ସେହି ସ୍ତରର ମନୁଷ୍ୟ ବୋଲି ସେମାନେ ମଧ୍ୟ ଆଶଙ୍କା ବ୍ୟକ୍ତ କରିଛନ୍ତି । ତେବେ ସେମାନଙ୍କ ମଧ୍ୟରେ ଓ ସମାଜର ସାଧାରଣ ଲୋକଙ୍କ ମଧ୍ୟରେ ଯେ ପାର୍ଥକ୍ୟ ନାହିଁ, ଏହା କୁହାଯାଇ ନପାରେ । ସେମାନେ ନିପୁଣତାର ଅଧିକାରୀ ଓ ବେଶ୍ ପାରଦର୍ଶୀ ବ୍ୟକ୍ତି

ହୋଇପାରନ୍ତି, ତେବେ ସେମାନେ ଯେ ସଂପୂର୍ଣ୍ଣ ପ୍ରାଜ୍ଞ ଏହା କୁହାଯାଇ ପାରିବ ନାହିଁ । ପ୍ରଜ୍ଞାର ଏକ ସାର୍ବଜନୀନ ମାନଦଣ୍ଡର କିପରି ନିରୂପଣ କରାଯିବ ? ଜଣେ ନିଜ ସମୟର ବେଶ୍ ବୁଦ୍ଧିମାନ ବ୍ୟକ୍ତି ହୋଇପାରନ୍ତି, ତେବେ ସେ ଯେ ଜଣେ ପରିପୂର୍ଣ୍ଣ ବ୍ୟକ୍ତି ବା ପ୍ରାଜ୍ଞ ବ୍ୟକ୍ତି ଏହା କହିବା ଯଥାର୍ଥ ମନେହୁଏ ନାହିଁ । ଷ୍ଟୋଇକମାନେ ନୈତିକ ସଦ୍‌ଗୁଣ ବିଷୟରେ ଯେଉଁ ପରମ ମାନଦଣ୍ଡ ବ୍ୟକ୍ତ କରିଥିଲେ ତାହାର ଅବାସ୍ତବତାକୁ ଉପଲବ୍ଧି କରି ସେମାନଙ୍କ ବିଚାରରେ କିଛି ପରିବର୍ତ୍ତନ ଆଣିଛନ୍ତି । ତେଣୁ ଏ କ୍ଷେତ୍ରରେ ସେମାନଙ୍କ ବିଚାରରେ ଅସଂହତି ସ୍ଥାନ ପାଇଛି । ଏକ ଜଟିଳ ମାନଦଣ୍ଡର ଅବତାରଣା କରିବା ଓ ବାସ୍ତବତା ସହ ତାହାର ତୁଳନାକରି ସେଥିରେ ଆବଶ୍ୟକୀୟ ପରିବର୍ତ୍ତନ ଆଣିବା ଫଳରେ ସେମାନଙ୍କ ସିଦ୍ଧାନ୍ତ କ୍ଷେତ୍ରରେ ଦୁର୍ବଳତା ବ୍ୟକ୍ତ ହୋଇଛି ।

ଷ୍ଟୋଇକମାନଙ୍କୁ କେତେକ "ସିନିକ" ବୋଲି ଅଭିହିତ ମଧ୍ୟ କରିଛନ୍ତି । ସେମାନଙ୍କ ସିନିସିଜମ୍ କ୍ଷେତ୍ରରେ ଅନେକ ଦୁର୍ବଳତା ମଧ୍ୟ ରହିଛି । ସେମାନଙ୍କ ଭୌତିକ ସିଦ୍ଧାନ୍ତ ଓ ନୈତିକ ସିଦ୍ଧାନ୍ତ କ୍ଷେତ୍ରରେ ବହୁ ଦୁର୍ବଳତା ରହିଛି । ତେବେ ଗୋଟିଏ ପ୍ରସଙ୍ଗ ଉପରେ ସେମାନଙ୍କ ବିଚାର କ୍ଷେତ୍ରରେ କିଛି ମୌଳିକତା ପ୍ରକାଶ ପାଇଛି । ଯେଉଁ କ୍ଷେତ୍ରରେ ସେମାନଙ୍କର ମୌଳିକତା ବ୍ୟକ୍ତ ହୋଇଛି ତାହା ହେଲା ବିଶ୍ୱଜନୀନବାଦ (cosmopolitanism) । ଏହି ବିଶ୍ୱଜନନୀବାଦ ବା ବିଶ୍ୱବନ୍ଧୁତ୍ୱବାଦ ଚିନ୍ତାରାଜ୍ୟକୁ ସେମାନଙ୍କର ଏକ ବଳିଷ୍ଠ ଅବଦାନ । ବିଶ୍ୱଜନୀନବାଦ ସିଦ୍ଧାନ୍ତର ଦୁଇଟି ଆଧାର ସେମାନଙ୍କ ବିଚାର କ୍ଷେତ୍ରରେ ବିଦ୍ୟମାନ । ପ୍ରଥମରେ ସେମାନେ ବିଚାର କରିଛନ୍ତି ଯେ ଏହି ବିଶ୍ୱ ଏକକ ସତ୍ତା (ଦିବ୍ୟ-ଅଗ୍ନି ବା ଈଶ୍ୱର) ରୁ ଉଦ୍‌ଭବ ହୋଇଛି । ଏହା ଏକକ ନିୟମଦ୍ୱାରା ପରିଚାଳିତ ବା ଉତ୍ତମ ଭାବେ ସୁବ୍ୟବସ୍ଥିତ । ଦ୍ୱିତୀୟରେ ମନୁଷ୍ୟମାନଙ୍କ ପାଖରେ ଯାହା କିଛି ପାର୍ଥକ୍ୟ ରହିଥିଲେ ମଧ୍ୟ ମୌଳିକତଃ ସେମାନେ ସ୍ୱରୂପରେ ବିଚାରଶୀଳ । ବିଚାରଶୀଳତା ସବୁ ମନୁଷ୍ୟଙ୍କ ପ୍ରକୃତିରେ ସନ୍ନିହିତ ରହିଛି । ସବୁ ମନୁଷ୍ୟ ବିଚାରଶୀଳ ଓ ସବୁ ମନୁଷ୍ୟ ଏକ ସୁସଂହତ ଈଶ୍ୱରକୈନ୍ଦ୍ରିକ ବିଶ୍ୱର ଅଧିବାସୀ । ସୁତରାଂ ପରସ୍ପର ସଂଘର୍ଷରତ ରାଷ୍ଟ୍ରର ସ୍ଥିତି ଅଯୌକ୍ତିକ ଓ ଅନିଷ୍ଟକାରୀ । ପ୍ରଜ୍ଞାବାନ ବ୍ୟକ୍ତିମାନେ କୌଣସି ରାଷ୍ଟ୍ରର ନାଗରିକ ନୁହନ୍ତି, ସେମାନେ ବିଶ୍ୱର ନାଗରିକ । ଏକ ବିଶ୍ୱ, ଏକ ମାନବଜାତିର ପରିକଳ୍ପନାରୁ ସେମାନଙ୍କ ବିଶ୍ୱଜନୀନବାଦର ଚିତ୍ର ମିଳିଥାଏ ।

ଏକ ପ୍ରକାରର ସିନିସିଜମ୍‌ରୁ ଏକ କସ୍ମୋପଲିଟାନିଜମ୍‌ର ଚିତ୍ର ଆଙ୍କିବା ଭିତରେ ଷ୍ଟୋଇକମାନଙ୍କର କେତେକ ମହତ୍ତ୍ୱ ରହିଛି । ପ୍ରଥମରେ ସେମାନେ ଆରିଷ୍ଟୋଟଲଙ୍କ ସହ ଏକମତ ଯେ ମନୁଷ୍ୟ ଏକ ସାମାଜିକ ପ୍ରାଣୀ । ସମାଜରେ ରହିବା ହେଉଛି ଆମ ବିଚାରଶୀଳତାର ନିର୍ଦ୍ଦେଶ (Dictate of reason) । ତେଣୁ ଯେଉଁ କ୍ଷେତ୍ରରେ ପରସ୍ପର ମଧ୍ୟରେ ସଂଘର୍ଷ ବା ଦ୍ୱନ୍ଦ୍ୱର ପରିବେଶ ରହିଛି ତାହାକୁ ପରିତ୍ୟାଗ କରିବା ଯଥାର୍ଥ ମନେହୁଏ । ମନୁଷ୍ୟ ପାଇଁ ଯେଉଁ ବିଶ୍ୱଜନୀନବାଦର ପରିକଳ୍ପନା ଷ୍ଟୋଇକମାନେ କରିଛନ୍ତି ତାହା ପଶ୍ଚାତରେ ରହିଛି ଏକ ମାନବୀୟ ମୌଳିକ ଆବେଗ । ସେହି ଆବେଗ ହେଉଛି ସ୍ୱପ୍ରୀତି ଓ ସ୍ୱସୁରକ୍ଷା । ଏହି ଭାବନା ପ୍ରସାରିତ ହୋଇଛି ପରିବାର, ବନ୍ଧୁତା ଓ ସମଗ୍ର ମନୁଷ୍ୟ ସମାଜ ପ୍ରତି । କୋପ୍ଲେଷ୍ଟୋନ ଏହି ପ୍ରସଙ୍ଗରେ ଲେଖିଛନ୍ତି– "The Stoic Cosmopolitanism was founded in the fundamental instinct or tendency of self-preservation

or self-love. In the first place, of course, this instinctive tendency to self-preservation shows itself in the form of self-love, i.e. the individual's self-love.But it extends beyond self-love in the narrow sense to embrace all that belongs to the individual, family, friends, fellow-citizens and, finally, the whole of humanity. (ପୃଷ୍ଠା-୪୦୦)

ତେବେ ଏହା ଏକ ପ୍ରାକୃତିକ ଘଟଣା ଯେ ବ୍ୟକ୍ତି ସହ ଯାହା ଘନିଷ୍ଠ ତାହା ପ୍ରତି ଜଣଙ୍କର ଯେଉଁ ପ୍ରୀତି ଓ ଆନ୍ତରିକତା ରହେ ତାହା ବୃହତ୍ତର ସମ୍ବନ୍ଧ କ୍ଷେତ୍ରରେ ହ୍ରାସ ହୋଇଚାଲେ । ଜଣେ ନିଜ ପରିବାର, ଗୋଷ୍ଠୀ, ଗ୍ରାମ ସହିତ ଯେତିକି ଆନ୍ତରିକତାର ସହ ଘନିଷ୍ଠ ରହେ ତାହା ଯେତେ ଯେନେ ବୃହତ୍ତର ଗୋଷ୍ଠୀ ବା ସମାଜ ଆଡକୁ ପ୍ରସାରିତ ହୁଏ ଜଣଙ୍କର ଆନ୍ତରିକତା କ୍ଷେତ୍ରରେ ତାହା ସେହି ଅନୁପାତରେ ହ୍ରାସ ହୋଇଚାଲେ । ନିଜର ନିକଟତମ ସଂପର୍କୀୟ ମାନଙ୍କ ପ୍ରତି ଯେଉଁ ସହୃଦୟତା ରହେ ଦୂରତମ ସମାଜ ପ୍ରତି ତାହା କମ୍ ରହିବା ସ୍ୱାଭାବିକ ମନେହୁଏ । ଏଣୁ ନୈତିକ ଆଦର୍ଶର ମହତ୍ତ୍ୱ ହେଉଛି ବ୍ୟକ୍ତିର ସମ୍ବନ୍ଧ ନିକଟତମ ଲୋକଙ୍କ ପାଖରେ ଯେଉଁ ପ୍ରଗାଢ଼ତାରେ ପ୍ରକାଶ ପାଏ ସମଗ୍ର ମନୁଷ୍ୟ ସମାଜ ପ୍ରତି ଯେପରି ସେହି ପ୍ରଗାଢ଼ତା ପ୍ରକାଶ ପାଇବ ତାହାକୁ ଗୁରୁତ୍ୱ ଦେବା । ଷ୍ଟୋଇକ ଦାର୍ଶନିକମାନେ ବ୍ୟକ୍ତିର ନୈତିକ କର୍ତ୍ତବ୍ୟକୁ ଏକ ବୃହତ୍ତର ସମାଜ ଓ ଏପରିକି ସମୁଦାୟ ମାନବ ସମାଜ ପ୍ରତି ପ୍ରସାରିତ କରିଛନ୍ତି । ଏହା ହିଁ ତାଙ୍କ ବିଶ୍ୱଜନୀନବାଦର ମହତ୍ତ୍ୱ ।

ତେବେ ଷ୍ଟୋଇକମାନେ ଯେଉଁ ସବୁ ବିଚାରର ଅବତାରଣା କରିଛନ୍ତି ସେସବୁ ଭାବଧାରର ପରିପ୍ରକାଶ ସେମାନଙ୍କ ପୂର୍ବରୁ ଗ୍ରୀକ୍ ଦର୍ଶନରେ ଅନେକାଂଶରେ ବ୍ୟକ୍ତ ହୋଇଛି । ଭୌତିକ ବିଜ୍ଞାନ ହେଉ କିମ୍ବା ନୀତିଶାସ୍ତ୍ର ହେଉ ପୂର୍ବରୁ ଚିନ୍ତାରାଜ୍ୟକୁ ଆସିଥିବା ଭାବନାମାନଙ୍କୁ ସଂଯୋଜିତ କରି ଷ୍ଟୋଇକମାନେ ପ୍ରକାଶ କରିଛନ୍ତି । ତେବେ କେତେକ କ୍ଷେତ୍ରରେ ସେମାନେ ଅତି ସଙ୍କୁଚିତ, ପକ୍ଷପାତମୂଳକ ଓ ଚରମ ମତର ଅବତାରଣା କରିଛନ୍ତି । ଏସବୁ ଦୁର୍ବଳତା ସତ୍ତ୍ୱେ ସେମାନେ କର୍ତ୍ତବ୍ୟ ଓ ନୈତିକ ଶୃଙ୍ଖଳା କ୍ଷେତ୍ରରେ କେତେକ ଆଦର୍ଶକୁ ମହତ୍ତ୍ୱ ଦେଇଛନ୍ତି । ନିମ୍ନତର ଲକ୍ଷ୍ୟ ଅପେକ୍ଷା ବୃହତ୍ତର ଲକ୍ଷ୍ୟ ଯେ ଜୀବନର ଶ୍ରେୟ ହେବା ଆବଶ୍ୟକ ଏହାର କିଛି ନୂତନ ଦିଗନ୍ତ ଦେଖାଇଛନ୍ତି ।

ଷ୍ଟୋଇକ ବିଚାରଧାରା ଉଭୟ ଗ୍ରୀସ୍ ଓ ରୋମରେ କିଛି ଶତାବ୍ଦୀ ଧରି ପ୍ରଚଳିତ ରହିଛି ଓ ସାମାଜିକ ଚେତନାକୁ ଗଭୀର ଭାବେ ପ୍ରଭାବିତ କରିଛି । ସେ ସମୟର ବିଭିନ୍ନ ବୁଦ୍ଧିଜୀବୀମାନେ ଏହି ଭାବଧାରା ସହ ସଂଶ୍ଳିଷ୍ଟ ହୋଇ ଏହାର ବ୍ୟାଖ୍ୟା କ୍ଷେତ୍ରରେ ନୂତନତାର ପରିଚୟ ଦେଇଛନ୍ତି ।

## ୯.୩　ଏପିକ୍ୟୁରୀୟବାଦ (Epicureanism)

ଏପିକ୍ୟୁରୀୟବାଦ ଦାର୍ଶନିକ ସିଦ୍ଧାନ୍ତର ପ୍ରତିଷ୍ଠାତା ହେଉଛନ୍ତି ଏପିକୁରସ (Epicurus) । ତାଙ୍କର ଜନ୍ମ ସାମୋସଠାରେ ଖ୍ରୀ.ପୂ. ୩୪୨ କିମ୍ବା ୩୪୧ ରେ ହୋଇଥିଲା । ତାଙ୍କ ଜନ୍ମକୁ କେତେକ ଐତିହାସିକ ଖ୍ରୀ.ପୂ.

୩୪୨ ବୋଲି ଉଲ୍ଲେଖ କରିଥିବା ବେଳେ ଅନ୍ୟ କେତେକ ଏହାକୁ ଖ୍ରୀ.ପୂ. ୩୪୧ ବୋଲି ଦର୍ଶାଇଛନ୍ତି । ତାଙ୍କୁ ଅଠର ବର୍ଷ ବେଳେ ସେ ଏଥେନ୍‌ସ ଆସିଥିବା ଜଣାଯାଏ । ସେ କିଛି ଦିନ ମିଲିଟାରୀ ଚାକିରିରେ ଯୋଗ ଦେଇଥିଲେ । ଏଠାରେ କିଛି ବର୍ଷ ରହି ସେ ବିଭିନ୍ନ ସ୍ଥାନକୁ ଭ୍ରମଣରେ ଯାଇ ଶେଷରେ ଏଥେନ୍‌ସ ଫେରିଆସିଥିଲେ । ଖ୍ରୀ.ପୂ. ୩୦୬ ରେ ସେ ଏକ ଅନୁଷ୍ଠାନ ନିଜ ଘରେ ସ୍ଥାପନ କରି ସେଠାରେ ଦାର୍ଶନିକ ଚର୍ଚ୍ଚାରେ ସଂପୃକ୍ତ ହୋଇଥିଲେ । ସେ ତାଙ୍କ ବିଚାରକୁ ନେଇ ଯେଉଁ ଦାର୍ଶନିକ ସଂପ୍ରଦାୟ ପ୍ରତିଷ୍ଠା କରିଥିଲେ ତାହାକୁ ଏପିକୁରୀୟବାଦ କୁହାଯାଏ । ପରେ ସେ ତାଙ୍କର ଗୃହ ଓ ବଗିଚାକୁ ତାଙ୍କ ଶିକ୍ଷାନୁଷ୍ଠାନକୁ ଦାନ କରି ଦେଇଥିଲେ । ସେ ଏଥେନ୍‌ସରେ ବହୁ ସମ୍ମାନନୀୟ ବ୍ୟକ୍ତି ଭାବରେ ସମସ୍ତଙ୍କର ଶ୍ରଦ୍ଧାର ପାତ୍ର ଥିଲେ । ସେ ଉଚ୍ଚକୋଟିର ଲେଖକ ଥିଲେ ଓ ପ୍ରାୟ ତିନି ଶହ ପୁସ୍ତକ ରଚନା କରିଥିଲେ । ତେବେ ପରିତାପର ବିଷୟ ତାଙ୍କର ସବୁ ଲେଖା ପ୍ରାୟ ନଷ୍ଟ ହୋଇଯାଇଛି । ତାଙ୍କର ସ୍ୱଳ୍ପ ଲେଖା, କେତେକ ଚିଠି ଓ ତାଙ୍କ ବିଷୟରେ ଲେଖା ଯାଇଥିବା କେତେକ ଲେଖାରୁ ତାଙ୍କ ବିଷୟରେ ଯାହା କିଛି ସୂଚନା ମିଳେ ।

ଯେଉଁ ସମୟରେ ଜିନୋ ତାଙ୍କ ଅନୁଷ୍ଠାନ ଗଠନ କରିଥିଲେ ତାର ବର୍ଷେ ଦୁଇ ବର୍ଷ ପୂର୍ବରୁ ଏପିକୁରସ ତାଙ୍କ ଶିକ୍ଷାନୁଷ୍ଠାନ ସ୍ଥାପନ କରିଥିଲେ । ଏହି ଦୁଇ ଶିକ୍ଷାନୁଷ୍ଠାନ ଏକ ସମୟରେ ଏଥେନ୍‌ସରେ ରହି ଜ୍ଞାନ ଚର୍ଚ୍ଚାର କେନ୍ଦ୍ର ପାଲଟିଥିଲା । ପ୍ରାୟ ଛ' ଶତାବ୍ଦୀ ଧରି ତାଙ୍କ ଶିକ୍ଷାନୁଷ୍ଠାନ ପରିଚାଳିତ ହୋଇଥିବା ଜଣାଯାଏ ।

ଏପିକୁରସ ଡେମୋକ୍ରିଟସଙ୍କ ଭାବଧାରା ସହିତ ପରିଚିତ ହେବାର ସୁଯୋଗ ପାଇଥିଲେ ଓ ତାଙ୍କ ଦାର୍ଶନିକ ଭାବଧାରା ଦ୍ୱାରା ମଧ୍ୟ ଅନୁପ୍ରାଣିତ ହୋଇଥିଲେ । ଏପିକୁରସଙ୍କ ପରେ ତାଙ୍କର ଛାତ୍ରମାନେ ତାଙ୍କ ଶିକ୍ଷାନୁଷ୍ଠାନ ପରିଚାଳନା କରିଥିଲେ ଓ ଗୁରୁଙ୍କର ବିଚାରର ଚର୍ଚ୍ଚା ଜାରି ରଖିଥିଲେ । ବହୁ ଶତାବ୍ଦୀ ଧରି ଏପିକୁରସ୍ ଗ୍ରୀସ୍ ଓ ରୋମରେ ଦାର୍ଶନିକ ଭାବରେ ପରିଚିତ ଥିଲେ । ଯେଉଁମାନେ ତାଙ୍କ ବିଚାରଧାରା ଦ୍ୱାରା ଅନୁପ୍ରାଣିତ ହୋଇଥିଲେ ସେମାନେ ଏପିକୁରୀୟ ଭାବରେ ପରିଚିତ ହେଉଥିଲେ ।

ଷ୍ଟୋଇକମାନଙ୍କ ପରି ଏପିକୁରସ ତାଙ୍କ ଦାର୍ଶନିକ ଭାବଧାରାକୁ ତିନି ଶ୍ରେଣୀରେ ବିଭକ୍ତ କରିଥିଲେ ଯଥା ତର୍କଶାସ୍ତ୍ର, ଭୌତିକଶାସ୍ତ୍ର ଓ ନୀତିଶାସ୍ତ୍ର । ତର୍କଶାସ୍ତ୍ର ଓ ଭୌତିକ ଶାସ୍ତ୍ର ଉପରେ ସେ ପ୍ରାଧାନ୍ୟ ଦେଉନଥିଲେ । ଯେଉଁ ଜ୍ଞାନ କେବଳ ବୌଦ୍ଧିକ କୌତୂହଳତା ପାଇଁ ଉଦ୍ଦିଷ୍ଟ ତାହା ଉପରେ ତାଙ୍କର ବିଶେଷ ଆଗ୍ରହ ନଥିଲା । ବରଂ ଯେଉଁ ଜ୍ଞାନ ଜୀବନ ପାଇଁ ଉପଯୋଗୀ ତାହା ଉପରେ ସେ ଗୁରୁତ୍ୱ ଦେଉଥିଲେ । ଗାଣିତିକ ଜ୍ଞାନ ପରି ବିଷୟ ଉପରେ ତାଙ୍କର ବିଶେଷ ଆଗ୍ରହ ନଥିଲା । ଏହି ଦୃଷ୍ଟିରୁ ସେ ବ୍ୟାବହାରିକ ଜୀବନ ଉପରେ ପ୍ରାଧାନ୍ୟ ଦେଉଥିଲେ । ଯେଉଁ ଜ୍ଞାନ ଏକ ସୁଖ ଓ ସୁନ୍ଦର ଜୀବନ ବଞ୍ଚିବାରେ ସହାୟକ ହେବ ତାହା ହିଁ ତାଙ୍କ ଦୃଷ୍ଟିରେ ମହତ୍ତ୍ୱପୂର୍ଣ୍ଣ ଥିଲା । ଏପିକୁରୀୟ ଦର୍ଶନର ତିନୋଟି କ୍ଷେତ୍ର ଉପରେ ଆମେ ଏଠାରେ ଆଲୋଚନା କରିବା ।

### ତର୍କଶାସ୍ତ୍ର

ଏପିକୁରସ ଦ୍ୱନ୍ଦ୍ୱନ୍ୟାୟ ବା ତର୍କଶାସ୍ତ୍ର ଉପରେ ସେପରି ଆଗ୍ରହୀ ନଥିଲେ । ତେବେ ସେତେବେଳର ପରିଭାଷାରେ ସେ ଯାହାକୁ Canonic କହୁଥିଲେ ତାହାକୁ ସଂପ୍ରତି ଜ୍ଞାନମୀମାଂସା କୁହାଯାଇପାରେ । କାରଣ ଜ୍ଞାନର ଆଧାର ଓ ସତ୍ୟର ମାନଦଣ୍ଡ ଉପରେ ଏପିକୁରସ କିଛି ବିଚାର ବ୍ୟକ୍ତ କରିଛନ୍ତି । ତର୍କଶାସ୍ତ୍ର ହେଉ ବା ଭୌତିକ ବିଜ୍ଞାନ ହେଉ ସେ ଏହା ଉପରେ ଯେଉଁ ଚର୍ଚ୍ଚା କରିଛନ୍ତି ତାଙ୍କ ନୀତିଶାସ୍ତ୍ର ଉଦ୍ଦେଶ୍ୟରେ ହିଁ କରିଛନ୍ତି । ନୀତିଶାସ୍ତ୍ରକୁ ପ୍ରାଧାନ୍ୟ ଦେଇଛନ୍ତି କାରଣ ତାହା ସମାଜ ପାଇଁ ଉପଯୋଗୀ ଓ ଏକ ସୁଖମୟ ଜୀବନ ଧାରଣ ପାଇଁ ତାହା ଅବଶ୍ୟମ୍ଭାବୀ ।

ଏପିକୁରସ ସକଳ ବସ୍ତୁନିଷ୍ଠ ଜ୍ଞାନର ଆଧାର ଭାବରେ ଆମର ପ୍ରତ୍ୟକ୍ଷ ଜନିତ ସମ୍ବେଦନକୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦେଇଛନ୍ତି । ଆମେ ଆମର ଇନ୍ଦ୍ରିୟ ସାହାଯ୍ୟରେ ବାହ୍ୟ ଜଗତକୁ ପ୍ରତ୍ୟକ୍ଷ କରିଥାଏ । ସକଳ ପ୍ରତ୍ୟକ୍ଷ ଜନିତ ଜ୍ଞାନ ଯଥାର୍ଥ ଓ ବାସ୍ତବ । ଆମର ଇନ୍ଦ୍ରିୟଦ୍ୱାରା ଆମେ ଯେପରି ସମ୍ବେଦନ ଲାଭ କରିଥାଏ, ତାହାହିଁ ବାସ୍ତବ । ଇନ୍ଦ୍ରିୟ ସାହାଯ୍ୟରେ ଆମେ ଯାହା ସମ୍ବେଦନ ପାଇଥାଏ, ଆମର ବୁଦ୍ଧି ତାହା ଉପରେ କାର୍ଯ୍ୟକରେ । ଆମର ଇନ୍ଦ୍ରିୟ ପ୍ରତିଭାତ (sense-data) ଉପାଦାନ ଉପରେ ଆମର ବିଚାରବୁଦ୍ଧି କାର୍ଯ୍ୟ କରିଥାଏ ବୋଲି ଆମେ ଭାବିଥାଉ । ତେବେ ଏପିକୁରସଙ୍କ ମତରେ ଆମର ବିଚାର ମଧ୍ୟ ଆମ ପ୍ରତ୍ୟକ୍ଷର ଆଧାର ଉପରେ ଗଢ଼ି ଉଠିଥାଏ । ଯଦି ଆମର ପ୍ରତ୍ୟକ୍ଷ ଭ୍ରମାତ୍ମକ ଉପାଦାନ ଦେବ ତେବେ ଆମର ବିଚାର ମଧ୍ୟ ଭ୍ରମାତ୍ମକ ହେବ । ତେଣୁ ସବୁକିଛି ଆମ ପ୍ରତ୍ୟକ୍ଷ ଉପରେ ନିର୍ଭର କରିଥାଏ । ପ୍ରତ୍ୟକ୍ଷ ହିଁ ସକଳ ଜ୍ଞାନର ମୂଳ ଭିତ୍ତି । ପ୍ରତ୍ୟକ୍ଷ ବାସ୍ତବ ଜଗତର ଚିତ୍ର ଦିଏ, ଏହା ଆଭାସ ଦିଏ ନାହିଁ । ଦେଖିକରି, ଶୁଣିକରି, ସ୍ପର୍ଶକରି,ଘ୍ରାଣକରି ଓ ଚାଖିକରି ଆମେ ବାହ୍ୟ ଜଗତ ବିଷୟରେ ଜାଣିବାକୁ ସମର୍ଥ ହୋଇଥାଏ । ଏହା ମାଧ୍ୟମରେ ଆମେ ଯେଉଁ ସମ୍ବେଦନ ଲାଭ କରିଥାଏ ସେଥିରୁ ବାସ୍ତବ ଜଗତର ଚିତ୍ର ପାଇଥାଏ । ଆଧୁନିକ କାଳରେ ପ୍ରତ୍ୟକ୍ଷବାଦର ବିକାଶ ପୂର୍ବରୁ ଏପିକୁରସ ପ୍ରତ୍ୟକ୍ଷବାଦର ବଡ ପ୍ରବକ୍ତା ରହିଥିବା ମନେହୁଏ ।

ତେବେ ଏଠାରେ ପ୍ରଶ୍ନ ଆସେ ଯଦି ଆମର ସକଳ ପ୍ରତ୍ୟକ୍ଷ ଯଥାର୍ଥ ଓ ବାସ୍ତବ ଅଟେ, ତେବେ ଆମର ଭ୍ରମ ପ୍ରତ୍ୟକ୍ଷ କାହିଁକି ହୁଏ ? କେତେକ ସମ୍ବେଦନ ଅବାସ୍ତବ, ଆଭାସ ଓ ଭ୍ରମର ଚିତ୍ର ଦିଏ ନାହିଁ କି ? ତେଣୁ ସକଳ ପ୍ରତ୍ୟକ୍ଷକୁ କିପରି ବାସ୍ତବ ବୋଲି ଗ୍ରହଣ କରାଯିବ ? ଏ କ୍ଷେତ୍ରରେ ଏପିକୁରସ କହିବେ ଏହା ପ୍ରତ୍ୟକ୍ଷର ଦୋଷ ନୁହେଁ ବରଂ ଏହା ଆମ ନିର୍ଣ୍ଣୟ ବା ବିଚାରର ଭ୍ରମ ଅଟେ । ଆମର କେତେକ ଇନ୍ଦ୍ରିୟ ପ୍ରତ୍ୟକ୍ଷକୁ ଆମର ବୁଦ୍ଧି ଭ୍ରମାତ୍ମକ ଭାବରେ ବ୍ୟାଖ୍ୟା କରୁଥିବାରୁ ଏହା ଆମକୁ ଆଭାସ ଜଣାପଡେ । ପ୍ରତ୍ୟେକ ଅନୁଭୂତି ଆମ ପାଖକୁ ଶୁଦ୍ଧ ଭାବରେ ଆସିଥାଏ, କିନ୍ତୁ ଆମର ବୁଦ୍ଧି ଯଦି ତାହାକୁ ଭ୍ରମାତ୍ମକ ଭାବେ ଚିତ୍ରଣ କରେ, ତେବେ ଆମର ପ୍ରତ୍ୟକ୍ଷ ଭ୍ରମାତ୍ମକ ବୋଲି ଆମେ ଭାବିଥାଉ । ସେହିପରି ଆମର ଅନୁମାନ ବି ଆମକୁ ସମୟରେ ଭ୍ରମାତ୍ମକ ଧାରଣା ଦେଇଥାଏ । ଦୂରରୁ ଜଣେ ବ୍ୟକ୍ତିଙ୍କୁ ଦେଖି ଯଦି ଆମେ ତାଙ୍କୁ ଆମର ବନ୍ଧୁ ବୋଲି କଳ୍ପନା କଲୁ ଓ ତାଙ୍କୁ ନିକଟରେ ଦେଖି ଜାଣିଲୁ ଯେ ସେ ଜଣେ ଅପରିଚିତ ବ୍ୟକ୍ତି ଓ ଆମର ବନ୍ଧୁ ନୁହନ୍ତି, ସେଥିରେ ଆମ ପ୍ରତ୍ୟକ୍ଷର ତ୍ରୁଟି ନାହିଁ ।

ଆମ ପ୍ରତ୍ୟକ୍ଷର କିଛି ଅଂଶକୁ ନେଇ ଆମେ ଯେତେବେଳେ ଅନୁମାନ କରୁ ସେତେବେଳେ ଭ୍ରମ ସୃଷ୍ଟି ହେବାର ସମ୍ଭାବନା ରହିପାରେ । ସୁତରାଂ ଏପକୁରସ ଭ୍ରମାତ୍ମକ ଅନୁଭୂତି କ୍ଷେତ୍ରରେ ନିର୍ଣ୍ଣୟ ଓ ଅନୁମାନ ସଂପୃକ୍ତ ବୋଲି ମତ ଦେଇଛନ୍ତି ।

ଏପିକୁରସଙ୍କ ଅନୁଭବବାଦ କେବଳ ବର୍ତ୍ତମାନ କରାଯାଉଥିବା ପ୍ରତ୍ୟକ୍ଷ ସହ ସଂପୃକ୍ତ ନୁହେଁ । ଅନେକ ବିଷୟ ଅଛି ଯାହାକୁ ପ୍ରତ୍ୟକ୍ଷ କରାଯାଇ ପାରିବ ନାହିଁ । ସେ ବିଷୟରେ କିପରି ଜ୍ଞାନଲାଭ କରାଯାଇ ପାରିବ ? ଅନେକ ଅପ୍ରତ୍ୟକ୍ଷ ବସ୍ତୁମାନଙ୍କୁ ତେବେ କିପରି ଜାଣିହେବ ? ଏ କ୍ଷେତ୍ରରେ ଏପିକୁରସ ବସ୍ତୁମାନଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରିଛନ୍ତି । ଯେଉଁ ବସ୍ତୁମାନଙ୍କୁ ଆମେ ତତ୍‌କ୍ଷଣାତ ପ୍ରତ୍ୟକ୍ଷ କରିପାରୁ ସେ ବିଷୟରେ ଆମେ ଜ୍ଞାନଲାଭ କରିବାରେ ପ୍ରତିବନ୍ଧକ ନାହିଁ । ତେବେ ଯେଉଁ ବସ୍ତୁମାନଙ୍କୁ ପ୍ରତ୍ୟକ୍ଷ କରାଯାଇ ପାରିବ ନାହିଁ ତାହାକୁ ମଧ୍ୟ ବିଭିନ୍ନ ଶ୍ରେଣୀରେ ବିଭାଜନ କରାଯାଇଛି । ଏପରି ବହୁ ବିଷୟ ରହିଛି ଯେଉଁ ବିଷୟରେ ଆମେ ପ୍ରତ୍ୟକ୍ଷ କରିପାରିବା ନାହିଁ ଓ ଏପରିକି ସେମାନଙ୍କ କ୍ଷେତ୍ରରେ ସଠିକ୍ ଅନୁମାନ କରିବା ମଧ୍ୟ ସମ୍ଭବ ନୁହେଁ । ଏହି ସବୁ ବିଷୟରେ ଆମେ ଅନଭିଜ୍ଞ ରହିବାକୁ ବାଧ୍ୟ । ଆକାଶରେ କେତେ ତାରା ରହିଛନ୍ତି ଓ ତାରାମାନଙ୍କର ଆକାର କିପରି ସେ ସମ୍ବନ୍ଧରେ ଆମେ ଜ୍ଞାନଲାଭ କରିପାରିବା ନାହିଁ । ଏପରି କେତେକ ବସ୍ତୁ ରହିଛନ୍ତି ଯେଉଁମାନଙ୍କୁ ଆମେ ପ୍ରତ୍ୟକ୍ଷ କରିପାରିବା ନାହିଁ, କେବଳ ସାଦୃଶ୍ୟ ଅନୁମାନ ଆଧାରରେ ସେହି ବସ୍ତୁମାନଙ୍କ ବିଷୟରେ ଆମେ ଜାଣିବାକୁ ସମର୍ଥ ହୋଇଥାଉ । ପରମାଣୁ, ଇଥର ଇତ୍ୟାଦି ବିଷୟରେ ଆମେ ପ୍ରତ୍ୟକ୍ଷ ଆଧାରରେ ଜାଣିପାରିବା ସମ୍ଭବ ନୁହେଁ । ତେବେ ପ୍ରତ୍ୟେକ ବସ୍ତୁର ଅବିଭାଜ୍ୟ ଅଂଶ ଯେ ପରମାଣୁ ଏହା ଆମେ ସାଦୃଶ୍ୟ ଅନୁମାନ ମାଧ୍ୟମରେ ଜାଣିବାକୁ ସମର୍ଥ ହେବା ସମ୍ଭବ ହୋଇଥାଏ । କେତେକ ବସ୍ତୁମାନଙ୍କୁ ଆମେ ବର୍ତ୍ତମାନର ସ୍ଥିତିରେ ପ୍ରତ୍ୟକ୍ଷ କରିପାରିବା ନାହିଁ, କିନ୍ତୁ ଅନ୍ୟ ସ୍ଥାନ ଓ ସମୟରେ ସେଗୁଡିକ ପ୍ରତ୍ୟକ୍ଷ କରାଯାଇ ପାରିବ । ଓଡିଶାରେ ରହି ହିମାଳୟର ଉଚ୍ଚତମ ଶୃଂଗ ବିଷୟରେ ଆମେ ପ୍ରତ୍ୟକ୍ଷ କରିପାରିବା ନାହିଁ । କିନ୍ତୁ ସେ ସ୍ଥାନକୁ ଗଲେ ଆମେ ତାହାର ପ୍ରତ୍ୟକ୍ଷ କରିପାରିବା । ଏପିକୁରସ ପ୍ରତ୍ୟକ୍ଷକୁ ଜ୍ଞାନର ମୂଳ ଭିତ୍ତି ଭାବରେ ଗ୍ରହଣ କରୁଥିଲେ ମଧ୍ୟ ଅପ୍ରତ୍ୟକ୍ଷ ବସ୍ତୁମାନଙ୍କ ବିଷୟରେ ଏହିପରି କଳ୍ପନା ମାନଙ୍କର ଅବତାରଣା କରିଛନ୍ତି ।

ସତ୍ୟର ମାନଦଣ୍ଡ ବିଷୟରେ ଏପିକୁରସ ମଧ୍ୟ କେତେକ ମାନଦଣ୍ଡର ଅବତାରଣା କରିଛନ୍ତି । କେତେକ ବିଷୟର ସତ୍ୟାସତ୍ୟ ନିରୂପଣ କରିବା ପାଇଁ ପ୍ରତ୍ୟକ୍ଷକୁ ଆଧାର ଭାବରେ ଗ୍ରହଣ କରାଯାଏ । ଦ୍ୱିତୀୟ ମାନଦଣ୍ଡ ସାଧାରଣତଃ ଅପ୍ରତ୍ୟକ୍ଷ ବସ୍ତୁ କ୍ଷେତ୍ରରେ ପ୍ରୟୋଗ ହୋଇପାରେ । ଏହାର ପ୍ରଭାବକୁ ଆଧାର କରି ଆମେ ଏହାର ସତ୍ୟାପନ ନିର୍ଣ୍ଣୟ କରିଥାଏ । ଆମେ ପରମାଣୁକୁ ପ୍ରତ୍ୟକ୍ଷ କରିପାରିବା ନାହିଁ । ତେବେ ସକଳ ବସ୍ତୁର ଅନ୍ତିମ ଅଂଶ ଯେ ପରମାଣୁ ଏହା କୌଣସି ବସ୍ତୁର ଉପସ୍ଥିତିରୁ ଆମର ଭାବନା ସ୍ତରକୁ ଆସିଥାଏ । ଯେଉଁ କ୍ଷେତ୍ରରେ ପ୍ରତ୍ୟକ୍ଷ ସମ୍ବେଦନ ସମ୍ଭବପର ନୁହେଁ, ସେଠାରେ ପରୋକ୍ଷ ସମ୍ବେଦନ ଆଧାରରେ ବା ପ୍ରଭାବକୁ ପ୍ରତ୍ୟକ୍ଷକରି କିଛି ବିଷୟର ସତ୍ୟାପନ କରାଯାଇପାରେ । ଏକ ତୃତୀୟ ମାନଦଣ୍ଡ ଅନ୍ୟ କ୍ଷେତ୍ରରେ ପ୍ରୟୋଗ କରାଯାଇ ପାରିବ । ଯେଉଁ

କ୍ଷେତ୍ରରେ ସୁଖକର ଅନୁଭୂତି ମିଳିଥାଏ ସେଥିରୁ ପ୍ରମାଣ ମିଳେ ଯେ ତାହା ଆମ ପାଇଁ ଉପଯୋଗୀ । ଯେଉଁ କ୍ଷେତ୍ରରେ ଏକ କଷ୍ଟକର ଅନୁଭୂତି ମିଳେ ତାହା ଆମ ପାଇଁ ଉପଯୋଗୀ ନୁହେଁ । କୌଣସି ବିଷୟର ସତ୍ୟାସତ୍ୟ ନିରୂପଣ କ୍ଷେତ୍ରରେ ସେଥିରୁ ଆମେ କେଉଁ ପ୍ରକାରର ଅନୁଭୂତି ଲାଭ କରୁଛେ ତାହାରି ଆଧାରରେ ଆମେ ଏକ ନିର୍ଣ୍ଣୟକୁ ଆସିପାରିବା ବୋଲି ଏପିକୁରସ ବିଚାର କରିଛନ୍ତି । ପ୍ରତ୍ୟକ୍ଷ ମାଧ୍ୟମରେ, କିଛିର ପ୍ରଭାବ ଆଧାରରେ ଓ କେତେକ କ୍ଷେତ୍ରରେ ଆମର ଆବେଗିକ ଅନୁଭୂତି ଧାରାରେ ସତ୍ୟା-ସତ୍ୟର ନିରୂପଣ କରାଯାଇପାରେ । ମୋଟ ଉପରେ ସେ ତାଙ୍କର ତର୍କଶାସ୍ତ୍ରରେ ଦୁଇଟି ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଉପରେ ଚର୍ଚ୍ଚା କରିଛନ୍ତି ଯଥା ଜ୍ଞାନର ଆଧାର କ'ଣ ଓ ସତ୍ୟର ମାନଦଣ୍ଡ କ'ଣ । ଏହି ପ୍ରଶ୍ନ ଉପରେ ତାଙ୍କର ଆଲୋଚନାକୁ ସେ ତର୍କଶାସ୍ତ୍ର (canonic) କହିଛନ୍ତି, ଯାହାକୁ ସାଂପ୍ରତିକ ପରିଭାଷାରେ ତାଙ୍କର ଜ୍ଞାନମୀମାଂସା କୁହାଯାଇପାରେ ।

## ଭୌତିକ ବିଜ୍ଞାନ

ଏପିକୁରସ ଏକ ବ୍ୟାବହାରିକ ଉଦ୍ଦେଶ୍ୟରେ ତାଙ୍କର ଭୌତିକ ବିଜ୍ଞାନର ପରିକଳ୍ପନା କରିଛନ୍ତି । ମନୁଷ୍ୟ ସମାଜରୁ କୁସଂସ୍କାର ଓ ଭୟର ମାନସିକତାକୁ ଦୂର କରିବାକୁ ସେ ଏହି ବିଚାର ଦେଇଛନ୍ତି । ସକଳ ଅତିପ୍ରାକୃତିକ ସତ୍ତା ଓ ମୃତ୍ୟୁପରର ସ୍ଥିତି ନେଇ ସମାଜରେ ଅନେକ ଭୟର ବାତାବରଣ ରହିଛି । ବ୍ୟକ୍ତିର ମୃତ୍ୟୁପରେ ତାହାର ଆତ୍ମା ରହିଛି ଓ ଆତ୍ମା ଯେଉଁ ପ୍ରକାରର ଯନ୍ତ୍ରଣା ପାଏ ଏହି ସବୁ କାହାଣୀମାନ ମନୁଷ୍ୟ ମନରେ ବହୁତ ଭୟ ସଂଚାର କରିବା ସେ ଅନୁଭବ କରିଛନ୍ତି । ମନୁଷ୍ୟମାନେ ଈଶ୍ୱର, ଯମପୁର, ନରକ ଇତ୍ୟାଦି ଅନେକ ବିଶ୍ୱାସରୁ ବହୁତ ଭୟ ପାଉଛନ୍ତି ଓ ମୃତ୍ୟୁ ନେଇ ଅନେକ ଭୟ କରୁଛନ୍ତି । ଏହି ପ୍ରକାରର ଭୟକୁ ମନୁଷ୍ୟ ମନରୁ ଦୂର କରିପାରିଲେ ସମାଜରୁ ଅନେକ ଅଶାନ୍ତି ମଧ୍ୟ ଦୂର ହୋଇପାରିବ ବୋଲି ସେ ଭାବିଛନ୍ତି । ଏହି ସବୁ ଅହେତୁକ ଭୟ ଓ ଆଧାରହୀନ ବିଶ୍ୱାସ ମାନଙ୍କୁ ଦୂର କରିପାରିଲେ ସମାଜରୁ ଅନେକ ଦୁଃଖର ଦୂରୀକରଣ ହୋଇପାରିବ । ସେତେବେଳର ଗ୍ରୀକ୍ ସମାଜରେ ରହିଥିବା ଅନେକ ଧାର୍ମିକ ବିଶ୍ୱାସ, ସ୍ୱର୍ଗ, ନରକ, ଯମଦଣ୍ଡ ଇତ୍ୟାଦି ଭାବନାରୁ ଲୋକମାନଙ୍କୁ ମୁକ୍ତ କରିବା ପାଇଁ ଏପିକୁରସ ପରିକଳ୍ପନା କରିଛନ୍ତି । ଗୁଡିଏ କାଳ୍ପନିକ ବିଶ୍ୱାସ ମନୁଷ୍ୟ ମନରୁ ଦୂର କରାଯାଇ ପାରିଲେ ଲୋକମାନେ ଅଧିକ ଜୀବନଧର୍ମୀ ହେବେ ଓ ଶାନ୍ତିରେ ଭୟମୁକ୍ତ ହୋଇ ରହିବେ, ଏହି ଭାବନାରୁ ସେ ତାଙ୍କର ଭୌତିକ ବିଜ୍ଞାନ ସମ୍ବନ୍ଧୀୟ କିଛି ବିଚାର ଦେଇଛନ୍ତି ।

ଏହି ପୃଷ୍ଠଭୂମିରେ ଏପିକୁରସ ବିଚାର କରିଛନ୍ତି ଯେ ପ୍ରକୃତିର ସକଳ ଘଟଣା ଓ ବ୍ୟବସ୍ଥା କେବଳ ପ୍ରାକୃତିକ କାରଣ ଓ ଶୃଂଖଳା ଦ୍ୱାରା ପରିଚାଳିତ ହେଉଛି । ଜଗତର କୌଣସି ଘଟଣାକୁ କେହି ଅତିପ୍ରାକୃତିକ ଶକ୍ତି ବା ସତ୍ତା ପ୍ରଭାବିତ କରୁନାହିଁ କିମ୍ବା ନିୟନ୍ତ୍ରଣ କରୁନାହିଁ । ପ୍ରକୃତିର ସବୁ କିଛି ଯାନ୍ତ୍ରିକ ପ୍ରକ୍ରିୟାରେ ପ୍ରାକୃତିକ କାରଣଦ୍ୱାରା ପରିଚାଳିତ ହେଉଛି । ଜଗତ ସହିତ କୌଣସି ଅତିପ୍ରାକୃତିକ ସତ୍ତାର କିଛି ସମ୍ବନ୍ଧ ହିଁ ନାହିଁ । ମନୁଷ୍ୟ କୌଣସି ଧାର୍ମିକ ଉପଚାର ବା ବିଶ୍ୱାସ ଦ୍ୱାରା ଭୟ ପାଇବାର କିଛି କାରଣ ନାହିଁ । ସେ ବରଂ ଭୟଶୂନ୍ୟ ହୋଇ ଏକ ସୁଖପ୍ରଦ ଜୀବନ ବଞ୍ଚିବାକୁ ପ୍ରୟାସ କରିବା ଦରକାର । ମନୁଷ୍ୟ ପାଖରେ ସ୍ୱାଧୀନ ଇଚ୍ଛା ବା ସଂକଳ୍ପ ରହିଛି ।

ମନୁଷ୍ୟ ତାର ନିଷ୍ପତ୍ତି କ୍ଷେତ୍ରରେ ସ୍ୱାଧୀନ । ତାର ଭବିଷ୍ୟତ ବା ଭାଗ୍ୟକୁ କେହି ନିୟନ୍ତ୍ରଣ କରୁ ନାହିଁ । ଏପିକୁରୀୟ ମାନଙ୍କର ବିଚାର ଷ୍ଟୋଇକମାନଙ୍କର ବିଚାରଠାରୁ ସଂପୂର୍ଣ୍ଣ ଭିନ୍ନ । ମନୁଷ୍ୟ ପାଖରେ ସ୍ୱାଧୀନ ଇଚ୍ଛା (feee will) ରହିଛି । ସେ କୌଣସି ପରିସ୍ଥିତିରେ କ'ଣ କରିବ ସେହି ନିଷ୍ପତ୍ତି ତା ଉପରେ ନିର୍ଭର କରିଥାଏ । ତେବେ ନିଜର ସ୍ୱାଧୀନ ଇଚ୍ଛାକୁ କେତେ ଭଲ ଦିଗରେ ସେ ପ୍ରୟୋଗ କରିବ ତାହାହିଁ ଦର୍ଶନ ମାଧ୍ୟମରେ ଜଣେ ସଚେତନ ହୋଇପାରିବ ।

ନିଜ ଭାବଧାରା ଓ ବିଶ୍ୱାସକୁ ଏକ ଦାର୍ଶନିକ ଆଧାର ଦେବା କ୍ଷେତ୍ରରେ ଏପିକୁରସ ସେପରି ମୌଳିକତା ପ୍ରଦର୍ଶନ କରିନାହାନ୍ତି । ବରଂ ଗ୍ରୀକ୍ ଭାବଧାରାରେ ଏହିପରି ଏକ ଦାର୍ଶନିକ ତତ୍ତ୍ୱ ସେ ଡେମୋକ୍ରିଟସଙ୍କ ପାଖରୁ ଲାଭ କରିଛନ୍ତି । ଡେମୋକ୍ରିଟସଙ୍କର ଦାର୍ଶନିକ ସିଦ୍ଧାନ୍ତ ଏପିକୁରସଙ୍କର ଭାବନା ଓ ଲକ୍ଷ୍ୟ ପାଇଁ ବେଶ୍ ଉପଯୋଗୀ ହୋଇଛି । ଏପିକୁରସ ଡେମୋକ୍ରିଟସଙ୍କ ଦର୍ଶନକୁ ଆଧାର ଭାବରେ ଗ୍ରହଣ କରିଛନ୍ତି । ତାଙ୍କର ଭାବନା ଓ ବିଶ୍ୱାସକୁ ନିଜସ୍ୱ ଅମୂର୍ତ୍ତୀୟ ତତ୍ତ୍ୱ ଆଧାରରେ ପ୍ରତିଷ୍ଠା କରିନାହାନ୍ତି । ଏକ ଅମୂର୍ତ୍ତୀୟ ତତ୍ତ୍ୱ କାଳ୍ପନିକ ହେଉ ବା ଯୁକ୍ତିସଂଗତ ହେଉ ଦାର୍ଶନିକ ଭାବଧାରାକୁ ଋଦ୍ଧିମନ୍ତ କରିଥାଏ । ତେବେ ନିଜର ବିଶ୍ୱାସ ବା ବିଚାରକୁ ଭିତ୍ତି ଦେବାରେ ଏପିକୁରସ ଡେମୋକ୍ରିଟସଙ୍କ ଦର୍ଶନକୁ ଆଧାର ଭାବରେ ଗ୍ରହଣ କରିଛନ୍ତି । ଡେମୋକ୍ରିଟସ ଏକ ପରମାଣୁବାଦର ପରିକଳ୍ପନା କରି ତାହାରି ଆଧାରରେ ଜଗତ୍‌ର ବ୍ୟାଖ୍ୟା କରିଥିଲେ । ଜଗତରେ ଯାହା କିଛି ରହିଛି ପ୍ରତ୍ୟେକ ବସ୍ତୁ ପରମାଣୁମାନଙ୍କ ଦ୍ୱାରା ଉଦ୍ଭବ ହୋଇଛି । ପରମାଣୁମାନ ଅବିଭାଜ୍ୟ ଓ ଅପରିବର୍ତ୍ତନୀୟ ସତ୍ତା । ସକଳ ବସ୍ତୁ ପରମାଣୁମାନଙ୍କର ସଂଯୋଗରୁ ସମ୍ଭବ ହୋଇଛି । ତେବେ ଡେମୋକ୍ରିଟସ ଓ ଏପିକୁରସ ପରମାଣୁକୁ ଜଗତର ମୂଳ ସତ୍ତା ଭାବେ ନେଉଥିଲେ ମଧ୍ୟ ସେମାନଙ୍କ ବିଚାର କ୍ଷେତ୍ରରେ କେତେକ ପାର୍ଥକ୍ୟ ରହିଛି ।

ଏପିକୁରସଙ୍କ ମତରେ ପରମାଣୁମାନଙ୍କ ମଧ୍ୟରେ କୌଣସି ଗୁଣାତ୍ମକ ପାର୍ଥକ୍ୟ ନାହିଁ । ପରମାଣୁମାନଙ୍କ ମଧ୍ୟରେ କେବଳ ଆକାର ଓ ଓଜନ କ୍ଷେତ୍ରରେ ଯାହା ପାର୍ଥକ୍ୟ ରହିଛି । ପରମାଣୁମାନଙ୍କ କ୍ଷେତ୍ରରେ ଆକାର, ବିସ୍ତାର ଓ ଓଜନକୁ ସ୍ୱୀକାର କରିବା ସହିତ ଏପିକୁରସ ଗତିକୁ ମଧ୍ୟ ସ୍ୱୀକାର କରୁଛନ୍ତି । ପରମାଣୁ ଓ ଗତି ସେମାନଙ୍କ ଦର୍ଶନର ଦୁଇ ମୂଳ ତତ୍ତ୍ୱ । ଜଗତରେ ଯେଉଁ ପରିବର୍ତ୍ତନ ଦୃଶ୍ୟମାନ ହୁଏ ତାହା ପରମାଣୁ ମାନଙ୍କର ଗତିର କାରଣ ଅଟେ । ପରମାଣୁ ମାନଙ୍କର ଗତି ବିଷୟ ନେଇ ଡେମୋକ୍ରିଟସ ଓ ଏପିକୁରସଙ୍କ ମଧ୍ୟରେ ପାର୍ଥକ୍ୟ ରହିଛି । ଡେମୋକ୍ରିଟସ ପରମାଣୁ ମାନଙ୍କର ଚକ୍ରୀକ ଗତିରେ ବିଶ୍ୱାସ କରୁଥିବା ବେଳେ ଏପିକୁରସଙ୍କ ମତରେ ପରମାଣୁମାନ ଲମ୍ବ ଭାବରେ ଶୂନ୍ୟ ଆକାଶରେ ନିମ୍ନକୁ ଗତି କରିଥାନ୍ତି । ପରମାଣୁମାନଙ୍କର ସଂଖ୍ୟା ଅସୀମ ଓ ସେମାନେ ଅବିଭାଜ୍ୟ । ମହାଶୂନ୍ୟରେ କେବଳ ପରିମାଣୁ ରହିଥିଲେ । ସେମାନେ ମହାଶୂନ୍ୟରେ ଲମ୍ବ ଭାବରେ ନିମ୍ନଗାମୀ ହେବା ପ୍ରକ୍ରିୟାରେ ପରସ୍ପରସହ ସଂଘାତ ହୋଇ ମିଶ୍ରିତ ହେଲେ । ସେହି ମିଶ୍ରଣ ଦ୍ୱାରା ଜଗତରେ ବିବିଧତା ସୃଷ୍ଟି ହେଲା । ଜଗତର ଉତ୍ପତ୍ତି, ବିକାଶ, ପରିବର୍ତ୍ତନ ଓ ଏପରିକି ବିନାଶ କେବଳ ପରମାଣୁ ମାନଙ୍କର ସଂଯୋଗ ଓ ବିଯୋଗର ପରିଣାମ । ଜଗତରେ ଯେଉଁ ବିବିଧତା ଦୃଶ୍ୟମାନ ହୁଏ ତାହାର କାରଣ ହେଉଛି

ପରମାଣୁ ମାନଙ୍କର ବିସ୍ତାର, ଆକାର ଓ ପାରସ୍ପରିକ ସମ୍ବନ୍ଧ । ପରମାଣୁ ମାନଙ୍କର ଆକାର, ବିସ୍ତାର, ଓଜନ ଓ ପାରସ୍ପରିକ ସମ୍ବନ୍ଧର ଭିନ୍ନତା ଯୋଗୁଁ ଏ ବିବିଧତା ପୂର୍ଣ୍ଣ ଜଗତ ସମ୍ଭବ ହୋଇଛି । ଏପିକୁରସ ଏହି ସଂଯୋଗ ପ୍ରକ୍ରିୟାକୁ ଅନନ୍ତ ବୋଲି ବିଚାର କରିଛନ୍ତି । ପରମାଣୁ ମାନଙ୍କର ଗତିଶୀଳତା, ସଂଘାତ ଓ ସଂଯୋଗ କାରଣରୁ ଜଗତର ଉତ୍ପତ୍ତି ସମ୍ଭବ ହୋଇଛି । କେବଳ ଜଗତ ନୁହେଁ ପ୍ରତ୍ୟେକ ବିଶେଷ ଘଟଣା ଏହି ପ୍ରକ୍ରିୟାର ପରିଣାମ ।

ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଏପିକୁରସ ଜଗତର କେବଳ ଏକ ଯାନ୍ତ୍ରିକ ବ୍ୟାଖ୍ୟା ପ୍ରଦାନ କରିଛନ୍ତି । ସବୁ କିଛି ପଶ୍ଚାତରେ କେବଳ ପ୍ରାକୃତିକ ନିୟମ ଯାନ୍ତ୍ରିକ ପ୍ରକ୍ରିୟାରେ କାର୍ଯ୍ୟ କରୁଛି । ଏଣୁ ଏପିକୁରୀୟ ମାନେ ଉଦ୍ଦେଶ୍ୟବାଦ ବା ପ୍ରୟୋଜନବାଦକୁ ଅସ୍ୱୀକାର କରିଛନ୍ତି । ସେହିପରି ଡେମୋକ୍ରିଟସଙ୍କର ନିୟତତତ୍ତ୍ୱବାଦକୁ ଏପିକୁରସ ମଧ୍ୟ ଗ୍ରହଣ କରିନାହାନ୍ତି । ଏପିକୁରସଙ୍କ ବିଚାରରେ ଯାନ୍ତ୍ରିକବାଦ ଓ ସ୍ୱାତନ୍ତ୍ର୍ୟ (freedom) ପ୍ରାଧାନ୍ୟ ପାଇଛି । ଯାନ୍ତ୍ରିକବାଦକୁ ଗ୍ରହଣ କରି ଏପିକୁରସ ଅତିପ୍ରାକୃତିକ ବିଚାରକୁ ମଧ୍ୟ ଅସ୍ୱୀକାର କରିଛନ୍ତି । ଏପିକୁରୀୟ ମତର ଅନ୍ୟ ଏକ ମୌଳିକତା ହେଉଛି ଯେ ସେମାନେ ଆମ ଜଗତ ବାହାରେ ବହୁ ଜଗତ ଥାଇପାରେ ବୋଲି ଭାବିଛନ୍ତି । ବ୍ରହ୍ମାଣ୍ଡରେ ଅସଂଖ୍ୟ ଓ ସୀମାତୀତ ପରମାଣୁମାନ ରହିଛନ୍ତି । ଅନନ୍ତ ପରମାଣୁରୁ ଆମ ସଂସାର ପରି ଅନ୍ୟାନ୍ୟ ସଂସାର ମଧ୍ୟ ସମ୍ଭବ ବୋଲି ସେମାନେ ପରିକଳ୍ପନା କରିଛନ୍ତି ।

ଏପିକୁରସ ଯାନ୍ତ୍ରିକବାଦକୁ ଜୀବିତ ପ୍ରାଣୀ ଓ ମନୁଷ୍ୟ ପ୍ରତି ମଧ୍ୟ ପ୍ରୟୋଗ କରିଛନ୍ତି । ବ୍ୟକ୍ତିର ଆତ୍ମା ମଧ୍ୟ ପରମାଣୁର ସମଷ୍ଟିରେ ରୂପ ନେଇଛି । ବ୍ୟକ୍ତିର ମୃତ୍ୟୁପରେ ଆତ୍ମାର ପରମାଣୁମାନ ପୃଥକ୍ ହୋଇଯାନ୍ତି । ସୁତରାଂ ଆତ୍ମାର କୌଣସି ସଚେତନ ଅସ୍ତିତ୍ୱ ରହେ ନାହିଁ । ଆତ୍ମାର ଅସ୍ତିତ୍ୱ ବା ପୁନର୍ଜନ୍ମବାଦକୁ ଏପିକୁରୀୟମାନେ ସ୍ୱୀକାର କରି ନାହାନ୍ତି । ସୁତରାଂ ମୃତ୍ୟୁପର ସ୍ଥିତି ଓ ଦୁଃଖକୁ ସେମାନେ ଅବାନ୍ତର ମନେ କରିଛନ୍ତି । ମୃତ୍ୟୁକୁ ସେମାନେ ଅଶୁଭ ବା ଇଭିଲ ବୋଲି ଗ୍ରହଣ କରନ୍ତି ନାହିଁ । ବ୍ୟକ୍ତି ଥିବା ପର୍ଯ୍ୟନ୍ତ ମୃତ୍ୟୁ ନାହିଁ, ମୃତ୍ୟୁରେ ବ୍ୟକ୍ତି ନାହିଁ । If death is, we are not, if we are, death is not. ତେବେ ଏପିକୁରସ ମନୁଷ୍ୟ ଆତ୍ମାର ପରମାଣୁକୁ ସ୍ୱତନ୍ତ୍ର ଭାବିଛନ୍ତି । ମନୁଷ୍ୟ ଆତ୍ମା ଯେଉଁ ପରିମାଣରେ ଉଦ୍‌ଭବ ସେହି ପରମାଣୁ ପଶୁମାନଙ୍କ ପାଖରେ ନାହିଁ । ମନୁଷ୍ୟ ଆତ୍ମାର ପରମାଣୁ ଭିତରେ ଏକ ବିଚାର ଅଂଶ ରହିଛି ଯାହା ମନୁଷ୍ୟର ହୃଦୟରେ ଅବସ୍ଥାନ କରେ । ଆତ୍ମାର ଅବୈଚାରିକ ଅଂଶ (irrational part) ଟି ସମଗ୍ର ଶରୀରରେ ବ୍ୟାପ୍ତ ହୋଇରହେ । ମୃତ୍ୟୁରେ ଆତ୍ମାର ସକଳ ପରମାଣୁ ପୃଥକ୍ ହୋଇଯାନ୍ତି । ମୃତ୍ୟୁଦ୍ୱାରା ବ୍ୟକ୍ତିର ସଚେତନ ଅସ୍ତିତ୍ୱ ବିଲୁପ୍ତ ହୋଇଥାଏ ।

ମୃତ୍ୟୁପରେ ବ୍ୟକ୍ତିର ସଚେତନ ଅସ୍ତିତ୍ୱ ଲୋପ ପାଉଥିବାରୁ ମୃତ୍ୟୁପରେ ବ୍ୟକ୍ତି ଦଣ୍ଡପାଇବା ଅବାନ୍ତର ମନେହୁଏ । କୌଣସି ଈଶ୍ୱର ବ୍ୟକ୍ତିକୁ ଦଣ୍ଡ ଦିଅନ୍ତି ନାହିଁ କିମ୍ବା ବ୍ୟକ୍ତିର ଜୀବନରେ ହସ୍ତକ୍ଷେପ କରନ୍ତି ନାହିଁ । ଏପିକୁରସଙ୍କ ଏହି ଭାବନା ପରିପ୍ରେକ୍ଷୀରେ ତାଙ୍କୁ ନିରୀଶ୍ୱରବାଦୀ କହିବା ଯଥାର୍ଥ ହେବ କି ? କିନ୍ତୁ ସେ ନିରୀଶ୍ୱରବାଦୀ ନୁହନ୍ତି । ସେ ପରନ୍ତୁ ବହୁ ଈଶ୍ୱରବାଦରେ ବିଶ୍ୱାସ କରିଛନ୍ତି । ଈଶ୍ୱରମାନଙ୍କର ମନୁଷ୍ୟ ଶରୀରର ଆକାର ରହିପାରେ, କାରଣ ସମସ୍ତ ଆକାର ମଧ୍ୟରେ ମନୁଷ୍ୟର ଶାରୀରିକ ଗଠନ ସୁନ୍ଦର ଅଟେ । ସେମାନେ ଏକ୍ ଭିନ୍ନ ଜଗତରେ

ରହନ୍ତି । ତାହାକୁ ନକ୍ଷତ୍ରମାନଙ୍କ ମଧ୍ୟର ଏକ ଜଗତ intersellar space ବୋଲି ସେମାନେ ଅଭିହିତ କରିଛନ୍ତି । ସେହି ଈଶ୍ୱରମାନଙ୍କର ଶରୀର ଆଲୋକ ସଦୃଶ ପଦାର୍ଥମାନଙ୍କରେ ଗଠିତ । ଏହି ଈଶ୍ୱରମାନେ ଖାଦ୍ୟ ଖାନ୍ତି, ପାନୀୟ ନିଅନ୍ତି ଓ ଗ୍ରୀକ୍ ଭାଷାରେ ମତ ବିନିମୟ କରନ୍ତି । ଏପରିକି ସେମାନେ ଯୌନ ଉପଭୋଗ ମଧ୍ୟ କରନ୍ତି । ତେବେ ଏହି ଈଶ୍ୱରମାନେ ସେମାନଙ୍କ ସଂସାରରେ ଏକ ଭିନ୍ନ ସ୍ଥିତିରେ ରହିଛନ୍ତି । ସେମାନେ ଆମ ପୃଥିବୀର କୌଣସି ବ୍ୟାପାରରେ ହସ୍ତକ୍ଷେପ କରନ୍ତି ନାହିଁ । ସେମାନେ ଶାନ୍ତ, ପବିତ୍ର ଓ ଅମର । ଏପିକୁରସ ଏହିପରି ଈଶ୍ୱରମାନଙ୍କର ଏକ ଜଗତର ପରିକଳ୍ପନା କରିବା ଭିତରେ ସେମାନଙ୍କୁ ଆମ ସଂସାର ଠାରୁ ଭିନ୍ନ କରିଛନ୍ତି, କାରଣ ସେମାନଙ୍କର ଆମ ସଂସାରର ମନୁଷ୍ୟ, ପ୍ରାଣୀ ବା ଘଟଣା ସହ କୌଣସି ସମ୍ବନ୍ଧ ହିଁ ନାହିଁ । ଆମେ ଆମ ଦୁନିଆରେ ଓ ଈଶ୍ୱରମାନେ ତାଙ୍କ ଦୁନିଆରେ । ଏହି ଦୁଇ ଦୁନିଆ ମଧ୍ୟରେ କୌଣସି ସମ୍ବନ୍ଧ ବା ସେତୁ ହିଁ ନାହିଁ । ସେମାନେ ପରିପୂର୍ଣ୍ଣ ଆନନ୍ଦ ଭିତରେ ରହିଛନ୍ତି । ପରିପୂର୍ଣ୍ଣ ଆନନ୍ଦ ଭିତରେ ରହିଥିବା ଈଶ୍ୱରମାନେ କାହିଁକି ଆମ ସଂସାରର ସମସ୍ୟା ସହିତ ଜଡ଼ିତ ହେବେ ? ଆମ ସଂସାର ଓ ଈଶ୍ୱରମାନଙ୍କର ସଂସାର ଦୁଇଟି ଭିନ୍ନ ଜଗତ ।

ଷ୍ଟୋଇକମାନେ ଯେପରି ଏକ ପ୍ରୟୋଜନବାଦର ପରିକଳ୍ପନା କରିଛନ୍ତି ଏପିକୁରୀୟମାନେ ସେପରି କରି ନାହାନ୍ତି । ବରଂ ସବୁ କିଛି ଏକ ଯାନ୍ତ୍ରିକ ନିୟମରେ ଯେ ପରିଚାଳିତ ଏହାକୁ ଏପିକୁରୀୟମାନେ ବ୍ୟକ୍ତ କରିଛନ୍ତି । କୌଣସି ମାନବକୈନ୍ଦ୍ରିକ ଉଦ୍ଦେଶ୍ୟବାଦ ଏପିକୁରୀୟ ଭାବଧାରାରେ ସ୍ୱୀକୃତ ହୋଇନାହିଁ । ଏପିକୁରୀୟମାନେ ଡେମୋକ୍ରିଟସଙ୍କର ପରମାଣୁବାଦକୁ ସ୍ୱୀକାର କରିଥିଲେ ମଧ୍ୟ ଡେମୋକ୍ରିଟସଙ୍କର ନିୟତତ୍ତ୍ୱବାଦକୁ ଗ୍ରହଣ କରି ନାହାନ୍ତି । ପରମାଣୁ ମାନଙ୍କରୁ ଜଗତର ଉତ୍ପତ୍ତି କ୍ଷେତ୍ରରେ ସେମାନେ ପ୍ରାକୃତିକ କାରଣ ଜନିତ ଯାନ୍ତ୍ରିକବାଦକୁ ପ୍ରାଧାନ୍ୟ ଦେଇଛନ୍ତି । ତେବେ ସେମାନେ ନିରୀଶ୍ୱରବାଦକୁ ସ୍ୱୀକାର ନକରି ବହୁଈଶ୍ୱରବାଦ ଭାବନାକୁ ଗ୍ରହଣ କରିବା ସେମାନଙ୍କ ସାମଗ୍ରିକ ବିଚାର ସହିତ ସୁସଂହତ ମନେହୁଏ ନାହିଁ । ଏପିକୁରୀୟ ମାନେ ମାନବକୈନ୍ଦ୍ରିକ ଭାବଧାରାରେ ବହୁ ଈଶ୍ୱରଙ୍କୁ ପରିକଳ୍ପନା କରିଛନ୍ତି । ସେମାନେ ବି ପରମାଣୁମାନଙ୍କ ଦ୍ୱାରା ସୃଷ୍ଟି ହୋଇଛନ୍ତି । ଅବଶ୍ୟ ଈଶ୍ୱରମାନେ ଯେଉଁ ପରମାଣୁରୁ ସୃଷ୍ଟି ହୋଇଛନ୍ତି ତାହା ଶୁଦ୍ଧତମ ପରମାଣୁ । ସେମାନେ ଶରୀର ଯୁକ୍ତ, ତେବେ ତାହା ମାନବୀୟ ଶରୀର ନୁହେଁ, ତାହା ଇଥରୀୟ ଶରୀର । ଏହି ଦୃଷ୍ଟିରୁ ଏପିକୁରୀୟ ମାନେ ନିରୀଶ୍ୱରବାଦୀ ନୁହନ୍ତି । ସମ୍ଭବତଃ ନିଜ ସମୟର ସମାଜର ସାର୍ବଜନୀନ ଈଶ୍ୱର ବିଶ୍ୱାସକୁ ସେମାନେ ପ୍ରତ୍ୟାଖ୍ୟାନ କରିନାହାନ୍ତି । ତା ପରିବର୍ତ୍ତେ ସେମାନେ ବହୁଈଶ୍ୱରବାଦର ପରିକଳ୍ପନା କରି ସେମାନଙ୍କୁ ମହାବିଶ୍ୱରେ ଏକ ଭିନ୍ନ ସ୍ଥାନରେ ସ୍ଥାନିତ କରିଛନ୍ତି । ଏଠାରେ ଉଲ୍ଲେଖନୀୟ ବିଷୟ ହେଉଛି ଯେ ଏପିକୁରୀୟମାନେ ମନୁଷ୍ୟ ସମାଜର ଘଟଣା ପ୍ରବାହ ଓ ମାନବୀୟ ଜୀବନଧାରାରୁ ଈଶ୍ୱରଙ୍କୁ ବାହାରେ ରଖିଛନ୍ତି । ସେମାନେ ଆମ ସଂସାର, ଆମର ପ୍ରାକୃତିକ ପରିବେଶ ଓ ଆମ ଜୀବନଧାରା ସହିତ ଆଦୌ ସମ୍ବନ୍ଧିତ ନୁହନ୍ତି । ସେମାନଙ୍କ ସହିତ ଆମ ସଂସାରର କିଛି ହିଁ ସମ୍ବନ୍ଧ ନାହିଁ । ଏପିକୁରସଙ୍କର ଭୌତିକ ଶାସ୍ତ୍ର ବା ପଦାର୍ଥ ବିଜ୍ଞାନ (physics) ବୋଲି ଯାହା କୁହାଯାଉଛି ତାହା ସାଂପ୍ରତିକ ଭାବଧାରାରେ କୌଣସି ଭୌତିକ ବିଜ୍ଞାନ ନୁହେଁ, ବରଂ ଏହା ତାଙ୍କର ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତ । ଏପିକୁରସଙ୍କ

ସମୟରେ ଆଧୁନିକ ବିଜ୍ଞାନର ବିକାଶ ପର୍ବ ଆରମ୍ଭ ହୋଇନଥିଲା । ସେ ସମୟରେ ପ୍ରକୃତି ବିଷୟରେ କିମ୍ବା ପ୍ରାକୃତିକ ଉପାଦାନ ବିଷୟରେ କୌଣସି ସିଦ୍ଧାନ୍ତ ନିର୍ମାଣକୁ ଭୌତିକ ବିଜ୍ଞାନ କୁହାଯାଉଥିଲା । କିନ୍ତୁ ବାସ୍ତବରେ ଏଥିରେ କୌଣସି ବୈଜ୍ଞାନିକ ସିଦ୍ଧାନ୍ତ ନିହିତ ନାହିଁ; ବରଂ ଏହା ସଂପୂର୍ଣ୍ଣ ତତ୍ତ୍ୱମୀମାଂସୀୟ ପରିକଳ୍ପନା । ତାଙ୍କର ଜ୍ଞାନମୀମାଂସା ଓ ତତ୍ତ୍ୱମୀମାଂସା ଉପରେ ଏହି ଆଲୋଚନା ପରେ ଏପିକୁରସଙ୍କର ମୁଖ୍ୟ ବିଷୟ ନୀତିଶାସ୍ତ୍ର ବା ଆଚାର ମୀମାଂସା ଉପରେ ଆମେ ଏବେ ବିବେଚନା କରିବା ।

### ନୀତିଶାସ୍ତ୍ର

ଜୀବନର ଲକ୍ଷ୍ୟ କେଉଁଥିରେ ନିହିତ ? ଜୀବନର ଶ୍ରେୟ କ'ଣ ? ଏହି ପ୍ରଶ୍ନ ମାନଙ୍କୁ ନେଇ ଦାର୍ଶନିକମାନେ ଗମ୍ଭୀର ଚର୍ଚ୍ଚା କରିଛନ୍ତି । ଏହି ଚର୍ଚ୍ଚା ଭିତରୁ ବିଭିନ୍ନ ନୈତିକ ମାନକ ନୀତିଶାସ୍ତ୍ରରେ ଦେଖିବାକୁ ମିଳେ । ଏପିକୁରସ ଏହି ପ୍ରଶ୍ନ ଉପରେ ବି ନିଜର ନୀତିଶାସ୍ତ୍ରକୁ ନିର୍ମାଣ କରିଛନ୍ତି । ଏପିକୁରସଙ୍କ ମତରେ ସୁଖ ହିଁ ଜୀବନର ଲକ୍ଷ୍ୟ । ପ୍ରତ୍ୟେକ ବ୍ୟକ୍ତି ସୁଖରେ ବଞ୍ଚିବାକୁ ଚାହେଁ, କୌଣସି ବ୍ୟକ୍ତି ଇଚ୍ଛାକୃତ ଭାବରେ ଦୁଃଖରେ ଜୀବନ ନିର୍ବାହ କରିବାକୁ ଚାହେଁ ନାହିଁ । ଏକ ଆନନ୍ଦର ଜୀବନ ସୁଖକର ଅନୁଭୂତି ଉପରେ ଆଧାରିତ । ଆନନ୍ଦର ଆଧାର ହେଉଛି ସୁଖ । ଯଦି ସୁଖ ହିଁ ଜୀବନର ଶ୍ରେୟ ଓ ସବୁ ମଣିଷ ସୁଖରେ ସର୍ବଦା ବଞ୍ଚିବାକୁ ଚାହାନ୍ତି ତେବେ ସୁଖର ତାତ୍ପର୍ଯ୍ୟ କ'ଣ ? ଏପିକୁରସ ସୁଖ କହିଲେ ପ୍ରକୃତରେ କ'ଣ ବୁଝନ୍ତି ? ଏହି ପୃଷ୍ଠଭୂମିରେ ସୁଖର ଦୁଇଟି ମୁଖ୍ୟ ତାତ୍ପର୍ଯ୍ୟ ବିଷୟର ସେ ଅବତାରଣା କରିଛନ୍ତି । ପ୍ରଥମରେ ସୁଖ କେବଳ ସାମୟିକ ନୁହେଁ, ଏହା କ୍ଷଣିକ ଇନ୍ଦ୍ରିୟ ବାସନାର ଚରିତାର୍ଥ ନୁହେଁ । ପରନ୍ତୁ ଏହା ସମଗ୍ର ଜୀବନକାଳ ପାଇଁ ଅଭିପ୍ରେତ । ଦ୍ୱିତୀୟରେ ସୁଖର ଏକ ନକାରାତ୍ମକ ମହତ୍ତ୍ୱ ହେଉଛି ଯାହା ଦୁଃଖରହିତ । ସୁଖ ଦୁଃଖ ଓ ଯନ୍ତ୍ରଣାର ପରିପନ୍ଥୀ । ସୁଖ କାମନା କରିବା ଅର୍ଥ ଦୁଃଖ, ଯନ୍ତ୍ରଣାରୁ ମୁକ୍ତ ରହିବା । ଏହି ଲକ୍ଷଣ ଦ୍ୱୟର ତାତ୍ପର୍ଯ୍ୟ ହେବ ଆତ୍ମିକ ପ୍ରଶାନ୍ତି ଓ ପ୍ରଫୁଲ୍ଲତା । ପ୍ରଶାନ୍ତି ଏକ ମାନସିକ ସ୍ଥିରତାକୁ ଦର୍ଶାଇଥାଏ । ପ୍ରଶାନ୍ତି ସହ ଶାରୀରିକ ସୁସ୍ଥତା ଓ ମାନସିକ ସ୍ଥିରତା ସଂଶ୍ଳିଷ୍ଟ ହେବା ଦେଖାଯାଏ । ଶାରୀରିକ ସୁସ୍ଥତା ଓ ମାନସିକ ଶାନ୍ତି ଉଭୟଦ୍ୱାରା ସୁଖର ଅନୁଭବ ଆସିଥାଏ । ତେବେ ଶାରୀରିକ ଅସୁସ୍ଥତା ଜୀବନ ଯାତ୍ରାରେ ଏକ ସ୍ୱାଭାବିକ ପରିସ୍ଥିତି । ସମୟେ ସମୟେ ଅସୁସ୍ଥତା ଜୀବନରେ ଆସେ, ବେଳେ ବେଳେ ଗଭୀର ଅସୁସ୍ଥତା ବି ଜୀବନରେ ସାମୟିକ ଭାବରେ ଆସିପାରେ । ତେବେ ଶାରୀରିକ ଅସୁସ୍ଥତାକୁ ମାନସିକ ପ୍ରଶାନ୍ତି ଦ୍ୱାରା ଅତିକ୍ରମ କରାଯାଇପାରେ ।

ଜୀବନରେ ଏହା ବି ସମ୍ଭବ ଯେ ଏକ ଦୀର୍ଘସ୍ଥାୟୀ ସୁଖ ଓ ମାନସିକ ଶାନ୍ତି ପାଇଁ ଶାରୀରିକ କଷ୍ଟ ସହିବାକୁ ହୋଇଥାଏ । ସୁଖମାନଙ୍କ ମଧ୍ୟରୁ ବେଳକେ ଏକ ଦୀର୍ଘ ସ୍ଥାୟୀ ଓ ଅଧିକ ପ୍ରୀତିପଦ ସୁଖ ପାଇଁ କେତେକ ଦୁଃଖ ବରଣ କରିବାକୁ ହୁଏ । ସ୍ଥଳ ବିଶେଷରେ ଦୁଃଖକର ଅନୁଭୂତିକୁ ଭବିଷ୍ୟତ ସୁଖ ପାଇଁ ନିର୍ବିଘ୍ନରେ ସହ୍ୟ କରିବାକୁ ପଡିଥାଏ । ଏହି ସ୍ଥିତିରେ କେତେକ ସୁଖକୁ ପରିତ୍ୟାଗ କରିବାକୁ ହୋଇଥାଏ । ଯଦି ଭବିଷ୍ୟତରେ କେତେକ ଦୀର୍ଘସ୍ଥାୟୀ ସୁଖ ପ୍ରାପ୍ତିର ଆଶା ରହେ, ସେତେବେଳେ ସାମୟିକ କଷ୍ଟ, ଦୁଃଖ ବ୍ୟକ୍ତି ପାଇଁ ବଡ ଆହ୍ୱାନ ସୃଷ୍ଟି କରେ

ନାହିଁ । ଏପିକୁରସ ସମସ୍ତ ସୁଖକୁ ଏଣୁ ସମାନ ସ୍ତରରେ ଗ୍ରହଣ କରିନାହାନ୍ତି । ସୁଖମାନଙ୍କ ମଧ୍ୟରେ ଗୁଣାତ୍ମକ ପାର୍ଥକ୍ୟ ରହିପାରେ । ଏକ ସୁଖକର ଉପଲବ୍ଧି ଉତ୍କୃଷ୍ଟ ହୋଇପାରେ ନିକୃଷ୍ଟ ମଧ ହୋଇପାରେ । ପ୍ରତ୍ୟେକ ସୁଖ କାମ୍ୟ ଓ ପ୍ରତ୍ୟେକ ଦୁଃଖ ବର୍ଜନୀୟ । ଯଦି ବି ସୁଖ କାମ୍ୟ, ତେବେ ପ୍ରତ୍ୟେକ ସୁଖକୁ ଆଶାକରିବା ଯଥାର୍ଥ ନୁହେଁ । ସେହିପର ଦୁଃଖ ବର୍ଜନୀୟ, ତେବେ କେତେକ କଷ୍ଟକର ଅନୁଭବ ବା ଦୁଃଖ ସହ୍ୟ କରିବା ଯଥାର୍ଥ । ସୁତରାଂ ଜୀବନରେ ସୁଖ କାମ୍ୟ କହିବାର ତାତ୍ପର୍ଯ୍ୟ ନୁହେଁ ଏକ ଅନୈତିକ ଇନ୍ଦ୍ରିୟ ସୁଖ ବାଂଛନୀୟ । ସେହିପରି ଦୁଃଖ ବର୍ଜନୀୟ କହିବାର ତାତ୍ପର୍ଯ୍ୟ ନୁହେଁ ଯେ କୌଣସି ପରିସ୍ଥିତିରେ କଷ୍ଟ କରିବା ଠିକ୍ ନୁହେଁ । ଏକ ସୁଖକର କାର୍ଯ୍ୟ ସକଳ ସ୍ଥିତିରେ ବାଂଛନୀୟ ନ ହୋଇପାରେ, ଏକ କଷ୍ଟଦାୟକ କାର୍ଯ୍ୟ ସକଳ ପରିସ୍ଥିତିରେ ବର୍ଜନୀୟ ନୁହେଁ । ପରିସ୍ଥିତି, ସମୟର ଆହ୍ୱାନ, ନୈତିକ ପ୍ରସଙ୍ଗ ଓ ପରିଣାମ ଇତ୍ୟାଦିକୁ ନେଇ କେଉଁ ସୁଖକୁ ତ୍ୟାଗ କରାଯାଇପାରେ, କେଉଁ ଦୁଃଖକୁ ସ୍ୱୀକାର କରିବାକୁ ହୁଏ ବିଚାର କରିବାକୁ ହୋଇଥାଏ । ସୁଖ କାମ୍ୟ ଓ ଦୁଃଖ ବର୍ଜନୀୟ ଏହାକୁ ସାମାନ୍ୟୀକରଣ କରାଯାଇ ପାରିବ ନାହିଁ, ଯଦିବା ସାଧାରଣ ଅନୁଭୂତିରେ ସମସ୍ତେ ସୁଖ ଚାହାନ୍ତି ଓ କେହି ଦୁଃଖ ଇଚ୍ଛାକୃତ ଭାବରେ କାମନା କରନ୍ତି ନାହିଁ । ସୁଖକର କାର୍ଯ୍ୟ ଯେ ଆବଶ୍ୟକ ବା ବାଂଛନୀୟ ନୁହେଁ ତାହା ନୁହଁ, ପରନ୍ତୁ ସୁଖକର ଅନୁଭୂତି ପଶ୍ଚାତରେ ରହିଥିବା ନିମିତ୍ତ କାରଣର ଗୁଣାତ୍ମକ ମୂଲ୍ୟ ଉପରେ ତାହା ଯଥାର୍ଥ ଭାବରେ କାମ୍ୟ କି ନୁହଁ ତାହା ନିର୍ଭର କରେ । ଯଦି ଏକ ସୁଖ ଅଧିକ ମାନସିକ ଅଶାନ୍ତିର କାରଣ ହୁଏ ତେବେ ସେହି ସୁଖ ଆଶାକରିବା ଯଥାର୍ଥ ହୋଇନପାରେ ।

ଏକ ବ୍ୟକ୍ତିଗତ ସୁଖ ବା ଦୁଃଖର ପ୍ରସଙ୍ଗ ଆଣିବା ସମୟରେ କେତେକ ବାସ୍ତବ ପରିସ୍ଥିତିକୁ ମଧ ବିଚାର କରିବା ଯଥାର୍ଥ ମନେହୁଏ । ଏହି ପରିପ୍ରେକ୍ଷୀରେ ବିଚାର କରିବାକୁ ହୁଏ ଯେ ଏକ ବ୍ୟକ୍ତିଗତ ସୁଖ ଭବିଷ୍ୟତ ପାଇଁ ଅଧିକ ଦୁଃଖର କାରଣ ନ ହୁଏ । ସାମୟିକ ସମୟ ପାଇଁ ଏକ ସୁଖକର ଅନୁଭୂତି ହୁଏତ କେହି ବ୍ୟକ୍ତି ପାଇପାରନ୍ତି, ତେବେ ଯଦି ତାହାର ଏକ ମନ୍ଦ ପରିଣତି ରହେ ବା ବ୍ୟକ୍ତି ପାଇଁ ଅଧିକ ଦୁଃଖକର ପରିସ୍ଥିତି ଆଣେ, ତେବେ ଏକ ସମୟର ସୁଖ ଯେତେ ତୀବ୍ର ହେଲେ ବି ତାହା ଯେ କାମ୍ୟ ନୁହଁ ଏହା କୁହାଯାଇପାରେ । ସେହିପରି ଏକ ଦୁଃଖର ଅନୁଭୂତି ଏକ ସମୟରେ ତୀବ୍ର ହୋଇପାରେ କିନ୍ତୁ ତାର ଭବିଷ୍ୟତ ପରିଣତି ଯଦି ମଙ୍ଗଳପ୍ରଦ ହୋଇଥାଏ ତେବେ ତାହା ବି ଗ୍ରହଣ କରାଯାଇପାରେ । ଏକ ଅସ୍ତ୍ରୋପଚାର ହୁଏତ ବେଶ୍ କଷ୍ଟକର ଜଣାପଡେ, କିନ୍ତୁ ଅସ୍ତ୍ରୋପଚାରଦ୍ୱାରା ଏକ ଗୁରୁତର ସ୍ୱାସ୍ଥ୍ୟ ସମସ୍ୟାକୁ ଯଦି ଦୂର କରିବା ସମ୍ଭବ ହୁଏ ତାହା ବି ଗ୍ରହଣୀୟ ହୋଇଥାଏ । ସୁତରାଂ ପ୍ରତ୍ୟେକ ଦୁଃଖ ଅମୂର୍ତ୍ତୀୟ ଭାବରେ ମନ୍ଦ ବା ଅଶୁଭ ହେଲେ ମଧ ତାହା ଯଦି ଭବିଷ୍ୟତ ପାଇଁ ଏକ ସୁଖକର ସ୍ଥିତିର କାରଣ ହୁଏ ତାହାକୁ ଗ୍ରହଣ କରାଯିବାରେ ପ୍ରତିବନ୍ଧକ ନ ଥାଏ । ସେହିପରି ପ୍ରତ୍ୟେକ ସୁଖ ଅମୂର୍ତ୍ତୀୟ ଭାବରେ ମଙ୍ଗଳ ବା ଶୁଭ ହେଲେ ବି ଯଦି ଏକ ନିର୍ଦ୍ଦିଷ୍ଟ ସୁଖକର ଅନୁଭବ ପରବର୍ତ୍ତୀ ପର୍ଯ୍ୟାୟରେ ଦୁଃଖର କାରଣ ହୁଏ ତେବେ ତାହା ଗ୍ରହଣ କରାଯାଇ ନପାରେ । ସୁଖ-ଦୁଃଖର ବିଚାର ପରିପ୍ରେକ୍ଷୀରେ ଏପିକୁରୀୟ ମାନଦଣ୍ଡ ହେଉଛି "ଭବିଷ୍ୟତକୁ ଦୃଷ୍ଟିରେ ରଖି କେଉଁ କାର୍ଯ୍ୟ ବ୍ୟକ୍ତି ପାଇଁ ଅଧିକ ସୁଖପ୍ରଦ ପରିସ୍ଥିତି ଆଣିପାରିବ" ତାହାକୁ ଗ୍ରହଣ କରିବା । ତାହା

ସହିତ ଦୁଇଟି ବିଷୟକୁ ଏପିକୁରୀୟମାନେ ଅଧିକ ପ୍ରାଧାନ୍ୟ ଦେଇଥାନ୍ତି ତାହା ହେଲା-ଶାରୀରିକ ସୁସ୍ଥତା ଓ ଆତ୍ମିକ ପ୍ରଶାନ୍ତି । ସୁଖକୁ ଏହି ଦୃଷ୍ଟିରୁ ସେମାନେ ଗ୍ରହଣ କରିଛନ୍ତି । ଶାରୀରିକ ଦୃଷ୍ଟିରୁ ସୁସ୍ଥ ଓ ମାନସିକ ସ୍ତରରେ ଶାନ୍ତିରେ ଥିବା ବ୍ୟକ୍ତି ହିଁ ସୁଖୀ ବୋଲି ସେମାନେ ଭାବିଛନ୍ତି ।

ଏପିକୁରୀୟମାନେ ସାଧାରଣ ଅନୁଭୂତିରେ ବ୍ୟକ୍ତିର ଅଶାନ୍ତି ବା ଦୁଃଖର କାରଣ ନେଇ ଭାବନା ବ୍ୟକ୍ତ କରିଛନ୍ତି । ଯେ କୌଣସି ବିଷୟରେ ଭୟ ବ୍ୟକ୍ତିର ଦୁଃଖର କାରଣ ହୋଇଥାଏ । ଯେଉଁଠି ଭୟ ରହେ ସେଠାରେ ସୁଖ ରହିବା ସମ୍ଭବ ନୁହେଁ । ସେହିପରି ଜଣେ ବ୍ୟକ୍ତି ଯଦି ନିଜର ଆବଶ୍ୟକତାକୁ ସର୍ବଦା ବୃଦ୍ଧିକରି ଚାଲେ ଓ ଅନାବଶ୍ୟକ ଭାବରେ ନିଜର ଇଚ୍ଛାକୁ ଗୋଟିଏ ପରେ ଗୋଟିଏ ପ୍ରସାରିତ କରେ ତେବେ ସେ ସୁଖକର ଜୀବନ ବଞ୍ଚିପାରିବ ନାହିଁ । ଜଣେ ବିଜ୍ଞ ବ୍ୟକ୍ତି କେବେ ହେଲେ ନିଜର ଆବଶ୍ୟକତାକୁ ବୃଦ୍ଧିକରେ ନାହିଁ । ଜଣେ ନିଜର ଆବଶ୍ୟକତାକୁ ଯେତିକି ବୃଦ୍ଧିକରେ ସେ ସେତିକି ଅଶାନ୍ତି ଭିତରକୁ ଯାଏ । ଜଣେ ବୁଦ୍ଧିମାନ ବ୍ୟକ୍ତି ନିଜର ଆବଶ୍ୟକତାକୁ ସୀମିତ କରି ରଖେ । ନିଜର ଅଭାବ ଅସୁବିଧା ଥାଇ ମଧ୍ୟ ଜଣେ ଏକ ସୁଖକର ଜୀବନର ଅଧିକାରୀ ହୋଇପାରିବ । ଏହି କ୍ଷେତ୍ରରେ ଏପିକୁରୀୟମାନେ ମାନସିକ ଶାନ୍ତି ଓ ଆତ୍ମିକ ଶୁଦ୍ଧତାକୁ ଅଧିକ ପ୍ରାଧାନ୍ୟ ଦେଇଛନ୍ତି । ଦଃଖ କଷ୍ଟ ବା ଅଭାବ ଭିତରେ ରହି ମଧ୍ୟ ଯଦି ଜଣେ ମାନସିକ ସ୍ତରରେ ପ୍ରସନ୍ନ ଓ ଉଦ୍‌ବେଗହୀନ ହୋଇ ରହିପାରୁଛି ତେବେ ତାହା ହିଁ ସୁଖର ବଡ କାରଣ ବୋଲି ଦର୍ଶାଇଛନ୍ତି । ସ୍ୱାଧୀନ ମନୋଭାବ, ଆତ୍ମସଂଯମତା ଓ ସରଳ ଜୀବନଧାରାକୁ ସୁଖପ୍ରଦ ଜୀବନର ମାନଦଣ୍ଡ ବୋଲି ଏପିକୁରୀୟମାନେ ବିଭିନ୍ନ ସ୍ତରରେ ବ୍ୟକ୍ତ କରିଛନ୍ତି । କୋପ୍ଲେଷ୍ଟୋନ ଲେଖିଛନ୍ତି – "Epicurean ethic leads to a moderate asceticism, self-control and independence." (ପୃଷ୍ଠା ୪୦୬)

ବ୍ୟକ୍ତି ଯେତିକି ସଦ୍‌ଗୁଣର ଅଧିକାରୀ ହୁଏ ତାହା ତାର ମାନସିକ ସ୍ଥିରତା ଓ ଶାନ୍ତିକୁ ବୃଦ୍ଧି କରିଥାଏ । ସରଳତା, ସଂଯମତା, ବିଚାରଶୀଳତା, ପ୍ରସନ୍ନ ଭାବ ଓ ସଦାଚାରକୁ ସଦ୍‌ଗୁଣ ଭିତରେ ଏପିକୁରୀୟ ମାନେ ଅନ୍ତର୍ଭୁକ୍ତ କରିଛନ୍ତି । ଏକ ସୁଖପ୍ରଦ ଜୀବନ ପାଇଁ ଏହି ସବୁ ଆଦର୍ଶକୁ ଜୀବନ ଧାରାରେ ମିଶାଇବା ହେଲା ବଡ ଉପଲବ୍ଧି । ଏହାକୁ ସେମାନେ ପ୍ରାଧାନ୍ୟ ଦେଇଛନ୍ତି । ପରନ୍ତୁ ବିଳାସବ୍ୟସନ ଓ ଅହେତୁକ କାମନା ବ୍ୟକ୍ତି ପାଇଁ ଅସୁଖର କାରଣ ଆଣିଥାଏ । ପୁନଶ୍ଚ ସାଧୁତା, ଚରିତ୍ରବତ୍ତା ଓ ବିଜ୍ଞତାକୁ ସେମାନେ ବି ସୁଖକର ଜୀବନ ପାଇଁ ଗୁରୁତ୍ୱ ଦେଇଛନ୍ତି । ଏହି ସବୁ ସଦ୍‌ଗୁଣ ବ୍ୟତୀତ ଏକ ସୁଖପ୍ରଦ ଜୀବନ ସମ୍ଭବପର ହୋଇନପାରେ । ଏକ ନୀତିମାନ ବ୍ୟକ୍ତି ସମସ୍ତଙ୍କ ଅପେକ୍ଷା ଅଧିକ ମୁକ୍ତ, ଏକ ଅନୈତିକ ବ୍ୟକ୍ତି ସର୍ବଦା ଅସନ୍ତୋଷର ଜୀବନ ନିର୍ବାହ କରିଥାଏ । ଅନୈତିକ ବ୍ୟକ୍ତି ସର୍ବଦା ଭୟର ବାତାବରଣ ଭିତରେ ଜୀବନ ବଞ୍ଚିବାକୁ ବାଧ୍ୟ ହୁଏ । ଏକ ନୀତିପୂର୍ଣ୍ଣ ଓ ମୁକ୍ତ ଜୀବନ ଆମ ବିଚାରବୁଦ୍ଧି ସହ ସମତାଳ । ଅନୈତିକ କେବେ ହେଲେ ବିବେକର ସମର୍ଥନ ଲାଭ କରିନଥାଏ । ଏକ ବିବେକସମ୍ମତ କାର୍ଯ୍ୟ ହିଁ ନୀତିପୂର୍ଣ୍ଣ । ଯେଉଁ କାର୍ଯ୍ୟ ବିବେକାନୁମୋଦିତ ନୁହେଁ ତାହା ନୀତିପୂର୍ଣ୍ଣ ହୋଇନପାରେ ।

ଏପିକୁରୀୟ ମାନେ ସୁଖବାଦକୁ ନୈତିକ ଜୀବନର ମାନଦଣ୍ଡ କରିଛନ୍ତି ଏବଂ ବ୍ୟକ୍ତି ସର୍ବଦା ଜୀବନରେ ସୁଖ କାମନା କରେ ବୋଲି ଭାବିଛନ୍ତି । ତେଣୁ କେତେକ ଏହି ମାନଦଣ୍ଡକୁ ଆତ୍ମକୈନ୍ଦ୍ରିକ ବୋଲି ଅଭିହିତ କରିଛନ୍ତି । କିନ୍ତୁ ସେମାନଙ୍କ ଭାବଧାରାରେ କୌଣସି ସ୍ୱାର୍ଥପରତା କିମ୍ବା ଆତ୍ମକୈନ୍ଦ୍ରିକତା ନାହିଁ । ଅନ୍ୟକୁ ସହଯୋଗର ହାତ ବଢ଼ାଇବା ଓ ଅନ୍ୟ ପ୍ରତି ସମ୍ବେଦନଶୀଳ ମନୋଭାବ ରଖିବାକୁ ସେମାନେ ଯେତେ ଗୁରୁତ୍ୱ ଦିଅନ୍ତି ଅନ୍ୟଠାରୁ ସାହାଯ୍ୟ ପାଇଁ ସେମାନେ କାମନା କରନ୍ତି ନାହିଁ । ନିଜର କର୍ତ୍ତବ୍ୟ, ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ ଓ ମାନବିକତାକୁ ଏପିକୁରସ ଜୀବନରେ ସର୍ବଦା ମୂଲ୍ୟ ଦେଇଛନ୍ତି ଓ ସେହି ବିଶ୍ୱାସଧାରାରେ ନିଜ ବ୍ୟକ୍ତିଗତ ଜୀବନକୁ ମଧ୍ୟ ପରିଚାଳିତ କରିଛନ୍ତି । ବ୍ୟକ୍ତିଗତ ଜୀବନରେ ଏପିକୁରସ ଅବିବାହିତ ରହି ଏକ ସନ୍ଥ ପରି ଜୀବନ ବଞ୍ଚିଛନ୍ତି । ତାଙ୍କ ବ୍ୟକ୍ତିଗତ ଜୀବନର ସାଧୁତା ଓ ସଦାଚାର ତାଙ୍କୁ ଏକ ମହନୀୟ ବ୍ୟକ୍ତି ଭାବେ ସମ୍ମାନର ଅଧିକାରୀ କରାଇବା ତାଙ୍କ ଜୀବନୀରୁ ଜଣାପଡେ । ତାଙ୍କ ବ୍ୟକ୍ତିଗତ ଆଦର୍ଶ ତାଙ୍କ ନୈତିକ ଭାବଧାରାରେ ପ୍ରତିଫଳିତ ହେବା ଦେଖାଯାଏ ।

ସବୁଠାରୁ ସୁଖୀ ବ୍ୟକ୍ତି କେଉଁମାନେ- ପ୍ରସଙ୍ଗ ଉପରେ ଏପିକୁରସଙ୍କ ମତ ହେଉଛି ଯେଉଁମାନେ କେବେ ହେଲେ ନିଜ ଚାରିପାଖର ମଣିଷଙ୍କଠାରୁ କୌଣସି ଭୟ ବା ଉତ୍ତେଜନା ଲାଭ କରନ୍ତି ନାହିଁ । ସେମାନେ ନିଜ ଚତୁଃପାର୍ଶ୍ୱର ବ୍ୟକ୍ତିମାନଙ୍କ ସହ ଏକ ଶ୍ରଦ୍ଧା ଓ ଆନ୍ତରିକତାର ଜୀବନ ନିର୍ବାହ କରନ୍ତି । ଅନ୍ୟମାନଙ୍କ ସହ ମଣିଷ ସମ୍ବନ୍ଧିତ ହୋଇ ବଞ୍ଚେ, କାରଣ ମନୁଷ୍ୟ ଏକ ସାମାଜିକ ପ୍ରାଣୀ । ସାମାଜିକ ପାରସ୍ପରିକତା ହିଁ ଜୀବନର ଆବଶ୍ୟକତା । ତେଣୁ ଜଣେ ବ୍ୟକ୍ତି ସମସ୍ତଙ୍କୁ ମିତ୍ରର ଚକ୍ଷୁରେ ଦେଖିବା ଆବଶ୍ୟକ । ତେବେ ଯେଉଁମାନଙ୍କୁ ସେ ବନ୍ଧୁ କରିପାରୁ ନାହିଁ, ସେମାନଙ୍କ ସହିତ କୌଣସି ଶତ୍ରୁତାର ମନୋଭାବ ରଖିବା ଯଥାର୍ଥ ନୁହେଁ । ସେ କାହାର ବନ୍ଧୁ ନ ହୋଇପାରେ, ତେବେ କାହାର ଶତ୍ରୁ ହେବା ଠିକ୍ ନୁହେଁ । କେବେ ବି କାହାକୁ ଶତ୍ରୁର ଦୃଷ୍ଟିରେ ନେବା ଯଥାର୍ଥ ନୁହେଁ । ତେବେ ଯଦି ଏହା ନିଜ ସାମର୍ଥ୍ୟ ଭିତରେ ସମ୍ଭବ ନ ହେଉଛି, ତେବେ ଅନ୍ୟଠାରୁ ନିଜକୁ ଦୂରେଇ ନେବା ବୁଦ୍ଧିମାନର କାର୍ଯ୍ୟ ବୋଲି ଏପିକୁରସ ବିଚାର କରିଛନ୍ତି । ଏପିକୁରସଙ୍କ ନୈତିକ ସିଦ୍ଧାନ୍ତ ତୁଳନାରେ ତାଙ୍କର ନୈତିକ ଦୃଷ୍ଟିଭଙ୍ଗୀ ଯେ ଅଧିକ ଉତ୍ତମ ଏହା ମନେହୁଏ । କୋପ୍ଲେଷ୍ଟୋନ ଏହି ପୃଷ୍ଠଭୂମିରେ ମନ୍ତବ୍ୟ ରଖିଛନ୍ତି – "It is probably true to say that Epicurus' practical moral judgment was sounder than the theoretical foundatiion of his ethic, an ethic which could obviously give little account of moral obligation". (ପୃଷ୍ଠା ୪୦୯)

ଏକ ସୁଖପ୍ରଦ ଜୀବନ ପାଇଁ ବିଜ୍ଞତା ରଖିବା, ଦୂରଦର୍ଶୀ ହେବା ଓ ଯତ୍ନଶୀଳ ହେବା ଆବଶ୍ୟକ ବୋଲି ଏପିକୁରସ ମତ ଦେଇଛନ୍ତି । ନିଜର ବିଜ୍ଞତା ଦ୍ୱାରା ଜଣେ ସଦ୍‌ଗୁଣ ନେଇ ସଚେତନ ହୋଇଥାଏ । କ'ଣ କରଣୀୟ ଓ କ'ଣ କରଣୀୟ ନୁହେଁ ଏହି ସଚେତନତା ରଖିବାଦ୍ୱାରା ଜଣେ ସୁଖକର ଜୀବନ ବଞ୍ଚିପାରିବ । ଜଣେ ସଦାଚାରୀ ବ୍ୟକ୍ତି ଏକ ସମୟରେ ହୁଏତ ସୁଖରୁ ବଞ୍ଚିତ ହୋଇପାରେ । ତେବେ ଜଣେ ବିଜ୍ଞବ୍ୟକ୍ତି କେଉଁ ପରିସ୍ଥିତିରେ କିପରି ନିଜକୁ ପରିଚାଳିତ କରିବ ସେ ନେଇ ସଚେତନ ହୋଇପାରେ । ଏ କ୍ଷେତ୍ରରେ ସଦ୍‌ଗୁଣ ସହିତ ବିଜ୍ଞତାକୁ

ସଂଶ୍ଳିଷ୍ଟ କରାଯାଇଛି । ସେହିଦୃଷ୍ଟିରୁ ଜଣେ କିପରି ସ୍ଥାୟୀ ସୁଖ ଲାଭ କରିପାରିବ ସେ ନେଇ ଦୂରଦୃଷ୍ଟିର ପରିଚୟ ଦେବା ଦରକାର । ଦୂରଦର୍ଶୀ ହେବା, ବିଚାରଶୀଳ ହେବା ଓ ଯତ୍ନଶୀଳ ହେବା ଜୀବନ ପାଇଁ ଆବଶ୍ୟକ, ତେବେ ଏସବୁ ସଦ୍‌ଗୁଣ ସହିତ ସଂଶ୍ଳିଷ୍ଟ । ସଦ୍‌ଗୁଣର ଆଧାର ଉପରେ ଏସବୁକୁ ସୁଖକର ଜୀବନ ପାଇଁ ପ୍ରାଧାନ୍ୟ ଦଆଯାଇଛି ।

ଏପିକୁରସ ବନ୍ଧୁତାକୁ ପ୍ରାଧାନ୍ୟ ଦେଇଛନ୍ତି ଓ ପୂର୍ବରୁ ଏହା ବିଷୟରେ ସୂଚନା ଦିଆଯାଇଛି । ଜୀବନରେ ସ୍ଥାୟୀ ସୁଖ ପ୍ରସଙ୍ଗରେ ବିଚାରଶୀଳ ଭାବରେ ଆମେ ବନ୍ଧୁତ୍ୱକୁ ବହୁ ପ୍ରାଧାନ୍ୟ ଦେଇଥାଏ । ଏକ ନିରାପଦ, ପ୍ରୀତିପଦ ଓ ସହଭାଗୀତାପୂର୍ଣ୍ଣ ଜୀବନ ପାଇଁ ବନ୍ଧୁତା ଯେ ଅବଶ୍ୟମ୍ଭାବୀ ଏହା ଉପରେ ଏପିକୁରସ ଗୁରୁତ୍ୱ ଦେଇଛନ୍ତି । ଏହି ପ୍ରସଙ୍ଗରେ କେହି ଅଭିଯୋଗ କରିପାରନ୍ତି ଯେ ବ୍ୟକ୍ତିଗତ ସୁବିଧା ପାଇଁ ଜଣେ ଅନ୍ୟ ସହ ବନ୍ଧୁତା ସ୍ଥାପନ କରିପାରେ । ତେଣୁ ଏଠାରେ ଏକ ସ୍ୱାର୍ଥକୈନ୍ଦ୍ରିକ ଦୃଷ୍ଟି ପ୍ରତିଫଳିତ ହେଉଛି । ବନ୍ଧୁତାକୁ କେତେକ ସ୍ୱସୁଖବାଦୀ ବିଚାର ଭାବରେ ଗ୍ରହଣ କରିଥାନ୍ତି । ଅନାବିଳ ବନ୍ଧୁତା କ୍ଷେତ୍ରରେ କିଛି ସ୍ୱାର୍ଥକୈନ୍ଦ୍ରିକ ଭାବନା ବ୍ୟକ୍ତ ହୋଇନଥାଏ, ବରଂ ଶ୍ରଦ୍ଧା, ଆନ୍ତରିକତା ଓ ସହଭାଗୀତା ବନ୍ଧୁତ୍ୱରୁ ବ୍ୟକ୍ତି ଭିତରେ ଉଦ୍‌ଭବ ହୋଇଥାଏ । ସୁଖ ଓ ବ୍ୟକ୍ତିଗତ ସ୍ୱାର୍ଥ ଦୁଇଟି ପୃଥକ୍ ବିଷୟ । ଏପିକୁରସ ସୁଖ ଉପରେ ପ୍ରାଧାନ୍ୟ ଦେଇଛନ୍ତି କାରଣ ତାହା ଜୀବନର କାମ୍ୟ । କିନ୍ତୁ ସ୍ୱାର୍ଥପରତା ଏକ ମନ୍ଦ ଗୁଣ । ଏହି ମନ୍ଦ ସ୍ୱଭାବକୁ କିପରି ମହତ୍ତର ଆବେଗରେ ରୂପାନ୍ତରିତ କରିହେବ ତାହା ଉପରେ ସେ ପ୍ରାଧାନ୍ୟ ଦେଇଛନ୍ତି । ସୁଖୀ ହେବା ପାଇଁ ପ୍ରୟାସୀ ହେବାର ଅର୍ଥ ନୁହେଁ ସ୍ୱାର୍ଥପର ହେବା । ବରଂ ସ୍ୱାର୍ଥପରତା ଓ ଅନୈତିକତାକୁ ପରିହାର କରିବା ଦ୍ୱାରା ହିଁ ଜଣେ ବିଚାରଶୀଳ ଭାବରେ ସୁଖୀ ହୋଇପାରିବ ।

ସୁଖବାଦକୁ ଗୁରୁତ୍ୱ ଦେବା ଭିତରେ ଯାହା ଜୀବନକୁ ଦୁଃଖପୂର୍ଣ୍ଣ କରେ ବା ହତାଶାର ଭାବ ଆଣେ ତାହାକୁ ଦୂର କରିବାକୁ ଏପିକୁରସ ଗୁରୁତ୍ୱ ଦେଇଛନ୍ତି । ଏହି ପରିପ୍ରେକ୍ଷୀରେ ସେ ଶାରୀରିକ ଦୁଃଖ ଅପେକ୍ଷା ମାନସିକ ଦୁଃଖକୁ ଅଧିକ କଷ୍ଟଦାୟକ ବୋଲି ବିଚାର କରିଛନ୍ତି । ଶାରୀରିକ ଦୁଃଖ ଏକ ସମୟରେ ସୃଷ୍ଟି ହୋଇପାରେ, କିନ୍ତୁ ମାନସିକ ଦୁଃଖ ଅତୀତର ଘଟଣା ବା ବର୍ତ୍ତମାନର ଘଟଣା ସବୁ କାରଣ ପାଇଁ ଆସିପାରେ । ତେବେ ଶାରୀରିକ କଷ୍ଟ ବା ମାନସିକ ଯନ୍ତ୍ରଣା ରହିଲେ ବ୍ୟକ୍ତିର ସୁଖ ଯେ ବ୍ୟାହତ ହୁଏ ଏହା ନିଃସନ୍ଦେହ ମନେହୁଏ ।

ଏପିକୁରସଙ୍କର ନୈତିକ ବିଚାରବୋଧକୁ ନୈତିକ ବ୍ୟକ୍ତିବାଦ ଭାବରେ ଚିତ୍ରଣ କରାଯାଇଥାଏ । ନୈତିକ ବ୍ୟକ୍ତିବାଦ (Ethical individualism) ଏକ ନୈତିକ ମାନକର ବି ଚିତ୍ର ଦେଇଥାଏ । କୌଣସି କାର୍ଯ୍ୟର ନୈତିକ ମୂଲ୍ୟାୟନ କ୍ଷେତ୍ରରେ ଏହା ସୁଖ-ପ୍ରଦାୟକ ବା ଦୁଃଖଦାୟକ ଏହି ଆଧାରରେ କାର୍ଯ୍ୟକୁ ଭଲ ବା ମନ୍ଦ ନିର୍ଣ୍ଣୟ କରାଯାଇପାରେ । ସୁଖକୁ ନୈତିକ ମାନକ ଭାବରେ ଗ୍ରହଣ କରିବା ଭିତରେ ଏପିକୁରସ ଜୀବନର ନୈତିକ ଉତ୍ତରଣ ପାଇଁ ଅନେକ ବିଚାରର ଅବତାରଣା କରିଛନ୍ତି । ତାଙ୍କ ବ୍ୟକ୍ତିଗତ ଜୀବନ ବିଷୟରେ କୁହାଯାଏ ଯେ ଉଚ୍ଚତର ସୁଖର ଅନୁଶୀଳନ ଭିତରେ ସେ ଏକ ସୁନ୍ଦର ଜୀବନ ନିର୍ବାହ କରିଛନ୍ତି । ତାଙ୍କ ବିଚାର ତାଙ୍କ ବାସ୍ତବ

ଜୀବନରେ ପ୍ରତିଫଳିତ ହୋଇଛି । ଏପିକୁରସ ବା ତାଙ୍କର ଅନୁଗାମୀମାନେ ନୈତିକତାର ଯେଉଁ ମାନଦଣ୍ଡ ଓ ଉତ୍କର୍ଷ ଜୀବନର ଯେଉଁ ମାନକ ଦେଇଛନ୍ତି ସେଥିରେ ସେପରି ମହନୀୟତା ନ ଥାଇପାରେ ଓ ଏହାର କିଛି ଦୁର୍ବଳତା ମଧ୍ୟ ଥାଇ ପାରେ । ତେବେ ସେମାନେ ଯେ କୌଣସି ସ୍ୱାର୍ଥପର ବା ବ୍ୟକ୍ତିକୈନ୍ଦ୍ରିକ ବିଚାରର ଅବତାରଣା କରିନାହାନ୍ତି ଏହା ସ୍ପଷ୍ଟ ମନେହୁଏ । ବରଂ ତାଙ୍କର ନୈତିକ ଜୀବନଦୃଷ୍ଟି ଓ ବିଶ୍ଳେଷଣ କ୍ଷେତ୍ରରେ ଉଦାର ମାନବବାଦ ଓ ଏକ ନୀତିନିଷ୍ଠ ଜୀବନ ପାଇଁ ପ୍ରେରଣା ଥିବା କୁହାଯାଇପାରେ । ମାନବବାଦ, ସମ୍ବେଦନଶୀଳତା ଓ ନୀତିନିଷ୍ଠତାର ବାର୍ତ୍ତା ଏହି ବିଚାରବୋଧରୁ ଆସୁଥିବା କୁହାଯାଇପାରେ । ଷ୍ଟେସ୍ ଏପିକୁରୀୟ ନୈତିକତା ଉପରେ ମନ୍ତବ୍ୟ ଦେଇଛନ୍ତି- "The Epicurean ideal, though containing no possibility of an exalted nobility, was yet by no means entirely selfish. A kindly benevolent temper appeared in these men. It is pleasanter, they said, to do a kindness than to receive one" (ପୃଷ୍ଠା ୩୬୦)

ଉପସଂହାରରେ, ଏପିକୁରସଙ୍କ ଭାବଧାରା ବହୁ ଶତାବ୍ଦୀ ଧରି ଗ୍ରୀସ୍ ଓ ରୋମରେ ପ୍ରଭାବ ବିସ୍ତାର କରି ରହିଥିଲା । ସେମାନଙ୍କର ଜ୍ଞାନମୀମାଂସା ଓ ତତ୍ତ୍ୱମୀମାଂସା ଅପେକ୍ଷା ସେମାନଙ୍କ ନୀତିଶାସ୍ତ୍ର ଉପରେ ବହୁ ଚର୍ଚ୍ଚା ହେବା ଐତିହାସିକମାନେ ମତ ଦେଇଛନ୍ତି । ସକ୍ରେଟିସ୍‌ଙ୍କ ପରି ଏପିକୁରସ ଯେ ଆଦର୍ଶ ବ୍ୟକ୍ତି ଥିଲେ ଏହି ଆଦର୍ଶ ବହୁ ପିଢ଼ିର ଲୋକଙ୍କୁ ତାଙ୍କ ବିଚାର ପ୍ରତି ଆକୃଷ୍ଟ କରିଥିଲା ।

**୯.୪- ସଂଶୟବାଦ (Scepticism)**

ଗ୍ରୀକ୍ ଦାର୍ଶନିକ ପରଂପରାରେ ସଂଶୟବାଦର ବିକାଶ ଦର୍ଶନ ଇତିହାସରେ ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା । ଦାର୍ଶନିକମାନେ ସାଧାରଣତଃ ତତ୍ତ୍ୱମୀମାଂସା ଓ ଜ୍ଞାନମୀମାଂସା ସମ୍ବନ୍ଧରେ ବିଭିନ୍ନ ସିଦ୍ଧାନ୍ତମାନ ନିର୍ମାଣ କରିଥାନ୍ତି । ଏହି ପ୍ରକ୍ରିୟାରେ ବିଭିନ୍ନ ବିପରୀତାର୍ଥକ ଓ ବେଳେବେଳେ ପରସ୍ପର ବିରୁଦ୍ଧାତ୍ମକ ସିଦ୍ଧାନ୍ତମାନ ଦର୍ଶନ ଇତିହାସରେ ଦେଖିବାକୁ ମିଳେ । ସେହି ପରିପ୍ରେକ୍ଷୀରେ ଅନ୍ୟ କେହି ଦାର୍ଶନିକ ଜ୍ଞାନର ସମ୍ଭାବନା ନେଇ ପ୍ରଶ୍ନ ଉଠାଇଥାନ୍ତି କିମ୍ବା ସଂଶୟ ବ୍ୟକ୍ତ କରିଥାନ୍ତି । ଏହି ଦୃଷ୍ଟିରୁ ସଂଶୟବାଦ ଏକ ସମାଲୋଚନାମୂଳକ ବା ଧ୍ୱଂସାତ୍ମକ ଧାରା । ସଫିଷ୍ଟମାନେ ଗ୍ରୀକ୍ ଦର୍ଶନ ଇତିହାସରେ ପ୍ରଥମେ ସଂଶୟବାଦର କିଛି ଇଙ୍ଗିତ ଦେଇଥିବା ମନେହୁଏ । ଗର୍ଗିଆସ ମତ ଦେଇଥିଲେ ଯେ ଯଦି ବି କିଛିର ଅସ୍ତିତ୍ୱ ରହିଛି ତାହାକୁ ତାର ସ୍ୱରୂପରେ ଜାଣିବା ସମ୍ଭବ ନୁହେଁ । ସେହିପରି ପ୍ରୋଟାଗୋରାସ ମନ୍ତବ୍ୟ ଦେଲେ ଯେ 'ମଣିଷ ହିଁ ସମସ୍ତ ବିଷୟର ପରିମାପକ' (Man is the measure of all things) । ଏହି ସବୁର ତାତ୍ପର୍ଯ୍ୟ ହେଲା ବିଭିନ୍ନ ବସ୍ତୁ ଆମକୁ ଯେପରି ପ୍ରତିଭାତ ହେଉଛି ଆମେ ତାହା ହିଁ ଜାଣୁ; ବସ୍ତୁର ନିଜସ୍ୱ ସ୍ୱରୂପକୁ ଜାଣିବା ଆମ ପକ୍ଷରେ ସମ୍ଭବ ନୁହେଁ । ଏହି ସବୁ ଭାବଧାରାରେ ସଂଶୟବାଦର ସ୍ୱର ପ୍ରତିଫଳିତ ହେବା ଜଣାଯାଏ । ଦାର୍ଶନିକ ଚିନ୍ତନର ସୁଦୀର୍ଘ ଇତିହାସରେ ମଝିରେ ମଝିରେ କେତେକ ପ୍ରଭାବଶାଳୀ ଚିନ୍ତକ ସଂଶୟବାଦ

ବ୍ୟକ୍ତ କରିଥିବା ଦେଖିବାକୁ ମିଳେ । ପାଶ୍ଚାତ୍ୟ ଦର୍ଶନର ଆଧୁନିକ କାଳରେ ଡାଭିଡ ହ୍ୟୁମ (୧୭୧୧-୧୭୭୬) ସଂଶୟବାଦକୁ ଦୃଢ଼ ଭିତ୍ତି ଦେଇଥିଲେ । ଦ୍ରବ୍ୟ, କାରଣତାକୁ ଯେପରି ମୌଳିକ ପର୍ଯ୍ୟାୟ ଭାବରେ ଦର୍ଶନରେ ଗ୍ରହଣ କରାଯାଏ ସେସବୁର ବୈଧତା ଉପରେ ପ୍ରଶ୍ନ ଉଠାଇ ହ୍ୟୁମ ସେମାନଙ୍କର ମୌଳିକତାକୁ ଅବମୂଲ୍ୟାୟନ କରିଥିଲେ । ବ୍ୟକ୍ତିନିଷ୍ଠତାବାଦ (subjectivism) ପରିଣାମରେ ସଂଶୟବାଦରେ ସମାପାନ ହେବା ଦେଖାଯାଏ । ସାଧାରଣତଃ ଆମର ଜ୍ଞାନ କ୍ଷେତ୍ରରେ ବିଷୟୀ ଓ ବିଷୟ ମଧ୍ୟରେ ସଂପର୍କ ବ୍ୟକ୍ତ ହୋଇଥାଏ । ଏକ ବଚନ କ୍ଷେତ୍ରରେ ବିଷୟୀ ଓ ବିଷୟ ଭିତରେ ସମ୍ବନ୍ଧରୁ ଆମେ କୌଣସି ବିଷୟରେ ସୂଚନା ପାଇଥାଏ । କିନ୍ତୁ ବ୍ୟକ୍ତିନିଷ୍ଠତାବାଦରେ କେବଳ ବିଷୟୀ ଉପରେ ପ୍ରାଧାନ୍ୟ ଦିଆଯାଏ ଓ ବିଷୟ ଉପରେ ଥିବା ବର୍ଣ୍ଣନାକୁ ଗୁରୁତ୍ୱ ପ୍ରଦାନ କରାଯାଏ ନାହିଁ । କୁହାଯାଏ ଯେ ବିଷୟୀକୁ ଯାହା ଅନୁମିତ ବା ପ୍ରତିଭାତ ହୁଏ ତାହା ବିଷୟ । ଏହି ପରିପ୍ରେକ୍ଷୀରେ ବିଷୟିନିଷ୍ଠବାଦ ଏକ ପ୍ରକାରର ସଂଶୟବାଦରେ ଉପନୀତ ହୋଇଥାଏ । ଷ୍ଟୋଇକବାଦ ଓ ଏପିକୁରୀୟବାଦ ଯେଉଁ ସମୟରେ ଗ୍ରୀକ୍ ଇତିହାସରେ ବିକଶିତ ହୋଇଥିଲା, ସେହି ସମୟରେ ସଂଶୟବାଦର ବି ଅଭ୍ୟୁଦୟ ଘଟିଥିଲା । କୌଣସି ସିଦ୍ଧାନ୍ତ ନିର୍ମାଣ କ୍ଷେତ୍ରରେ ବିଫଳତା ବା ବୌଦ୍ଧିକ ସୃଜନଶୀଳତାର ଅଭାବ ବି ସଂଶୟବାଦର ବିକାଶ ପାଇଁ କାରଣ ହୋଇଥାଏ ବୋଲି କେତେକ ଲେଖକ ଦର୍ଶାଇଛନ୍ତି । ତେବେ ସଂଶୟବାଦ ବି ଏକ ଦାର୍ଶନିକ ସିଦ୍ଧାନ୍ତ ଓ ଏହାର ଅଭିବ୍ୟକ୍ତି ବିଭିନ୍ନ ସ୍ତରରେ ହୋଇପାରେ । ଗ୍ରୀକ୍ ଦର୍ଶନର ଆରମ୍ଭ ସମୟରୁ ଇନ୍ଦ୍ରିୟଜନିତ ଜ୍ଞାନ କ୍ଷେତ୍ରରେ ସନ୍ଦେହ ବ୍ୟକ୍ତ ହେବା ଦେଖାଯାଏ । ଆମର ପ୍ରତ୍ୟକ୍ଷ ଜ୍ଞାନର ବୈଧତା ନେଇ ପାର୍ମେନିଡୀସ ଓ ପ୍ଲେଟୋ ମଧ୍ୟ ସଂଶୟ ବ୍ୟକ୍ତ କରିଛନ୍ତି । ପ୍ରତ୍ୟକ୍ଷ ଜ୍ଞାନର ସଂଜ୍ଞାନ ମୂଲ୍ୟ (cognitive value) ନେଇ ସେମାନେ ସଂଶୟ କରିବା ପୃଷ୍ଠଭୂମିରେ ସେମାନେ ବୌଦ୍ଧିକ ସମସ୍ୟା ଭିତରେ ପ୍ରବେଶ କରିଛନ୍ତି । ପ୍ରତ୍ୟକ୍ଷ ଜନିତ ବସ୍ତୁନିଷ୍ଠ ଜ୍ଞାନକୁ ଯେଉଁ ଦାର୍ଶନିକମାନେ ମୂଲ୍ୟହୀନ କହି ପ୍ରତ୍ୟାଖ୍ୟାନ କରିଛନ୍ତି ତାହାର ପରିଣାମ ବୌଦ୍ଧିକ ରୂଢ଼ିବାଦ (intellectual dogmatism) ବୋଲି ବର୍ଟ୍ରାଣ୍ଡ ରସେଲ ଅଭିହିତ କରିଛନ୍ତି । (ପୃଷ୍ଠା ୨୩୩) ।

ଗ୍ରୀକ୍ ଦର୍ଶନ ଇତିହାସରେ ସଂଶୟବାଦକୁ ଦୃଢ଼ ଭିତ୍ତି ଦେବାରେ ଯାହାଙ୍କର ବଳିଷ୍ଠ ଅବଦାନ ରହିଛି ସେ ହେଉଛନ୍ତି ପାଇରୋ (Pyrrho) । ସେ ଏଲିସଠାରେ ଖ୍ରୀ.ପୂ. ୩୬୦ ରେ ଜନ୍ମ ହୋଇଥିଲେ ଓ ଆରିଷ୍ଟୋଟଲଙ୍କ ସମସାମୟିକ ଥିଲେ । ସେ ବୃତ୍ତିରେ ଜଣେ ଚିତ୍ରକର ଥିଲେ ଓ ପରେ ଆଲେକ୍‌ଜାଣ୍ଡରଙ୍କର ସୈନ୍ୟ ବାହିନୀରେ ଯୋଗ ଦେଇ ତାଙ୍କର ବିଜୟ ଅଭିଯାନରେ ସାମିଲ ହୋଇଥିଲେ । ପରେ ସେ ଏଥେନ୍‌ସ ଚାଲି ଆସିଥିଲେ ଓ ଦର୍ଶନ ଚର୍ଚ୍ଚାରେ ଆଗ୍ରହ ନେଇଥିଲେ । ତାଙ୍କର ଉପଲବ୍ଧି ହେଲା ଯେ ଥେଲିସଙ୍କ ଠାରୁ ଯେତେ ଯେତେ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତମାନ ଗ୍ରୀସ୍‌ରେ ବିକଶିତ ହୋଇଛି ସେମାନଙ୍କ ମଧ୍ୟରେ ବିରୋଧାଭାସ ରହିଆସିଛି । କୌଣସି ଦୁଇଟି ଦାର୍ଶନିକ ଧାରା ବା ସ୍କୁଲ ଭିତରେ ସହମତି ନାହିଁ । ଦର୍ଶନ କ୍ଷେତ୍ରରେ ହେଉ କିମ୍ବା ଜୀବନର ମୌଳିକ ସମସ୍ୟା କ୍ଷେତ୍ରରେ ହେଉ ଦାର୍ଶନିକମାନେ ଏପରି ସବୁ ବିରୋଧୀ ସିଦ୍ଧାନ୍ତମାନଙ୍କର ଅବତାରଣା କରିଛନ୍ତି ଯାହା

ସମସ୍ୟା ସୃଷ୍ଟି କରୁଛି । ସମାଜରେ ଶାନ୍ତି ରହିଲେ ହିଁ ସୁଖର ପରିବେଶ ଆସିପାରିବ । ମୌଳିକ ସିଦ୍ଧାନ୍ତମାନଙ୍କ ଉପରେ ଖାଲି କଳ୍ପନା ବ୍ୟକ୍ତ କଲେ ନାନା ବିରୋଧାଭାସ ବା ବିପରୀତ ଭାବନା ସୃଷ୍ଟି ହେବ । ଏହାଦ୍ୱାରା ନାନା ବିବାଦ ଆସିବ ଓ ବୌଦ୍ଧିକ ସ୍ତରରେ ସୀମାହୀନ ଭାବରେ ଦ୍ୱନ୍ଦ୍ୱ ସୃଷ୍ଟି ହେବ । ଯେକୌଣସି ଏକ ଦାର୍ଶନିକ ତତ୍ତ୍ୱ ପଶ୍ଚାତରେ ଅନୁମାନ ରହିଛି ଓ କିଛି ଯୁକ୍ତିର ମଧ୍ୟ ଅବତାରଣା କରାଯାଉଛି । ଗୋଟିଏ ମତ ଓ ଠିକ୍ ତାର ବିପରୀତ ମତ ଉଭୟ ସଂପର୍କରେ ଦାର୍ଶନିକ ମାନେ ପରିକଳ୍ପନା କରିଛନ୍ତି ଓ ନିଜର ଯୁକ୍ତି ମଧ୍ୟ ଦେଇଛନ୍ତି । ଏହି ସ୍ଥିତିରେ ପାଇରୋ କୌଣସି ଦାର୍ଶନିକ ପରିକଳ୍ପନା ବା ଅନୁମାନ କରି ନାହାନ୍ତି । ସେ ବରଂ ସଂଶୟବାଦର ବିଚାର ଆଣିଛନ୍ତି । ଏକ ବିଚାର ଅବତାରଣା କରିବାର ଲକ୍ଷ୍ୟ ହେଉଛି ସେହି ଭାବଧାରା ଆନନ୍ଦର ମାର୍ଗରେ ସମାଜକୁ ନେଇ ପାରିବ ଓ ଜୀବନଧାରାରୁ ସକଳ ବିପର୍ଯ୍ୟକୁ ଦୂର କରିପାରିବ । ଷ୍ଟେସ୍ ପାଇରୋଙ୍କ ସଂଶୟବାଦର ଉପକ୍ରମରେ ଲେଖିଛନ୍ତି – "Scepticism, the denial of knowledge, is not posited on account of its speculative interest, but only because Pyrrho sees in it the road to happiness, and the escape from the calamaties of life. ( ପୃଷ୍ଠା ୩୬୨ ) ।

ତେବେ ପାଇରୋ ଦାର୍ଶନିକ ଚର୍ଚ୍ଚା ଭିତରେ କୌଣସି ସିଦ୍ଧାନ୍ତ ନିର୍ମାଣ କରିବାକୁ ଚାହିଁନାହାନ୍ତି କିମ୍ବା ଏକ ତତ୍ତ୍ୱକୁ ସମୂଳେ ପ୍ରତ୍ୟାଖ୍ୟାନ କରିବାକୁ ପ୍ରୟାସ କରିନାହାନ୍ତି । ବରଂ ସେ ସଂଶୟବାଦ ଆଣି ଦର୍ଶନ ପରିସରରେ ରହିଥିବା ବା କଳ୍ପନା କରାଯାଉଥିବା ସିଦ୍ଧାନ୍ତମାନଙ୍କୁ ପ୍ରଶ୍ନ କରିବାକୁ ଚାହିଁଛନ୍ତି । ତାଙ୍କ ଆଭିମୁଖ୍ୟ ବିଷୟରେ ଫ୍ରାଙ୍କ ଥିଲି ଲେଖିଛନ୍ତି,– "Pyrrho's saga refrains from making dogmatic statement on either side; he suspends his judgment as much as possible, and refrains from taking part in heated discussions. He avoids absolute negation as well as categorical affirmation, and therefore differs from the dogmatists, who affirm knowledge, and the sophists, who demonstrate its impossibility. (ପୃଷ୍ଠା. ୧୧୩)

ଗ୍ରୀକ୍ ଦର୍ଶନରେ ସଂଶୟବାଦର ଭିତ୍ତି ପକାଇଥିବା ପାଇରୋଙ୍କର କୌଣସି ଲେଖା ନାହିଁ । ସେ କିଛି ଲେଖି ନାହାନ୍ତି କିମ୍ବା ତାଙ୍କର ଲେଖା ନଷ୍ଟ ହୋଇଯାଇଛି ତାହା ଇତିହାସରେ ଅଜ୍ଞାତ । ତେବେ ତାଙ୍କ ବିଚାର ତାଙ୍କର ଅନୁଗାମୀ ଓ ଶିଷ୍ୟ ଟିମନଙ୍କ ଦ୍ୱାରା ପ୍ରସାରିତ ହୋଇଛି । ପାଇରୋଙ୍କର ଶିଷ୍ୟ ଟିମନ ପାଇରୋଙ୍କ ସିଦ୍ଧାନ୍ତ ପରିପ୍ରେକ୍ଷୀରେ ତିନିଟି ପ୍ରଶ୍ନ ସେ ଉଠାଇଥିବା ଉଲ୍ଲେଖ କରିଛନ୍ତି । ପାଇରୋଙ୍କର ପ୍ରଶ୍ନମାନ ହେଲା–

(୧) ବସ୍ତୁମାନଙ୍କର ସ୍ୱରୂପ କ'ଣ ଓ ସେମାନେ କିପରି ଗଠିତ ?

(୨) ଏହି ବସ୍ତୁମାନଙ୍କ ସହ ଆମର କ'ଣ ସଂପର୍କ ରହିଛି ?

(୩) ବସ୍ତୁମାନଙ୍କ ପ୍ରତି ଆମର ଦୃଷ୍ଟିଭଙ୍ଗୀ କଣ ହେବା ଉଚିତ୍ ?

ଏହି ପ୍ରଶ୍ନ ମାନଙ୍କର ଉତ୍ତର ପୃଷ୍ଠଭୂମିରେ ପାଇରୋ ମତ ଦେବେ ଯେ ବସ୍ତୁମାନଙ୍କର ସ୍ୱରୂପ କ'ଣ ସେ ବିଷୟରେ ଆମେ ଜାଣିପାରିବା ନାହିଁ । ବସ୍ତୁମାନେ ଆମକୁ କିପରି ଦୃଶ୍ୟମାନ ହେଉଛନ୍ତି କିମ୍ବା ପ୍ରତିଭାତ ହେଉଛନ୍ତି ଆମେ କେବଳ ତାହା ହିଁ କହିପାରିବା । ବସ୍ତୁମାନଙ୍କର ଅନ୍ତର୍ନିହିତ ଲକ୍ଷଣ ବିଷୟରେ କିମ୍ବା ସେମାନଙ୍କର ନିଜସ୍ୱ ସ୍ୱରୂପ ସଂପର୍କରେ ଆମେ ଜାଣିବାକୁ ସମର୍ଥ ନୁହେଁ । ଏକ ବସ୍ତୁ ଭିନ୍ନ ଭିନ୍ନ ଲୋକଙ୍କୁ ଭିନ୍ନ ଭିନ୍ନ ଭାବରେ ପରିଦୃଶ୍ୟ ହୋଇଥାଏ । ସୁତରାଂ ଏକ ବସ୍ତୁ ବିଷୟରେ ଯେହେତୁ ଭିନ୍ନ ଭିନ୍ନ ମତ ରହିପାରିବ କେଉଁ ମତଟି ଯଥାର୍ଥ ଆମେ ତାହା ସ୍ଥିର କରିପାରିବା ନାହିଁ । ଏପରିକି ଦାର୍ଶନିକମାନେ ବସ୍ତୁ ଜଗତ ବିଷୟରେ ନାନା ବିରୋଧି ମତର ଅବତାରଣା କରିବା ଦେଖାଯାଏ । ବାସ୍ତବ ଜୀବନରେ ସାଧାରଣ ଲୋକମାନେ ମଧ ଏକ ବିଷୟରେ ବିଭିନ୍ନ ଧାରଣା ପୋଷଣ କରନ୍ତି । କୌଣସି ଉକ୍ତିର ଏକ ବିପରୀତ ଉକ୍ତି ମଧ ସମାନ ଯୁକ୍ତିଦ୍ୱାରା ଉପସ୍ଥାପନ କରାଯାଇପାରେ । ଜଣେ ଏକ ପରିସ୍ଥିତିରେ ଯେଉଁ ଅଭିକଥନ (assertion) ପ୍ରକାଶ କରୁଛନ୍ତି ଠିକ୍ ତାର ଏକ ବିପରୀତ ଅଭିକଥନ ସମାନ ଯୁକ୍ତି ଦେଇ ଅନ୍ୟ ଜଣେ ପ୍ରକାଶ କରିପାରନ୍ତି । ବିଭିନ୍ନ ବ୍ୟକ୍ତି ଭିନ୍ନ ଭିନ୍ନ ମତାମତ ରଖିପାରନ୍ତି କିନ୍ତୁ କିଛି ଯେ ଅଭ୍ରାନ୍ତ ତାହା କହିହେବ ନାହିଁ । ସୁତରାଂ ନିଶ୍ଚିତ ଜ୍ଞାନ ସମ୍ଭବ ନୁହେଁ । ଜ୍ଞାନ କ୍ଷେତ୍ରରେ ଦାର୍ଶନିକ ମାନେ ଅଭ୍ରାନ୍ତତା ଲକ୍ଷ୍ୟ ରଖନ୍ତି, କିନ୍ତୁ ବାସ୍ତବତା ହେଉଛି ନା ଜ୍ଞାନ ସମ୍ଭବ ନା ଅଭ୍ରାନ୍ତତା ସମ୍ଭବ । ସୁତରାଂ ସବୁ ବିଷୟକୁ ସନ୍ଦେହ କରିବାର ଅବକାଶ ରହିଛି । କୌଣସି ବିଷୟରେ ଆମର ଜ୍ଞାନ ସମ୍ଭବ ନୁହେଁ । ସବୁ କିଛି ବିଷୟରେ ସଂଶୟ ରହିବା ସମ୍ଭବ । ଏଣୁ କୌଣସି ପ୍ରସଙ୍ଗ ଉପରେ ଆମେ ଏକ ସକାରାତ୍ମକ ଉକ୍ତି ନିର୍ଦ୍ଦିଷ୍ଟ ଭାବରେ ବ୍ୟକ୍ତ କରିପାରିବା ନାହିଁ । ସାଧାରଣ କ୍ଷେତ୍ରରେ ହେଉ ବା ଦାର୍ଶନିକ ବିଚାର କ୍ଷେତ୍ରରେ ହେଉ ସବୁ କିଛି ସନ୍ଦେହର ବିଷୟ । ଏକ ବସ୍ତୁ ବାସ୍ତବରେ କ'ଣ ତାହା ଆମେ କହିବା ସମ୍ଭବ ନୁହେଁ । ଆମେ କେବଳ ଏହା କହିପାରିବା ଯେ ଏହା ଏପରି ଜଣାପଡୁଛି ବା ମୋତେ ଏପରି ପ୍ରତିଭାତ ହେଉଛି । କୌଣସି ଏକ ଉକ୍ତି ପୂର୍ବରୁ ଆମେ କହିବା ଯଥାର୍ଥ ଯେ 'ସମ୍ଭବତଃ', 'ଯାହା ଜଣାପଡୁଛି', 'ହୋଇପାରେ' ଏହା ସଂଯୁକ୍ତ କରିବା ଦରକାର ।

ଯେତେ ସବୁ ଦାର୍ଶନିକ ମତମାନଙ୍କର ବିକାଶ ହେଉଛି କୌଣସି ମତର ପ୍ରମାଣ କେହି ଦାର୍ଶନିକ କରିନାହାନ୍ତି । ଦାର୍ଶନିକ ମାନେ ବରଂ ଏକ ମତକୁ ଅହେତୁକ ବା ଡଗ୍‌ମାଟିକ ଭାବରେ ଗ୍ରହଣ କରିଛନ୍ତି । ଏଣୁ ସେମାନଙ୍କର ସିଦ୍ଧାନ୍ତମାନ କେବଳ କାଳ୍ପନିକ ବା ହାଇପୋଥେଟିକାଲ, ସେଥିରେ କୌଣସି ସତ୍ୟତା ନାହିଁ । କୌଣସି ବିଷୟରେ ବସ୍ତୁନିଷ୍ଠ ଜ୍ଞାନ ସମ୍ଭବ ନୁହେଁ । ଅତିବେଶିରେ କୁହାଯାଇପାରିବ ଯେ ଯାହା ଜଣାପଡୁଛି ବା ହୋଇପାରେ ଏହା ଏପରି । କିନ୍ତୁ ତାହା କେବଳ ଏକ ସଂଭାବନାମୟ ଅଭିବ୍ୟକ୍ତି । ଆମ ଅନୁଭୂତିରେ ବା ଆମ ବିଚାରରେ ଏହା ଏପରି ବୋଧହେଉଛି । ହୁଏତ ଅନ୍ୟର ଅନୁଭୂତିରେ ଏହା ଅନ୍ୟପ୍ରକାର ହେବା ଅସମ୍ଭବ ନୁହେଁ ।

ସୁତରାଂ ଆମେ ଏହି ସବୁ କଳ୍ପନାମୂଳକ ଅନୁମାନରୁ ମୁକ୍ତ ରହିବା ଦରକାର । ସବୁ କଳ୍ପନାମାନଙ୍କୁ ପରିତ୍ୟାଗ କଲେ ହିଁ ଆମେ ସୁଖରେ ରହିପାରିବା । ଆମେ ପ୍ରକୃତିକୁ କେବଳ ଗ୍ରହଣ କରିବା ଦରକାର ଓ ପ୍ରକୃତି ଆଧାରରେ ଜୀବନ ବଞ୍ଚିଲେ ସୁଖର ଜୀବନ ଅତିବାହିତ କରିପାରିବା ।

ସୈଦ୍ଧାନ୍ତିକ କ୍ଷେତ୍ର ହେଉ ବା ବ୍ୟାବହାରକ କ୍ଷେତ୍ର ହେଉ କୌଣସି କ୍ଷେତ୍ରରେ ନିଶ୍ଚିତତା ଆଶା କରାଯାଇ ପାରିବ ନାହିଁ । କୌଣସି ବିଷୟ ନିଜସ୍ୱ ସ୍ୱରୂପରେ ସତ୍ୟ ବା ମିଥ୍ୟା ନୁହେଁ, ଏହା ସତ୍ୟ ବା ମିଥ୍ୟା ପରି ପ୍ରତୀତ ହୋଇପାରେ । ସେହିପରି ପାଇରୋ ଏହି ମତକୁ ବ୍ୟାବହାରିକ କ୍ଷେତ୍ରରେ ମଧ୍ୟ ପ୍ରୟୋଗ କରିଛନ୍ତି । କୌଣସି ବିଷୟ ନିଜସ୍ୱ ଭାବରେ ଭଲ ବା ମନ୍ଦ ନୁହେଁ । ଆମ ଦୃଷ୍ଟିକୋଣରୁ, ସାମାଜିକ ପରଂପରା, ଚଳଣି, ନିୟମ ଇତ୍ୟାଦି ମାନଦଣ୍ଡରୁ କିଛି ବିଷୟକୁ ଆମେ ଭଲ ବା ମନ୍ଦ କହିଥାଉ । ଆମେ ଯେଉଁ କାର୍ଯ୍ୟକରୁ ସେଥିରେ ଆମର ଆଗ୍ରହ ରହିଥାଏ । ଗୋଟିଏ କ୍ଷେତ୍ରରେ ଆଗ୍ରହ ପ୍ରକାଶ କରିବା ଅର୍ଥ ଆମେ ତାହାକୁ ଅନ୍ୟ ଅପେକ୍ଷା ଭଲ ମନେକରୁ । ସିନେମା ଦେଖିବାକୁ ଯିବ ବା ନିଜ ବନ୍ଧୁଙ୍କ ମେଳରେ ବସି ତାସ୍ ଖେଳିବ ଜଣେ ବ୍ୟକ୍ତି ନିଷ୍ପତ୍ତି କରିଥାଏ । କେଉଁ କ୍ଷେତ୍ରରେ ତାକୁ ଅଧିକ ଆନନ୍ଦ ମିଳିବ ସେ ସ୍ଥିର କରିଥାଏ । ସେ ଏପରିକି ଏହି ଦୁଇ କାର୍ଯ୍ୟକୁ ପରିହାର କରି ଅନ୍ୟକିଛି ମଧ୍ୟ କରିପାରେ । ନିଜର ମନକୁ ନିୟନ୍ତ୍ରଣ କରିବା ଅର୍ଥ ନିଜର କାର୍ଯ୍ୟକୁ ମଧ୍ୟ ନିୟନ୍ତ୍ରଣ କରିବା । କ'ଣ କଲେ ଜଣେ ଅଧିକ ଖୁସି ହୋଇପାରିବ ଏହା ସେ ବିଶ୍ୱାସ କରିଥାଏ । ତେବେ କୌଣସି କ୍ଷେତ୍ରରେ ନିଜର ମତ ନଦେବା, ସବୁ ପ୍ରତି ଉଦାସୀନ ରହିବା ଓ ବିତସ୍ପୃହତା ବ୍ୟକ୍ତକରିବା ହେଉଛି ଏକ ପ୍ରକାର ସଂଶୟ ବ୍ୟକ୍ତକରିବା । ପାଇରୋ କହିବାକୁ ଚାହାନ୍ତି ଯେ ସମସ୍ତ କାର୍ଯ୍ୟ ବିଶ୍ୱାସର ଆଧାର ଉପରେ ନିର୍ଭରକରେ । ପ୍ରତ୍ୟେକ କାର୍ଯ୍ୟ ପ୍ରତି ବିତସ୍ପୃହତା ବ୍ୟକ୍ତ କରିବା ଅର୍ଥ ସମସ୍ତ ଇଚ୍ଛାକୁ ପରିହାର କରିବା । କୌଣସି ବିଷୟରେ ଇଚ୍ଛା ବ୍ୟକ୍ତ କରିବା ଅର୍ଥ ନିଜର ମତ ପ୍ରକାଶ କରିବା ଯାହାର ତାତ୍ପର୍ଯ୍ୟ ଏକ କାର୍ଯ୍ୟ ଅନ୍ୟ କାର୍ଯ୍ୟ ଅପେକ୍ଷା ଭଲ ବୋଲି ମତ ଦେବା । ଜଣେ ଯାହା କାମନା କରେ ତାହା ପୂରଣ ନ ହେଲେ ସେ ସେଥିରେ ଅଶାନ୍ତ ହୋଇଥାଏ । କିନ୍ତୁ ବିଜ୍ଞ ବ୍ୟକ୍ତିମାନେ ସକଳ କାମନାରୁ ମୁକ୍ତ ରହିବାକୁ ଚାହାନ୍ତି । କାମନାରୁ ମୁକ୍ତ ରହିବା ଅର୍ଥ ସକଳ ଅଶାନ୍ତିରୁ ମୁକ୍ତ ହେବା । ଲୋକମାନେ ଚାହୁଁଥିବା ବିଷୟ ପଛରେ ମନପ୍ରାଣ ଦେଇ ଲାଗିଥାନ୍ତି, କେତେକ ବିଷୟକୁ ଅନ୍ୟଠାରୁ ଅଧିକ ପସନ୍ଦ କରନ୍ତି । ତେବେ ଏସବୁ କାର୍ଯ୍ୟ ନିରର୍ଥକ ମନେହୁଏ । କାରଣ କୌଣସି କିଛି ସେପରି ମୂଲ୍ୟବାନ ନୁହେଁ । ସବୁ ପ୍ରତି ବିତସ୍ପୃହତା ପ୍ରଦର୍ଶନ କରିବା ଯଥାର୍ଥ । କାରଣ କୌଣସି କିଛି ସେପରି ଜୀବନ ପାଇଁ ମୂଲ୍ୟ ରଖିନଥାଏ । କାର୍ଯ୍ୟ କରିବାର ବାଧ୍ୟବାଧକତାରୁ ଜଣଙ୍କୁ ସାମାଜିକ ଚଳଣି, ନିୟମ, ସମ୍ଭାବନା ଇତ୍ୟାଦିକୁ ପାଳନ କରିବାକୁ ପଡିଥାଏ । ତେବେ କୌଣସି ବିଷୟ ଯେ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ବା ବୈଧ ସେସବୁ କ୍ଷେତ୍ରରେ ପାଇରୋ ସର୍ବଦା ସଂଶୟ ବ୍ୟକ୍ତ କରିଥାନ୍ତି ।

ପାଇରୋଙ୍କ ମତବାଦକୁ କେତେକ ରଢ଼ିବାଦୀ ସଂଶୟ ବୋଲି ଅଭିହିତ କରିଛନ୍ତି । ଜ୍ଞାନର ବିଭିନ୍ନ ସ୍ତରରେ ସଂଶୟ ବ୍ୟକ୍ତ ହେବା ସ୍ୱାଭାବିକ । ଏଠାରେ ସଂଶୟ ସ୍ପଷ୍ଟତା ପାଇଁ ବ୍ୟକ୍ତ ହୋଇଥାଏ । ଜଣେ ବୈଜ୍ଞାନିକ ଏକ ବିଷୟକୁ ବ୍ୟାଖ୍ୟା କରିବା କ୍ଷେତ୍ରରେ କହିଥାନ୍ତି ଯେ "ଯେତେ ଦୂର ସମ୍ଭବ କରୋନା ଏକ ମହାମାରୀ ଭାବରେ ବ୍ୟାପିବାର ଏହା ହେଉଛି କାରଣ, ତଥାପି ସେ ପୂରା ନିଶ୍ଚିତ ନୁହନ୍ତି" । ଜଣେ ବୌଦ୍ଧିକ ଜିଜ୍ଞାସୁ ବ୍ୟକ୍ତି ଏକ ବିଷୟରେ କହିପାରନ୍ତି " ସେ ଏହି ବିଷୟରେ ସ୍ପଷ୍ଟ ନୁହନ୍ତି, ତେବେ ଅଧିକ ଅନୁଧ୍ୟାନ ଓ ଅଧ୍ୟୟନ ଦ୍ୱାରା ସେ ବିଷୟଟି ଉପରେ ଆଗକୁ ସ୍ପଷ୍ଟ ହୋଇପାରିବେ" । କିନ୍ତୁ ପାଇରୋ ଯେଉଁ ସଂଶୟବାଦର ଅବତାରଣା କରିଛନ୍ତି ତାହାର ତାତ୍ପର୍ଯ୍ୟ ହେଉଛି "କୌଣସି ବିଷୟରେ ନା କେହି କିଛି ଜାଣିଛନ୍ତି ନା ଜାଣିପାରିବେ" । ଜାଣିବାର ସମ୍ଭାବନାକୁ ଏଥିରେ ପରିହାର କରାଯାଏ । ଏହି ପ୍ରକାରର ବିଚାରବୋଧକୁ କେବଳ ସଂଶୟ କୁହାଯିବ ନାହିଁ ଏହାକୁ ରଢ଼ିବାଦୀ ସଂଶୟ କୁହାଯାଇପାରେ ।

ପାଇରୋଙ୍କ ସଂଶୟବାଦ ଗ୍ରୀସ୍‌ରେ ପ୍ରାୟ ବିଲୁପ୍ତ ହୋଇଗଲା, ତେବେ ପ୍ଲେଟୋଙ୍କ ଏକାଡେମୀରେ ପରେ ଏକ ପ୍ରକାର ସଂଶୟବାଦର ବିକାଶ ଘଟିଥିଲା । ପ୍ଲେଟୋଙ୍କ ଦେହାନ୍ତ ପରେ ତାଙ୍କ ଦ୍ୱାରା ସ୍ଥାପିତ ଏକାଡେମୀ ଚାଲୁରହିଲା ଓ ପ୍ଲେଟୋ ଜ୍ଞାନର ଯେଉଁ ପରଂପରା ସୃଷ୍ଟି କରିଥିଲେ ତାହା ବହୁ ଦିନ ଧରି ଅବ୍ୟାହତ ରହିଲା । ଆର୍ସେଲିୟସ୍ ଯେତେବେଳେ ପ୍ଲେଟୋଙ୍କ ଏକାଡେମୀର ଦାୟିତ୍ୱ ନେଲେ ସେତେବେଳେ ଏକାଡେମୀରେ ସଂଶୟବାଦର ଅନୁପ୍ରବେଶ ଘଟିଲା । ଏକାଡେମୀର ବି ନୂଆ କଳେବର ହେଲା ଓ ଏହାକୁ 'ନୂତନ ଏକାଡେମୀ' କୁହାଗଲା । ଏକାଡେମୀର ସ୍ୱରୂପରେ ମୌଳିକ ପରିବର୍ତ୍ତନ ଆସିଲା । ସେହି ସମୟର ଗ୍ରୀସ୍‌ରେ ଷ୍ଟୋଇସିଜମ୍ ଏକ ପ୍ରମୁଖ ଦାର୍ଶନିକ ଧାରା ଭାବେ ଅଧିକ ଚର୍ଚ୍ଚା ହେଉଥିଲା । ତେବେ ପ୍ଲେଟୋଙ୍କ ନୂତନ ଏକାଡେମୀ ଷ୍ଟୋଇକବାଦର ତୀବ୍ର ସମାଲୋଚନା କରିବାକୁ ଲାଗିଲା । ଷ୍ଟୋଇକବାଦ ଏକ ପ୍ରଭାବଶାଳୀ ଓ ଶକ୍ତିଶାଳୀ ଚିନ୍ତନ ଭାବେ ଯେଉଁ ସକାରାତ୍ମକ ଚିନ୍ତାଧାରା ପ୍ରସାର କରୁଥିଲା ନୂତନ ଏକାଡେମୀ ତାହାର ଗମ୍ଭୀର ବିରୋଧ କରିବାକୁ ଲାଗିଲା । ସଂଶୟବାଦୀମାନେ ଷ୍ଟୋଇକମାନଙ୍କ ବିଚାରକୁ ରଢ଼ିବାଦୀ ବୋଲି ଚିତ୍ରଣ କଲେ । ଆର୍ସେଲିୟସ ଷ୍ଟୋଇକ ମାନଙ୍କର ସମସ୍ତ ଭାବଧାରାକୁ ତ ସମାଲୋଚନା କରୁଥିଲେ, ତା ଭିତରେ ସେମାନଙ୍କ ସତ୍ୟାପନର ମାନଦଣ୍ଡକୁ ତୀବ୍ର ଭାବରେ ବିରୋଧ କରୁଥିଲେ । ଆର୍ସେଲିୟସ କହୁଥିଲେ ଯେ କୌଣସି ଜ୍ଞାନ ଯେ ଅଭ୍ରାନ୍ତ ଏହା କୌଣସି ଭାବେ ଗ୍ରହଣଯୋଗ୍ୟ ନୁହେଁ । କୌଣସି ଜ୍ଞାନ ଯେ ସଂଶୟର ଊର୍ଦ୍ଧ୍ୱରେ ଏହାକୁ ସେ ସ୍ୱୀକାର କରନ୍ତି ନାହିଁ । ଯେ କୌଣସି ବିଷୟକୁ ସନ୍ଦେହ କରାଯାଇ ପାରେ । ଆର୍ସେଲିୟସଙ୍କର ଉକ୍ତିକୁ ଷ୍ଟେସ୍ ଉଦ୍ଧାରକରି ଲେଖିଛନ୍ତି, " I am certain of nothing. I am not even certain that I am certain of nothing". (ପୃଷ୍ଠା ୩୬୫) । ଆର୍ସେଲିୟସ ସବୁ ବିଷୟକୁ ତ ସନ୍ଦେହ କରୁଛନ୍ତି, ଏପରିକି ସେ ଯେ ସବୁ ବିଷୟକୁ ସନ୍ଦେହ କରୁଛନ୍ତି ଏହାକୁ ମଧ୍ୟ ସଂଶୟ

ଦୃଷ୍ଟିରେ ଦେଖୁଛନ୍ତି । ଆର୍ସେଲିୟସ ଆକାଡେମୀରେ ଅଧ୍ୟାପନା କରୁଥିଲା ସମୟରେ ସବୁ ବିଷୟକୁ ତର୍ଜମା କରି, ବ୍ୟାଖ୍ୟା କରି ଓ ପରୀକ୍ଷାକରି ଗ୍ରହଣ କରିବାକୁ କହୁଥିଲେ । ଏହାଦ୍ୱାରା ସତ୍ୟକୁ ମିଥ୍ୟାଠାରୁ ପୃଥକ୍ କରିହେବ । ସେ ଆରମ୍ଭରେ ଏକ ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିଲେ । କିନ୍ତୁ ଜିନୋଙ୍କର ଷ୍ଟୋଇକବାଦକୁ ସମାଲୋଚନା କରିବା ଭିତରେ ସଂଶୟବାଦୀ ହୋଇଗଲେ । ଜିନୋଙ୍କ ବିଚାରରେ ରହିଥିବା ତାର୍କିକ ଅସଂଗତିମାନଙ୍କୁ ସେ ଦର୍ଶାଇଥିଲେ । ଇନ୍ଦ୍ରିୟଦ୍ୱାରା ପ୍ରାପ୍ତ ଜ୍ଞାନ କିପରି ତ୍ରୁଟିପୂର୍ଣ୍ଣ ହୋଇପାରେ ତାହା ସେ ସୂଚାଉଥିଲେ । ସକ୍ରେଟିସ୍‌ଙ୍କର ବକ୍ତବ୍ୟ ଥିଲା- "ମୁଁ ଗୋଟିଏ ବିଷୟରେ ନିଶ୍ଚିତ ଯେ ମୁଁ ଜଣେ ଅଜ୍ଞ ବ୍ୟକ୍ତି" । ଆର୍ସେଲିୟସ ନିଜ ସଂଶୟକୁ ମଧ୍ୟ ସନ୍ଦେହଦୃଷ୍ଟିରେ ଦେଖୁଥିଲେ । ତତ୍ତ୍ୱମୀମାଂସା କ୍ଷେତ୍ରରେ ଅଭ୍ରାନ୍ତତା ପ୍ରତିଷ୍ଠା କରିହେବ ନାହିଁ । କିନ୍ତୁ ଆମର ଆଚରଣ କ୍ଷେତ୍ରରେ ଭଲ-ମନ୍ଦର ପାର୍ଥକ୍ୟ ନେଇ ଷ୍ଟୋଇକମାନଙ୍କର ବିଚାରଧାରାକୁ ସେ ସଂପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରୁନଥିଲେ ।

ଆର୍ସେଲିୟସଙ୍କର ସଂଶୟବାଦକୁ ନୂତନ ଏକାଡେମୀ ସଂପୂର୍ଣ୍ଣ ଭାବେ ଗ୍ରହଣ କରିନଥିଲା । ପାଇରୋ ସଂଶୟବାଦକୁ କେବଳ ସିଦ୍ଧାନ୍ତ ସ୍ତରରେ ରଖିନଥିଲେ ଏହାକୁ ବାସ୍ତବ ଜୀବନ କ୍ଷେତ୍ରରେ ମଧ୍ୟ ପ୍ରୟୋଗ କରୁଥିଲେ । ନୂତନ ଏକାଡେମୀ ଆଚରଣ କ୍ଷେତ୍ରରେ ସଂଶୟବାଦରୁ ମୁକ୍ତ ରହିଥିଲା । କୌଣସି ଜ୍ଞାନ ଯେ ଅଭ୍ରାନ୍ତ ଏହାକୁ ସନ୍ଦେହ କରାଯାଇପାରେ କିନ୍ତୁ ଜ୍ଞାନର ସମ୍ଭାବନାକୁ ଅସ୍ୱୀକାର କରାଯାଇପାରିବ ନାହିଁ । ଏହି ବିଷୟ ଆମର କର୍ମକ୍ଷେତ୍ରକୁ ମଧ୍ୟ ପ୍ରଯୁଜ୍ୟ ହୋଇପାରେ ।

ଏକାଡେମୀକ ସଂଶୟବାଦୀ ଭାବରେ ଯେ ଅଧିକ ପ୍ରଭାବଶାଳୀ ସେ ହେଉଛନ୍ତି କାର୍ନେଡିସ । ତାଙ୍କ ଚିନ୍ତାଧାରାରେ ଅଧିକ ସଂହତି ଦେଖିବାକୁ ମିଳେ, ତେବେ ସଂଶୟବାଦକୁ ସେ କିଛି ନୂଆ ଅବଦାନ ଦେଇନାହାନ୍ତି । ସେ ଜଣେ ବିଜ୍ଞ ସମାଲୋଚକ ଓ କୌଣସି ସିଦ୍ଧାନ୍ତର ଦୁର୍ବଳତା ବାହାର କରିବାରେ ସେ ପାରଙ୍ଗମ । ସେ କେବଳ ଷ୍ଟୋଇକବାଦର ସମାଲୋଚକ ନଥିଲେ, ଯେକୌଣସି ଦାର୍ଶନିକ ସିଦ୍ଧାନ୍ତକୁ ସେ ବିଶ୍ଳେଷଣ କରି ତାହାର ଦୁର୍ବଳତା ଦେଖାଉଥିଲେ । ସବୁ କ୍ଷେତ୍ରକୁ ସେ ସନ୍ଦେହ ଦୃଷ୍ଟି ନେଇ ସେ ସଂଶୟବାଦର ବଡ ପ୍ରବକ୍ତା ଭାବରେ ପରିଚିତ ହୋଇଥିଲେ ।

ସେ କହୁଥିଲେ ଯେ କୌଣସି ବିଷୟକୁ ପ୍ରମାଣ କରିହେବ ନାହିଁ । ଏକ ବିଷୟକୁ ପ୍ରମାଣ କରିବାକୁ ହେଲେ ଏହା ଯେଉଁ ହେତୁବଚନରୁ ନିସୃତ ହୋଇଛି ତାହାକୁ ପ୍ରମାଣ କରିବାକୁ ହେବ । ହେତୁ ବଚନକୁ ପ୍ରମାଣ ନକରି ସିଦ୍ଧାନ୍ତକୁ ପ୍ରମାଣ କରାଯାଇପାରିବ ନାହିଁ । ପୁନଶ୍ଚ ଏକ ହେତୁ ବଚନକୁ ପ୍ରମାଣ କରିବାକୁ ହେଲେ, ତାହା ଯାହା ଆଧାରରେ ପ୍ରମାଣିତ ହେବ ତାକୁ ପ୍ରମାଣ କରିବାକୁ ହେବ । ଏହିପରି ଦେଖିବାକୁ ଗଲେ ଏହା ସୀମାତୀତ ବା ଅସୀମ ଭାବରେ ପ୍ରମାଣ ଆବଶ୍ୟକ କରିବ । ସୁତରାଂ କୌଣସି ସିଦ୍ଧାନ୍ତକୁ ପ୍ରମାଣ କରବା ସମ୍ଭବ ନୁହେଁ । କୌଣସି ବସ୍ତୁ ବିଷୟରେ ଆମର ଜ୍ଞାନ ଯେ ସତ୍ୟ ତାହା କହିବା ସମ୍ଭବ ନୁହେଁ । ବସ୍ତୁ ବିଷୟରେ ଆମର ଧାରଣାକୁ

ବସ୍ତୁ ସହିତ ତୁଳନା କରିବାପରେ ଏହା ସତ୍ୟ କି ନୁହଁ ତାହା କହିହେବ । କିନ୍ତୁ ଏହା କିପରି କରାଯିବ ? ଆମେ ଆମ ମନରୁ ବାହାରିଲେ ଯାଇ ଆମର ଭାବନାକୁ ବସ୍ତୁ ସହିତ ତୁଳନା କରିପାରିବା । ବସ୍ତୁ ବିଷୟରେ ଆମେ ଯାହା ଜାଣୁ ସେତ ଆମ ମନର ଭାବନା । ଆମେ ମନରୁ ବାହାରକୁ ନ ଗଲେ ଆମ ମନର ଭାବନାକୁ ବସ୍ତୁ ସହିତ କିପରି ତୁଳନା କରିପାରିବା ? ମନରେ ବସ୍ତୁ ବିଷୟରେ ଯେଉଁ ଧାରଣା ରହିଛି ତାହା ତ ଏକ କପି ମାତ୍ର । ସୁତରାଂ ଆମର ବସ୍ତୁ ବିଷୟକ ଜ୍ଞାନ ଯେ ସତ୍ୟ ଏହାକୁ ନିର୍ଦ୍ଧାରଣ କରାଯାଇ ପାରିବ ନାହିଁ । କାର୍ନେଡିସ ଏହିପରି ନାନା ଦ୍ୱନ୍ଦ୍ୱନ୍ୟାୟ ବ୍ୟବହାର କରି କୌଣସି ସିଦ୍ଧାନ୍ତକୁ ପ୍ରମାଣ କରିହେବ ନାହିଁ ବା କୌଣସି ବସ୍ତୁ ବିଷୟକ ଜ୍ଞାନ ଯେ ସତ୍ୟ ଏହାକୁ ସ୍ଥିର କରାଯାଇ ପାରିବ ନାହିଁ ଏହିପରି ବିଚାରମାନ ଦେଇ ସଂଶୟବାଦକୁ ପ୍ରତିଷ୍ଠା କରିବାକୁ ପ୍ରୟାସ କରିଛନ୍ତି ।

କାର୍ନେଡିସ ତାଙ୍କର ଦ୍ୱନ୍ଦ୍ୱନ୍ୟାୟକୁ ବିଭିନ୍ନ ସ୍ତରକୁ ପ୍ରସାରିତ କରି ବିଭିନ୍ନ ବିଚାର ଭିତରେ ରହିଥିବା ମତମାନଙ୍କର ଦୁର୍ବଳତା ଦର୍ଶାଇଛନ୍ତି । ଠିକ୍ ସଫିଷ୍ଟମାନଙ୍କ ପରି ସେ ଅନ୍ୟମାନଙ୍କୁ ଯୁକ୍ତି ଆଧାରରେ ବିରୋଧାଭାସ ଭିତରେ ପୂରାଇଦିଅନ୍ତି । ଷ୍ଟୋଇକ ମାନଙ୍କର ନୈତିକ ଓ ଧାର୍ମିକ ଭାବନାମାନଙ୍କୁ ସେ କୂଟନ୍ୟାୟ ପ୍ରୟୋଗ କରି ସମାଲୋଚନା କରିଛନ୍ତି । ଷ୍ଟୋଇକମାନେ ଈଶ୍ୱରଙ୍କୁ ଜଗତର ଆତ୍ମା ବୋଲି ଗ୍ରହଣ କରିଛନ୍ତି । କାର୍ନେଡିସଙ୍କ ମତରେ ଆତ୍ମାପରି ଈଶ୍ୱରଙ୍କର ଅନୁଭବ ରହିଥିବ । ଅନୁଭବମାନ ପରିବର୍ତ୍ତନଶୀଳ । ଏଣୁ ଈଶ୍ୱର ମଧ୍ୟ ପରିବର୍ତ୍ତନଶୀଳ । ଯାହାର ପରିବର୍ତ୍ତନ ହୁଏ ତାହାର ଅବକ୍ଷୟ ସମ୍ଭବ । ଏକ ଅବକ୍ଷୟ ସତ୍ତା ବିଲୁପ୍ତ ହେବା ସମ୍ଭବ । ତେଣୁ ଷ୍ଟୋଇକ ମାନଙ୍କର ଈଶ୍ୱର ଚିରନ୍ତନ ନୁହନ୍ତି । ଏକ ଅନୁଭବୀ ଈଶ୍ୱର ଈଶ୍ୱର ହେବା ସମ୍ଭବ ନୁହେଁ । ଷ୍ଟୋଇକମାନଙ୍କ ଈଶ୍ୱର ସଂପର୍କରେ କାର୍ନେଡିସ ଅନ୍ୟ ଏକ ଯୁକ୍ତି ମଧ୍ୟ ଦେଇଛନ୍ତି । ଯଦି ଈଶ୍ୱରଙ୍କର ଅସ୍ତିତ୍ୱକୁ ସ୍ୱୀକାର କରାଯିବ ସେ ସସୀମ ବା ଅସୀମ ହେବେ । ଯଦି ସେ ସସୀମ, ସେ ସମଗ୍ର ବିଶ୍ୱର ଅଂଶବିଶେଷ । ଯାହା ଏକ ସମଗ୍ରର ଅଂଶ, ତାହା ପରିପୂର୍ଣ୍ଣ, ସମଗ୍ର ଓ ସ୍ୱୟଂସଂପୂର୍ଣ୍ଣ ହୋଇପାରିବେ ନାହିଁ । ଯଦି ଈଶ୍ୱରଙ୍କୁ ଅସୀମ ଭାବରେ ନିଆଯିବ,ତେବେ ସେ ଅପରିବର୍ତ୍ତନୀୟ, ଅଚଳ ହେବା ସହ ଅନୁଭବରହିତ ହେବେ । ଏକ ଅପରିବର୍ତ୍ତନୀୟ ଓ ଅନୁଭବବିହୀନ ସତ୍ତା କେବେହେଲେ ଜୀବିତ ବ୍ୟକ୍ତି ବା ବାସ୍ତବ ହୋଇପାରିବେ ନାହିଁ । ସୁତରାଂ ଈଶ୍ୱରଙ୍କୁ ସସୀମ ବା ଅସୀମ ବୋଲି ପରିକଳ୍ପନା କରିବା ସମ୍ଭବ ନୁହେଁ । ପୁନଶ୍ଚ ଈଶ୍ୱର ଭୌତିକ କିମ୍ବା ଅଭୌତିକ ବୋଲି କଳ୍ପନା କରାଯାଇପାରେ । ଯଦି ଈଶ୍ୱର ଅଭୌତିକ ଅର୍ଥାତ୍ ଶରୀରବିହୀନ ତେବେ ସେ ଅନୁଭବରହିତ । ଯଦି ଈଶ୍ୱର ଭୌତିକ ଅର୍ଥାତ୍ ଶରୀରଯୁକ୍ତ ତେବେ ସେ ଶାଶ୍ୱତ ନୁହନ୍ତି । ଏହିପରି ଈଶ୍ୱରଙ୍କ ସଂପର୍କରେ ବିଭିନ୍ନ କୂଟନ୍ୟାୟର ଅବତାରଣା କରି ଈଶ୍ୱରଙ୍କୁ ଯେପରି ପରିକଳ୍ପନା କଲେ ମଧ୍ୟ ସେଥିରେ କିପରି ବିରୋଧାଭାସ ଅନ୍ତର୍ନିହିତ ହୋଇରହିଛି ତାହା କାର୍ନେଡ଼ିସ ଦର୍ଶାଇଛନ୍ତି ।

ଈଶ୍ୱରଙ୍କ ସମ୍ବନ୍ଧରେ ବିଭିନ୍ନ କୂଟନ୍ୟାୟର ଅବତାରଣା କରିବା ପରି ସେ କର୍ତ୍ତବ୍ୟ, ଦାୟିତ୍ୱବୋଧ, ଅଧିକାର ଇତ୍ୟାଦି ନୈତିକ ଭାବନା କ୍ଷେତ୍ରରେ ମଧ୍ୟ ବିଭିନ୍ନ କୂଟନ୍ୟାୟର ଆଶ୍ରୟ ନେଇଛନ୍ତି । ଆର୍ସେଲିୟସଙ୍କ ପରେ

ପ୍ଲେଟୋଙ୍କ ଏକାଡେମୀର ଦାୟିତ୍ୱ କାର୍ନେଡିସ୍ ନେଇଥିଲେ । ଖ୍ରୀ.ପୂ. ୧୫୬ ରେ ସେ ଗ୍ରୀସ୍‌ରୁ ଏକ ରାଜପ୍ରତିନିଧି ଭାବରେ ରୋମ୍‌କୁ ଯାଇଥିଲେ । ଏକ ରାଷ୍ଟ୍ରଦୂତର ଔପଚାରିକତା ବାହାରକୁ ଯାଇ ସେ ରୋମ୍‌ର ଯୁବକମାନଙ୍କୁ ପ୍ଲେଟୋ ଓ ଆରିଷ୍ଟୋଟଲଙ୍କ "ନ୍ୟାୟ" ଭାବନା ଉପରେ ଦୁଇଟି ଭାଷଣ ଦେଇଥିଲେ । ରୋମ୍‌ର ଯୁବକ ମାନେ ଗ୍ରୀକ୍ ସଭ୍ୟତା, ସଂସ୍କୃତି ବିଷୟରେ ଆଗ୍ରହୀ ହୋଇ ତାଙ୍କ ଭାଷଣ ଶୁଣିବାକୁ ଏକତ୍ରିତ ହୋଇଥିଲେ । ପ୍ରଥମ ଦିନ ସେ ନ୍ୟାୟର ସୁନ୍ଦର ବ୍ୟାଖ୍ୟା କରି ଏହାର ମହତ୍ତ୍ୱ ପ୍ରତିଷ୍ଠା କରିଥିଲେ । ଦ୍ୱିତୀୟଦିନ ନ୍ୟାୟ ବିରୁଦ୍ଧରେ ବକ୍ତବ୍ୟ ରଖିଥିଲେ । ତାଙ୍କର ଆଭିମୁଖ୍ୟ ଥିଲା ଯେ ତତ୍ତ୍ୱମୀମାଂସା କ୍ଷେତ୍ରରେ ଯେପରି ନାନା ବିରୋଧାଭାସ ରହିଛି ବିଭିନ୍ନ ନୈତିକ ପ୍ରସଙ୍ଗ ଉପରେ ମଧ ନାନା ବିରୋଧାଭାସ ଓ ବିତର୍କ ରହିବା ସମ୍ଭବ । ତଥ୍ୟ ଅଭାବରେ ସିଦ୍ଧାନ୍ତ କ୍ଷେତ୍ରରେ ହେଉ କିମ୍ବା ବ୍ୟାବହାରିକ କ୍ଷେତ୍ରରେ ହେଉ ଆମକୁ କେବଳ ସମ୍ଭାବନା କ୍ଷେତ୍ରରେ ସୀମିତ ରହିବାକୁ ହେବ ।

ଆର୍ସେଲିୟସ ଓ କାର୍ନେଡିସ ଯେଉଁ ସଂଶୟବାଦର ଭାବନା ଦେଇଛନ୍ତି ତାହାକୁ "ଏକାଡେମୀକ ସଂଶୟବାଦ" କୁହାଯାଏ । ପ୍ଲେଟୋଙ୍କ ଭାବନା ଏକାଡେମୀ ସହ ସଂପୃକ୍ତ ଥାଇ ଯେଉଁମାନେ ସଂଶୟବାଦୀ ଭାବଧାରା ବ୍ୟକ୍ତ କରିଛନ୍ତି ସେମାନେ ହେଲେ ଏକାଡେମୀକ ସଂଶୟବାଦୀ । ପାଇରୋ ସଂଶୟବାଦ ପୃଷ୍ଠଭୂମିରେ ଜ୍ଞାନ କ୍ଷେତ୍ରରେ 'ନିଶ୍ଚିତତା'ର ସନ୍ଧାନକରି ବ୍ୟର୍ଥ ହୋଇଥିଲେ । ତେବେ ପରବର୍ତ୍ତୀ ସମୟରେ ଷ୍ଟୋଇକବାଦୀ ଓ ସଂଶୟବାଦୀଙ୍କ ମଧରେ ବୈଚାରିକ ମତଭେଦର ପରିବେଶ ଆସିଥିଲା । ଦାର୍ଶନିକ ଅନୁଶୀଳନ କ୍ଷେତ୍ରରେ ଗ୍ରୀକ୍‌ମାନେ ପାଶ୍ଚାତ୍ୟ ଜଗତରେ ପ୍ରଥମେ ପଥପ୍ରଦର୍ଶକ ହୋଇଥିଲେ । ଯୁକ୍ତିଶୀଳ ଆଧାରରେ (ଯୁକ୍ତି ବୈଧ ହେଉ ବା ଭ୍ରମାତ୍ମକ ହେଉ) ସେମାନେ ବିଭିନ୍ନ ସ୍ତରରେ ସିଦ୍ଧାନ୍ତମାନ ନିର୍ମାଣ କରିଥିଲେ । ପରବର୍ତ୍ତୀ ସମୟରେ ସେହିପରି ଯୁକ୍ତିଶୀଳ ଆଧାରରେ ଅନ୍ୟ କେତେକ ସଂଶୟବାଦର ବିକାଶ କରାଇଲେ । ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ସମୟରେ ଯେଉଁ ସଂଶୟବାଦର ବିକାଶ ହେଲା ତାହା କିଛିଟା ଦାର୍ଶନିକ ଅବକ୍ଷୟର ଚିତ୍ର ଦେଇଥାଏ ।

ଆର୍ସେଲିୟସ ଓ କାର୍ନେଡିସ ନୂଆ ଏକାଡେମୀରେ ଅଧାପନା କରୁଥିବା ସମୟରେ ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀରେ ସଂଶୟବାଦର ବିକାଶ କରାଇଥିଲେ । ସେମାନଙ୍କ ପରେ ସଂଶୟବାଦର ଏକ ପ୍ରକାରର ବିଲୟ ଘଟିଥିଲା । ପୁନଶ୍ଚ ଆନେସିଡେମସ ପୁନଶ୍ଚ ସଂଶୟବାଦକୁ ଜାଗ୍ରତ କରାଇଲେ । ଆନେସିଡେମସ ଆଲେକ୍‌ଜାଣ୍ଡ୍ରିଆଠାରେ ଅଧାପନା କରୁଥିବା ସମୟରେ ଖ୍ରୀ.ପୂ. ୪୩ ବେଳକୁ ସଂଶୟବାଦ ଉପରେ ଏକ ପୁସ୍ତକ ଲେଖିଲେ । ସେ ସଂଶୟବାଦ ସମ୍ବନ୍ଧରେ ଦଶଟି ଯୁକ୍ତି ଉପସ୍ଥାପନା କରି ସଂଶୟବାଦକୁ ଏକ ସୈଦ୍ଧାନ୍ତିକ ଭିତ୍ତି ଦେବାକୁ ପ୍ରୟାସ କଲେ । ତାଙ୍କ ପ୍ରଦତ୍ତ ଦଶଟି ଯୁକ୍ତି ଆଗ୍ରିପା ପାଞ୍ଚଟି ଯୁକ୍ତିରେ ଓ ଅନ୍ୟ କେତେକ ସଂଶୟବାଦୀ ଦୁଇଟି ଯୁକ୍ତିରେ ରୂପାନ୍ତରିତ କରିଥିଲେ । ଆନେସିଡେମସ୍ (Aenesidemus) ତାଙ୍କର ଯୁକ୍ତି ମାଧମରେ ସଂଶୟବାଦକୁ ଏକ ଦୃଢ଼ ଭିତ୍ତି ଦେବାକୁ ପ୍ରୟାସ କରିଥିଲେ । ସେହି ଯୁକ୍ତିମାନଙ୍କୁ ସଂକ୍ଷେପରେ ଏଠାରେ ବ୍ୟକ୍ତ କରାଯାଇପାରେ ।

(୧) ବିଭିନ୍ନ ବ୍ୟକ୍ତିମାନଙ୍କର ଅନୁଭବ ଓ ପ୍ରତ୍ୟକ୍ଷ ସମାନ ନୁହେଁ । ଏକା ବସ୍ତୁ ବିଭିନ୍ନ ବ୍ୟକ୍ତିମାନଙ୍କ ମଧ୍ୟରେ ଭିନ୍ନ ଭିନ୍ନ ଅନୁଭବ ବା ପ୍ରତ୍ୟକ୍ଷ ସୃଷ୍ଟି କରିଥାଏ । ଗୋଟିଏ ବସ୍ତୁର ରଙ୍ଗ ଭିନ୍ନ ଭିନ୍ନ ଲୋକଙ୍କୁ ପୃଥକ୍ ଦେଖାଯିବା ଏକ ସାଧାରଣ ଘଟଣା ଅଟେ ।

(୨) ବିଭିନ୍ନ ବସ୍ତୁମାନଙ୍କୁ ଆମେ ପ୍ରତ୍ୟକ୍ଷ କରିବା ସମୟରେ ଆମର ସମାନ ଅନୁଭବ, ପ୍ରତ୍ୟକ୍ଷଣ ମୁଦ୍ରା, ଭାବନା, ଉପଲବ୍ଧି ହେବା ଆବଶ୍ୟକ, କିନ୍ତୁ ତାହା ହୋଇନଥାଏ । ମନୁଷ୍ୟମାନଙ୍କର ମାନସିକ ସାମର୍ଥ୍ୟ ଓ ଇନ୍ଦ୍ରିୟ ଅନୁଭବ ଭିତରେ ପାର୍ଥକ୍ୟ ଦେଖାଯାଏ ।

(୩) ଏପରିକି ଜଣେ ବ୍ୟକ୍ତି ଏକ ବସ୍ତୁ ବିଷୟରେ ନିଜର ଭିନ୍ନ ଭିନ୍ନ ଇନ୍ଦ୍ରିୟ ସାହାଯ୍ୟରେ ପୃଥକ ଓ ଏପରିକି ବିପରୀତ ପ୍ରତ୍ୟକ୍ଷଣ ମୁଦ୍ରା ଲାଭ କରିଥାନ୍ତି । ଏକ ଛବି ଆଖିକୁ ସୁନ୍ଦର ଦେଖାଯାଇପାରେ, କିନ୍ତୁ ଏହାକୁ ସ୍ପର୍ଶ କଲାପରେ ଆମେ ମନ୍ଦ ଅନୁଭବ ପାଇଥାଏ । ଏକ ଫଳ ଆଖିକୁ ସୁନ୍ଦର ଦେଖାଯାଏ କିନ୍ତୁ ଆମେ ଏହାକୁ ଚାଖିଲେ ପାଟିକୁ ବହୁତ ଖରାପ ଲାଗେ । ଜଣେ ବ୍ୟକ୍ତି ଏକା ବସ୍ତୁରୁ ପୃଥକ୍ ଅନୁଭବ ବା ପ୍ରତ୍ୟକ୍ଷଣ ମୁଦ୍ରା ପାଇବା ସମ୍ଭବ ।

(୪) ସମାନ ବସ୍ତୁ ଭିନ୍ନ ଭିନ୍ନ ସ୍ଥିତିରେ ପୃଥକ୍ ପ୍ରତ୍ୟକ୍ଷଣମୁଦ୍ରା ବା ସମ୍ବେଦନ ସୃଷ୍ଟି କରିଥାନ୍ତି । ଯୁବକାବସ୍ଥାରେ ପଦାର୍ଥ ମାନ ଆଖିକୁ ଯେପରି ଦେଖାଯାଏ, ବାର୍ଦ୍ଧକ୍ୟରେ ଭିନ୍ନ ଦେଖାଯାଏ । ସୁସ୍ଥଥିବା ବେଳେ କିଛି ଜିନିଷ ଯେଉଁ ସମ୍ବେଦନ ଦିଏ, ଅସୁସ୍ଥ ସମୟରେ ପୃଥକ୍ ସମ୍ବେଦନ ସୃଷ୍ଟି କରିଥାଏ ।

(୫) ବସ୍ତୁମାନଙ୍କର ସ୍ଥିତି, ଦୂରତା ଇତ୍ୟାଦି ନେଇ ଆମର ଜ୍ଞାନ ଭିନ୍ନ ଭିନ୍ନ ହୋଇଥାଏ । ଏକ ହାତୀ ଦୂରରୁ କ୍ଷୁଦ୍ର ଦେଖାଯାଏ, ପାଖରୁ ବିଶାଳ ଦେଖାଯାଏ, ଏକ ଦୀପ ଦିନର ଆଲୋକରେ ଦୃଶ୍ୟମାନ ହୋଇନଥାଏ, ରାତ୍ରିର ଅନ୍ଧକାରରେ ତାହା ବେଶ୍ ଆଲୋକିତ ଦେଖାଯାଏ ।

(୬) କୌଣସି ସମ୍ବେଦନ ଶୁଦ୍ଧ ନୁହେଁ । ଆମର ଅନୁଭୂତି ବା ସମ୍ବେଦନ କ୍ଷେତ୍ରରେ ବାହ୍ୟ ପ୍ରଭାବ ବା ଆମର ମାନସିକ ପ୍ରଭାବ ରହିବା ସ୍ୱାଭାବିକ ଅଟେ । କୌଣସି ବସ୍ତୁ ବାହାରେ ଓଜନିଆ ଲାଗେ, ଜଳ ଭିତରେ ହାଲୁକା ଲାଗିଥାଏ । ଗୋଟିଏ ବସ୍ତୁ ଜଣଙ୍କୁ ନୀଳ ଦେଖାଯାଏ ତ ଅନ୍ୟ ଜଣଙ୍କୁ ସବୁଜ ଦେଖାଯାଏ । ଏକା ବସ୍ତୁରୁ ବିଭିନ୍ନ ଲୋକ ବିଭିନ୍ନ ସମ୍ବେଦନ ଲାଭ କରିଥାନ୍ତି ।

(୭) ବସ୍ତୁର ଗୁଣ ପରିମାଣ ଅନୁଯାୟୀ ପୃଥକ୍ ହୋଇଥାଏ । ଏକ ରାସାୟନିକ ବସ୍ତୁକୁ ଖାଇଲେ ଶରୀରରେ ଜଟିଳ ପ୍ରତିକ୍ରିୟା ଦେଖାଯାଏ, କିନ୍ତୁ ଅନ୍ୟ ସହ ମିଶାଇ ଖାଇଲେ ତାହା ରୋଗ ଭଲ କରିପାରେ । ସୁରା ସାମାନ୍ୟ ପାନ କରିବା ଦ୍ୱାରା ଶରୀରରେ ଶକ୍ତି ଆସିଥାଏ, ଅଧିକ ପାନ କରିଦେଲେ ତାହା ଶରୀରକୁ ଦୁର୍ବଳ କରିଦିଏ ଓ ଏପରିକି ଜଣଙ୍କୁ ମାରି ଦେଇପାରେ ।

(୮) ଏକା ବସ୍ତୁ ସହ ପରିଚିତ ହେବା ପରେ ତାହା ଆମକୁ ଯେଉଁ ସମ୍ବେଦନ ଦେଇଥାଏ, ତାହା ସହ ପରିଚିତ ନଥିବା ବେଳେ ଆମକୁ ଭିନ୍ନ ସମ୍ବେଦନ ଦେଇଥାଏ । ଆମେ ଏକ ବସ୍ତୁକୁ ଜାଣିବା ପରେ ଆମେ ତାହା ବିଷୟରେ ଯେଉଁ ଧାରଣା ଲାଭ କରିଥାଏ, ବସ୍ତୁଟି ସହ ଜଣାଶୁଣା ନଥିବା ବେଳେ ପୃଥକ୍ ସମ୍ବେଦନ ବା ଭାବନା ରଖିଥାଏ ।

(୯) କୌଣସି ବିଷୟରେ ଆମେ ତାହାର ବର୍ଣ୍ଣନାରୁ ବା ବିଧେୟନରୁ ଧାରଣା କରିଥାଏ । ବିଧେୟନ ହିଁ ଆମକୁ କିଛି ବିଷୟରେ ଜ୍ଞାନ ଦେଇଥାଏ । ବସ୍ତୁର ବିଧେୟନକୁ ଛାଡି ବସ୍ତୁର ସ୍ୱରୂପ କ'ଣ ସେ ବିଷୟରେ ଜାଣିବାର ସୁଯୋଗ ରହିନଥାଏ । ଏକ ବିଧେୟ ଦ୍ୱାରା ବସ୍ତୁର ଅନ୍ୟ ସହ ବା ଆମ ସହ ସମ୍ବନ୍ଧ ଜଣାଯାଏ, କିନ୍ତୁ ବସ୍ତୁର ସ୍ୱରୂପ କ'ଣ ଜଣାଯାଏ ନାହିଁ । ବିଧେୟନ ବସ୍ତୁର ସ୍ୱରୂପ ବିଷୟରେ ଧାରଣା ଦିଏ ନାହିଁ ।

(୧୦) ବିଭିନ୍ନ ସମାଜରେ ନାନା ପ୍ରକାରର ନୀତି, ବିଧି, ପରଂପରା, ଚଳଣିମାନ ଭିନ୍ନ ଭିନ୍ନ ହେବା ଦେଖାଯାଏ । ସେହିପରି ଭିନ୍ନ ଭିନ୍ନ ଲୋକମାନଙ୍କର ବିଶ୍ୱାସ ମଧ୍ୟ ପୃଥକ୍ ହୋଇଥାଏ । ସେ ଦୃଷ୍ଟିରୁ କ'ଣ ଯଥାର୍ଥ ବା ଯଥାର୍ଥ ନୁହଁ ତାହା କହିବା ସମ୍ଭବ ନୁହେଁ । ପୁନଶ୍ଚ ଯେଉଁ ବିଷୟକୁ ଆମେ ପ୍ରତିଦିନ ଦେଖୁଛେ ଆମେ ତାକୁ କେବେ ପ୍ରାଧାନ୍ୟ ଦିଏ ନାହିଁ, ବରଂ ଯାହାକୁ ଆକସ୍ମିକ ଭାବରେ ଦେଖେ ତାହାକୁ ଗୁରୁତ୍ୱ ଦିଏ, ଯଦିବା ପ୍ରତିଦିନ ଦେଖୁଥିବା ବସ୍ତୁର ଯଥେଷ୍ଟ ମହତ୍ତ୍ୱ ରହିଥାଏ । ଆମେ ପ୍ରତିଦିନ ସୂର୍ଯ୍ୟକୁ ଦେଖେ, ଧୂମକେତୁକୁ କ୍ୱଚିତ ଦେଖିଥାଏ । ତେଣୁ ଆମେ ଧୂମକେତୁକୁ କୌତୂହଳ ହୋଇ ଚର୍ଚ୍ଚାକରେ । ସୂର୍ଯ୍ୟ ବିଷୟରେ କୌତୂହଳୀ ହୁଏ ନାହିଁ ।

ଆନେସିଡେମସ ଏହି ସବୁ ଯୁକ୍ତିମାନଙ୍କ ମାଧ୍ୟମରେ ସଂଶୟବାଦର ବିକାଶ କରାଇଥିଲେ । ସେହିପରି କାର୍ଯ୍ୟ-କାରଣ ସିଦ୍ଧାନ୍ତର ମଧ୍ୟ ସେ ସମାଲୋଚନା କରିଥିଲେ, ଯେଉଁ ଯୁକ୍ତିର ଏକ ବିସ୍ତାରିତ ଅଭିବ୍ୟକ୍ତି ଡେଭିଡ ହ୍ୟୁମଙ୍କ ପାଖରେ ଆଧୁନିକ ଯୁଗରେ ବ୍ୟକ୍ତ ହୋଇଥିଲା । ଆନେସିଡେମସ ଦ୍ୱନ୍ଦ୍ୱନ୍ୟାୟ ଆଧାରରେ କାର୍ଯ୍ୟକାରଣ ସିଦ୍ଧାନ୍ତକୁ ସମାଲୋଚନା କରି ତାହାର ଅସାରତା ଦର୍ଶାଇଥିଲେ । ମୋଟ ଉପରେ ଆନେସିଡେମସ ଜ୍ଞାନ ଯେ ଅଭ୍ରାନ୍ତ ହୋଇପାରିବ ନାହିଁ, ତେଣୁ ଜ୍ଞାନ ସମ୍ଭବ ନୁହଁ ବୋଲି ପାଇରୋଙ୍କ ପରି ବିଚାର ବ୍ୟକ୍ତ କରିଥିଲେ । ଷ୍ଟୋଇକମାନଙ୍କର ରୂଢ଼ିବାଦକୁ ସମାଲୋଚନା କରିବାକୁ ଯାଇ ଯେଉଁ ସଂଶୟବାଦର ବିକାଶ ହୋଇଥିଲା ତାହା ବି ପରେ ରୂଢ଼ିବାଦରେ ରୂପାନ୍ତରିତ ହେଲା । ତେବେ ନୂତନ ଏକାଡେମୀରେ ଜ୍ଞାନର ସ୍ୱୀକରଣ ବା ଅସ୍ୱୀକରଣକୁ ବାଦ ଦେଇ କେବଳ ସଂଶୟ ବ୍ୟକ୍ତ କରାଗଲା ଯାହା ଆର୍ସେଲିୟସ ଓ କାର୍ନେଡିସଙ୍କ ବିଚାରରେ ବ୍ୟକ୍ତ ହୋଇଥିଲା । ତେବେ ଆନେସିଡେମସ ପୁନଶ୍ଚ ଯେଉଁ ସଂଶୟବାଦର ଅବତାରଣା କଲେ ତାହା ପାଇରୋଙ୍କ ପରି ଜ୍ଞାନର ସମ୍ଭାବନାକୁ ଅସ୍ୱୀକାର କଲା । ଆନେସିଡେମସଙ୍କର ଏକ ଶତାବ୍ଦୀ ପରେ ଆଗ୍ରିପା ନାମରେ ଆଉ ଜଣେ ସଂଶୟବାଦୀଙ୍କର ଆବିର୍ଭାବ ଘଟିଲା । ଆଗ୍ରିପା ସକଳ ଧାରଣା ଓ ପ୍ରତ୍ୟୟ ମାନ ଯେ ଆପେକ୍ଷିକ ଏହା ଯୁକ୍ତିଦ୍ୱାରା

ଦର୍ଶାଇଲେ । ବିଭିନ୍ନ ଦାର୍ଶନିକ ସିଦ୍ଧାନ୍ତମାନଙ୍କ ମଧ୍ୟରେ ରହିଥିବା ବିରୋଧାଭାସକୁ ସେ ପ୍ରକାଶ କରି ସେମାନଙ୍କ ଯୁକ୍ତିମାନ ଯେ ଚକ୍ରକ ଏହା ବ୍ୟକ୍ତ କଲେ । ଏପରିକି ଆରିଷ୍ଟୋଟଲଙ୍କର ତ୍ରିପଦୀ ଯୁକ୍ତିକୁ ବି ସେ ଅସାର ବୋଲି ଦର୍ଶାଇଥିଲେ । ଆଗ୍ରିପାଙ୍କ ମତରେ ତ୍ରିପଦୀ ଯୁକ୍ତିର ସିଦ୍ଧାନ୍ତ ତାର ପ୍ରଧାନ ହେତୁବାକ୍ୟରୁ ନିଷ୍ପନ୍ନ ହୋଇଥାଏ । ତେବେ ପ୍ରଧାନ ହେତୁବାକ୍ୟଟି ଅନ୍ୟ ଏକ ତ୍ରିପଦୀଯୁକ୍ତିର ସିଦ୍ଧାନ୍ତ, ସେହି ସିଦ୍ଧାନ୍ତ ଅନ୍ୟ ଏକ ତ୍ରିପଦୀ ଯୁକ୍ତିର ପ୍ରଧାନ ହେତୁବାକ୍ୟ । ବସ୍ତୁତଃ ଏହି ଧାରା ସୀମାହୀନ, ସୁତରାଂ ତ୍ରିପଦୀ ଯୁକ୍ତ ସେପରି ମହତ୍ତ୍ୱ ରଖେ ନାହିଁ ।

ସଂଶୟବାଦୀ ପରଂପରାର ଏକ ପ୍ରଭାବଶାଳୀ ପ୍ରବକ୍ତା ହେଲେ ସେକ୍ସଟସ ଏଂପିରିକସ୍ ଯେ ଖ୍ରୀଷ୍ଟାବ୍ଦ ୩୦୦ ବେଳକୁ ଆଲେକ୍‌ଜାଣ୍ଡ୍ରିଆ ଠାରେ ରହିଥିଲେ । ତାଙ୍କର ଦୁଇଟି କୃତି ଉପଲବ୍ଧ । ବିଭିନ୍ନ ବିଷୟର ମୂଳ ସିଦ୍ଧାନ୍ତମାନ କିପରି କେବଳ କଳ୍ପନା ସେ ତାହା ଦର୍ଶାଇଲେ । ଏପରିକି ଗାଣିତିକ ଓ ଜ୍ୟାମିତିକ ଉପପାଦ୍ୟ ମାନ ଯେଉଁ ସିଦ୍ଧାନ୍ତକୁ ଆଧାର କରି ବିକଶିତ ହୋଇଛନ୍ତି ସେସବୁ କେବଳ କଳ୍ପନା ଓ ସେଥିରେ ବିଭିନ୍ନ ବିରୋଧାଭାସ ରହିବା ସମ୍ଭବ । ସୁତରାଂ ଦର୍ଶନ, ବିଜ୍ଞାନ, ବ୍ୟାକରଣ, ଆଳଙ୍କାରିକ ଭାଷା, ଜ୍ୟୋତର୍ବିଜ୍ଞାନ ଇତ୍ୟାଦି ବିଭିନ୍ନ ସ୍ତରରେ ଯେଉଁ ସବୁ ଜ୍ଞାନର ବିକାଶ ହୋଇଛି, ସେସବୁ ସଂଶୟର ପରିସରରୁ ମୁକ୍ତ ନୁହନ୍ତି । କୌଣସି ଜ୍ଞାନ ନିଶ୍ଚିତ ବା ନିର୍ଭରଯୋଗ୍ୟ ନୁହେଁ । ଜ୍ଞାନ ସ୍ତରରେ ବିକଶିତ ହୋଇଥିବା ସିଦ୍ଧାନ୍ତ ଓ ପ୍ରୟୋଗ ହେଉଥିବା ପ୍ରଣାଳୀମାନ ଅସ୍ପଷ୍ଟ, ସନ୍ଦେହଯୁକ୍ତ ଓ ଏପରିକି ପରସ୍ପର ବିରୋଧୀ । ଗଣିତ, ଦର୍ଶନ, ଭୌତିକ ବିଜ୍ଞାନ, ତର୍କଶାସ୍ତ୍ର ଓ ନୀତିଶାସ୍ତ୍ରର ସକଳ ସିଦ୍ଧାନ୍ତ ଓ ତତ୍ତ୍ୱମାନଙ୍କୁ ସନ୍ଦେହ କରାଯିବା ଯଥାର୍ଥ କାରଣ ସେସବୁ ଜ୍ଞାନ ଅସ୍ପଷ୍ଟ ଓ ପରସ୍ପରର ବିପରୀତ । ଦାର୍ଶନିକମାନେ ଭାବୁଥିଲେ ଯେ ତତ୍ତ୍ୱମୀମାଂସୀୟ ଜ୍ଞାନ ମୌଳିକ, ଅନ୍ୟାନ୍ୟ ଜ୍ଞାନର ଆଧାର ଓ ଜଗତର ବ୍ୟାଖ୍ୟା କ୍ଷେତ୍ରରେ ସ୍ୱୟଂସଂପୂର୍ଣ୍ଣ । ସେକ୍ସଟସ ସବୁ କ୍ଷେତ୍ରର ଜ୍ଞାନ କିପରି ତ୍ରୁଟିପୂର୍ଣ୍ଣ ଓ ସଂଶୟଯୁକ୍ତ ତାହା ଦର୍ଶାଇଲେ । ଜଣେ ସଂଶୟବାଦୀ କୌଣସି ପରମ ନିର୍ଣ୍ଣୟରୁ ମୁକ୍ତ ରହିବା ଆବଶ୍ୟକ ବୋଲି ତାଙ୍କ ଭାବଧାରାରୁ ସ୍ପଷ୍ଟ ଅନୁମିତ ହୁଏ । ଜଗତର ସ୍ୱରୂପ ବିଷୟରେ ତତ୍ତ୍ୱମୀମାଂସା ଯେ ଆମକୁ ସ୍ପଷ୍ଟ ଜ୍ଞାନଦେବ ଓ ତାର ଅନ୍ତର୍ନିହିତ ସଂହତିକୁ ବ୍ୟାଖ୍ୟା କରିପାରିବ-ଯାହା ଦାର୍ଶନିକ ମାନେ ଭାବୁଥିଲେ- ତାହା ସଂପୂର୍ଣ୍ଣ ଭ୍ରମାତ୍ମକ । ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତମାନ ତ୍ରୁଟିପୂର୍ଣ୍ଣ, ପରସ୍ପର ବିରୋଧୀ ଓ ଏପରିକି ରୂଢ଼ିବାଦୀ । ସେହିପରି ଈଶ୍ୱରମୀମାଂସା କ୍ଷେତ୍ରରେ ରହିଥିବା ବିଭିନ୍ନ ଭାବନା, ବିଶ୍ୱାସ ଓ ସିଦ୍ଧାନ୍ତମାନଙ୍କୁ ମଧ୍ୟ ସଂଶୟବାଦୀମାନେ ଅସ୍ୱୀକାର କରିଛନ୍ତି । ଧର୍ମତତ୍ତ୍ୱ କ୍ଷେତ୍ରରେ ରହିଥିବା ବିଚାର ଓ ବିଶ୍ୱାସମାନଙ୍କର ବିରୁଦ୍ଧାର୍ଥ (antinomy) ସିଦ୍ଧାନ୍ତ ମାନଙ୍କୁ ମଧ୍ୟ ବ୍ୟକ୍ତ କରାଯାଇପାରେ । ଏକ ସିଦ୍ଧାନ୍ତର ବିରୁଦ୍ଧାର୍ଥ ସିଦ୍ଧାନ୍ତକୁ ଯଦି ପ୍ରତିଷ୍ଠା କରାଯିବା ସମ୍ଭବ ତେବେ ମୂଳ ସିଦ୍ଧାନ୍ତକୁ ସଂଶୟ କରିବା ଅପ୍ରାସଙ୍ଗିକ ନୁହେଁ । ପୁନଶ୍ଚ ଈଶ୍ୱର ଭାବନା ପୃଷ୍ଠଭୂମିରେ ମନ୍ଦ ବା ଅଶୁଭ (Evil) ମାନଙ୍କର ଉପସ୍ଥିତି ଈଶ୍ୱରଙ୍କ ପ୍ରତି ଆହ୍ୱାନ ଆଣିଥାଏ । ଈଶ୍ୱର ଯଦି ସର୍ବଶକ୍ତିମାନ ତେବେ ସଂସାରରୁ ଅଶୁଭ ଦୂର କରିପାରନ୍ତେ । ଈଶ୍ୱର ଯଦି ମଙ୍ଗଳମୟ ତେବେ ସେ ସମସ୍ତ ଅଶୁଭକୁ ପ୍ରତିହତ କରିପାରନ୍ତେ । କିନ୍ତୁ ଆମ ସଂସାରରେ ବହୁ ଅଶୁଭ ଓ ମନ୍ଦ ସର୍ବଦା ରହିଆସିଛି । ତେଣୁ

ଈଶ୍ୱରଙ୍କ ଅସ୍ତିତ୍ୱକୁ ଯଦି ବି ସ୍ୱୀକାର କରାଯାଏ ତେବେ ଈଶ୍ୱର ହୁଏତ ସର୍ବଶକ୍ତିମାନ ନୁହନ୍ତି କିମ୍ବା ମଙ୍ଗଳମୟ ନୁହନ୍ତି । ଏହିପରି ସଂଶୟବାଦୀମାନେ ବହୁ କ୍ଷେତ୍ରକୁ ଆକ୍ରମଣ କରିଛନ୍ତି ।

ସଂଶୟବାଦ ବିଭିନ୍ନ ସମୟରେ କେତେକ ଚିନ୍ତାଶୀଳ ଲୋକଙ୍କ ବିଚାରଧାରାରେ ବ୍ୟକ୍ତ ହୋଇଛି, ପୁନଶ୍ଚ ଅବଦମିତ ହୋଇଛି । ଗ୍ରୀକ୍ ଦର୍ଶନ ଇତିହାସରେ ସଂଶୟବାଦର ଏକ ପରଂପରା ରହିଛି । ତେବେ ସଂଶୟବାଦୀ କେତେବେଳେ ଜ୍ଞାନର ସମ୍ଭାବନାକୁ ଅସ୍ୱୀକାର କରିଛନ୍ତି, କେତେକ କୌଣସି ସିଦ୍ଧାନ୍ତ ନିର୍ମାଣକୁ ବିରୋଧ କରିଛନ୍ତି ଓ କେହି କୌଣସି ନିର୍ଣ୍ଣୟ ଦେବାକୁ ସମର୍ଥନ କରିନାହାନ୍ତି । ଜ୍ଞାନର ନିଶ୍ଚିତତାକୁ ଅସ୍ୱୀକାର କରି ସବୁ କିଛିକୁ ସମ୍ଭାବନାମୟ ସ୍ତରରେ ରଖିବାକୁ କେତେକ ଚାହିଁଛନ୍ତି । ଉଗ୍ର ସଂଶୟବାଦକୁ ପରିହାର କରି ଅନେକ ବୌଦ୍ଧିକ ସମ୍ଭାବନାମୟତା (Academic probabilism) କୁ ଅଧିକ ଗୁରୁତ୍ୱ ଦେଇଛନ୍ତି । ସଂଶୟବାଦକୁ ଗ୍ରୀକ୍ ଦର୍ଶନ ଇତିହାସ ପୃଷ୍ଠଭୂମିରେ ବିଶ୍ଳେଷଣ କରି ଏହାର ସାରମର୍ମ ବିଷୟରେ କୋପ୍ଲେଷ୍ଟୋନ ଯେଉଁ ମନ୍ତବ୍ୟ ଦେଇଛନ୍ତି, ତାହାକୁ ଏଠାରେ ଉଦ୍ଧାର କରାଯାଇପାରେ- "In regard to practical life the Sceptics taught that we should follow the presentation of perception and thought,satisfy our natural instincts, adhere to law and tradition, and pursue science. We can never indeed attain to certainty in science, but we can go on seeking" (ପୃଷ୍ଠା.୪୪୫)

ଏହିପରି କହିବାକୁ ଗଲେ ବାସ୍ତବ ଜୀବନରେ ସବୁ ବିଷୟକୁ ସଂଶୟ ଦୃଷ୍ଟିରେ ନିଆଯାଇ ପାରିବ ନାହିଁ । ଆମର ପ୍ରତ୍ୟକ୍ଷ ଅନୁଭବ, ବିଚାରଶୀଳ ଚିନ୍ତନ ଓ ଆବେଗିକ ଅନୁଭୂତିକୁ ଆଧାର କରି ଆମର ଜୀବନ ଧାରାକୁ ପରିଚାଳିତ କରିବାକୁ ହେବ । ପ୍ରକୃତିରେ ବ୍ୟକ୍ତ ହେଉଥିବା ଶୃଂଖଳା ଓ ନିୟମ ମାନଙ୍କୁ ଅନୁଶୀଳନ ଦ୍ୱାରା ଆମେ ଜ୍ଞାନର ଦିଗନ୍ତକୁ ବିସ୍ତାର କରିପାରିବା । ତେବେ ଜ୍ଞାନ କ୍ଷେତ୍ରରେ ଯେ ସୁନିଶ୍ଚିତତା ଆଶା କରାଯାଇ ପାରିବ ନାହିଁ ଏହା ସଂଶୟବାଦରେ ବିକଶିତ ହେବା ଦେଖାଯାଏ । ସଂଶୟବାଦ ଏକ ଦାର୍ଶନିକ ସିଦ୍ଧାନ୍ତ ଭାବେ ଅଭ୍ରାନ୍ତବାଦକୁ ପ୍ରତ୍ୟାଖ୍ୟାନ କରିଆସିଛି । ତେବେ ବେଳେ ବେଳେ ସଂଶୟବାଦ ଅତିଶୟତା ପ୍ରକାଶ କରି ରୂଢ଼ିବାଦକୁ ରୂପାନ୍ତରିତ ହୋଇଛି ।

# ଦଶମ ପରିଚ୍ଛେଦ

## ନବ୍ୟପ୍ଲେଟୋବାଦ

### ୧୦.୧ ନବ୍ୟପ୍ଲେଟୋବାଦ : ପୃଷ୍ଠଭୂମି

ନବମ ପରିଚ୍ଛେଦରେ ଷ୍ଟୋଇକବାଦ, ଏପିକୁରୀୟବାଦ ଓ ସଂଶୟବାଦ ବିଷୟରେ ଆଲୋଚନା କରାଯାଇଛି । ଏହି ତିନିଟି ଦାର୍ଶନିକ ଭାବଧାରାର ପାଞ୍ଚଶହ ବର୍ଷ ପରେ ନବ୍ୟପ୍ଲେଟୋବାଦ ଏକ ଦାର୍ଶନିକ ବିଚାର ଭାବରେ ବିକଶିତ ହେଲା । ତେଣୁ କେତେକ ଦର୍ଶନ ଐତିହାସିକ ନବ୍ୟପ୍ଲେଟୋବାଦକୁ ଗ୍ରୀକ୍ ଦର୍ଶନ ଇତିହାସରେ ସ୍ଥାନ ନ ଦେଇ ତାହାକୁ ମଧ୍ୟଯୁଗୀୟ ଦର୍ଶନ ଭିତରେ ସ୍ଥାନିତ କରିଛନ୍ତି । ତେବେ ଅନ୍ୟାନ୍ୟ ଲେଖକମାନେ ଗ୍ରୀକ୍ ଦର୍ଶନ ଇତିହାସରେ ନବ୍ୟପ୍ଲେଟୋବାଦକୁ ସ୍ଥାନିତ କରିଛନ୍ତି । ଉଭୟ ମତର ନିର୍ଦ୍ଦିଷ୍ଟ ଯୁକ୍ତି ମଧ୍ୟ ରହିଛି । ଗ୍ରୀକ୍ ଦର୍ଶନର ଆରମ୍ଭ ଥେଲିସଙ୍କ ଠାରୁ ଆରମ୍ଭ ହେଲା– ସେ ଏ ବିଶ୍ୱର ମୌଳିକ ସତ୍ତା କ'ଣ ହୋଇପାରେ ବୋଲି ପ୍ରଶ୍ନ ଉଠାଇଲେ । ଥେଲିସଙ୍କଠାରୁ ସଂଶୟବାଦର ବିକାଶ ଭିତରେ ସମୟ ବ୍ୟବଧାନ ଥିଲା ତିନି ଶହ ବର୍ଷ । ଏହି ତିନି ଶତାବ୍ଦୀ ଭିତରେ ଗ୍ରୀସ୍‌ରେ ବହୁ ପ୍ରତିଭାବାନ ଯଶସ୍ୱୀ ଦାର୍ଶନିକଙ୍କର ଆବିର୍ଭାବ ଘଟିଥିଲା, ଯେଉଁ ମାନଙ୍କର ଦର୍ଶନ ବିଷୟରେ ଆମେ ଏହି ପୁସ୍ତକରେ ଆଲୋଚନା କରିଛେ । ସଂଶୟବାଦ ପରେ ସେପରି ମୌଳିକ ଚିନ୍ତା ବା ଦାର୍ଶନିକ ଜିଜ୍ଞାସା ଗ୍ରୀସ୍‌ରେ ସମ୍ଭବ ହୋଇନାହିଁ । ତାହାର ପାଞ୍ଚଶହ ବର୍ଷ ପରେ ଯେଉଁ ଦାର୍ଶନିକ ବିଚାର ପ୍ଲୋଟିନସ୍‌ଙ୍କଠାରୁ ସୂତ୍ରପାତ ହେଲା ତାହାକୁ ନବ୍ୟପ୍ଲେଟୋବାଦ କୁହାଯାଉଛି । ପ୍ଲୋଟିନସ୍ ଥିଲେ ତୃତୀୟ ଶତାବ୍ଦୀର ଦାର୍ଶନିକ ଯାହାଙ୍କ ବିଚାରଧାରାକୁ ନବ୍ୟପ୍ଲେଟୋବାଦ ଭାବରେ ଗ୍ରହଣ କରାଯାଉଛି ।

ପ୍ଲୋଟିନସ୍‌ଙ୍କ ଆବିର୍ଭାବ ସମୟକୁ ଖ୍ରୀଷ୍ଟଧର୍ମର ବିକାଶ ହେଲାଣି । ଗ୍ରୀକ୍ ଦାର୍ଶନିକ ମାନେ ପ୍ରାକ୍-ଖ୍ରୀଷ୍ଟୀୟ ଯୁଗର ଚିନ୍ତକ, କିନ୍ତୁ ପ୍ଲୋଟିନସ୍ ହେଲେ ଖ୍ରୀଷ୍ଟୀୟ ୟୁରୋପର ଦାର୍ଶନିକ । ପୁନଶ୍ଚ କେତେକ ଯୁକ୍ତି କରନ୍ତି ଯେ ପ୍ଲୋଟିନସ୍‌ଙ୍କ ଦର୍ଶନ ନା ଗ୍ରୀସ୍‌ରେ ସୃଷ୍ଟି ହୋଇଥିଲା ନା ଏଥିରେ ଗ୍ରୀକ୍ ଦୃଷ୍ଟିଭଙ୍ଗୀ ଅନ୍ତର୍ନିହିତ ରହିଛି । ପ୍ଲୋଟିନସ୍ ଗ୍ରୀସ୍‌ର ବ୍ୟକ୍ତି ନଥିଲେ, ସେ ଥିଲେ ଆଲେକ୍‌ଜାଣ୍ଡ୍ରିଆ ସହରର ବ୍ୟକ୍ତି ଯାହା ଥିଲା ଏକ ବିଶ୍ୱ-ବାଣିଜ୍ୟ କେନ୍ଦ୍ର । ଆଲେକ୍‌ଜାଣ୍ଡ୍ରିଆ ଥିଲା ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତ ମଧ୍ୟରେ ଏକ ସମନ୍ୱୟକାରୀ ସହର । ଏହି ସହରରେ ହିନ୍ଦୁ, ବୌଦ୍ଧ, ଜିଉ ଓ ଖ୍ରୀଷ୍ଟିଆନ ଚାରି ଧର୍ମର ଲୋକମାନେ ରହୁଥିଲେ ଓ ସମସ୍ତଙ୍କ ଭିତରେ ଶାନ୍ତିପୂର୍ଣ୍ଣ ବାତାବରଣ ରହିଥିଲା । ପରିଣାମତଃ ଏଠାରେ ଏକ ସମନ୍ୱୟର ଭାବଧାରା ଓ ସାଂସ୍କୃତିକ ମିଳନର ପରିବେଶ ସୃଷ୍ଟି ହୋଇଥିଲା । ବିଶେଷକରି ଗ୍ରୀକ୍ ଦାର୍ଶନିକ ଭାବଧାରା ସହିତ ପ୍ରାଚ୍ୟ ଭୂଖଣ୍ଡର ରହସ୍ୟବାଦର ସଂଯୁକ୍ତ ଏଠାରେ ହୋଇଥିଲା । ପ୍ଲୋଟିନସ୍‌ଙ୍କ ଭାବମଣ୍ଡଳ ଗ୍ରୀକ୍ ବୁଦ୍ଧିବାଦ ଓ ପ୍ରାଚ୍ୟ ରହସ୍ୟବାଦଦ୍ୱାରା ପ୍ରଭାବିତ ହୋଇଥିଲା । ତାଙ୍କ ଦର୍ଶନରେ ଏହି ଦୁଇ ଧାରାର ପ୍ରତିଫଳନ ମଧ୍ୟ ଦେଖିବାକୁ ମିଳେ ।

ତେବେ ପ୍ଲୋଟିନସ୍‌ଙ୍କ ଦର୍ଶନକୁ ମଧ୍ୟଯୁଗୀୟ ଦର୍ଶନ ସହ ସଂଯୁକ୍ତ କରିବା ଯଥାର୍ଥ ମନେହୁଏ ନାହିଁ । ଏହାର ମୁଖ୍ୟ କାରଣ ହେଉଛି ମଧ୍ୟଯୁଗୀୟ ଦର୍ଶନ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହୋଇଥିବା ରାଷ୍ଟ୍ରମାନଙ୍କରେ ବିକଶିତ ହୋଇଥିଲା । ଯାହାକୁ ମଧ୍ୟଯୁଗୀୟ ଦର୍ଶନ କୁହାଯାଉଛି ତାହା ମୁଖ୍ୟତଃ ଖ୍ରୀଷ୍ଟୀୟ ଦର୍ଶନ । ଅଣଖ୍ରୀଷ୍ଟୀୟ ଭାବନା ବିରୁଦ୍ଧରେ ଯେଉଁ ଦାର୍ଶନିକ ଆଲୋଡନ ଆସିଥିଲା ତାହା ମଧ୍ୟଯୁଗୀୟ ଦର୍ଶନ ଭାବରେ ପରିଗଣିତ ହୁଏ । ଏହି ଦୃଷ୍ଟିରୁ ନବ୍ୟପ୍ଲେଟୋବାଦ ଅଣଖ୍ରୀଷ୍ଟୀୟାନ ହେବା ସହ ଏହା ଖ୍ରୀଷ୍ଟୀୟାନ ଭାବଧାରାର ପରିପନ୍ଥୀ ଥିଲା । ଏହି ଦର୍ଶନ ଅଣଖ୍ରୀଷ୍ଟୀୟ ବିଚାରଧାରାର ଦର୍ଶନ; ଯଦିବା ଏହା ଖ୍ରୀଷ୍ଟୀୟ ଭାବନା ସମୟରେ ବିକଶିତ ହୋଇଥିଲା । ଗ୍ରୀକ୍ ଦାର୍ଶନିକ ଚିନ୍ତନର କେତେକ ପରିଶେଷ ନବ୍ୟପ୍ଲେଟୋବାଦ ଭିତରେ ପରିଲକ୍ଷିତ ହୁଏ । ନବ୍ୟପ୍ଲେଟୋବାଦ ଖ୍ରୀଷ୍ଟୀୟ ଭାବଧାରା ବିରୁଦ୍ଧରେ ଥିଲା ଶେଷ ବୌଦ୍ଧିକ ସ୍ୱର, ଏହାପରେ ଯାହା ଦାର୍ଶନିକ ବିଚାର ଆସିଲା ତାହା ଖ୍ରୀଷ୍ଟଧର୍ମର ଆଧାର ଉପରେ ବିକଶିତ ହୋଇଥିଲା । ପୁନଶ୍ଚ ନବ୍ୟପ୍ଲେଟୋବାଦ ପ୍ରାଚ୍ୟ ଦର୍ଶନ ଅପେକ୍ଷା ଗ୍ରୀକ୍ ଦାର୍ଶନିକ ଭାବଧାରାଠାରୁ ବହୁ ପ୍ରେରଣା ନେଇଥିଲା । ଏହା ପ୍ଲେଟୋଙ୍କୁ ଅଧିକ ଗ୍ରହଣ କରିଥିଲା, ସେହି ଦୃଷ୍ଟିରୁ ଏହାକୁ ନବ୍ୟପ୍ଲେଟୋବାଦ କୁହାଯାଉଛି । ତେବେ ନବ୍ୟପ୍ଲେଟୋବାଦ ଥିଲା ଗ୍ରୀକ୍ ଦର୍ଶନ ଇତିହାସରେ ଶେଷ ଦାର୍ଶନିକ ଧାରା ।

ନବ୍ୟପ୍ଲେଟୋବାଦ ଅତୀତର ଦାର୍ଶନିକ ଧାରାମାନଙ୍କର ପାଞ୍ଚଶହ ବର୍ଷ ପରେ ବିକଶିତ ହୋଇଥିଲା । ଏହି ଦୀର୍ଘ ସମୟ ବ୍ୟବଧାନ ଭିତରେ ବିଭିନ୍ନ ଦାର୍ଶନିକ ଭାବଧାରା ମଧ୍ୟରେ ଆଦାନ୍ ପ୍ରଦାନ ହୋଇଥିଲା ଓ ସମୟେ ସମୟେ ସଂଶୟବାଦକୁ ସାମ୍ନା କରିବାକୁ ପଡିଥିଲା । ତେବେ ଏହି ସମୟ ମଧ୍ୟରେ କୌଣସି ନୂତନ ସିଦ୍ଧାନ୍ତ ବା ଦାର୍ଶନିକ ବିଚାର ବିକଶିତ ହୋଇନଥିଲା, ଫଳରେ ପୂର୍ବର ଦାର୍ଶନିକ ମତବାଦ ମାନଙ୍କ ପ୍ରତି କୌଣସି ଆହ୍ୱାନ ସୃଷ୍ଟି ହୋଇନଥିଲା । ସମୟର ବ୍ୟବଧାନ ଭିତରେ ବିଭିନ୍ନ ଦାର୍ଶନିକ ଧାରା ମାନଙ୍କ ମଧ୍ୟରେ ବରଂ ସହମତି ପ୍ରକାଶ ପାଇଥିଲା । ବୌଦ୍ଧିକ ସ୍ତରରେ ଅବକ୍ଷୟର ପରିବେଶ ଆସିଲେ ଏକ ସହନଶୀଳ ମନୋଭାବର ବିକାଶ ହୁଏ ଯେ ସବୁ ଦାର୍ଶନିକ ମତ ସମାନ ଭାବନା ବ୍ୟକ୍ତ କରୁଛନ୍ତି । ଯେପରି ଭଲ ଉଦ୍ଦେଶ୍ୟ ରଖି ଧର୍ମମାନଙ୍କର କୌଣସି ତୁଳନାତ୍ମକ ଅନୁଶୀଳନ ନକରି କେତେକ କହିଥାନ୍ତି ଯେ ସବୁ ଧର୍ମମାନ ଏକା କଥା କହୁଛନ୍ତି । ଏହିପରି ଏକ ସମନ୍ୱୟର ମନୋଭାବ ସମାଜରେ ସୃଷ୍ଟି ହୋଇଥାଏ ।ସେହି ପ୍ରକ୍ରିୟାରେ ଷ୍ଟୋଇକ୍‌ମାନେ ଏକାଡେମୀ ଦର୍ଶନକୁ ସମର୍ଥନ ଦେଇଛନ୍ତି ଓ ପ୍ଲେଟୋଙ୍କ ଏକାଡେମୀରେ ଷ୍ଟୋଇକବାଦର ମଧ୍ୟ ଚର୍ଚ୍ଚା କରାଯାଇଛି । ଏହି ପ୍ରକ୍ରିୟାରୁ ଏପିକ୍ୟୁରୀୟମାନେ କିଛିଟା ପୃଥକ୍ ରହିଛନ୍ତି । ଅନ୍ୟ ଦାର୍ଶନିକ ଧାରାମାନଙ୍କ ମଧ୍ୟରେ ଆଦାନ-ପ୍ରଦାନର ଧାରା ଅବ୍ୟାହତ ରହିଛି । ବିଶେଷକରି ଈଶ୍ୱର ଭାବନାକୁ ନେଇ ଅଧିକ ଚର୍ଚ୍ଚା ହୋଇଛି । ଈଶ୍ୱର ପ୍ରତୀତିକୁ ନେଇ ଦାର୍ଶନିକମାନଙ୍କ ମଧ୍ୟରେ ଅଧିକ ସହମତି ପ୍ରକାଶ ପାଇଛି । ଏହି ପ୍ରସଙ୍ଗରେ ଅଧିକାଂଶଙ୍କ ମତରେ ଈଶ୍ୱର ବସ୍ତୁ ବା ଉପାଦାନ ଉପରେ କାର୍ଯ୍ୟ କରିବେ ନାହିଁ କିମ୍ବା ବସ୍ତୁ ଈଶ୍ୱରଙ୍କ ଉପରେ ବି କାର୍ଯ୍ୟ କରିବ ନାହିଁ । ସେମାନଙ୍କ ମତରେ କୌଣସି ପାରସ୍ପରିକ କ୍ରିୟା ଈଶ୍ୱରଙ୍କ ପବିତ୍ରତା ଉପରେ ଆଞ୍ଚ ଆଣିବ ବା ଏହାକୁ ଦୂଷିତ କରିବ । ସୁତରାଂ

ଈଶ୍ୱର ଓ ଜଗତ ମଧ୍ୟରେ ସମନ୍ୱୟ ରକ୍ଷାକରିବା ପାଇଁ ବିଭିନ୍ନ ଦେବଦୂତ, ଶୁଦ୍ଧାତ୍ମା,ପରୀ ଇତ୍ୟାଦିର କଳ୍ପନା କରାଯାଇଛି । ଏହାର କିଛି ଉଦାହରଣ ଦର୍ଶନ ଐତିହାସିକମାନେ ପ୍ରଦାନ କରିଛନ୍ତି । ଏଠାରେ ଏକ ଉଦାହରଣର ଅବତାରଣା କରାଯାଇପାରେ । ଫିଲୋ ଆଲେକ୍‌ଜାଣ୍ଡ୍ରିଆଠାରେ ଖ୍ରୀ.ପୂ. ୩୦ରୁ ଖ୍ରୀଷ୍ଟାବ୍ଦ ୫୦ ମଧ୍ୟରେ ରହିଥିଲେ । ସେ ଥିଲେ ଜିଉ, ଓ ହିବ୍ରୁଧର୍ମ ଓ ବାଇବେଲର ପୁରାତନ ନିୟମ ବା ଓଲଡ୍ ଟେଷ୍ଟାମେଣ୍ଟ ଉପରେ ତାଙ୍କର ଗଭୀର ବିଶ୍ୱାସ ରହିଥିଲା । ସେ ଗ୍ରୀକ୍ ଦର୍ଶନ ସଂପର୍କରେ କିଛି ପଢ଼ିଥିଲେ ଓ ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ତାଙ୍କ ଧର୍ମଗ୍ରନ୍ଥରେ ଯାହା ସବୁ ଉଲ୍ଲେଖ ରହିଛି ତାହାର ଏକ କ୍ଷୀଣ ପ୍ରତିଫଳନ ଗ୍ରୀକ୍ ଦର୍ଶନରେ ହୋଇଛି । ଇହୁଦୀମାନଙ୍କର ଧର୍ମଗ୍ରନ୍ଥ ଓଲ୍‌ଡ ଟେଷ୍ଟାମେଣ୍ଟରେ ସବୁ ସତ୍ୟ ନିହିତ ରହିଛି ଓ ଗ୍ରୀକ୍ ଦାର୍ଶନିକମାନେ ତାହା ହିଁ ଆଂଶିକ ଭାବରେ ବ୍ୟକ୍ତ କରୁଛନ୍ତି । ଫିଲୋ ଏହା ମଧ୍ୟ ବିଶ୍ୱାସ କରୁଥିଲେ ଯେ ପ୍ଲେଟୋ ଓ ଆରିଷ୍ଟୋଟଲ ଇହୁଦୀ ଧର୍ମର ପ୍ରତିଷ୍ଠାତା ମୋଜେସଙ୍କର ଅନୁଗାମୀ ଥିଲେ ଫଳରେ ସେମାନେ ଦର୍ଶନ କ୍ଷେତ୍ରରେ ଏପରି ପ୍ରତିଷ୍ଠା ଲାଭ କରିଛନ୍ତି । ସେହିପରି ଇଜିପ୍ଟର ଧର୍ମଯାଜକମାନେ ଦେଶପ୍ରୀତି କାରଣରୁ ଭାବୁଥିଲେ ଯେ ଗ୍ରୀକ୍ ଦର୍ଶନ ଇଜିପ୍ଟରୁ ଆସିଛି । କେତେକ ଭାରତୀୟ ମଧ୍ୟ ମନେକରନ୍ତି ଯେ ଗ୍ରୀକ୍ ଦାର୍ଶନିକମାନେ ପ୍ରାଚ୍ୟ ଅଧ୍ୟାତ୍ମବାଦୀ ମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ଦର୍ଶନର ବିକାଶ ଘଟାଇଛନ୍ତି । ଏସବୁ ପଶ୍ଚାତରେ କୌଣସି ତଥ୍ୟମୂଳକ ଘଟଣା ବା ପ୍ରମାଣ ନାହିଁ । ଉଗ୍ର ଜାତୀୟତାବୋଧ ବା ଧାର୍ମିକ ଭାବପ୍ରବଣତା ଦ୍ୱାରା ପ୍ରଭାବିତ ହୋଇ କିଛି ବ୍ୟକ୍ତି ଗ୍ରୀକ୍ ଦାର୍ଶନିକମାନଙ୍କ ବିଷୟରେ ଏହିପରି ମତ ରଖିଛନ୍ତି ।

ତେବେ ବାସ୍ତବରେ ଗ୍ରୀକ୍ ଦାର୍ଶନିକ ମାନଙ୍କୁ କୌଣସି ବାହ୍ୟ ଦେଶର ଭାବଧାରା ପ୍ରଭାବିତ କରିନଥିଲା । ସେତେବେଳର ପୃଥିବୀ ଭିନ୍ନ ପ୍ରକାର ଥିଲା । ବିଭିନ୍ନ ସଭ୍ୟତାମାନ ନିଜସ୍ୱ ଧାରାରେ ବିକଶିତ ହୋଇଥିଲେ । ସଭ୍ୟତା-ସଭ୍ୟତା, ସଂସ୍କୃତି-ସଂସ୍କୃତି ଭିତରେ ଆଦାନ ପ୍ରଦାନର ଯୁଗ ଆସି ନଥିଲା । ବରଂ ଗ୍ରୀସ୍‌ରେ ଯେଉଁ ସଭ୍ୟତା ଗଢ଼ି ଉଠିଥିଲା ତାହାର ନିଜସ୍ୱ ସ୍ୱତନ୍ତ୍ରତା ଓ ବୈଭବ ରହିଥିଲା । ଗ୍ରୀକ୍‌ମାନେ ବହୁ କ୍ଷେତ୍ରରେ ନିଜର ସୃଜନଶୀଳ ପ୍ରତିଭାର ପରିଚୟ ଦେଇଛନ୍ତି । ବିଶେଷକରି ଦର୍ଶନ ଚର୍ଚ୍ଚା କ୍ଷେତ୍ରରେ ସଭ୍ୟତାର ଇତିହାସରେ ଗ୍ରୀକ୍‌ମାନେ ଥିଲେ ପଥପ୍ରଦର୍ଶକ । ଅନେକ ଜିଜ୍ଞାସୁ ଦାର୍ଶନିକଙ୍କର ସେଠାରେ ଆବିର୍ଭାବ ଘଟିଥିଲା । ଦାର୍ଶନିକ ମାନେ ସବୁ ସଭ୍ୟତାରେ ଜିଜ୍ଞାସୁ ବ୍ୟକ୍ତି, ଯେଉଁମାନେ ବିଭିନ୍ନ ପ୍ରସଙ୍ଗ ଉପରେ ମୌଳିକ ପ୍ରଶ୍ନ ଉଠାଇଥାନ୍ତି । ସେମାନେ ଯେଉଁ ସିଦ୍ଧାନ୍ତର ଅବତାରଣା କରନ୍ତି, ତାହା ଯେତେ ଗୁରୁତ୍ୱପୂର୍ଣ୍ଣ ନୁହେଁ ସେମାନେ ଉଠାଇଥିବା ପ୍ରଶ୍ନ ହିଁ ଗମ୍ଭୀର ଯାହା ଗଭୀର ଚର୍ଚ୍ଚା ଆବଶ୍ୟକ କରେ । ସଭ୍ୟତାର ଇତିହାସରେ ସକ୍ରେଟିସ୍, ପ୍ଲେଟୋ ଓ ଆରିଷ୍ଟୋଟଲ ଯେଉଁ ମହତ ତ୍ରୟୀଙ୍କର ଆବିର୍ଭାବ ଗ୍ରୀସ୍‌ରେ ହୋଇଥିଲା ସେମାନେ ଦାର୍ଶନିକ ଜିଜ୍ଞାସା କ୍ଷେତ୍ରରେ ଉଚ୍ଚ ଶିଖରକୁ ଯାଇପାରିଥିଲେ । ସେମାନଙ୍କର ବୌଦ୍ଧିକ ଅନୁସନ୍ଧିତ୍ସା ସେମାନଙ୍କୁ ଦର୍ଶନ ଇତିହାସରେ ଅମର କରିରଖିଛି । ଏହି ଚିନ୍ତାଶୀଳ ପ୍ରତିଭାମାନେ ମନୁଷ୍ୟର ଚିନ୍ତାରାଜ୍ୟରେ ପ୍ରେରଣାଦାତା ହୋଇ ରହିଛନ୍ତି । ଏକ ସମୟରେ ପାଶ୍ଚାତ୍ୟ ଜଗତର ବୌଦ୍ଧିକ କେନ୍ଦ୍ରସ୍ଥଳୀ

ଭାବରେ ଏଥେନ୍ସର ସ୍ୱତନ୍ତ୍ର ପରିଚୟ ଥିଲା । ତେବେ ଆରିଷ୍ଟୋଟଲଙ୍କ ପରେ ଯେଉଁ କେତେକ ଦାର୍ଶନିକ ସ୍କୁଲମାନଙ୍କର ଅଭ୍ୟୁଦୟ ଘଟିଥିଲା ସେସବୁ ଧୀରେ ଧୀରେ ଅବକ୍ଷୟର ସମ୍ମୁଖୀନ ହେଲେ ଓ ଏକ ମହାନ ଦାର୍ଶନିକ ପରଂପରାର କ୍ରମ ବିଲୟ ଘଟିଲା । ଖ୍ରୀ.ପୂ. ତୃତୀୟ ଶତାବ୍ଦୀ ପରେ ଏଥେନ୍ସରେ ଦାର୍ଶନିକ ଚର୍ଚ୍ଚା ଆଉ ଅଗ୍ରଗତି କଲା ନାହିଁ ବା ସେପରି ପ୍ରତିଭାବାନ ଦାର୍ଶନିକ ମାନଙ୍କର ଆବିର୍ଭାବ ହେଲା ନାହିଁ ।

ଏଠାରେ ଆମେ ଯେଉଁ ନବ୍ୟପ୍ଲେଟୋବାଦ ବିଷୟରେ ଆଲୋଚନା କରିବାକୁ ଯାଉଛେ ତାହା ପ୍ରକୃତରେ ଏକ ଭ୍ରମାତ୍ମକ ଅଭିବ୍ୟକ୍ତି । କାରଣ ନବ୍ୟପ୍ଲେଟୋବାଦ ପ୍ଲେଟୋଙ୍କ ଦର୍ଶନର ଏକ ପୁନର୍ଜାଗରଣ ବା ନୂତନ ପ୍ରସ୍ତାବନା ନୁହେଁ । ବରଂ ପ୍ଲେଟୋଙ୍କ ଦର୍ଶନରେ ରହିଥିବା ଦୁର୍ବଳତା ଓ କିଛି ରହସ୍ୟମୟ ଭାବନାକୁ ନବ୍ୟପ୍ଲେଟୋବାଦରେ ଗୌରବ ମଣ୍ଡନ କରାଗଲା । ନବ୍ୟପ୍ଲେଟୋବାଦ ସଂପର୍କରେ ଷ୍ଟେସ୍ ଲେଖିଛନ୍ତି – "The word Neo-Platonism is a misnomer. It does not stand for a genuine revival of Platonism. The Neo-Platonists were no doubt the offsprings of Plato, but they were the illegitimate offsprings" (ପୃଷ୍ଠା ୩୭୨) ତେବେ ନବ୍ୟପ୍ଲେଟୋବାଦକୁ ଏପରି ସମାଲୋଚନା କରାଯାଇଥିଲେ ମଧ୍ୟ ତାହା ଯେ ଗ୍ରୀକ୍ ଦର୍ଶନର ଥିଲା ଶେଷ ରଶ୍ମି ଏହା କୁହାଯାଇପାରେ । ଏକ ଅସ୍ତଗାମୀ ସୂର୍ଯ୍ୟର ଅନ୍ତିମ ପ୍ରଭାର ବି କିଛି ଔଜଲ୍ୟ ଥାଏ । ନବ୍ୟପ୍ଲେଟୋବାଦର ଆବିର୍ଭାବ ପରେ ଗ୍ରୀକ୍ ଦର୍ଶନର ସ୍ୱର୍ଣ୍ଣଯୁଗର ମୁଣ୍ଡିମରିଲା ଓ ଏହା ପରେ ୟୁରୋପରେ ମଧ୍ୟଯୁଗ ଆରମ୍ଭ ହେଲା । କେବଳ ଦର୍ଶନ ନୁହେଁ ଭିଭିନ୍ନ ସ୍ତରରେ ମଧ୍ୟଯୁଗ ଥିଲା ଏକ ଅନ୍ଧକାରର କାହାଣୀ । ତେବେ ଆମେ ଏବେ ନବ୍ୟପ୍ଲେଟୋବାଦ ସଂପର୍କରେ ବିଚାର କରିବା ।

## ୧୦.୨ ନବ୍ୟପ୍ଲେଟୋବାଦର ପ୍ରତିଷ୍ଠାତା ପ୍ଲୋଟିନସ୍

ନବ୍ୟପ୍ଲେଟୋବାଦର ପ୍ରତିଷ୍ଠାତା ଥିଲେ ପ୍ଲୋଟିନସ୍ । ପ୍ଲୋଟିନସ୍ ଥିଲେ ଆମୋନିୟସ ସକାସଙ୍କର ଶିଷ୍ୟ । ସକାସ ଥିଲେ ନବ୍ୟପ୍ଲେଟୋବାଦର ପ୍ରଥମ ପ୍ରବକ୍ତା । ତେବେ ତାଙ୍କର କୌଣସି କୃତି ନାହିଁ ବା ସେ ସେପରି ବୌଦ୍ଧିକ ଅବଦାନ ରଖିନାହାନ୍ତି । ତେଣୁ ପ୍ଲୋଟିନସ୍‌ଙ୍କୁ ଏହି ଦୃଷ୍ଟିରୁ ନବ୍ୟପ୍ଲେଟୋବାଦର ପ୍ରଧାନ ପ୍ରବକ୍ତା ଭାବରେ ଗ୍ରହଣକରାଯାଏ । ପ୍ଲୋଟିନସ୍‌ଙ୍କର ଜନ୍ମ ଇଜିପ୍ଟର ଲିକୋପୋଲିସଠାରେ ଖ୍ରୀଷ୍ଟାବ୍ଦ ୨୦୫ରେ ହୋଇଥିଲା । ଏହାପରେ ସେ ରୋମ୍‌ର ବିଦ୍ୟାନଗରୀ ଆଲେକ୍‌ଜାଣ୍ଡ୍ରିଆକୁ ଚାଲିଆସିଲେ । ଆଲେକ୍‌ଜାଣ୍ଡ୍ରିଆ ସହରକୁ ସେ ୨୪୪ ରେ ଆସିଲେ ଓ ସେଠାରେ ତାଙ୍କର ଦେହାନ୍ତ ପର୍ଯ୍ୟନ୍ତ ରହିଥିଲେ । ତାଙ୍କର ଦେହାନ୍ତ ଖ୍ରୀଷ୍ଟାବ୍ଦ ୨୭୦ରେ ହୋଇଥିଲା ବୋଲି ଐତିହାସିକ ମାନେ ଦର୍ଶାଇଛନ୍ତି । ସେ ଆଲେକ୍‌ଜାଣ୍ଡ୍ରିଆଠାରେ ଏକ ଏକାଡେମୀ ପ୍ରତିଷ୍ଠା କରି ସେଠାରେ ପଚିଶ ବର୍ଷଧରି ଅଧ୍ୟାପନା କରିଥିଲେ । ସେ ୫୪ ଖଣ୍ଡ ପୁସ୍ତକ ଆଲେକ୍‌ଜାଣ୍ଡ୍ରିୟାକୁ ଆସିବାପରେ ରଚନା କରିଥିଲେ । ପରେ ତାଙ୍କର ଶିଷ୍ୟ ପର୍ଫିରୀ ତାଙ୍କର କୃତିମାନଙ୍କୁ ଗ୍ରନ୍ଥାବଳୀ ଆକାରରେ ଛ' ଖଣ୍ଡରେ ପ୍ରକାଶ କଲେ ।

ଆଲେକ୍‌ଜାଣ୍ଡ୍ରିଆ ଥିଲା ବିଭିନ୍ନ ସଂସ୍କୃତିର ମିଳନ ପୀଠ, ଏକ ବାଣିଜ୍ୟିକ କେନ୍ଦ୍ର ଓ ବିଦ୍ୟାନଗରୀ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭିତରେ ଏହି ସହର ଥିଲା ସେତୁ ସଦୃଶ । ଏଠାରେ ବହୁ ବୁଦ୍ଧିଜୀବୀ ରହିଥିଲେ ଓ ଜ୍ଞାନର ବିଭିନ୍ନ କ୍ଷେତ୍ର ଉପରେ ଏଠାରେ ଆଲୋଚନା ହେଉଥିଲା । ଆଲେକ୍‌ଜାଣ୍ଡ୍ରିଆଠାରେ ପ୍ଲୋଟିନସ୍ ଯେଉଁ ସ୍କୁଲ୍ ପ୍ରତିଷ୍ଠା କରିଥିଲେ ସେଥିରେ ବିଭିନ୍ନ ଦେଶ ଓ ବିଭିନ୍ନ ବିଚାରର ବ୍ୟକ୍ତି ବିଦ୍ୟାର୍ଥୀ ଥିଲେ । ଭାଷାବିତ୍, କବି, ପ୍ରଶାସକ, ଚିକିତ୍ସକ ଓ ଏପରିକି ଜଣେ ଶାସକ ଗାଲିଏନସ୍ ଓ ଜଣେ ସାମ୍ରାଜ୍ଞୀ ସାଲୋଲୀନା ତାଙ୍କ ଶିକ୍ଷାନୁଷ୍ଠାନରେ ଅଧ୍ୟୟନ କରୁଥିଲେ । ଅଣଖ୍ରୀଷ୍ଟୀୟ ଦର୍ଶନ, ବିଜ୍ଞାନ,ସାହିତ୍ୟ ଇତ୍ୟାଦିର ଏହା ମୁଖ୍ୟ ଆଲୋଚନା କେନ୍ଦ୍ର ଥିଲା । ଜ୍ଞାନର ବିଭିନ୍ନ କ୍ଷେତ୍ର ଉପରେ ଚର୍ଚ୍ଚା ହେବା ସହ ବିଭିନ୍ନ ପ୍ରସଙ୍ଗ ଉପରେ ରାଶି ରାଶି କୃତି ଏଠାରେ ସୃଷ୍ଟି ହୋଇଥିଲା ।ଏହିପରି ଏକ ଶିକ୍ଷାକେନ୍ଦ୍ରର ପ୍ରାଣପ୍ରତିଷ୍ଠାତା ଓ ଅଧ୍ୟାପକ ଭାବରେ ପ୍ଲୋଟିନସ୍ ବହୁ ପ୍ରସିଦ୍ଧି ଲାଭ କରିଥିଲେ । ସେ ନିଜେ ମଧ୍ୟ ଯେଉଁ ଦାର୍ଶନିକ ଭାବଧାରାର ବିକାଶ କରାଇଥିଲେ ତାହାକୁ ନବ୍ୟପ୍ଲେଟୋବାଦ କୁହାଯାଉଛି । ଏକଦା ଏଥେନ୍‌ସରେ ଯେଉଁ ବୌଦ୍ଧିକ ବାତାବରଣ ରହିଥିଲା ଖ୍ରୀଷ୍ଟାବ୍ଦ ଦ୍ୱିତୀୟ ତୃତୀୟ ଶତାବ୍ଦୀ ବେଳକୁ ସେହିପରି ଏକ ସାଂସ୍କୃତିକ ପରିବେଶ ଆଲେକ୍‌ଜାଣ୍ଡ୍ରିଆଠାରେ ମୁଣ୍ଡ ଟେକିଥିଲା । ଅଲେକ୍‌ଜାଣ୍ଡ୍ରିଆ ଥିଲା ରୋମ୍ ସାମ୍ରାଜ୍ୟର ଅନ୍ତର୍ଗତ । ରୋମ ସାମ୍ରାଜ୍ୟ ବି ଏକ ବିଶାଳ ଭୂଖଣ୍ଡରେ ଗଢ଼ି ଉଠିଥିଲା ଓ ଗ୍ରୀସ୍ ରୋମର ଅନ୍ତର୍ଭୁକ୍ତ ହୋଇଥିଲା । ଆଲେକ୍‌ଜାଣ୍ଡ୍ରିଆ ଥିଲା ଏକ ବିଦ୍ୟାନଗରୀ, କାରଣ ଏଠାରେ ବିଭିନ୍ନ ବିଷୟରେ ଚର୍ଚ୍ଚା ମୁକ୍ତ ବାତାବରଣରେ ହେଉଥିଲା ।

ଗ୍ରୀକ୍ ଦର୍ଶନ ଇତିହାସରେ ପ୍ଲେଟୋ ଥିଲେ ବେଶ୍ ପ୍ରବୀଣ ଓ ଜଣେ ମୌଳିକ ଚିନ୍ତାନାୟକ । ସକ୍ରେଟିସ୍ ଓ ପ୍ଲେଟୋ ସେମାନଙ୍କ ଦର୍ଶନ କ୍ଷେତ୍ରରେ ପ୍ରତିଷ୍ଠା କରିଥିଲେ ଯେ ପ୍ରତ୍ୟକ୍ଷ ଆଧାରିତ ଜ୍ଞାନ ନିର୍ଭରଯୋଗ୍ୟ ନୁହେଁ, ବରଂ ଜ୍ଞାନ ପ୍ରତ୍ୟୟଭିତ୍ତିକ । ପ୍ରତ୍ୟୟଭିତ୍ତିକ  ଜ୍ଞାନ ସାମାନ୍ୟ ତତ୍ତ୍ୱ ଉପରେ ଆଧାରିତ । ଏହି ପ୍ରତ୍ୟକ୍ଷ ଆଧାରିତ ଜ୍ଞାନ ସାର୍ବଜନୀନ, ସୁତରାଂ ସତ୍ୟ । ଜ୍ଞାନକୁ ପ୍ରତ୍ୟୟଭିତ୍ତିକ କରି ତାହାର ଆଧାର ଉପରେ ପ୍ଲେଟୋ ତାଙ୍କର ତତ୍ତ୍ୱମୀମାଂସା, ଆଚାରମୀମାଂସା ଓ ଏକ ପ୍ରସାରିତ ଅର୍ଥରେ ତାଙ୍କର ରାଜନୈତିକ ସିଦ୍ଧାନ୍ତର ଅବତାରଣା କରିଥିଲେ । ଆମ ଜଗତରେ ବିଭିନ୍ନ ଶ୍ରେଣୀର ବିଶେଷମାନେ ରହିଛନ୍ତି । କିନ୍ତୁ ବିଶେଷମାନଙ୍କର ମୂଳ ଓ ସାଧାରଣ ତତ୍ତ୍ୱ ଏକ ଆଇଡ଼ିଆ ବା ଶୁଦ୍ଧସତ୍ତା ଏକ ଭିନ୍ନ ବିଶ୍ୱରେ ରହିଛି ବୋଲି ପ୍ଲେଟୋ ପରିକଳ୍ପନା କରିଥିଲେ । ସେହି ବିଶ୍ୱକୁ ପ୍ଲେଟୋ ତାତ୍ତ୍ୱିକ, ଅତୀନ୍ଦ୍ରିୟ, ସ୍ଥାନ-କାଳର ଊର୍ଦ୍ଧ୍ୱ ବୋଲି ଗ୍ରହଣ କରୁଥିଲେ । ପରମ ଶୁଦ୍ଧସତ୍ତାକୁ ସେ ଈଶ୍ୱର ବୋଲି ନେଉଥିଲେ । ପ୍ଲେଟୋ ଏହିପରି ଏକ ତତ୍ତ୍ୱମୀମାଂସା ନିର୍ମାଣ କରିଥିଲେ ଓ ସେହି ତତ୍ତ୍ୱମୀମାଂସା ଆଧାରରେ ତାଙ୍କ ବିଚାରର ଅନ୍ୟ କ୍ଷେତ୍ରଗୁଡ଼ିକ ବିକଶିତ ହୋଇଥିଲା । ପ୍ଲେଟୋଙ୍କ ବିଚାରକୁ ପ୍ରେକ୍ଷାପଟରେ ରଖି ପ୍ଲୋଟିନସ୍ ଏକ ଦାର୍ଶନିକ ସିଦ୍ଧାନ୍ତର ନିର୍ମାଣ କରିଥିଲେ । ତେବେ ପ୍ଲେଟୋଙ୍କ ଦର୍ଶନ ଯେପରି ବୁଦ୍ଧିବାଦୀ ପ୍ରତ୍ୟୟସତ୍ତାବାଦ ନିର୍ମାଣ କରିଥିଲା ତାହା ପରିବର୍ତ୍ତେ ନିର୍ଗମନବାଦୀ ସର୍ବେଶ୍ୱରବାଦ (emanatistic pantheism) ପ୍ଲୋଟିନସ୍‌ଙ୍କ ଦର୍ଶନର ସାରତତ୍ତ୍ୱ ଥିଲା । ପ୍ଲୋଟିନସ୍ ବିଶ୍ୱର ମୂଳ ସତ୍ତା ଭାବେ ଏକ ପରମ, ନିରପେକ୍ଷ ଓ ନିର୍ଦ୍ୱନ୍ଦ୍ୱ ଚେତନ ସତ୍ତାକୁ ଗ୍ରହଣ

କରିଥିଲେ । ସେହି ମୂଳତତ୍ତ୍ୱକୁ ସେ ଚେତନ ସତ୍ତା ବା ଈଶ୍ୱର ଭାବରେ ପରିକଳ୍ପନା କରିଛନ୍ତି । ପ୍ଲୋଟିନସ୍ ଏଠାରେ ଏକ ସିଦ୍ଧାନ୍ତର ଅବତାରଣା କରିଛନ୍ତି ଯାହାକୁ ନିର୍ଗମନ ତତ୍ତ୍ୱ (Theory of Emanation) କୁହାଯାଉଛି । ସୂର୍ଯ୍ୟର କିରଣ ଯେପରି ଚତୁର୍ଦ୍ଦିଗରେ ବିସ୍ତାରିତ ହୋଇଥାଏ ସେହିପରି ମୂଳ ତତ୍ତ୍ୱର ପ୍ରଭାବରୁ ଏହି ଜଗତ ଉଦ୍ଭବ ହୋଇଛି । ଦିବ୍ୟ ସତ୍ତାରୁ ଜଗତର ବିଚ୍ଛୁରଣ ଘଟିଛି । ଶେଷରେ ଜଗତ ସେହି ମୂଳତତ୍ତ୍ୱରେ ବିଲୀନ ହେବା ହିଁ ସକଳ ଅସ୍ତିତ୍ୱର ଲକ୍ଷ୍ୟ ବୋଲି ପ୍ଲୋଟିନସ୍ କଳ୍ପନା କରିଛନ୍ତି । ଜଗତ କିପରି ପରମ ତତ୍ତ୍ୱରୁ ବିଚ୍ଛୁରିତ (diffusion) ହୋଇଛି ଓ ବିଚ୍ଛୁରଣ ପ୍ରକ୍ରିୟା କ'ଣ କ'ଣ ସ୍ତର ଦେଇ ସମ୍ଭବ ହୋଇଛି ଓ ଶେଷରେ ସବୁ କିଛି ଈଶ୍ୱରଙ୍କ ପାଖରେ ବିଲୁପ୍ତ ହେବ ତାହାକୁ ସେ ବ୍ୟାଖ୍ୟା କରିଛନ୍ତି । ପ୍ଲୋଟିନସ୍ ଏହି ପରିପ୍ରେକ୍ଷୀରେ ଯେଉଁ ତତ୍ତ୍ୱମୀମାଂସାର ଅବତାରଣା କରିଛନ୍ତି ସେଥିରେ ଈଶ୍ୱର ଓ ନିର୍ଗମନ ସିଦ୍ଧାନ୍ତ ମୁଖ୍ୟ ସ୍ଥାନ ନେଇଛି ।

ପ୍ଲୋଟିନସ୍ ଈଶ୍ୱରଙ୍କୁ ସର୍ବୋତ୍ତମ ସତ୍ତା ଓ ସତ୍ ଭାବରେ ଗ୍ରହଣ କରିଛନ୍ତି । ଈଶ୍ୱର ଏକ ଓ କେବଳ ଶୁଦ୍ଧସତ୍ତା ବା ଫର୍ମ । ଭୌତିକ ବସ୍ତୁ ହେଉଛି ଜଗତର ଉପାଦାନ ଓ ବିଶ୍ୱର ଅନ୍ୟ ଏକ ମେରୁ । ତେବେ ଈଶ୍ୱର ହେଉଛନ୍ତି ଶକ୍ତିମୟ ଯାହାଙ୍କଠାରୁ ସବୁକିଛି ଉଦ୍‌ଭବ ହୋଇଛି । ବସ୍ତୁ ଅସୀମ ଭାବରେ ପରିବର୍ତ୍ତନଶୀଳ ଯେଉଁଥିରୁ ସବୁ କିଛି ସମ୍ଭବ ହୋଇଥାଏ । ଯଦିବା ବସ୍ତୁ ଫର୍ମର ରୂପନିଏ, ତେବେ ବସ୍ତୁ ଏକ ପ୍ରତିତତ୍ତ୍ୱ (anti-thesis) ନୁହେଁ । ବରଂ ଜଗତରେ ଏକ ମାତ୍ର ମୌଳିକ ତତ୍ତ୍ୱ ରହିଛି ଓ ସେହି ମୌଳିକ ତତ୍ତ୍ୱ, ପରମ ଫର୍ମ ହେଉଛନ୍ତି ଈଶ୍ୱର ।

ଈଶ୍ୱର ଏକ ଦିବ୍ୟ ଏକତ୍ୱ (Divine unity) ଯାହା ଗାଣିତିକ ଏକତ୍ୱଠାରୁ ସଂପୂର୍ଣ୍ଣ ଭିନ୍ନ । ଗାଣିତିକ ଏକତ୍ୱ କ୍ଷେତ୍ରରେ ଏକ, ପାଞ୍ଚ, ଆଠ ଇତ୍ୟାଦି ସଂଖ୍ୟାମାନଙ୍କୁ ପରିକଳ୍ପନା କରାଯାଏ । ଗାଣିତିକ ସଂଖ୍ୟା ବା ଏକତ୍ୱ କ୍ଷେତ୍ରରେ ସୀମାତୀତ ବିଭାଜନର ଭାବନା ରହେ । କିନ୍ତୁ ଦିବ୍ୟ ଏକତ୍ୱ ଏକ ଅସୀମ ପ୍ରତୀତି ଯାହା ମଧ୍ୟରେ ସମସ୍ତ ଅନ୍ତର୍ନିହିତ ହୋଇ ରହିବା ଦେଖାଯାଏ । ତେଣୁ ଏଠାରେ କୌଣସି ବିଭାଜନର ଭାବନା ଅବାନ୍ତର ମନେହୁଏ । ଈଶ୍ୱର ସବୁର ସ୍ରଷ୍ଟା, କିନ୍ତୁ ନିଜେ ସୃଷ୍ଟ ନୁହନ୍ତି ; ଈଶ୍ୱର ସକଳ ସୌନ୍ଦର୍ଯ୍ୟର ଆଧାର, ନିଜେ ସୌନ୍ଦର୍ଯ୍ୟାତୀତ, ସକଳ ଫର୍ମର ମୂଳ ନିଜେ ଫର୍ମରହିତ, ସକଳ ବୁଦ୍ଧି ଓ ପ୍ରଜ୍ଞାର ଉତ୍ସ ନଜେ ବୁଦ୍ଧି ଓ ପ୍ରଜ୍ଞାର ଉର୍ଦ୍ଧ୍ୱ, ସକଳ ନିୟମ ଓ ଲକ୍ଷ୍ୟର ନିର୍ଣ୍ଣାୟକ କିନ୍ତୁ ସେ କୌଣସି ନିର୍ଣ୍ଣୟର ଆଧାର ନୁହନ୍ତି । ଈଶ୍ୱର ପୂର୍ଣ୍ଣ ଚେତନାମୟ । ସେ ସ୍ୱୟଂ ଆଲୋକମୟ ଯାହାଙ୍କ ଯୋଗୁ ଆମେ ଅନ୍ୟ ସବୁ ଦେଖିବାକୁ ସମର୍ଥ ହୋଇଥାଉ । ଈଶ୍ୱର ସର୍ବ ମଙ୍ଗଳମୟ । ଈଶ୍ୱରଙ୍କ ପାଖରେ ମଙ୍ଗଳ, ସୌନ୍ଦର୍ଯ୍ୟ ବା ବିଚାରଶୀଳତା ଗୁଣ ଭାବରେ ନାହିଁ, ପରନ୍ତୁ ସେ ନିଜେ ମଙ୍ଗଳମୟ, ସୌନ୍ଦର୍ଯ୍ୟମୟ ଓ ପ୍ରଜ୍ଞାମୟ । ଈଶ୍ୱରଙ୍କୁ ବ୍ୟକ୍ତିସତ୍ତା ଆରୋପ କରାଯାଇ ପାରିବ ନାହିଁ । ତାଙ୍କୁ ବ୍ୟକ୍ତିସତ୍ତା ଆରୋପ କରିବା ଅର୍ଥ ତାଙ୍କର ମହତ୍ତ୍ୱକୁ ସୀମିତ କରିବା । ଆତ୍ମଚେତନା ଆମ ପାଇଁ ମୂଲ୍ୟ ରଖେ, ଏହା ଈଶ୍ୱରଙ୍କ ପାଖରେ ପ୍ରୟୋଗ ହୋଇପାରିବ ନାହିଁ । କୌଣସି ବିଷୟ ଆମକୁ ଭଲଭାବରେ ପରିଦୃଶ୍ୟ ହେଉନଥିଲେ, ଆମେ ଏହାକୁ

ଦେଖିବାକୁ ଆଲୋକ ଆବଶ୍ୟକ କରୁ । କିନ୍ତୁ ଆଲୋକର ଦୃଶ୍ୟ, ଅଦୃଶ୍ୟ, ଚେତନ-ଅଚେତନ ସବୁକିଛିର ଊର୍ଦ୍ଧ୍ୱ । ମନୁଷ୍ୟର କାମନା, ଇଚ୍ଛା, ଲକ୍ଷ୍ୟ ଇତ୍ୟାଦି ରହିବା ଦେଖାଯାଏ । ଏସବୁ ଈଶ୍ୱରଙ୍କ ପାଖରେ ନଥାଏ । ସେ କିଛି କାମନା କରନ୍ତି ନାହିଁ । କାରଣ ତାଙ୍କ ବାହାରେ ଅନ୍ୟ କିଛି କାମ୍ୟର ବସ୍ତୁ ନଥାଏ । ସେ ପୂର୍ଣ୍ଣତମ ଶାନ୍ତି ଓ ଆନନ୍ଦମୟ । ଆତ୍ମାମାନଙ୍କର ସ୍ୱତନ୍ତ୍ରତା ଥାଏ, ଶରୀରମାନଙ୍କର ଅବସ୍ଥା ନିର୍ଦ୍ଧାରିତ ହେବା ଦେଖାଯାଏ । ଈଶ୍ୱର କାହାଦ୍ୱାରା ନିର୍ଦ୍ଧାରିତ ନୁହନ୍ତି ବା କେହି ତାଙ୍କୁ ସ୍ୱତନ୍ତ୍ରତା ଦେଇନାହାନ୍ତି । ସେ ଏସବୁର ଊର୍ଦ୍ଧ୍ୱରେ । ତାଙ୍କ ପ୍ରତି କୌଣସି ଗୁଣ ଆରୋପ କରିବା ଅର୍ଥ ତାଙ୍କୁ ସୀମିତ କରିବା । ସେ ସବୁ କିଛି, ପୁନଶ୍ଚ କିଛି ନୁହନ୍ତି । ତାଙ୍କୁ କିଛି ଗୁଣଦ୍ୱାରା ବର୍ଣ୍ଣନା କରିବା ସମ୍ଭବ ନୁହେଁ ।

ଏହି ଦୃଷ୍ଟିରୁ ଈଶ୍ୱର ଅବର୍ଣ୍ଣନୀୟ । ପ୍ଲୋଟିନସ୍ ନିଜେ ଈଶ୍ୱରଙ୍କୁ ଯେପରି ଗୁଣଦ୍ୱାରା ବର୍ଣ୍ଣନା କରିଛନ୍ତି- ଯଥା ଈଶ୍ୱର ଏକ, ମଙ୍ଗଳମୟ, ପରିପୂର୍ଣ୍ଣ ଇତ୍ୟାଦି- ତାହା ପର୍ଯ୍ୟାପ୍ତ ନୁହେଁ, ଯଥାର୍ଥ ମଧ ନୁହେଁ । ଈଶ୍ୱରଙ୍କ ବିଷୟରେ ଆମେ ଯାହା କିଛି ପରିକଳ୍ପନା କରିବା ବା କହିବା ଈଶ୍ୱର ତାହାର ଊର୍ଦ୍ଧ୍ୱରେ । କହିବାକୁ ଗଲେ "ଈଶ୍ୱର ଅଛନ୍ତି ବା ତାଙ୍କର ଅସ୍ତିତ୍ୱ ରହିଛି" ଏହା ବି କହିବା ଯଥାର୍ଥ ନୁହେଁ, କାରଣ ସେ ଅସ୍ତିତ୍ୱର ଊର୍ଦ୍ଧ୍ୱରେ । ମୋଟ ଉପରେ ଈଶ୍ୱର ହେଉଛନ୍ତି ଏକ ଅମୂର୍ତ୍ତୀୟ ତତ୍ତ୍ୱ । ପ୍ଲେଟୋ ତାଙ୍କର ଶୁଦ୍ଧସତ୍ତା ବା ଆଇଡିଆ ମାନଙ୍କୁ ଅମୂର୍ତ୍ତୀୟ ଭାବରେ ପରିକଳ୍ପନା କରିଛନ୍ତି । ପ୍ଲେଟୋଙ୍କ ଶୁଦ୍ଧସତ୍ତାଠାରୁ ଈଶ୍ୱର ଭାବନା ଅଧିକ ବ୍ୟାପକ ଓ ଅଧିକ ଅମୂର୍ତ୍ତ । ଆମେ ଈଶ୍ୱରଙ୍କୁ ଭାବନାରେ କିମ୍ବା ଭାଷାରେ ବ୍ୟକ୍ତ କରିଥାଉ । କିନ୍ତୁ ଥରେ ଈଶ୍ୱର ପ୍ରତ୍ୟୟ ବିଷୟରେ ସ୍ପଷ୍ଟ ହେବାପରେ ଭାଷା ଓ ଭାବନାଦ୍ୱାରା ଈଶ୍ୱରଙ୍କୁ ଜାଣିବା ସମ୍ଭବ ହୁଏ ନାହିଁ । ଈଶ୍ୱର ଅମୂର୍ତ୍ତୀୟ ଭାବନା ଭିତରେ ଅମୂର୍ତ୍ତୀୟ । କେବଳ ଧ୍ୟାନ, ଭକ୍ତି ଦ୍ୱାରା ତାଙ୍କୁ ପରିକଳ୍ପନା କରାଯାଇପାରେ ।

ପ୍ଲେଟୋ ତାଙ୍କ ତତ୍ତ୍ୱମୀମାଂସା କ୍ଷେତ୍ରରେ ଶୁଦ୍ଧସତ୍ତା ମାନଙ୍କୁ ଅମୂର୍ତ୍ତୀୟ ସ୍ଥାନ ଦେଇଛନ୍ତି । ପ୍ଲେଟୋଙ୍କ ଈଶ୍ୱର ଶୁଦ୍ଧସତ୍ତାମାନଙ୍କ ମଧ୍ୟରେ ଶୁଦ୍ଧତମ । ପ୍ଲେଟୋ ଈଶ୍ୱର ପ୍ରତ୍ୟୟର ଅବତାରଣା କରିଛନ୍ତି । ସମସ୍ତ ଶୁଦ୍ଧସତ୍ତା ବା ଆଇଡିଆ (ପ୍ଲେଟୋଙ୍କ ବୈଷୟିକ ଅର୍ଥରେ) ମାନଙ୍କ ମଧ୍ୟରେ ଯାହା ବିଶୁଦ୍ଧ ଓ ଯାହା ପରମ ଆଇଡିଆ ତାହା ଈଶ୍ୱର ବୋଲି ଭାବିଛନ୍ତି । ପ୍ଲେଟୋ ବୌଦ୍ଧିକ ବିଚାର ମଧ ଦେଇ ଈଶ୍ୱର ଭାବନାର ଅବତାରଣା କରିଛନ୍ତି । ଏକ ଯୁକ୍ତିଶୀଳ ବିଚାର ଧାରାରେ ସେ ଈଶ୍ୱର ପ୍ରତ୍ୟୟକୁ ତାଙ୍କ ତତ୍ତ୍ୱମୀମାଂସା କ୍ଷେତ୍ରରେ ସ୍ଥାନ ଦେଇଛନ୍ତି । ପ୍ଲେଟୋଙ୍କ ଈଶ୍ୱର ଓ ପ୍ଲୋଟିନସ୍ଙ୍କ ଈଶ୍ୱର ଭାବନା ମଧ୍ୟରେ ପାର୍ଥକ୍ୟ ରହିଛି । ପ୍ଲୋଟିନସ୍ ଈଶ୍ୱରଙ୍କୁ ରହସ୍ୟବାଦୀ ଦୃଷ୍ଟିରେ ପରିକଳ୍ପନା କରିଛନ୍ତି । ବୁଦ୍ଧି, ବିଚାରକୁ ଦାର୍ଶନିକ ଅନୁଶୀଳନ କ୍ଷେତ୍ରରେ ଏକ ନିର୍ଦ୍ଦିଷ୍ଟ ସୀମା ଭିତରେ ସେ ବ୍ୟକ୍ତ କରିଛନ୍ତି । ତେବେ ଈଶ୍ୱରଙ୍କୁ ଶେଷରେ ସେ ଗୂଢ଼ାନୁଭବବାଦ ବା ରହସ୍ୟବାଦ ଧାରାରେ ପ୍ରକାଶ କରିବାକୁ ଯଥାର୍ଥ ଭାବିଛନ୍ତି ।

ଈଶ୍ୱରଙ୍କୁ ପରମ ତତ୍ତ୍ୱ ବା ପରମାର୍ଥିକ ସତ୍ତା ଭାବରେ ଗ୍ରହଣ କଲା ପରେ ପ୍ରଶ୍ନ ହେଉଛି ଜଗତର ଉତ୍ପତ୍ତିକୁ ପ୍ଲୋଟିନସ୍ କିପରି ବ୍ୟାଖ୍ୟା କରିବେ ? ଏକ ପରମ ତତ୍ତ୍ୱ କିପରି ଜଗତ ବ୍ୟବସ୍ଥା ସହିତ ସଂପୃକ୍ତ ହେବେ ? ଈଶ୍ୱର ଯେହେତୁ ପରମାର୍ଥିକ, ଅସୀମ ଓ ଅବର୍ଣ୍ଣନୀୟ ତତ୍ତ୍ୱ ସେ ନିଜକୁ ସୀମିତ କରି ଏହି ବିବଧତାପୂର୍ଣ୍ଣ ଜଗତ ଭିତରେ ବ୍ୟକ୍ତ କରିବେ ନାହିଁ । ଏକ ପରମ ସତ୍ତା ଜଗତକୁ ସର୍ଜନା କରିବେ ନାହିଁ, କାରଣ ସୃଜନ ଏକ କାର୍ଯ୍ୟ । ଯେ ପରମ ଓ ଅପରିବର୍ତ୍ତନୀୟ ତାଙ୍କ ପାଖରେ କୌଣସି କ୍ରିୟା ବା ସୃଜନ ରହିପାରିବ ନାହିଁ । ଈଶ୍ୱରଙ୍କୁ ପରମ ସତ୍ତା ଭାବରେ ଗ୍ରହଣ କରିବାପରେ ତାଙ୍କୁ ପୁଣି ବିବିଧତାପୂର୍ଣ୍ଣ ଜଗତ ସହିତ ସଂଯୁକ୍ତ କରିବା ଯୁକ୍ତିସଂଗତ ହେବ ନାହିଁ । ତେବେ ପ୍ଲୋଟିନସ୍ ତାଙ୍କ ଦର୍ଶନରେ ଯୁକ୍ତିଶୀଳ ଦିଗ ଉପରେ ପ୍ରାଧାନ୍ୟ ଦେଇ ନାହାନ୍ତି । ଜଣେ ଗୂଢ଼ ରହସ୍ୟବାଦୀ ଭାବେ ସେ ଅନେକ ବିଷୟକୁ ନିଜ କଳ୍ପନା ଆଧାରରେ ବ୍ୟକ୍ତ କରିଛନ୍ତି ।

ଉପମା ଓ ସାଦୃଶ୍ୟ ଆଧାରରେ ସେ ଜଗତ ସୃଷ୍ଟିର ପରିକଳ୍ପନା କରିଛନ୍ତି । ତାଙ୍କ ବିଚାରରେ ସୂର୍ଯ୍ୟଙ୍କଠାରୁ ଯେପରି ଆଲୋକ ନିର୍ଗମନ ହୁଏ, ଅଗ୍ନିରୁ ଉତ୍ତାପ ନିଃସରଣ ହୁଏ, ସେହିପରି ବିଶ୍ୱ ପରମ ସତ୍ତା ଈଶ୍ୱରଙ୍କ ଠାରୁ ନିର୍ଗମନ ହୋଇଛି । ଈଶ୍ୱର ମଙ୍ଗଳମୟ ସତ୍ତା ଭାବେ ଜଗତରେ ସବୁ କିଛିର ସ୍ଥିତି କାମନା କରିଛନ୍ତି । ତେବେ ଯାହା ସବୁ ଈଶ୍ୱରଙ୍କ ପାଖରୁ ନିର୍ଗତ ହୋଇଛି ସମସ୍ତଙ୍କ ମଧ୍ୟରେ ଏକ ଅସ୍ପଷ୍ଟ କିମ୍ବା ସଚେତନ କାମନା ରହିଛି ଯେ ସେମାନେ କିପରି ତାଙ୍କର ମୂଳ ପାଖକୁ ପ୍ରତ୍ୟାବର୍ତ୍ତନ କରିବେ । ପ୍ରତ୍ୟେକ ବସ୍ତୁ ତାଙ୍କ ପ୍ରତି ଆକର୍ଷିତ ଓ ସବୁ କିଛି ତାଙ୍କ ସହ ମିଳିତ ହେବାକୁ ଆଗ୍ରହୀ । ବିଶେଷତା ସ୍ଥିତିର ଲକ୍ଷ୍ୟ ନୁହେଁ, ବରଂ ପରମ ସହ ସଂଯୁକ୍ତ ହେବା ଏହାର ମୂଳ ଲକ୍ଷ୍ୟ । ଜଗତରେ ଯଦି ଏକ ସଂହତିର ସ୍ଥିତି ରହିଛି, ତାହାର କାରଣ ହେଉଛି ସବୁ କିଛି ଏକ ପରମ ଲକ୍ଷ୍ୟ ସହ ସମ୍ମିଳିତ ହେବାକୁ କାର୍ଯ୍ୟ କରୁଛନ୍ତି । ଏକମାତ୍ର ପରମ ଦିବ୍ୟ ଉତ୍ସ ସହ ସଂଯୁକ୍ତ ହେବାର ଲକ୍ଷ୍ୟକୁ ଭାବନା, ଚିନ୍ତା ଓ ଅନୁଧ୍ୟାନ ମାଧ୍ୟମରେ ଜାଣିହେବ । ମନୁଷ୍ୟମାନଙ୍କ କ୍ଷେତ୍ରରେ ଏହା କୁହାଯାଇପାରେ ଯେ ପ୍ରତ୍ୟେକ ବ୍ୟକ୍ତି ନିଜସ୍ୱ ଧାରାରେ ପରମ ସତ୍ତା ସହିତ ସମ୍ମିଳିତ ହେବାକୁ ପ୍ରୟାସ କରୁଛି । ପ୍ଲୋଟିନସ୍ ବିଶ୍ୱାସ କରିଛନ୍ତି ଯେ ପ୍ରାଣୀମାନେ ଓ ଉଦ୍‌ଭିଦମାନଙ୍କ ମଧ୍ୟରେ ଏହି ପ୍ରକ୍ରିୟା ରହିଛି । ପ୍ରକୃତିରେ ଯାହା କିଛି ରହିଛି ଜଗତର ସକଳ ବସ୍ତୁ, ଉଦ୍ଭିଦ, ପ୍ରାଣୀ ଓ ମନୁଷ୍ୟ ମୂଳ ସତ୍ତା ପରମ ଈଶ୍ୱରଙ୍କ ସହ ସମ୍ମିଳିତ ହେବାର ଲକ୍ଷ୍ୟ ପୋଷଣ କରୁଛନ୍ତି । ଏହି କାରଣରୁ ଜଗତ ମଧ୍ୟରେ ସଂହତି ଓ ଶୃଂଖଳା ବିରାଜମାନ କରୁଛି ।

ପ୍ଲୋଟିନସ୍ ପରମତତ୍ତ୍ୱ ଈଶ୍ୱରଙ୍କଠାରୁ କିପରି ସବୁର ନିର୍ଗମନ ହୋଇଛି ତାହାର ଏକ ଚିତ୍ର ଦେଇଛନ୍ତି । ନିର୍ଗମନ (emanation) ଧାରାରେ ସେ ଜଗତ ସୃଷ୍ଟିର ଏକ ବ୍ୟାଖ୍ୟାନ ଦେବାକୁ ପ୍ରୟାସ କରିଛନ୍ତି । ପ୍ରଥମ ଦିବ୍ୟ ନିର୍ଗମନକୁ ସେ ବୁଦ୍ଧିତତ୍ତ୍ୱ (Nous) ବୋଲି ନେଇଛନ୍ତି । ବୁଦ୍ଧି ସ୍ୱରୂପରେ ଚିନ୍ତନଶୀଳ କ୍ରିୟା, ଯାହା ପରମ ସତ୍ତା ବିଷୟରେ ଚିନ୍ତା କରିପାରେ । ନିର୍ଗମନ ପ୍ରକ୍ରିୟା ପରିପୂର୍ଣ୍ଣତାରୁ ଅପରିପୂର୍ଣ୍ଣତା ଆଡକୁ ଅଗ୍ରଗତି କରିଛି । ସୃଷ୍ଟି ଏକ କ୍ରମ-ଅବକ୍ଷୟ ପ୍ରକ୍ରିୟା । ଈଶ୍ୱରଙ୍କ ପାଖରେ ଯେଉଁ ପରମ ଏକତ୍ୱ ଥିଲା ବୁଦ୍ଧିତତ୍ତ୍ୱର ଉତ୍ପନ୍ନ ପରେ ସେଥିରେ

ବିଭାଜନ ଘଟିଲା । ବୁଦ୍ଧିତତ୍ତ୍ୱ ବା ନାଉସ୍ ହେଉଛି ବିଚାର, ପ୍ରଜ୍ଞା ବା ବୁଦ୍ଧି । ପ୍ଲେଟୋଙ୍କ କ୍ଷେତ୍ରରେ ପରମ ସତ୍ତା ସ୍ୱରୂପରେ ପ୍ରଜ୍ଞା, ପ୍ଲୋଟିନସ୍‌ଙ୍କ କ୍ଷେତ୍ରରେ ବୁଦ୍ଧିତତ୍ତ୍ୱ ଏକ ଅନୁସୃତ ଉପାଦାନ । ଯାହା ଅନୁସୃତ ତାହା ବୁଦ୍ଧିର ପ୍ରୟୋଗ କରିଥାଏ । ବୁଦ୍ଧି ଏକ ବିମର୍ଶାତ୍ମକ ବିଚାର (discursive thought) ନୁହେଁ । ଏହା ତତ୍‌କ୍ଷଣାତ୍ ଅବବୋଧ । ଏହାର ଦୁଇଟି ଆଭିମୁଖ୍ୟ ବା ଲକ୍ଷ୍ୟ ରହିଥାଏ । ପ୍ରଥମରେ ଏହା ଈଶ୍ୱରଙ୍କ ବିଷୟରେ ଚିନ୍ତା କରିପାରେ ଯଦିବା ଏହି ଚିନ୍ତା ବା ବିଚାର ସ୍ୱଳ୍ପ । ଦ୍ୱିତୀୟରେ ଏହା ନିଜ ବିଷୟରେ ଚିନ୍ତା କରିପାରେ । ଏହି ବୁଦ୍ଧିତତ୍ତ୍ୱର ପ୍ଲେଟୋଙ୍କ ଶୁଦ୍ଧସତ୍ତା ସିଦ୍ଧାନ୍ତ ସହ ସାମଂଜସ୍ୟ ଥିବା ମନେହୁଏ । ସକଳ ଶୁଦ୍ଧସତ୍ତା ହେଉ ବା ପ୍ରତ୍ୟେକ ଏକକ ବସ୍ତୁର ସତ୍ତା ହେଉ ଏସବୁ ବୁଦ୍ଧିତତ୍ତ୍ୱ ମାଧ୍ୟମରେ ଅବବୋଧ ହୋଇଥାଏ । ବୁଦ୍ଧିତତ୍ତ୍ୱକୁ ସାର୍ବଜନୀନ ବା ବିଶେଷ ଅର୍ଥରେ ନିଆଯାଇପାରେ । ଈଶ୍ୱର ଯେପରି ଏକ ରହସ୍ୟମୟ ପରିକଳ୍ପନା, ଦିବ୍ୟ ଏକତ୍ୱରୁ ବୁଦ୍ଧିତତ୍ତ୍ୱର ନିର୍ଗମନ ବି ଏକ ରହସ୍ୟମୟ ଅନୁମାନ । ଈଶ୍ୱରଙ୍କୁ ପରମ ତତ୍ତ୍ୱ ବୋଲି ଗ୍ରହଣ କରି ସେଥିରୁ ବୁଦ୍ଧିତତ୍ତ୍ୱର ନିର୍ଗମନ ଏକ ଦ୍ୱୈତବାଦର ଚିତ୍ର ଦେଇଥାଏ ।

ବୁଦ୍ଧିତତ୍ତ୍ୱ ଈଶ୍ୱରଙ୍କ ପାଖରୁ ନିର୍ଗମନ ହେବା ପରି ବୁଦ୍ଧିତତ୍ତ୍ୱରୁ ଯାହା ନିର୍ଗମନ ହୁଏ ତାହାକୁ ପ୍ରାଣଶକ୍ତି ବା ଆତ୍ମା ବୋଲି ଗ୍ରହଣ କରାଯାଏ । ଏହାକୁ କେତେକ ପ୍ରାଣଶକ୍ତି (Life principle) କହିଛନ୍ତି, କେତେକ ବିଶ୍ୱାତ୍ମା (World-soul) ବୋଲି ସୂଚାଇଛନ୍ତି । ପରିଭାଷା ଭିନ୍ନହେଲେ ମଧ୍ୟ ଏହି ପ୍ରତ୍ୟୟଟି ସମାନ ଭାବନା ରଖିଥାଏ । ଏହାର ସ୍ୱରୂପ ହେଉଛି ଏହା ଅଭୌତିକ ଓ ଅବିଭାଜ୍ୟ । ଏହା ବିଚାରଶୀଳ ଭାବେ କାର୍ଯ୍ୟକରେ, କିନ୍ତୁ ଏହା ଚେତନଶୀଳ ନୁହେଁ । ଏହାର ଦୁଇଟି ତାତ୍ପର୍ଯ୍ୟ ରହିପାରେ । ପ୍ରଥମରେ ଏହା ଉର୍ଦ୍ଧ୍ୱତର ସତ୍ତା ବୁଦ୍ଧିତତ୍ତ୍ୱ ପ୍ରତି ଆକର୍ଷିତ ରହିପାରେ । ଦ୍ୱିତୀୟରେ ଏହା ନିମ୍ନତର ସତ୍ତା ପ୍ରାକୃତିକ ଜଗତ ପ୍ରତି ମଧ୍ୟ ଆକର୍ଷଣ ରଖିବା ସମ୍ଭବ ହୋଇଥାଏ । ବିଶ୍ୱାତ୍ମା ଏକ ହେଲେ ମଧ୍ୟ ଏହା ଅଗଣିତ ବ୍ୟକ୍ତିଙ୍କ ପାଖରେ ଆତ୍ମା ଭାବରେ ଅଭିବ୍ୟକ୍ତ ହୋଇଥାଏ । ଅର୍ଥାତ୍ ଆତ୍ମାମାନ ଏଥିରୁ ନିର୍ଗତ ହୋଇଥାନ୍ତି ।

ପ୍ଲୋଟିନସ୍‌ଙ୍କ ନିର୍ଗମନ ଭାବନା ଏକ ଯୁକ୍ତିସଂଗତ ସିଦ୍ଧାନ୍ତ ନୁହେଁ । ସେ ଏହାକୁ କାବ୍ୟିକ ଉପମା ଭାବରେ ଗ୍ରହଣ କରିଛନ୍ତି । ସେ ଏହାକୁ ରୂପକ ଭାବରେ ପରିକଳ୍ପନା କରି ଈଶ୍ୱରଙ୍କ ପାଖରୁ ବୁଦ୍ଧିତତ୍ତ୍ୱ ଓ ସେଥିରୁ ପ୍ରାଣଶକ୍ତିର ନିର୍ଗମନ ଦେଖାଇଛନ୍ତି । ଏକ ଆଲୋକରୁ ଯେପରି ରଶ୍ମିମାନ ବିଚ୍ଛୁରିତ ହୋଇଥାଏ ଓ ରଶ୍ମିମାନ ଧୀରେ ଧୀରେ ଦୂରକୁ ନିଷ୍ପ୍ରଭ ଦେଖାଯାନ୍ତି ସେହି ସାଦୃଶ୍ୟରେ ସେ ଜଗତର ବ୍ୟାଖ୍ୟାନ କରିବାକୁ ଚାହିଁଛନ୍ତି । ଆଲୋକ ରଶ୍ମି ଦୂରରୁ ଦୂରକୁ ନିଷ୍ପ୍ରଭ ହୋଇ ଶେଷରେ ଅନ୍ଧକାରର ଚିତ୍ର ଆସେ । ଏହି ପୂର୍ଣ୍ଣ ଅନ୍ଧକାରକୁ ସେ ଭୌତିକ ବସ୍ତୁ ବୋଲି ନେଇଛନ୍ତି ।

ବୁଦ୍ଧିତତ୍ତ୍ୱ ପରମ ସତ୍ତା ବିଷୟରେ ଚିନ୍ତନ କରିପାରେ ଓ ବୁଦ୍ଧିତତ୍ତ୍ୱରୁ ପ୍ରାଣଶକ୍ତିର ନିର୍ଗମନ ହୁଏ । ତା ପରର ନିର୍ଗମନ ହେଉଛି ଭୌତିକ ବସ୍ତୁ । ବସ୍ତୁ ସମସ୍ତ ଉଚ୍ଚତର ସ୍ଥିତି (ଈଶ୍ୱର, ବୁଦ୍ଧିତତ୍ତ୍ୱ ଓ ବିଶ୍ୱାତ୍ମା) ଠାରୁ ନ୍ୟୂନ

ଓ ଏହା ଫର୍ମ ଧାରଣକରେ । ପ୍ରଜ୍ଞାର ଉପାଦାନ ହେଉଛି ଆଇଡିଆ, ଆତ୍ମାର ଉପାଦାନ ବିଚାର ଓ ବସ୍ତୁର ସ୍ୱରୂପ ଫର୍ମ ।ବସ୍ତୁର ଫର୍ମ ବସ୍ତୁର ସ୍ୱରୂପକୁ ପ୍ରକାଶକରେ, ତାର ଉପାଦାନ କୌଣସି ସତ୍ତାକୁ ପ୍ରକାଶ କରେ ନାହିଁ । ଫର୍ମ ହେଉଛି ବସ୍ତୁର ସତ୍, ବସ୍ତୁର ଉପାଦାନ ହେଉଛି ଅସତ୍ । ଭୌତିକ ପ୍ରକୃତି ସତ୍ ଓ ଅସତ୍ ମଧ୍ୟରେ ଦୋଳାୟମାନ ହୋଇ ରହେ । ଏହା (ଭୌତିକ ବସ୍ତୁ) ଏକ ଚିରନ୍ତନ ସଂଭବନ (eternal becoming) ର ସମ୍ଭାବନା ବହନ କରେ । ଏହାର ସ୍ୱରୂପ ନିରନ୍ତର ପରିବର୍ତ୍ତନ ।

ବସ୍ତୁଜଗତର ଉତ୍ପତ୍ତି ଅର୍ଥ ଶୁଦ୍ଧ ଭୌତିକ ଉପାଦାନକୁ ଦର୍ଶାଏ । ଯାହା ଭୌତିକ ତାହା ଅସତ୍ (non-being) । ଏହା ସବୁଠାରୁ ନିମ୍ନତମ ସ୍ତର ଓ ଅସ୍ପଷ୍ଟ । ଏହି ନିମ୍ନତମ ସ୍ଥାନରେ ରହିଥିବା ଭୌତିକ ସ୍ତରକୁ ପୃଥିବୀର ରଶ୍ମି ପ୍ରବେଶ କରେ । ଭୌତିକତା ବସ୍ତୁ ନୁହଁ, ତେବେ ବସ୍ତୁ ଭୌତିକ ଉପାଦାନ ଓ ଫର୍ମକୁ ନେଇ ଉଦ୍‌ଭବ ହୋଇଥାଏ । ଭୌତିକତା ହେଉଛି ଅଧିଷ୍ଠାନ (substratum) । ମୋଟ ଉପରେ ଭୌତିକତା ହେଉଛି ଅକ୍ରିୟ ଓ ଜଡ । ବସ୍ତୁର ଯେପରି ଗୁଣ, ଲକ୍ଷଣ ରହିଥାଏ, ଭୌତିକତାର କୌଣସି ଆକୃତି, ରଙ୍ଗ, ଗୁଣ ରହିନଥାଏ । ଶକ୍ତି ଓ ଜୀବନ ବୁଦ୍ଧିରେ ନିହିତ ଯେଉଁ ବୁଦ୍ଧି ଈଶ୍ୱରଙ୍କ ପାଖରୁ ନିର୍ଗମନ ପ୍ରକ୍ରିୟାରେ ଉଦ୍ଭବ ହୋଇଥାଏ । ନିର୍ଗମନ ପ୍ରକ୍ରିୟାରେ ସର୍ବଶେଷ ଉପାଦାନ ହେଉଛି ଭୌତିକତା । ଏହା ସଂପୂର୍ଣ୍ଣ ଅନ୍ଧକାର । ଏହି ପ୍ରସଙ୍ଗରେ ଷ୍ଟେସ୍ ଲେଖିଛନ୍ତି – " This total darkness is matter. Matter, as negation of light, as the limit of being, is in itself non-being (ପୃଷ୍ଠା ୩୭୫) । ଯାହା ଭୌତିକ ତାହା ଶକ୍ତିହୀନ, କ୍ଲୀବ, ଗୁଣରହିତ ଏବଂ ଏକତ୍ୱରୁ ବର୍ଜିତ । ଏହା ସଂପୂର୍ଣ୍ଣ ମନ୍ଦ ବା ଅଶୁଭ (evil), ଅସୁନ୍ଦର, ଗୁଣ ବିବର୍ଜିତ ଓ ଅସତ୍ ।

ଯାହା ଭୌତିକ ତାହା ବିବିଧତାର ଉପାଦାନ ବହନ କରେ । ତେବେ ପ୍ଲୋଟିନସ୍ ଯେଉଁ ଅର୍ଥରେ ଭୌତିକତାକୁ ନେଇଛନ୍ତି ତାହା ବସ୍ତୁବାଦୀ ବିଚାରର ଭୌତିକତା ନୁହେଁ । ବସ୍ତୁବାଦ ଓ ଭୌତିକବାଦ ଗ୍ରୀକ୍ ଦାର୍ଶନିକ ମାନଦଣ୍ଡରେ ଦୁଇ ପୃଥକ୍ ପ୍ରତ୍ୟୟ । ଭୌତିକତା ଏକ ଜଡ ବସ୍ତୁକୁ ବୁଝାଏ ନାହିଁ । ଭୌତିକତାର ତାତ୍ପର୍ଯ୍ୟ ଭିନ୍ନ । ପ୍ଲେଟୋ, ଆରିଷ୍ଟୋଟଲ ଓ ପ୍ଲୋଟିନସ୍ ଭୌତିକତାକୁ ଏକ ବୈଷୟିକ ଅର୍ଥରେ ବ୍ୟବହାର କରିଛନ୍ତି । ଭୌତିକତାକୁ ପ୍ଲେଟୋ ଓ ଆରିଷ୍ଟୋଟଲଙ୍କ ପରି ପ୍ଲୋଟିନସ୍ ମଧ୍ୟ ଏକ ଅନୁଭବାତୀତ ଅଧିଷ୍ଠାନ (transcendental substratum) ଭାବରେ ଗ୍ରହଣ କରିଛନ୍ତି । କୌଣସି ବସ୍ତୁର ଯାହା ଅଧିଷ୍ଠାନ ହୋଇପାରିବ ତାହା ଭୌତିକ । ଭୌତିକତା ହେଉଛି ବିବିଧତାର ଆଧାର, ନିଜେ ଗୁଣ ଓ ଫର୍ମ ରହିତ । ତେବେ ଏହା କୌଣସି ଫର୍ମ ନେବା ପରେ ଏହା ଗୁଣଯୁକ୍ତ ହୋଇଥାଏ । ଏହା ହେଉଛି ଭୌତିକ ସିଦ୍ଧାନ୍ତ (Principle of corporeality) ର ମହତ୍ତ୍ୱ । ଭୌତିକତାକୁ ଅଧିଷ୍ଠାନ କରି ବସ୍ତୁ ବସ୍ତୁ ହୋଇପାରିବ । ସୁତରାଂ ଯାହା ଭୌତିକ ତାହା ସକଳ ବସ୍ତୁର ଊର୍ଦ୍ଧ୍ୱରେ ବୋଲି ପ୍ଲୋଟିନସ୍ ଭାବିଛନ୍ତି । ଏହା ଏପରିକି ବୁଦ୍ଧିର ମଧ୍ୟ ଊର୍ଦ୍ଧ୍ୱରେ, କାରଣ ବୁଦ୍ଧିର ପରିପ୍ରକାଶ ପାଇଁ ଯାହା ଆବଶ୍ୟକ ତାହା ବି ଭୌତିକ । କ'ଣ ଭୌତିକ ତାହାକୁ ବୁଦ୍ଧି ମଧ୍ୟ ଅବବୋଧ କରିପାରିବ ନାହିଁ । ଫ୍ରାଙ୍କ ଥିଲି

'ଭୌତିକ' ପ୍ରସଙ୍ଗରେ ଯାହା ଲେଖିଛନ୍ତି ଏଠାରେ ଉଦ୍ଧାର କରାଯାଇପାରେ " Matter is not evidently intelligible ; for it is the opposite of form; it resists all limitation and consequently all comparison. To comprehend matter is to see darkness to see darkness is to see nothing; hence to comprehend matter is to comprehend nothing. (ପୃଷ୍ଠା ୧୩୬) ।

ତେବେ ଭୌତିକତା କ'ଣ ଦ୍ୱିତୀୟ ପରମ ସତ୍ତା ? ପ୍ଲୋଟିନସ୍ ଏକ ଦ୍ୱୈତବାଦୀ କି ? ତାଙ୍କ ତତ୍ତ୍ୱମୀମାଂସାକୁ ଏକ ଦ୍ୱୈତବାଦୀ ସିଦ୍ଧାନ୍ତ ଭାବେ ଗ୍ରହଣ କରାଯିବା ଯଥାର୍ଥ କି ? ପ୍ଲୋଟିନସ୍ ଦ୍ୱୈତବାଦ ପ୍ରତିଷ୍ଠା କରିବାକୁ ଚାହିଁ ନାହାନ୍ତି । ଆରିଷ୍ଟୋଟଲ ଭାବିଥିଲେ ଯେ ପ୍ରଥମ ବସ୍ତୁ ଓ ପ୍ରଥମ ଫର୍ମ ପରସ୍ପର ସହ ଅଭେଦ କିମ୍ବା ସେମାନଙ୍କ ମଧ୍ୟରେ ତାଦାତ୍ମ୍ୟ ରହିଛି । ପ୍ଲେଟୋ ବସ୍ତୁକୁ ଅସୀମ କହିଛନ୍ତି ଯାହା ଭିତରେ ଅସରନ୍ତି ପ୍ରଚ୍ଛନ୍ନ ଶକ୍ତି ରହିଛି । ଏହା ଭିତରେ ସୀମାହୀନ ଉତ୍ପାଦନ ଶକ୍ତି ରହିଛି । ଚରମ ବାସ୍ତବତା ହିଁ ସର୍ବୋଚ୍ଚ ଶକ୍ତି । ଏହି ପ୍ରସଙ୍ଗ ପ୍ଲୋଟିନସ୍ଙ୍କ ତତ୍ତ୍ୱମୀମାଂସାରେ ବି ବ୍ୟକ୍ତ ହୋଇଛି । ପ୍ଲୋଟିନସ୍ ଚିନ୍ତାଧାରାରେ ଅଦ୍ୱୈତବାଦୀ । କିନ୍ତୁ ଭୌତିକତା ସହ ଚିନ୍ତନର ସମ୍ବନ୍ଧ ନେଇ ଅଧିକାଂଶ ଗ୍ରୀକ୍ ଦାର୍ଶନିକ ଜଟିଳତା ଭିତରେ ପ୍ରବେଶ କରିଛନ୍ତି । ପରମ ସତ୍ତାରୁ ବୁଦ୍ଧିତତ୍ତ୍ୱର ନିର୍ଗମନ ହେଉ କିମ୍ବା ଭୌତିକତା କ୍ଷେତ୍ରରେ ହେଉ ଏହାର ଏକ ଯୁକ୍ତିସଂଗତ ବ୍ୟାଖ୍ୟାନ ପ୍ଲୋଟିନସ୍ ଦେବାକୁ ସମର୍ଥ ହୋଇନାହାନ୍ତି । ସେ ବହୁ ସମୟରେ ଉପମା, ରୂପକ ବା ମେଟାଫରର ଆଶ୍ରୟ ନେଇ ଏସବୁ ପ୍ରଶ୍ନକୁ ବୁଝାଇବାକୁ ପ୍ରୟାସ କରିଛନ୍ତି । ସ୍ଥଳବିଶେଷରେ ସେ ରହସ୍ୟବାଦୀ ଦୃଷ୍ଟିଭଙ୍ଗୀ ମଧ୍ୟ ପୋଷଣ କରିଛନ୍ତି । ଏକ ଜଟିଳ ଦାର୍ଶନିକ ସମସ୍ୟାକୁ ବ୍ୟାଖ୍ୟା କରିବା ପରିବର୍ତ୍ତେ ରହସ୍ୟବାଦୀ ବିଚାର ଓ ରୂପକର ଚିତ୍ର ଦେବାଦ୍ୱାରା ସେ ସମସ୍ୟାମାନଙ୍କୁ ଏଡାଇ ଯାଇଛନ୍ତି ।

ପ୍ଲୋଟିନସ୍ ଯେପରି ଏକ ତତ୍ତ୍ୱମୀମାଂସାର ଅବତାରଣା କରିଛନ୍ତି ସେହିପରି ନୀତିଶାସ୍ତ୍ର କ୍ଷେତ୍ରରେ ମଧ୍ୟ କିଛି ବିଚାର ଦେଇଛନ୍ତି । ଏହି ପୃଷ୍ଠଭୂମିରେ ଆତ୍ମା, ଈଶ୍ୱର ଉପଲବ୍ଧି ଓ ରହସ୍ୟବାଦ ତାଙ୍କ ଭାବଧାରାକୁ ଆଚ୍ଛନ୍ନ କରିରଖିଛି । ସେ ନୀତିଶାସ୍ତ୍ରକୁ ଜୀବନର ଏକ ପରମ ଶ୍ରେୟ ପ୍ରାପ୍ତି ଦିଗରେ ବିଚାର କରିଛନ୍ତି । ତାଙ୍କର ଏହି ରହସ୍ୟବାଦୀ ପରିକଳ୍ପନାର କିଛି ସୂଚନା ଏଠାରେ ଦିଆଯାଇପାରେ ।

ପ୍ଲୋଟିନସ୍ଙ୍କ ତତ୍ତ୍ୱମୀମାଂସା କ୍ଷେତ୍ରରେ ଆତ୍ମା ବୁଦ୍ଧି ଓ ଶରୀର ମଝିରେ ସ୍ଥାନିତ ହୋଇଛି ଓ ବୁଦ୍ଧି ଏବଂ ଶରୀର ଉଭୟର ଉପାଦାନ ଆତ୍ମା ସହ ସଂଯୁକ୍ତ ହୋଇରହିଛି । ଆତ୍ମା ବିଶ୍ୱର ପ୍ରତିନିଧିତ୍ୱ କରିଥାଏ ଯେହେତୁ ଏହା ବୁଦ୍ଧିତତ୍ତ୍ୱରୁ ଉଦ୍ଭବ ହୋଇଛି ଓ ନିର୍ଗମନ ପ୍ରକ୍ରିୟାରେ ଏହାପରେ ଭୌତିକ ବସ୍ତୁର ନିଃସରଣ ଘଟିଛି । ବିଚାର, ତର୍କଶୀଳତା/ବୌଦ୍ଧିକ ସ୍ତରରେ ମୁଖ୍ୟ ଭୂମିକା ନେଇଥାଏ, ଶାରୀରିକ ସ୍ତରରେ ଭୌତିକତାର ପ୍ରଭାବ ରହିଥାଏ । ବୌଦ୍ଧିକ ଓ ଶାରୀରିକ କ୍ରିୟାର ମଧ୍ୟବର୍ତ୍ତୀ ସ୍ତରରେ ଆତ୍ମା କ୍ରିୟାଶୀଳ ହୋଇଥାଏ । ଆତ୍ମା ସ୍ୱାଧୀନ ସଂକଳ୍ପ ପୋଷଣ

କରିଥାଏ କିମ୍ବା ସ୍ୱାଧୀନ ଇଚ୍ଛା ବ୍ୟକ୍ତ କରିବାର ସାମର୍ଥ୍ୟ ରଖିଥାଏ । ପରିଣାମତଃ ଏହା ବୁଦ୍ଧି ଦିଗରେ ପ୍ରଭାବିତ ହୋଇ ଏକ ବୌଦ୍ଧିକ ଜୀବନ କାମନା କରିପାରେ, କିମ୍ବା ଏହା ଶାରୀରିକ କ୍ଷେତ୍ର ପ୍ରତି ଆକୃଷ୍ଟ ହୋଇ ଭୌତିକ ଲକ୍ଷ୍ୟ ଦିଗରେ ପରିଚାଳିତ ହୋଇପାରେ । ଏହି ପୃଷ୍ଠଭୂମିରେ ପ୍ଲୋଟିନସ୍ ତିନି ପ୍ରକାର ଆତ୍ମାର ପରିକଳ୍ପନା କରିଛନ୍ତି; ତାହା ହେଲା-

(୧) ଦିବ୍ୟାତ୍ମା, ଯେଉଁ ଆତ୍ମାମାନ ପ୍ରଜ୍ଞା ଓ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଜୀବନ ନିର୍ବାହ କରନ୍ତି ।

(୨) ଆଂଶିକ ଭଲ, ଆଂଶିକ ମନ୍ଦ ଆତ୍ମା, ଯେଉଁ ଆତ୍ମାମାନ ମନ-ଶରୀର, ଭଲ-ମନ୍ଦ ଭିତରେ ଦୋଳାୟମାନ ବା ଇତସ୍ତତଃ ହୋଇ ଜୀବନ ନିର୍ବାହ କରନ୍ତି ।

(୩) ସ୍ୱାର୍ଥକୈନ୍ଦ୍ରିକ ଆତ୍ମା, ଯେଉଁ ଆତ୍ମାମାନ କେବଳ ବସ୍ତୁଗତ ସ୍ତରରେ ରହି ଜୀବନ ବଞ୍ଚନ୍ତି ।

ଦିବ୍ୟାତ୍ମା ମାନ ଆନନ୍ଦର ସହ ଜୀବନ ବଞ୍ଚିଥାନ୍ତି । ସେମାନଙ୍କର ଆନନ୍ଦର କାରଣ ହେଉଛି ସେମାନେ ସବୁ ପ୍ରତି ନିସ୍ପୃହତା ବ୍ୟକ୍ତ କରନ୍ତି, ଦୈବ-ଶୃଂଖଳା ବା ବୁଦ୍ଧି ପ୍ରତି ଉତ୍ସର୍ଗୀକୃତ ରହନ୍ତି ଓ ପରମ ସତ୍ତା ବିଷୟରେ ଅନୁଧ୍ୟାନ କରନ୍ତି । ସେମାନଙ୍କ ଶରୀରରେ ଆଲୋକ ବିରାଜମାନ କରେ ଓ ସେମାନଙ୍କ ପାଖରେ କୌଣସି ବସ୍ତୁବାଦୀ କାମନା ସ୍ଥାନ ପାଇନଥାଏ । ସେମାନେ ଚିରନ୍ତନ ଭାବରେ ପରିପୂର୍ଣ୍ଣ ହୋଇ ରହନ୍ତି । ତେବେ ସେମାନଙ୍କ ପାଖରେ କୌଣସି ସ୍ମୃତି, ପୂର୍ବଦୃଷ୍ଟି, ଆଶା, ଅନୁଶୋଚନା ଇତ୍ୟାଦି ରହିନଥାଏ । ଏପରିକି ସେମାନେ ନିଜ ବିଷୟରେ ମଧ୍ୟ ସଚେତନ ନୁହନ୍ତି । ସେମାନେ କେବଳ ଶୁଦ୍ଧସତ୍ତା ଓ ପରମତତ୍ତ୍ୱ ବିଷୟକ ଅନୁଧ୍ୟାନ୍‌ରେ ସଂପୂର୍ଣ୍ଣ ମଗ୍ନ ରହନ୍ତି । କେବଳ ଦିବ୍ୟ ବସ୍ତୁରେ ମନୋନିବେଶ ଓ ଅନ୍ୟ ସବୁ ପ୍ରତି ଉଦାସୀନତା କାରଣରୁ ସେମାନେ ପରମ ଆନନ୍ଦ ଲାଭ କରିଥାନ୍ତି ।

ମାନବାତ୍ମାମାନ ସର୍ବଦା କ୍ଷୟଶୀଳ ଶରୀର ଭିତିରେ ନଥାନ୍ତି । ଆରମ୍ଭରେ ସେମାନେ ସ୍ୱର୍ଗୀୟ ଆତ୍ମା ଥିଲେ । ସ୍ୱର୍ଗୀୟ ସ୍ଥିତିରେ ଥିବା ବେଳେ ସେମାନେ ଈଶ୍ୱରଙ୍କ ବିଷୟରେ ସଚେତନ ଥିଲେ ଓ ନିଜ ବିଷୟରେ ଉଦାସୀନ ରହିଥିଲେ । ତେବେ ପରେ ସେମାନେ ସାର୍ବିକ ଜୀବନରୁ ପୃଥକ୍ ହେଲେ ଓ ଏକ ଏକ ସ୍ୱତନ୍ତ୍ର ଜୀବନ ଅତିବାହିତ କଲେ । ସେମାନଙ୍କ ଭିତରେ ସ୍ୱାର୍ଥପରତା ସ୍ଥାନ ପାଇଲା । ସାଂସାରିକ ଜୀବନ ଓ କ୍ଷୟଶୀଳ ଶରୀର ଯୋଗୁ ସେମାନେ ଦୁଃଖ ଯନ୍ତ୍ରଣା ପାଉଛନ୍ତି ଯାହା ସେମାନଙ୍କ ପାଇଁ ଉପଯୁକ୍ତ ଦଣ୍ଡ । କୌଣସି ବାହାରର ଶକ୍ତି ଏଥି ପାଇଁ ଆମକୁ ବାଧ୍ୟ କରି ନାହିଁ, ବରଂ ଆମେ ସ୍ୱଇଚ୍ଛାରେ ଆମର ବର୍ତ୍ତମାନର ଜୀବନକୁ ନିର୍ଦ୍ଧାରଣ କରିଛେ । ପ୍ରତ୍ୟେକ ବ୍ୟକ୍ତି ନିଜ ଭାଗ୍ୟର ନିଜେ ନିୟତି କିମ୍ବା ଅନ୍ୟ ଭାବରେ କହିଲେ ବ୍ୟକ୍ତିର ଭାଗ୍ୟ ତାର ଚରିତ୍ର ଉପରେ ନିର୍ମିତ ହୋଇଥାଏ । ଆମେ କେବଳ ଆମ ଭାଗ୍ୟକୁ ସ୍ଥିର କରିପାରିବା, ଯେହେତୁ ଆମେ ଅନ୍ୟ କିଛି ଇଚ୍ଛା ପୋଷଣ କରେ ନାହିଁ । ଏହାର ତାତ୍ପର୍ଯ୍ୟ ହେଉଛି ମନୁଷ୍ୟ ନିଜେ ହିଁ ନିଜ ଭାଗ୍ୟ ନିର୍ମାଣରେ ଭୂମିକା ନେଇଥାଏ ।

ସେହିପରି ପୁନର୍ଜନ୍ମ ଆପେକ୍ଷିକ ଭାବରେ ଭଲ କିମ୍ବା ମନ୍ଦ ହୋଇପାରେ । ଯେତେବେଳେ ଆତ୍ମା ପୁନର୍ଜନ୍ମ ନିଏ ଅର୍ଥାତ୍ ଶରୀର ଭିତରେ ଆବଦ୍ଧ ହୁଏ ସେତେବେଳେ ସେ ଏହାକୁ ପରିବର୍ତ୍ତନ କରି ସ୍ୱର୍ଗୀୟ ଲକ୍ଷ୍ୟ ଦିଗରେ ତାର ଉତ୍ତରଣ ପାଇଁ ସେ ପ୍ରୟାସୀ ହୋଇପାରେ । ଶାରୀରିକ ସ୍ଥିତି ଭିତରେ ସେ ମନ୍ଦ ବିଷୟରେ ଅବଗତ ହୋଇ ନିଜ ଭିତରର ସୁପ୍ତ ଶକ୍ତି ବିଷୟରେ ସଚେତନ ହୋଇଥାଏ । ଏହି ସ୍ଥିତିରେ ସେ ଏପରି ଭଲ କାର୍ଯ୍ୟ କରିବାର ଅବକାଶ ପାଇଥାଏ ଯାହା ଅନ୍ୟ ସ୍ଥିତିରେ କେବେ ସମ୍ଭବ ପର ହୋଇପାରିବ ନାହିଁ । ଏକ ଶରୀରରେ ଥାଇ ମଧ୍ୟ ସେ ଏହାଠାରୁ ଉର୍ଦ୍ଧ୍ୱରେ ରହିପାରେ ଓ ନିଜ ଲକ୍ଷ୍ୟ ଦିଗରେ ନିଜ ଶରୀରକୁ ବିନିଯୋଗ ମାତ୍ର କରିଥାଏ । ସେ ନିଜର ଆସ୍ପୃହା, ଅଭୀପ୍ସା, କାମନା ଓ ବାସନାଠାରୁ ମୁକ୍ତ ହୋଇ ଏକ ଭିନ୍ନ ଜୀବନ ମଧ୍ୟ ବଞ୍ଚିପାରେ । ଏହି ସ୍ଥିତିରେ ଜଣେ ଦାର୍ଶନିକ ମୃତ୍ୟୁକୁ ସ୍ୱାଗତ କରିଥାଏ । ମରଣ ତା ପାଇଁ ଆଶୀର୍ବାଦ ହୋଇଥାଏ । ଏହିପରି ଏକ ଜୀବନଦୃଷ୍ଟିକୁ ଆଧୁନିକ ନୈରାଶ୍ୟବାଦ କୁହାଯାଇପାରେ । କିନ୍ତୁ ନବ୍ୟପ୍ଲେଟୋବାଦୀ ଜୀବନବୋଧ ଭିତରେ ଏହି ପ୍ରକାରର ବିଚାରଧାରାକୁ ପ୍ଲୋଟିନସ୍ ପ୍ରାଧାନ୍ୟ ଦେଇଥିଲେ ।

ପ୍ଲୋଟିନସ୍‌ଙ୍କ ଭାବନାରେ ଆତ୍ମାର ପବିତ୍ରୀକରଣ ହିଁ ଜୀବନର ଲକ୍ଷ୍ୟ । ଆତ୍ମା ଯେତେ ବିଶୁଦ୍ଧ ହେବ ସେ ଈଶ୍ୱରଙ୍କୁ ସେତିକି ଉପଲବ୍ଧି କରିପାରିବ । ଦିବ୍ୟତାର ପଥରେ ଅଗ୍ରଗତି କରିବା ପାଇଁ ପ୍ଲୋଟିନସ୍ ତିନୋଟି ବିଷୟକୁ ସାଧନ ଭାବରେ ଗ୍ରହଣ କରିଛନ୍ତି । ତାହା ହେଲା ସଂଗୀତ (କଳା), ପ୍ରେମ ଓ ଦର୍ଶନ । କିମ୍ବା ଏହା ବି ହୋଇପାରେ ତିନିଟି ସ୍ତରରୁ ଗୋଟିଏ ରାସ୍ତାରେ ଜଣେ ଦିବ୍ୟାନୁଭୂତି ଲାଭକରିପାରିବ । କଳାକାର ଏକ ଶୁଦ୍ଧସତ୍ତାର ପରିକଳ୍ପନାକୁ ମନୋଜ୍ଞ ଭାବରେ ତାଙ୍କ କୃତିରେ ଅଭିବ୍ୟକ୍ତ କରିପାରନ୍ତି । ଜଣେ ପ୍ରେମିକ ଈଶ୍ୱରଙ୍କ ପ୍ରତି ତାଙ୍କ ଅନୁରାଗକୁ ତାଙ୍କ ଆତ୍ମାରେ ସନ୍ଧାନ କରିବାକୁ ପ୍ରୟାସୀ ହୁଅନ୍ତି । ଜଣେ ଦାର୍ଶନିକ ନିଜ ଚେତନାରେ ଈଶ୍ୱରଙ୍କ ବିଷୟରେ ତାଙ୍କର ଯେଉଁ ଅବବୋଧ ତାହା ସହ ଏକାତ୍ମ ହୋଇପାରନ୍ତି । କଳା ବା ପ୍ରେମକୁ ବାଦ୍ ଦେଇ ଧ୍ୟାନରେ ଓ ଚିନ୍ତାରେ ଜଣେ ଈଶ୍ୱରାନୁଭୂତି ଯୋଗୁ ଆନନ୍ଦ ପାଇପାରନ୍ତି । ଯେଉଁ ପରମାନୁଭୂତି ଜଣଙ୍କୁ ଚିରନ୍ତନ ଭାବରେ ମିଳିବ ଜଣେ ସେଥିରେ ନିଜକୁ ମଗ୍ନ ରଖି ନିଜର ଦୈହିକ ବା ଭୌତିକ ସୁଖକୁ ଜଳାଂଜଳି ଦେଇପାରନ୍ତି । ଜଣେ ଦାର୍ଶନିକ ସଂସାରକୁ ଓ ଏପରିକି ନିଜର ବ୍ୟକ୍ତିସତ୍ତାକୁ ଭୁଲି ଯାଇ ଈଶ୍ୱରୀୟ ଭାବନାରେ ମଗ୍ନ ରହିପାରନ୍ତି । ନିଜ ଆତ୍ମାକୁ ଦିବ୍ୟ ବୁଦ୍ଧି (Divine intellect) ସହ ମିଳିତ କରିବାରେ ସେ ଅତିଶୟ ଉଲ୍ଲାସ ଲାଭକରନ୍ତି । ସ୍ୱର୍ଗୀୟ ସ୍ଥଳ (heavenly home) କୁ ଯିବାର ଅଭୀପ୍ସା ପାଖରେ ସକଳ କାମନା, ବାସନା ଓ ସାଂସାରିକ ସୁଖ ଅତ୍ୟନ୍ତ ତୁଚ୍ଛ ମନେହୁଏ । ବଞ୍ଚିଥିବା ପର୍ଯ୍ୟନ୍ତ ଜଣେ ଦାର୍ଶନିକ ଈଶ୍ୱରୀୟ ଚିନ୍ତାରେ ମଗ୍ନ ରହିବାଦ୍ୱାରା କେତେକ ମୁହୂର୍ତ୍ତ ପାଇଁ ହୁଏତ କିଛି ଦିବ୍ୟାନୁଭୂତି ପାଇପାରନ୍ତି । ଯେଉଁ ଦିବ୍ୟାନୁଭୂତି କେତେକ ମୁହୂର୍ତ୍ତ ପାଇଁ ଜୀବଦଶାରେ ମିଳିଥାଏ ତାହା କେବଳ ବ୍ୟତିକ୍ରମ ମାତ୍ର; ବରଂ ଦେହାନ୍ତ ପରେ ଏହି ଅନୁଭୂତି ଭିତରେ ଜଣେ ନିରନ୍ତର ଭାବେ ରହିପାରେ । ଏହି ସ୍ଥିତି ବା ଆତ୍ମାର ପରିପୂର୍ଣ୍ଣତା ପାଇଁ ମୃତ୍ୟୁ ବାଟ ପରିଷ୍କାର କରି ନଥାଏ । ବରଂ ଜୀବଦଶାରେ ଏହି ପ୍ରକ୍ରିୟା ଆରମ୍ଭ

ହୁଏ, ବଞ୍ଚିଥିବା ବେଳେ ଜଣେ ଆଚାରରେ, ବିଚାରରେ ଓ ଚେତନାରେ ଈଶ୍ୱରାଭିମୁଖୀ ହୋଇ ରହେ । ଏହା ତାହାର ଆତ୍ମାକୁ ପବିତ୍ର କରାଏ । ମୃତ୍ୟୁପରେ ଏହି ପବିତ୍ରୀକରଣ ପ୍ରକ୍ରିୟା ଅବ୍ୟାହତ ରହିଲେ ତାଙ୍କର ବ୍ୟକ୍ତିତ୍ୱର ବିଲୁପ୍ତି ଘଟେ । ବ୍ୟକ୍ତିତ୍ୱର ବିଲୁପ୍ତି ଦ୍ୱାରା ସଂସାର ସହିତ ତାଙ୍କ ବନ୍ଧନ ଶେଷ ହୁଏ । ଏହାପରେ ସେ ମୁକ୍ତିର ଯାତ୍ରୀ ହୋଇପାରନ୍ତି । ଏହା ହିଁ ତାଙ୍କ ମୁକ୍ତି (liberation) ର ପନ୍ଥା ।

ପ୍ଲୋଟିନସ୍ ମାନବାତ୍ମାର ଆଧ୍ୟାତ୍ମିକ ମୁକ୍ତିର ଏକ ପନ୍ଥା ଦର୍ଶାଇଛନ୍ତି । ପ୍ରଥମରେ ସକଳ ନୈତିକ ସଦ୍‌ଗୁଣର ଅଧିକାରୀ ହେବା, ଦ୍ୱିତୀୟରେ ନିଜର ବିଚାର, ଚିନ୍ତନ ଓ ଭାବନାରେ ଈଶ୍ୱରାଭିମୁଖୀ ହୋଇ ରହିବା ଓ ଏହାପରେ ନିଜ ଅନ୍ତଃପ୍ରଜ୍ଞାରେ ନାଉସ (nous) ସହ ସମ୍ମିଳିତ ହୋଇ ରହିବା ଦ୍ୱାରା ଈଶ୍ୱରଙ୍କଠାରୁ ବ୍ୟକ୍ତି ଆତ୍ମାର ଯେଉଁ ଭେଦଭାବ ଥାଏ ତାହାର ବିଲୋପ ଘଟିଥାଏ । ଶେଷରେ ବ୍ୟକ୍ତି ନିଜର ପୁରୁଷାର୍ଥଜନିତ ମୁକ୍ତି ଲାଭ କରିଥାନ୍ତି । ପ୍ଲୋଟିନସ୍‌ଙ୍କ ଚିନ୍ତନ କ୍ଷେତ୍ରରେ ଦାର୍ଶନିକ ଜିଜ୍ଞାସା ଅପେକ୍ଷା ରହସ୍ୟବାଦର ଅଭିବ୍ୟକ୍ତି ପୂରା ଦେଖିବାକୁ ମିଳେ । ରହସ୍ୟବାଦୀମାନେ ଯୁକ୍ତିଶୀଳତା, ତର୍କ ଓ ତଥ୍ୟକୁ ପରିହାରକରି ଗୂଢ଼ ବିଶ୍ୱାସକୁ ପ୍ରାଧାନ୍ୟ ଦେଇଥାନ୍ତି । ପ୍ଲୋଟିନସ୍ ତାଙ୍କ ଜୀବନକାଳ ଭିତରେ ନିଜେ ବିଭିନ୍ନ ଦିବ୍ୟ ଅନୁଭୂତି ଲାଭ କରିଥିବା ପ୍ରକାଶ କରିଛନ୍ତି । ଜଣେ ବ୍ୟକ୍ତିଙ୍କର ଅନୁଭୂତିକୁ କେହି ଅସ୍ୱୀକାର କରିବେ ନାହିଁ । କିନ୍ତୁ ଏକ ବ୍ୟକ୍ତିଗତ ଅନୁଭୂତି ସତ୍ୟନିଷ୍ଠ ବା ନିଜ ମାନସିକ ଅବସ୍ଥାର ପରିପ୍ରକାଶ ତାହାର ନିର୍ଣ୍ଣୟ ସାଂପ୍ରତିକ ଯୁଗରେ ମନୋବିଜ୍ଞାନୀ ମାନେ କରିପାରିବେ ।

### ୧୦.୩ ନବ୍ୟପ୍ଲେଟୋବାଦର ଶେଷ ଶିଖା

ପ୍ଲୋଟିନସ୍‌ଙ୍କ ପରେ ତାଙ୍କର ଏକାଡେମୀ ରୋମରେ ପର୍ଫିରୀଙ୍କ ଦ୍ୱାରା ପରିଚାଳିତ ହୋଇଥିଲା । ନବ୍ୟ ପ୍ଲେଟୋବାଦର ମୁଖ୍ୟ ପ୍ରସଙ୍ଗ ଈଶ୍ୱରକୈନ୍ଦ୍ରିକ ରହସ୍ୟବାଦ ଉପରେ ସୀମାବଦ୍ଧ ଥିଲା । ଏହା ସହିତ ବିଷୟିନିଷ୍ଠବାଦର ମଧ୍ୟ ବିକାଶ ହୋଇଥିଲା । ପର୍ଫିରୀଙ୍କର(Porphyry, ଖ୍ରୀଷ୍ଟାବ୍ଦ ୨୩୨-୩୦୫) ଦର୍ଶନ କ୍ଷେତ୍ରକୁ ସେପରି କିଛି ଅବଦାନ ନାହିଁ, ସେ କେବଳ ପ୍ଲୋଟିନସ୍‌ଙ୍କର ଅନୁଗାମୀ ଥିଲେ ଓ ତାଙ୍କ ରହସ୍ୟବାଦୀ ଭାବଧାରାର ସମର୍ଥକ ଥିଲେ । ତେବେ ସେ ପ୍ଲେଟୋ ଓ ଆରିଷ୍ଟୋଟଲଙ୍କ ଉପରେ ଦୁଇଟି ପୁସ୍ତକ ଲେଖିଥିବା ଜଣାଯାଏ । ଆରିଷ୍ଟୋଟଲଙ୍କ କୋଟି ବା କାଟେଗୋରୀ ପ୍ରତ୍ୟୟ ଉପରେ ତଥା ଜାତି ଓ ଉପଜାତି (genus and specis) ଭାବନା ଉପରେ କିଛି ସମୀକ୍ଷାମୂଳକ ମତ ରଖିଥିଲେ । ଜାତି ଓ ଉପଜାତି କେବଳ ମାନସିକ ବିଚାର ନା ବାସ୍ତବ ସେ ପ୍ରସଙ୍ଗରେ ସେ କିଛି ବିଚାରର ଅବତାରଣା କରିଥିଲେ ତାହାକୁ ନେଇ ପରବର୍ତ୍ତୀ ସମୟରେ କିଛି ଗମ୍ଭୀର ଚର୍ଚ୍ଚା ହୋଇଥିଲା ।

ଖ୍ରୀଷ୍ଟଧର୍ମର ପ୍ରସାର ପୂର୍ବରୁ ସମାଜରେ ରହିଥିବା କୁସଂସ୍କାର ମାନଙ୍କ ବିରୁଦ୍ଧରେ କିଛି ଦାର୍ଶନିକ ଜାଗରଣ ସୃଷ୍ଟି ହୋଇଥିଲା, ଯେଉଁଥିରେ ଦାର୍ଶନିକମାନଙ୍କର କିଛି ନେତୃତ୍ୱ ରହିଥିଲା । ଦାର୍ଶନିକ ମାନେ ସାଧାରଣତଃ ସତ୍ୟସନ୍ଧାନୀ ଥିଲେ ଓ ସମାଜକୁ ଦିଗ୍‌ଦର୍ଶନ ଦେଉଥିଲେ ବୋଲି ସମାଜରେ ବିଶ୍ୱାସ ରହିଥିଲା । କିନ୍ତୁ ଧୀରେ

ଧୀରେ ଏଥିରେ ପରିବର୍ତ୍ତନର ସୂତ୍ରପାତ ହେଲା । ସମାଜର ନାନା ପ୍ରଚଳିତ ବିଶ୍ୱାସ,କୁସଂସ୍କାର ଓ ଧାର୍ମିକ ରୂଢ଼ିବାଦ ବିରୁଦ୍ଧରେ ଦାର୍ଶନିକମାନେ ଶତାବ୍ଦୀ ଶତାବ୍ଦୀ ଧରି ସ୍ୱର ଉଠାଇ ଆସିଥିଲେ । ତେବେ ଏହି ସବୁ ବିରୋଧ ସତ୍ତ୍ୱେ ଅନ୍ୟ ଏକ ଧର୍ମଧାରା ରୋମ ଓ ଗ୍ରୀସ୍ (ସେସମୟକୁ ଗ୍ରୀସ୍ ରୋମ୍‌ର ଅନ୍ତର୍ଭୁକ୍ତ ହୋଇ ସାରିଥିଲା) ରେ ଭିତ୍ତି ନେଲା, ଯାହା ଗ୍ରୀକ୍ ସଭ୍ୟତା ଓ ସଂସ୍କୃତିର ବହିର୍ଭୂତ ଥିଲା । ଖ୍ରୀଷ୍ଟଧର୍ମର ପ୍ରସାର ଓ ପ୍ରଚାରର ପରିଣାମରୁ ଲୋକମାନଙ୍କର ପ୍ରଚଳିତ ବିଶ୍ୱାସ, କର୍ମକାଣ୍ଡ ଓ ବହୁଦେବବାଦ ଭାବନାରେ ତୁମୁଳ ପରିବର୍ତ୍ତନର ସୂତ୍ରପାତ ହେଲା । ପ୍ରଚଳିତ ବହୁଈଶ୍ୱରବାଦ (Polytheism) ଭାବନାକୁ ସମାଜରେ ଅକ୍ଷୁର୍ଣ୍ଣ ରଖିବା ଏକ ସମସ୍ୟା ହେଲା । ଖ୍ରୀଷ୍ଟଧର୍ମରେ ପ୍ରଚଳିତ ଏକେଶ୍ୱରବାଦ ଓ ସମାଜର ପ୍ରଚଳିତ ବହୁଦେବବାଦ ଭିତରେ ଦ୍ୱନ୍ଦ୍ୱର ବାତାବରଣ ଆସିଲା । ସମାଜର ପ୍ରଚଳିତ ବହୁଦେବବାଦକୁ ଯେଉଁମାନେ ସମର୍ଥନ କରୁଥିଲେ ସେମାନେ ଖ୍ରୀଷ୍ଟଙ୍କର ଏକେଶ୍ୱରବାଦକୁ ବିରୋଧ କରିବାକୁ ଯାଇ ସମାଜର ବହୁ ପ୍ରଚଳିତ ବିଶ୍ୱାସ, ପରଂପରା ଓ କୁସଂସ୍କାରକୁ ମଧ୍ୟ ସମର୍ଥନ କଲେ । ପ୍ରାଚୀନ ବିଶ୍ୱାସ ଓ ଏକ ନୂତନ ଧାର୍ମିକ ଜାଗରଣ ମଧ୍ୟରେ ଯେଉଁ ଦ୍ୱନ୍ଦ୍ୱର ବାତାବରଣ ଆସିଲା ତାହା ହିଁ ବୌଦ୍ଧିକ ଜଗତରେ ଚର୍ଚ୍ଚାର ମୁଖ୍ୟ ବିଷୟ ହେଲା । ଏହି ପରିପ୍ରେକ୍ଷୀରେ ଦର୍ଶନ ବିଷୟରେ କୌଣସି ଗମ୍ଭୀର ଚର୍ଚ୍ଚା ହେଲା ନାହିଁ । ପର୍ଫିରୀଙ୍କ ପରେ ଆଉ ଜଣେ ନବ୍ୟପ୍ଲେଟୋବାଦୀ ହେଲେ ଜାଂବ୍ଲିକସ୍ । ସେ ତାଙ୍କର ପ୍ରେରଣା ପିଥାଗୋରାସ ଓ ପ୍ଲେଟୋଙ୍କ ପାଖରୁ ପାଇଥିଲେ । ଜାଂବ୍ଲିକସ୍‌ଙ୍କର ଜନ୍ମ କେବେ ହୋଇଥିଲା ଜଣା ନାହିଁ, ତେବେ ତାଙ୍କର ଦେହାନ୍ତ ଖ୍ରୀଷ୍ଟାବ୍ଦ ୩୩୦ରେ ହୋଇଥିବା ଦର୍ଶନ ଇତିହାସରେ ଉଲ୍ଲେଖ ଅଛି ।

ଜାଂବ୍ଲିକସ୍ ଗଣିତ ପ୍ରତି ଅଧିକ ରୁଚି ରଖିଥିଲେ । ସେ ଖ୍ରୀଷ୍ଟିଆନ ଧାର୍ମିକ ଭାବନାକୁ ବିରୋଧ କରୁଥିଲେ ଓ ପ୍ଲୋଟିନସ୍‌ଙ୍କର ଆଧ୍ୟାତ୍ମିକ ରହସ୍ୟବାଦର ସମର୍ଥକ ଥିଲେ । ପରମ ସତ୍ତା ବା ଈଶ୍ୱର ସମସ୍ତ ବୁଦ୍ଧିର ଊର୍ଦ୍ଧ୍ୱରେ ଓ କୌଣସି ଗୁଣଦ୍ୱାରା ତାଙ୍କୁ ଭୂଷିତ କରାଯିବା ଯଥାର୍ଥ ନୁହେଁ । ବ୍ୟକ୍ତିମାନେ ଈଶ୍ୱରଙ୍କ ସହ ସମ୍ବନ୍ଧ ସ୍ଥାପନ କରିପାରିବେ ନାହିଁ, କେବଳ ଈଶ୍ୱରଙ୍କଠାରୁ ନିର୍ଗମନ ହୋଇଥିବା ତତ୍ତ୍ୱ ବା ସତ୍ତା ସହ ସଂପର୍କ ଯୋଡିପାରିବେ । ଈଶ୍ୱରଙ୍କ ପାଖରୁ ନିର୍ଗମନ ହୋଇଥିବା ସତ୍‌ମାନ ବହୁବିଧ ଓ ପ୍ରାଗନୁଭବିକ । ଏହି ପ୍ରାଗନୁଭବିକ ଦୈବୀସତ୍ତାମାନଙ୍କୁ ଜାଂବ୍ଲିକସ୍ ତିନି ଶ୍ରେଣୀରେ ବିଭକ୍ତ କରିଥିଲେ, ସେମାନେ ହେଲେ, ବୌଦ୍ଧିକ ଦେବତା, ଲୋକତ୍ତର ଦେବତା ଓ ଅନ୍ତର୍ବର୍ତ୍ତୀ ଦେବତା । ପ୍ଲେଟୋଙ୍କ ଶୁଦ୍ଧସତ୍ତା, ଆରିଷ୍ଟୋଟଲଙ୍କର ଫର୍ମ ଓ ପିଥାଗୋରାସଙ୍କର ସଂଖ୍ୟାତତ୍ତ୍ୱକୁ ସେ ଏହି ଦେବତାମାନଙ୍କ ସହ ସଂଯୁକ୍ତ କରିଥିଲେ । ଏସବୁ ଭାବନା ବ୍ୟତୀତ ଜାଂବ୍ଲିକସ୍‌ଙ୍କର ଦର୍ଶନ ପ୍ରତି କୌଣସି ଅବଦାନ ନାହିଁ ।

ନବ୍ୟପ୍ଲେଟୋବାଦର ଶେଷ ବୁଦ୍ଧିଜୀବୀ ଥିଲେ ପ୍ରୋକ୍ଲସ୍ (ଖ୍ରୀଷ୍ଟାବ୍ଦ ୪୧୦-୪୮୫) । ସେ ଜାଂବ୍ଲିକସ୍‌ଙ୍କ କେତେକ ଲେଖାରୁ ପ୍ରେରଣା ପାଇଥିଲେ ଓ ପ୍ଲେଟୋଙ୍କ ଭାବଧାରା ଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଥିଲେ । ସେ ମଧ୍ୟ ପ୍ଲୋଟିନସ୍‌ଙ୍କ ଆଧ୍ୟାତ୍ମିକ ଭାବମଣ୍ଡଳକୁ ଅନୁକରଣ କରୁଥିଲେ । ତାଙ୍କର ଦୁଇଟି ଲିଖିତ ପୁସ୍ତକ ଏଲିମେଣ୍ଟସ

ଅଫ୍ ଥିଓଲୋଜି ଓ ପ୍ଲେଟୋନିକ ଥିଓଲଜି ଏକ ସମୟରେ ବେଶ୍ ଭାବଗର୍ଭକ ପୁସ୍ତକ ଥିଲା ।

ପ୍ରୋକ୍ଲସ୍ ଜାଂବ୍ଲିକସ୍‌ଙ୍କ ଦ୍ୱାରା ପ୍ରଭାବିତ ହୋଇ ପରମସତ୍ତା ଯେ ସକଳ ସମ୍ବନ୍ଧର ଉର୍ଦ୍ଧ୍ୱରେ ଏହା ଭାବୁଥିଲେ । ପରମ ସତ୍ତାଙ୍କ ପାଖରୁ ସେ ତିନି ସିଦ୍ଧାନ୍ତର ନିଃସରଣ କରିଥିଲେ । ଜାଂବ୍ଲିକସ୍ ଯେପରି ଦୈବୀସତ୍ତା ମାନଙ୍କୁ ତିନି ଶ୍ରେଣୀରେ ବିଭକ୍ତ କରିଥିଲେ, ପ୍ରୋକ୍ଲସ ମଧ୍ୟ ସେହିପରି ତିନିଟି ତତ୍ତ୍ୱର ଧାରଣା ଦେଇଥିଲେ । ପ୍ରଥମ ହେଉଛି ସତ୍ (Being), ଏହା ଅସୀମ, ଅନ୍ତିମ ଓ ଫର୍ମ ଏବଂ ଏମାନଙ୍କର ଏକତ୍ୱ । ଦ୍ୱିତୀୟ ହେଉଛି ଜୀବନ, ଯାହା ସକଳ ଶକ୍ତି ବା ସଂଭାବ୍ୟତା ଓ ଅସ୍ତିତ୍ୱର ଏକତ୍ୱ । ତୃତୀୟ ହେଉଛି ବୁଦ୍ଧି, ଯାହା ସ୍ଥିର ବିଚାର, ଚଳମାନ ବିଚାର ବା ପ୍ରତ୍ୟକ୍ଷ, ଓ ସେମାନଙ୍କର ଏକତ୍ୱ ତଥା ବିଶ୍ଳେଷଣାତ୍ମକ ବିଚାର । ସତ୍, ଜୀବନ ଓ ବିଚାର ପ୍ରତ୍ୟୟମାନଙ୍କର ଅନୁଶୀଳନ ଓ ବିଶ୍ଳେଷଣକୁ ଦର୍ଶନ କ୍ଷେତ୍ରରେ ସେ ପ୍ରାଧାନ୍ୟ ଦେଇଛନ୍ତି । ଯେପରି ଏକ ସିଦ୍ଧାନ୍ତ ଏହାର ଉପପାଦ୍ୟଠାରୁ ମହତ୍ତର ବା କାରଣ କାର୍ଯ୍ୟଠାରୁ ଉଚ୍ଚତର ସେହିପରି ପରମ ସତ୍ତା ସତ୍ ଓ ବିଚାରଠାରୁ ମଧ୍ୟ ମହତ୍ତର ଓ ଉଚ୍ଚତର । ଯାହା ପାରଲୌକିକ ତାହା ବିଷୟରେ ଅସାଧାରଣ ପନ୍ଥାରେ ହିଁ ଧାରଣା କରାଯାଇ ପାରିବ । ଆମର ଜ୍ଞାନ ଆମ ବିଚାରବୋଧର ପରିସର ଭିତରେ ସୀମିତ, ତେବେ ଯାହା ବିଚାରବୋଧର ଅତୀତ ବା ପାରଲୌକିକ ତାହାକୁ କେବଳ ଧର୍ମଦ୍ୱାରା ଅବବୋଧ କରିବା ସମ୍ଭବ । ଏହିପରି ପ୍ରୋକ୍ଲସ୍ ଦାର୍ଶନିକ ଭାବନା କ୍ଷେତ୍ରରେ କେତେକ ବିଚାରର ଅବତାରଣା କରିଥିଲେ ।

ନବ୍ୟପ୍ଲେଟୋବାଦର ବିକାଶ କ୍ଷେତ୍ରରେ ପ୍ରୋକ୍ଲସ୍ ଥିଲେ ଶେଷ ପ୍ରବକ୍ତା ଓ ଗ୍ରୀକ୍ ଦର୍ଶନ ପରଂପରାର ଶେଷ ଅଧିନାୟକ । ପ୍ଲେଟୋ ତାଙ୍କର ଦାର୍ଶନିକ ସିଦ୍ଧାନ୍ତ ଓ ଅନୁଶୀଳନ କ୍ଷେତ୍ରରେ ଯେଉଁ ଶୀର୍ଷକୁ ଯାଇଥିଲେ ନବ୍ୟପ୍ଲେଟୋବାଦୀମାନେ ସେଥିରେ କୌଣସି ଉନ୍ନତି ଆଣିଥିବା ମନେହୁଏ ନାହିଁ । ତେବେ ପ୍ଲେଟୋଙ୍କ ଦର୍ଶନ ଉପରେ ସେମାନେ କିଛି ଆଲୋଚନା କରି ପ୍ଲେଟୋଙ୍କ ବିଚାରରୁ କେତେକ ଉପାଦାନ ନେଇ କିଛି ମତର ଅବତାରଣା କରିଥିଲେ । ପ୍ଲେଟୋ ଧର୍ମକୁ ନ୍ୟାୟ ଅର୍ଥରେ ନେଇ ନ୍ୟାୟକୁ କାର୍ଯ୍ୟରେ ପରିଣତ କରିବାକୁ ଚାହୁଁଥିଲେ । ପ୍ରୋକ୍ଲସ୍ ଧର୍ମକୁ ଚମତ୍କାରିତା ଅର୍ଥରେ ଗ୍ରହଣ କରି ଏହାର ପରିସରକୁ ସଙ୍କୁଚିତ ବା ବିକୃତ କରିଥିଲେ । ପ୍ଲେଟୋଙ୍କ ଏକାଡେମୀରେ ପ୍ରୋକ୍ଲସ୍ କିଛି ବର୍ଷ ଅଧ୍ୟାପନା କରିଥିଲେ ଓ ଯେତେ ସଙ୍କୁଚିତ ଅର୍ଥରେ ହେଲେ ମଧ୍ୟ ଦର୍ଶନର ଚର୍ଚ୍ଚା ଏଥେନ୍ସରେ ଜାରି ରହିଥିଲା । ତେବେ ଖ୍ରୀଷ୍ଟଧର୍ମର ପ୍ରସାର ପରେ ଖ୍ରୀଷ୍ଟାବ୍ଦ ୫୨୯ରେ ସମ୍ରାଟ ଜଷ୍ଟିନିଆନଙ୍କ ନିର୍ଦ୍ଦେଶରେ ଏକାଡେମୀ ସବୁଦିନ ପାଇଁ ବନ୍ଦ ହୋଇଗଲା । କିଛି ଶତାବ୍ଦୀ ଧରି ଯାହା ଦର୍ଶନ ଚର୍ଚ୍ଚାର କେନ୍ଦ୍ର ଥିଲା ତାହା ଧାର୍ମିକ ଓ ରାଜନୈତିକ କାରଣରୁ ବନ୍ଦ ହେଲା । ଗ୍ରୀସ୍‌ରୁ ଦର୍ଶନ ଚର୍ଚ୍ଚାର ସୂର୍ଯ୍ୟ ଅସ୍ତମିତ ହୋଇଗଲା ।

ଆରିଷ୍ଟୋଟଲଙ୍କ ପରେ ଗ୍ରୀସ୍‌ରେ ଓ ରୋମାନ ସାମ୍ରାଜ୍ୟରେ ସଂଶୟବାଦର ଧାରାଟିଏ ସୃଷ୍ଟି ହୋଇଥିଲା । ନବ୍ୟପ୍ଲେଟୋବାଦ ଭିତରେ ଅଧ୍ୟାତ୍ମବାଦୀ ରହସ୍ୟବାଦ ସଂଶୟବାଦ ପ୍ରତିକ୍ରିୟାରେ ରୂପ ନେଇଥିଲା । କେତେକଙ୍କ

ମତରେ ସଂଶୟବାଦର ଭୂମି ଉପରେ ରହସ୍ୟବାଦ ମୁଣ୍ଡ ଟେକିଥିଲା । ସଂଶୟବାଦୀମାନେ ନିଶ୍ଚିତ ସତ୍ୟରେ ଉପନୀତ ହେବାକୁ ଜ୍ଞାନର ଆଧାରକୁ ସଂଶୟ ଦୃଷ୍ଟିରେ ନେଲେ । ଆମର ଜ୍ଞାନ ଯେ ଆମକୁ ସତ୍ୟରେ ଉପନୀତ କରାଇପାରିବ ନାହିଁ ସଂଶୟବାଦୀମାନେ ଏହିପରି ସିଦ୍ଧାନ୍ତର ଅବତାରଣା କଲେ । ରହସ୍ୟବାଦୀମାନେ ମନେକଲେ ଯେ ଯଦି ଜ୍ଞାନ ତାହା କରିପାରିବ ନାହିଁ, ଆମର ବିଚାରବୁଦ୍ଧିଦ୍ୱାରା ସତ୍ୟ ଜ୍ଞାନ ଉପଲବ୍ଧ ନୁହେଁ ତେବେ ତାହା ଅତୀନ୍ଦ୍ରିୟ ଭାବନା ଓ ଚମତ୍କାରିତା ଦ୍ୱାରା ସମ୍ଭବ ହୋଇପାରିବ । ଯେତେବେଳେ ସଂଶୟବାଦୀମାନେ ବିଚାରବୁଦ୍ଧିର ଉପଯୁକ୍ତତା ବା ସଠିକତା ନେଇ ସନ୍ଦେହ ପ୍ରକାଶ କଲେ ରହସ୍ୟବାଦୀମାନେ ବିଚାରବୁଦ୍ଧି ସ୍ଥାନରେ ଅତିପ୍ରାକୃତିକତା ବା ଚମତ୍କାରିତା (miracle) କୁ ପ୍ରାଧାନ୍ୟ ଦେଲେ । ଯଦି ଆମର ଚେତନା ଆମକୁ ସତ୍ୟ ଦିଗରେ ଅଗ୍ରସର କରାଉ ନାହିଁ ତେବେ ଆମେ ଆମର ଚେତନା ଓ ବୁଦ୍ଧିର ଊର୍ଦ୍ଧ୍ୱକୁ ଯିବା ଆବଶ୍ୟକ । ଏହି ବୌଦ୍ଧିକ ପ୍ରେକ୍ଷାପଟରେ ନବ୍ୟପ୍ଲେଟୋବାଦର ବିକାଶ ଘଟିଥିଲା । ସୁତରାଂ ଏକ ନୈରାଶ୍ୟ ଭିତରୁ ନବ୍ୟପ୍ଲେଟୋବାଦର ଜନ୍ମ ହୋଇଥିଲା । ଏହି ପ୍ରସଙ୍ଗରେ ଷ୍ଟେସ୍ ଲେଖିଛନ୍ତି – " Neo-Platonism is founded upon despair, the despair of reason. It is the last frantic struggle of the Greek spirit to reach, by desperate means, by force, the point which it felt it had failed to reach by reason. It seeks to take the Absolute by storm. It feels that where sobriety has failed, the violence of spiritual intoxication may succeed. (ପୃଷ୍ଠା ୩୭୭)

ଥେଲିସଙ୍କଠାରୁ ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ପର୍ଯ୍ୟନ୍ତ ଦୀର୍ଘ ତିନି ଶତାବ୍ଦୀ ଧରି ଦର୍ଶନ ଚର୍ଚ୍ଚାର ଯେଉଁ ମହାନ ପରଂପରାଟି ଗ୍ରୀସ୍‌ରେ ଗଢ଼ି ଉଠିଥିଲା କ୍ରାଳକ୍ରମେ ତାହା ବିଲୁପ୍ତ ହେଲା । ଦର୍ଶନର ଆଧାର ହେଉଛି ତର୍କଶୀଳତା ଓ ବିଚାର । ବିଚାରବୁଦ୍ଧି ଆଧାରରେ ହିଁ ଦାର୍ଶନିକ ସିଦ୍ଧାନ୍ତ ମାନଙ୍କର ଅବତାରଣା କରାଯାଏ । ଏକ ବିଚାର ବା ତର୍କଶୀଳ ଅଭିବ୍ୟକ୍ତି ଯଥାର୍ଥ ହୋଇପାରେ କିମ୍ବା ଭ୍ରମାତ୍ମକ ହୋଇପାରେ । ତେବେ ଏକ ଯୁକ୍ତିର ଅବୈଧତା ସେହି ତର୍କଶୀଳ ଯୁକ୍ତି ହିଁ ଦର୍ଶାଇଥାଏ । କିନ୍ତୁ ଯେତେବେଳେ ବିଚାର ଓ ତର୍କଶୀଳତାକୁ ପରିହାର କରାଯାଏ ସେତେବେଳେ ଦର୍ଶନର ଅବକ୍ଷୟ ଘଟେ । ବିଚାରଶୀଳତା ପରିବର୍ତ୍ତେ ଯଦି ବିଶ୍ୱାସ, ଅନ୍ତଃପ୍ରଜ୍ଞା, ଶ୍ରୁତି, କଳ୍ପନା ଇତ୍ୟାଦିକୁ ପ୍ରାଧାନ୍ୟ ଦେଇ ସେସବୁ ଆଧାରରେ ଦାର୍ଶନିକ ତତ୍ତ୍ୱର ନିର୍ମାଣ କରାଯିବ ତେବେ ଦର୍ଶନର ମୃତ୍ୟୁ ଘଣ୍ଟି ବାଜିବ । ସାଧାରଣତଃ ଧାର୍ମିକ ମାନସିକତା କ୍ଷେତ୍ରରେ ବିଶ୍ୱାସ, ଶ୍ରୁତି ଇତ୍ୟାଦିକୁ ଗୁରୁତ୍ୱ ଦିଆଯାଏ । ଯେତେବେଳେ ଖ୍ରୀଷ୍ଟଧର୍ମର ପ୍ରସାର ଘଟି ୟୁରୋପରେ ଓ ବିଶେଷକରି ଗ୍ରୀସ୍‌ରେ ମଧ୍ୟଯୁଗୀୟ ଆଦର୍ଶର ବିକାଶ ହେଲା, ଦର୍ଶନ ଚର୍ଚ୍ଚାର ବିଲୋପ ଘଟିଲା । ନବ୍ୟପ୍ଲେଟୋବାଦଠାରୁ ଦର୍ଶନ କ୍ଷେତ୍ରରେ ଯେଉଁ ଅବକ୍ଷୟର ପରିବେଶ ଆସିଥିଲା ତାହା ଖ୍ରୀଷ୍ଟଧର୍ମର ବିକାଶଦ୍ୱାରା ଶୀର୍ଷକୁ ଯାଇ ଦର୍ଶନର ଏକ ପ୍ରକାରର ପରିସମାପ୍ତି ଘଟାଇଥିଲା । ଷ୍ଟେସ୍ ଲେଖିଛନ୍ତି – "In Neo-Platonism, therefore, ancient philosophy commits suicide. This is the

end. The place of philosophy is taken henceforth by religion. Christianity triumphs, and sweeps away all independent thought from its path". (ପୃଷ୍ଠା ୩୭୭) ଏହି ଦୃଷ୍ଟିରୁ ୟୁରୋପୀୟ ମଧ୍ୟ ଯୁଗକୁ କୁହାଯାଏ ଅନ୍ଧକାରର ଯୁଗ । ପୁନଶ୍ଚ ୟୁରୋପରେ ନବଜାଗରଣର ଯୁଗ (Age of renaissance) ଆସିବା ପରେ ବୌଦ୍ଧିକତାର ଏକ ନୂତନ ଭାବମଣ୍ଡଳ ସୃଷ୍ଟି ହେଲା । ୟୁରୋପୀୟ ନବଜାଗରଣରୁ ଦର୍ଶନ ଓ ବିଜ୍ଞାନର ଦୁଇଟି ଦିଗନ୍ତ ସୃଷ୍ଟି ହେଲା । ସଭ୍ୟତାର ବୌଦ୍ଧିକ ବିକାଶରେ ଏକ ନୂତନ ସୂର୍ଯ୍ୟୋଦୟ ପାଇଁ ପ୍ରାୟ ଏକ ହଜାରରୁ ଅଧିକ ସମୟ ମାନବଜାତିକୁ ଅପେକ୍ଷା କରିବାକୁ ହେଲା ।

# ଏକାଦଶ ପରିଚ୍ଛେଦ
## ଉପସଂହାର

କୌଣସି ଏକ ପ୍ରାଚୀନ ସଭ୍ୟତାର ମୂଲ୍ୟାୟନ ବା ଅଧ୍ୟୟନ କଲା ବେଳେ ଅନ୍ୟାନ୍ୟ ଅବଦାନ ସହ ସେମାନଙ୍କ ବୌଦ୍ଧିକ ଭାବମଣ୍ଡଳ ବିଷୟରେ କିଛି ଆଲୋଚନା ପ୍ରାସଙ୍ଗିକ ମନେହୁଏ । ମାନବୀୟ ସୃଜନଶୀଳତାର ଯେତେ ଦିଗନ୍ତ ରହିଛି ସେ ମଧ୍ୟରେ ଦାର୍ଶନିକ ଅନୁଶୀଳନ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ । ଗ୍ରୀକ୍-ରୋମାନ ସଭ୍ୟତା ପୃଷ୍ଠଭୂମିରେ ଗ୍ରୀକ୍‌ମାନଙ୍କର ଦର୍ଶନ କ୍ଷେତ୍ରକୁ ଅବଦାନ ଅନସ୍ୱୀକାର୍ଯ୍ୟ । ସାଂପ୍ରତିକ ପରିଭାଷାରେ ଦର୍ଶନ ପରିସରରେ ଯେଉଁ ଯେଉଁ ଦିଗନ୍ତ ଗୁଡିକ ବୌଦ୍ଧିକ ଚର୍ଚ୍ଚା କ୍ଷେତ୍ରକୁ ଆସେ ସେ କ୍ଷେତ୍ରରେ ପ୍ରାଚୀନ କାଳରେ ଗ୍ରୀକ୍‌ମାନେ ବିଚାର ବିମର୍ଶ ଆରମ୍ଭ କରିଥିଲେ । ସେହିମାନଙ୍କଠାରୁ ଦର୍ଶନ କ୍ଷେତ୍ରରେ ବିଚାର ଆଲୋଚନାର ଯୁଗ ଆରମ୍ଭ ହେଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଦାର୍ଶନିକ ସମସ୍ୟାମାନଙ୍କୁ ବ୍ୟକ୍ତ କରିବା କ୍ଷେତ୍ରରେ ସେତେବେଳେ ପରିଭାଷା ବି ସେପରି ବିକଶିତ ହୋଇନଥିଲା । ସେହି ପରିସ୍ଥିତିରେ ଦାର୍ଶନିକ ଚର୍ଚ୍ଚାଦ୍ୱାରା ଏକ ଭାଷା ବି ସମୃଦ୍ଧ ହେବା ଏକ ଐତିହାସିକ ଉପଲବ୍ଧି । ଭାଷା, ଚିନ୍ତାଧାରା ଓ ବୌଦ୍ଧିକ ବିକାଶ ପାଇଁ ଦାର୍ଶନିକ ଭାବଧାରାର ଅବଦାନ ଅତୁଳନୀୟ ମନେହୁଏ । ଦାର୍ଶନିକ ଅନୁଶୀଳନ ମଧ୍ୟ ଦେଇ ଏକ ଭାଷା ସମୃଦ୍ଧ ହେବା, ବିଚାର ବିମର୍ଶ ଗଭୀର ହେବା ଓ ମାନବୀୟ ପ୍ରଜ୍ଞା ଶାଣିତ ହେବା ଦେଖାଯାଏ । ସବୁ ଦୃଷ୍ଟିରୁ ବିଚାର କଲେ ଗ୍ରୀକ୍ ଦର୍ଶନ ପାଶ୍ଚାତ୍ୟ ସଭ୍ୟତାର ବୌଦ୍ଧିକ ଦିଗନ୍ତକୁ ଯେ ସୁଦୃଢ଼ କରିଥିଲା ଏହା କୁହାଯାଇପାରେ ।

ଦାର୍ଶନିକମାନେ ବିଶ୍ୱର ବୌଦ୍ଧିକ ଅବବୋଧ କ୍ଷେତ୍ରରେ ହେଉ ବା ଜୀବନର ଉତ୍କର୍ଷ ସଂଧାନ କ୍ଷେତ୍ରରେ ହେଉ ଏପରି କିଛି ପ୍ରସଙ୍ଗର ଅବତାରଣା କରିଥାନ୍ତି ଯେଉଁଥିରେ କିଛି ଚିରନ୍ତନ ସତ୍ୟ ନିହିତ ଥାଏ । ଜଗତର ରହସ୍ୟକୁ ଉନ୍ମୋଚନ କରିବା, ଜୀବନକୁ ମହତ୍ତ୍ୱପୂର୍ଣ୍ଣ କରି ଗଢ଼ିବା ଓ ଏକ ଉନ୍ନତ ତଥା ଉତ୍କୃଷ୍ଟ ସମାଜର ସ୍ୱପ୍ନ ଦେଖିବା କ୍ଷେତ୍ରରେ ଦାର୍ଶନିକମାନେ ସମାଜର କ୍ରାନ୍ତିକାରୀ ବ୍ୟକ୍ତିତ୍ୱ । ସେମାନଙ୍କ ଅନୁଶୀଳନ କ୍ଷେତ୍ରରେ ଯେଉଁ ଚିରନ୍ତନ ଜିଜ୍ଞାସାର ଦୃଷ୍ଟିଭଙ୍ଗୀ ନିହିତ ଥାଏ ତାହା ସଭ୍ୟତାର ବିକାଶ ପାଇଁ ଅନେକ ସମ୍ଭାବନା ରଖିଥାଏ । ଏହି ଦୃଷ୍ଟିରୁ ଗ୍ରୀକ୍ ଦର୍ଶନ ମଧ୍ୟ କେବଳ ୟୁରୋପୀୟ ସଭ୍ୟତା ନୁହଁ ସମଗ୍ର ମାନବ ସମାଜର ବୌଦ୍ଧିକ ଦୃଶ୍ୟପଟରେ ବେଶ୍ ଜାଜ୍ୱଲ୍ୟମାନ ଦେଖାଯାଏ । ଖ୍ରୀଷ୍ଟାବ୍ଦ ଆରମ୍ଭର ପାଞ୍ଚଶହ ବର୍ଷ ପୂର୍ବରୁ ଯେଉଁ ପ୍ରଜ୍ଞାଦୀପ୍ତ ଚିନ୍ତକମାନଙ୍କର ସେଠାରେ ଆବିର୍ଭାବ ଘଟିଥିଲା ଓ ଯେଉଁମାନେ ସେମାନଙ୍କର ବୌଦ୍ଧିକ ଅବଦାନଦ୍ୱାରା ବିଭିନ୍ନ କ୍ଷେତ୍ରରେ ଚିନ୍ତନର ଅୟମାରମ୍ଭ କରିଥିଲେ ତାହା ଭବିଷ୍ୟତ ପାଇଁ ଅନେକ ସମ୍ଭାବନା ସୃଷ୍ଟି କରିଥିଲା । ଆଧୁନିକ ପରିଭାଷାରେ

ତତ୍ତ୍ୱମୀମାଂସା, ଜ୍ଞାନମୀମାଂସା, ତର୍କଶାସ୍ତ୍ର, ନୀତିଶାସ୍ତ୍ର, ରାଜନୈତିକ ଦର୍ଶନ, ଶୈକ୍ଷିକ ଦର୍ଶନ ଇତ୍ୟାଦି ଅଧିକାଂଶ ମୌଳିକ ପ୍ରସଙ୍ଗ ଉପରେ ଗ୍ରୀକ୍ ଦାର୍ଶନିକମାନେ ବିଚାରଧାରାର ସୂତ୍ରପାତ କରିଥିଲେ । ସମାଜର ବୌଦ୍ଧିକ, ନୈତିକ ଓ ସାଂସ୍କୃତିକ ଉତ୍ତରଣ ଦିଗରେ ସେସବୁ ଆଲୋକବର୍ତ୍ତିକା ସଦୃଶ ଥିଲା । ଏହି ପୁସ୍ତକରେ ଆଲୋଚିତ ହୋଇଥିବା ଦାର୍ଶନିକ ମାନଙ୍କର ବା କେତେକ ଦାର୍ଶନିକ ଧାରାର ଅବଦାନରୁ ଗ୍ରୀକ୍ ମାନଙ୍କର ଦର୍ଶନ ଜଗତକୁ ଅବଦାନର ଚିତ୍ର ମିଳିଥାଏ ।

ଏକ ବିବିଧତାପୂର୍ଣ୍ଣ ବିଶ୍ୱର ଅନୁଭୂତି ଭିତରୁ ଦାର୍ଶନିକଙ୍କ ଦୃଷ୍ଟିକୁ ଏହି ପ୍ରଶ୍ନ ଆସିଥାଏ ଯେ ଏହି ବିଶାଳ ବିଶ୍ୱ କେଉଁ ମୌଳିକ ତତ୍ତ୍ୱରୁ ଉଦ୍‌ଭବ ହୋଇଛି ? ସୃଷ୍ଟିମୀମାଂସା କ୍ଷେତ୍ରରେ କ'ଣ ମୌଳିକ ତତ୍ତ୍ୱ ରହିପାରେ, ଯାହାର ପରିଣାମ ହେଉଛି ଏହି ବିବିଧତାପୂର୍ଣ୍ଣ ବିଶ୍ୱ । ପ୍ରାକ୍-ସକ୍ରେଟିସ୍ ଯୁଗରେ ଏହି ପ୍ରଶ୍ନ କେତେକ ସୃଷ୍ଟିବିଜ୍ଞାନୀ (cosmologist) ଉଠାଇଥିଲେ । ଦାର୍ଶନିକମାନେ ବହୁତ୍ୱ ଭିତରେ ଏକତ୍ୱର ସନ୍ଧାନ କରିବାକୁ ପ୍ରୟାସୀ ହୋଇଥାନ୍ତି । ଏକ ଏକତ୍ୱର ପରିକଳ୍ପନା ଭିତରେ ବହୁତ୍ୱର ବ୍ୟାଖ୍ୟାନ ଓ ସୁସଂହତ ସ୍ଥିତି ଏକ ପ୍ରମୁଖ ଦାର୍ଶନିକ ଜିଜ୍ଞାସା । ଗ୍ରୀକ୍ ଦର୍ଶନ ଇତିହାସରେ ଦୃଶ୍ୟମାନ ଜଗତରେ କେଉଁ ଭୌତିକ ବସ୍ତୁ ମୂଳତତ୍ତ୍ୱ ହୋଇପାରେ ଯେଉଁଥିରୁ ବିଶ୍ୱର ନିର୍ମାଣ ସମ୍ଭବ ହୋଇଛି ପ୍ରଶ୍ନ ଉପରେ ପ୍ରାକ୍ -ସକ୍ରେଟିସ୍ ଯୁଗରେ ତାହା ଜଳ, ବାୟୁ ବା ଅଗ୍ନି ହୋଇପାରେ ବୋଲି ବିଶ୍ୱାସ ପ୍ରକାଶ ପାଇଛି । ସେହିପରି ଚିନ୍ତାଧାରାର ବିକାଶ ପରିପ୍ରେକ୍ଷୀରେ ପରମାଣୁବାଦର ପରିକଳ୍ପନା ମଧ୍ୟ ସ୍ଥାନ ପାଇଛି । ବିଶ୍ୱର ମୌଳିକ ସତ୍ତା ଗୋଟିଏ ପ୍ରାକୃତିକ ତତ୍ତ୍ୱ ହୋଇନପାରେ, ବରଂ ଜଳ, ବାୟୁ, ଅଗ୍ନି, ଭୂମିର ସମନ୍ୱିତ ଅଭିବ୍ୟକ୍ତି ହିଁ ବିଶ୍ୱ ସୃଷ୍ଟିର ମୂଳ କାରଣ ବୋଲି ବିଚାର ଚିନ୍ତାରାଜ୍ୟକୁ ଆସିଛି । ଏହି ପ୍ରସଙ୍ଗମାନ ଆମେ ପୂର୍ବରୁ ଆଲୋଚନା କରିଛେ, ତେଣୁ ଏଠାରେ ସେସବୁର ପୁନରାବୃତ୍ତି କରିବାର ଆବଶ୍ୟକତା ନାହିଁ । ତେବେ ପ୍ରାଚୀନ ଗ୍ରୀକ୍ ଚିନ୍ତାଧାରାରେ ବିଶ୍ୱ ବା ଜଗତର ଏକ ପ୍ରାକୃତିକ ବ୍ୟାଖ୍ୟାନ ନେଇ ଯେଉଁ ଅନୁସନ୍ଧିତ୍ସା ସୃଷ୍ଟି ହୋଇଛି ତାହାହିଁ ଏକ ମୌଳିକ ଦାର୍ଶନିକ ଜିଜ୍ଞାସା । ଏକ ଦାର୍ଶନିକ ଜିଜ୍ଞାସାରୁ ବିଭିନ୍ନ ପରିକଳ୍ପନା ପ୍ରକାଶ ପାଇବା ସେ ଯୁଗର ଏକ ସ୍ୱାଭାବିକ ଧାରା । ଏତଦ୍‌ବ୍ୟତୀତ ଭୌତିକ ଓ ଆତ୍ମିକ ସତ୍ତା କ୍ଷେତ୍ରରେ ପୃଥକୀକରଣ ଓ ସେମାନଙ୍କ ମଧ୍ୟରେ ସୁସଂଗତ ସଂଯୋଗ ନେଇ ବିଚାର ସୃଷ୍ଟି ହୋଇଛି । ଭୌତିକବାଦର ଭାବନାପରେ ଅଭୌତିକ ଚିନ୍ତାଧାରାର ସୂତ୍ରପାତ ହୋଇଛି ଓ ଶରୀର ଓ ଆତ୍ମା ଭିତରେ ସମ୍ବନ୍ଧ ନେଇ ପିଥାଗୋରାସ ଗମ୍ଭୀର ଚିନ୍ତା ପ୍ରକଟ କରିଛନ୍ତି । ବସ୍ତୁବାଦର ବିକଳ୍ପ ଭାବରେ ଆନାକ୍ସଗୋରାସ୍ ଯେଉଁ ଆଦ୍ୟବୁଦ୍ଧି ବା ନାଉସର ପରିକଳ୍ପନା କରିଛନ୍ତି ତାହ ଅନ୍ୟ ଏକ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତର ଅବତାରଣା କରିଛି । ଜଗତର ବ୍ୟାଖ୍ୟାନ କ୍ଷେତ୍ରରେ ଏହିପରି ବିଭିନ୍ନ ସତ୍ତାମୀମାଂସୀୟ (ontological) ସିଦ୍ଧାନ୍ତ ମାନ ଚିନ୍ତାରାଜ୍ୟରେ ସୃଷ୍ଟି ହୋଇଛି । ଜଗତର ଏକ ସମ୍ଭାବ୍ୟ ବୋଧଗମ୍ୟ ବ୍ୟାଖ୍ୟାନ ଦାର୍ଶନିକ ଜିଜ୍ଞାସା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ମନେହୋଇଛି । ଗ୍ରୀକ୍ ଦର୍ଶନ କ୍ଷେତ୍ରରେ ଦାର୍ଶନିକ ଗଣ ବିଭିନ୍ନ ସମ୍ଭାବନା

ଦିଗରୁ ଜଗତର ବ୍ୟାଖ୍ୟାନ ପାଇଁ ଗମ୍ଭୀର ଭାବନା ବ୍ୟକ୍ତ କରିଛନ୍ତି । ପ୍ରାକୃତିକ ବସ୍ତୁବାଦ, ପରମାଣୁବାଦ, ପ୍ରତ୍ୟୟବାଦ ଓ ପ୍ରତିମାନବାଦ ସିଦ୍ଧାନ୍ତମାନ ଚିନ୍ତାରାଜ୍ୟରେ ନୂଆ ନୂଆ ଦିଗନ୍ତର ବିଚାର ଆଣିଛି । ସେହିପରି ପରମାର୍ଥିକ ସତ୍ତାର ଭାବନା ଆସିଛି ଯାହା ଏକକ ସତ୍ତା ଭାବେ ବିଶ୍ୱକୁ ବ୍ୟାଖ୍ୟା କରିପାରିବ ବୋଲି ବିଚାର ବ୍ୟକ୍ତ ହୋଇଛି । ପୁନଶ୍ଚ ଅନ୍ୟ ଏକ ବିଚାର ଚିନ୍ତାରାଜ୍ୟରେ ଆଲୋଡନ ଆଣିଛି ଯେ ଜଗତରେ ସବୁକିଛି ପରିବର୍ତ୍ତନଶୀଳ । ପରିବର୍ତ୍ତନଶୀଳତା ହିଁ ଜଗତର ଏକ ପ୍ରାକୃତିକ ନିୟମ । ସୁତରାଂ ସଂଭବନ (Becoming) କୁ ସ୍ୱୀକାର କରାଯାଇଛି ଓ ସତ୍ତାକୁ ଅସ୍ୱୀକାର କରାଯାଇଛି । ଏହିପରି ନାନା ତାତ୍ତ୍ୱିକ ଅବବୋଧ ଆଧାରରେ ବିଶ୍ୱର ବ୍ୟାଖ୍ୟାନ ପାଇଁ ଗମ୍ଭୀର ଦାର୍ଶନିକ ଚିନ୍ତା ପ୍ରକାଶ ପାଇଛି ।

ପ୍ଲେଟୋଙ୍କ ଦାର୍ଶନିକ ସିଦ୍ଧାନ୍ତ ଅନ୍ୟ ଏକ ଦିଗନ୍ତ ଉନ୍ମୋଚନ କରିଛି । ପ୍ଲେଟୋ ଏକ ଦ୍ୱୈତବାଦୀ ଭାବଧାରାକୁ ଭିନ୍ନ ଭାବରେ ବ୍ୟକ୍ତ କରିଛନ୍ତି । ଆମ ଅନୁଭୂତିର ଜଗତରେ ସଂଭବନ ହିଁ ରହିଛି । ଆମ ଅନୁଭୂତିରେ ଆମେ ଯେଉଁ ବିବଧ ଜଗତକୁ ଦେଖେ ତାହାର ବସ୍ତୁମାନ ପରିବର୍ତ୍ତନଶୀଳ ଓ କ୍ଷୟଶୀଳ । କିନ୍ତୁ ଏକ ସତ୍ତାର ଜଗତ ରହିଛି ଯେଉଁଠି କେବଳ ଶୁଦ୍ଧସତ୍ତାମାନ ରହିଛନ୍ତି । ଶୁଦ୍ଧସତ୍ତା ବା ଆଇଡିଆମାନ ହେଉଛନ୍ତି ଅପରିବର୍ତ୍ତନୀୟ, ଶାଶ୍ୱତ, ଦେଶାତୀତ ଓ କାଳାତୀତ । ସେମାନଙ୍କର ପ୍ରତିଲିପି ହେଉଛି ଆମ ଅନୁଭୂତିର ବସ୍ତୁଜଗତ । ଏହିପରି ପ୍ଲେଟୋ ପ୍ରତିମାନବାଦର ଏକ ନୂତନ ବିଚାର ଅବତାରଣା କରିଛନ୍ତି । ଆରିଷ୍ଟୋଟଲ ସତ୍ ଓ ସଂଭବନ ମଧ୍ୟରେ ସମନ୍ୱୟ ଆଣିଛନ୍ତି । ଏକତ୍ୱ ଓ ବହୁତ୍ୱ ଭିତରେ ସେ ଯେଉଁ ସଂଯୋଗ ସ୍ଥାପନ କରିଛନ୍ତି ତାହା ଅନେକ ସମସ୍ୟାକୁ ଦୂର କରିପାରିଛି । ସ୍ଥିରତା ଓ ପରିବର୍ତ୍ତନ ଉଭୟକୁ ତାଙ୍କ ଦାର୍ଶନିକ ତତ୍ତ୍ୱ ମଧ୍ୟରେ ସେ ସୁସଂହତ ଭାବରେ ବ୍ୟକ୍ତ କରିଛନ୍ତି । ସେହିପରି ଆରିଷ୍ଟୋଟଲଙ୍କ ଅବିଚାଳିତ ଚାଳକ (Unmoved Mover) ଜନିତ ପ୍ରୟୋଜନ କାରଣ ତାଙ୍କ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତକୁ ଅଧିକ ବିଚାର ସମ୍ମତ ଭାବରେ ପ୍ରକାଶ କରିଛି । ଆରିଷ୍ଟୋଟଲଙ୍କ ପରେ ଷ୍ଟୋଇକ୍‌ବାଦର ବିକାଶ ତତ୍ତ୍ୱମୀମାଂସା କ୍ଷେତ୍ରରେ ଅନ୍ୟ ଏକ ଦିଗର ଅବତାରଣା କରିଛି । ଗ୍ରୀକ୍ ମାନସ ଭିତରକୁ ଷ୍ଟୋଇକ୍‌ମାନେ ସର୍ବେଶ୍ୱରବାଦର ଚିନ୍ତାଧାରା ଆଣିଛନ୍ତି ଓ ବିଶ୍ୱକୁ ସେହି ଧାରାରେ ବ୍ୟାଖ୍ୟା କରିବାକୁ ପ୍ରୟାସ କରିଛନ୍ତି । ପୁନଶ୍ଚ ନବ୍ୟପ୍ଲେଟୋବାଦର ପ୍ଲୋଟିନସ୍ ନର୍ଗମନବାଦ ବିଚାରର ଅବତାରଣା କରି ସୃଷ୍ଟି ପ୍ରକ୍ରିୟାକୁ ବ୍ୟାଖ୍ୟା କରିବାକୁ ପ୍ରୟାସ କରିଛନ୍ତି । ଏହିପରି ଦେଖିଲେ ସୃଷ୍ଟିମୀମାଂସା କ୍ଷେତ୍ରରେ ଗ୍ରୀକ୍ ଦାର୍ଶନିକମାନେ ବିଭିନ୍ନ ସିଦ୍ଧାନ୍ତମାନଙ୍କର ପରିକଳ୍ପନା କରିଛନ୍ତି । ଏହି ପ୍ରକ୍ରିୟାରେ ତତ୍ତ୍ୱମୀମାଂସା କ୍ଷେତ୍ରରେ ବହୁ ସିଦ୍ଧାନ୍ତର ବିକାଶ ହୋଇଛି । ଏହି ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତମାନ ପରବର୍ତ୍ତୀ ସମୟରେ ଦର୍ଶନ ପରିସରରେ ନାନା ଦିଗନ୍ତ ସୃଷ୍ଟିକରିଛି । ବିଶ୍ୱ ଉତ୍ପତ୍ତିର ପରମ କାରଣକୁ ନେଇ ଯେଉଁ ସବୁ ସିଦ୍ଧାନ୍ତମାନଙ୍କର ପରିକଳ୍ପନା କରାଯାଇଛି ସେସବୁ ପରିକଳ୍ପନାତ୍ମକ (speculative) ହେଲେ ମଧ୍ୟ ଦାର୍ଶନିକ ଅନୁଶୀଳନ କ୍ଷେତ୍ରରେ ସେ ସବୁ ମାନବୀୟ ପ୍ରଜ୍ଞାର ଗଭୀରତାକୁ ସ୍ପର୍ଶ

କରିବା ମନେହୁଏ ।

ତତ୍ତ୍ୱମୀମାଂସା ପରି ଜ୍ଞାନମୀମାଂସା ଦର୍ଶନ ଶାସ୍ତ୍ରର ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ । ଏପରିକି ଜ୍ଞାନମୀମାଂସାକୁ ଆଧୁନିକ କାଳରେ ଦର୍ଶନଶାସ୍ତ୍ରରେ ବହୁ ପ୍ରାଧାନ୍ୟ ଦିଆଯାଏ । ଆଧୁନିକ ଯୁଗରେ ଅନୁଭବବାଦ ଓ ତର୍କବୁଦ୍ଧିବାଦ ନାମରେ ଯେଉଁ ଦୁଇଟି ଦାର୍ଶନିକ ଧାରା ସୃଷ୍ଟି ହୋଇଥିଲା ଓ ତାପରେ କାଣ୍ଟଙ୍କର ଆବିର୍ଭାବ ଘଟି ଯେଉଁ ସମୀକ୍ଷାମୂଳକ ଦର୍ଶନର ବିକାଶ ଘଟିଲା ତା ପରଠାରୁ ଜ୍ଞାନମୀମାଂସା ଦାର୍ଶନିକ ଚର୍ଚ୍ଚା କ୍ଷେତ୍ରରେ ମୁଖ୍ୟ ପ୍ରସଙ୍ଗ ହେଲା । ଅବଶ୍ୟ ଏଥିରୁ ଏପରି ଅନୁମାନ କରିବା ଯଥାର୍ଥ ନୁହେଁ ଯେ ଆଧୁନିକ କାଳ ପର୍ଯ୍ୟନ୍ତ ଜ୍ଞାନମୀମାଂସାର ପ୍ରସଙ୍ଗ ଦର୍ଶନ ଭିତରକୁ ଆସିନଥିଲା । ଗ୍ରୀକ୍ ଦାର୍ଶନିକ ମାନେ ମଧ୍ୟ ଜ୍ଞାନମୀମାଂସା କ୍ଷେତ୍ରରେ ଗମ୍ଭୀର ଚର୍ଚ୍ଚା କରିଛନ୍ତି ତେବେ ସେତେବେଳେ ଜ୍ଞାନମୀମାଂସା ଦାର୍ଶନିକ ଅନୁଶୀଳନ କ୍ଷେତ୍ରରେ ସ୍ୱତନ୍ତ୍ର ମହତ୍ତ୍ୱ ପାଇନଥିଲା ।

ସକ୍ରେଟିସ୍‌ଙ୍କ ପୂର୍ବବର୍ତ୍ତୀ ଦାର୍ଶନିକମାନେ ଆଧୁନିକ ମାନଦଣ୍ଡରେ ରୂଢ଼ିବାଦୀ କିମ୍ୱା ଅବିଚାରୀ ଭାବେ ବିବେଚିତ ହେବେ । ସେମାନେ ଏଥିପାଇଁ ରୂଢ଼ିବାଦୀ ବୋଲି ଗୃହୀତ ହେବେ କାରଣ ସେମାନଙ୍କର ବିଶ୍ୱାସ ଥିଲା ପରମ ସତ୍ତାର ସ୍ୱରୂପକୁ ବସ୍ତୁନିଷ୍ଠ ଭାବରେ ମଣିଷ ଜାଣିବାକୁ ସମର୍ଥ । ଇଲୀୟମାନଙ୍କର ଦର୍ଶନରେ ଅବଶ୍ୟ ସତ୍ୟ ଓ ବିଶ୍ୱାସ, ମତ କିମ୍ୱା ଆଭାସ ମଧ୍ୟରେ ପାର୍ଥକ୍ୟ ଅଣାଯାଇଛି । ଇଲୀୟ ଦାର୍ଶନିକ ମାନେ ଏକତତ୍ତ୍ୱବାଦୀ ବିଚାର ଅବତାରଣା କରିଛନ୍ତି । ସେମାନଙ୍କର ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତ ମାନ ଯେହେତୁ ବାସ୍ତବ ଅନୁଭୂତିର ପ୍ରତିକୂଳ ତେଣୁ ଅନୁଭୂତି ଆଧାରିତ ବସ୍ତୁନିଷ୍ଠତାକୁ ସେମାନେ ସ୍ୱୀକାର କରିନାହାନ୍ତି । ଅନୁଭୂତି ଆଧାରିତ ବସ୍ତୁନିଷ୍ଠତାକୁ ଅସ୍ୱୀକାର କରିବା ଫଳରେ ସେମାନଙ୍କର ତତ୍ତ୍ୱମୀମାଂସା ଯେ ନ୍ୟୂନ ହେଉଛି ସେମାନେ ତାହା ଭାବି ନାହାନ୍ତି । ସେମାନେ ସେମାଙ୍କ ତତ୍ତ୍ୱମୀମାଂସା କ୍ଷେତ୍ରରେ ଯାହା ସବୁ ଅନୁମାନ କରିଛନ୍ତି ସେସବୁ ଯେ କେବଳ ପରିକଳ୍ପନାତ୍ମକ (sepculative) ତାହା ଚିନ୍ତା କରିନାହାନ୍ତି ।

ସଫିଷ୍ଟମାନେ ସଚେତନ ଭାବେ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତ ମାନଙ୍କୁ ପରିକଳ୍ପନାତ୍ମକ କହି ଅସ୍ୱୀକାର କରୁଥିଲେ । ତେବେ ସେମାନଙ୍କର ଜ୍ଞାନମୀମାଂସା ସ୍ପଷ୍ଟ ଭାବରେ ସୈଦ୍ଧାନ୍ତିକ ଭାବେ ଅଭିବ୍ୟକ୍ତ ହୋଇନଥିଲେ ମଧ୍ୟ ସେମାନଙ୍କ ବିଚାର କ୍ଷେତ୍ରରେ ଏହାର ଏକ ଅନ୍ତର୍ନିହିତ ତାତ୍ପର୍ଯ୍ୟ ରହିଛି । ପ୍ରୋଟାଗୋରାସଙ୍କର ସିଦ୍ଧାନ୍ତ ବା ଅଭ୍ୟୁକ୍ତି (dictum) "ମନୁଷ୍ୟ ସବୁର ପରିମାପକ" ର ତାତ୍ପର୍ଯ୍ୟ ହେଉଛି ମନୁଷ୍ୟ କୌଣସି ତତ୍ତ୍ୱମୀମାଂସୀୟ ଜ୍ଞାନ ନିର୍ଦ୍ଦିଷ୍ଟ ଭାବରେ ପ୍ରତିଷ୍ଠା କରିପାରିବ ନାହିଁ । ଜ୍ଞାନ କ୍ଷେତ୍ରରେ ସେମାନେ ଏକ ଆପେକ୍ଷିକତାବାଦର ବିଚାରକୁ ସମର୍ଥନ କରିବେ । ଏହାର ତାତ୍ପର୍ଯ୍ୟ ହେବ ମନୁଷ୍ୟର ସକଳ ଜ୍ଞାନ ତାର ବସ୍ତୁନିଷ୍ଠ ଜଗତ ଭିତରେ ସୀମିତ । ଆମର ଜ୍ଞାନ ଅନୁଭୂତି ଆଧାରିତ ଓ ଅନୁଭୂତି ବହିର୍ଭୂତ ବିଚାରମାନ କେବଳ ପରିକଳ୍ପନା । ସୁତରାଂ ସେମାନଙ୍କ ଦର୍ଶନ କ୍ଷେତ୍ରରେ ଜ୍ଞାନମୀମାଂସା ନେଇ ଯେଉଁ ବିଚାର ରହିଛି ତାହା ପ୍ରତ୍ୟକ୍ଷବାଦ ବା ଅନୁଭବବାଦ ସହ ସମତାଳ

ଯଦିବା ସେମାନେ ଏହା ସ୍ପଷ୍ଟଭାବରେ ପ୍ରକାଶ କରିନାହାନ୍ତି । ସକ୍ରେଟିସ୍‌ଙ୍କ ପୂର୍ବବର୍ତ୍ତୀ ଦାର୍ଶନିକ ଅନୁଶୀଳନ କ୍ଷେତ୍ରରେ ଜ୍ଞାନମୀମାଂସାର ସିଦ୍ଧାନ୍ତ ଅଭିବ୍ୟକ୍ତ ହୋଇନାହିଁ । ଯଦିବାଏହାର ଅନ୍ତର୍ନିହିତ ମହତ୍ତ୍ୱ ରହିଛି ।

ପ୍ଲେଟୋ ଓ ଆରିଷ୍ଟୋଟଲଙ୍କ କ୍ଷେତ୍ରରେ ଜ୍ଞାନମୀମାଂସା କ୍ଷେତ୍ରରେ ସ୍ପଷ୍ଟ ସିଦ୍ଧାନ୍ତ ଦେଖିବାକୁ ମିଳେ । ପ୍ଲେଟୋ ମତ, କଳ୍ପନାଠାରୁ ବାସ୍ତବ ଜ୍ଞାନକୁ ପୃଥକ୍ କରିଛନ୍ତି । ସେହିପରି ପ୍ରତ୍ୟକ୍ଷ ଜନିତ ଜ୍ଞାନ ପରିବର୍ତ୍ତନଶୀଳ ଓ ଆପେକ୍ଷିକ ବୋଲି ଭାବିଛନ୍ତି । ଯେଉଁ ଜ୍ଞାନ ପରିବର୍ତ୍ତନଶୀଳ ଓ ଆପେକ୍ଷିକ ସେ କ୍ଷେତ୍ରରେ ଭ୍ରମ ରହିବା ସ୍ୱାଭାବିକ । ଏସବୁ ବିଷୟରେ ସେ ସ୍ପଷ୍ଟ ଭାବରେ ମତ ବ୍ୟକ୍ତ କରିଥିବାରୁ ଜ୍ଞାନମୀମାଂସା କ୍ଷେତ୍ରରେ ତାଙ୍କର ଯେ ବିଚାର ରହିଛି ଏହା ନିଃସନ୍ଦେହ ମନେହୁଏ । ଆମ ଅନୁଭୂତିର ଜଗତ ପରିବର୍ତ୍ତନଶୀଳ ଓ ପ୍ରତ୍ୟକ୍ଷ ଜନିତ ଜ୍ଞାନ ଆପେକ୍ଷିକ ହୋଇଥିବାରୁ ପ୍ଲେଟୋ ସେସବୁ ଜ୍ଞାନକୁ ସମାଲୋଚନା କରିଛନ୍ତି । ହେରାକ୍ଲାଇଟସ ଯେଉଁ ପରିବର୍ତ୍ତନଶୀଳ ଜଗତର ଚିତ୍ର ଦେଇଛନ୍ତି ଓ ସଫିଷ୍ଟମାନେ ପ୍ରତ୍ୟକ୍ଷଜନିତ ଜ୍ଞାନକୁ ଯେପରି ଆପେକ୍ଷିକ ବୋଲି ନେଇଛନ୍ତି ତାହାକୁ ପ୍ଲେଟୋ ସ୍ୱୀକାର କରିନାହାନ୍ତି । ପିଥାଗୋରାସ ଓ ଇଲୀୟ ଦାର୍ଶନିକମାନେ ତର୍କବୁଦ୍ଧୀୟ ଜ୍ଞାନକୁ ଯେଉଁ ପ୍ରାଧାନ୍ୟ ଦେଇଛନ୍ତି ପ୍ଲେଟୋଙ୍କ ବିଚାର ପୃଷ୍ଠଭୂମିରେ ସେ ତର୍କବୁଦ୍ଧିବାଦକୁ ଅଧିକ ଗ୍ରହଣ କରିବେ । ପ୍ଲେଟୋ ସକ୍ରେଟିସ୍‌ଙ୍କ ଭାବଧାରା ଜ୍ଞାନ ପ୍ରତ୍ୟୟାତ୍ମକ ଓ ପ୍ରତ୍ୟୟମାନଙ୍କର ଯଥାର୍ଥ ସଂଜ୍ଞାଦ୍ୱାରା ଆମେ ବାସ୍ତବ ଓ ସାର୍ବିକ ଜ୍ଞାନରେ ଉପନୀତ ହୋଇପାରିବା ମତ ସହିତ ସହମତ ହୋଇଛନ୍ତି । ଏଣୁ ବିଭିନ୍ନ ବସ୍ତୁରାଜିର ଶ୍ରେଣୀମାନଙ୍କର ଶୁଦ୍ଧସତ୍ତାର ସ୍ୱରୂପ ନେଇ ସେ ଭାବିଛନ୍ତି ଓ ଶୁଦ୍ଧସତ୍ତା ମାନଙ୍କର ସଂଜ୍ଞା, ସ୍ୱରୂପ, ଶ୍ରେଣୀକରଣ ବିଷୟକୁ ପ୍ରାଧାନ୍ୟ ଦେଇଛନ୍ତି । ପ୍ଲେଟୋ ଯେଉଁ ତତ୍ତ୍ୱମୀମାଂସାର ନିର୍ମାଣ କରିଛନ୍ତି ତାର ପଶ୍ଚାତରେ ତାଙ୍କ ଜ୍ଞାନମୀମାଂସୀୟ ସିଦ୍ଧାନ୍ତ ଅନ୍ତର୍ନିହିତ ହୋଇରହିଛି । ଏତଦ୍‌ବ୍ୟତୀତ ପ୍ଲେଟୋଙ୍କ ଡାଏଲଗ୍ ମାନଙ୍କରୁ ଏହା ସ୍ପଷ୍ଟ ହୋଇଥାଏ ଯେ ସେ ଅନେକ ସ୍ଥଳରେ ଡାଇଲେକ୍‌ଟିକ ପଦ୍ଧତିକୁ ସ୍ୱୀକାର କରିଛନ୍ତି । ସେ ଆମର ବିଚାର ଓ ନୈତିକ ପ୍ରସଙ୍ଗ ଉପରେ ପ୍ରାଗ୍‌ନୁଭବିକ ସିଦ୍ଧାନ୍ତକୁ ପ୍ରାଧାନ୍ୟ ଦେଇଛନ୍ତି । ସୁତରାଂ ପ୍ଲେଟୋ ଯଦିବା ଜ୍ଞାନମୀମାଂସା କ୍ଷେତ୍ରରେ କିଛି ସିଦ୍ଧାନ୍ତର ଅବତାରଣା କରିନାହାନ୍ତି ତାଙ୍କର ସାମଗ୍ରିକ ବିଚାର ପୃଷ୍ଠଭୂମିରେ ପ୍ଲେଟୋ ଯେ ଜ୍ଞାନମୀମାଂସକ ଥିଲେ ଏହା କୁହାଯାଇପାରେ । ତାଙ୍କ ଜ୍ଞାନମୀମାଂସକ ଅବବୋଧ ଭିତରେ ସେ ଆଧୁନିକ ମାନଦଣ୍ଡରେ ତର୍କ ବୁଦ୍ଧିବାଦୀ ରହିଥିବା ମନେହୁଏ । ପ୍ରତ୍ୟୟ, ସଂଜ୍ଞା, ଏକ ଶ୍ରେଣୀର ମୌଳିକ ଗୁଣର ଭାବନା ବିଚାରବୁଦ୍ଧି ଦ୍ୱାରା କରିବା ସମ୍ଭବ । ସୁତରାଂ ପ୍ଲେଟୋଙ୍କୁ ବୁଦ୍ଧିବାଦୀ ଜ୍ଞାନମୀମାଂସକ କହିବା ଅଧିକ ପ୍ରାସଙ୍ଗିକ ମନେହୁଏ ।

ପ୍ଲେଟୋଙ୍କ ପରି ଆରିଷ୍ଟୋଟଲ ମଧ୍ୟ ସୁସ୍ପଷ୍ଟ ଭାବେ କୌଣସି ଜ୍ଞାନ ମୀମାଂସୀୟ ସିଦ୍ଧାନ୍ତର ଅବତାରଣା କରିନାହାନ୍ତି । ଅମୂର୍ତ୍ତୀୟ ଭାବନା କ୍ଷେତ୍ରରେ ସେ ତାଙ୍କର ସ୍ପଷ୍ଟ ଭାବନା ରଖିଛନ୍ତି, ପ୍ରତ୍ୟକ୍ଷ ଅନୁଭୂତି ଓ ପ୍ରତ୍ୟୟମାନଙ୍କ ମଧ୍ୟରେ ସ୍ପଷ୍ଟ ପାର୍ଥକ୍ୟ କରିଛନ୍ତି ଓ ବିଚାର (reason) ର ବିଭିନ୍ନ କ୍ରିୟା ସଂପର୍କରେ ଦର୍ଶାଇଛନ୍ତି । ଆମେ କିପରି

ଜ୍ଞାନ ଲାଭ କରିପାରିବା ପ୍ରସଙ୍ଗ ଉପରେ ଆରିଷ୍ଟୋଟଲ ଏହାକୁ ଆମେ କିପରି ଜାଣିବାକୁ ସମର୍ଥ ହେଉରେ ରୂପାନ୍ତରିତ କରିଛନ୍ତି । ଜ୍ଞାନର ଚର୍ଚ୍ଚା କ୍ଷେତ୍ରରେ ସେ କେତେକ ମନୋବୈଜ୍ଞାନିକ ବିଚାରର ବି ଅବତାରଣା କରିଛନ୍ତି । ସେ ଯୁଗରେ ଜ୍ଞାନବିଜ୍ଞାନର କୌଣସି ଶ୍ରେଣୀକରଣ ହୋଇନଥିଲା ଓ ଆଧୁନିକ ସମୟ ପରି ବିଶେଷତା ପ୍ରକାଶ ପାଇନଥିଲା । ଏତଦ୍‌ବ୍ୟତୀତ ଆରିଷ୍ଟୋଟଲଙ୍କର ଅବରୋହାତ୍ମକ ତର୍କଶାସ୍ତ୍ରକୁ ଅବଦାନ ଥିଲା ଯୁଗାନ୍ତକାରୀ, ତାଙ୍କଠାରୁ ହିଁ ଅବରୋହାତ୍ମକ ତର୍କଶାସ୍ତ୍ର ଏକ ଅଧ୍ୟୟନର ବିଷୟ ହେଲା । ଆରିଷ୍ଟୋଟଲଙ୍କର ତତ୍ତ୍ୱମୀମାଂସା, ତର୍କଶାସ୍ତ୍ର ଓ ଅନ୍ୟାନ୍ୟ ସିଦ୍ଧାନ୍ତ କ୍ଷେତ୍ରରେ ଜ୍ଞାନମୀମାଂସୀୟ ବିଚାରମାନ ସ୍ପଷ୍ଟ ଭାବରେ ପରିଲକ୍ଷିତ ହୁଏ । ତାଙ୍କ ସମୟରେ ଜ୍ଞାନମୀମାଂସା ଦାର୍ଶନିକ ଅନୁଶୀଳନ କ୍ଷେତ୍ରରେ ପ୍ରାଧାନ୍ୟ ନେଇନଥିଲେ ମଧ୍ୟ ଜ୍ଞାନମୀମାଂସକ ଅବବୋଧ ଉପରେ ତାଙ୍କର ବିଚାରମାନ ସ୍ପଷ୍ଟ ରୂପ ନେଇଥିଲା ।

ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ପର୍ଯ୍ୟାୟରେ ଷ୍ଟୋଇକ୍ ମାନେ ଓ ଏପିକୁରୀୟମାନେ 'ସତ୍ୟ' ର ମାନଦଣ୍ଡ ଉପରେ ପ୍ରାଧାନ୍ୟ ଦେଇଛନ୍ତି । ସଂଶୟବାଦୀମାନେ ସକଳ ପ୍ରକାର ଜ୍ଞାନକୁ ସନ୍ଦେହ ଦୃଷ୍ଟିରେ ନେଇଛନ୍ତି । ଜ୍ଞାନର ସମ୍ଭାବନାକୁ ଅସ୍ୱୀକାର କରିବା ଓ ମନୁଷ୍ୟ ଯେ ଜ୍ଞାନଲାଭ କରିବାକୁ ଅସମର୍ଥ ମତରଖିବା ଜ୍ଞାନମୀମାଂସୀୟ ରୂଢ଼ିବାଦର ଚିତ୍ର ପ୍ରଦାନ କରେ । ଆରିଷ୍ଟୋଟଲଙ୍କ ପରବର୍ତ୍ତୀ ସମୟର ଦାର୍ଶନିକମାନେ ସକ୍ରେଟିସ୍‌ଙ୍କ ପୂର୍ବବର୍ତ୍ତୀ ଦାର୍ଶନିକ ମାନଙ୍କ ତୁଳନାରେ ଅଧିକ ସମୀକ୍ଷାତ୍ମକ ଦୃଷ୍ଟିଭଙ୍ଗୀ ପୋଷଣ କରିଛନ୍ତି । ତେବେ ସେମାନଙ୍କର ସମୀକ୍ଷାତ୍ମକ ବିଚାର ସାମଗ୍ରିକ ଜ୍ଞାନମୀମାଂସା କ୍ଷେତ୍ରରେ ପ୍ରୟୋଗ ନ ହୋଇ ବିଶେଷ କ୍ଷେତ୍ର ମାନଙ୍କରେ ପ୍ରୟୋଗ ହୋଇଛି । କଳ୍ପନା, ଆଭାସ ବା ଅପଭ୍ରମଠାରୁ ସେମାନେ ବସ୍ତୁନିଷ୍ଠ ଜ୍ଞାନକୁ ଗୁରୁତ୍ୱ ଦେଇଛନ୍ତି ।

ସକ୍ରେଟିସ୍ ଜ୍ଞାନମୀମାଂସା କ୍ଷେତ୍ରରେ ଗମ୍ଭୀର ଚର୍ଚ୍ଚା ଆରମ୍ଭ କରିଥିଲେ ଓ ତାଙ୍କର ଜ୍ଞାନମୀମାଂସୀୟ ସିଦ୍ଧାନ୍ତକୁ ଭିତ୍ତି କରି ପ୍ଲେଟୋ ତାଙ୍କର ତତ୍ତ୍ୱମୀମାଂସା ନିର୍ମାଣ କରିଥିଲେ । ସକ୍ରେଟିସ୍‌ଙ୍କ ଠାରୁ ଗ୍ରୀକ୍ ଦର୍ଶନ ପରଂପରାରେ ଜ୍ଞାନମୀମାଂସା କ୍ଷେତ୍ରରେ ବିଭିନ୍ନ ମତର ଅବତାରଣା ହୋଇଥିବା ଜଣାଯାଏ । ତେବେ ସେ ସମୟରେ ଜ୍ଞାନମୀମାଂସାକୁ ଏକ ସ୍ୱତନ୍ତ୍ର ଭୂମିକା ଦାର୍ଶନିକ ଚର୍ଚ୍ଚା କ୍ଷେତ୍ରରେ ପ୍ରଦାନ କରାଯାଇ ନଥିଲା । ବରଂ ତତ୍ତ୍ୱମୀମାଂସୀୟ ସିଦ୍ଧାନ୍ତ ବା ନୈତିକ ମାନକ ନିରୂପଣ କ୍ଷେତ୍ରରେ ଜ୍ଞାନମୀମାଂସୀୟ ଭାବନାମାନଙ୍କୁ ଯାହା ସ୍ୱୀକାର କରାଯାଉଥିଲା । ଏତଦ୍‌ବ୍ୟତୀତ ମନୋବୈଜ୍ଞାନିକ ଚର୍ଚ୍ଚା ଜ୍ଞାନମୀମାଂସା ସହ ସଂଯୁକ୍ତ ହୋଇ ରହିଥିଲା । ତେବେ ମୋଟା ମୋଟି ଭାବରେ କହିବାକୁ ଗଲେ ଜ୍ଞାନମୀମାଂସୀୟ ଭାବନାକୁ ବାଦ୍ ଦେଇ ଅନ୍ୟ କ୍ଷେତ୍ର ଗୁଡିକ ଯେ ସ୍ପଷ୍ଟ ରୂପ ନେଇପାରିବ ନାହିଁ ଏହା ପରବର୍ତ୍ତୀ ସମୟର ଉପଲବ୍ଧି ।ଏହି ଦୃଷ୍ଟିରୁ ଦର୍ଶନଶାସ୍ତ୍ର ବିଷୟରେ ଗମ୍ଭୀର ଚର୍ଚ୍ଚା କରୁଥିବା କିମ୍ବା କିଛି ସିଦ୍ଧାନ୍ତ ନିର୍ମାଣ କରିଥିବା ଦାର୍ଶନିକମାନେ ପ୍ରତ୍ୟକ୍ଷ ଭାବରେ ହେଉ ବା ଅନ୍ତର୍ନିହିତ ଭାବରେ ହେଉ ଜ୍ଞାନମୀମାଂସା କ୍ଷେତ୍ରରେ କେତେକ ବିଚାର ରଖିଥିବା ସ୍ୱାଭାବିକ ମନେହୁଏ ।

ଦର୍ଶନଶାସ୍ତ୍ରରେ ଏକ ଚର୍ଚ୍ଚିତ ପ୍ରସଙ୍ଗ ହେଉଛି ନୀତିଦର୍ଶନ । ପ୍ରତ୍ୟେକ ମାନବଗୋଷ୍ଠୀ ବା ସମାଜରେ କେତେକ ବିଧିବିଧାନ, ଶୃଂଖଳା, ନୀତି, ନୈତିକତା, କର୍ତ୍ତବ୍ୟବୋଧ ରହିବା ଏକ ସାଧାରଣ ଘଟଣା । ଏସବୁ ସମାଜର ଶିକ୍ଷା, ପରଂପରା, ପରିବେଶ, ପାରିବାରିକ ଜୀବନ ଇତ୍ୟାଦି ନେଇ ବିକଶିତ ହୋଇଥାଏ । ସମାଜରେ ପ୍ରଚଳିତ ବିଧିବିଧାନ, ନୈତିକ ବିଚାରବୋଧ ଓ ଆଚରଣକୁ ନେଇ ଦାର୍ଶନିକ ମାନେ ନୈତିକ ସିଦ୍ଧାନ୍ତ ମାନ ନିର୍ମାଣ କରିଥାନ୍ତି । ପୁନଶ୍ଚ ବିଭିନ୍ନ ସାମାଜିକ ବ୍ୟବସ୍ଥାରେ ପ୍ରଚଳିତ ଥିବା ବିଧିବିଧାନ, କର୍ତ୍ତବ୍ୟ ଜ୍ଞାନ କ୍ଷେତ୍ରରେ ଭିନ୍ନତା ରହିବା ସ୍ୱାଭାବିକ । ଏପରିକି ସାମାଜିକ ବିକାଶ ପ୍ରକ୍ରିୟାରେ ନୈତିକ ଦୃଷ୍ଟିଭଙ୍ଗୀ ଓ କର୍ତ୍ତବ୍ୟବୋଧ ମଧ୍ୟରେ ବି ପରିବର୍ତ୍ତନ ଆସିବା ସାଧାରଣ ମନେହୁଏ । ସମାଜର ପ୍ରଚଳିତ ନୀତି, ନିୟମ, ଶୃଂଖଳା, ଜୀବନଦୃଷ୍ଟି ଓ ଆଚରଣ ବିଷୟରେ ଗଭୀର ଅନୁଶୀଳନ ଦ୍ୱାରା ଦାର୍ଶନିକମାନେ ନୈତିକତାକୁ ନେଇ ବିଭିନ୍ନ ସିଦ୍ଧାନ୍ତର ଅବତାରଣା କରିବା ଦେଖାଯାଏ । ଏହି ପୃଷ୍ଠଭୂମିରେ ବାସ୍ତବ ଜୀବନରେ କେତେକ ନୈତିକ ଦୃଷ୍ଟିଭଙ୍ଗୀ ଓ କର୍ତ୍ତବ୍ୟଜ୍ଞାନ ରହିପାରେ ଓ ପୁନଶ୍ଚ ସୈଦ୍ଧାନ୍ତିକ ସ୍ତରରେ କେତେକ ନିୟମ ଅମୂର୍ତ୍ତୀୟ ସ୍ତରରେ ଆଲୋଚନାର ପ୍ରସଙ୍ଗ ହୋଇପାରେ ।

ଯେହେତୁ ବିଭିନ୍ନ ସମାଜରେ ବା ଦେଶମାନଙ୍କରେ ରହିଥିବା ବିଧିବିଧାନ, ପରଂପରା ଜନିତ ସାମାଜିକ ଚଳଣି ଓ କର୍ତ୍ତବ୍ୟଜ୍ଞାନ ମଧ୍ୟରେ ଭିନ୍ନତା ପରିଦୃଶ୍ୟ ହୁଏ ସେ ଦୃଷ୍ଟିରୁ ଏହା କେତେକ ବିଚାର କରିଥାନ୍ତି ଯେ ନୈତିକ ମୂଲ୍ୟଚୟ ମାନ ଆପେକ୍ଷିକ । ଯଦିବା ନୈତିକ ବିଧିବିଧାନ ସାମାଜିକ ଜୀବନ ପ୍ରବାହ ପାଇଁ ଅବଶ୍ୟମ୍ଭାବୀ, ତେବେ ସେ କ୍ଷେତ୍ରରେ କୌଣସି ନିରଙ୍କୁଶତା ନଥାଏ । ଅର୍ଥାତ୍ ନୈତିକ ନିୟମମାନ ନିରଙ୍କୁଶ ନୁହେଁ, ସେଗୁଡିକ ଆପେକ୍ଷିକ ବୋଲି କେତେକ ମତପୋଷଣ କରିଥାନ୍ତି । ଏହାକୁ ନେଇ ଦର୍ଶନଶାସ୍ତ୍ର ପରିସରରେ ଗମ୍ଭୀର ଚର୍ଚ୍ଚା ହେବା ଦେଖାଯାଏ ।

ନୈତିକ ଭାବନାକୁ ନେଇ ସମାଜରେ ରହିଥିବା ଭାବଧାରା କ୍ଷେତ୍ରରେ କେତେକ ଭ୍ରମାତ୍ମକ ବିଚାର ବିଷୟରେ ପ୍ଲେଟୋ ସୂଚନା ଦେଇଛନ୍ତି । ସକ୍ରେଟିସ୍‌ଙ୍କ ଜୀବନଧାରାରେ ଓ ବିଚାରବୋଧ କ୍ଷେତ୍ରରେ ରହିଥିବା ଶୃଙ୍ଖଳାବୋଧ ଓ ନୀତିବୋଧ ଆଧାରରେ ପ୍ଲେଟୋ ଓ ଆରିଷ୍ଟୋଟଲ ସମାଜର ଭ୍ରମାତ୍ମକ ବିଶ୍ୱାସ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ସକ୍ରେଟିସ୍ ସକଳ ସଦ୍‌ଗୁଣ ଓ ନୈତିକତାର ଆଧାର ମାନବୀୟ ପ୍ରଜ୍ଞା ବୋଲି ବିଚାର କରୁଥିଲେ । ନୈତିକତା ବିଷୟରେ ଥରେ ବୌଦ୍ଧିକ ସ୍ପଷ୍ଟତା ରହିଲେ କେହି ଅନୈତିକ କାର୍ଯ୍ୟରେ ଲିପ୍ତ ହେବ ନାହିଁ ବୋଲି ସକ୍ରେଟିସ୍‌ଙ୍କର ବିଚାର ଥିଲା । ସକ୍ରେଟିସ୍‌ଙ୍କର ଏହି ଭାବଧାରାକୁ ନୈତିକ ବୌଦ୍ଧିକବାଦ (ethical intellectualism) କୁହାଯାଏ । ପ୍ଲେଟୋ ବି କେତେକାଂଶରେ ଏହି ମତକୁ ଗ୍ରହଣ କରୁଥିଲେ । ପ୍ଲେଟୋ ଏହି ଦୃଷ୍ଟିରୁ ନୈତିକ ଆପେକ୍ଷିକବାଦକୁ ଗ୍ରହଣ କରୁନଥିଲେ ।

ପ୍ଲେଟୋ ଓ ଆରିଷ୍ଟୋଟଲ ଉଭୟ ନୈତିକ ମାନକ ମାନଙ୍କୁ ବ୍ୟକ୍ତି ସ୍ୱଭାବ ସହ ସଂଯୁକ୍ତ କରିଥିଲେ ।

ମାନବୀୟ ପ୍ରକୃତି ଆଧାରରେ ଜଣଙ୍କର ନୈତିକ ଅବବୋଧକୁ ମୂଲ୍ୟାୟନ କରାଯାଇ ପାରିବ । ତେବେ ପ୍ଳେଟୋ ନୈତିକତାକୁ ସୁଖଠାରୁ ଓ ସଦ୍‌ଗୁଣକୁ ମାନବୀୟ କର୍ତ୍ତବ୍ୟଠାରୁ ପୃଥକ୍ କରିଥିଲେ । ସେ ପାରଂପାରିକ ସଦ୍‌ଗୁଣ ଓ ଦାର୍ଶନିକ ସଦ୍‌ଗୁଣ ମଧ୍ୟରେ ପାର୍ଥକ୍ୟ ଦର୍ଶାଇଥିଲେ । ପାରଂପରିକ ସଦ୍‌ଗୁଣ ବ୍ୟକ୍ତିମାନେ ସମାଜରୁ, ପରିବାରରୁ ଓ ଶିକ୍ଷାକ୍ଷେତ୍ରରୁ ଲାଭ କରିଥାନ୍ତି । ପରନ୍ତୁ ଜୀବନର ଅନ୍ତିମ ଲକ୍ଷ୍ୟ ବିଷୟରେ ଜଣେ ସଚେତନ ହେବାପରେ ଓ ମଙ୍ଗଳ ପ୍ରାପ୍ତିକୁ ଗ୍ରହଣ କଲାପରେ ଜଣେ ଯେଉଁ ନୈତିକ ସଦ୍‌ଗୁଣକୁ ଗ୍ରହଣ କରିବ ତାହା ତା' ପାଇଁ ମହତ୍ତ୍ୱପୂର୍ଣ୍ଣ ମନେହୁଏ । ସଫିଷ୍ଟମାନେ ନୈତିକତାକୁ ସୁଖ ସହିତ ସଂପୃକ୍ତ କରାଇବା ଦେଖାଯାଏ ବା ଅନ୍ୟ କେହି ବୃହତ୍ତର ସମାଜର ମଙ୍ଗଳ ସହିତ ଏହାକୁ ସଂଯୁକ୍ତ କରିବା ଜଣାଯାଏ । ପ୍ଳେଟୋ ବ୍ୟକ୍ତିର ନୈତିକ କର୍ତ୍ତବ୍ୟ ବିଷୟରେ ବିଶେଷ ଚର୍ଚ୍ଚା କରି ନଥିଲେ ମଧ୍ୟ ସେ ଏକଥା ବ୍ୟକ୍ତ କରିଛନ୍ତି ଯେ ବ୍ୟକ୍ତିର କାର୍ଯ୍ୟ ଏପରି ହେବା ଆବଶ୍ୟକ ଯାହା ତା'ର ପରମ ଲକ୍ଷ୍ୟ ଦିଗରେ ତାକୁ ପରିଚାଳିତ କରିବ । ପ୍ଳେଟୋ ଚାରିଟି ଶ୍ରେଷ୍ଠଗୁଣ (cardinal virtue) ର ଅବତାରଣା କରିଛନ୍ତି ଓ ତାକୁ ପ୍ରାପ୍ତ ହେବାକୁ ଜୀବନର ତିନିଟି କ୍ଷେତ୍ର ପାଇଁ ପ୍ଳେଟୋ ତିନିଟି ସଦ୍‌ଗୁଣର ଭାବନା ଦେଇଛନ୍ତି । ଇନ୍ଦ୍ରିୟ କାମନା କ୍ଷେତ୍ରରେ ଆତ୍ମସଂଯମ, ମାନବିକ ଆବେଗ ପାଖରେ ସାହସ ଓ ମନ କ୍ଷେତ୍ରରେ ପ୍ରଜ୍ଞାକୁ ସେ ଜୀବନର ଶ୍ରେୟ ଭାବରେ ଗ୍ରହଣ କରିଛନ୍ତି । ବ୍ୟକ୍ତି ଜୀବନର ଉତ୍କର୍ଷ ପାଇଁ ଏହି ସଦ୍‌ଗୁଣମାନଙ୍କର ସମନ୍ୱୟ ଆବଶ୍ୟକ ଓ ଏକ ଉନ୍ନତ ସମାଜ ପାଇଁ ନ୍ୟାୟକୁ ପରମ ଲକ୍ଷ୍ୟ ବୋଲି ଗ୍ରହଣ କରିଛନ୍ତି । ବ୍ୟକ୍ତିର ଏକ ସୁସଂହତ ଓ ନୀତିପୂର୍ଣ୍ଣ ଜୀବନର ପରିକଳ୍ପନା ସହ ଏକ ଆଦର୍ଶ ସମାଜର ପରିକଳ୍ପନା କରିଛନ୍ତି । ଏକ ସାମାଜିକ ବ୍ୟବସ୍ଥାରେ ହିଁ ବ୍ୟକ୍ତିର ନୈତିକ ସମ୍ଭାବନା ଯେ ବାସ୍ତବ ରୂପ ନେଇପାରିବ ଏହା ତାଙ୍କ ନୈତିକ ଜୀବନଦୃଷ୍ଟିରେ ଗୁରୁତ୍ୱ ନେଇଛି ।

ଆରିଷ୍ଟୋଟଲ ମଣିଷର ସାମାଜିକ ଜୀବନକୁ ଅଧିକ ପ୍ରାଧାନ୍ୟ ଦେଇଛନ୍ତି ଓ ସାମାଜିକ କର୍ତ୍ତବ୍ୟବୋଧ କ୍ଷେତ୍ରରେ କିଛି ନୂତନ ଦିଗନ୍ତର ଅବତାରଣା କରିଛନ୍ତି । ବ୍ୟକ୍ତିର ସାମାଜିକ କର୍ତ୍ତବ୍ୟବୋଧ ବୃହତ୍ତର ସମାଜର କଲ୍ୟାଣ ପାଇଁ ଅଭିପ୍ରେତ ହେବା ଆବଶ୍ୟକ । ବ୍ୟକ୍ତିର ମଙ୍ଗଳ ବୃହତ୍ତର ସମାଜର ମଙ୍ଗଳ ସହିତ ଘନିଷ୍ଠ ଭାବେ ସମ୍ବନ୍ଧିତ । ବ୍ୟକ୍ତିର ଲକ୍ଷ୍ୟ ଯେତେ ଉନ୍ନତ, ମାନବିକ ଓ ସାର୍ବଜନୀନ ହେବ ବ୍ୟକ୍ତି ଜୀବନର ଗୁଣାତ୍ମକ ମାନ ସେତେ ଉନ୍ନତ ହୋଇପାରିବ । ସଂଯମତା, ନ୍ୟାୟ, ସାହସ ଓ ପ୍ରଜ୍ଞା ସହ ଆରିଷ୍ଟୋଟଲ ବନ୍ଧୁତାକୁ ମଧ୍ୟ ଜୀବନଧାରାରେ ବହୁ ପ୍ରାଧାନ୍ୟ ଦେଇଛନ୍ତି । ବ୍ୟକ୍ତି ଜୀବନ ସାମାଜିକ ଜୀବନଧାରାର ଅଙ୍ଗ ବିଶେଷ ଓ ଉଭୟ ମଧ୍ୟରେ ସୁନ୍ଦର ସମନ୍ୱୟ କିପରି ସମ୍ଭବ ତାହା ଚିନ୍ତା କରିଛନ୍ତି । ସମାଜର କ୍ରମବର୍ଦ୍ଧିଷ୍ଣୁ ଉତ୍କର୍ଷ ପାଇଁ ପ୍ଳେଟୋ ଓ ଆରିଷ୍ଟୋଟଲ ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରିଛନ୍ତି । ଏକ ଉତ୍କର୍ଷ ସମାଜ ପାଇଁ ନୈତିକ ଜୀବନଦୃଷ୍ଟି ଯେ ଅବଶ୍ୟମ୍ଭାବୀ ଏହି ବିଚାରବୋଧ ଗ୍ରୀକ୍ ଦାର୍ଶନିକମାନଙ୍କ ପାଖରେ ଅଭିବ୍ୟକ୍ତ ହୋଇଛି । ଉତ୍ତମ ଜୀବନର ଆଧାର ଓ ଏକ ଉତ୍କର୍ଷ ସମାଜର ଚିତ୍ର ବିଷୟରେ ଆରିଷ୍ଟୋଟଲ ତାଙ୍କ ଦର୍ଶନରେ ବିସ୍ତୃତ ବ୍ୟାଖ୍ୟା ଦେଇଛନ୍ତି । ଏପିକୁରୀୟମାନେ ନୈତିକତା

ବିଷୟରେ ସୁଖବାଦକୁ ଗୁରୁତ୍ୱ ଦେଇଛନ୍ତି । ସୁଖର ମୂଲ୍ୟ ଜୀବନ ପାଇଁ ଅନେକ ଗୁରୁତ୍ୱ ରଖୁଥିବାରୁ ସେମାନେ ସୁଖ ସହ ଜ୍ଞାନକୁ ସଂଯୁକ୍ତ କରିଛନ୍ତି କାରଣ ଜ୍ଞାନ ଓ ବିଚାରଦ୍ୱାରା ପ୍ରକୃତ ସୁଖ ଦିଗରେ ମନୁଷ୍ୟ ପ୍ରୟାସୀ ହୋଇପାରିବ । ପ୍ରତିକୂଳ ପରିସ୍ଥିତିରେ ମଧ ମନୁଷ୍ୟ କିପରି ଭାରସାମ୍ୟତା ନ ହରାଇ ବିଚାରଶୀଳ ହୋଇ ଜୀବନକୁ ସାମ୍ନା କରିପାରିବ ସେ ବିଷୟରେ ଏପିକୁରୀୟ ମାନେ ବିଚାର ରଖିଛନ୍ତି । ସୁଖ, ଆନନ୍ଦକୁ ଜୀବନରେ ଏପିକୁରୀୟମାନେ ପ୍ରାଧାନ୍ୟ ଦେଉଥିଲେ ମଧ ବିଚାରହୀନ ଆମୋଦ ପ୍ରମୋଦକୁ ପ୍ରତ୍ୟାଖ୍ୟାନ କରିବାକୁ ଗୁରୁତ୍ୱ ଦେଇଛନ୍ତି । ଧନ, ସଂପଦ, ପ୍ରାଚୁର୍ଯ୍ୟ, ବିଳାସ ଇତ୍ୟାଦି ଅପେକ୍ଷା ମାନସିକ ସ୍ଥିରତା ଓ ଆତ୍ମୀୟତା ଯେ ସୁଖର ପ୍ରଧାନ ଉପଜୀବ୍ୟ ଏହି ଭାବନା ଉପରେ ଏପିକୁରୀୟ ଦର୍ଶନରେ ସ୍ପଷ୍ଟ ଅଭିବ୍ୟକ୍ତ ହୋଇଥିବା ଦେଖାଯାଏ । ଏପିକୁରୀୟ ଜୀବନବୋଧ, ସୁଖବାଦ ଓ ନୀତିବୋଧ ୟୁରୋପର ବହୁ କବି ଓ କଳାକାରମାନଙ୍କୁ ପ୍ରେରଣା ଯୋଗାଇଥିବା ମନେହୁଏ । ଷ୍ଟୋଇକମାନେ ବୈରାଗ୍ୟବାଦୀ ଜୀବନ-ଦର୍ଶନର ଅବତାରଣା କରିବା ଭିତରେ ନୈଷ୍ଠିକତା ଉପରେ ପ୍ରାଧାନ୍ୟ ଦେଇଛନ୍ତି । ଜୀବନରେ ନିଷ୍ଠା, କର୍ତ୍ତବ୍ୟ ଓ ସାଧୁତାକୁ ଷ୍ଟୋଇକମାନେ ବହୁ ମୂଲ୍ୟ ଦେଇଛନ୍ତି । ଷ୍ଟୋଇକମାନେ ଯେପରି ଈଶ୍ୱରବାଦୀ, ସେହିପରି ଭାଗ୍ୟବାଦୀ । ସୁଖ, ଦୁଃଖ ପ୍ରତି ଏକ ଅନାସକ୍ତ ଜୀବନଦୃଷ୍ଟି ଷ୍ଟୋଇକମାନେ ପ୍ରଚାର କରିଛନ୍ତି ।

ନୈତିକତାର ବିଭିନ୍ନ ପ୍ରୟୋଗ କ୍ଷେତ୍ରରେ ଗ୍ରୀକ୍ ଦାର୍ଶନିକମାନେ ବିଭିନ୍ନ ବିଷୟର ଅବତାରଣା କରିଛନ୍ତି । ନୈତିକତାର ସୈଦ୍ଧାନ୍ତିକ ଓ ବ୍ୟାବହାରିକ ଦିଗ ଉପରେ ବହୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଗ୍ରୀକ୍ ଦାର୍ଶନିକମାନେ ବିଭିନ୍ନ ଭାବରେ ବ୍ୟକ୍ତ କରିଛନ୍ତି । ସେହିପରି ଜୀବନକୁ ମହତ୍ତ୍ୱପୂର୍ଣ୍ଣ କରି ଗଢ଼ିବାରେ ସମାଜ କିପରି ନିର୍ଣ୍ଣାୟକ ଭୂମିକା ନେଇପାରିବ ସେ ବିଷୟରେ ମଧ ପ୍ଲେଟୋ ଓ ଆରିଷ୍ଟୋଟଲଙ୍କ ପରି ଦାର୍ଶନିକମାନେ ଦିଗ୍‌ଦର୍ଶନ ଦେଖାଇଛନ୍ତି । ପ୍ଲେଟୋ ଏକ ଆଦର୍ଶ ସମାଜର ଚିତ୍ର ଦେବାକୁ ପ୍ରୟାସ କରିଛନ୍ତି ଓ ରାଜନୈତିକ ଦର୍ଶନ କ୍ଷେତ୍ରରେ ଆରିଷ୍ଟୋଟଲ ବହୁ ନୂତନତ୍ୱର ଅବତାରଣା କରିଛନ୍ତି ।

ମୋଟଉପରେ କହିବାକୁ ଗଲେ ତତ୍ତ୍ୱମୀମାଂସା, ଜ୍ଞାନମୀମାଂସା ଓ ଆଚାରମୀମାଂସା କ୍ଷେତ୍ରରେ ଗ୍ରୀକ୍ ଦାର୍ଶନିକ ମାନେ ୟୁରୋପୀୟ ଦର୍ଶନ ପରଂପରାରେ ପଥପ୍ରଦର୍ଶକ ହୋଇଛନ୍ତି । ଏ ପ୍ରତ୍ୟେକ କ୍ଷେତ୍ରରେ ସେମାନେ ଚିନ୍ତାଧାରାର ଅୟମାରମ୍ଭ କରିଥିଲେ । ଏତଦ୍‌ବ୍ୟତୀତ ଅବରୋହାତ୍ମକ ତର୍କଶାସ୍ତ୍ର ଆରିଷ୍ଟୋଟଲ ଆରମ୍ଭ କରିଥିଲେ ଓ ଏ କ୍ଷେତ୍ରକୁ ତାଙ୍କର ଅବଦାନ ଅତୁଳନୀୟ । ସେହପରି ରାଜନୈତିକ ଦର୍ଶନ, ଶିକ୍ଷା ଦର୍ଶନ ଓ କେତେକ ପ୍ରାକୃତିକ ବିଜ୍ଞାନ ମଧ ଗ୍ରୀକ୍ ମାନଙ୍କଠାରୁ ଆରମ୍ଭ ହୋଇଥିଲା । ଏ ସମସ୍ତ କ୍ଷେତ୍ରରେ ଗ୍ରୀକ୍‌ମାନଙ୍କର ଅବଦାନ ଦିଗନ୍ତ ପ୍ରସାରୀ ।

ଗ୍ରୀକ୍ ଦାର୍ଶନିକମାନେ ସେମାନଙ୍କର ବୌଦ୍ଧିକ ଅବଦାନ ସହିତ ଜୀବନ-ଦର୍ଶନ କ୍ଷେତ୍ରରେ ମଧ ଅପୂର୍ବ ମୌଳିକତା ପ୍ରଦର୍ଶନ କରିଛନ୍ତି । ବ୍ୟକ୍ତିର ଜୀବନ ହେଉ ବା ସାମାଜିକ ଜୀବନ ହେଉ ମନୁଷ୍ୟ କିପରି ଏକ ଉନ୍ନତ

ଓ ଉତ୍କୃଷ୍ଟ ଜୀବନର ଅଧିକାରୀ ହୋଇପାରିବ ସେ ବିଷୟରେ ସେମାନେ ବହୁ ପ୍ରେରଣାଦାୟକ ଦର୍ଶନ ଦେଇଛନ୍ତି । ସକ୍ରେଟିସ୍, ଜିନୋ, ଏପିକୁରସ, ପ୍ଲେଟୋ, ଆରିଷ୍ଟୋଟଲ ଇତ୍ୟାଦି ଦାର୍ଶନିକ ଗଣଙ୍କ ବିଚାରରେ ଏପରି ଚିରନ୍ତନ ଜୀବନବୋଧର ବାର୍ତ୍ତା ରହିଛି, ଯାହା ମନୁଷ୍ୟ ସମାଜ ପାଇଁ ପ୍ରେରଣାଦାୟକ ଉତ୍ସହୋଇ ରହିଛି । ସେମାନେ କୌଣସି ପାରଲୌକିକ ଜୀବନ ବା ମୋକ୍ଷର କାହାଣୀ ବର୍ଣ୍ଣନା କରିନାହାନ୍ତି ବରଂ ମନୁଷ୍ୟ ଯେଉଁ ସମାଜରେ ରହେ ସେଠାରେ କିପରି ଜୀବନର ଉତ୍କର୍ଷ ସାଧନ କରିପାରିବ ଓ ତାହାର ସାମାଜିକ ସ୍ଥିତିକୁ ଉନ୍ନତରୁ ଉନ୍ନତତର ସ୍ଥିତିକୁ ନେବ ସେ କ୍ଷେତ୍ରରେ ସେମାନଙ୍କର ବିଚାରସଂଗତ ଦୃଷ୍ଟିଭଙ୍ଗୀର ଅବତାରଣା କରିଛନ୍ତି । ଏହି ଭାବନା ମଧ୍ୟ ଦେଇ ସାମାଜିକ ଉତ୍ତରଦାୟିତ୍ୱବୋଧ ଓ ଏକ ମାନବବାଦୀ ଜୀବନଦୃଷ୍ଟିର ଚିତ୍ର ମିଳିଥାଏ ।

କେତେକ ଐତିହାସିକଙ୍କ ମତରେ ପାଶ୍ଚାତ୍ୟ ଜଗତ୍‌ରେ ବିକଶିତ ହୋଇଥିବା ବହୁ ମୂଲ୍ୟବୋଧ ସେମାନେ ଗ୍ରୀକ୍ ସଭ୍ୟତାରୁ ଓ ବିଶେଷକରି ଦାର୍ଶନିକମାନଙ୍କ ଠାରୁ ପାଇଛନ୍ତି । ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀଠାରୁ ଗ୍ରୀସ୍‌ରେ ତିନି ଶହ ବର୍ଷ ମଧ୍ୟରେ ଦର୍ଶନ, କଳା, ସାହିତ୍ୟ, ନାଟକ ଇତ୍ୟାଦି ବହୁ କ୍ଷେତ୍ରରେ ସୃଜନଶୀଳତାର ଯେଉଁ ଉନ୍ମେଷ ହୋଇଥିଲା ତାହା ମାନବ ଜାତିର ଇତିହାସରେ ଅଭୂତପୂର୍ବ । ଜ୍ଞାନ ପ୍ରତି ଅନୁରାଗ ଓ ଅନୁସନ୍ଧିତ୍ସା, ମୁକ୍ତ ବିଚାରର ପରିବେଶ ଓ ବୁଦ୍ଧିର ପ୍ରୟୋଗ, ବ୍ୟକ୍ତି ସ୍ୱାଧୀନତାର ବାର୍ତ୍ତା, ଯୌଥ ଜୀବନର ଚିତ୍ର ଓ ଗଣତାନ୍ତ୍ରିକ ମୂଲ୍ୟବୋଧ ଗ୍ରୀକ୍ ସଭ୍ୟତାରେ ଏହି ସମୟରେ ସୃଷ୍ଟି ହୋଇଥିଲା ।ଏସବୁର ଯେ ଏକ କାଳଜୟୀ ମୂଲ୍ୟ ରହିଛି ଏହା ନିଃସନ୍ଦେହ ମନେହୁଏ । ସାମାଜିକ ଜୀବନରେ ଯଦି ରୂଢ଼ିବାଦୀ ମାନସିକତା, ପାରଲୌକିକ ଦୃଷ୍ଟିଭଙ୍ଗୀ, ଧାର୍ମିକ ଭାବପ୍ରବଣତା ଓ କୁସଂସ୍କାର ବା ଅଜ୍ଞତାର ପ୍ରାବଲ୍ୟ ରହେ ସମାଜରେ ବୌଦ୍ଧିକ ବିକାଶ ସମ୍ଭବ ହୋଇନଥାଏ । ଗ୍ରୀକ୍ ସମାଜ ଏ ସବୁଠାରୁ ଅନେକାଂଶରେ ମୁକ୍ତ ଥିଲା ଓ ସେଠାରେ ମୁକ୍ତ ଚିନ୍ତାର ଏକ ବାତାବରଣ ରହିଥିଲା । ସେ ଯୁଗରେ ଗ୍ରୀକ୍ ମାନସିକତାରେ ଏହି ଭାବନାର ପ୍ରସାର ଘଟିଥିଲା ଯେ ପ୍ରାକୃତିକ ବିପର୍ଯ୍ୟୟ ବା ରୋଗବାଧକର ନିରାକରଣ ପାଇଁ କୌଣସି ଦେବତାଙ୍କୁ ପ୍ରାର୍ଥନା କରିବା ହେଉଛି ନିର୍ବୋଧତା । ଜୀବନକୁ ଉନ୍ନତତର ସୋପାନକୁ ନେବାର ପନ୍ଥା ହେଲା ଜ୍ଞାନର ବିକାଶ, ନୈତିକ ଶୃଂଖଳା ପ୍ରତି ପ୍ରତିବଦ୍ଧତା ଓ ଏକ ମାନବବାଦୀ ଜୀବନବୋଧ । ଯେଉଁ ସଭ୍ୟତାରେ ଏ ସବୁ ମୂଲ୍ୟବୋଧର ବିକାଶ ହୋଇନାହିଁ ସେ ସମାଜ ଯେ ଉନ୍ନତ ହୋଇ ନାହିଁ ଏହା ଏକ ଐତିହାସିକ ଉପଲବ୍ଧି ।

ହୋମରଙ୍କ ଦୁଇ କାଳଜୟୀ କୃତି ଭିତରେ ଓ ଗ୍ରୀସର ସାଧାରଣ ଜୀବନରେ ଅନେକ ମିଥ୍ ବା ଲୋକକାହାଣୀ ରହିଥିବା ମନେହୁଏ । ଗୋଟିଏ ମିଥ୍‌ର ଅବତାରଣା କରି ଏହି ଲେଖାକୁ ଶେଷ କରିବାକୁ ଚାହୁଁଛି । ହୋମରଙ୍କ ମହାକାବ୍ୟ (ଅଡିସି ଓ ଇଲିଆଡ୍) ଦୁଇଟିରେ ମନ୍ତ୍ର ତନ୍ତ୍ର, ହେତୁହୀନ ଭୟ, ସଇତାନ ଇତ୍ୟାଦି କୁସଂସ୍କାରର ଚିତ୍ର ନାହିଁ ବରଂ ଅନେକ ଅତିମାନବିକ ଦେବତା ମାନଙ୍କର ବର୍ଣ୍ଣନା ରହିଛି । ସେହି ଦେବତାମାନେ କିଛି ଅଲୌକିକ

ଶକ୍ତିର ଅଧିକାରୀ ହେଲେ ମଧ୍ୟ ସେମାନଙ୍କର ଇଚ୍ଛା, ଆକାଂକ୍ଷା ଓ ବ୍ୟବହାର ପୂରାପୂରି ମଣିଷ ତୁଲ୍ୟ । ମିଶରୀୟମାନେ ଏତେ ଦୁଃଖ ଯନ୍ତ୍ରଣା ଭିତରେ ରହିଥିଲେ ଯେ ସେମାନେ ମୃତ୍ୟୁ ପରର ସୁଖ ପାଇବା ପାଇଁ ଆକାଂକ୍ଷା ପୋଷଣ କରୁଥିଲେ । କିନ୍ତୁ ଗ୍ରୀକ୍ ଲୋକଙ୍କର ଜୀବନ ଏତେ ସୁନ୍ଦର, ସୁଖମୟ ତଥା ଲୋଭନୀୟ ଥିଲା ଯେ ଦେବତା ମାନେ ସ୍ୱର୍ଗରୁ ଗ୍ରୀସ୍‌କୁ ଆସିବାକୁ ଆଗ୍ରହୀ ହେଉଥିଲେ । ଗ୍ରୀକ୍ ସଭ୍ୟତା ଯେଉଁପରି ଉନ୍ନତ ହୋଇଥିଲା ଗ୍ରୀକ୍ ଦର୍ଶନ ମଧ୍ୟ ସେହିପରି ଉନ୍ନତ ହୋଇଥିଲା । ପାଶ୍ଚାତ୍ୟ ଦର୍ଶନ ଇତିହାସରେ ଗ୍ରୀକ୍ ଦର୍ଶନ ଯେ ଏକ ମହତ୍ତ୍ୱପୂର୍ଣ୍ଣ ଆବେଦନ ଓ ଅବଦାନ ରଖିଛି ଏହା ନିଃସନ୍ଦେହ ମନେହୁଏ ।

## ସହାୟକ ପୁସ୍ତକ ସୂଚୀ

୧. Thilly, Frank- History of Philosophy

ସୁରଜିତ ପବ୍ଲିକେଶନସ,ଦିଲ୍ଲୀ, ୨୦୦୭.

୨. Russell, Bertrand - History of Western Philosophy

ଜର୍ଜ ଆଲେନ୍ ଆଣ୍ଡ ଅନୱିନ, ଲଣ୍ଡନ, ୧୯୪୬.

୩. Stace, W.T.. - A Critical History of Greek Philosophy,

ମାକମିଲନ ଇଣ୍ଡିଆ ଲିମିଟେଡ, ଦିଲ୍ଲୀ, ୧୯୮୨.

୪. Copleston, Frederick - A History of Philosophy, Vol. I

ଆନ୍ ଇମେଜ ବୁକ୍, ନିଉୟର୍କ ୧୯୯୩.

୫. Black Burn, Simon, Oxford Dictionary of Philosophy,

ଅକ୍ସଫୋର୍ଡ ୟୁନିଭର୍ସିଟି ପ୍ରେସ୍, ନୂଆ ଦିଲ୍ଲୀ-୨୦୦୬ ।

# ଅନୁକ୍ରମଣିକା ( INDEX )

●